# ହେତୁବାଦୀ ପ୍ରବନ୍ଧ ସମ୍ଭାର

ସଂକଳକ ଓ ସଂପାଦନା

## ଧନେଶ୍ୱର ସାହୁ




ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର

# ହେତୁବାଦୀ ପ୍ରବନ୍ଧ ସମ୍ଭାର୍

ସଂକଳକ ଓ ସଂପାଦନା ଧନେଶ୍ୱର ସାହୁ

ପ୍ରକାଶକ ଓଡ଼ିଶା ସାହିତ୍ୟ ଏକାଡେମୀ
ସଂସ୍କୃତି ଭବନ, ଭୁବନେଶ୍ୱର - ୭୫୧୦୧୪

ପ୍ରଥମ ସଂସ୍କରଣ ୨୦୧୭

ମୁଦ୍ରଣ ପେଜ୍‌ମେକର କମ୍ପୁଟର ସର୍ଭିସେସ୍
୧୧୭, ବାପୁଜୀ ନଗର, ଭୁବନେଶ୍ୱର

ପ୍ରଚ୍ଛଦ ରମାକାନ୍ତ ସାମନ୍ତରାୟ

ମୂଲ୍ୟ ଟ.୨୦୦/-(ଦୁଇଶତ ଟଙ୍କା)ମାତ୍ର

## HETUBADI PRABANDHA SAMBHAR

**Compiled & Edited by**: Dhaneswar Sahoo

**Published by** : Odisha Sahitya Akademi
Sanskruti Bhawan, Bhubaneswar-751014

First Edition : 2017

**Printed by** : Pagemaker Computer Services
117, Bapuji Nagar, Bhubaneswar-9

**Cover design** : Ramakanta Samantaray

**Price** : ₹ 200/-(Two Hundred Only)

# ପ୍ରାଗ୍‌ଭାଷ

ଅତୀତକୁ ବିଶ୍ଳେଷଣ କଲେ ଯାହା ବୁଝାପଡ଼େ ମଣିଷର ସାମୂହିକ ଜ୍ଞାନ ଓ ବିଚାରବୋଧ ସମାଜର ଅଧିପତିମାନଙ୍କ ଦ୍ୱାରା ବହୁଳାଂଶରେ ନିୟନ୍ତିତ ହେଉଥିଲା । ବ୍ୟକ୍ତିର ତର୍କ, ବୁଦ୍ଧିସମ୍ପନ୍ନ ମନୋଭାବକୁ ସାମନ୍ତବାଦୀ ନେତୃବର୍ଗ ପ୍ରତ୍ୟକ୍ଷରେ ଗ୍ରହଣ କରୁ ନଥିଲେ । କିନ୍ତୁ ଲୋକ ଦେଖାଣିଆ ଭାବେ ସେମାନଙ୍କ ଭିତରୁ କେଇ ଜଣଙ୍କୁ ନିଜ ଦରବାରରେ ବିଭିନ୍ନ ପଦ ପଦବୀରେ ଅଳଙ୍କୃତ କରେଇ ବାହାବା ନେବା କଥାଟା ସମାଜରେ ଅବିଦିତ ନୁହେଁ । ମଣିଷ ତା'ର ଜ୍ଞାନରୂପୀ ବିବେଚନାକୁ ଆୟୁଧ କରି ସମାଜର ବଡ଼ଦାଣ୍ଡରେ ନିଜର ନନ୍ଦିଘୋଷକୁ ଅନ୍ୟମାନଙ୍କ ବିନା ସାହାଯ୍ୟରେ ସୁଦ୍ଧା ଗଡ଼େଇ ନେଇ ପାରିବାର ଦମ୍ଭ ରଖିଥାଏ । କିନ୍ତୁ କାହିଁ କେଉଁଠି ତା ବିବେକରେ ଯେ ଝଟକା ଲାଗେନି, ଏଇକଥା ସେ ହଲପ ଦେଇ କହିପାରିବ କି ? ଏମିତି ହେଇ ନ ଥିଲେ ଶହ ଶହ ବର୍ଷ ତଳର ଶ୍ଳୋକ, ପଦ୍ୟ, ଲୋକକଥାକୁ ପାଥେୟ କରି ସେ କେଉଁଠି ବାମ ଆଖି ଡେଇଁଲେ ଅଶୁଭ, ବାଟରେ ବିଲେଇ ଓଗାଳିଲେ ବିପଦ ଭଳି ଅବାସ୍ତବ ତତ୍ତ୍ୱକୁ ପ୍ରାଥମିକତା ଦିଅନ୍ତା ନାହିଁ । ଏହା ସାଙ୍ଘାତିକ ରୂପ ନିଏ ଯେତେବେଳେ ଜଣେ ମଣିଷ ତଥାକଥିତ ସ୍ୱପ୍ନ ହୁଏତ ଦୁଃସ୍ୱପ୍ନର ଦୁହାଇ ଦେଇ ନିଜ ଆଦରଣୀୟ ମାଆକୁ ଡାଆଣୀ ଭାବି ତା ବେକରେ ଟାଙ୍ଗିଆ ପକେଇବାକୁ ପଶ୍ଚାତ୍‌ପଦ ହୁଏ ନାହିଁ । ସର୍ପ ଦଂଶନର ଯନ୍ତ୍ରଣାରେ ଚିତ୍କାର କରୁଥିବା ମଣିଷକୁ ଡାକ୍ତରଙ୍କ ନିକଟକୁ ବିଷପ୍ରତିହତ ପାଇଁ ନ ନେଇ, ସେ ନେଇଯାଏ କେଉଁ ମଧ୍ୟଯୁଗୀୟ ଭାବନାର ବଶବର୍ତ୍ତୀ ଗୁଣିଆଁ କତିକି । ଏମିତି ରାଶି ରାଶି ବିଭ୍ରାନ୍ତିକର ଚେତନା ମଣିଷର ମସ୍ତିଷ୍କକୁ ଚୋଟ ପରେ ଚୋଟ ମାରି ଚାଲିଛନ୍ତି, ତଥାପି ମଣିଷ ଯେଉଁ ଅଙ୍କକୁ ସେଇ ଅଙ୍କ ଭଳି ଛିଡ଼ା ହୋଇଛି ଯୁଗ ଯୁଗ ଧରି ।

ଆଜି ମଣିଷ ଏକବିଂଶ ଶତାବ୍ଦୀରେ ପାଦ ଥାପିଛି । ବିଜ୍ଞାନ ଓ ବୈଷୟିକ ପ୍ରଗତି ମଣିଷର ବିଚାରଧାରାକୁ ସୁସଂହତ ତଥା ତର୍କସଂଗତ କରିବାରେ କାହାରି ଅବହେଳାକୁ ସମୟ ଆଉ ବରଦାସ୍ତ କରି ନ ପାରେ । କୁସଂସ୍କାରମୁକ୍ତ ଏକ ସମାଜ ବ୍ୟବସ୍ଥା ଆମ

ସଭିଙ୍କର ଯେ କାମ୍ୟ, ଏକଥା ଆମ୍ଭେ ମଣିଷ ଜାତି ସ୍ୱୀକାର  କରିବାକୁ ବାଧ୍ୟ। ଏଭଳି ପ୍ରକୃଷ୍ଟ ସମୟରେ ଓଡ଼ିଶା ସାହିତ୍ୟ ଏକାଡେମୀ ବିଶିଷ୍ଟ ହେତୁବାଦୀ ଚିନ୍ତକ ଡକ୍ଟର ଧନେଶ୍ୱର ସାହୁଙ୍କ ସମ୍ପାଦନାରେ ହେତୁବାଦୀ ପ୍ରବନ୍ଧ ସମ୍ଭାର ପୁସ୍ତକକୁ ପ୍ରକାଶ କରିବାର ପଦକ୍ଷେପ ନେଉଛି। ୩୨ଟି ଯାକ ପ୍ରବନ୍ଧ ଓଡ଼ିଶାର ଲବ୍ଧପ୍ରତିଷ୍ଠିତ ହେତୁବାଦୀ ଚିନ୍ତାନାୟକ, ପ୍ରାବନ୍ଧିକ, ଗବେଷକଙ୍କ ଉପାଦେୟ ଲେଖାଗୁଡ଼ିକୁ ନେଇ ସମୃଦ୍ଧ। ଆଶା, ଏହି ପୁସ୍ତକଟି ସଚେତନ ପାଠକ ପାଠିକାଙ୍କ ସକାଶେ ରଚିପୂର୍ଣ୍ଣ ମନେହେବ। ପୁସ୍ତକ ପ୍ରକାଶର ଦାୟିତ୍ୱ ସୁଚାରୁରୂପେ ସମ୍ଭାଳିଥିବା ସମସ୍ତଙ୍କୁ ମୁଁ  ଏଥିପାଇଁ ଧନ୍ୟବାଦ ଜଣାଉଛି।

ଅଶ୍ୱିନୀ କୁମାର ମିଶ୍ର
ସଚିବ
ଓଡ଼ିଶା ସାହିତ୍ୟ ଏକାଡେମୀ

# ସୂଚୀପତ୍ର

## ହେତୁବାଦ : ବୈଚାରିକ ଦୃଷ୍ଟିଭଙ୍ଗୀ



## ହେତୁବାଦ ବନାମ କୁସଂସ୍କାର



## ବୈଜ୍ଞାନିକ ସିଦ୍ଧାନ୍ତ

**ଚିକିତ୍ସା ବିଜ୍ଞାନ ଓ ମନୋବୈଜ୍ଞାନିକ ବିଶ୍ଳେଷଣ**



**ସାମାଜିକ ସମସ୍ୟା ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ**



**ମାନବିକ ଅଧିକାର**





# ଉପକ୍ରମଣିକା

ଓଡିଶା ସାହିତ୍ୟ ଏକାଡେମୀ ତରଫରୁ ପ୍ରକାଶ ପାଇବାକୁ ଯାଉଥିବା ଏହି ପ୍ରବନ୍ଧ ସଂକଳନଟିରେ ହେତୁବାଦ ସଂପର୍କିତ ପ୍ରବନ୍ଧମାନ ସ୍ଥାନ ପାଇଛି । ତେଣୁ ଏହି ପ୍ରବନ୍ଧ ସଂକଳନର ନାମ ରହିଛି "ହେତୁବାଦୀ ପ୍ରବନ୍ଧ ସମ୍ଭାର" । ଓଡିଶାର କିଛି ପ୍ରଗତିଶୀଳ ବୁଦ୍ଧିଜୀବୀ, ସମାଜ ସଂସ୍କାରକ ଓ ହେତୁବାଦୀ ଚିନ୍ତକମାନଙ୍କ ଲେଖାରୁ ଏହି ପ୍ରବନ୍ଧମାନ ସଂଗୃହୀତ ହୋଇଛି । ଏହା ଏହି କ୍ଷେତ୍ରରେ ସମ୍ଭବତଃ ଏକ ପ୍ରଥମ ପଦକ୍ଷେପ । ହୁଏତ କେତେକ ହେତୁବାଦୀ ଲେଖକଙ୍କ ଲେଖା ଏଥିରେ ସ୍ଥାନିତ ହୋଇପାରିନାହିଁ । ଯଦି ଭବିଷ୍ୟତରେ ଏହିପରି ଉଦ୍ୟମ ହୁଏ, ତେବେ ଆହୁରି ଅନେକ ଲେଖକ ପାଠକମାନଙ୍କ ଦୃଷ୍ଟି ଆକର୍ଷଣ କରିପାରିବେ ।

ହେତୁବାଦ ଏକ ବ୍ୟାପକ ପ୍ରସଙ୍ଗ ଓ ଏହାର ସୈଦ୍ଧାନ୍ତିକ ଭୂମିଟି ବେଶ୍ ପ୍ରସାରିତ । ହେତୁବାଦର ଅର୍ଥ ହେଉଛି ଏକ ଯୁକ୍ତିସଂଗତ ବା ତର୍କସଂଗତ ମତ । ଏହି ଦୃଷ୍ଟିରୁ ଦେଖିଲେ ହେତୁବାଦ, ଯୁକ୍ତିବାଦ, ବୁଦ୍ଧିବାଦ, ତର୍କସମ୍ମତ ବିଚାର, ବିଚାରଶୀଳ ଦୃଷ୍ଟି ଭାବନାମାନ ସମାର୍ଥବୋଧକ । ବିଚାରଶୀଳତାର ସାର୍ବଭୌମତ୍ୱକୁ ସ୍ୱୀକାର କରିବା ହେତୁବାଦର ଆଭିମୁଖ୍ୟ । ହେତୁବାଦ ମଧ୍ୟ ଏକ ଜୀବନ-ଦର୍ଶନ । ଏକ ଦର୍ଶନ କେତେକ ବୌଦ୍ଧିକ ସିଦ୍ଧାନ୍ତର ଅବତାରଣା କରିଥାଏ । ହେତୁବାଦର ଏକ ବୌଦ୍ଧିକ ଓ ଏକ ବ୍ୟାବହାରିକ ଦିଗ ରହିବା ମନେହୁଏ । ଏହାର ବୌଦ୍ଧିକ ଦିଗଟି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ତର୍କଶୀଳ ବିଚାରବୋଧର ସୂଚନା ଦେଇଥାଏ । ଏହାର ବ୍ୟାବହାରିକ ଦିଗଟି ଏକ ମାନବବାଦୀ ଜୀବନବୋଧ ଓ କୁସଂସ୍କାରମୁକ୍ତ ମାନସିକତାର ପ୍ରାଧାନ୍ୟକୁ ସ୍ୱୀକାର କରେ । ସଂକ୍ଷେପରେ କହିଲେ ହେତୁବାଦ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦୀ ଜୀବନବୋଧର ଭୂମି ଉପରେ ଦଣ୍ଡାୟମାନ ଏକ ଜୀବନଦର୍ଶନ ।

ସଭ୍ୟତାର ଅନୁଶୀଳନରୁ ଜଣାଯାଏ ଯେ ଏକ ଆଦିମ ସ୍ଥିତିରୁ ନାନା ପରିବର୍ତ୍ତନ ଓ ବିଭିନ୍ନ ସ୍ତର ଦେଇ ମଣିଷ ଆଜିର ସ୍ଥିତିକୁ ଆସିପାରିଛି । ସବୁ ସଭ୍ୟତାରେ କିଛି ବ୍ୟକ୍ତି ପ୍ରକୃତି, ପରିବେଶ ଓ ଜୀବନଧାରାକୁ ବୁଝିବାକୁ କୌତୂହଳୀ ହୋଇଛନ୍ତି । ବୌଦ୍ଧିକ ଅନୁସନ୍ଧିତ୍ସା ଓ କୌତୂହଳତା ମଧ୍ୟଦେଇ ଧୀରେ ଧୀରେ ଜ୍ଞାନବିଜ୍ଞାନର ବିକାଶ ହୋଇଛି, ସାମାଜିକ ଜୀବନ ଦୃଢ଼ ଭିତ୍ତି ନେଇଛି, ସଭ୍ୟ ଦୃଷ୍ଟିଭଙ୍ଗୀର କ୍ରମବିକାଶ ହୋଇଛି ତଥା ନୀତି, ନୈତିକତା ଓ ଉଚ୍ଚତର ମୂଲ୍ୟବୋଧମାନ ସାମାଜିକ ଜୀବନର ଆଦର୍ଶ ହୋଇଛି । ମଣିଷ ଭିତରର ସାମାଜିକ ପ୍ରବୃତ୍ତି, ଭାଷା କହିବାର ସାମର୍ଥ୍ୟ, ବସ୍ତୁନିର୍ମାଣ କରିବାର ଦକ୍ଷତା ଓ ବିଚାରଶୀଳ ଦୃଷ୍ଟି ଯୋଗୁ ସଭ୍ୟତା ଆଜିର ସ୍ଥିତିକୁ ଆସିପାରିଛି । ଏକ ଆଦିମ ଅବସ୍ଥାରୁ ଆନ୍ତର୍ଜାତିକ ଚେତନାର ବିକାଶ, ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତିର ଉଭୁଙ୍ଗ ଅଭିବୃଦ୍ଧି, ସାମନ୍ତବାଦୀ ଜୀବନଧାରାରୁ ଗଣତାନ୍ତ୍ରିକ ଆଦର୍ଶ ଓ ବ୍ୟକ୍ତିମର୍ଯ୍ୟାଦାବୋଧ ବିଚାରମାନ ସମାଜରେ ଦୃଢ଼ ଭିତ୍ତି ନେଇପାରିଛି । ଏସବୁ ବିକାଶ ପଶ୍ଚାତରେ ରହିଛି ମଣିଷର ଅବିରତ ବୌଦ୍ଧିକ ପ୍ରୟାସ ଓ ଅନୁସନ୍ଧିତ୍ସା ।

ହେତୁବାଦର ଏକ ବଡ଼ ନିର୍ଯ୍ୟାସ ହେଉଛି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ । ସଭ୍ୟତାର ଇତିହାସ ସୁଦୀର୍ଘ ହେଲେବି ଆଧୁନିକ ବିଜ୍ଞାନର ବିକାଶ ପର୍ବ ସପ୍ତଦଶ ଶତାବ୍ଦୀରୁ ଆରମ୍ଭ ବୋଲି କୁହାଯାଏ । ବିଜ୍ଞାନର ଯୁଗ ଆସିବା ପରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଏକ ଆଦର୍ଶ ଭାବରେ ଚିନ୍ତାରାଜ୍ୟରେ ଆଲୋଡନ ସୃଷ୍ଟି କରେ । ମୁକ୍ତ ମନ, ଏକ ସାର୍ବଜନୀନ ପ୍ରଣାଳୀ ଓ ପ୍ରକୃତିବାଦ ହିଁ ବୈଜ୍ଞାନିକ ବିଚାରବୋଧର ମୌଳିକ ଆଧାର ହୁଏ । ପର୍ଯ୍ୟବେକ୍ଷଣ-ପରୀକ୍ଷଣ ବୈଜ୍ଞାନିକ ଜ୍ଞାନର ଦିଗନ୍ତକୁ ବିସ୍ତାର କରିଚାଲେ । ଏକ ସାର୍ବଜନୀନ ପ୍ରଣାଳୀ ପ୍ରୟୋଗ କରି ବିଜ୍ଞାନ ପ୍ରାକୃତିକ ଘଟଣାବଳୀ ଓ ସକଳ ସାମାଜିକ ବ୍ୟବସ୍ଥାକୁ ବ୍ୟାଖ୍ୟା କରିବାକୁ ପ୍ରୟାସ କରେ । ପରିଣାମତଃ ପ୍ରାକୃତିକ ବିଜ୍ଞାନ (Natural science) ଓ ସମାଜ-ବିଜ୍ଞାନ (Social science) ଜ୍ଞାନର ଦିଗନ୍ତକୁ ବିସ୍ତାରିତ କରି ପାରିଛନ୍ତି । ବୈଜ୍ଞାନିକ ଜ୍ଞାନ ଏହିଦୃଷ୍ଟିରୁ ପ୍ରଣାଳୀବଦ୍ଧ, ସୁନିର୍ଦ୍ଦିଷ୍ଟ, ତଥ୍ୟାଧାରିତ, ପ୍ରଗତିଶୀଳ ଓ ସାର୍ବଜୀନନ । ପ୍ରକୃତି ବିଷୟରେ ବା ସମାଜ ବିଷୟରେ ବିଜ୍ଞାନ ସର୍ବଦା ପ୍ରଗତିଶୀଳ ଜ୍ଞାନ ଦେଇଥାଏ । ପ୍ରକୃତିର ବିଶାଳତା ଓ ଜଟିଳତା ପୃଷ୍ଠଭୂମିରେ କୌଣସି ବୈଜ୍ଞାନିକ ନିଜର ଜ୍ଞାନକୁ ଶାଶ୍ୱତ, ଚିରନ୍ତନ ବା ଧ୍ରୁବ ବୋଲି ନିଅନ୍ତି ନାହିଁ । ନୂତନ ତଥ୍ୟ ଆଧାରରେ ଏହା ପରିବର୍ତ୍ତନଶୀଳ ଓ ଏହି ଦୃଷ୍ଟିରୁ ବୈଜ୍ଞାନିକ ଜ୍ଞାନ ସ୍ୱସଂଶୋଧନାତ୍ମକ । ତେବେ ବୈଜ୍ଞାନିକ ମନୋଭାବ ଏକ ମୌଳିକ ସିଦ୍ଧାନ୍ତ ଉପରେ ଆଧାରିତ ହେବା ମନେହୁଏ ଯାହାକୁ ଆଧୁନିକ ପରିଭାଷାରେ ବୈଜ୍ଞାନିକ

ପ୍ରକୃତିବାଦ କୁହାଯାଏ । ଏହି ତତ୍ତ୍ୱ ଅନୁଯାୟୀ ପ୍ରକୃତିରେ ଯାହା କିଛି ଅଛି ବା ପ୍ରକୃତିରେ ଯାହା କିଛି ଘଟେ ସେ ସବୁ ପଶ୍ଚାତରେ କେବଳ ପ୍ରାକୃତିକ ନିୟମ ବା କାରଣ ରହିଛି, ତାହା ଆମର ଜ୍ଞାନର ପରିସରକୁ ଆସିଥାଉ ବା ଆସି ନଥାଉ । କୌଣସି ପ୍ରାକୃତିକ ଘଟଣା ପଶ୍ଚାତରେ କିଛି ଅଲୌକିକ, ଆଧିଭୌତିକ ବା ଦୈବୀକାରଣ ନାହିଁ । ପ୍ରକୃତିର ବିଶାଳତା ଓ ଜଟିଳତା ଯୋଗୁଁ ପ୍ରକୃତିର ଅସଂଖ୍ୟ ରହସ୍ୟ ମଣିଷ ପ୍ରଜ୍ଞାର ବହିର୍ଭୂତ ହୋଇ ରହିଛି । ତେବେ ସଭ୍ୟତାର ବିକାଶଧାରାରେ ଧୀରେ ଧୀରେ ମଣିଷ ପ୍ରକୃତିର ରହସ୍ୟମାନଙ୍କୁ ଉନ୍ମୋଚିତ କରିବାରେ ସଫଳ ହେବାରେ ଲାଗିଛି । କିନ୍ତୁ ପ୍ରାକୃତିକ ଘଟଣା ପଶ୍ଚାତରେ କୌଣସି ଦୈବୀ ବା ଆଧିଦୈବିକ କାରଣ ନାହିଁ ଏହା ହିଁ ବିଜ୍ଞାନର ଏକ ମୌଳିକ ସିଦ୍ଧାନ୍ତ । ଏହି ବିଚାରଧାରାଟି ଚିନ୍ତା ଜଗତରେ ଏକ ବୈପ୍ଲବିକ ଆଲୋଡନ ସୃଷ୍ଟି କରିଥିବା ମନେହୁଏ । ଏହି ଭାବଧାରା ଓ ଏକ ସାର୍ବଜନୀନ ପ୍ରଣାଳୀକୁ ମୂଳ-ସୂତ୍ର ଭାବେ ଗ୍ରହଣ କରି ବିଜ୍ଞାନର ବିକାଶ ଅଗ୍ରସର ହୋଇଥିବା ମନେହୁଏ । ଏହି ବିଚାରବୋଧର ନିଷ୍କର୍ଷ ହିଁ ହେଉଛି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ । ଏହି ଦୃଷ୍ଟିରୁ ଦେଖିଲେ ବିଜ୍ଞାନ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଭିତରେ କିଛି ପାର୍ଥକ୍ୟ ରହିପାରେ । ଜଣେ ବିଜ୍ଞାନୀ ବା ବିଜ୍ଞାନ ଅଧ୍ୟୟନ କରିଥିବା ବ୍ୟକ୍ତି ଯେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅଧିକାରୀ ଏହା କୁହାଯାଇ ପାରିବ ନାହିଁ, ସେହିପରି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରୁଥିବା ଜଣେ ବ୍ୟକ୍ତି ଯେ ଜଣେ ବୈଜ୍ଞାନିକ ଏହା କୁହାଯାଇ ନପାରେ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଏକ ଜୀବନବୋଧ, ଏକ ସୈଦ୍ଧାନ୍ତିକ ଆଦର୍ଶ ଓ ଏକ ତାତ୍ତ୍ୱିକ ଅବବୋଧ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ହେତୁବାଦର ଏକ ମୌଳିକ ଆଭିମୁଖ୍ୟ ।

ହେତୁବାଦର ଅନ୍ୟ ଦିଗନ୍ତଟି ହେଉଛି ଏକ ମାନବବାଦୀ ଦୃଷ୍ଟି । ପ୍ରତ୍ୟେକ ବ୍ୟକ୍ତିର ଜୀବନର ମୂଲ୍ୟକୁ ସ୍ୱୀକାର କରିବା ହେଉଛି ମାନବବାଦ । ଯେ କୌଣସି ପ୍ରକାରର ଭେଦଭାବ ମାନବବାଦର ପରିପନ୍ଥୀ । ସଭ୍ୟତାର ଇତିହାସରେ କିନ୍ତୁ ମଣିଷ ସମାଜରେ ବହୁ ଭେଦଭାବ ରହିଆସିଛି । ରଙ୍ଗଭେଦ, ଲିଙ୍ଗଭେଦ, ଜାତିଭେଦ ଇତ୍ୟାଦି ବହୁ ଭେଦଭାବ ସମାଜକୁ ଭାଗ, ଭାଗ କରି ଆସିଛି । ସେହିପରି କେତେ କେତେ ଯୁଦ୍ଧ, ବିଭୀଷିକା, ମାନବକୃତ ଶୋଷଣ, ଅତ୍ୟାଚାର, ବିଦ୍ୱେଷ ଓ ଅସହିଷ୍ଣୁତା ସମାଜରେ ନାନା ଅସ୍ୱସ୍ତିକର ପରିବେଶ ସୃଷ୍ଟି କରିଛି । ପ୍ରକୃତି ଯେତିକି ଦୁଃଖ ଯନ୍ତ୍ରଣା ଦେଇ ନାହିଁ, ମାନବକୃତ ନିଷ୍ଠୁରତା ଓ ଅସହିଷ୍ଣୁତା ସଂସାରରେ ବହୁ ଦୁଃଖ ଓ ମନ୍ଦ ପାଇଁ ଦାୟୀ ହୋଇ ରହିଛି । ଏସବୁ ବିରୁଦ୍ଧରେ ମାନବବାଦ ଏକ ବୌଦ୍ଧିକ ଆଲୋଡନ ସୃଷ୍ଟି କରିଛି । ସବୁ ମଣିଷ ଜନ୍ମରୁ ସମାନ ଓ ପ୍ରତ୍ୟେକ ବ୍ୟକ୍ତି ଏକ ମର୍ଯ୍ୟାଦାର ସହ ଜୀବନ ଅତିବାହିତ କରିବା ବ୍ୟକ୍ତିର ଏକ ପ୍ରାକୃତିକ ଅଧିକାର । ବିଭିନ୍ନ

ସଭ୍ୟତାରେ ହେତୁବାଦୀ ଚିନ୍ତାନାୟକମାନେ ମାନବବାଦର ଯେଉଁ ବିଚାର ବ୍ୟକ୍ତ କରିଛନ୍ତି ତାହାରି ଆଧାରରେ ଆନ୍ତର୍ଜାତିକ ସ୍ତରରେ ମାନବିକ ଅଧିକାରର ବିଶ୍ୱଘୋଷଣାନାମାକୁ ବିଶ୍ୱସ୍ୱୀକୃତି ଦିଆଯାଇଛି । ମାନବବାଦୀ ଜୀବନ-ଦର୍ଶନକୁ ଆଧାର କରି ଏକ ଭେଦଭାବବିହୀନ ବିଶ୍ୱସମାଜ, ସାର୍ବଜନୀନ ଶିକ୍ଷା, ରାଷ୍ଟ୍ରର ରାଜନୈତିକ ଶାସନ ବ୍ୟବସ୍ଥାରେ ପ୍ରତ୍ୟେକ ସାବାଳକ ବ୍ୟକ୍ତିର ସଂପୃକ୍ତି, ଆଇନ ଦୃଷ୍ଟିରେ ସମାନ ବିବେଚିତ ହେବାର ପରିବେଶ ମାନବବାଦୀ ଜୀବନ-ଦର୍ଶନରୁ ଉଦ୍ଭବ ହୋଇଛି । ମାନବବାଦୀ ବିଚାରବୋଧରୁ ଏକ ସଭ୍ୟ-ସଂସ୍କୃତି ଓ ଏକ ମହତ୍ତର ଜୀବନବୋଧର ପରିକଳ୍ପନା ସୃଷ୍ଟି ହୋଇଛି ।

ହେତୁବାଦ ଏହି ପୃଷ୍ଠଭୂମିରେ ମାନବିକ ପ୍ରୟାସ ଓ ଏକ ଇହଲୌକିକ ଜୀବନଦୃଷ୍ଟିକୁ ସ୍ୱୀକାର କରେ । ସଭ୍ୟତାର ସକଳ ବିକାଶ, ସମୃଦ୍ଧି ଓ କୀର୍ତ୍ତିକରଣୀ ମାନବିକ ପ୍ରୟାସରେ ସମ୍ଭବ ହୋଇଛି । ସଭ୍ୟତାର ଆରମ୍ଭ ପର୍ବରୁ ସକଳ ପ୍ରତିକୂଳ ପରିସ୍ଥିତିକୁ ଅତିକ୍ରମ କରିବା ପାଇଁ ମଣିଷ ନିଜର ବୁଦ୍ଧି ପ୍ରୟୋଗକରି ଆସିଛି । ସଭ୍ୟତାରେ ଯାହା କିଛି ଜ୍ଞାନବିଜ୍ଞାନ, ଭୌତିକ ବିକାଶ, ପ୍ରାଯୁକ୍ତିକ କୌଶଳ ଓ ନୀତିବୋଧର ଭାବନା ଆସିଛି ସେସବୁ ମାନବିକ ଉଦ୍ୟମରେ ହୋଇଛି । କୌଣସି ବିକାଶ ଆକାଶରୁ ଖସିନାହିଁ ବା କେଉଁ କଳ୍ପିତ ଦିଅଁ ଦେବତା ଦେଇନାହାନ୍ତି । ଆଜି ସଭ୍ୟତା ଯେଉଁ ଶିଖରକୁ ଯାଇଛି, ତାହା ପିଢ଼ି ପିଢ଼ି ଦେଇ କେତେ କେତେ ଗବେଷଣା, ବୌଦ୍ଧିକ ଅନୁସନ୍ଧିତ୍ସା, ସୃଜନଶୀଳ ଅଭିବ୍ୟକ୍ତି ଓ ନିଷ୍ଠାପର ପ୍ରୟାସ ଯୋଗୁ ସମ୍ଭବ ହୋଇଛି । ଇତିହାସର ଯେଉଁ କାଳଖଣ୍ଡରେ ଏକ ସୁସ୍ଥ, ନିରାପଦ ଓ ସୁନ୍ଦର ଜୀବନ ବଞ୍ଚିବାକୁ ଆମେ ଆଜି ସମର୍ଥ ହୋଇଛେ ତାହା ପଶ୍ଚାତରେ ଆମର ପିତା, ପିତାମହ ଓ ପ୍ରପିତାମହମାନଙ୍କର ଅବଦାନ ରହିଆସିଛି । ସେହିପରି ମଣିଷର ପ୍ରୟାସରେ ଆଗାମୀ ବିଶ୍ୱ ଓ ମାନବ ସମାଜ ଆହୁରି ସୁଖକର ଓ ମଙ୍ଗଳକର ସ୍ଥିତିକୁ ଯେ ଯାଇପାରିବ ଏହି ସନ୍ଦେଶ ହେତୁବାଦୀ ଚିନ୍ତାନାୟକ ମାନେ ସର୍ବଦା ବ୍ୟକ୍ତ କରି ଆସିଛନ୍ତି । ପୁନଶ୍ଚ ହେତୁବାଦ ଏହି ଜୀବନକୁ ଅଧିକ ସୁଖପ୍ରଦ, ପ୍ରୀତିପଦ ଓ ଅର୍ଥପୂର୍ଣ୍ଣ କରିବାକୁ ସର୍ବଦା ସଂପୃକ୍ତି ବ୍ୟକ୍ତ କରିଆସିଛି । ହେତୁବାଦୀ ବିଚାରବୋଧରେ ସ୍ୱର୍ଗ, ନରକ, ମୋକ୍ଷ, ମୁକ୍ତି, ପାରଲୌକିକ ସ୍ଥିତି ଭାବନାମାନ କେବଳ କଳ୍ପନା ଯେହେତୁ ସେସବୁ ଭାବନା ମାନଙ୍କର କୌଣସି ବାସ୍ତବ ସ୍ଥିତି ନାହିଁ । ଯେଉଁ ଯୁଗରେ ଜ୍ଞାନ ବିଜ୍ଞାନର ବିକାଶ ହୋଇ ନଥିଲା ସେହି ଯୁଗରେ ଏହିପରି ଅନେକ ଛବିଳ କଳ୍ପନା ମଣିଷ ମନକୁ ଆକ୍ରାନ୍ତକରି ରଖିଥିଲା । ଧର୍ମକୈନ୍ଦ୍ରିକ ଜୀବନ-ଦର୍ଶନରୁ ମାନବକୈନ୍ଦ୍ରିକ ଜୀବନ-ଦର୍ଶନର ବିକାଶ ସଭ୍ୟତାର ସାଂସ୍କୃତିକ ଉତ୍ତରଣ କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ମନେହୁଏ ।

ହେତୁବାଦ ବ୍ୟାବହାରିକ ସ୍ତରରେ ସକଳ ପ୍ରକାରର କୁସଂସ୍କାର, ଅହେତୁକ ବିଶ୍ୱାସ ଓ ଅନ୍ଧସଂସ୍କାରକୁ ବିରୋଧ କରିଥାଏ । ଯାହା ବିଜ୍ଞାନବିରୋଧୀ ଓ ମାନବିକତାବିରୋଧୀ ହେତୁବାଦ ତାହାକୁ ପ୍ରତ୍ୟାଖ୍ୟାନ କରିଥାଏ । ସମାଜରେ ନାନା କୁସଂସ୍କାର ଓ ଅନ୍ଧବିଶ୍ୱାସ ରହିବା ଏକ ସାଧାରଣ ଉପଲବ୍ଧି । ସେହି ସବୁ କୁସଂସ୍କାର ସକଳ ଅନଗ୍ରସରତା ଓ ବୌଦ୍ଧିକ ଜଡତାର ମୁଖ୍ୟକାରଣ । ନାନା ଧାର୍ମିକ, ସାଂସ୍କୃତିକ, ସାମାଜିକ, ଅର୍ଥନୈତିକ ଓ ମନୋବୈଜ୍ଞାନିକ କାରଣ ଯୋଗୁ ସମାଜରେ କୁସଂସ୍କାର ବ୍ୟାପକ ଭାବେ ରହିବା ଦେଖାଯାଏ । କୁସଂସ୍କାର ଯେ କେବଳ ନିରକ୍ଷର ବ୍ୟକ୍ତିଙ୍କ ପାଖରେ ରହିବା ଦେଖାଯାଏ ତାହା ନୁହେଁ ଅନେକ ଶିକ୍ଷିତ ଓ ସମାଜର ପ୍ରତିଷ୍ଠିତ ବ୍ୟକ୍ତି ବିଶେଷ ବି ନାନା ଅନ୍ଧବିଶ୍ୱାସରେ ଆସ୍ଥା ସ୍ଥାପନ କରନ୍ତି । ଚିକିତ୍ସା ବିଜ୍ଞାନର ବିକାଶ ପୂର୍ବରୁ ନାନା ରୋଗ, ମହାମାରୀ ଇତ୍ୟାଦିକୁ ଲୋକମାନେ ଦୈବୀଦଣ୍ଡ ବୋଲି ଗ୍ରହଣ କରୁଥିଲେ । ଚିକିତ୍ସା ବିଜ୍ଞାନର କ୍ରମୋନ୍ନତି ଯୋଗୁ ସେ ପ୍ରକାର ବିଶ୍ୱାସ ଏବେ ବହୁ ସମାଜରୁ ଦୂର ହେବାରେ ଲାଗିଛି । ସେହିପରି ଭୂତ, ପ୍ରେତ, ଡାହାଣି ଇତ୍ୟାଦି ଭାବନା ଏବେ ବି ବିଭିନ୍ନ ସମାଜରେ ରହିଛି । ଗୋଟିଏ ସମୟରେ ବିଭିନ୍ନ ମାନସିକ ବିକୃତିମାନଙ୍କୁ ଲୋକମାନେ ଅବାସ୍ତବ ଭାବେ ଭୂତଲାଗିବା, ମନ୍ଦାତ୍ମା ପ୍ରବେଶ କରିବା ବୋଲି ଭାବି ଆସିଥିଲେ । ମନୋବିଜ୍ଞାନ ଓ ଚିକିତ୍ସାବିଜ୍ଞାନର ବିକାଶଦ୍ୱାରା ସମାଜରୁ ଏହି ସବୁ ବିଶ୍ୱାସ ଦୂରହେବାରେ ଲାଗିଛି । ଏହି ପରିପ୍ରେକ୍ଷୀରେ କୁହାଯାଇପାରେ ଯେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ କୁସଂସ୍କାର ଭିତରେ ବିପରୀତମୁଖୀ ପରିବର୍ତ୍ତନ ସମ୍ବନ୍ଧ ରହିଛି । ଯେଉଁ ସମାଜରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାର ଯେତେ ଅଧିକ, ସେହି ସମାଜରେ କୁସଂସ୍କାରର ମାତ୍ରା ସେତେ କମ୍, ଯେଉଁ ସମାଜରେ ବୈଜ୍ଞାନିକ ମାନସିକତାର ପ୍ରସାର ଯେତେ କମ୍, ସେହି ସମାଜରେ କୁସଂସ୍କାରର ପ୍ରସାର ସେତେ ଅଧିକ । କୁସଂସ୍କାର ମାନସିକ ଜଡତା ଓ ସାମାଜିକ ଅନଗ୍ରସରତାର ଯେ ଏକ ପ୍ରତିଫଳନ ଏହା କୁହାଯାଇପାରେ । ଯେଉଁ ସମାଜରେ ହତାଶା, ନୈରାଶ୍ୟବୋଧ ଓ ସାମାଜିକ ବ୍ୟବସ୍ଥା ଉପରେ ଅନାସ୍ଥା ଭାବ ଅଧିକ ସେଠାରେ ଲୋକମାନେ ବହୁ କୁସଂସ୍କାର ଓ ପାରଲୌକିକ ବିଶ୍ୱାସ ଉପରେ ବିଶ୍ୱାସ କରିବା ଦେଖାଯାଏ । ଅଶିକ୍ଷା, ଭୟ, ନିରାପଦବିହୀନ ସାମାଜିକ ପରିସ୍ଥିତି ଓ ବୈଜ୍ଞାନିକ ମନୋଭାବର ଅଭାବ କୁସଂସ୍କାର ଓ ଅନ୍ଧବିଶ୍ୱାସର ପ୍ରସାର ପାଇଁ ଉର୍ବର କ୍ଷେତ୍ର ଯୋଗାଇଥାଏ ।

ହେତୁବାଦୀ ଜୀବନବୋଧରେ ନୀତି, ନୈତିକତା ଓ ମାନବିକ ମୂଲ୍ୟବୋଧକୁ ମହତ୍ତ୍ୱପୂର୍ଣ୍ଣ ଭୂମିକା ଦିଆଯାଏ । ନୈତିକ ମୂଲ୍ୟଚୟ ସାମାଜିକ ସମ୍ବନ୍ଧ କ୍ଷେତ୍ରରେ ଅବଶ୍ୟମ୍ଭାବୀ ମନେହୁଏ । ଜୀବନର ଅନୁଭୂତି ଓ ଅର୍ଥପୂର୍ଣ୍ଣ ସାମାଜିକ ସଂପର୍କ ବିଷୟରେ ବିଚାରଶୀଳ

ଅନୁଶୀଳନ ମଧ୍ୟ ଦେଇ ନୀତି, ନୈତିକତାର ଅଭ୍ୟୁଦୟ ହୋଇଛି । ମାନବବାଦ ଓ ବ୍ୟକ୍ତିମର୍ଯ୍ୟାଦାବୋଧକୁ ଗଭୀର ମୂଲ୍ୟ ଦେଉଥିବା ହେତୁବାଦ ନୈତିକ ଆଚରଣକୁ ସଭ୍ୟ ଜୀବନଧାରାର ଅବଶ୍ୟମ୍ଭାବୀ ଆଦର୍ଶ ଭାବେ ଗ୍ରହଣ କରେ । ହେତୁବାଦୀ ବିଚାରବୋଧରେ ନୈତିକତା ଏକ ସାମାଜିକ କର୍ତ୍ତବ୍ୟ । ଏହା ସହିତ କୌଣସି ପାରଲୌକିକ ଦୃଷ୍ଟିର ସମ୍ବନ୍ଧ ନାହିଁ । ସତ୍ୟ, ନ୍ୟାୟ, ସମ୍ବେଦନଶୀଳତା, ମାନବିକ ସଂପ୍ରୀତି, ସମତାର ମନୋଭାବ ଇତ୍ୟାଦି ମୂଲ୍ୟଚୟମାନ ଏକ ଗୁଣାତ୍ମକ ଜୀବନର ମାନଦଣ୍ଡ । ବ୍ୟକ୍ତି ଓ ଗୋଷ୍ଠୀ ଜୀବନରେ ଏହି ମୂଲ୍ୟଚୟର ପ୍ରତିଫଳନ ଜୀବନର ଉତ୍କୃଷ୍ଟତାର ସ୍ୱାକ୍ଷର ବହନ କରେ । ହେତୁବାଦ ମାନବିକ ମୂଲ୍ୟବୋଧକୁ ସାମାଜିକ କର୍ତ୍ତବ୍ୟ ଭାବରେ ଗ୍ରହଣ କରେ ଓ ଏହାଦ୍ୱାରା ଆମର ସକଳ ସାମାଜିକ ସମ୍ବନ୍ଧ ନ୍ୟାୟପୂର୍ଣ୍ଣ ଓ ପ୍ରୀତିପୂର୍ଣ୍ଣ ହୋଇପାରିବ ବୋଲି ବିଚାର ବ୍ୟକ୍ତ କରିଥାଏ ।

ବସ୍ତୁତଃ ହେତୁବାଦ ଏକ ଜୀବନ-ଦର୍ଶନ ଓ ଏହାର ବୌଦ୍ଧିକ, ବ୍ୟାବହାରିକ ଓ ନୈତିକ ଦିଗନ୍ତ ବିଚାରଶୀଳତାର ପ୍ରାଧାନ୍ୟ ଉପରେ ପର୍ଯ୍ୟବସିତ ଥିବା ମନେହୁଏ ।

ଏହି ସଂକଳନଟିରେ ରହିଥିବା ବତିଶଟି ପ୍ରବନ୍ଧକୁ କେତୋଟି ଶ୍ରେଣୀରେ ବିଭକ୍ତ କରାଯାଇଛି । ଏହି ଶ୍ରେଣୀ ବିଭାଜନ ପଶ୍ଚାତରେ ସେପରି କିଛି ନିର୍ଦ୍ଦିଷ୍ଟ ମାନଦଣ୍ଡ ନାହିଁ । ତେବେ ପ୍ରବନ୍ଧମାନଙ୍କରେ ବିଭିନ୍ନ ପ୍ରସଙ୍ଗ ଉପରେ ଯେଉଁ ଅନୁଶୀଳନମାନ ହୋଇଛି, ତାହା ଭିତରର ମୁଖ୍ୟ ପ୍ରସଙ୍ଗମାନଙ୍କୁ ବିଚାରକରି ସେମାନଙ୍କୁ ସୁନିର୍ଦ୍ଦିଷ୍ଟ ଏକ ଶ୍ରେଣୀରେ ସଂଯୁକ୍ତ କରାଯାଇଛି । ସଂକଳନର ପ୍ରବନ୍ଧ ମାନଙ୍କୁ ଛ'ଟି ଶ୍ରେଣୀରେ ବିଭକ୍ତ କରାଯାଇଛି; ଯଥା:-

(୧) ହେତୁବାଦ : ବୈଚାରିକ ଦୃଷ୍ଟିଭଙ୍ଗୀ

(୨) ହେତୁବାଦ ବନାମ କୁସଂସ୍କାର

(୩) ବୈଜ୍ଞାନିକ ସିଦ୍ଧାନ୍ତ

(୪) ଚିକିତ୍ସା ବିଜ୍ଞାନ ଓ ମନୋବୈଜ୍ଞାନିକ ବିଶ୍ଳେଷଣ

(୫) ସାମାଜିକ ସମସ୍ୟା ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ

(୬) ମାନବିକ ଅଧିକାର

ଏହି ପ୍ରତ୍ୟେକଟି ବିଭାଗରେ ଏକାଧିକ ପ୍ରବନ୍ଧ ସ୍ଥାନ ପାଇଛି । ଏକ ନିର୍ଦ୍ଦିଷ୍ଟ ପ୍ରସଙ୍ଗ ଉପରେ ଏକ ବିସ୍ତାରିତ ଚିତ୍ର ସେହି ବିଭାଗର ସମସ୍ତ ପ୍ରବନ୍ଧମାନଙ୍କ ମଧ୍ୟରୁ ମିଳିପାରିବ ବୋଲି ଆଶା କରାଯାଏ । "ହେତୁବାଦର ବୈଚାରିକ ଦୃଷ୍ଟିଭଙ୍ଗୀ" କ୍ଷେତ୍ରରେ ହେତୁବାଦ ସଂପର୍କରେ କେତେକ ବିଶ୍ଳେଷଣାତ୍ମକ ଭାବନା ରହିଛି । ଆମର ଚିନ୍ତା ଚେତନା କିପରି

ଅଗ୍ରଗତି କରିଛି ଓ ଚେତନାର ବିକାଶ ଭିତରେ ଧର୍ମ, ଈଶ୍ୱର ଭାବନାର କିପରି ଅଭ୍ୟୁଦୟ ହୋଇଛି ସେହି ସଂପର୍କିତ କିଛି ଲେଖା ରହିଛି । ଏକ ଈଶ୍ୱର-କୈନ୍ଦ୍ରିକ ଜୀବନଦୃଷ୍ଟିକୁ ଗ୍ରହଣ କଲେ ସେହି ପରିସରରେ ମାନବିକ ଦୁଃଖଦୁର୍ଦ୍ଦଶା ଓ ପ୍ରାକୃତିକ ଦୁର୍ବିପାକ କି ପ୍ରକାରର ତାର୍କିକ ସମସ୍ୟା ସୃଷ୍ଟି କରିବ ତାହାର କିଛି ବିଶ୍ଳେଷଣ ରହିଛି । ସତ୍ୟର ସ୍ୱରୂପ କି ପ୍ରକାରର ଓ ବିଜ୍ଞାନ, ଧର୍ମ, ସାଧାରଣ ଜୀବନ କ୍ଷେତ୍ରରେ ସତ୍ୟର କ'ଣ ତାତ୍ପର୍ଯ୍ୟ ରହିଛି ତାହାର କିଛି ଦାର୍ଶନିକ ଅନୁଶୀଳନ ମଧ୍ୟ ରହିଛି । ଧର୍ମାନ୍ଧତା କିପରି ମାନବ ସଭ୍ୟତା ପାଇଁ ଆହ୍ୱାନ ଓ ସାଂପ୍ରତିକ ବିଶ୍ୱରେ ଧର୍ମାନ୍ଧତା କିପରି ନାନା ସଂତ୍ରାସବାଦ, ମୌଳବାଦ ଓ ସାଂପ୍ରଦାୟିକତାବାଦ ପାଇଁ ପ୍ରେରଣା ଯୋଗାଉଛି ତାହାର କିଛି ଝଲକ ରହିଛି । ଏହା ସହିତ ହେତୁବାଦ କାହିଁକି ଏକ ସୁସ୍ଥ ସମାଜ ପାଇଁ ଆବଶ୍ୟକ ତାହାର କିଛି ଚିତ୍ର ରହିଛି ।

"ହେତୁବାଦ ଓ କୁସଂସ୍କାର" ବିଭାଗରେ ରହିଛି ସାତଟି ମନନଧର୍ମୀ ପ୍ରବନ୍ଧ । ଗୋଟିଏ ପ୍ରବନ୍ଧରେ ଦୁଇଟି ବାସ୍ତବ ଘଟଣାର ଅବତାରଣା କରାଯାଇ ଧାର୍ମିକ ବିଶ୍ୱାସ ଆଧାରରେ କିପରି ଜନସାଧାରଣଙ୍କୁ ଶୋଷଣ କରାଯାଇପାରେ ତାହାର ଚିତ୍ର ରହିଛି । ଆମ ସମାଜରେ ଏହି ପ୍ରକାରର ଘଟଣା ଘଟିବା ଏକ ସାଧାରଣ ଘଟଣା ଓ ସେସବୁର ଅନୁସନ୍ଧାନ ଦ୍ୱାରା ସତ୍ୟ କିପରି ଲୋକଲୋଚନକୁ ଆସେ ତାହାର ମାର୍ମିକ ଅଭିବ୍ୟକ୍ତି ରହିଛି । ବୌଦ୍ଧିକ ଅନ୍ଧବିଶ୍ୱାସ ଓଡିଶା ପୃଷ୍ଠଭୂମିରେ କେତେ ବ୍ୟାପକ ଭାବରେ ରହିଛି ତାହାର ଚିତ୍ର ଦେଇଥାଏ । ସତ୍ୟର ସ୍ୱରୂପକୁ ଜାଣିବାକୁ ପ୍ରୟାସ ନକଲେ କିମ୍ବା ଅନୁସନ୍ଧିତ୍ସୁ ନ ହେଲେ ଓ ସମାଜର ପ୍ରଚଳିତ ବିଶ୍ୱାସ ମାନଙ୍କୁ ଗ୍ରହଣ କରିନେଲେ କିପରି ବୌଦ୍ଧିକ ଜଡତା ସୃଷ୍ଟି ହୁଏ ସେହି ସମ୍ପର୍କରେ କେତେକ ପ୍ରବନ୍ଧ ସ୍ପଷ୍ଟ ଚିତ୍ର ବହନ କରେ । ସାମାଜିକ ଜୀବନ ପ୍ରବାହର ବିଭିନ୍ନ ସ୍ତରରେ ଅନ୍ଧବିଶ୍ୱାସ କିପରି ବ୍ୟାପକ ଭାବେ ରହିଛି ତାହାର ବିଶ୍ଳେଷଣ କେତେକ ପ୍ରବନ୍ଧରେ ରହିଛି । ସାମାଜିକ ଜୀବନରେ ଫଳିତ ଜ୍ୟୋତିଷକୁ ନେଇ କିପରି ବ୍ୟାପକ ବିଶ୍ୱାସ ରହିଛି, କିନ୍ତୁ ସେସବୁ ବିଶ୍ୱାସର କିପରି କିଛି ବୈଜ୍ଞାନିକ ବା ଯୁକ୍ତିଶୀଳ ଭିତ୍ତି ନାହିଁ ଗୋଟିଏ ପ୍ରବନ୍ଧରେ ତାର ବ୍ୟାଖ୍ୟା କରାଯାଇଛି । ପୁନଶ୍ଚ ଆମର ପର୍ବପର୍ବାଣି, ଆମର ପରିବେଶର ପ୍ରଦୂଷଣ ପାଇଁ କିପରି ଦାୟୀ ତାହାର କେତେକ ତଥ୍ୟ ରହିଛି । ସଂପ୍ରତି ସାରା ବିଶ୍ୱରେ ପରିବେଶ ପ୍ରଦୂଷଣ ଏକ ଗମ୍ଭୀର ସମସ୍ୟା ଓ ସେହି ପ୍ରଦୂଷଣ କ୍ଷେତ୍ରରେ ଧାର୍ମିକ ଉପଚାର, କର୍ମକାଣ୍ଡ ଓ ଆମର ଅହେତୁକ ବିଶ୍ୱାସ କିପରି ଇନ୍ଧନ ଯୋଗାଉଛି ତାହାର ସୂଚନା ରହିଛି । ଅନ୍ଧବିଶ୍ୱାସ ସମାଜରେ ଅନୈତିକତା ପ୍ରସାର କ୍ଷେତ୍ରରେ କିପିରି କାରଣ ହେଉଛି ତାହାର କେତେକ ଚିତ୍ର ରହିଛି ।

ବୈଜ୍ଞାନିକ ସିଦ୍ଧାନ୍ତ ଶ୍ରେଣୀରେ ରହିଛି ଛ'ଟି ଚିନ୍ତାଦ୍ୟୋତକ ପ୍ରବନ୍ଧ । ମାନବିକ ସୃଜନଶୀଳତା କିପରି ସଭ୍ୟତାର ବିକାଶରେ ନିର୍ଣ୍ଣାୟକ ଭିତ୍ତି ନେଇଛି ଓ ସେହି ସୃଜନଶୀଳତାର ଉତ୍ସ କ'ଣ ତାହାର ବିଶ୍ଳେଷଣ ରହିଛି । ଜଗତ ପ୍ରତି ଭାବବାଦୀ ଦୃଷ୍ଟିଭଙ୍ଗୀ ଓ ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ ଭିତରେ ରହିଥିବା ପାର୍ଥକ୍ୟର ତୁଳନାତ୍ମକ ଚିତ୍ର ଏକ ପ୍ରବନ୍ଧରେ ରହିଛି । ବିଶେଷକରି ବିବର୍ତ୍ତନବାଦ ଜନିତ ବୈଜ୍ଞାନିକ ସିଦ୍ଧାନ୍ତର ବିକାଶ କିପରି ଯୁଗ ଯୁଗର ଧାର୍ମିକ ବିଶ୍ୱାସର ଭିତ୍ତିକୁ ଆହ୍ୱାନ ଦେଇଛି ତାହାର ବ୍ୟାଖ୍ୟା କେତେକ ପ୍ରବନ୍ଧରେ ରହିଛି । ପ୍ରାଣୀଜଗତର ଉତ୍ପତ୍ତି ନେଇ ବିଜ୍ଞାନ ମାତ୍ର ଦୁଇ ଶହ ବର୍ଷ ତଳେ ଯେଉଁ ତଥ୍ୟଭିତ୍ତିକ ଚିତ୍ର ପ୍ରଦାନ କଲା ତାହା ଜ୍ଞାନର ଦିଗନ୍ତକୁ ବିସ୍ତାରିତ କରିବା ସହ ଅନେକ କାଳ୍ପନିକ ସିଦ୍ଧାନ୍ତର ଜବନିକା ଟାଣିଲା । ଏ ସଂପର୍କିତ କିଛି ବିଶ୍ଳେଷଣ ଏହି ପ୍ରବନ୍ଧମାନଙ୍କରେ ଆଲୋଚିତ ହୋଇଛି । ଏହା ସହିତ ସକଳ ଚମତ୍କାରିତାର ଭାବନା କପିରି ଅଜ୍ଞତାର ପ୍ରତୀକ ତାହାର ବ୍ୟାଖ୍ୟା ଏଥିରେ ଦୃଷ୍ଟିପଥକୁ ଆସିଥାଏ । ପ୍ରକୃତିରେ ବହୁ ରହସ୍ୟ ରହିଛି, ହେଲେ ପ୍ରାକୃତିକ-ନିୟମ ବିରୋଧୀ ଚମତ୍କାରିତା ଯେ ବାସ୍ତବରେ ନାହିଁ ଓ ଏହା ଏକ ମାନସିକ ବିଭ୍ରାନ୍ତି ତାହାର ବିଶ୍ଳେଷଣ ମଧ୍ୟ ରହିଛି । ବୈଜ୍ଞାନିକ ସିଦ୍ଧାନ୍ତମାନ ତଥ୍ୟାଧାରିତ, ପରୀକ୍ଷିତ ଓ ସତ୍ୟଭିତ୍ତିକ ହୋଇଥିବାରୁ ଏହା ହିଁ ଗ୍ରହଣ ଯୋଗ୍ୟ ଓ ଯାହା ଅବୈଜ୍ଞାନିକ ତାହା ବର୍ଜନୀୟ କାରଣ ତାହା ଅସତ୍ୟ । ଏହି ଚିତ୍ର ଏହି ପ୍ରବନ୍ଧମାନଙ୍କର ନିଷ୍କର୍ଷ ଭାବେ ଆଲୋଚିତ ହୋଇଛି ।

ଚିକିତ୍ସା ବିଜ୍ଞାନ ଓ ମନୋବୈଜ୍ଞାନିକ ବିଶ୍ଳେଷଣ କ୍ଷେତ୍ରରେ ଚାରୋଟି ବିଚାରଧର୍ମୀ ପ୍ରବନ୍ଧ ସ୍ଥାନିତ ହୋଇଛି । ଚିକିତ୍ସା ବିଜ୍ଞାନର ଯୁଗାନ୍ତକାରୀ ଆବିଷ୍କାର ଓ ଉଦ୍ଭାବନ ମାନ ସଭ୍ୟତାର ଅଗ୍ରଗତି ପାଇଁ କିପରି ସହାୟକ ହୋଇଛି ତାହାର ବିଶ୍ଳେଷଣ ରହିଛି । ଆଧୁନିକ ଚିକିତ୍ସା ବିଜ୍ଞାନ କିପରି ଜୀବନକୁ ଯନ୍ତ୍ରଣାମୁକ୍ତ କରିପାରିଛି, ମହାମାରୀ ମାନଙ୍କୁ ଦୂର କରିପାରିଛି ଓ ଜୀବନର ମାନ ବୃଦ୍ଧି କରିଛି ତାହାର ଏକ ବିସ୍ତୃତ ଚିତ୍ର ଦିଆଯାଇଛି । ସେହିପରି ମାନସିକ ରୋଗ ବା ବିକୃତିର କାରଣ କିପରି ମନୋବିଜ୍ଞାନର ବିକାଶଦ୍ୱାରା ଜଣାପଡିଛି ଓ ତାହାଦ୍ୱାରା ମାନସିକ ବିକୃତିର ଚିକିତ୍ସା ସମ୍ଭବ ହୋଇଛି ତାହାର ବିଶ୍ଳେଷଣ ରହିଛି । ସଂପ୍ରତି ସମସ୍ୟା ବହୁଳ ଓ ପ୍ରତିଯୋଗିତାମୂଳକ ଦୁନିଆରେ ତଥାପି ମଣିଷ ସୁସ୍ଥ ଓ ଦୀର୍ଘ ଜୀବନ ବଞ୍ଚିବାକୁ ସମର୍ଥ ହେବା ପଶ୍ଚାତରେ ଚିକିତ୍ସା ବିଜ୍ଞାନର ଅବଦାନ ମୁଖ୍ୟ ଭୂମିକା ନେଇପାରିଛି । ଏପରିକି ମୃତବ୍ୟକ୍ତିର ଅଙ୍ଗ କୌଣସି ରୋଗାକ୍ରାନ୍ତ ବ୍ୟକ୍ତି ପାଖରେ ପ୍ରତିରୋପଣ କରିବାର ଜ୍ଞାନ ଚିକିତ୍ସା ବିଜ୍ଞାନର ଚମକ କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ସବୁ ପ୍ରସଙ୍ଗ ମାନ ଏହି ବିଭାଗର ପ୍ରବନ୍ଧମାନଙ୍କରେ ଆଲୋଚିତ ହୋଇଛି ।

# ବିଚାରଧାରାର ପତନ ଓ ଅଭ୍ୟୁଦୟ

*ଶ୍ରୀ କିଶନ ପଟ୍ଟନାୟକ*

ଆଧୁନିକ ମନୁଷ୍ୟର କାଳ-ବୋଧର ଏକ ଉଦାହରଣ ଗତ ଦଶନ୍ଧି ଭିତରେ ଆମର ଅନୁଭବକୁ ଆସିଲା । ମନୁଷ୍ୟ ଜାତିର ଆଗାମୀ ସମୟକୁ କିଛିଲୋକ, କେତେକ ରାଜନେତା ଓ ବୁଦ୍ଧିଜୀବୀ ଏକବିଂଶ ଶତାବ୍ଦୀ ରୂପେ ଚିତ୍ରଣ କରିବା ଆରମ୍ଭ କରିଥିଲେ । ପରବର୍ତ୍ତୀ ସମୟରେ ଶତାବ୍ଦୀ ସ୍ଥାନ ସହସ୍ରାବ୍ଦୀ ନେଇଗଲା । ଦୁନିଆର ଶାସକବର୍ଗ ଏବଂ ତାଙ୍କର ବୁଦ୍ଧିଜୀବୀମାନେ ସହସ୍ରାବ୍ଦୀର ପକ୍ଷ ନେଲେ । ତେଣୁ ଶତାବ୍ଦୀ ଲୋପ ପାଇଲା ।

ଉଭୟ ମଧ୍ୟରେ ଗୁଣାତ୍ମକ ଅନ୍ତର ଅଛି । ଆଗାମୀ ସମୟର ବାସ୍ତବିକ ବୋଧ ସହସ୍ରାବ୍ଦୀର ହୋଇପାରେନା । ମନୁଷ୍ୟ ପାଖରେ ଯେତିକି ଜ୍ଞାନ ଓ ବୋଧଶକ୍ତି ଅଛି, ତାହା ସାହାଯ୍ୟରେ ଏକହଜାର ବର୍ଷର କୌଣସି ମୋଟା ରୂପଚିତ୍ର ଅଙ୍କାଯାଇ ପାରିବ ନାହିଁ । ସଂବେଦନଶୀଳ ଓ ବୁଦ୍ଧିସଂପନ୍ନ ଲୋକମାନେ ଅବଶ୍ୟ ଆଗାମୀ ଶହେବର୍ଷର ଏକ ରୂପରେଖ ଦେଇପାରିବେ । କେବଳ ତାହା ନୁହେଁ, ଯେଉଁମାନଙ୍କର ଦୀର୍ଘ-ଦୃଷ୍ଟି ଅଛି ଓ ସଂକଳ୍ପକ୍ଷମତା ଅଛି , ସେମାନେ ଆଗାମୀ ଶହେବର୍ଷ ପାଇଁ ମାନବକଲ୍ୟାଣର ଯୋଜନା ମଧ୍ୟ ପ୍ରସ୍ତୁତ କରିପାରିବେ । ସହସ୍ର ବର୍ଷର ଅନ୍ତରାଳରେ କଣ ଘଟିବ, ଏହି ପ୍ରଶ୍ନର ଯେକୌଣସି ଲୋକ ଯେକୌଣସି ଉତ୍ତର ଦେଇପାରିବେ । ତାହାକୁ ଖଣ୍ଡନ କରିବାର ଉପାୟ ନାହିଁ, କିମ୍ବା ପ୍ରମାଣିତ କରିବାର ପଦ୍ଧତି ନାହିଁ ।

ଦେଢ଼ ଦଶନ୍ଧି ପୂର୍ବେ ଯେତେବେଳେ ଶତାବ୍ଦୀର ଶବ୍ଦାବଳୀ ପ୍ରଚଳିତ ଥିଲା, ସେତେବେଳେ ଏକବିଂଶ ଶତାବ୍ଦୀକୁ ଏକ ସ୍ୱର୍ଣ୍ଣଯୁଗ ଭାବରେ ଚିତ୍ରିତ କରିବା ପାଇଁ ଶ୍ରେଣୀର ରାଜନେତା ଓ ତାଙ୍କର ବୁଦ୍ଧିଜୀବୀମାନେ ଚେଷ୍ଟା କରିଥିଲେ । କିନ୍ତୁ ଶତାବ୍ଦୀର ଚିନ୍ତାରୁ ଭବିଷ୍ୟତରେ ଏପରି ଆଭାସ ମିଳିଲା ଯେ, ସେମାନେ ଆଉ ଉତ୍ସାହିତ ହେଲେ ନାହିଁ ।

ଆଗାମୀ ଶହେ ବର୍ଷର ସମୟକୁ ସ୍ୱର୍ଣ୍ଣଯୁଗ ଭାବରେ ପ୍ରଚାରିତ କଲେ ବିଶ୍ୱର ଜନସାଧାରଣ କିମ୍ବା ତାଙ୍କର ଯୁବପିଢ଼ି ତାକୁ ଗ୍ରହଣ କରିପାରିବେ ନାହିଁ । କାରଣ ଜଣେ ବୁଦ୍ଧି ସଂପନ୍ନ ଲୋକ ତିରିଶ ବର୍ଷର ଭବିଷ୍ୟତକୁ ଅନୁମାନ କରିନେବ । ସେ ନିଶ୍ଚୟ ବୁଝିପାରିବ ଯେ, ତାର ନିଜର ଜୀବନକାଳ ଭିତରେ ମାନବୀୟ ସୁଖଦୁଃଖର ପରିସ୍ଥିତିରେ କେତେ ଉନ୍ନତି ଘଟିପାରିବ । ସତ କହିବାକୁ ଗଲେ ସଦ୍ୟ ଆଗତ ଏହି ଶତାବ୍ଦୀ, କିମ୍ବା ଅନ୍ତତଃ ଏହାର ପ୍ରଥମାର୍ଦ୍ଧ ମାନବ ଇତିହାସର ବର୍ବରତମ ଯୁଗ ହୋଇପାରେ । ଯେତେ ବେଶୀ ସାମାଜିକ-ଅର୍ଥନୈତିକ ବିଷମତା, କାଙ୍ଗାଳତା, ବେମାରୀ, ଜୀବନ ଧାରଣର ଅନିଶ୍ଚିତତା, ହିଂସା, ଅପରାଧ ଓ ଯୌନ ଶୋଷଣ ଆଗାମୀ ଅର୍ଦ୍ଧ ଶତାବ୍ଦୀରେ ହେବାକୁ ଯାଉଛି, ବିଗତ ଛଅ ହଜାର ବର୍ଷର ଇତିହାସରେ ଉଲ୍ଲିଖିତ ସଭ୍ୟତାମାନଙ୍କର ସମାଜରେ ତାହା ନଥିଲା । ଗୋଟିଏ ହାରାହାରି ବ୍ୟକ୍ତିପାଇଁ ଉପଲବ୍ଧ ପ୍ରାକୃତିକ ସଂସାଧନର ଏତେ ଅଲ୍ପତା କେବେ ମଧ୍ୟ ନଥିଲା । ସବୁଠାରୁ ବେଶୀ ଅଭାବ ଜ୍ଞାନର ହେବାକୁ ଯାଉଛି । ଜ୍ଞାନ ପ୍ରତି ଏତେ ଅବିଶ୍ୱାସ କେବେ ନଥିଲା ।

ଜନସାଧାରଣଙ୍କ ପାଇଁ ଜ୍ଞାନ କେବେ ଧର୍ମ ଆକାରରେ ଆସିଥିଲା, ପୁଣି ତାହା ଶାସ୍ତ୍ର ଏବଂ ବିଚାରଧାରାର ରୂପ ନେଇ ଆସିଲା । ଆଜି ତଥ୍ୟ ବା ସୂଚନାକୁ ଜ୍ଞାନ ରୂପେ ପ୍ରସାରିତ କରିବାର୍ ଏକ ଚେଷ୍ଟା ଚାଲିଛି । ସୂଚନା ଏବଂ ଜ୍ଞାନ ସମାନଅର୍ଥକ ନୁହନ୍ତି, କିନ୍ତୁ କେତେକ ଶକ୍ତିଶାଳୀ ଆନ୍ତର୍ଜାତିକ ସଂସ୍ଥା ଉଭୟକୁ ଏକ ଅର୍ଥରେ ପ୍ରଚଳିତ କରାଇବାର ଚେଷ୍ଟାରେ ଅଛନ୍ତି । ତାହାହେଲେ ଜ୍ଞାନ ଅନେକ ନହୋଇ ଏକ ହୋଇଯିବ ଏବଂ ସବୁ ମନୁଷ୍ୟଙ୍କୁ ଗୋଟିଏ ଢ଼ଙ୍ଗରେ ବିଚାରବଦ୍ଧ କରି ଦିଆଯାଇ ପାରିବ । ଏକାଧିପତି-ସ୍ୱାମୀତ୍ୱ ଦ୍ୱାରା ଚାଳିତ ଇଲେକ୍ଟ୍ରୋନିକ ମାଧ୍ୟମ ଦ୍ୱାରା ଏହା ସମ୍ଭବ ହୋଇପାରିବ । ପ୍ରତ୍ୟେକ ସମାଜର ଏକ ଯୁଗଦୃଷ୍ଟି ଥାଏ । ଏହି ଯୁଗଦୃଷ୍ଟିକୁ ନେଇ ତଥ୍ୟ ଓ ସୂଚନା ଗୁଡ଼ିକୁ ସଙ୍ଗଠିତ କଲେ ଶାସ୍ତ୍ରମାନଙ୍କର ନିର୍ମାଣ ହୁଏ । ଗୋଟିଏ ଶାସ୍ତ୍ରର ଅନେକ ଧାରା ଥାଇପାରେ, କିନ୍ତୁ ସବୁଥିରେ ଏହି ଗୋଟିଏ ଯୁଗଦୃଷ୍ଟି ପ୍ରବାହିତ ହୁଏ । ଊନବିଂଶ ଏବଂ ବିଂଶ ଶତାବ୍ଦୀର ୟୁରୋପରେ ଆଧୁନିକ ଶାସ୍ତ୍ରମାନଙ୍କର ଚରମୋତ୍କର୍ଷ ଘଟିଥିଲା, ଏବଂ ଶାସ୍ତ୍ରମାନଙ୍କୁ ଆଧାର କରି ସାମଗ୍ରିକ ବିଚାରର ବିକାଶ ହୋଇଥିଲା । ଏହି ସାମଗ୍ରିକ ବିଚାରକୁ ହିଁ ଆମେ ବିଚାରଧାରା (ଆଇଡିଓଲୋଜି) ବୋଲି କହୁଁ । ଶାସ୍ତ୍ର ଏବଂ ବିଚାରଧାରାମାନଙ୍କର ଯେଉଁ ଚାପ ସାଧାରଣ ସଚେତ ନାଗରିକର ମସ୍ତିଷ୍କ ଉପରେ ପଡେ ସେଇଥିରୁ ତାହାର ଏକ ସାମଗ୍ରିକବୋଧ ଜାତ ହୁଏ । ତାହାକୁ ନେଇ ସେ ନିଜ ସମାଜର, ରାଷ୍ଟ୍ରର ବା ମାନବୀୟ ସ୍ଥିତିର ଉନ୍ନତି ନିମନ୍ତେ ହେଉଥିବା କାର୍ଯ୍ୟକଳାପର ଅଂଶ ଗ୍ରହଣ କରେ । ମାନବୀୟ ବିକାଶରେ ଜ୍ଞାନର ଏହା ଏକ ନିର୍ଦ୍ଦିଷ୍ଟ ଭୂମିକା ।

ପ୍ରାଚୀନକାଳ ଓ ମଧ୍ୟଯୁଗୀୟ ସମାଜମାନଙ୍କରେ ଧାର୍ମିକ ତଥା ଆଧ୍ୟାତ୍ମିକ ଶାସ୍ତ୍ରଗୁଡିକର ବିଶ୍ୱାସନୀୟତା ସର୍ବାଧିକ ଥିଲା ଏବଂ ଏହା ଗଭୀର ଥିଲା । ଆଧୁନିକ ଯୁଗରେ ଧର୍ମଶାସ୍ତ୍ର ଓ ନୀତିଶାସ୍ତ୍ରମାନଙ୍କର ପ୍ରଭାବକୁ ଗୌଣ ବୋଲି ଧରିବାକୁ ହେବ । ତଥାପି ଅଧିକାଂଶ ମନୁଷ୍ୟର ଅବଚେତନାରେ ଧର୍ମପ୍ରତି ଏବଂ ପାରମ୍ପରିକ ନୀତି ନିୟମ ପ୍ରତି ଯେଉଁ ଆସ୍ଥାଟିକକ ଏବେ ମଧ ରହିଛି, ତାହାର ପରିଧି ଭିତରେ ସମକାଳୀନ ତଥ୍ୟ ସୂଚନାଗୁଡିକୁ ଯୋଡି ଆଧୁନିକ ମନୁଷ୍ୟ ତାର ଏକ ନିଜସ୍ୱ ଦୃଷ୍ଟିକୋଣ ତିଆରି କରୁଛି । ଊନବିଂଶ ଶତାବ୍ଦୀରେ ଆଧୁନିକ ଶାସ୍ତ୍ରମାନଙ୍କ ପ୍ରତି ଅର୍ଥାତ୍ ସାମାଜିକ ବିଜ୍ଞାନ ଓ ଭୌତିକ ବିଜ୍ଞାନଗୁଡିକ ପ୍ରତି ଚରମ ଆସ୍ଥା ପ୍ରକାଶ ପାଇଥିଲା । ବିଂଶ ଶତାବ୍ଦୀ ବିଚାରଧାରାମାନଙ୍କର ଯୁଗ ହେଲା । ରାଷ୍ଟ୍ରବାଦ, ଉଦାରବାଦ, ସାମ୍ୟବାଦ ଓ ସମାଜବାଦ ପ୍ରଭୃତି ସାମାଜିକ-ରାଜନୈତିକ ବିଚାରଧାରା ଦୁନିଆର ସବୁ ଭୂଖଣ୍ଡରେ ପ୍ରଭାବଶାଳୀ ହେଲେ । ବୁଦ୍ଧିଜୀବୀମାନଙ୍କ ଉପରେ ବିଚାରଧାରାର ଏତେ ବେଶୀ ପ୍ରଭାବ ଥିଲାଯେ, ସାହିତ୍ୟ ଓ କଳା ପରି ସୃଜନଧର୍ମୀ କାର୍ଯ୍ୟକଳାପରେ ମଧ୍ୟ ସେମାନେ ବିଚାରଧାରା ଦ୍ୱାରା ଅନୁପ୍ରାଣିତ ହେଲେ । କେତେକ ଉଚ୍ଚକୋଟୀର କବି ଓ କଳାକାର ଫାଶୀବାଦୀ ବିଚାରଧାରାକୁ ମଧ୍ୟ ଗ୍ରହଣ କଲେ । ବରଂ କହିବାକୁ ହେବ ଯେ, ସାହିତ୍ୟିକ-କଳାକାରମାନଙ୍କର ଗୋଟିଏ ଅଂଶ ସବୁବେଳେ ଶକ୍ତିର ଉପାସକ ହୋଇ ଆସିଛି । ସର୍ବଶକ୍ତିମାନ ଶାସକମାନଙ୍କର ବ୍ୟକ୍ତିତ୍ୱରେ ସେମାନେ ମୁକ୍ତିଦାତାର ଦର୍ଶନ ପାଇଥାନ୍ତି । ଏସବୁ କହିବାର ତାତ୍ପର୍ଯ୍ୟ ହେଉଛି ଏହି ଯେ, ସୃଜନ କାର୍ଯ୍ୟଗୁଡିକ କୌଣସି ଏକ ବିଚାର କେନ୍ଦ୍ରରୁ ଉତ୍ପନ୍ନ ହୁଅନ୍ତି କିମ୍ବା ବିଚାର କେନ୍ଦ୍ରକୁ ଉଦ୍ଭାସିତ କରନ୍ତି ।

ଧର୍ମ ଅର୍ଥାତ୍ ଧାର୍ମିକ ବିଚାରଧାରା ଯେତିକି ଗଭୀର ଭାବରେ ମନୁଷ୍ୟର ମନ ଓ ମସ୍ତିଷ୍କକୁ ପ୍ରଭାବିତ କରିଥିଲା, ସାମାଜିକ-ରାଜନୈତିକ ବିଚାରଧାରାଗୁଡ଼ିକର ପ୍ରଭାବ ସେତିକି ଗଭୀର ନହେଲେ ମଧ୍ୟ ବିଶ୍ୱବ୍ୟାପୀ ହୋଇପାରିଥିଲା । ଜ୍ଞାନ ବା ବିଚାର ଉପରେ ଯେଉଁଠି ବିଶ୍ୱାସ ଥାଏ, ସେଠାରେ ଭବିଷ୍ୟତକୁ ଗଢିବାର ବା ପରିସ୍ଥିତିକୁ ବଦଳାଇବାରେ ଏକ ଆଶା ସୃଷ୍ଟି ହୁଏ । ଊନବିଂଶ ଶତାବ୍ଦୀରୁ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଯେତେବେଳେ ଶାସ୍ତ୍ରମାନଙ୍କର ବିଶ୍ୱାସନୀୟତା ଥିଲା, ସେତେବେଳେ ଶିକ୍ଷିତ ଲୋକମାନେ ଭାବୁଥିଲେ ଯେ, ଶାସ୍ତ୍ରବଳରେ ସେମାନେ ସମାଜର ସଂପୃକ୍ତ ବିଭାଗର ସମସ୍ୟା ମାନଙ୍କୁ କୋହଳ କରିଦେଇ ପାରିବେ । ଅଶିକ୍ଷିତ ଓ ଅଳ୍ପ ଶିକ୍ଷିତମାନେ ଭାବୁଥିଲେ ଯେ, ଉଚ୍ଚଶିକ୍ଷିତ ତଥା ବିଶେଷଜ୍ଞମାନେ ସମାଜର ସମସ୍ୟାଗୁଡିକୁ ବୁଝି ସମାଧାନ ପ୍ରସ୍ତୁତ କରିଦେବେ । ବିଶ୍ୱାସ ଓ ଆତ୍ମବିଶ୍ୱାସର ଏହି ବାୟୁମଣ୍ଡଳରେ ପୃଥିବୀର ବହୁ ଲୋକ ନିଜର ଅଳ୍ପକାଳୀନ ସୁଖ ଓ ସ୍ୱାର୍ଥକୁ ଛାଡି ମଣିଷ ଜାତି ପାଇଁ ଏକ କଲ୍ୟାଣକାରୀ ଭବିଷ୍ୟତ ଗଢ଼ିବା କାର୍ଯ୍ୟରେ ସାମିଲ ହେବାକୁ ଚାହୁଁଥିଲେ । ବିଚାରଧାରାଗୁଡିକ ଆଶାବାଦ ଓ ଉତ୍ତେଜନା ସୃଷ୍ଟି କରିପାରୁଥିଲେ, ତେଣୁ ବିଂଶଶତାବ୍ଦୀ ମହା ଆନ୍ଦୋଳନମାନଙ୍କର ଶତାବ୍ଦୀ ହୋଇଗଲା । ସମାଜବାଦୀ, ସାମ୍ୟବାଦୀ ଓ ରାଷ୍ଟ୍ରବାଦର

ବିଚାରରେ ଅନୁପ୍ରାଣିତ ହୋଇ ବିଶ୍ୱର ଲକ୍ଷ ଲକ୍ଷ ଲୋକ ଏବି ବିଚାରଧାରାମାନଙ୍କୁ କାର୍ଯ୍ୟରୂପ ଦେବା ନିମନ୍ତେ ନିଷ୍ଠା ସହିତ ବାହାରିଥିଲେ । ଲୁହ, ଲହୁ, ଲାଠି, ଗୁଳି, ରଚନା, ସଂଘର୍ଷ, ଜୟନାଦ,ଆର୍ତ୍ତନାଦ ଓ ବିଜୟ-ପରାଜୟ ଭିତ୍‌ରେ କେତେ ଦେଶରେ ସାମ୍ୟବାଦ ସ୍ଥାପିତ ହୋଇଗଲା, ଶତାଧିକ ରାଷ୍ଟ୍ର ରାଜନୈତିକ ସ୍ୱାଧୀନତା ପାଇଲେ ଏବଂ କେତେ ଦେଶରେ (ବିଶେଷକରି ୟୁରୋପରେ) ସମାଜବାଦୀମାନେ ଜନକଲ୍ୟାଣ ରାଜ୍ୟ (ଓ୍ୱେଲ୍‌ଫେୟାର ଷ୍ଟେଟ)ର ପ୍ରତିଷ୍ଠା କଲେ । ୧୯୮୦ ବେଳକୁ ଏସବୁ ବିଚାରଧାରାର ଅବସାନ ଆରମ୍ଭ ହୋଇଗଲା । ୧୯୯୦ରେ ସୋଭିଏତ୍ ସଂଘର ବିଘଟନ ହେଲା ଏବଂ ଏହି ତାରିଖ ଇତିହାସର ଏକ ମାଇଲଖୁଣ୍ଟ ଭାବେ ପରିଗଣିତ ହେଲା । ବିଚାରଧାରା ମାନଙ୍କର ପତନର ଏହା ସମୟ । ଏହା କେବଳ ସାମ୍ୟବାଦୀ ବିଚାରଧାରାର ପତନର କାଳବିନ୍ଦୁ ନୁହେଁ । ୟୁରୋପୀୟ ଜ୍ଞାନ ଓ ବିଚାରରୁ ଉଦ୍‌ଭୂତ ସବୁ ପ୍ରକାରର ମାନବକଲ୍ୟାଣକାରୀ, ସମତ୍ୱବାଦୀ, ସ୍ୱାତନ୍ତ୍ର୍ୟବାଦୀ ଆନ୍ଦୋଳନ ମାନଙ୍କର ସତେ ଯେପରି କେନ୍ଦ୍ରସ୍ଥଳ ଭୁଷୁଡି ପଡିଲା । ଯେଉଁମାନଙ୍କର ବିଜୟ ହେଲା, ସେମାନେ ବିଚାରର ଗତିକୁ ବଦଳାଇ ଦେଲେ । ସେମାନେ କହିଲେ, ବଜାର (ପୁଞ୍ଜିବାଦ) ହେଉଛି ସର୍ବୋପରି, ତାର ସଙ୍କଟ ଅଛି, ପରାଜୟ ନାହିଁ । ତାକୁ ବଦଳାଇବାକୁ ଚାହୁଁଥିବା ସବୁ ବିଚାରଧାରା ଗୁଡିକ ଭୁଷୁଡି ପଡିଛନ୍ତି । ଏହା ହେଉଛି ବିଚାରଧାରାର ଅନ୍ତ । ଏହାପରେ ଆଉ ବିଚାର ଉପରେ ଆଧାରିତ କୌଣସି ମହା ଆନ୍ଦୋଳନ ହେବନାହିଁ ।

ଉପରୋକ୍ତ ସବୁ ମାନବକଲ୍ୟାଣକାରୀ, ସମତ୍ୱବାଦୀ, ସ୍ୱାତନ୍ତ୍ର୍ୟବାଦୀ ବିଚାରଧାରାମାନଙ୍କର ଉତ୍ପତ୍ତିସ୍ଥଳ ଥିଲା ୟୁରୋପ । ୟୁରୋପର ସେଇ ଅଂଶ ଯେଉଁଠି ଶିଳ୍ପ ବିପ୍ଳବର ପ୍ରାରମ୍ଭିକ ପ୍ରଭାବ ଅତି ସଘନ ଥିଲା । ଶିଳ୍ପବିପ୍ଳବ ଫଳରେ ଯେଉଁ ନୂଆମାନର ସମୃଦ୍ଧି ଦେଖାଗଲା, ଆହୁରି ଆହୁରି ସମୃଦ୍ଧିର ଯେଉଁ କଳ୍ପନା କରାଗଲା, ଯେଉଁ ଯନ୍ତ୍ରବିପ୍ଳବର ବାଟ ଖୋଲିଗଲା, ଏସବୁ ଦ୍ୱାରା ଉଦ୍‌ବୁଦ୍ଧ ହୋଇ ବିଚାରକ ମାନେ ଚିନ୍ତା କଲେ ଯେ, ସମୃଦ୍ଧିର ସୁଅରେ ଦାରିଦ୍ର୍ୟ, ଅନ୍ୟାୟ ଓ ଶୋଷଣକୁ ମଧ୍ୟ ଲୋପ କରାଯାଇପାରିବ । ଯେଉଁସବୁ ବିଚାରଧାରା ବିଶ୍ୱବ୍ୟାପୀ ପ୍ରଭାବ ପକେଇଲେ ସେମାନଙ୍କର ଉତ୍ପତ୍ତି ଏହିଭଳି ଯନ୍ତ୍ରବିପ୍ଳବ ଓ ଯନ୍ତ୍ରଦ୍ୱାରା ନିର୍ମିତ ଅସରନ୍ତି ସମୃଦ୍ଧିର କଳ୍ପନାର ପରିଧି ଭିତରେ ମାନବ ସମାଜର ଦୁଃଖ,ଦୈନ୍ୟ, ଅତ୍ୟାଚାର ଓ ଶୋଷଣକୁ ସଂପୂର୍ଣ ଦୂରକରି ଦେବାରେ ଉଦ୍ଦାତ୍ତ ସ୍ୱପ୍ନକୁ ପାଶ୍ଚାତ୍ୟର ମନୀଷୀମାନେ ବିଚାରଧାରାର ରୂପଦେଲେ । ଏହା ବୋଧହୁଏ ସେମାନଙ୍କ ପାଇଁ ସ୍ୱାଭାବିକ ଥିଲା । ଏସିଆ ଆଫ୍ରିକାର ନେତାମାନେ ମଧ୍ୟ ଉଚ୍ଚଶିକ୍ଷା ପାଇଁ ପାଶ୍ଚାତ୍ୟଦେଶମାନଙ୍କୁ ଯାଇ ଉପରୋକ୍ତ ମୂଳ ଧାରଣା ଗୁଡିକର ବଶବର୍ତ୍ତୀ ହେଲେ । ସେମାନେ ନିଜ ଦେଶମାନଙ୍କୁ ଫେରିଯାଇ ପ୍ରଚାର କଲେ ଯେ, ଯନ୍ତ୍ରବିପ୍ଳବ ଓ ତଜ୍ଜନତ ସମୃଦ୍ଧି ଦ୍ୱାରା ହିଁ ମାନବର ମୁକ୍ତି ସମ୍ଭବ । କିଏ ପୁଞ୍ଜିବାଦରେ ମୁକ୍ତି ଦେଖିଲା ତ କିଏ ସମାଜବାଦ ଓ ସାମ୍ୟବାଦରେ ମୁକ୍ତି ଦେଖିଲା  କିନ୍ତୁ ମୂଳ ଧାରଣା ହେଉଛି ଯନ୍ତ୍ରବିପ୍ଳବ  ଓ ତଜ୍ଜନିତ ସମୃଦ୍ଧି ଏବଂ ସମୃଦ୍ଧି ବଳରେ ସବୁ ସମସ୍ୟାର ସମାଧାନ ।

ଏହିପରି ଭାବରେ ସମଗ୍ର ବିଶ୍ୱରେ ଉପରୋକ୍ତ ମୂଳଧାରଣାର ପ୍ରଚାର ହୋଇଗଲା । ତେଣୁ ବିଚାରଧାରା ଗୁଡିକର ମଧ୍ୟ ପ୍ରସାର ହେଲା ।

ଗାନ୍ଧୀବାଦକୁ ମଧ୍ୟ ଏକ ବିଚାରଧାରା ରୂପେ ପ୍ରସାରିତ କରିବାରେ ପ୍ରଚେଷ୍ଟା ହୋଇଥିଲା । ଏହି ଚେଷ୍ଟା ସଫଳ ହେଲାନାହିଁ । ଏହାକୁ ଏକ ପୂର୍ଣାଙ୍ଗ ବିଚାରଧାରା ରୂପେ ଗଢିବା ପାଇଁ ବୁଦ୍ଧିଜୀବୀ ଗୋଷ୍ଠୀ ମିଳିଲେ ନାହିଁ । ପାଶ୍ଚାତ୍ୟ ବିଦ୍ୟାରେ ପ୍ରଶିକ୍ଷିତ ମେଧାବୀ ଲୋକମାନେ ଏଥିପ୍ରତି ଆକୃଷ୍ଟ ହେଲେନାହିଁ, କାରଣ ଆଧୁନିକ ଯନ୍ତ୍ରବିଦ୍ୟା ଔପନିବେଶିକ ମସ୍ତିଷ୍କ ପାଇଁ ଏଗୁଡକ ଥିଲା ଧ୍ରୁବ ସତ୍ୟ ଏବଂ ସବୁପ୍ରକାରର ପ୍ରଗତି ପାଇଁ ପ୍ରଥମ ସର୍ତ୍ତ । ଏହି ଯନ୍ତ୍ରବିଦ୍ୟା ସାହାଯ୍ୟରେ ଯେକୌଣସି ଦେଶରେ ଆଧୁନିକ ସମୃଦ୍ଧର ବିକାଶ ହୋଇପାରିବ । ରୁଷର ସାମ୍ୟବାଦୀ ଶାସକମାନେ କହୁଥିଲେ ଯେ, ସୋଭିଏତ୍ ରାଷ୍ଟ୍ର ଅତିଶୀଘ୍ର ଆମେରିକାକୁ ସମୃଦ୍ଧିରେ ଟପିଯିବ । ଚୀନ କମ୍ୟୁନିଷ୍ଟ ହୋଇଯିବା ପରେ ଚୀନର ଶାସକମାନେ କହିଲେ ଯେ, ପ୍ରଥମେ ଚୀନ, ରୁଷର ସମୃଦ୍ଧିକୁ ଟପିଯିବ, ଏବଂ ତା ପରେ ଆମେରିକା ଠାରୁ ଅଧିକ ସମୃଦ୍ଧ ହେବ । ଭାରତର ପ୍ରଧାନମନ୍ତ୍ରୀ ନେହେରୁ ଭାରତର ପଂଚବାର୍ଷିକ ଯୋଜନାଗୁଡିକର ଭିତ୍ତି ସ୍ଥାପନ ସମୟରେ ସେହିଭଳି ସ୍ୱପ୍ନ ଦେଖୁଥିଲେ । ବଡ ବଡ ଶିଳ୍ପ ଓ ପ୍ରକଳ୍ପମାନଙ୍କୁ ସେ ଆଧୁନିକ ମନ୍ଦିରର ଆଖ୍ୟା ଦେଇଥିଲେ । ୧୯୪୫ରୁ ୧୯୬୦ ମଧ୍ୟରେ ବିଭିନ୍ନ ମହାଦେଶର ଔପନିବେଶିକ ରାଷ୍ଟ୍ରମାନେ ରାଜନୈତିକ ସ୍ୱାଧୀନତା ପାଇବା ପରେ ଆର୍ଥିକ ସମୃଦ୍ଧି ଗଢ଼ିତୋଳିବା ନିମନ୍ତେ ପଶ୍ଚିମର ବିକାଶ ପଦ୍ଧତିକୁ ଅନୁସରଣ କଲେ ।

ପ୍ରାୟ କୋଡିଏ ତିରିଶ ବର୍ଷର ଅଭିଜ୍ଞତାରୁ ସେମାନେ ଏତିକି ଜାଣିଲେ ଯେ, ସେମାନେ ଆମେରିକା ହେବେ ନାହିଁ କିମ୍ବା ଜର୍ମାନୀ ବା ବ୍ରିଟେନ ହେବେନାହିଁ । ରୁଷ ବି ଜାଣିଲା, ଚୀନ ବି ଜାଣିଲା, ଭାରତ ବି ଜାଣିଲା, ଆଫ୍ରିକା ମଧ୍ୟ ଜାଣିଲା, ଆରବ ଦେଶମାନେ ମଧ୍ୟ ଜାଣିଲେ । କିନ୍ତୁ ତାଙ୍କର ମୂଳ ବିଚାରକୁ ବଦଳାଇ ପାରିଲେ ନାହିଁ । ବିଚାରଧାରା ଭୁଶୁଡ଼ିପଡିଲା, କାରଣ ମୂଳ ବିଚାରରେ ଭୁଲ ଥିଲା । ଆଧୁନିକ ସମୃଦ୍ଧି ଆମର ଦରକାର ଏବଂ ଚମତ୍କାର ଯନ୍ତ୍ରବିଦ୍ୟା 'ଟେକ୍‌ନୋଲୋଜି' ଦ୍ୱାରା ହିଁ ଆଧୁନିକ ସମୃଦ୍ଧି ହୋଇପାରିବ, ଏହି ବିଶ୍ୱାସ ରହିଗଲା । ୧୯୪୫ରୁ ୧୯୬୦ ମଧରେ ଯେଉଁ ଦେଶମାନେ ରାଜନୈତିକ ସ୍ୱାଧୀନତା ପାଇଲେ ସେମାନେ ତାଙ୍କର ବୁଦ୍ଧିବିଚାରକୁ ସ୍ୱାଧୀନ କରିପାରିଲେ ନାହିଁ । ଆଧୁନିକ ସମୃଦ୍ଧି ଓ ଅତ୍ୟାଧୁନିକ ଟେକ୍‌ନୋଲୋଜିର ମୋହରେ ପଡି ସେମାନେ ଯେଉଁ ଅର୍ଥନୈତିକ ଯୋଜନାମାନ କଲେ, ସେଥିରେ ଶ୍ରେଣୀ ବିଷମତା ଏବଂ ଆଞ୍ଚଳିକ ବିଷମତା ଦେଶଭିତରେ ବଢ଼ିଲା, ୟୁରୋପ ଆମେରିକା ଠାରୁ ସେମାନେ ଆହୁରି ପଛରେ ପଡିଗଲେ, କିନ୍ତୁ ଦେଶ ଭିତରେ ଏକ ନବସମୃଦ୍ଧ ଶ୍ରେଣୀ ସୃଷ୍ଟି ହୋଇଗଲା । କେତେକ ମହାନଗରୀୟ ଇଲାକା ଗଢ଼ି ହୋଇଗଲା । ଟେକ୍‌ନୋଲୋଜି ଓ ସମୃଦ୍ଧି ସେଇଠି ସୀମାବଦ୍ଧ ହୋଇ ରହିଲା ।

ସୋଭିଏତ୍ ସଂଘ ଓ ପୂର୍ବ ୟୁରୋପୀୟ କମ୍ୟୁନିଷ୍ଟ ଦେଶମାନଙ୍କର ବିଘଟନ ଓ ପତନ ବିଂଶ ଶତାବ୍ଦୀର ଏକ ବଡ଼ ଘଟଣା । କିନ୍ତୁ ଏହାର ଅନୁଶୀଳନ ଯଥେଷ୍ଟ ମାତ୍ରାରେ ହୋଇନାହିଁ । ସୋଭିଏତ ରୁଷର ବିଘଟନ କାହିଁକି ହେଲା ? ଓଡିଶା କିମ୍ବା ଭାରତର ବୁଦ୍ଧିଜୀବୀମାନେ ଏହା ବିଶ୍ଳେଷଣ କରି ନାହାନ୍ତି । ୟୁରୋପ, ଆମେରିକାରେ ମଧ୍ୟ ଅଳ୍ପ କିଛି ଗ୍ରନ୍ଥ ଏହି ବିଷୟରେ ଲେଖାହୋଇଛି । କିନ୍ତୁ ଏହାର ଗୋଟିଏ ମୁଖ୍ୟ କାରଣ ଏପର୍ଯ୍ୟନ୍ତ ଚର୍ଚ୍ଚା ଆଲୋଚନା ସ୍ତରକୁ ଆସିନାହିଁ । ରୁଷ ଯଦି ଆମେରିକା ପରି ସମୃଦ୍ଧ ହେବାକୁ ଦୃଢ଼ ସଂକଳ୍ପ କରିଥିଲା, ତାହା ହେଲା ନାହିଁ କାହିଁକି ? ଟେକ୍‌ନୋଲୋଜି ଆଧାରିତ ସମୃଦ୍ଧି ରୁଷରେ ଯାହା ବି ହେଲା, ମସ୍କୋ ଓ ଲେନିନ୍‌ଗ୍ରାଦର ଚାରିପଟେ ହେଲା, କିମ୍ବା ଅଳ୍ପକିଛି ଶିଳ୍ପ ଅଞ୍ଚଳରେ ହେଲା । ଉଜ୍‌ବେକିସ୍ଥାନ, କିରଗିଜିସ୍ତାନ ଆଦି ବିରାଟ ଅଞ୍ଚଳମାନଙ୍କରେ ଆଧୁନିକ ସମୃଦ୍ଧିର ବିକାଶ ଘଟିନାହିଁ । ନଗର ଓ ଗ୍ରାମର ପ୍ରଭେଦ ବଢ଼ି ଚାଲିଲା ।

ଆଗକୁ ଯିବା ପୂର୍ବରୁ ଆମେ ସମୃଦ୍ଧିର ଅବଧାରଣା ବିଷୟରେ ସ୍ପଷ୍ଟ ହୋଇଯିବା ଦରକାର । ସ୍ୱଚ୍ଛଳତା, ସମୃଦ୍ଧି, ପ୍ରାଚୁର୍ଯ୍ୟ, ବୈଭବ–ଏହି ସବୁ ଆଭିଧାନିକ ଶବ୍ଦର ପାରିଭାଷିକ ଅର୍ଥମାନଙ୍କୁ କୌଣସି ଆଧୁନିକ ଭାଷାରେ ସ୍ପଷ୍ଟ କରାଯାଇନାହିଁ । ଏସବୁ ଶବ୍ଦକୁ ସମାନ ଅର୍ଥରେ ବ୍ୟବହାର କରାଯାଇଛି । ସମୃଦ୍ଧି କହିଲେ ଆଧୁନିକ ସମୃଦ୍ଧିକୁ ବୁଝାଉଛି ଏବଂ ଆଧୁନିକ ସମୃଦ୍ଧି କହିଲେ ଆମ ଆଗରେ ଉତ୍ତର ଆମେରିକା ବା ପଶ୍ଚିମ ୟୁରୋପର ଚିତ୍ର ଝୁଲୁଛି । କିନ୍ତୁ କେଉଁ ଅବସ୍ଥାକୁ ଆମେ ସମୃଦ୍ଧ କହିବା ? ସମୃଦ୍ଧ ଶବ୍ଦର ଅର୍ଥହୀନତା ଆମର ବୈଚାରିକ ବାଟବଣା ହେବାର ଏକ ଗୁରୁତ୍ୱପୂର୍ଣ୍ଣ କାରଣ । ଦାରିଦ୍ର୍ୟର ସୀମାରେଖା ତଳେ ଓ ନିମ୍ନ ମଧ୍ୟବିତ୍ତ ଶ୍ରେଣୀ ଭିତରେ ଯେଉଁ ସବୁ କ୍ଷୁଧା, ସ୍ୱାସ୍ଥ୍ୟହୀନତା ଓ ସୁବିଧାମାନଙ୍କର ଘୋର ଅଭାବ ଦେଖୁଛୁ ତାହାକୁ ଦୂର କରିବା ଗୋଟିଏ କଥା । ଦୂର ହେବାପରେ ତାକୁ ଆମେ ସ୍ୱଚ୍ଛଳତା କହିବା । କିନ୍ତୁ ଆଧୁନିକ ସମୃଦ୍ଧି ଆଉ ଗୋଟିଏ ଜିନିଷ । ଆଧୁନିକ ଯୁଗରେ ଆମେରିକାର ସମୃଦ୍ଧି ଯାହା, ମୋଗଲ ସମ୍ରାଟ ସାହାଜାହାଁ କିମ୍ବା ମିଶରର ରାଣୀ କ୍ଲିଓପାଟ୍ରାଙ୍କର ବୈଭବ ସେଇୟା । ଏଇ ଅର୍ଥରେ ବିକାଶଶୀଳ ଦେଶମାନେ କେବେହେଲେ ଆଧୁନିକ ସମୃଦ୍ଧି ପାଇପାରିବେ ନାହିଁ । ଆଧୁନିକ ସମୃଦ୍ଧି କଣ ଆଧୁନିକ ଟେକ୍‌ନୋଲୋଜି ଦ୍ୱାରା ସମ୍ଭବ ନୁହେଁ ? ସମ୍ଭବ ନିଶ୍ଚୟ । କିନ୍ତୁ ଏହି ଟେକ୍‌ନୋଲୋଜି କେବଳ ସାମ୍ରାଜ୍ୟବାଦ-ଉପନିବେଶର ଢାଂଚା ଭିତରେ ସମୃଦ୍ଧି ସୃଷ୍ଟି କରିପାରେ । ଗୋଟିଏ ଅଂଚଳ ଆଉ ଏକ ଅଂଚଳକୁ ନିଜର ବଜାର କରିବ, ତା' ହେଲେ ପ୍ରଥମ ଅଂଚଳ ସାମ୍ରାଜ୍ୟବାଦୀ ହେବ ଓ ଦ୍ୱିତୀୟ ଉପନିବେଶ ହେବ । ୟୁରୋପ ବା ଆମେରିକା ପରେ ସୋଭିଏତ୍ ରୁଷ ପାଖରେ ଯଥେଷ୍ଟ ପରିମାଣର ଉପନିବେଶ ନଥିଲା । ପୂର୍ବ ୟୁରୋପର ଯେଉଁ ଦେଶମାନେ କମ୍ୟୁନିଷ୍ଟ ହେବାପରେ ସୋଭିଏତ ଅଧୀନରେ ଥିଲେ, ସେମାନେ ଗୋଟିଏ ପରେ ଗୋଟିଏ ବିଦ୍ରୋହ କରିବସିଲେ । ତେଣୁ

ରୁଷର ଅଳ୍ପକିଛି ଅଂଚଳକୁ ଆଧୁନିକ ଭାବରେ ସମୃଦ୍ଧ କରିବାକୁ ଯାଇ ବାକି ଅଂଚଳକୁ, ବିଶେଷକରି ଏସିୟ-ଗଣରାଜ୍ୟମାନଙ୍କୁ ପଛୁଆ କରି ରଖିବାକୁ ପଡିଲା । ଆଂଚଳିକ ବୈଷମ ବଢ଼ିଲା ଏବଂ ଏହାହିଁ ବିଘଟନର ମୂଳ କାରଣ ହେଲା । କୌଣସି ଅର୍ଥଶାସ୍ତ୍ରୀ ଉପରୋକ୍ତ ତଥ୍ୟଗୁଡିକୁ ଖଣ୍ଡନ କରିପାରିବେ ନାହିଁ ।

ସୋଭିଏତ ସଂଘର ପତନର ଏହା ହେଉଛି ମୌଳିକ କାରଣ । ଅଗଣତାନ୍ତ୍ରିକ ଶାସନ, ପୁଞ୍ଜିବାଦୀ-ସାମ୍ରାଜ୍ୟବାଦୀ ଷଡଯନ୍ତ୍ର ଇତ୍ୟାଦି କାରଣମାନ ଅସତ୍ୟ ନୁହେଁ, କିନ୍ତୁ ଏହା ତୁଳନାରେ କମ୍ ଗୁରୁତ୍ୱପୂର୍ଣ୍ଣ । କୌଣସି ଅଣସାମ୍ରାଜ୍ୟବାଦୀ ଦେଶ ଆମେରିକା ପରି ସମୃଦ୍ଧ ହୋଇପାରିବ ନାହିଁ, ଯିଏ ଚେଷ୍ଟା କରିବ, ସିଏ ନିଜ ଦେଶ ଭିତରର ଗୋଟିଏ ଅଂଚଳକୁ (ଆଦିବାସୀ ଅଂଚଳକୁ, ଓଡିଶା ପରି ରାଜ୍ୟକୁ) ଉପନିବେଶ ପରି ବ୍ୟବହାର କରିବ । ଏହା ହେଉଛି ଆଧୁନିକ ଟେକ୍‌ନୋଲୋଜିର ଅଭିଶାପ । ଭାରତରେ ହୁରି ପଡିଛି ଯେ, ଚୀନର ବହୁତ ପ୍ରଗତି ହେଉଛି । ଭାରତ ଅପେକ୍ଷା ଦେଢ଼ଗୁଣ ବେଶୀ ପ୍ରଗତି ସେଠାରେ ନିଶ୍ଚୟ ହୋଇଛି । କିନ୍ତୁ ଏହା ଆଧୁନିକ ସମୃଦ୍ଧି ନୁହେଁ । ଚୀନର ବହୁତ ଇଚ୍ଛା ଗୋଟିଏ ସାମ୍ରାଜ୍ୟବାଦୀ ଦେଶ ହେବାକୁ ଏବଂ ଆଖପାଖରେ ଏସିଆର ପଡୋଶୀମାନଙ୍କୁ ନିଜର ଉପନିବେଶ କରିବାକୁ । ତାହା ହୋଇପାରିନାହିଁ । ତେଣୁ ଚୀନର କେବଳ ଅଳ୍ପ କେତେ ଅଂଚଳ ସମୃଦ୍ଧ ହୋଇ ପାରୁଛି । ବାକି ବିଶାଳ ଅଂଚଳ ପଛୁଆ ରହିଛି । ଏହି ବୈଷମ୍ୟ ପୁଣି ବଢ଼ିବାରେ ଲାଗିଛି । ଦକ୍ଷିଣ କୋରିଆର ଜୀବନସ୍ତରକୁ ମଧ୍ୟ ଆସନ୍ତା ଦଶ ବର୍ଷ ଭିତରେ ଚୀନ ପହଂଚି ପାରିବ ନାହିଁ । ଇତିମଧ୍ୟରେ ଅଳ୍ପ ଲୋକକୁ ନେଇ ଚୀନର ଏକ ଧନୀ ଶ୍ରେଣୀ ନିଜକୁ ଏପରି ଦୃଢ଼ କରିନେବ ଯେ, ତାହା ହିଁ ଶାସକ ଶ୍ରେଣୀ ପାଲଟିବ । ଆଧୁନିକ ସମୃଦ୍ଧି ସେମାନଙ୍କ ମଧ୍ୟରେ ସୀମାବଦ୍ଧ ହେବ । ଚୀନର ସାମ୍ୟବାଦୀମାନେ ଗୋଟିଏ ସୁନ୍ଦର ସ୍ଲୋଗାନ ବାହାର କରିଛନ୍ତି ପ୍ରଥମେ ଥୋକେ ଲୋକ ପହଂଚିବେ । ପରେ ସମସ୍ତଙ୍କୁ ଏହା ସୁଲଭ ହେବ ବୋଲି କହିବା ଗୋଟିଏ ବିଦ୍ରୁପ ଛଡା ଆଉ କ'ଣ ହୋଇପାରେ ?

ଏହା ଧ୍ରୁବ ସତ୍ୟ ଯେ ଚୀନ, ଭାରତ କିମ୍ବା ବ୍ରାଜିଲ୍ ଓ ମିଶର ଆଧୁନିକ ସମୃଦ୍ଧି ଲାଭ କରିପାରିବେ ନାହିଁ । ଏହି ବାସ୍ତବିକତାକୁ କୌଣସି ବିଚାରଧାରା କିମ୍ବା ବିଶ୍ୱବିଦ୍ୟାଳୟର ଶାସ୍ତ୍ର ଗ୍ରହଣ କରୁନାହିଁ । ତେଣୁ ନୂତନ ଶାସ୍ତ୍ର ଓ ବିଚାରଧାରାର ଅଭ୍ୟୁଦୟ ହେଉନାହିଁ, ଯାହା ଉପରେ ଲୋକଙ୍କର ବିଶ୍ୱାସ ପ୍ରତିଷ୍ଠିତ ହେବ ।

ଏକ ନୂତନ ବୈକଳ୍ପିକ ବିଚାରଧାରା ପାଇଁ ଚାରିଟି ସ୍ଥାପନା ଦରକାର; ୧. ଆଧୁନିକ ସମୃଦ୍ଧି ଏକ ମିଥ୍ୟା ଆଦର୍ଶ । ସବୁଦେଶ ଏହା ପାଇପାରିବେ ନାହିଁ । କେବଳ ସାମ୍ରାଜ୍ୟବାଦୀମାନେ ଓ ଶୋଷକ ଶ୍ରେଣୀମାନେ ଏହାକୁ ଭୋଗ କରିପାରିବେ । ଏଣୁ ଆମର ଆଦର୍ଶ, ସ୍ୱଚ୍ଛଳ ଜୀବନସ୍ତର, ଯାହା ସମସ୍ତଙ୍କୁ ମିଳିପାରିବ । ୨. ବିଜ୍ଞାନର ସୂତ୍ର ଉପରେ ଆଧୁନିକ ଟେକ୍‌ନୋଲୋଜି ଆଧାରିତ, କିନ୍ତୁ ପ୍ରୟୋଗ ଓ ପରିଣାମ ବୈଜ୍ଞାନିକ ନୁହେଁ; କାରଣ ଏହାର

ପ୍ରୟୋଗ ହିଁ ପ୍ରକୃତି ପାଇଁ ଧ୍ୱଂସକାରୀ ହେବା ସଙ୍ଗେ ଜନସାଧାରଣଙ୍କ ପାଇଁ ଶୋଷଣକାରୀ ବୋଲି ପ୍ରମାଣିତ ହୋଇସାରିଛି । ବିଜ୍ଞାନର ନୂଆ ପ୍ରୟୋଗ ଦ୍ୱାରା ଟେକ୍‌ନୋଲୋଜିର ନବୀକରଣ ଦରକାର । ୩. ସମୃଦ୍ଧି ନିର୍ଦ୍ଦିଷ୍ଟ ଶ୍ରେଣୀବିଶେଷ ପାଇଁ ନୁହେଁ, ସମଗ୍ର ପ୍ରଜାତି ପାଇଁ ଦରକାର । ଆଧୁନିକ ସମୃଦ୍ଧି ପ୍ରଜାତି ପାଇଁ ଉଦ୍ଦିଷ୍ଟ କି ପ୍ରଯୁଜ୍ୟ ନୁହେଁ । ତେଣୁ ସମୃଦ୍ଧିର ପାରିଭାଷିକ ଅର୍ଥକୁ ସ୍ୱଷ୍ଟ କରିବାକୁ ହେବ । ୪. ସମାଜର ଜୀବନଧାରଣ ପାଇଁ ଯେତେସବୁ ପଣ୍ୟବସ୍ତୁ ଦରକାର ସେଗୁଡିକ ପ୍ରାକୃତିକ ସଂସାଧାନ ଉପରେ ଆଧାରିତ । ଆଧୁନିକ ସଭ୍ୟତା ଏବଂ ଆଧୁନିକ ଯନ୍ତ୍ରବିଦ୍ୟା ପ୍ରାକୃତିକ-ସଂସାଧାନ ଗୁଡିକୁ ବିନଷ୍ଟ, ନିଃଶେଷ ଓ ପ୍ରଦୂଷିତ କରିବା ଦ୍ୱାରା ପ୍ରକୃତି ଓ ମାନବ ଜୀବନ ଅବକ୍ଷୟର ସମ୍ମୁଖୀନ ହୋଇଛନ୍ତି । ତେଣୁ ବିନାଶକାରୀ ବିକାଶର ଗତିପଥକୁ ବଦଳାଇବାକୁ ହେବ । ସ୍ଥିର ଓ ଚିରନ୍ତନୀ ବିକାଶ ନିମନ୍ତେ ଏପରି ଉପାୟ, ଯନ୍ତ୍ର, ଏବଂ ଅର୍ଥନୀତି ଗ୍ରହଣ କରିବାକୁ ହେବ, ଯାହା ପ୍ରକୃତି-ସଂରକ୍ଷକ ଓ ସ୍ଥାୟୀ (ସଷ୍ଟେନେବେଲ୍) ହେବ । ଏହାର ପରିଣାମ ସବୁବେଳେ ବଢ଼ି ଚାଲିଥିବା ଅନନ୍ତ ସମୃଦ୍ଧି ନହୋଇ ଏକ 'ସୀମିତ ସମୃଦ୍ଧି' ହେବ । ସୀମିତ ସମୃଦ୍ଧିର ଅବଧାରଣାରୁ ଆଗାମୀ ବିଚାରଧାରାର ଉଦ୍‌ଗମ ହେବ ।

ଆଧୁନିକ ସଭ୍ୟତାର ବିକଳ୍ପ ପ୍ରାଚୀନ ସଭ୍ୟତା ନୁହେଁ । ପ୍ରାଚୀନ ସଭ୍ୟତାର ସପକ୍ଷବାଦୀମାନେ ଆଧୁନିକ ସଭ୍ୟତାର ମୌଳିକ ବିରୋଧ ନକରି କେବଳ ମଧ୍ୟଯୁଗୀୟ କର୍ମକାଣ୍ଡଗୁଡିକୁ ବଂଚାଇ ରଖିବାକୁ ଚାହାନ୍ତି ଏବଂ ଅତୀତର ସବୁ ଅନ୍ୟାୟପୂର୍ଣ୍ଣ ଭେଦଭାବକୁ ଲୋକାତୀତ ସତ୍ୟ ଭାବରେ ସିଦ୍ଧ କରିବାକୁ ଚାହାନ୍ତି । ଭବିଷ୍ୟତ ନିର୍ମାଣ ଏବଂ ଭବିଷ୍ୟଦ୍ରଷ୍ଟାମାନଙ୍କ ପାଇଁ ଅତୀତ ଓ ଆଧୁନିକ ସମାନ ଭାବରେ ପ୍ରାସଙ୍ଗିକ ବା ଅପ୍ରାସଙ୍ଗିକ ହେବେ । ପ୍ରାକୃତିକ-ସଂସାଧାନ ଗୁଡିକର ସଂରକ୍ଷଣ ଦୃଷ୍ଟିରୁ ଏବଂ ସମୁଦାୟମାନଙ୍କର ସ୍ୱଶାସନ ଦୃଷ୍ଟିରୁ ବହୁତ ଉପାଦେୟ ନମୂନା ଓ ଆଦର୍ଶ ପ୍ରାଚୀନ ସଭ୍ୟତାମାନଙ୍କରୁ ମିଳିପାରିବ । ସେହିପରି ଭାବେ ଆଧୁନିକ ବିଜ୍ଞାନର ସୂତ୍ରମାନଙ୍କୁ ନେଇ ବିକାଶର ନୂଆ ଯନ୍ତ୍ରପ୍ରଣାଳୀ ବାହାର କରିବାକୁ ହେବ, ଯାହା ପ୍ରତ୍ୟେକ ଅଂଚଳକୁ ମୌଳିକ ଆବଶ୍ୟକତା ପୂରଣ ଦିଗରୁ ସ୍ୱାବଲମ୍ବୀ କରିପାରିବ, ଅଥଚ ଅନ୍ୟ ଅଂଚଳକୁ ନିଜର ଉପନିବେଶ ନକରି ସମୃଦ୍ଧି ମଧ୍ୟ ଦେଇପାରିବ । ଏହି ସମୃଦ୍ଧିର ମୂଳ-ସୂତ୍ର ହେବ ସମତା, ପରିବେଶ ସୁରକ୍ଷା ଓ ନିରନ୍ତର ବା ସଷ୍ଟେନବୁଲ ବିକାଶ । ପୁନଶ୍ଚ ଆଧୁନିକ ସଭ୍ୟତାର ବ୍ୟକ୍ତିସ୍ୱାତନ୍ତ୍ର୍ୟର ଏବଂ ପ୍ରାଚୀନ ସଭ୍ୟତାମାନଙ୍କର ସାମାଜିକତାକୁ ଗୋଟିଏ ଜୀବନ ପ୍ରଣାଳୀର ଦୁଇ ଅଭିନ୍ନ ଦିଗ ରୂପେ ବିକଶିତ କରିବାକୁ ହେବ । ଦୁନିଆର ବୈଜ୍ଞାନିକ ମାନେ ବହୁରାଷ୍ଟ୍ରୀୟ ନିଗମମାନଙ୍କର ବେତନଭୋଗୀ ହୋଇ ମୁନାଫାଖୋର, ବ୍ୟବସାୟୀମାନଙ୍କ ନିର୍ଦ୍ଦେଶରେ ବିଜ୍ଞାନ ଓ ଟେକ୍‌ନୋଲୋଜିକୁ ବଢ଼ାଇ ଚାଲିଛନ୍ତି । ସେମାନଙ୍କୁ ଏହି ଦାସତ୍ୱରୁ ମୁକ୍ତ କରି ଏକ ନୂଆ ପୃଥିବୀର ସଂରଚନା କାର୍ଯ୍ୟରେ ଲଗାଇବାକୁ ହେବ । ଆଗାମୀ ବିଚାରଧାରା ପାଇଁ ଏହିସବୁ ହେବ ମନ୍ତ୍ର ଓ ସୂତ୍ର ।



# ଈଶ୍ୱର ଭାବନାର ଉତ୍ପତ୍ତି ସଂପର୍କରେ

*ଶ୍ରୀ କୀର୍ତ୍ତନ ପରିଡା*

## ଆଦିମ ଗୋଷ୍ଠୀ ସମାଜରେ 'ଈଶ୍ୱର' ଧାରଣା ସୃଷ୍ଟି ହୋଇନଥିଲା:-

ମଣିଷ ଯେତେବେଳେ ବଣ ଜଙ୍ଗଲରେ ରହୁଥିଲା, ଫଳମୂଳ ଆହରଣ କରି, ବନ୍ୟ ପଶୁପକ୍ଷୀ ଶିକାର କରି ଜୀବନ ଧାରଣ କରୁଥିଲା, ପାହାଡର କୋରଡ, ଗୁମ୍ଫା, ବୃକ୍ଷ ଉପରେ ବସବାସ କରୁଥିଲା, ହିଂସ୍ର ଶ୍ୱାପଦଙ୍କ ଭୟରେ ଦଳବଦ୍ଧ ଭାବେ ବିଚରଣ କରୁଥିଲା, ସମାଜ ଏବଂ ଚାଷବାସ ପରି ସ୍ଥାୟୀ ସଂପତ୍ତିର ଉଦ୍ଭବ ହୋଇନଥିଲା, ମୋଟାମୋଟି ଭାବେ ମଣିଷର ଯେତେବେଳେ ଆଦିମ ଅବସ୍ଥା, ସେତେବେଳେ ତା ମୁଣ୍ଡରେ ଭଗବତ୍ ବା ଈଶ୍ୱରର ଚିନ୍ତା ଢୁକି ନଥିଲା । ଐତିହାସିକ ମାନେ ବିଭିନ୍ନ ପ୍ରାଚୀନ ଗୋଷ୍ଠୀ (Tribe) ଗୁମ୍ଫା, ପାହାଡର କୋରଡରେ ଖୋଦିତ ପୁରାତନ ଚିତ୍ର, ପୁରୁଣା ନଥିପତ୍ର ଇତ୍ୟାଦି ଅଧ୍ୟୟନ କରି, ଗବେଷଣା କରି ଯେଉଁ ସତ୍ୟରେ ଉପନୀତ ହୋଇଛନ୍ତି, ଯେଉଁ ତଥ୍ୟ ଦୁନିଆକୁ ଦେଇଛନ୍ତି, ତା ହେଲା, ଆଦିମାନବର ଚିନ୍ତା ଥିଲା ବସ୍ତୁତାନ୍ତ୍ରିକ । ତାହାର ସମସ୍ତ ଚିନ୍ତା ତାଙ୍କୁ ଘେରିକି ରହିଥିବା ବିଶାଳ ବସ୍ତୁ ଜଗତକୁ ନେଇକି ହୋଇ ଥିଲା । ଈଶ୍ୱର ଚିନ୍ତାର କୌଣସି ଚିହ୍ନବର୍ଣ୍ଣ ହିଁ ନଥିଲା ସେଦିନ । ଅତିପ୍ରାକୃତିକ ଶକ୍ତି, ଆଧିଭୌତିକ ଶକ୍ତି, ଈଶ୍ୱରୀୟ ଶକ୍ତି- ଏପରି କୌଣସି ଶକ୍ତିର କଳ୍ପନା କରିବା ଆଦିମାନବ ପକ୍ଷେ ସମ୍ଭବ ନଥିଲା ।

ତେବେ ଏକଥା ସତ୍ୟ ଯେ ଆଦିମାନବ ଏକ ଶକ୍ତିକୁ ଭୟ କରୁଥିଲା । ତା ଥିଲା ଭୌତିକ ଶକ୍ତି । ଭୂତର ଅର୍ଥ ବସ୍ତୁ-ଅଶରୀରୀ ନୁହେଁ । ଦର୍ଶନଶାସ୍ତ୍ରରେ ଯେଉଁ ପଞ୍ଚଭୂତର କଥା କୁହାଯାଇଛି ସେଗୁଡିକ ହେଉଛି-କ୍ଷିତି, ଅପ୍, ତେଜଃ , ମରୁତ୍ ଏବଂ ବ୍ୟୋମ । ଏଗୁଡିକ ପ୍ରତ୍ୟେକ ଗୋଟେ ଗୋଟେ ବସ୍ତୁ । ଭୌତିକ ଶକ୍ତିର ଅର୍ଥ ବସ୍ତୁର ଶକ୍ତି । ଆଦିମାନବ ପାଣିକୁ ଭୟ କରୁଥିଲା, ନିଆଁକୁ ଭୟ କରୁଥିଲା, ଝଡ଼ ବତାସକୁ ଭୟ କରୁଥିଲା, ପର୍ବତରୁ

ଗଡି ଆସୁଥିବା ବିଶାଳକାୟ ଶିଳାଖଣ୍ଡରେ ଚାପି ହୋଇ ଅତି ଅସହାୟଭାବେ ମୃତ୍ୟୁ ବରଣ କରୁଥିଲା । ବିଭିନ୍ନ ଭାବରେ ପ୍ରାକୃତିକ ବସ୍ତୁଜଗତ ଦ୍ୱାରା ଆକ୍ରାନ୍ତ ହୋଇ ତାକୁ ଭୟ କରିବାକୁ ଲାଗିଲା ମଣିଷ । କାରଣ ଏହି ପ୍ରାକୃତିକ ଶକ୍ତିକୁ ନିୟନ୍ତ୍ରଣ କରିବା ଥିଲା ତାର ସାଧ୍ୟାତୀତ । ସେ ଯାହାକୁ ଭୟ କଲା, ତାକୁ ସନ୍ତୁଷ୍ଟ କରିବାକୁ ଚେଷ୍ଟା କଲା, ତାର ସନ୍ତୋଷ ନିମିତ୍ତ ସେ ତା ଆଗରେ ନାଚିଲା, ଡେଇଁଲା, ବିଭିନ୍ନ ଅଙ୍ଗଭଙ୍ଗୀ କରି, ବିକୃତ ଶବ୍ଦ କରି ଅସହାୟ ମଣିଷ ସେଦିନ ନିଜର ଅବ୍ୟକ୍ତ ଭାବକୁ ପ୍ରକାଶ କରିବାକୁ ଚାହୁଁଥିଲା । ଯେଉଁ ଶବ୍ଦ ସେ ଉଚ୍ଚାରଣ କରୁଥିଲା, ସଭ୍ୟ ମାନବ ନିକଟରେ ହୁଏତ ତାର କିଛି ଅର୍ଥ ନାହିଁ । ଅଥଚ ସମାଜ ବିଜ୍ଞାନୀମାନେ ତା ଉପରେ ଯଥେଷ୍ଟ ଗୁରୁତ୍ୱ ଦେଇଛନ୍ତି, ସେହି ଅବୋଧ ଭାଷାକୁ ଆଦିମାନବର ବିଜ୍ଞାନ (Primitive Science) ବୋଲି ନାମିତ କରିଛନ୍ତି ।

ମାନବ ସଭ୍ୟତାର ଏହି ସ୍ତରରେ ଅର୍ଥାତ୍ ପ୍ରଥମ ପର୍ଯ୍ୟାୟରେ ଭାଷାର ସୃଷ୍ଟି ହୋଇନଥିଲା । ବିଭିନ୍ନ ଶବ୍ଦ କରି, ମୁଖଭଙ୍ଗୀ ଏବଂ ସଂକେତ ମାଧ୍ୟମରେ ସେମାନେ ନିଜ ନିଜ ମଧ୍ୟରେ ଯୋଗସୂତ୍ର ରଖୁଥିଲେ । ଭାବର ଆଦାନ ପ୍ରଦାନ କରୁଥିଲେ । ବସ୍ତୁଜଗତକୁ ଜାଣିବା, ବୁଝିବା ଏବଂ ଆୟତ କରିବାର ଏହି ପ୍ରଥମ ଚେଷ୍ଟାକୁ ଆଦିମାନବର ବିଜ୍ଞାନ ଭାବେ ଅଭିହିତ କରିଛନ୍ତି ସମାଜତତ୍ତ୍ୱବିତ୍‌ମାନେ । ପରବର୍ତ୍ତୀ କାଳରେ ଏହି ଅବୋଧ ଭାଷା ମାର୍ଜିତ ହୋଇ ମନ୍ତ୍ର ତନ୍ତ୍ର ନାମରେ ନାମିତ ହୋଇଛି । ଆଦିମାନବ ଆରାଧନା କରୁଥିଲା ଅଗ୍ନି, ଜଳ, ଆକାଶ, ବତାସ, ବୃକ୍ଷଲତା, ପାହାଡ ପର୍ବତ, ବ୍ୟାଘ୍ର ଭଲ୍ଲୁକ ଇତ୍ୟାଦି ହିଂସ୍ର ଶ୍ୱାପଦଙ୍କୁ । ଏବେବି ଅନେକ ଜନଗୋଷ୍ଠୀ ଅଛନ୍ତି, ଯେଉଁମାନେ ପୂଜା କରନ୍ତି ଏହି ପ୍ରାକୃତିକ ବସ୍ତୁଜଗତକୁ । ମନେ ରଖିବାକୁ ହେବ, ଆଜି ଆମେ ପୂଜା, ଆରାଧନାର ଅର୍ଥ ଯାହାବୁଝୁ, ଆଦିମାନବ ସେମିତି ବୁଝିନଥିଲା । ବଞ୍ଚିବା ତାପାଇଁ ମୁଖ୍ୟ ସମସ୍ୟା । ଆତ୍ମରକ୍ଷା ପାଇଁ ସେ ହେଲା ଗୋଷ୍ଠୀବଦ୍ଧ । ଗୋଷ୍ଠୀବଦ୍ଧଭାବେ ସେ ପ୍ରକୃତିର ମୁକାବିଲା କରିବାକୁ ଚେଷ୍ଟା କଲା, କେତେବେଳେ ବିଫଳ ହେଲା ପୁଣି କେତେବେଳ ସଫଳ ହେଲା ।

## ପୃଥିବୀପୃଷ୍ଠରେ ସ୍ଥାୟୀ ସଂପତ୍ତିର ସୃଷ୍ଟି ପରେ 'ଈଶ୍ୱର' ଧାରଣାର ଉତ୍ପତ୍ତି:-

ଯାଯାବର ଜୀବନରୁ ସ୍ଥାୟୀ ବସବାସ ପର୍ଯ୍ୟନ୍ତ ଆସିବା ପାଇଁ ମଣିଷକୁ ଦୀର୍ଘ ସମୟ ଲାଗିଛି- ହୁଏତ ହଜାର ହଜାର ବର୍ଷ ଲାଗିଛି । ସେ ତାର ସୀମିତ ଜ୍ଞାନ ଭିତରେ ପ୍ରକୃତିକୁ ଜାଣିବାକୁ ଚେଷ୍ଟା କରିଛି, ପ୍ରକୃତିର ଘଟଣା ପ୍ରବାହକୁ ଗଭୀର ଭାବେ ଅନୁଧ୍ୟାନ କରିଛି । ସେ ଲକ୍ଷ୍ୟ କରିଛି, ଗଛରୁ ଫଳ ତୋଳି, ତାକୁ ଖାଇ ତାର ମଞ୍ଜି ସେ ଯେଉଁ ସ୍ଥାନରେ ଫୋପାଡି ଦେଇ ଯାଇଥିଲା, ବୁଲି ବୁଲି ଆସି ଦେଖିଛି ସେହି ସ୍ଥାନରେ କେତେ

ଗୁଡ଼ିଏ ଗଛ ଉଠିଛି । ତାପରେ ତା ମୁଣ୍ଡକୁ ଢୁକିଛି ଯେ ମଂଜି ପୋତିଲେ ଗଛ ହୁଏ । ଏହି ଚିନ୍ତା ହୁଏତ ଗୋଟିଏ ଦିନରେ ଆସିନି, ହୁଏତ ଯୁଗ ଯୁଗ ବିତି ଯାଇଥିବ ଏହି ଅଭିଜ୍ଞତା ହାସଲ ପାଇଁ । ତେବେ ବାହ୍ୟ ପରିବେଶ ସହିତ ମଣିଷ ମସ୍ତିଷ୍କର ଅହରହ ଦ୍ୱନ୍ଦ୍ୱ ସଂଘାତ ମଧ୍ୟ ଦେଇ ସେ କ୍ରମଶଃ ଅଭିଜ୍ଞତା ଅର୍ଜନ କରୁଥିଲା । ସେ ଲକ୍ଷ୍ୟ କରିଛି, ନିଆଁରେ ପୋଡ଼ି ହୋଇ ତା ଆଖି ସାମ୍ନାରେ ବଣଜଙ୍ଗଲ ଛାରଖାର ହୋଇ ଯାଉଛି । ତା ଭିତରେ ପୋଡ଼ି ହୋଇ ମରି ଯାଉଛନ୍ତି ଶହ ଶହ ପଶୁପକ୍ଷୀ । ସେହି ପୋଡ଼ା ପଶୁପକ୍ଷୀର ମାଂସ ଖାଇ ସେ ଅନୁଭବ କରିଛି ନୂତନ ସ୍ୱାଦ । ତାପରେ ସେ ହୁଏତ କଞ୍ଚାମାଂସ ଅପେକ୍ଷା ପୋଡ଼ାମାଂସକୁ ବେଶୀ ପସନ୍ଦ କରିଛି । ଏହି ଅଭିଜ୍ଞତା ମଧ୍ୟ ଦେଇ ସେ କେବଳ ଅଗ୍ନିସିଦ୍ଧ ମାଂସର ସ୍ୱାଦ ଅନୁଭବ କରିନି, ଅଗ୍ନିର ଭୟାବହତାକୁ ଅନୁଭବ କରିବା ସଂଗେ ସଂଗେ ତାର ଉପକାରିତାକୁ ମଧ୍ୟ ଉପଲବ୍ଧି କରିଛି । ଅଗ୍ନିକୁ ଅନବରତ  ଜଳେଇ ରଖିବା ପାଇଁ ମଣିଷ ଚେଷ୍ଟା କରିଛି । ବଣ, ଜଙ୍ଗଲ ଭିତରେ ଯେଉଁ ନିଆଁ ଲାଗୁଥିଲା, ତା ଉପରେ ଶୁଖିଲା କାଠି କୁଟା ପକେଇ ଉଜ୍ଜୀବିତ କରି ରଖିବା ପାଇଁ ଚେଷ୍ଟା କରିଛି । ପୁଣି ସେ ଲକ୍ଷ୍ୟ କରିଛି କାଠକୁ କାଠ ଘଷି ହୋଇ, ପଥର ଉପରେ ପଥର ଛେଚି ହୋଇ ନିଆଁ ବାହାରୁଛି । ଏହି ଉପାୟରେ ସେ ମଧ୍ୟ ଅଗ୍ନି ଉତ୍ପାଦନ କରିବାକୁ ଶିଖିଲା । ଏହି ପରି ଭାବରେ ବିଭିନ୍ନ ଘାତ ପ୍ରତିଘାତ ମଧ୍ୟଦେଇ ଗଢ଼ିଉଠିଲା ମଣିଷର ଜ୍ଞାନ ଜଗତ । ମୋଟାମୋଟି ଭାବରେ କହିଲେ, ମଣିଷ ଭଲରୁ ଆହୁରି ଭଲ ଭାବରେ ବଞ୍ଚିବା ପାଇଁ ସଦାସର୍ବଦା ଚାହିଁଛି ଏବଂ ସେଥିପାଇଁ ତାକୁ ଜାଣିବାକୁ ପଡ଼ିଛି ତାର ଚତୁଃପାର୍ଶ୍ୱସ୍ଥ ବସ୍ତୁଜଗତକୁ । ବସ୍ତୁଜଗତ ସହିତ ପ୍ରତିନିୟତ ଦ୍ୱନ୍ଦ୍ୱ ସଂଘାତ ମଧ୍ୟଦେଇ ଗଢ଼ିଉଠିଛି ମଣିଷର ଜ୍ଞାନ ଜଗତ । ଏହି ମହାସତ୍ୟକୁ ଉପଲବ୍ଧି କରି କେହି ଜଣେ ମନୀଷୀ କହିଛନ୍ତି: ଆବଶ୍ୟକତା ଉଦ୍ଭାବନର ଜନନୀ ।

କୃଷିକର୍ମ ମଣିଷ ଜୀବନରେ ଆଣିଲା ଏକ ନୂତନ ମୋଡ଼ । କୃଷିକାର୍ଯ୍ୟ ପାଇଁ ସେ ସ୍ଥାୟୀଭାବେ ବସବାସ କରିବାକୁ ଆରମ୍ଭ କଲା । ତାର ଯାଯାବର ଜୀବନର ଅନ୍ତ ହେଲା, ତା ସଂଗେ ସଂଗେ ଅନ୍ତ ହେଲା ଶିକାର, ଫଳମୂଳ  ଆହରଣ ଇତ୍ୟାଦି ପୁରାତନ ଉତ୍ପାଦନ ପ୍ରଣାଳୀର । ତେବେ ଗୋଟିଏ ସଂକଟରୁ ଉଦ୍ଧାର ପାଇ ଆଉ ଏକ ନୂତନ ସଂକଟରେ ମଣିଷ ପଡ଼ିଲା । ମଣିଷ ଯାଯାବର ଜୀବନରୁ ରକ୍ଷା ପାଇଲା ସତ, କିନ୍ତୁ ସମସ୍ୟା ସଂକଟରୁ ରକ୍ଷା ପାଇ ପାରିଲା ନାହିଁ । ଗୋଟେ ପଟେ ଉତ୍ପାଦନର ସ୍ୱଳ୍ପତା ଏବଂ ଅବିକଶିତ ଉତ୍ପାଦନ ପଦ୍ଧତି, ଅପର ପଟେ ଗୋଷ୍ଠୀ ମଧ୍ୟରେ କ୍ରମବର୍ଦ୍ଧମାନ ଜନସଂଖ୍ୟା ବୃଦ୍ଧି-ଏହି ବାସ୍ତବ ଦ୍ୱନ୍ଦ୍ୱ ମଧ୍ୟରେ ଆବର୍ତ୍ତିତ ହେଲା ମଣିଷ ଏବଂ ଏହି ବାସ୍ତବ ପରିସ୍ଥିତି ସେଦିନ ମଣିଷ ମନ ଭିତରେ ଲୋଭ, ଈର୍ଷା, ହୀନମନ୍ୟତା, ଲୁଟିନେବା, ମାରିନେବା, ଅନ୍ୟକୁ ବଂଚିତ କରି ଆପେ ଭଲରେ ବଂଚିବା ପରି କୁପ୍ରବୃତ୍ତିଗୁଡ଼ିକୁ ଜନ୍ମ ଦେଇଥିଲା ।

ଧର୍ମଶାସ୍ତ୍ର ପ୍ରଚାର କରେ ଲୋଭ, ଈର୍ଷା, ହିଂସା, ହୀନମନ୍ୟତା, ପରଶ୍ରୀକାତରତା ଇତ୍ୟାଦି କୁପ୍ରବୃତ୍ତିଗୁଡ଼ିକୁ ମଣିଷ ଜନ୍ମ ସାଥେ ସାଥେ ନେଇକି ଆସିଛି । ଅର୍ଥାତ୍ ଏଗୁଡ଼ିକ ସହଜାତ । ଏ ସମସ୍ତ କୁପ୍ରବୃତ୍ତିଗୁଡ଼ିକରୁ ମୁକ୍ତି ପାଇବାର ବାଟ ନାହିଁ । କିନ୍ତୁ ଇତିହାସ ପ୍ରମାଣ କରେ, ଏ ଧରଣର ସିଦ୍ଧାନ୍ତ ଅନୈତିହାସିକ ଓ ବିଭ୍ରାନ୍ତିକର । ଇତିହାସର ସିଦ୍ଧାନ୍ତ ହେଉଛି : ମଣିଷର ଚିନ୍ତାର ବାସ୍ତବ ପରିବେଶ (Material condition) ପ୍ରଥମେ ତିଆରି ହୁଏ-ତାପରେ ହୁଏ ତାର ଭାବ ଜଗତର ସୃଷ୍ଟି । ଏହି କୁପ୍ରବୃତ୍ତିଗୁଡ଼ିକ ସମାଜ ସୃଷ୍ଟି ହେବାପରେ ହିଁ ମଣିଷ ମନ ଭିତରେ ଜନ୍ମ ନେଇଛି । ଏହି ପ୍ରକାର ମନୋବୃତ୍ତି ସମାଜ ବିକାଶର ପ୍ରଥମାବସ୍ଥାରେ ମଣିଷ ମନ ଭିତରେ ଦେଖା ଦେଇନି । ପ୍ରକୃତି ବିରୋଧରେ ସଂଗ୍ରାମ କରି କୌଣସି ମତେ ବଞ୍ଚିରହିବା ଥିଲା ମଣିଷର ଲକ୍ଷ୍ୟ । ସଂପତ୍ତି ବୋଲି ସେତେବେଳେ ମଣିଷର କିଛି ନଥିଲା, ତେଣୁ ସଂପତ୍ତିବୋଧର ଧାରଣା ମଧ୍ୟ ନଥିଲା । ଫଳମୂଳ ଆହରଣ ଏବଂ ବନ୍ୟ ପଶୁପକ୍ଷୀ ଶିକାର ଥିଲା ଦଳର ସାମଗ୍ରିକ ଅସ୍ଥାୟୀ ସଂପତ୍ତି । ଖାଦ୍ୟ ସରିଯିବାପରେ ମଣିଷର କଳିଗୋଳ, ଝଗଡା ଝାଣ୍ଟିର ଅବସାନ ସେଇଠି ହିଁ ହୋଇଯାଉଥିଲା । ଏହି ଯୁଗଟାକୁ ସମାଜ ବିଜ୍ଞାନୀମାନେ ନାମ ଦେଇଥିଲେ 'ବର୍ବର ଯୁଗ' ।

ମଣିଷ ଯେତେବେଳେ କୃଷିକାର୍ଯ୍ୟ କରିବା ଶିଖିଲା, ପଶୁପାଳନ କଲା ସେତେବେଳେ ତାର ଯାଯାବର ଜୀବନର ଅବସାନ ଘଟିଲା ଏବଂ ସ୍ଥାୟୀ ସଂପତ୍ତିର ଉଦ୍ଭବ ହେଲା ବିଶ୍ୱପୃଷ୍ଠରେ । ଉତ୍ପାଦିତ ସଂପତ୍ତି ଗୋଷ୍ଠୀର ପ୍ରୟୋଜନ ତୁଳନାରେ ଥିଲା କମ୍ । ସମସ୍ତେ ବାଣ୍ଟି ଖାଇଲେ ହୁଏତ କେବଳ ଖାଇବାଟା ହୋଇଥାନ୍ତା, କିନ୍ତୁ ଭଲଭାବରେ, ଆରାମ୍ ଅୟସରେ ଚଳିବା ଥିଲା ଅସମ୍ଭବ । ଫଳରେ ଏହିପରି ଏକ ବାସ୍ତବ ପରିସ୍ଥିତିରେ ଗୋଷ୍ଠୀମଧ୍ୟରୁ ଦଳେ ମୁଷ୍ଟିମେୟ ଧୂର୍ତ୍ତ, ବଳଶାଳୀ, ଦୁଃସାହସୀ ଲୋକ ଲାଠିର ଜୋରରେ, ପେଷୀଶକ୍ତିର ଜୋର୍‌ରେ ଗୋଷ୍ଠୀର ସମସ୍ତ ଲୋକଙ୍କ ଦ୍ୱାରା ଉତ୍ପାଦିତ ସଂପଦକୁ ବ୍ୟକ୍ତିଗତ ସଂପତ୍ତିରେ ପରିଣତ କରିଦେଲେ ଏବଂ ପରାଜିତ ଲୋକ ମାନଙ୍କୁ ନିଜ ଦାସ କରି ଖଟାଇଲେ । ଏହିପରି ଭାବେ ସଂପତ୍ତିର ମାଲିକାନାକୁ ଭିତ୍ତିକରି ଆଦିମ ଗୋଷ୍ଠୀ ସାମ୍ୟବାଦୀ ସମାଜ ଭାଙ୍ଗି ଦାସ ଏବଂ ଦାସ ପ୍ରଭୁ- ଏହି ଦୁଇ ବିରୋଧୀ ଶ୍ରେଣୀରେ ବିଭକ୍ତ ହୋଇଗଲା । ପୃଥିବୀପୃଷ୍ଠରେ ପ୍ରଥମ ଶ୍ରେଣୀ ବିଭକ୍ତ ସମାଜ ଭାବେ ଆବିର୍ଭାବ ହେଲା ଦାସ ସମାଜ ।

ରାମାୟଣ, ମହାଭାରତ - ଏହି ଦୁଇ ମହାକାବ୍ୟ ଏହି ଦାସ ଯୁଗର ରଚନା । ସୀତା-ଦ୍ରୌପଦୀଙ୍କ ବିବାହ କାଳରେ ହଜାର ହଜାର ଦାସଦାସୀ ଯୌତୁକ ସ୍ୱରୂପ ପ୍ରଦାନ କରାଯାଇଥିଲା । ଯୁଧିଷ୍ଠିର ପଶାଖେଳରେ ହଜାର ହଜାର ଦାସଦାସୀ ପଣ ସ୍ୱରୂପ ବାଜି ରଖିଥିଲେ । ଦ୍ରୌପଦୀଙ୍କୁ ପଶାରେ ହାରିବା ପରେ ଦାସୀ ପରି ବ୍ୟବହାର କରାଯାଇଥିଲା । ଦାସଦାସୀଙ୍କର ସ୍ୱାଧୀନତା ନଥିଲା । ପଶୁ ଓ ଦାସଦାସୀଙ୍କ ମଧ୍ୟରେ ବିଶେଷ କିଛି ପାର୍ଥକ୍ୟ

ନଥିଲା । ଦାସଦାସୀଙ୍କ ଦୁଃସହ ଜୀବନ ସଂପର୍କରେ ରାମାୟଣ, ମହାଭାରତରୁ ମଧ୍ୟ କିଛି କିଛି ଆଭାସ ମିଳେ ।

ସମାଜ ବିକାଶର ଗତିପଥରେ ଦାସ ସମାଜ ପରେ ବିଶ୍ୱପୃଷ୍ଠରେ ଆବିର୍ଭାବ ହୋଇଛି ରାଜତନ୍ତ୍ର ବା ସାମନ୍ତବାଦୀ ସମାଜ । ଏହି ସମାଜରେ ଗୋଟିଏ ପଟେ ରାଜା ଓ ସାମନ୍ତ ବର୍ଗ ଏବଂ ଅପରପଟେ ଶୋଷିତ ପ୍ରଜା ବା ଭୂମିଦାସ । ପୁନଶ୍ଚ ସାମନ୍ତବାଦୀ ସମାଜକୁ ଭାଙ୍ଗି ତା ସ୍ଥାନରେ ଆବିର୍ଭୂତ ହେଲା ପୁଞ୍ଜିବାଦୀ ସମାଜ । ଏହି ସମାଜରେ ଆମେ ଦେଖୁ ଗୋଟିଏ ପଟରେ ଶାସକ ପୁଞ୍ଜିପତି ଶ୍ରେଣୀ ଓ ତାର ବଶମ୍ବଦବର୍ଗ ଏବଂ ଅପର ପଟରେ ଶୋଷିତ ଚାଷୀ ମୂଲିଆ ଏବଂ ଶ୍ରମିକ ଶ୍ରେଣୀ ।

ଦାସ ସମାଜ, ସାମନ୍ତବାଦୀ ସମାଜ, ପୁଂଜିବାଦୀ ସମାଜ– ଏ ତିନୋଟିଯାକ ସମାଜ ଶୋଷଣର ଭିତ୍ତିଭୂମି ଉପରେ ଗଢ଼ା ଶ୍ରେଣୀବିଭକ୍ତ ସମାଜ । ଏହି ସମାଜ ଗୁଡ଼ିକରେ ଲକ୍ଷ୍ୟ କରାଯାଏ ସବଳର ଦୁର୍ବଳ ଉପରେ ଅତ୍ୟାଚାର, ଶାସକ ଶ୍ରେଣୀର ଶୋଷିତ ଏବଂ ଶାସିତ ଶ୍ରେଣୀ ଉପରେ ଜୁଲମ୍ । ଲକ୍ଷ୍ୟକରନ୍ତୁ, ଶୋଷଣ ଯେଉଁଠି ଅଛି, ଲୋଭ, ହୀନମନ୍ୟତା, ପରଶ୍ରୀକାତରତା, ହିଂସା, ଦ୍ୱେଷ ପ୍ରଭୃତି କୁପ୍ରବୃତ୍ତି ଗୁଡ଼ିକ ମଧ୍ୟ ସେଇଠି ତିଷ୍ଠି ରହିଛି । ମଣିଷ ଯେତେବେଳେ ଶିକାର କରି, ଫଳମୂଳ ଆହରଣ କରି ଜୀବନ ଯାପନ କରୁଥିଲା, ସେତେବେଳେ ଏହି କଦର୍ଯ୍ୟ ଚିନ୍ତାଭାବନା ଗୁଡ଼ିକ ସୃଷ୍ଟି ହୋଇନଥିଲା ।

ଶାସକ ରାଜାକୁ ଦେଖି ମଣିଷ କଳ୍ପନା କରିଛି ଈଶ୍ୱରର । ସେ ଲକ୍ଷ୍ୟ କରିଛି : ଏହି ବିରାଟ ପୃଥିବୀର ମାଲିକ ହେଲା ରାଜା, ସେ ମହାଶକ୍ତିମାନ, ମହା କ୍ଷମତାଶାଳୀ, ତାର ଇଙ୍ଗିତରେ ଏତେ ବଡ ସମାଜଟା ସୁଶୃଙ୍ଖଳ ଭାବେ ପରିଚାଳିତ ହେଉଛି, ସମସ୍ତେ ନିଜ ନିଜର କାମ ନିୟମ ମାନିକି କରି ଯାଉଛନ୍ତି । ସମାଜ ବିକାଶର ଏକ ବିଶେଷ ସ୍ତରରେ ପହଞ୍ଚି ମଣିଷ ଭାବିବାକୁ ଲାଗିଲା ତା ନିଜ ବିଷୟରେ, ତା ଚାରିକଡରେ ଥିବା ସମାଜ ବିଷୟରେ । ଅନେକ ପ୍ରଶ୍ନ ତା ମନକୁ ଆନ୍ଦୋଳିତ କଲା । କେମିତି ନିଆଁ ଜଳୁଛି, ବର୍ଷା ହେଉଛି, କେମିତି ଭୂମିକମ୍ପ ହେଉଛି, ମଣିଷ ଜନ୍ମ କେମିତି ହେଉଛି, ମରୁଛି କେମିତି, ମଲାପରେ ଏ ଜୀବନଟା କୁଆଡେ ଯାଏ, ପ୍ରତିଦିନ ଭୋରୁ ସୂର୍ଯ୍ୟ ଉଦୟ ହେଉଛି, ସନ୍ଧ୍ୟାରେ ଅସ୍ତ ଯାଉଛି, ପୁଣି ସୂର୍ଯ୍ୟ ଉଉଁଛି, ଅସ୍ତ ଯାଉଛି, ଶୀତ, ଗ୍ରୀଷ୍ମ, ବର୍ଷା ଘୂରି ଘୂରି ଆସୁଛି, ଜୁଆର ଆସୁଛି, ଭଟା ହେଉଛି, କିନ୍ତୁ ଏ ସବୁ କେମିତି ହେଉଛି ? ମଣିଷ ଚିନ୍ତାରେ ଏହି 'କେମିତି' ପ୍ରଶ୍ନଟି ବାରମ୍ବାର ଧକ୍କା ଦେବାକୁ ଲାଗିଲା । କିନ୍ତୁ କିଏ ଉତ୍ତର ଦେବ ? ଏହିସବୁ ପ୍ରଶ୍ନର ଉତ୍ତର ଦେବାଭଳି କୌଣସି ଉପଯୁକ୍ତ ବିଜ୍ଞାନ ସେଦିନ ମଣିଷ ହାତରେ ନଥିଲା । 'କେମିତି ହେଉଛି', 'କେମିତି ହେଲା' – ଏହାର ଜବାବ ଖୋଜିବାକୁ ଯାଇ ମଣିଷ ମଗଜରେ ଗୋଟିଏ ଚିନ୍ତା ଏକ ସମୟରେ ଆସି ଧକ୍‌କା ଦେଲା ଏବଂ ସେତେବେଳେ ସେହି ଚିନ୍ତା

ଧକ୍କା ଦେଲା ଯେତେବେଳେ କି ଏଭଳି ଚିନ୍ତା ମଗଜକୁ ଆସିବା ଭଳି ଉପଯୁକ୍ତ ପରିସ୍ଥିତି ସୃଷ୍ଟି ହେଲା- ତା ପୂର୍ବରୁ ନୁହେଁ ।

ଯେତେବେଳେ ରାଜା ସୃଷ୍ଟି ହେଲା, ସମାଜର ଜଣେ ଅଧିପତି ସୃଷ୍ଟି ହେଲେ, ସମାଜକୁ ଚଳାଇବା ପାଇଁ ତାର ନିୟମ ଶୃଙ୍ଖଳା ସୃଷ୍ଟି ହେଲା, ମଣିଷ ତାକୁ ମାନି ସାଧାରଣ ଅର୍ଥରେ ଶୃଙ୍ଖଳିତ ହୋଇ ଚଳିବାକୁ ଲାଗିଲା, ସେତେବେଳେ ତା ମୁଣ୍ଡରେ ଢୁକିଲା-ଜଣେ ରାଜା ଅଛି ବୋଲି ଏତେ ବଡ ରାଜ୍ୟଟା ଶୃଙ୍ଖଳାରେ ଚାଲିଛି, ସେହିପରି ଏହି ବିଶ୍ୱ ବ୍ରହ୍ମାଣ୍ଡ ଯେ ଏତେ ଶୃଙ୍ଖଳାରେ ଚାଲିଛି ସୂର୍ଯ୍ୟ ଠିକ୍ ସମୟରେ ପୂର୍ବରେ ଉଦୟ ହୋଇ ପଶ୍ଚିମରେ ଅସ୍ତ ଯାଉଛି, ଋତୁ ପରିବର୍ତ୍ତନ ଶୃଙ୍ଖଳାର ସହିତ ହେଉଛି, ଏହା ପଛରେ ନିଶ୍ଚୟ କୌଣସି ସ୍ରଷ୍ଟାର ହାତ ଅଛି, ସେ ସମସ୍ତଙ୍କ ଅଦୃଶ୍ୟରେ ଅଛନ୍ତି, ସେ ହିଁ ଈଶ୍ୱର, ସର୍ବଶକ୍ତିମାନ, ତାଙ୍କର ଅଦୃଶ୍ୟ ଇଙ୍ଗିତରେ କୀଟତରୁଲତା ଠାରୁ ଆରମ୍ଭ କରି ମଣିଷ ପର୍ଯ୍ୟନ୍ତ ସମସ୍ତେ ପରିଚାଳିତ ହେଉଛନ୍ତି । ମୂଳରୁ କହିଛି, ଆଜି ଯେମିତି ଅତି ସହଜରେ ଏହି କଥାଗୁଡା ଚିନ୍ତା କରିପାରୁଛୁ, ସେଦିନ ମଣିଷ ଠିକ୍ ସେପରି ଚିନ୍ତା କରୁନଥିଲା, କରିବା ସମ୍ଭବ ମଧ ନଥିଲା । ତେବେ ଏହି ଚିନ୍ତା ଗୋଟିଏ ଦିନରେ କି ଗୋଟିଏ ବର୍ଷରେ ସୃଷ୍ଟି ହୋଇନି । ହୁଏତ ଏହି ଚିନ୍ତା ମଣିଷ ମୁଣ୍ଡରେ ଆସିବା ପାଇଁ ଶହ ଶହ ବର୍ଷ ଲାଗି ଯାଇଛି ।

ଈଶ୍ୱର ତତ୍ତ୍ୱ ସୃଷ୍ଟି ହେଲାପରେ ମାଲିକ ଶ୍ରେଣୀ ଏହାକୁ ନିଜ ସ୍ୱାର୍ଥରେ ଲଗାଇଲେ । ରାଜାଙ୍କୁ ଈଶ୍ୱରଙ୍କ ପ୍ରତିନିଧି ରୂପେ କଳ୍ପନା କରାଗଲା । ଏହି ଐଶ୍ୱରିକ ଧାରଣା, ଭଗବତ୍ ବିଶ୍ୱାସକୁ ଜନସାଧାରଣଙ୍କ ମୁଣ୍ଡ ଭିତରକୁ ନେଇଯିବା ପାଇଁ ପୁରୋହିତ ଶ୍ରେଣୀ ସୃଷ୍ଟି ହେଲା । ରାଜାମାନଙ୍କର ଦକ୍ଷିଣ ହସ୍ତ ହେଲେ ପୁରୋହିତ ଶ୍ରେଣୀ । ରାଜାର ଶାସନ ଏବଂ ଈଶ୍ୱର ତତ୍ତ୍ୱକୁ ଦୃଢ଼ୀଭୂତ ଏବଂ ଦୀର୍ଘାୟିତ କରିବା ପାଇଁ ସେମାନେ ରଚନା କଲେ ସାହିତ୍ୟ, ଯାହାକୁ ଆଜି ଆମେ ଧର୍ମଶାସ୍ତ୍ର, ପୁରାଣଶାସ୍ତ୍ର ବୋଲି କହୁଛୁ । ଧର୍ମଶାସ୍ତ୍ର, ପୁରାଣରେ ରାଜାଙ୍କୁ ଭଗବାନଙ୍କ ଅବତାର ଏବଂ ଚଳନ୍ତି ଈଶ୍ୱର ବୋଲି ପୁରୋହିତ ଶ୍ରେଣୀ ପ୍ରଚାର କଲେ । ରାଜାଙ୍କୁ ମାନିବା ଅର୍ଥ ଈଶ୍ୱରଙ୍କୁ ମାନିବା, ରାଜାଙ୍କୁ ଅବମାନନା କରିବା ଅର୍ଥ ଈଶ୍ୱରଙ୍କୁ ଅବମାନନା କରିବା- ଏହାହିଁ ଧର୍ମଶାସ୍ତ୍ରଗୁଡିକର ମୁଖ୍ୟ ସ୍ୱର । ରାଜ୍ୟ ବିରୁଦ୍ଧରେ ଜନସାଧାରଣ ସ୍ୱର ଉତ୍ତୋଳନ ନକରିପାରିବାର ମୁଖ୍ୟ କାରଣ ଥିଲା ଧର୍ମଶାସ୍ତ୍ରଗୁଡିକର ଏହି ପ୍ରଚାର । ଫଳରେ ରାଜ୍ୟର ଶାସନ, ଶୋଷଣ, ଅତ୍ୟାଚାର, ନିପୀଡନ ସତ୍ତ୍ୱେ ବିଦ୍ରୋହ ବା ପ୍ରତିବାଦର ସ୍ୱର ନଥିଲା । ରାଜତନ୍ତ୍ରକୁ ଦୀର୍ଘାୟିତ କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା ଏହି ଧର୍ମଶାସ୍ତ୍ରଗୁଡିକ ।

ଅପରପକ୍ଷେ ଏହି ଈଶ୍ୱର ତତ୍ତ୍ୱର ଯିଏ ପ୍ରଚାର କର୍ତ୍ତା ଏବଂ ଯାହାର ପ୍ରଶଂସାରେ ଧର୍ମଶାସ୍ତ୍ରଗୁଡିକ ଥିଲା ଶତମୁଖର, ସେହି ରାଜା ଏବଂ ପୁରୋହିତ ଶ୍ରେଣୀ ଏହି ତତ୍ତ୍ୱର ଧାର୍ ଧାରୁନଥିଲେ । କିନ୍ତୁ ଶୋଷିତ ଶ୍ରେଣୀକୁ ବାଧ କରୁଥିଲେ ଏହି ଦର୍ଶନକୁ ମାନିବା ପାଇଁ ।

ଶୋଷିତ ଶ୍ରେଣୀର ମୁଖ୍ୟ ଅଂଶ ଶୂଦ୍ର ଏବଂ ନାରୀ ଧର୍ମଶାସ୍ତ୍ରଗୁଡିକର ମୁଖ୍ୟ ଲକ୍ଷ୍ୟ (Main target) । ଧର୍ମଶାସ୍ତ୍ର ବହୁଳାଂଶ ରଚିତ ହୋଇଛି ଶୂଦ୍ର ଏବଂ ନାରୀଜାତିକୁ ଜବତ୍ କରିବା ପାଇଁ । ଏହି ପୃଷ୍ଠଭୂମିରେ ରଚିତ ହୋଇଛି ମନୁସ୍ମୃତି, ପରାଶର ସ୍ମୃତି, ଭୃଗୁ ସଂହିତା ଇତ୍ୟାଦି ନୀତିଶାସ୍ତ୍ର ଗୁଡିକ । ଏହିସବୁ ଶାସ୍ତ୍ରଗୁଡିକ ଅଧ୍ୟୟନ କଲେ ବୁଝିବାରେ ଅସୁବିଧା ହୁଏନା । ଏହାର ବେଶୀ ଭାଗ ଲିଖିତ ହୋଇଛି ନୀତି ନିୟମ, ଶୃଙ୍ଖଳାର ଦ୍ୱାହି ଦେଇ ଶୂଦ୍ର ଏବଂ ନାରୀ-ଏହି ଦୁଇ ଶୋଷିତ ଶ୍ରେଣୀକୁ ନିଜର ଦୃଢ଼ ମୁଷ୍ଟି ଭିତରେ ରଖି ନିଜର ଶାସନ ଶୋଷଣକୁ ତାଙ୍କ ଉପରେ ଜାହିର କରିବା । ସେମାନେ ସଫଳ ହୋଇଛନ୍ତି ମଧ୍ୟ । ନାରୀକୁ ସୁଗୃହିଣୀ, ପତି ସୁହାଗିନୀ ଏବଂ ପତି ଦେବତାର ମୃତ୍ୟୁ ପରେ ପତିର ଚିତାରେ ସତୀ ହେବା ପାଇଁ ନିର୍ଦ୍ଦେଶ ହେଲା । ନାରୀ ଅତି ଅସହାୟ ଭାବରେ ପିଞ୍ଜରାବଦ୍ଧ ବାଘୁଣୀ ପରି ଆଶ୍ରୟ ନେଲା ଘରର ଚାରିକାନ୍ଥ ମଧ୍ୟରେ । ବ୍ରାହ୍ମଣ, କ୍ଷତ୍ରିୟ ଜାତିର ସେବା କରି ପୂଣ୍ୟାର୍ଜନ ପାଇଁ ଶୂଦ୍ରକୁ ନିର୍ଦ୍ଦେଶ ଦେଲା ଧର୍ମଶାସ୍ତ୍ର । ବିଧି, ନିୟତି, କପାଳ, ଭାଗ୍ୟ, ଦୈବ ଇତ୍ୟାଦି ଯେତେସବୁ ଗାଲୁ କଥାର ପ୍ରଚାର କଲା ଧର୍ମଶାସ୍ତ୍ର । ଜନସାଧାରଣଙ୍କର ଅଶେଷ ଦୁଃଖ, ଯନ୍ତ୍ରଣାର କାରଣ ରାଜା ନୁହେଁ, ତା ପାଇଁ ତାର ଭାଗ୍ୟ, କପାଳକୁ ଦାୟୀ କରାଗଲା ।

ସେ ସମୟ ଥିଲା ବିଜ୍ଞାନର ଶୈଶବ ଅବସ୍ଥା । ଧର୍ମଶାସ୍ତ୍ରର ଏହି ପ୍ରଚାରକୁ ଖଣ୍ଡନ କରିବା ପରି ଯୁକ୍ତି ଉପସ୍ଥାପନ କରିବାର ବାସ୍ତବ ପରିବେଶ ସେଦିନ ସୃଷ୍ଟି ହୋଇନଥିଲା । ତେଣୁ ଅସତ୍ୟକୁ ସତ୍ୟ ବୋଲି ବୁଝାଇବାକୁ ସମର୍ଥ ହୋଇଥିଲେ ପୁରୋହିତ ଶ୍ରେଣୀ । ଜନସାଧାରଣ ଏକ ଅବୈଜ୍ଞାନିକ, ବିଭ୍ରାନ୍ତିକର ଏବଂ ଅସତ୍ୟ ତତ୍ତ୍ୱକୁ ସତ୍ୟ ବୋଲି ଗ୍ରହଣ କରିନେବା ବ୍ୟତୀତ ତାଙ୍କ ନିକଟରେ ଆଉ ଅନ୍ୟ କୌଣସି ଉପାୟ ନଥିଲା । କାଳକ୍ରମେ ମଣିଷର ଏହି ଈଶ୍ୱରବିଶ୍ୱାସକୁ ଶାସକ ଶ୍ରେଣୀ ନିଜ ସ୍ୱାର୍ଥରେ ଲଗାଇଲେ । ପୃଥିବୀର ବିଭିନ୍ନ ଦେଶର ପ୍ରାଚୀନ ଗ୍ରନ୍ଥ ପାଠକଲେ ଏହାର ଭୁରି ଭୁରି ପ୍ରମାଣ ମିଳେ । ଫ୍ରାନ୍ସର ଲୁଇ ବଂଶ, ଇଂଲଣ୍ଡର ଷ୍ଟୁଆର୍ଟ ରାଜବଂଶ ପ୍ରକାଶ୍ୟରେ ପ୍ରଚାର କଲେ, "The King is the Divine representative of God. To disobey the king is to disobey the God." (ରାଜା ଈଶ୍ୱରଙ୍କ ପ୍ରତିନିଧି, ରାଜାଙ୍କୁ ଅବମାନନା କରିବା ଅର୍ଥ ଈଶ୍ୱରଙ୍କୁ ଅବମାନନା କରିବା) ଭାରତୀୟ ପ୍ରାଚୀନ ଗ୍ରନ୍ଥମାନଙ୍କରେ ମଧ୍ୟ ଏହି ଧ୍ୱନୀ ଅନୁରଣିତ । ଆମ ଦେଶରେ ରାଜାଙ୍କୁ କୁହାଯାଉଥିଲା ଚଳନ୍ତି ବିଷ୍ଣୁ- ବିଷ୍ଣୁଙ୍କ ଅବତାର । ଧର୍ମଶାସ୍ତ୍ରମାନଙ୍କରେ ରାଜାଙ୍କୁ 'ପାଳନ କର୍ତ୍ତା, ତ୍ରାଣକର୍ତ୍ତା, ବାପା ମା' ଭାବେ ଚିତ୍ରଣ କରାଯାଇଛି । ଏସବୁ ଧର୍ମର ବାଣୀ ଶୁଣି ଶୁଣି ଜନସାଧାରଣ ସେଦିନ ଏକରକମ ମୂକ ପାଲଟି ଯାଇଥିଲା । ପ୍ରତିବାଦର ସାହସ, ନୈତିକ ମନୋବଳ ସେ ହରାଇ ବସିଥିଲା । ରାଜାର ଶାସନ, ଅତ୍ୟାଚାର ଦୀର୍ଘାୟିତ ହେବା ପାଇଁ ଏହା ଥିଲା ଅପୂର୍ବ ସୁଯୋଗ ।

## ଈଶ୍ୱର ଧାରଣା ସବୁ ଧର୍ମରେ ଏକା ନୁହେଁ:-

ପୃଥିବୀର ବିଭିନ୍ନ ଦେଶରେ ବାସ୍ତବତାର ଭିତ୍ତିରେ ବିଭିନ୍ନ ଧର୍ମ ଗଢ଼ିଉଠିଛି । ହିନ୍ଦୁ, ଇସଲାମ, ଖ୍ରୀଷ୍ଟିଆନ, ବୌଦ୍ଧ, ଜୈନ, ଶିଖ, ଜୋରାଷ୍ଟ୍ରିଆନ ଇତ୍ୟାଦି ବିଭିନ୍ନ ଧର୍ମ ଆମେ ପ୍ରତ୍ୟକ୍ଷ କରିଥାଉ । ଏ ସମସ୍ତ ଧର୍ମର ମୂଳ ଭିତ୍ତିଟା ଭଗବତ୍ ବିଶ୍ୱାସ ହେଲେ ହେଁ ଆଚାର ବିଚାର, ରୀତି ନୀତି ଇତ୍ୟାଦି କ୍ଷେତ୍ରରେ ଗୋଟିଏ ଧର୍ମ ଆଉ ଗୋଟିଏ ଧର୍ମଠାରୁ ପୃଥକ୍ । ଇସଲାମ୍ ଏବଂ ଖ୍ରୀଷ୍ଟିଆନ ଧର୍ମରେ ଏକେଶ୍ୱରବାଦ (Monism) ପ୍ରଚଳିତ ଥିବା ସମୟରେ ହିନ୍ଦୁଧର୍ମରେ ବହୁ ଈଶ୍ୱରବାଦ (Polytheism) ପ୍ରଚଳିତ । ହିନ୍ଦୁ ଧର୍ମରେ ତେତ୍ରିଶ କୋଟି ଦେବା ଦେବୀର କଳ୍ପନା କରାଯାଇଛି । ହିନ୍ଦୁ ଧର୍ମରେ ବହୁ ଈଶ୍ୱରବାଦର ବିଶ୍ୱାସ ବହୁ ପ୍ରାଚୀନ ।

ଧର୍ମ ଏବଂ ଈଶ୍ୱରରେ କଳ୍ପନା କରାଯାଇଥିଲା ମଣିଷକୁ ସତ୍‌ପଥରେ ପରିଚାଳିତ କରିବା ପାଇଁ, ଅନ୍ୟାୟ ଅସତ୍ ପଥରୁ ଦୂରେଇ ରହିବା ପାଇଁ ଏବଂ ସର୍ବୋପରି ମଣିଷକୁ ଭଲ ପାଇବା ପାଇଁ, ସାମାଜିକ କର୍ମ ସୁଚାରୁ ରୂପେ ସଂପାଦନ କରିବା ପାଇଁ । କିନ୍ତୁ କାଳକ୍ରମେ ସମୟର ଗତିପଥରେ ଧର୍ମରେ କଳଙ୍କି ଲାଗିଲା । ଧର୍ମରାଜ୍ୟରେ ଆବିଳତା ପ୍ରବେଶ କଲା । ଧର୍ମ ଏବଂ ଈଶ୍ୱର ଶାସକ, ଶୋଷକ ଶ୍ରେଣୀ ହାତରେ ହୋଇଗଲା କ୍ରୀଡନକ । ଧର୍ମ ଏବଂ ଈଶ୍ୱର ନାମରେ ସମାଜରେ ବ୍ୟଭିଚାର ବୃଦ୍ଧି ପାଇଲା । ଧର୍ମର ମୁଖ୍ୟ ଉଦ୍ଦେଶ୍ୟ 'ମାନବ ପ୍ରେମ' କୁଆଡେ ଉଭେଇ ଗଲା । ଧର୍ମ ଏବଂ ଈଶ୍ୱର ନାମରେ ଦଳେ ଧୂର୍ତ୍ତ, ଶଠ, ପ୍ରବଞ୍ଚକ ଆଉ ଦଳେ ସରଳ, ନିରୀହ ମଣିଷଙ୍କୁ ଶୋଷଣ କରିବାକୁ ଲାଗିଲେ, ତାଙ୍କ ଉପରେ ଅତ୍ୟାଚାର କରିବାକୁ ଲାଗିଲେ । ଧର୍ମ କେବଳ କେତେକ ନିଛକ କର୍ମକାଣ୍ଡ (Rituals) ଆଚାର ଆଚରଣରେ ଆବଦ୍ଧ ରହିଲା ।

ଲକ୍ଷ୍ୟ କରନ୍ତୁ, ଧର୍ମରାଜ୍ୟରେ ଯେତେବେଳେ ଏହିପରି ସଂକଟ ଦେଖାଯାଇଛି, ସେତେବେଳେ ଧର୍ମକୁ ସଂସ୍କାର କରିବା ଆବଶ୍ୟକ ହୋଇପଡିଛି । ଧର୍ମରେ ଯଦି ଏହି ସଂସ୍କାର କାର୍ଯ୍ୟ ଚାଲିନଥାନ୍ତା, ତା କେବେଠୁ ମରିସାରନ୍ତାଣି । ପ୍ରତ୍ୟେକ ଧର୍ମ ସମୟାନୁଯାୟୀ ସଂଶୋଧିତ ହୋଇଛି । ସବୁ ଧର୍ମରେ ସଂସ୍କାରକମାନଙ୍କର ଆବିର୍ଭାବ ହୋଇଛି, ଧର୍ମରାଜ୍ୟରେ ସେମାନେ ବିପ୍ଳବାତ୍ମକ ଭୂମିକା ଗ୍ରହଣ କରିଛନ୍ତି । ବୌଦ୍ଧଧର୍ମ ହୀନଯାନ ଓ ମହାଯାନ; ଜୈନଧର୍ମ ଶ୍ୱେତାମ୍ବର ଓ ଦିଗାମ୍ବର, ଖ୍ରୀଷ୍ଟିଆନ ଧର୍ମ କ୍ୟାଥଲିକ୍ ଓ ପ୍ରୋଟେଷ୍ଟାଣ୍ଟ, ଇସଲାମ ଧର୍ମ ସିଆ ଓ ସୁନି- ଏହିପରି ସମସ୍ତ ଧର୍ମ ଏକାଧିକ ସଂପ୍ରଦାୟରେ ବିଭାଜିତ ହୋଇଛନ୍ତି । ହିନ୍ଦୁଧର୍ମର ଅବସ୍ଥାତ ଆହୁରି ଖରାପ । ଏହା କେତେ ଗୋଷ୍ଠୀ ଏବଂ ସଂପ୍ରଦାୟରେ ବିଭକ୍ତ, ଗଣି କହିବା ମୁସ୍କିଲ୍ । ଶୈବ, ଶାକ୍ତ, ବୈଷ୍ଣବ, ଦ୍ୱୈତ, ଅଦ୍ୱୈତ, ବ୍ରହ୍ମବାଦୀଙ୍କ ଠାରୁ ଆରମ୍ଭ କରି ସତ୍ୟସାଇ, ଅନୁକୂଳ ଚନ୍ଦ୍ର, ଶିବାନନ୍ଦ, ନିଗମାନନ୍ଦ, ରବିଶଙ୍କର ଗୋଷ୍ଠୀ ପର୍ଯ୍ୟନ୍ତ -

ଏଠାରେ ସମସ୍ତେ ନିଜକୁ ହିନ୍ଦୁ ଭାବେ ପରିଚୟ ଦେବା ସତ୍ତ୍ୱେ ନିଜ ନିଜର ସ୍ୱତନ୍ତ୍ର ଆସ୍ଥାନ ଜମେଇ ବସିଛନ୍ତି ।

ଧର୍ମର ଆଦିକାଳରେ ବୃକ୍ଷଲତା, ପଶୁପକ୍ଷୀ, ପାହାଡ଼ ପର୍ବତ ଇତ୍ୟାଦି ବସ୍ତୁ ଜଗତ ଥିଲା ମଣିଷର ଆରାଧ୍ୟ । ଏକ ବିଶେଷ ସମୟରେ ଧର୍ମରାଜ୍ୟରେ ଆବିର୍ଭାବ ହେଲେ ତେତ୍ରିଶ କୋଟି ଦେବାଦେବୀ । ଏହାପରେ ଦେବାଦେବୀଙ୍କ ସଂଖ୍ୟା ଖସି ଆସିଲା ଦୁଇକୁ-ପ୍ରକୃତି ଏବଂ ପୁରୁଷ । ଏହାପରେ ଶଙ୍କରାଚାର୍ଯ୍ୟ ଆସିଲେ, କହିଲେ ଦେବା ଦେବୀ, ପ୍ରକୃତି ପୁରୁଷ-ଏସବୁ ମିଥ୍ୟା । ବ୍ରହ୍ମସତ୍ୟ, ଜଗତ୍ ମିଥ୍ୟା । ଫଳରେ ଖ୍ରୀଷ୍ଟିଆନ, ଇସଲାମ୍ ଧର୍ମ ପରି ହିନ୍ଦୁ ଧର୍ମରେ ମଧ୍ୟ ଏକେଶ୍ୱରବାଦ (Monotheism) ସ୍ଥାନ ପାଇଲା । ଆଧୁନିକ କାଳରେ ଈଶ୍ୱର ଧାରଣାର ଏକ ବଡ଼ ଧରଣର ପରିବର୍ତ୍ତନ ହେଲା । ପ୍ରାଚୀନ ହିନ୍ଦୁଧର୍ମର ଚିନ୍ତାଭାବନାକୁ ନୂତନ ଢ଼ଙ୍ଗରେ ଉପସ୍ଥାପନା କରି, କଥାର ମାରପେଞ୍ଚ ମଧ୍ୟ ଦେଇ କିଛି ତଥାକଥିତ ସାଧୁ ନିଜକୁ ଈଶ୍ୱର ବୋଲି ଦାବି କଲେ । "ଈଶ୍ୱର ଆଉ ଜଗତ ବାହାରେ ନାହାନ୍ତି । ମୁଁ ହିଁ ଈଶ୍ୱର । ମୋତେ ଭଜ, ମୁକ୍ତି ପାଇବ"- ଏହା ହେଲା ଆଧୁନିକ ଈଶ୍ୱରମାନଙ୍କର ଜନସାଧାରଣଙ୍କ ପ୍ରତି ଆହ୍ୱାନ । ଏହି ପ୍ରକ୍ରିୟାରେ ଅନୁକୂଳ ହେଲେ ଠାକୁର, ସତ୍ୟସାଇ, ରଜନୀଶ ହେଲେ ଭଗବାନ । ଆଜି ଏହି ମଣିଷ ଭଗବାନ୍‌ଙ୍କ ପ୍ରଚଣ୍ଡ ପ୍ରଭାବ ଆମେ ସମାଜରେ ଲକ୍ଷ୍ୟ କରୁ ।

## ପୁରାଣ ବର୍ଣ୍ଣିତ ଦେବାଦେବୀ ଜନଜୀବନର ପ୍ରତିଛବି ବହନ କରେ:-

ଏହି ଈଶ୍ୱର ଚିନ୍ତାର ବିକାଶର ଧାରାରେ ଈଶ୍ୱରଙ୍କ ସଂଖ୍ୟା ଏକ ନହୋଇ ହେଲା ଏକାଧିକ । ଆମ ପୁରାଣ ଶାସ୍ତ୍ରରେ ତେତ୍ରିଶ କୋଟି ଦେବାଦେବୀଙ୍କର କଳ୍ପନା କରାଯାଇଛି । ପ୍ରତ୍ୟେକ ଦେବତା ଏକ ବିଶେଷ ବିଭାଗର ମୁଖ୍ୟ । ଯେପରି ସରସ୍ୱତୀ ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ, ଲକ୍ଷ୍ମୀ ଧନର, ବ୍ରହ୍ମା ସୃଷ୍ଟି କର୍ତ୍ତା, ବିଷ୍ଣୁ ପାଳନକର୍ତ୍ତା, ଶିବ ସଂହାର କର୍ତ୍ତା ଇତ୍ୟାଦି । ପ୍ରତ୍ୟେକ ଦେବତାଙ୍କର ନିଜସ୍ୱ ବାହନ ଅଛି, ଯାହା ଉପରେ ସବାର ହୋଇ ସେ ଯିବା ଆସିବା କରନ୍ତି, ଯେପରି ଲକ୍ଷ୍ମୀଙ୍କ ବାହନ ପେଚା, ସରସ୍ୱତୀଙ୍କ ବାହାନ ହଂସ, ଦୁର୍ଗାଙ୍କ ବାହାନ ସିଂହ, ବିଷ୍ଣୁଙ୍କ ବାହନ ଗରୁଡ ଇତ୍ୟାଦି । ସେହିପରି ପ୍ରତ୍ୟେକ ଦେବତାଙ୍କୁ ପୂଜା ବା ସନ୍ତୁଷ୍ଟ କରିବା ପାଇଁ ବିଶେଷ ମନ୍ତ୍ରର ମଧ୍ୟ ବ୍ୟବସ୍ଥା କରାଯାଇଛି ।

ଏହି ଦେବାଦେବୀଙ୍କୁ ଭୋଗ ବା ନୈବେଦ୍ୟ ଅର୍ପଣ କରୁ ଆମର ମନସ୍କାମନା ପୂର୍ଣ୍ଣ ପାଇଁ । ଅର୍ଥାତ୍ ଦେବତାଙ୍କୁ ଲାଞ୍ଚ ଯାଚିଥାଉ । ଦେବତାଙ୍କୁ ସର୍ବଶକ୍ତିମାନ, ସର୍ବଦ୍ରଷ୍ଟା, ସଚରାଚର ବୋଲି ଆମେ ଭାବିଥାଉ । କିନ୍ତୁ ସବୁଠୁ ମଜାର କଥା ହେଉଛି, ଏହି ଦେବାଦେବୀଙ୍କର କଳ୍ପନା କରାଯାଇଛି ମଣିଷର ଛାଞ୍ଚରେ, ବିଶେଷ କରି ରାଜାଙ୍କୁ ଲକ୍ଷ୍ୟ କରି । ଦେବତା ହେଉଛି ରାଜାଙ୍କର ନିଛକ ପ୍ରତିଛବି । ମଣିଷର ସମସ୍ତ ବୈଶିଷ୍ଟ୍ୟ ନେଇ

ଦେବତାର ସୃଷ୍ଟି । ସମାଜରେ ରହି ମଣିଷ ଯାହା ଯାହା କରେ, ଦେବତାମାନେ ମଧ୍ୟ ତଦ୍ରୂପ କରିଥାନ୍ତି । ମଣିଷ ଯେପରି ସମାଜରେ ଜନ୍ମ ହୁଏ, ଲାଳିତ ପାଳିତ ହୁଏ, ବୟସ ହେଲାପରେ ବିବାହ କରେ, ଛୁଆପିଲା ଜନ୍ମକରେ, ପିଲା-ସ୍ତ୍ରୀ ନେଇ ଘରସଂସାର କରେ ଏବଂ ଶେଷରେ ମରେ, ସେହିପରି ଦେବତାମାନେ ମଧ୍ୟ ମଣିଷ ପରି ଜନ୍ମ ହୁଅନ୍ତି, ବଡ ହୁଅନ୍ତି, ବାହାସାହା ହୋଇ ଘର ସଂସାର କରନ୍ତି, ସନ୍ତାନ ସନ୍ତତି ଜନ୍ମ କରନ୍ତି ।

କୌଣସି ନାରୀପ୍ରତି ଆକୃଷ୍ଟ ହୋଇ ତାକୁ ଭୁଲେଇ ଭାଲେଇ ନେଇ ପଳେଇବା, ନାରୀର ସତୀତ୍ୱ, ସଂଭ୍ରମ ନଷ୍ଟ କରିବା, ନାରୀ ଧର୍ଷଣ ତଥା ନାରୀର ଶ୍ଳୀଳତା ହାନୀ କରିବା ପରି କର୍ମ ଗୁଡିକ ଯିଏ କରେ, ଆମେ ତାକୁ ସମାଜବିରୋଧୀ, ଅସଭ୍ୟ ବୋଲି କହିଥାଉ, ସେଇ କୁକର୍ମ ଯିଏ କରେ ଆମେ ତାକୁ ନିନ୍ଦାକରୁ, ଘୃଣା କରିଥାଉ ଏବଂ ପ୍ରଚଳିତ ଆଇନ ଅନୁଯାୟୀ ଦଣ୍ଡବିଧାନ ମଧ୍ୟ କରିଥାଉ । ଦେବତାମାନେ ମଧ୍ୟ ଏହି ଅସାମାଜିକ କାର୍ଯ୍ୟ କଳାପରୁ ମୁକ୍ତ ନୁହଁନ୍ତି । ବ୍ରହ୍ମା ତାଙ୍କ ଝିଅ ପଛରେ ପ୍ରେମ ପାଗଳ ହୋଇ ଗୋଡେଇ ଥିଲେ । ଦେବରାଜ ଇନ୍ଦ୍ର ଏବଂ ସୂର୍ଯ୍ୟ ମାନବୀ କନ୍ୟା ଅହଲ୍ୟାଙ୍କ ରୂପରେ ମୁଗ୍ଧ ହୋଇ ତାଙ୍କୁ ଧର୍ଷଣ କରିଥିଲେ । ବିଷ୍ଣୁ ବୃନ୍ଦାଙ୍କ ସତୀତ୍ୱ ଲୁଣ୍ଠନ କରିଥିଲେ । ନାରୀହରଣ କାର୍ଯ୍ୟରେ କୃଷ୍ଣ ଏବଂ କୃଷ୍ଣପୁତ୍ର ମାନେ ସମସ୍ତଙ୍କୁ ବଳିଯାଇଥିଲେ । ସୂର୍ଯ୍ୟ, ଇନ୍ଦ୍ର, ଧର୍ମ, ପବନ ଏବଂ ଅଶ୍ୱିନୀକୁମାର କୁନ୍ତୀ ଏବଂ ମାଦ୍ରୀଙ୍କ ସହିତ ଯୌନ ସଂପର୍କ ରଖିଥିଲେ । ଇନ୍ଦ୍ରଙ୍କ ପରି ଲଂପଟ ଚରିତ୍ର ପୁରାଣ ଶାସ୍ତ୍ର ଖୋଜିଲେ ବୋଧେ ମିଳିବନି । ସୁନ୍ଦରୀ ନାରୀ ଦେଖିଲେ ଛଳେବଳେ କୌଶଳେ ତାକୁ ହାତ କରି ଉପଭୋଗ କରିବାରେ ସେ ଥିଲେ ଓସ୍ତାଦ ।

ରାଜାଙ୍କୁ ଖୁସ୍ କରାଇବା ପାଇଁ ରାଜସଭାରେ ରାଜନର୍ତ୍ତକୀ, ବାରଙ୍ଗନାମାନେ ମହଯୁଦ୍ ଥିଲେ । ସ୍ୱର୍ଗ ରାଜ୍ୟରେ ମଧ୍ୟ ଦେବତାମାନଙ୍କୁ ଖୁସି କରାଇବା ପାଇଁ ରମ୍ଭା, ମେନକା, ଉର୍ବଶୀ, ତିଳୋତ୍ତମା ଇତ୍ୟାଦି ସ୍ୱର୍ଗ ବେଶ୍ୟାମାନେ ମହଯୁଦ୍ ଥିଲେ; ଯେଉଁମାନେ କି ନିଜର ନୃତ୍ୟ, ଗୀତ, ରୂପ ଯୌବନ ଦେଇ ଦେବଗଣଙ୍କୁ ପରିତୃପ୍ତ କରୁଥିଲେ । ଏଥିରୁ ସାମାନ୍ୟ ଟିକେ ଊଣା ହେଉଥିଲେ ଦେବଗଣଙ୍କର ଭତ୍ସନା ଏବଂ ଅଭିଶାପ ମଧ୍ୟ ସହିବାକୁ ପଡୁଥିଲା । ରାଜାମାନେ ଯେପରି ପରସ୍ପର ମଧ୍ୟରେ ଯୁଦ୍ଧରେ ବ୍ୟାପୃତ ରହୁଥିଲେ, ଦେବଗଣ ମଧ୍ୟ ବିଭିନ୍ନ ସମୟରେ ନିଜ ନିଜ ମଧ୍ୟରେ ଯୁଦ୍ଧ କରୁଥିଲେ । ରାଜତନ୍ତ୍ରରେ ପିତା ପୁତ୍ରର କଳହ, ଯୁଦ୍ଧ ଯେପରି ଥିଲା ନିତିଦିନିଆ ଘଟଣା, ଦେବତା ବାପ ପୁଅଙ୍କ ମଧ୍ୟରେ ମଧ୍ୟ ଯୁଦ୍ଧ, ସଂଘର୍ଷ ଲାଗି ରହିଥିଲା । ଯୁଦ୍ଧରେ ଦେବତାମାନେ ମଧ୍ୟ ମରୁଥିଲେ । ଶିବ-ଗଣେଶ ଯୁଦ୍ଧରେ ଗଣେଶ ମୃତ୍ୟୁ ବରଣ କରିଥିଲେ, ପରେ ହାତୀମୁଣ୍ଡ ଲଗାଇ ତାଙ୍କୁ ଜୀବନ୍ୟାସ ଦିଆଯାଇ ଥିଲା । କନ୍ଦର୍ପ ଶିବଙ୍କ କୋପରେ ଅନେକବାର ଭସ୍ମ ହୋଇ ଥିଲେ, କୃଷ୍ଣ ଜାରାଶବର ଦ୍ୱାରା ନିହତ ହୋଇଥିଲେ ।

ଦେବତାମାନଙ୍କ ପାଇଁ ସ୍ୱର୍ଗଲୋକର କଳ୍ପନା କରାଯାଇଥିଲେ ହେଁ ଅନେକ ଦେବତା ମର୍ତ୍ତ୍ୟରେ ବାସ କରୁଥିଲେ । ଶିବଙ୍କ ନିବାସ ଥିଲା କୈଳାସ ପର୍ବତରେ, କୃଷ୍ଣଙ୍କ ଘର ଥିଲା ମଥୁରାରେ, ମଣିଷମାନେ ଯେପରି ଅନେକ ସମୟରେ ପ୍ରଚଳିତ ନୀତିନିୟମକୁ ଉଲଂଘନ କରି, ସାମାଜିକ ଆଚାର ବିଚାରକୁ ପଦଦଳିତ କରି, ଗୁରୁ ଗୁରୁଜନମାନଙ୍କୁ ଅସମ୍ମାନ ପ୍ରଦର୍ଶନ କରୁଥିଲେ, ଦେବତାମାନେ ମଧ୍ୟ ଏପରି ଜଘନ୍ୟ କାର୍ଯ୍ୟ କଳାପରୁ ମୁକ୍ତ ନଥିଲେ । ଯମଙ୍କୁ ଧର୍ମ ଦେବତା ବୋଲି କୁହାଯାଏ । ସେ ତାଙ୍କ ମାଆଙ୍କୁ ଗୋଇଠା ମାରିଥିଲେ । କାଳୀ ଶିବଙ୍କ ଛାତିରେ ପାଦ ଦେବା ପାଇଁ କୁଣ୍ଠାବୋଧ କରିନଥିଲେ ।

ଆଗରୁ କହିଛି, ଦେବତାମାନେ ହେଉଛନ୍ତି ଅତୀତର ରାଜାମାନଙ୍କର କାର୍ବନ କପି । ରାଜାମାନଙ୍କ ପରି ସେମାନଙ୍କର ପରିଧାନ, ମସ୍ତକରେ ରାଜମୁକୁଟ । ରାଜାମାନେ ଯେପରି ବିଳାସ ବ୍ୟସନ, ଆମୋଦ ପ୍ରମୋଦ, ଆଳସ୍ୟରେ ଜୀବନ ବିତାଉଥିଲେ, ଦେବତାମାନେ ମଧ୍ୟ ତଦ୍ରୂପ ବିଳାସପ୍ରିୟ ଥିଲେ । ରାଗ, କ୍ରୋଧ, ଈର୍ଷା, ଲୋଭ, ଅହଂ ଇତ୍ୟାଦି ଯାହାକୁ ଆମେ ସାଧାରଣତଃ ମାନବିକ ପ୍ରବୃତ୍ତି ବୋଲି କହିଥାଉ, ଏହି ସମସ୍ତ ପ୍ରବୃତ୍ତି ଗୁଡିକର ଉର୍ଦ୍ଧ୍ୱରେ ନଥିଲେ ଦେବତାମାନେ । ଦେବତାମାନଙ୍କ ନିକଟରେ ଯେଉଁଟା ଅସ୍ୱାଭାବିକ ବୋଲି ମନେହୁଏ, ତା ହେଲା ତାର ଅସୀମ କ୍ଷମତାର କଳ୍ପନା । ଚତୁର୍ଭୁଜ, ଷଡ୍‌ଭୁଜ, ଦଶଭୁଜଠୁ ଆରମ୍ଭ କରି ସହସ୍ରଭୁଜ ପର୍ଯ୍ୟନ୍ତ କଳ୍ପନା କରାଯାଇଛି ଦେବତାମାନଙ୍କୁ । ସ୍ଥଳ ବିଶେଷରେ ଦେବତାର ରୂପ କେତେବେଳେ ସାକାର ପୁଣି କେତେବେଳେ ନିରାକାର । ମଣିଷ ମରଣଶୀଳ ଥିବାବେଳେ ଦେବତାମାନଙ୍କୁ ଅମରତ୍ୱ ପ୍ରଦାନ କରାଯାଇଛି । ଏପରିକି ଦେବମାନବ ଯୁଦ୍ଧରେ ଅନେକ ସମୟରେ ଦେବତାମାନେ ମଣିଷଠୁ ହାରିଛନ୍ତି । ଉଭୟ ରାଜା ଏବଂ ଈଶ୍ୱରଙ୍କୁ ଲୋକେ ଭୟରେ ଭକ୍ତି କରୁଥିଲେ । କାରଣ ପ୍ରଜାମାନେ ଥିଲେ ଅତ୍ୟନ୍ତ ଅସହାୟ ଏବଂ ରାଜା ଓ ଈଶ୍ୱର ପ୍ରଚଣ୍ଡ କ୍ଷମତା ସଂପନ୍ନ ।

ଦେବତା ମଣିଷର ମାନସ ସନ୍ତାନ, ମଣିଷଙ୍କର ବିଚିତ୍ର କଳ୍ପନାରୁ ସେ ସୃଷ୍ଟି । ମଣିଷ ବିଭିନ୍ନ ପରିବେଶରେ ଯେମିତି ଯେମିତି ଚିନ୍ତାଭାବନା କରିଛି, ସେହିପରି ଭାବରେ ସେ ତାର ତୂଳୀକା ସ୍ପର୍ଶରେ ଈଶ୍ୱରଙ୍କୁ ରୂପ ଦେଇଛି । ସେଥିପାଇଁ ଆମେ ଦେଖୁ, କେଉଁ ଦେବତା ମହାମୂଲ୍ୟ ମୁକୁଟଧାରୀ ତ କେଉଁ ଦେବତା ଜଟାଜୁଟଧାରୀ । କେଉଁ ଦେବତା ଅତିମାତ୍ରାରେ ଉଗ୍ର ସ୍ୱଭାବ ତ କେଉଁ ଦେବତା ଲଂପଟ ସ୍ୱଭାବର ଅଥବା କୂଟକପଟୀ । କୌଣସି ଦେବତାଙ୍କୁ ଶତ ପ୍ରତିଶତ ଉତ୍ତମଗୁଣ ଦେଖିବାକୁ ମିଳେନି କାରଣ ମଣିଷ ମଧ୍ୟ ଶତ ପ୍ରତିଶତ ଉତ୍ତମ ଗୁଣ ବିଶିଷ୍ଟ ନୁହେଁ । ଈଶ୍ୱରର ସ୍ରଷ୍ଟା ଯେହେତୁ ମଣିଷର ଏହି ମସ୍ତିଷ୍କ, ତେଣୁ ଈଶ୍ୱରଙ୍କୁ ବାହାରେ ଖୋଜିଲେ ମିଳିବ କେଉଁଠୁ ?

ମୁନିଋଷିଠାରୁ ଆରମ୍ଭକରି ସାଧାରଣ ଲୋକ ପର୍ଯ୍ୟନ୍ତ-ସମସ୍ତେ ଈଶ୍ୱରଙ୍କୁ ଖୋଜି ଖୋଜି ନାକେଦମ୍ ହୋଇ ଯାଇଛନ୍ତି, କିନ୍ତୁ କେହି ପାଇନାହାନ୍ତି, କାରଣ ଈଶ୍ୱର ବୋଲି ସେପରି କୌଣସି ଅଦ୍ଭୁତ ଜୀବର ସତ୍ତା ନାହିଁ । ଈଶ୍ୱରର ଭାବନା ମଣିଷ ମନର କଳ୍ପନା । ଘୋଡା ଡିମ୍ବ ଦିଏନା, ଛୁଆ ଜନ୍ମକରେ, ଏକଥା ସମସ୍ତେ ଜାଣନ୍ତି । ଅଥଚ ଆମେ ସମସ୍ତେ କଥା କଥାକେ 'ଘୋଡା ଡିମ୍ବ' ଶବ୍ଦର ବ୍ୟବହାର କରୁ । ସେହିପରି ଈଶ୍ୱର ଶବ୍ଦଟି ଆମେ କଥାକଥାକେ ବ୍ୟବହାର କରିଥାଉ । ଅସୁବିଧାରେ ପଡିଲେ 'ହେ ଭଗବାନ' ବୋଲି ପାଟିରୁ ସ୍ୱତଃ ବାହାରି ପଡେ । 'ଈଶ୍ୱର ଭରସା' ବୋଲି ଆମେ ଟିକେ ଟିକେ କଥାରେ କହିଥାଉ । ଅଥଚ ଏହି ଈଶ୍ୱର ଯେ କିଏ, କେଉଁଠି ରହନ୍ତି, କେହି ଜାଣନ୍ତିନି, କାରଣ ଈଶ୍ୱରଙ୍କ ବାସସ୍ଥାନ ହେଉଛି ମଣିଷର ମସ୍ତିଷ୍କ- ତା କଳ୍ପଜଗତ । ମଣିଷ ଚାହିଁଲେ ଈଶ୍ୱରଙ୍କୁ ତାଙ୍କର ବାସସ୍ଥାନରୁ କାଢ଼ି ଅଳିଆଗଦାରେ ଫିଙ୍ଗି ଦେଇପାରେ ।

## ସ୍ୱର୍ଗରାଜ୍ୟର କଳ୍ପନା ସବୁ ଧର୍ମରେ ସମାନ ନୁହେଁ:-

ଦେବତାମାନଙ୍କର ବାସସ୍ଥାନ ସ୍ୱର୍ଗରାଜ୍ୟ ବୋଲି ଧର୍ମଶାସ୍ତ୍ରରେ କଳ୍ପନା କରାଯାଇଛି । ଏହି ସ୍ୱର୍ଗରାଜ୍ୟର କଳ୍ପନା ସବୁଧର୍ମରେ ସମାନ ନୁହେଁ । ସ୍ଥାନ, କାଳ, ପରିବେଶ ଅନୁଯାୟୀ ଏହାର କଳ୍ପନା ଭିନ୍ନ ଭିନ୍ନ । ବିଶେଷ କରି ଏହି ଧର୍ମଶାସ୍ତ୍ରର ପ୍ରଣେତା ଯେଉଁ ଅଞ୍ଚଳର ଅଧିବାସୀ, ସେ ଅଞ୍ଚଳର ବାସ୍ତବ ପରିସ୍ଥିତି (Material Conditon) ଦ୍ୱାରା ସେ ପ୍ରଭାବିତ ହୋଇଥାନ୍ତି ଏବଂ ତା ସହିତ କଳ୍ପନାର ରଂଗ ମିଶେଇ ସେ ଗଢ଼ିଥାନ୍ତି ସ୍ୱର୍ଗ । ତେବେ ଗୋଟିଏ କ୍ଷେତ୍ରରେ ଶାସ୍ତ୍ରକାରମାନେ ଏକ୍ । ମଣିଷ ପାଇଁ ମର୍ତ୍ତ୍ୟରେ ଅର୍ଥାତ୍ ଏହି ପୃଥିବୀରେ ଯାହା କିଛି ଦୁଷ୍ପ୍ରାପ୍ୟ, ସେସବୁ ଦୁର୍ଲଭ ବସ୍ତୁ ସ୍ୱର୍ଗରେ ମିଳେ ବୋଲି ସବୁଧର୍ମର ମତ । ହିନ୍ଦୁର ସ୍ୱର୍ଗରାଜ୍ୟରେ ସଦା ସର୍ବଦା ବସନ୍ତ ପବନ ବହୁଥାଏ, କୋଇଲିର ମଧୁର କୁହୁତାନ ଶୁଭୁଥାଏ । ଅପସରା, ଗନ୍ଧର୍ବ, କିନ୍ନରମାନଙ୍କ ମନଲୋଭା ନୃତ୍ୟଗୀତରେ ସ୍ୱର୍ଗରାଜ୍ୟ କମ୍ପମାନ ହେଉଥାଏ । ଦେବତାମାନେ ବିଳାସବ୍ୟସନରେ ରହି ଏସବୁ ଉପଭୋଗ କରୁଥାନ୍ତି । ସ୍ୱର୍ଗବାସୀଙ୍କୁ ମୃତ୍ୟୁ ସ୍ପର୍ଶ କରେ ନାହିଁ । ସୁଖ ଶାନ୍ତି ଆନନ୍ଦ ଯାହା ଯାହା ମଣିଷର କାମ୍ୟ, ସେସବୁ ସ୍ୱର୍ଗରାଜ୍ୟରେ ଥାଏ ଭରପୁର ।

ମହାଭାରତର ଶାନ୍ତି ପର୍ବରେ ସ୍ୱର୍ଗ ରାଜ୍ୟର ବର୍ଣ୍ଣନା ଅଛି । କବି କଳ୍ପନାକୁ ଲକ୍ଷ୍ୟ କରନ୍ତୁ । ବ୍ୟାସଦେବ ଲେଖୁଛନ୍ତି : ବିବିଧ ବ୍ୟାଧି, ରୋଗ ଓ ଉପତାପ ଦ୍ୱାରା ପୀଡିତ, ବର୍ଷା, ବାୟୁ, ଉଷ୍ମ ଓ ଶୀତ ଜନିତ ଶାରୀରିକ ଦୁଃଖ ଦ୍ୱାରା ସନ୍ତପ୍ତ, ବଂଧୁ, ଧନ ବିନାଶ ଓ ବିପ୍ରଯୋଗ ଜନିତ ମାନସିକ ଦୁଃଖ ଓ ଜରା ମୃତ୍ୟୁ ପ୍ରଭୃତି ଶୋକ ସମୂହ ଇତ୍ୟାଦି ଦୋଷାଦିର ପ୍ରାଦୁର୍ଭାବ ସ୍ୱର୍ଗରେ ନାହିଁ । ସେଠାରେ ସୁଖ ସ୍ପର୍ଶ ପବନ ଓ ଉତ୍କୃଷ୍ଟ ଗନ୍ଧ ସଞ୍ଚରଣ କରୁଅଛି ଏବଂ କ୍ଷୁଧା, ପିପାସା, ଶ୍ରମ, ଜରା ଓ ପାପ କିଛି ହିଁ ନାହିଁ । ସ୍ୱର୍ଗରେ ନିତ୍ୟ ସୁଖ । ଇହ

ସଂସାରରେ ସୁଖ ଓ ଦୁଃଖ ଏବଂ ନରକରେ କେବଳ ଦୁଃଖ ବିଦ୍ୟମାନ ଅଛି । (ଅଧ୍ୟାୟ ୧୯୦) ।

ସ୍ୱର୍ଗ କେଉଁଠି ଉପସ୍ଥିତ ଲକ୍ଷ୍ୟ କରନ୍ତୁ । ସ୍ୱର୍ଗର ଅବସ୍ଥିତି ସଂପର୍କରେ ଭୃଗୁ ସଂହିତାରୁ ଆମେ କିଛିଟା ସଂକେତ ପାଉ । ମହର୍ଷି ଭୃଗୁ ଲେଖିଛନ୍ତି : ମେରୁ ଗିରିର ମସ୍ତକରେ ଏକୋଇଶିଟି ସ୍ୱର୍ଗ ଅଛି । ମେରୁର ପ୍ରଥମ ଶୃଙ୍ଗ ବୈରାଜ, ତା ବ୍ରହ୍ମାଙ୍କର ସ୍ଥାନ । ମଧ୍ୟମ ଶୃଙ୍ଗରେ ଯେଉଁ ସ୍ୱର୍ଗ ଅଛି ତା ନାଁ ବୈକୁଣ୍ଠ, ତା କେଶବଙ୍କ ସ୍ଥାନ । ପଶ୍ଚିମ ଶୃଙ୍ଗର ନାମ କୈଳାଶ । ତାହା ଶଙ୍କରଙ୍କ ସ୍ଥାନ । ସେଇ ଏକଉଶିଟି ସ୍ୱର୍ଗ ଶୃଙ୍ଗମାନଙ୍କରେ ଅଛି । ଅନ୍ୟ ଶୃଙ୍ଗ ଗୁଡିକର ନାମ ଶ୍ୱେତ, ପୌଷ୍ଟିକ, ମନ୍ମଥ, ତ୍ରିପିଷ୍ଟ, ସମନ୍ୱିତ ଇତ୍ୟାଦି । ଏହି ସ୍ୱର୍ଗ ଗୁଡିକରେ ଶୀତ ନାହିଁ, ଜରା ନାହିଁ, ମୃତ୍ୟୁ ନାହିଁ, ସର୍ବଦା ସୁଖ ସମ୍ଭୋଗରେ ଭାଜନ । ସେଗୁଡିକ ନାନା ଦ୍ରୁମରେ ସମାକୀର୍ଣ୍ଣ ଓ ନାନା ପୁଷ୍ପରେ ସମନ୍ୱିତ । ମନ ପ୍ରୀତିକର ଓ ଗନ୍ଧାଦିଗୁଣଯୁକ୍ତ ପବନମାନେ ସେ ସ୍ଥାନରେ ବହୁଥାନ୍ତି । ବେଣୁବୀଣା ପ୍ରଭୃତିର ନାଦ ଓ ଶଙ୍ଖ କାହାଳୀ ପ୍ରଭୃତି ନିଃସ୍ୱନ ଆଉ ଶ୍ରୁତି ପ୍ରୀତିକର ବହୁ ପ୍ରକାର ବାଦ୍ୟରେ ଏହି ସ୍ଥାନ ପରିପୂର୍ଣ୍ଣ । କିନ୍ନରମାନେ, ଦେବତାମାନେ, ନର୍ତ୍ତନକାରୀ ଅପସରା ଗଣ ଏଠାରେ ଅଛନ୍ତି । ଏହି ହେଉଛି ହିନ୍ଦୁର ସ୍ୱର୍ଗର କଳ୍ପନା ।

ହିନ୍ଦୁ ସ୍ୱର୍ଗରାଜ୍ୟର ଏପରି କଳ୍ପନା କରିବାର କାରଣ ହେଲା, ସାଧାରଣ ହିନ୍ଦୁ ବା ସାଧାରଣ ଲୋକଙ୍କ ପକ୍ଷେ ଏସବୁ ଅର୍ଥାତ୍ ସୁଖଶାନ୍ତି, ଭୋଗବିଳାସ ସହଜଲବ୍ଧ ନୁହେଁ । ଖ୍ରୀଷ୍ଟାନମାନଙ୍କ ସ୍ୱର୍ଗରାଜ୍ୟରେ ସବୁବେଳେ ଗ୍ରୀଷ୍ମଋତୁ (Summer) ରାଜୁତି କରୁଥାଏ । ବରଫ, କୁହୁଡି, ପ୍ରଚଣ୍ଡ ଶୈତ୍ୟର ଚିହ୍ନ ବର୍ଣ୍ଣ ନଥାଏ । ସେହିପରି ମୁସଲମାନ ମାନଙ୍କର ସ୍ୱର୍ଗରେ ବଡ ବଡ ଜଳାଶୟ ଥାଏ । ବଡବଡ ମରୁଦ୍ୟାନ, ଖଜୁରୀ ଗଛ, ସୁନ୍ଦର ଝରଣା ଥାଏ । ପ୍ରଚଣ୍ଡ ନିଦାଘ ବଦଳରେ ସୁଶୀତଳ ଛାୟା ଉପଲବ୍ଧ ହୁଏ ସ୍ୱର୍ଗରେ । ଧର୍ମାତ୍ମାମାନଙ୍କର ସେବା କରିବା ନିମିତ୍ତ ବିଶାଳ ନୟନା, ଆନତ ଦୃଷ୍ଟି ସୁନ୍ଦରୀମାନେ ମହଜୁଦ୍ ଅଛନ୍ତି । କିଶୋରମାନେ ପାନୀୟର ପିଆଲା ଧରି ସେଠି ଘୂରୁଛନ୍ତି । ସେ ପାନୀୟର ବର୍ଣ୍ଣ ଶ୍ୱେତ ଏବଂ ସ୍ୱାଦ ଅନୁପମ । ସେହି ପାନୀୟ କାହାକୁ ମତ୍ତ କରେନା ବା ପାନ କରିଲେ ଶରୀରପୀଡା ହୁଏନା । ସେହି ସ୍ୱର୍ଗୀୟ ଉଦ୍ୟାନରେ ଦୁର୍ଗନ୍ଧମୁକ୍ତ ଜଳର ସ୍ରୋତ ସଦା ପ୍ରବାହମାନ । ଫେନ ବର୍ଜ୍ଜିତ, ଅପୂର୍ବ ସ୍ୱାଦଯୁକ୍ତ ଦୁଗ୍ଧରେ ପ୍ରବାହ ଓ ସୁରାର ସ୍ରୋତ ଧାର୍ମିକ ବ୍ୟକ୍ତିମାନଙ୍କ ପାଇଁ ଅଛି ମହଜୁଦ୍ । ପୁଣ୍ୟାତ୍ମାମାନଙ୍କ ପାଇଁ ଅଛି ଅତି ଉତ୍ତମ ଡାଳିମ୍ବ ଏବଂ ଖଜୁରୀ । ପ୍ରବାଳ କିମ୍ବା ପଦ୍ମରାଗ ମଣି ସଦୃଶ ପରିଶୁଦ୍ଧ ଗୌରବର୍ଣ୍ଣା ସଂଯମୀ ସୁନ୍ଦରୀମାନେ ସବୁଜ ଚାନ୍ଦୁଆ ତଳେ ସେହି ସବୁ ପୁଣ୍ୟାତ୍ମାମାନଙ୍କ ପାଇଁ ଅପେକ୍ଷା ରତ ।

ହିନ୍ଦୁମାନଙ୍କ ବିଶ୍ୱାସ ପରି ନାସ୍ତିକ ଏବଂ ବିଧର୍ମୀମାନଙ୍କ ପାଇଁ କୋରାନ୍‌ରେ ନରକର ବ୍ୟବସ୍ଥା ଅଛି । ପାପୀମାନଙ୍କୁ ନେଇ ନର୍କର ଅଗ୍ନିକୁଣ୍ଡରେ ନିକ୍ଷେପ କରାହୁଏ ।  ସ୍ୱର୍ଗ ଏବଂ ନର୍କ ସାମ୍ନାସାମ୍ନି । ସ୍ୱର୍ଗର ଅଧିବାସୀ ଏବଂ ନର୍କର ପାପୀମାନେ ପରସ୍ପରକୁ ଦେଖନ୍ତି । ସ୍ୱର୍ଗ ଏବଂ ନରକର ମଝିରେ ଏକ ପାଚେରୀ ଅଛି, ସେଠି ମଧ୍ୟ ଦଳେ ଲୋକ ବସନ୍ତି, ଯେଉଁମାନେକି ସ୍ୱର୍ଗର ଅଥବା ନର୍କର ବାସିନ୍ଦା ନୁହଁନ୍ତି । ଯେଉଁମାନେ ପାପ ଆଚରଣ କରନ୍ତି ସେମାନଙ୍କ ନିମନ୍ତେ ନରକର ଅଗ୍ନି ।

ଉପର ଲିଖିତ ବର୍ଣ୍ଣନାରୁ ସ୍ପଷ୍ଟ ଯେ ନିଜ ନିଜର ବାସ୍ତବ ଅବସ୍ଥା ଭେଦରେ ମଣିଷ ସ୍ୱର୍ଗ ନର୍କର କଳ୍ପନା କରିଛି ।  ଏଇ ପୃଥିବୀରେ ମଣିଷ ପାଇଁ ଯାହା ଦୁର୍ଲଭ, ଦୁଷ୍ପ୍ରାପ୍ୟ, ସ୍ୱର୍ଗରେ ତାହା ସୁଲଭ ଏବଂ ସହଜଲବ୍ଧ ବୋଲି କଳ୍ପନା କରାଯାଇଛି । ଆହୁରି ସହଜ ଭାବରେ କହିଲେ, ମଣିଷ ଜୀବଦ୍ଦଶାରେ ଯାହା ଚାହେଁ-ଭଲରେ ଗଣ୍ଡେ ଖାଇପିଇ ଶାନ୍ତିରେ ଟିକେ ରହିବା ପାଇଁ-ତାହା ସବୁ ସମୟରେ ତାକୁ ମିଳିନଥାଏ ବିଶେଷ କରି ଏକ ଶୋଷଣଭିତ୍ତିକ ସମାଜରେ ସବୁ ମଣିଷର ମୌଳିକ ଆବଶ୍ୟକତା ପୂର୍ଣ୍ଣ ହେବା ସମ୍ଭବ ନୁହେଁ । ଯାହା ଏହି ଇହଲୋକରେ ମିଳେନା, ଧର୍ମ ଏବଂ ପୁଣ୍ୟ ସଂଚୟ କଲେ ପରଜନ୍ମରେ ତାହା ପ୍ରାପ୍ତ ହୁଏ ବୋଲି ଆମର ଧର୍ମଶାସ୍ତ୍ର ଧର୍ମବିଶ୍ୱାସୀମାନଙ୍କୁ ବୁଝାଇଥାଏ ।

ସ୍ଥାନ କାଳ ଭେଦରେ ମଣିଷର କଳ୍ପନା, ଭାବନା ଚିନ୍ତାରେ ମଧ୍ୟ କିପରି ପାର୍ଥକ୍ୟ ଦେଖାଯାଇଥାଏ ତାହା ଉପରେ ଦର୍ଶାଯାଇଛି । ହିନ୍ଦୁଧର୍ମରେ ବିଶ୍ୱାସୀ ଭାରତୀୟମାନେ ପ୍ରଚଣ୍ଡ ଖରାରେ ସିଝନ୍ତି । ରୋଗ, ଶୋକ, ଦୁଃଖ ତାଙ୍କର ନିତ୍ୟ ସହଚର, ଆନନ୍ଦ, ଶାନ୍ତି, ପେଟ ଭର୍ତ୍ତିକରି ଖାଇବା ତାଙ୍କ ପାଇଁ ସାତ ସ୍ୱପ୍ନ । ସେଥିପାଇଁ ତାଙ୍କ ସ୍ୱର୍ଗରେ ଖରା ନାହିଁ, ଚିର ବସନ୍ତ ବିଦ୍ୟମାନ । ସରଳ ବିଶ୍ୱାସୀଟିଏ ମନେ ପ୍ରାଣେ ଇଚ୍ଛାକରେ ସେ ରୌଦ୍ରତାପରୁ କିପରି ରକ୍ଷା ପାଆନ୍ତା କି, ଦୁଃଖ, ଶୋକ, ଭୋକ, ଶୋଷ, ରାଗ ରୋଷ ପୃଥିବୀରୁ ଚାଲିଯାଆନ୍ତି କି, ମଣିଷ କେବେ ନମରନ୍ତା କି, ଏହି  ସୁନ୍ଦର ପୃଥିବୀକୁ ଭୋଗ କରିବାର ସୁଯୋଗ ପାଆନ୍ତା କି, କିନ୍ତୁ ଏ ସବୁତ ସେ ପାଏନା, ବରଂ ଭୋକ ଶୋଷରେ ଘାଣ୍ଟି ହୁଏ, ଦୁଃଖ, ଶୋକ, ଅଶାନ୍ତି ତାକୁ ପ୍ରତି  ମୁହୂର୍ତ୍ତରେ ତିଳ ତିଳ କରି ଦଂଶନ କରେ, ଅତି ଅସହାୟ ଭାବରେ ସେ ମରେ । ସ୍ୱର୍ଗରେ ଏସବୁ ଝାମେଲା ନାହିଁ, ବରଂ ଏଥିରୁ ସଂପୂର୍ଣ୍ଣ ମୁକ୍ତ ।

ପାଶ୍ଚାତ୍ୟ ଦେଶର ସ୍ୱର୍ଗ ଆମ ସ୍ୱର୍ଗଠାରୁ ପୃଥକ୍ । ତାଙ୍କ ଦେଶର ବାସ୍ତବ ଅବସ୍ଥା ହେଉଛି: ସେ ଦେଶଗୁଡିକ ଶୀତପ୍ରଧାନ ଦେଶ । ସଦାସର୍ବଦା ବରଫ ପଡେ । ଶୀତ ରହେ, ସୂର୍ଯ୍ୟ ମୁହଁ ସବୁଦିନ ଭଲରେ ଦେଖିବା ସ୍ୱପ୍ନ । ଲୋକମାନେ ଚାହାନ୍ତି ଶୀତବିହୀନ, ଉଜ୍ଜ୍ୱଳ ସୂର୍ଯ୍ୟ କିରଣରେ ଉଷ୍ମ  ଏକ ପରିଷ୍କାର ଦିବସ । ତାଙ୍କ ସ୍ୱର୍ଗରେ ଏହା ମହଜୁଦ୍ । ପୁଣି

ଇସଲାମ ଧର୍ମକୁ ଲକ୍ଷ୍ୟ କରନ୍ତୁ । ଆରବ ଦେଶଗୁଡ଼ିକ ମରୁଭୂମିରେ ପୂର୍ଣ୍ଣ, ପ୍ରଚଣ୍ଡ ସୂର୍ଯ୍ୟ କିରଣରେ ଉତ୍ତପ୍ତ ବାଲୁକା ରାଶି ଏବଂ ଗ୍ରୀଷ୍ମ ମଣ୍ଡଳୀୟ ଜଳବାୟୁ ଜନିତ ଅସହ୍ୟ ଜୀବନ ଯାତ୍ରା ଜନଜୀବନକୁ କରିଛି ବିପର୍ଯ୍ୟସ୍ତ । ସାଧାରଣ ଜନତା ଏଥିରୁ ରକ୍ଷା ପାଇବାକୁ ଚାହେଁ । ତାର ମନସ୍କାମନା ରୂପ ପାଇଛି ତାର ସ୍ୱର୍ଗରେ, କଳ୍ପନାରେ, ତାଙ୍କ ସ୍ୱର୍ଗରେ ପ୍ରଚୁର ପାଣି ମିଳେ, ଖଜୁରୀ ଗଛ ଅଛି, ସୁଶୀତଳ ଛାୟା ଅଛି, ଇତ୍ୟାଦି ।

ଏହିପରି ଭାବରେ ଆମେ ଯଦି ଗଭୀର ଭାବେ ବିଶ୍ଳେଷଣ କରିବା, ତେବେ ଦେଖିବା ଯେ ସ୍ଥାନ କାଳର ଭେଦରେ ସ୍ୱର୍ଗ ନର୍କର କଳ୍ପନା, ଦେବତା, ଧର୍ମ ଧାରଣା ଇତ୍ୟାଦି ଚିନ୍ତାଭାବନାରେ ମଧ୍ୟ ପାର୍ଥକ୍ୟ ଦେଖାଯାଇଥାଏ । ଏଇଥିପାଇଁ ପାର୍ଥକ୍ୟ ଦେଖାଯାଏ ଯେ ବ୍ୟକ୍ତିର ଚିନ୍ତାଭାବନା ତାର ଚତୁଃପାର୍ଶ୍ୱସ୍ଥ ପରିବେଶ ଦ୍ୱାରା ପ୍ରଭାବିତ ହୋଇଥାଏ । ଜଣେ ଯେତେବଡ଼ କ୍ଷମତାଶାଳୀ ବ୍ୟକ୍ତିତ୍ୱ ସଂପନ୍ନ ବ୍ୟକ୍ତି ହୁଅନ୍ତୁ ନା କାହିଁକି ସେ ତାଙ୍କର ବାସ୍ତବ ଅବସ୍ଥା (Material Condition) ର ଊର୍ଦ୍ଧ୍ୱରେ ଚିନ୍ତା କରିପାରିବେ ନାହିଁ ।



# ଦୁଃଖ, ଈଶ୍ୱର ଓ ହେତୁବାଦ

*ଅଧ୍ୟାପକ ଧନେଶ୍ୱର ସାହୁ*

ଆମ ସଂସାରରେ ଅନେକ ଦୁଃଖ, ଯନ୍ତ୍ରଣା, ଅଶୁଭ ଓ ମନ୍ଦର ପରିସ୍ଥିତି ରହିଛି । ସଭ୍ୟତା ଯେତେବେଳେ ଆଦିମ ସ୍ତରରେ ଥିଲା, ସେତେବେଳେ ମଣିଷ ସମାଜରେ ଯେପରି ଦୁଃଖ, ଯାତନା ଥିଲା ଆଜି ସଭ୍ୟତାର ଏତେ ବିକାଶ ପରେ ବି ମଣିଷ ସମାଜରେ ଅପ୍ରମିତ ଦୁଃଖ, କଷ୍ଟ ରହିଛି । ଏକ ଦୁଃଖ-ରହିତ ଓ ମନ୍ଦଶୂନ୍ୟ ପରିବେଶ ପ୍ରାୟତଃ କେଉଁଠି ହେଲେ ସମ୍ଭବ ହୋଇନାହିଁ । ଜ୍ଞାନ-ବିଜ୍ଞାନର ଯଥେଷ୍ଟ ବିକାଶ ହୋଇଚାଲିଛି, ନାନା ମହାମାରୀ ରୋଗମାନଙ୍କର ଚିକିତ୍ସା ପାଇଁ ମଣିଷ କ୍ରମବର୍ଦ୍ଧିଷ୍ଣୁ ଭାବେ ଆବଶ୍ୟକୀୟ ଜ୍ଞାନ ଲାଭ କରିବାରେ ସମର୍ଥ ହେଉଛି, ଦୁର୍ଭିକ୍ଷ, ମହାମାରୀ ପୃଥିବୀରୁ ଲୋପ ହୋଇ ଆସୁଛି ଏସବୁ ସଫଳତା ସତ୍ତ୍ୱେ ତଥାପି ସଂସାରରୁ ଦୁଃଖ, ଅଶୁଭ ଓ ମନ୍ଦ ବା ଇଭିଲ (evil) ର ଲୋପ ହେଉନାହିଁ । ରାଜତନ୍ତ୍ର ଯୁଗରେ ଯୁଦ୍ଧ, ବିଭୀଷିକା, ଅତ୍ୟାଚାର ସମାଜରେ ପ୍ରବଳ ରହିଥିଲା, ଗଣତାନ୍ତ୍ରିକ ବ୍ୟବସ୍ଥାରେ ଏହି ସ୍ଥିତିରେ ଅନେକ ପରିବର୍ତ୍ତନ ଆସିପାରିଛି । ଅତୀତର ପରିବେଶ ଅପେକ୍ଷା ସାଂପ୍ରତିକ ପରିସ୍ଥିତିରେ ଜୀବନ ଅଧିକ ନିରାପଦପୂର୍ଣ୍ଣ ଓ ମର୍ଯ୍ୟାଦାପୂର୍ଣ୍ଣ ହେବାର ପରିବେଶ ରହିଥିଲେ ବି ସମାଜ ଦୁଃଖରହିତ ଓ ମନ୍ଦରହିତ ହୋଇ ପାରୁ ନାହିଁ ।

ଦୁଃଖ ସୁଖକର ଅନୁଭବର ପ୍ରତିକୂଳ । ଏକ ସୁଖକର ଅନୁଭବ ମୁହଁରେ ହସ, ଆନନ୍ଦ ଆଣିବା ବେଳେ ଏକ ଦୁଃଖର ଅନୁଭବ ମନକୁ ଆନ୍ଦୋଳିତ କରିଥାଏ ବା ଆଖିକୁ ଲୋତକପୂର୍ଣ୍ଣ କରିଥାଏ । ଜୀବନ ସହିତ ଏପରି ଅନେକ ଘଟଣା ସଂପୃକ୍ତ ଯାହା ମନକୁ ଭାରାକ୍ରାନ୍ତ କରିବା ସହ ଦୁଃଖର ଆବେଗ ଆଣିଥାଏ । ଦୁଃଖ ବିଭିନ୍ନ ସ୍ତରର ହୋଇପାରେ ବା ବିଭିନ୍ନ ପ୍ରକାରର ହୋଇପାରେ । ଏହା ବ୍ୟକ୍ତିର, ପରିବାରର ବା ବୃହତ୍ତର ଗୋଷ୍ଠୀର ହୋଇପାରେ । ଦୁଃଖ ଯନ୍ତ୍ରଣା ଏକ ଅସୁଖକର ମାନସିକ ଅବସ୍ଥାର ସୂଚନା ଦିଏ । ଦୁଃଖ

ଯେହେତୁ ଏକ ମାନସିକ ଅନୁଭବ, ସେ ଦୃଷ୍ଟିରୁ ସମସ୍ତ ଦୁଃଖ, ଯନ୍ତ୍ରଣା ସ୍ୱରୂପତଃ ମାନସିକ । ତେବେ ଦୁଃଖର କାରଣ ଶାରୀରିକ ବା ମାନସିକ ଘଟଣାରୁ ହୋଇପାରେ । ଅଭାବ, ଅନାଟନ ଯୋଗୁ ପେଟର ଜ୍ୱାଳା ସହୁଥିବା ମଣିଷ, ରୋଗ ଯନ୍ତ୍ରଣାର କଷ୍ଟ ଭୋଗୁଥିବା ରୋଗୀ ବା ଏକ ଦୁର୍ଘଟଣାରେ ଗୋଟିଏ ଗୋଡ ହରାଇଥିବା ବ୍ୟକ୍ତିଙ୍କର କଷ୍ଟ ଶାରୀରିକ କାରଣ ଜନିତ । ତେବେ ଏପରି ସ୍ଥିତି ନ ଥାଇ ମଧ୍ୟ କେତେକଙ୍କର ଦୁଃଖ ଅତ୍ୟନ୍ତ ମାନସିକ ସ୍ତରର ହୋଇପାରେ । ନିଜର ପ୍ରତିଭାବାନ ପୁତ୍ରର ଆକସ୍ମିକ ବିୟୋଗରେ ପିତା, ମାତାଙ୍କର ଦୁଃଖ, ସକଳ ପ୍ରାଚୁର୍ଯ୍ୟ ସତ୍ତ୍ୱେ ନିଜର ଶିକ୍ଷିତା କନ୍ୟାକୁ ବିବାହ କରାଇ ପାରୁନଥିବାର ଦୁଃଖ ଓ ନିଜର ସମସ୍ତ ସାମର୍ଥ୍ୟ ସତ୍ତ୍ୱେ. ସାମାଜିକ ବ୍ୟବସ୍ଥା ଯୋଗୁ ଅସମ୍ମାନିତ ହେଉଥିବା କାରଣ ଜନିତ ଦୁଃଖ ମାନସିକ ସ୍ତରର ଦୁଃଖ । ସମାଜର ସବୁ ସ୍ତରରେ ଅନ୍ୟାୟ, ଅବକ୍ଷୟ, ବୈଷମ୍ୟ ଯୋଗୁଁ ଜଣେ ସମାଜସେବୀଙ୍କର ଦୁଃଖ ମାନସିକ ସ୍ତରର । ସେ ବ୍ୟକ୍ତିଗତ ଭାବେ ପ୍ରତିକୂଳ ସ୍ଥିତିରେ ନଥିଲେ ମଧ୍ୟ ତାଙ୍କର ଆଦର୍ଶବୋଧ ତାଙ୍କୁ ଦୁଃଖକର ଅନୁଭବ ଦେଉଥାଏ । ପ୍ରତ୍ୟେକଟି ଦୁଃଖକର ଅନୁଭବ ଅପ୍ରୀତିକର ମାନସିକ ଅବସ୍ଥାର ସୂଚନା ଦିଏ, ଯଦିବା ଏହାର କାରଣ ଶାରୀରିକ, ମାନସିକ ବା ଉଭୟ ଅବସ୍ଥାରୁ ଓ ଏପରିକି ଅବ୍ୟକ୍ତିକ କାରଣରୁ ଆସିଥାଏ ।

ଦୁଃଖ ବ୍ୟକ୍ତିର, ପରିବାରର ବା ଏକ ବୃହତ୍ତର ଜନଗୋଷ୍ଠୀର ହୋଇପାରେ । ବ୍ୟକ୍ତିଗତ ବା ପାରିବାରିକ ଦୁଃଖ, ଦୁର୍ଦ୍ଦଶାର କାହାଣୀ ପ୍ରତ୍ୟେକ ବ୍ୟକ୍ତିର ଅନୁଭବର ବିଷୟ । ସାଂପ୍ରଦାୟିକ ବା ଗୋଷ୍ଠୀଗତ ବିଦ୍ୱେଷ ରହିଥିବା ଏକ ସମାଜରେ ଏକ ସଂଖ୍ୟାଲଘୁ ଗୋଷ୍ଠୀ ବୃହତ୍ତର ବା ଶକ୍ତିଶାଳୀ ଗୋଷ୍ଠୀ ଦ୍ୱାରା ଶୋଷିତ ବା ଅତ୍ୟାଚାରିତ ହୋଇଥାଏ । ଜର୍ମାନୀରେ ଜିଉମାନେ, ଆମେରିକାରେ ନିଗ୍ରୋମାନେ ଓ ଭାରତବର୍ଷରେ ଦଳିତମାନେ କିପରି ଅସମ୍ମାନ ଓ ଅତ୍ୟାଚାରର ସମ୍ମୁଖୀନ ହୋଇଛନ୍ତି ତାହା ସୁବିଦିତ । ନିଜର ଜନ୍ମଗତ ସାମାଜିକ ପରିଚୟ ଗୋଟିଏ ଜନଗୋଷ୍ଠୀକୁ ନାନା ଅସମ୍ମାନର ସମ୍ମୁଖୀନ କରାଇବାର ନାନା ଦୃଷ୍ଟାନ୍ତ ଇତିହାସରେ ରହିଛି । ଜାତିଆଣ ମାନସିକତାର ପ୍ରାବଲ୍ୟ ଥିବା ଆମ ଦେଶର ସାମାଜିକ ପରିବେଶରେ ଦଳିତମାନେ ଅସ୍ପୃଶ୍ୟ ପରିଚୟ ନେଇ ଅସମ୍ମାନଜନକ ସ୍ଥିତିରେ ଯୁଗ ଯୁଗ ଧରି ଜୀବନ ବଞ୍ଚିବାକୁ ବାଧ୍ୟ ହୋଇଛନ୍ତି ।

ଜୀବନରେ ଯେତେ ଦୁଃଖ, ଯନ୍ତ୍ରଣା ରହିଛି ତାହାର ଉତ୍ସ ପ୍ରାକୃତିକ ବା ମାନବିକ ହୋଇପାରେ । ପ୍ରତ୍ୟେକ ବ୍ୟକ୍ତି ରୋଗ, ଶୋକର ଅନୁଭବ ସହିତ ମୃତ୍ୟୁର ସମ୍ମୁଖୀନ ହେବା ଏକ ସ୍ୱାଭାବିକ ପ୍ରକ୍ରିୟା । ଜୀବନ ସହ ମୃତ୍ୟୁ ଅଙ୍ଗାଙ୍ଗୀ ଭାବେ ଜଡ଼ିତ, ପ୍ରତ୍ୟେକ ଜନ୍ମିତ ପ୍ରାଣୀର ମୃତ୍ୟୁ ଅବଶ୍ୟମ୍ଭାବୀ । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଜୀବନ ଅବଧି ଭିତରେ ପ୍ରତ୍ୟେକ ବ୍ୟକ୍ତି ସୁଖ ଦୁଃଖର ଅନୁଭବ ଲାଭ କରିବା ଏକ ସ୍ୱାଭାବିକ ଧାରା । ତେବେ ସ୍ଥଳ ବିଶେଷରେ କେତେକ ଅସ୍ୱାଭାବିକ ପ୍ରାକୃତିକ ସ୍ଥିତି ମଣିଷର ସୁଖର ସଂସାରକୁ ଉଚ୍ଛନ୍ନ କରି ଦେଇଥାଏ ।

ବାତ୍ୟା, ଭୂକମ୍ପ, ସୁନାମି, ମହାମାରୀ ପରି ପ୍ରାକୃତିକ ପରିବେଶଦ୍ୱାରା ମଣିଷର ସୁଖର ସଂସାର ଉଜୁଡିଯାଏ । ପ୍ରାକୃତିକ ଦୁର୍ବିପାକ କେବେ, କେଉଁଠି ଓ କିପରି ସୃଷ୍ଟି ହେବ ତାହା ମଣିଷର ନିୟନ୍ତ୍ରଣର ବହିର୍ଭୂତ ଅଟେ । ପ୍ରାକୃତିକ ଦୁର୍ବିପାକ ସୃଷ୍ଟି ହେଉଥିବା ଅଞ୍ଚଳରେ ମୃତ୍ୟୁର ତାଣ୍ଡବ ସୃଷ୍ଟି ହୁଏ ଓ ଭଲ ମନ୍ଦ ନିର୍ବିଶେଷରେ ସବୁ ମଣିଷ ଏହି ପରିସ୍ଥିତିର ଶରବ୍ୟ ହୋଇଥାନ୍ତି । ଏତଦ୍‌ବ୍ୟତୀତ ଆମ ସଂସାରରେ ଅନେକ ଦୁଃଖ ଯନ୍ତ୍ରଣା ମନୁଷ୍ୟକୃତ ଘଟଣାରୁ ଉଦ୍‌ଭବ ହୋଇଥାଏ । ବ୍ୟକ୍ତି ସ୍ତରରେ ହେଉ ବା ଗୋଷ୍ଠୀ ସ୍ତରରେ ହେଉ ମଣିଷ ହିଁ ମଣିଷର ଦୁଃଖର କାରଣ ହୋଇଥାଏ । ଯୁଦ୍ଧ, ସନ୍ତ୍ରାସବାଦ, ହିଂସା-ପ୍ରତିହିଂସା, ଅନ୍ୟ ପ୍ରତି ବିଦ୍ୱେଷର ମାନସିକତା, ଶୋଷଣ ଓ ଅତ୍ୟାଚାର ଜନିତ କାରଣରୁ ଅନେକ ମଣିଷ ଦୁଃଖରେ ଜର୍ଜରିତ ହୋଇଥାନ୍ତି । ମାନବିକ କ୍ରୂରତା ଅନେକ ଦୁଃଖର କାରଣ ହୋଇଆସିଛି । ଅଜ୍ଞତା ଓ ଅହେତୁକ ମାନବିକତା ଯୋଗୁଁ କିଛି ଲୋକ ଅନ୍ୟ ମଣିଷଙ୍କୁ ଦୁଃଖ ଜର୍ଜରିତ କରିଛନ୍ତି । ଅତୀତରେ ବିଭିନ୍ନ ସମାଜରେ ଅଜ୍ଞତା ଯୋଗୁ କେତେ କେତେ ନିରୀହ ମହିଳାଙ୍କୁ ଡାହାଣୀ କହି ହତ୍ୟା କରାଯାଇଛି, ଧାର୍ମିକ ରକ୍ଷଣଶୀଳତା ଯୋଗୁ ସଂସ୍କାରିତ ଚେତନାର ମୁକ୍ତ ଚିନ୍ତକମାନଙ୍କୁ ନାନା ନିର୍ଯ୍ୟାତନା ଦିଆଯାଇଛି । ମୋଟ ଉପରେ ପ୍ରାକୃତିକ ଦୁର୍ବିପାକ ଓ ମାନବିକ କ୍ରୂରତା ଯୋଗୁଁ ସଂସାରରେ ଦୁଃଖ, ଯାତନାର ପରିବେଶ ସୃଷ୍ଟି ହୋଇ ଆସିଛି ।

ବୌଦ୍ଧଧର୍ମ ଓ ଜୈନଧର୍ମ ବ୍ୟତୀତ ପ୍ରତ୍ୟେକ ଧର୍ମରେ 'ଈଶ୍ୱର' ଭାବନା ପ୍ରମୁଖ ସ୍ଥାନ ନେବା ଦେଖାଯାଏ । ଧର୍ମର ପରିଭାଷାରେ ବିଶ୍ୱାସ କରାଯାଏ ଯେ ଈଶ୍ୱର ସବୁର ସ୍ରଷ୍ଟା । ସେ କେବଳ ସ୍ରଷ୍ଟା ନୁହନ୍ତି ସେ ସର୍ବଶକ୍ତିମାନ ଓ କରୁଣାମୟ । ବିଶ୍ୱରେ ଯାହା କିଛି ଘଟେ ସବୁ ଈଶ୍ୱରଙ୍କ ନିର୍ଦ୍ଦେଶରେ ହିଁ ହୁଏ । ଏହି ଧାର୍ମିକ ବିଶ୍ୱାସକୁ ଅନେକ ବ୍ୟକ୍ତି ନିଷ୍ଠାର ସହ ବିଶ୍ୱାସ କରନ୍ତି । ତେବେ ବିଚାରଶୀଳ ଅନୁଶୀଳନରେ ମଣିଷର ଦୁଃଖ ଓ ଈଶ୍ୱରଙ୍କ ସ୍ୱରୂପ ନେଇ କେତେକ ଜଟିଳ ପ୍ରଶ୍ନ ଆସିଥାଏ । ମଣିଷର ଦୁଃଖ ପାଇଁ ଅନୁଭୂତିରୁ ଆମେ ତିନୋଟି କାରଣ ସାଧାରଣତଃ ଦେଇଥାଏ । ଜଣେ ବ୍ୟକ୍ତିର ଦୁଃଖ.କ୍ଷେତ୍ରରେ ତାର ଭ୍ରମାତ୍ମକ କାର୍ଯ୍ୟ ବା ତ୍ରୁଟିପୂର୍ଣ୍ଣ ନିଷ୍ପତ୍ତିକୁ ଦାୟୀ କରାଯାଏ । ଜଣେ ବ୍ୟକ୍ତିର ଦୁଃଖ ପାଇଁ ସେ ହୁଏତ କେତେକାଂଶରେ ଦାୟୀ, ତେବେ ଏପରି କେତେକ ଦୁଃଖ ଆସେ ଯେଉଁଥି ପାଇଁ ବ୍ୟକ୍ତିର କୌଣସି ଭୂମିକା ନଥାଏ । ତାର ଦୁଃଖର କାରଣ ପ୍ରାକୃତିକ ଘଟଣା ଯୋଗୁ ବେଳକେ ହୋଇଥାଏ । ପ୍ରାକୃତିକ ଦୁର୍ବିପାକ ତାର ଦୁଃଖର କାରଣ ହୋଇପାରେ । ସେହିପରି ଅନ୍ୟ ବ୍ୟକ୍ତି ମାନଙ୍କ ଦ୍ୱାରା ନିୟନ୍ତ୍ରିତ ସାମାଜିକ ବ୍ୟବସ୍ଥା, ମାନବିକ ଅଜ୍ଞତା ବା କ୍ରୂରତା ଯୋଗୁ ଅନ୍ୟର ଦୁଃଖ ଆସିଥାଏ । ଶେଷୋକ୍ତ କାରଣ କ୍ଷେତ୍ରରେ ବ୍ୟକ୍ତି ବା ଗୋଷ୍ଠୀ ନିଜର ଦୁଃଖ, ଦୁର୍ଦ୍ଦଶା ପାଇଁ ଦାୟୀ ନ ଥାନ୍ତି, ତଥାପି ସେମାନଙ୍କ ଉପରେ ଦୁଃଖ ଯନ୍ତ୍ରଣାର ପାହାଡ ମାଡିବସେ । ଏହି ପରିପ୍ରେକ୍ଷୀରେ ଈଶ୍ୱରଙ୍କ ସଂପର୍କରେ ପ୍ରଶ୍ନ ଉଠେ, ଯଦି ଈଶ୍ୱର ସର୍ବଶକ୍ତିମାନ, ତେବେ ସେ କାହିଁକି\ପ୍ରାକୃତିକ ଦୁର୍ବିପାକ ପରି ଘଟଣାମାନଙ୍କୁ ନିୟନ୍ତ୍ରଣ କରନ୍ତି ନାହିଁ ?

ସେହିପରି ପ୍ରଶ୍ନ ଉଠେ: ଯଦି ଈଶ୍ୱର କରୁଣାମୟ, ତେବେ ମଣିଷର ଅପ୍ରମିତ ଦୁଃଖ ଦୁର୍ଦ୍ଦଶାରେ ଈଶ୍ୱର କାହିଁକି ସେହି ଦୁଃଖକୁ ଦୂର କରନ୍ତି ନାହିଁ? ଯେହେତୁ ସବୁ ଯୁଗରେ ସଂସାରରେ ଅପରିସୀମ ଦୁଃଖ ଯାତନା ରହିଛି ତେଣୁ ଈଶ୍ୱର ହୁଏତ ସର୍ବଶକ୍ତିମାନ ନୁହନ୍ତି କିମ୍ୱା ସେ କରୁଣାମୟ ନୁହନ୍ତି । ଏହିପରି ଏକ ପ୍ରଶ୍ନ ବିଶିଷ୍ଟ ଦାର୍ଶନିକ ଡାଭିଡ ହ୍ୟୁମ (୧୭୧୧-୧୭୭୬) ଉଠାଇଥିଲେ । ତାଙ୍କର ଯୁକ୍ତି ଥିଲା :

ଯଦି ଈଶ୍ୱର ସର୍ବଶକ୍ତିମାନ, ତେବେ ସେ ମଣିଷର ଅବାଞ୍ଛିତ ଦୁଃଖକୁ ନିୟନ୍ତ୍ରଣ କରିପାରନ୍ତେ । ଯଦି ଈଶ୍ୱର କରୁଣାମୟ ସେ ମଣିଷର ଦୁଃଖକୁ ଲାଘବ କରିପାରନ୍ତେ ।

କିନ୍ତୁ ମଣିଷ ସମାଜରେ (ବ୍ୟକ୍ତିର ହେଉ ବା ଗୋଷ୍ଠୀର ହେଉ) ଅନେକ ଅବାଂଛିତ ଦୁଃଖ ଘଟି ଆସିଛି । ସୁତରାଂ ଈଶ୍ୱର (ଯଦିବି ତାଙ୍କର ଅସ୍ତିତ୍ୱକୁ ବିଶ୍ୱାସ କରାଯାଏ) ସର୍ବଶକ୍ତିମାନ ନୁହନ୍ତି କିମ୍ୱା କରୁଣାମୟ ନୁହନ୍ତି ।

ଏହି ଯୁକ୍ତି ପୃଷ୍ଠଭୂମିରେ ଈଶ୍ୱରଙ୍କ ଅସ୍ତିତ୍ୱକୁ ସ୍ୱୀକାର କରି ସଂସାରର ଦୁଃଖ ଯନ୍ତ୍ରଣାକୁ କିପରି ବ୍ୟାଖ୍ୟା କରାଯିବ ? ହ୍ୟୁମଙ୍କ ଏହି ଯୁକ୍ତିଗତ ପ୍ରଶ୍ନ ପୂର୍ବରୁ ବି କେତେକଙ୍କ ମନରେ ଏହି ସନ୍ଦେହ ସୃଷ୍ଟି ହୋଇଛି । ମଣିଷର ଦୁଃଖ, ଯନ୍ତ୍ରଣା, କ୍ରୂରତା ସହ ଈଶ୍ୱରୀୟ ବ୍ୟବସ୍ଥାକୁ କିପରି ସଂଯୋଜିତ କରାଯାଇ ପାରିବ ? ଈଶ୍ୱରୀୟ ବିଶ୍ୱାସ ନାନା ପ୍ରକାରର ହୋଇଥିଲେ ବି ସକଳ ଈଶ୍ୱର ବିଶ୍ୱାସୀ ଈଶ୍ୱର ଯେ ସର୍ବଶକ୍ତିମାନ ଓ କରୁଣାମୟ ଏହା ଗ୍ରହଣ କରନ୍ତି । ସେହି ପ୍ରସଙ୍ଗ ପୃଷ୍ଠଭୂମିରେ ଈଶ୍ୱର ଓ ବ୍ୟକ୍ତିର ଦୁଃଖକୁ କିପରି ସମନ୍ୱିତ କରାଯିବ ? ଧାର୍ମିକ ବିଶ୍ୱାସ ଆଧାରରେ କେତେକ ସମାଧାନର ଆଲୋଚନା କରିବା ଏଠାରେ ଆମର ଲକ୍ଷ୍ୟ ।

ଏଠାରେ ତିନୋଟି ପ୍ରମୁଖ ଧର୍ମର ବିଶ୍ୱାସକୁ ନିଆଯାଉ, ଯଥା ହିନ୍ଦୁଧର୍ମ, ଇଶଲାମ ଓ ଖ୍ରୀଷ୍ଟଧର୍ମ । ଏହି ପ୍ରତ୍ୟେକ ଧର୍ମ ଈଶ୍ୱରଙ୍କ ଅସ୍ତିତ୍ୱକୁ ପ୍ରାଧାନ୍ୟ ଦିଏ ଓ ଈଶ୍ୱର ଯେ ସର୍ବଶକ୍ତିମାନ ଓ କରୁଣାମୟ ଏହା ମଧ୍ୟ ସ୍ୱୀକାର କରେ । ହିନ୍ଦୁ ଧର୍ମ ବହୁ ବିଶ୍ୱାସ ଓ ନାନା ସାଂସ୍କୃତିକ ଧାରାର ଏକ ଧର୍ମ । ଏହି ଧର୍ମର ଏକ ନିର୍ଦ୍ଦିଷ୍ଟ ରୂପରେଖ ନାହିଁ, ଏହାର କେହି ଆଦି ପ୍ରବର୍ତ୍ତକ ନାହାନ୍ତି । କୌଣସି ନିର୍ଦ୍ଦିଷ୍ଟ ଧର୍ମଗ୍ରନ୍ଥ ହିନ୍ଦୁମାନଙ୍କର ନାହିଁ । ସୁତରାଂ ଏକ ସୁବ୍ୟବସ୍ଥିତ ମାର୍ଗ ହିନ୍ଦୁଧର୍ମରେ ଦେଖିବାକୁ ମିଳେ ନାହିଁ । ଶୈବବାଦ, ଶାକ୍ତବାଦ, ପିତୁଳା ପୂଜକ, ଅପୌତଳିକ, ଏକେଶ୍ୱରବାଦୀ, ବହୁଈଶ୍ୱରବାଦୀ, ଏପରି ଅନେକ ପରସ୍ପର ବିରୋଧୀ ଗୋଷ୍ଠୀ ହିନ୍ଦୁଧର୍ମ ଧାରାରେ ରହିଛନ୍ତି । ବସ୍ତୁତଃ ଏପରି କୌଣସି ନିର୍ଦ୍ଦିଷ୍ଟ ଧରାବନ୍ଧା ମାର୍ଗ, ପନ୍ଥା ବା ବିଶ୍ୱାସ ନାହିଁ ଯାହାକୁ ସମସ୍ତ ହିନ୍ଦୁ ଅବଲମ୍ୱନ କରନ୍ତି । ଏପରିକି ହିନ୍ଦୁ ଧର୍ମର ସ୍ୱନାମ ମଧ୍ୟ ନଥିଲା, ବହୁ ପରେ ଏହି ଧର୍ମକୁ ଗବେଷକମାନେ ହିନ୍ଦୁ ଆଖ୍ୟା ଦେଇଛନ୍ତି । ଏକଦା ଏହାକୁ ବୈଦିକ ଧର୍ମ କୁହାଯାଉଥିଲା । କେତେକ ଏହାକୁ ସନାତନ ଧର୍ମ କହନ୍ତି । ଅନ୍ୟମାନେ ବ୍ରାହ୍ମଣ ବାଦର ଆଧିପତ୍ୟ ଯୋଗୁ ଏହାକୁ ବ୍ରାହ୍ମଣ୍ୟଧର୍ମ ବୋଲି ଅଭିହିତ କରିଛନ୍ତି ।

କେହି ସଂସ୍କାରକଙ୍କ ବିଚାର ପୃଷ୍ଠଭୂମିରେ ଏହାକୁ ଆର୍ଯ୍ୟଧର୍ମ କୁହାଯାଏ । ସଂପ୍ରତି ଯାହା ହିନ୍ଦୁ ଧର୍ମ ଭାବରେ ସୂଚିତ ହୋଇଛି ତାହା ଏହିପରି ପରିବର୍ତ୍ତନ ଦେଇ ବିକଶିତ ହୋଇଛି । ହିନ୍ଦୁଧର୍ମରେ ଦୁଃଖ, ଅନ୍ୟାୟ, ଜରା, ବ୍ୟାଧି, ପ୍ରାକୃତିକ ବିପର୍ଯ୍ୟୟ, ସମାଜରେ ଥିବା ନିଷ୍ଠୁରତା, ବିଭୀଷିକା, ହତ୍ୟା, ହିଂସା ଇତ୍ୟାଦି ସକଳ ଅଶୁଭ ବା ଇଭିଲକୁ ବୁଝାଇବାକୁ ସେପରି ସ୍ୱଷ୍ଟ ସିଦ୍ଧାନ୍ତ ନାହିଁ । ତେବେ ଜନ୍ମାନ୍ତରବାଦ ଓ କର୍ମସିଦ୍ଧାନ୍ତ ହିନ୍ଦୁଧର୍ମର ଦୁଇଟି ମୌଳିକ ବିଶ୍ୱାସ । ପ୍ରତ୍ୟେକ ପ୍ରାଣୀର ଏକ ଆତ୍ମା ଅଛି, ଆତ୍ମା ଅମର ଓ ଜନ୍ମ ମୃତ୍ୟୁର ଚକ୍ରରେ ଏହା ମୁକ୍ତି ପାଇବା ପର୍ଯ୍ୟନ୍ତ ଘୂରିବାକୁ ବାଧ୍ୟ । ତେବେ ଆତ୍ମାର ସ୍ୱରୂପ କ'ଣ ଓ ମୁକ୍ତି କେବେ ଓ କିପରି ମିଳେ ତାହାର ବି ସର୍ବସମ୍ମତ ଉତ୍ତର ହିନ୍ଦୁ ଧର୍ମଦର୍ଶନରେ ଦେଖିବାକୁ ମିଳେ ନାହିଁ । ଆତ୍ମା ଓ ମୁକ୍ତିର ସ୍ୱରୂପ ନେଇ ହିନ୍ଦୁ ଧର୍ମ ଧାରାରେ ଭିନ୍ନ ଭିନ୍ନ ମତ ଓ ଏପରିକି ପରସ୍ପର ବିରୋଧୀ ବିଶ୍ୱାସର ଅବତାରଣା କରାଯାଇଛି । ସେ ଯାହା ହେଉ ନା କାହିଁକି, ଅନେକାଂଶରେ ହିନ୍ଦୁଧର୍ମରେ ବିଶ୍ୱାସ କରାଯାଏ ଯେ ବ୍ୟକ୍ତିର ସୁଖ ଦୁଃଖ ତାର ପୂର୍ବକର୍ମର ଫଳ, ପ୍ରାରବ୍ଧର ପରିଣାମ । କର୍ମର ଫଳ କିପରି ସଞ୍ଚିତ ହୋଇ ରହେ, କେତେ ବ୍ୟବଧାନରେ କର୍ତ୍ତାକୁ ସ୍ୱତଃ ମିଳେ ବା କେହି ପ୍ରଦାନ କରେ ଏସବୁ ପ୍ରଶ୍ନର ସେପରି ସନ୍ତୋଷ ଜନକ ବ୍ୟାଖ୍ୟ ଦିଆଯାଇପାରେ ନାହିଁ । ପୁନଶ୍ଚ ସବୁ ଆତ୍ମାମାନଙ୍କୁ ଯଦି ଈଶ୍ୱର ସୃଷ୍ଟି କଲେ, ତେବେ ଆତ୍ମାମାନେ କାହିଁକି ପୃଥକ୍ ହୋଇ ଭଲ-ମନ୍ଦ କାର୍ଯ୍ୟରେ ସଂପୃକ୍ତ ହେଲେ ତାହା ବି ଅସ୍ୱଷ୍ଟ ହୋଇ ରହେ । ହୁଏତ ସବୁ ଆତ୍ମାମାନଙ୍କୁ ଈଶ୍ୱର ସମାନ କରି ସୃଷ୍ଟି କରି ନାହାନ୍ତି ବା ସମାନ ପରିବେଶରେ ଜନ୍ମ ଦେଇ ନାହାନ୍ତି, ଫଳରେ କେତେକ ଭଲ ହୋଇଛନ୍ତି ଓ ଅନ୍ୟ କେତେକ ମନ୍ଦ ହୋଇଛନ୍ତି । ଫଳତଃ ସିଦ୍ଧାନ୍ତ ଆସିବ ଯେ ଈଶ୍ୱରଙ୍କ ବୈଷମ୍ୟପୂର୍ଣ୍ଣ ସୃଷ୍ଟି ଯୋଗୁ ଭିନ୍ନ ଭିନ୍ନ ଆତ୍ମା ସେମାନଙ୍କର ଅନ୍ତର୍ନିହିତ ପାର୍ଥକ୍ୟ ଯୋଗୁ ଦୁଃଖ ଯନ୍ତ୍ରଣାରେ ଜର୍ଜରିତ ହେଉଛନ୍ତି । ଆତ୍ମା, ଆତ୍ମାର ଅମରତ୍ୱ, କର୍ମବାଦ, ଜନ୍ମାନ୍ତରବାଦ ଆଦି ଭାବନା ସକଳ ହିନ୍ଦୁଧର୍ମର ମୌଳିକ ପ୍ରସଙ୍ଗ ହେଲେ ବି ମଣିଷର ଦୁଃଖ ଦୁର୍ଦ୍ଦଶାକୁ ବ୍ୟାଖ୍ୟା କରିବା କ୍ଷେତ୍ରରେ ସେପରି ଅର୍ଥପୂର୍ଣ୍ଣ ସିଦ୍ଧାନ୍ତ ନୁହନ୍ତି । ଏତଦ୍‌ବ୍ୟତୀତ ଏହି ସବୁ ସିଦ୍ଧାନ୍ତର ଅନ୍ୟାନ୍ୟ ଅନେକ ଜଟିଳତା ରହିଛି ଯାହାର ଏଠାରେ ଆଲୋଚନା ପ୍ରାସଙ୍ଗିକ ନୁହେଁ । ଏଥିରୁ ଉଦ୍ଭବ ପୂର୍ବନିର୍ଦ୍ଦିଷ୍ଟବାଦ, ଭାଗ୍ୟବାଦ, ସାମାଜିକ ବୈଷମ୍ୟ ଓ ମାନବିକ ଦୁଃଖ ଦୁର୍ଦ୍ଦଶା ପ୍ରତି ଏକ ସ୍ୱର୍ଶକାତରଶୂନ୍ୟ ମନୋଭାବ ସୃଷ୍ଟି କରିବା କ୍ଷେତ୍ରରେ ସାହାଯ୍ୟ କରିଛି ଯାହାର ପରିଣାମ ସ୍ୱରୂପ ଭାରତୀୟ ସମାଜ ଅବହେଳିତ ହୋଇ ରହିଆସିଛି ।

ଇଶଲାମ ଧର୍ମର ପ୍ରବର୍ତ୍ତକ ହେଲେ ମହମ୍ମଦ (୫୭୦-୬୩୨ ଖ୍ରୀଷ୍ଟାବ୍ଦ) ଯାହାଙ୍କର ଜନ୍ମ ଆରବର ମକ୍‌କାଠାରେ । ଇଶଲାମର ଅର୍ଥ ହେଲା ଆଲ୍ଲା (ଈଶ୍ୱର)ଙ୍କ ପାଖରେ ପୂର୍ଣ୍ଣ ଶରଣାଗତ ହେବା । ଏହି ଧର୍ମର ବିଶ୍ୱାସାନୁଯାୟୀ ମହମ୍ମଦ ହେଉଛନ୍ତି ଆଲ୍ଲାଙ୍କର ଦୂତ । ଏହା ଏକ ଏକେଶ୍ୱରବାଦୀ ଧର୍ମ । ବହୁ ଦେବାଦେବୀ, ପିତୁଳା ପୂଜା, କର୍ମକାଣ୍ଡ ଇତ୍ୟାଦିକୁ ଏହି ଧର୍ମରେ ସ୍ୱୀକାର କରାଯାଏ ନାହିଁ । ଆଲ୍ଲା ଦେବଦୂତ ଗାବ୍ରିଏଲଙ୍କ ମାଧ୍ୟମରେ ମହମ୍ମଦଙ୍କୁ

ଯେଉଁ ବାର୍ତ୍ତା ଦେଲେ ତାହା ଜନମାନସରେ ମହମ୍ମଦ ପ୍ରସାର କରିଛନ୍ତି ଓ ତାହା ଧର୍ମଗ୍ରନ୍ଥ କୋରାନରେ ଲିପିବଦ୍ଧ ହୋଇଛି । ପବିତ୍ରତା, ବିଶ୍ୱଭ୍ରାତୃତ୍ୱ ଏହି ଧର୍ମର ବାର୍ତ୍ତା । ତେବେ ଆଲ୍ଲାଙ୍କୁ ସ୍ୱୀକାର କରୁନଥିବା ବ୍ୟକ୍ତିଙ୍କ ପ୍ରତି ଜିହାଦର ଭାବନା ମଧ୍ୟ ଏହି ଧର୍ମର ପରଂପରାରେ ଦେଖିବାକୁ ମିଳେ । ଇଶଲାମ ଧର୍ମରେ ପ୍ରତ୍ୟେକ ମନୁଷ୍ୟର ଆତ୍ମା ରହିଛି, ଯାହା ବ୍ୟକ୍ତିର ମୃତ୍ୟୁ ପରେ ମଧ୍ୟ ରହେ; ତେବେ ଏହି ଧର୍ମରେ ଜନ୍ମାନ୍ତରବାଦ ଭାବନା ନାହିଁ । ଆଲ୍ଲାଙ୍କ ପାଖରେ ସମର୍ପିତ ହେବା ଓ ତାଙ୍କର କରୁଣା କାମନା କରିବା ବ୍ୟକ୍ତିର ମୁଖ୍ୟ କର୍ତ୍ତବ୍ୟ । ତେବେ ମଣିଷ ସମାଜରେ ଏତେ ଦୁଃଖ, ଦୁର୍ଦ୍ଦଶା, ରୋଗ, ବ୍ୟାଧି, ପ୍ରାକୃତିକ ବିପର୍ଯ୍ୟୟ, ହିଂସା କାହିଁକି ଘଟେ ? ସବୁ କିଛି ଯଦି ଆଲ୍ଲାଙ୍କ ଦ୍ୱାରା ନିୟନ୍ତ୍ରିତ ଓ ଆଲ୍ଲା ସର୍ବଶକ୍ତିମାନ, ତେବେ ମଣିଷ ସମାଜରେ ଏତେ ଦୁଃଖ, ଦୁର୍ଦ୍ଦଶା ଓ ବୈଷମ୍ୟ କାହିଁକି ରହିଛି ? ଆଲ୍ଲା କାହିଁକି ଏକ ଦୁଃଖରହିତ ପ୍ରୀତିପୂର୍ଣ୍ଣ ବିଶ୍ୱ ଗଠନ କଲେ ନାହିଁ ? ପ୍ରତ୍ୟେକ ବ୍ୟକ୍ତି ସୁକର୍ମ କରିବାକୁ ଓ କୌଣସି ନିଷ୍ଠୁରତା ପ୍ରଦର୍ଶନ ନ କରିବାକୁ ଆଲ୍ଲା କାହିଁକି ମଣିଷକୁ ଏକ ମହତ୍ ହୃଦୟର ଅଧିକାରୀ କଲେ ନାହିଁ ? ଇଶଲାମର ବିଶ୍ୱାସ ଅନୁଯାୟୀ ସଂସାରର ସବୁ କିଛି ଘଟଣା ଦିବ୍ୟ ଯୋଜନାନୁଯାୟୀ ହୁଏ । ତେବେ ସଂସାରରେ ଏତେ ଦୁଃଖ ଦୁର୍ଦ୍ଦଶା କାହିଁକି ରହିଛି ବା ଏତେ ପ୍ରାକୃତିକ ବିପର୍ଯ୍ୟୟ କାହିଁକି ଘଟେ, ଏପରି ପ୍ରଶ୍ନ ପଚାରିବା ସଂଗତ ନୁହେଁ । ଈଶ୍ୱରୀୟ ବିଧାନ ରହସ୍ୟମୟ, ତାକୁ ପ୍ରଶ୍ନ କରିବା ବା ସନ୍ଦେହ କରିବା ଅଧାର୍ମିକ କାର୍ଯ୍ୟ । ତେବେ ଇଶଲାମରେ ବିଶ୍ୱାସ ରହିଛି ଯେ, ଯେ ମନ୍ଦ କାର୍ଯ୍ୟକରେ ସେ ଦୁଃଖ ପାଏ । ଆଲ୍ଲାଙ୍କ ପାଖରେ ବ୍ୟକ୍ତିର ବିଶ୍ୱାସକୁ ପରୀକ୍ଷା କରିବାକୁ ସେ ଦୁଃଖ ଦେଇଥାନ୍ତି । ଦୁଃଖ ଭୋଗ କରୁଥିବା ବ୍ୟକ୍ତି ବିଶ୍ୱାସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ସ୍ୱର୍ଗକୁ ଯାଏ । ତେବେ ଇଶଲାମରେ ଇବ୍ଲିସ ନାମକ ଏକ ମନ୍ଦ ଦେବଦୂତ (ଡେଭିଲ- devil) ର ବର୍ଣ୍ଣନା ରହିଛି, ଯିଏ ମନୁଷ୍ୟମାନଙ୍କୁ ମନ୍ଦ କାର୍ଯ୍ୟ କରିବାକୁ ଓ ଖରାପ ବାଟରେ ଯିବାକୁ ପ୍ରେରଣା ଦିଏ । ଏହି ମନ୍ଦ ଆତ୍ମା ଯୋଗୁ ସଂସାରରେ ଏତେ ଦୁଃଖ ଘଟୁଛି । ତେବେ ପ୍ରଶ୍ନ ହେବ ଆଲ୍ଲା ଯଦି ସର୍ବଶକ୍ତିମାନ ସେ କାହିଁକି ଇବ୍ଲିସ ପରି ଡେଭିଲମାନଙ୍କୁ ନଷ୍ଟ କରୁ ନାହାନ୍ତି ? ଏ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ଇଶଲାମରେ ମିଳେ ନାହିଁ । ଇଶଲାମରେ ସ୍ୱର୍ଗ ଓ ନରକର ଭାବନା ରହିଛି । ଅନ୍ତିମ ଦିବସ ପରେ ବିଚାର ଦିବସ ଆସିବ । କବରମାନଙ୍କରୁ ଶବମାନେ ଉଠିବେ, ସେମାନଙ୍କର ଆତ୍ମାମାନେ ସେମାନଙ୍କ ସହ ମିଳିତ ହେବେ । ଦେବଦୂତମାନେ ପୁନର୍ମିଳିତ ମନୁଷ୍ୟମାନଙ୍କୁ ନେଇ ଆଲ୍ଲାଙ୍କ ପାଖରେ ଉପସ୍ଥିତ କରାଇବେ । ସେ ବ୍ୟକ୍ତିମାନଙ୍କର ପାପ-ପୁଣ୍ୟ ବିଚାରକରି ସେମାନଙ୍କୁ ସ୍ୱର୍ଗ ବା ନରକକୁ ପଠାଇବେ । ଏସବୁ ଯୋଜନା ଈଶ୍ୱରକୃତ, ସବୁ ଦୁଃଖ ଯନ୍ତ୍ରଣା ଆମର ପରୀକ୍ଷା ମାତ୍ର, ଏସବୁକୁ ପ୍ରଶ୍ନ କରିବା ଅଧାର୍ମିକ ଓ ଈଶ୍ୱର-ବିରୋଧୀ କାର୍ଯ୍ୟ ।

ଖ୍ରୀଷ୍ଟଧର୍ମ ଖ୍ରୀଷ୍ଟାବ୍ଦ ପ୍ରଥମ ଶତାବ୍ଦୀରେ ପ୍ରଚାରିତ ଏକ ଧର୍ମ । ଏହାର ଆଦି-ପ୍ରବର୍ତ୍ତକ ଯୀଶୁ ଖ୍ରୀଷ୍ଟ ଇହୁଦୀ ଧର୍ମାବଲମ୍ବୀ ଥାଇ ସେହି ଧର୍ମରେ ଯେଉଁ ସଂସ୍କାର ଆଣିଲେ ତାହା ପରେ ଏକ ସ୍ୱତନ୍ତ୍ର ଧର୍ମ ଭାବେ ବିଶ୍ୱରେ ପ୍ରସାର ଲାଭ କଲା । ଏହି ଧର୍ମ ଏକେଶ୍ୱରବାଦରେ ବିଶ୍ୱାସ କରେ । ଈଶ୍ୱର ଏକ, ସେ ସର୍ବଶକ୍ତିମାନ, ସର୍ବଦ୍ରଷ୍ଟା ଓ କରୁଣାମୟ । ସେ ଜଗତକୁ ଶୂନ୍ୟରୁ ସୃଷ୍ଟି କରିଛନ୍ତି । ଈଶ୍ୱର ନିତ୍ୟ, ଅସୀମ ଯଦିବା ତାଙ୍କର ବ୍ୟକ୍ତିସତ୍ତା ରହିଛି । ମଣିଷକୁ ଈଶ୍ୱର ତାଙ୍କ ସ୍ୱରୂପରେ ସୃଷ୍ଟି କରିଛନ୍ତି । ଜଗତକୁ ଓ ଜଗତର ସବୁ କିଛିକୁ ଈଶ୍ୱର ସୃଷ୍ଟି କରିସାରିବା ପରେ ଷଷ୍ଠ ଦିନରେ ସେ ପ୍ରଥମ ମନୁଷ୍ୟ ଆଦାମକୁ ସୃଷ୍ଟି କଲେ । ପରେ ଆଦାମକୁ ସେ ସୁଷୁପ୍ତିରେ ରଖି ତାହାର ଛାତିରୁ ଏକ ହାଡ ନେଇ ଇଭ୍ ନାମକ ଏକ ନାରୀ ସୃଷ୍ଟି କଲେ । ଈଶ୍ୱର ଏକ ଉଦ୍ୟାନ ସ୍ୱର୍ଗରେ ସୃଷ୍ଟି କରି ଆଦାମ୍ ଓ ଇଭ୍‌କୁ ସେହି ଉଦ୍ୟାନ ଇଡେନରେ ବିଚରଣ କରିବାକୁ କହିଲେ । ତେବେ ଗୋଟିଏ ବୃକ୍ଷର (ଭଲ-ମନ୍ଦ ଜ୍ଞାନର ବୃକ୍ଷ) ଫଳ ନ ଖାଇ ଅନ୍ୟ ଯେକୌଣସି ବୃକ୍ଷର ଫଳ ଖାଇବାକୁ ସେମାନଙ୍କୁ କହିଥିଲେ । ଉଦ୍ୟାନରେ ବୁଲୁ ବୁଲୁ ସତାନ ନାମକ ଆଂଜେଲ ଜ୍ଞାନ ବୃକ୍ଷର ଫଳ ଖାଇବାକୁ ଇଭକୁ ପ୍ରଲୁବ୍ଧ କଲା । ଇଭ୍ ନିଷିଦ୍ଧ ବୃକ୍ଷର ଫଳ ତୋଳି ଖାଇଲେ ଓ ଏହା ଖାଇବାକୁ ଆଦାମକୁ ପ୍ରରୋଚିତ କଲେ । ସେମାନେ ଏହା ଖାଇବା ପରେ ସେମାନଙ୍କ ପାଖରେ ମାନବିକ ପ୍ରବୃତ୍ତି ଦେଖାଦେଲା । ଈଶ୍ୱରଙ୍କ ବାଣୀକୁ ଅବମାନନା କରିଥିବା ଯୋଗୁ ସେମାନେ ଦୁଃଖପୂର୍ଣ୍ଣ ଜୀବନ ଯାପନ କରିବାକୁ ଅଭିଶପ୍ତ ହେଲେ । ଏହାକୁ ମନୁଷ୍ୟର ମୂଳପାପ କୁହାଯାଏ । ଆଦିପୁରୁଷ ଓ ଆଦିନାରୀ କରିଥିବା ମୂଳପାପ ଯୋଗୁ ମଣିଷ ଜାତି ଶାଶ୍ୱତ ସୁଖରୁ ବଞ୍ଚିତ ହେଲା । ମଣିଷ ସମାଜର ଦୁଃଖ ଦୁର୍ଦ୍ଦଶା ଏହି ମୂଳ ପାପ ଯୋଗୁଁ ହେଉଛି । ପ୍ରତ୍ୟେକ ମଣିଷ ପାପୀ ଓ ପ୍ରତ୍ୟେକ ଲୋକ କିଛି ମନ୍ଦ ଗୁଣର ଅଧିକାରୀ । ଏଥିପାଇଁ ପୁରୁଷାନୁକ୍ରମେ ମଣିଷ ଦୁଃଖ ଭୋଗ କରୁଛି । ମଣିଷକୁ ତ୍ରାଣ କରିବାକୁ କରୁଣାମୟ ଈଶ୍ୱର ନିଜ ପୁତ୍ର ଯୀଶୁଙ୍କୁ ପୃଥିବୀକୁ ପଠାଇଲେ । ଯୀଶୁ ଯେଉଁ ପବିତ୍ର ଜୀବନର ପନ୍ଥା ଦେଖାଇଛନ୍ତି ସେହି ପନ୍ଥାକୁ ଅନୁସରଣ କଲେ ବ୍ୟକ୍ତି ମୁକ୍ତି ପାଇବ ଓ ତାର ଆତ୍ମା ସ୍ୱର୍ଗରେ ଈଶ୍ୱରଙ୍କ ସାନ୍ନିଧ୍ୟ ପାଇ ଶାନ୍ତିରେ ରହିପାରିବ । ଈଶ୍ୱରଙ୍କୁ ପ୍ରେମ କରି, ମନୁଷ୍ୟ ସମାଜର ସେବା କଲେ ଓ ଯୀଶୁଙ୍କ ପାଖରେ ଶରଣାପନ୍ନ ହେଲେ, ମୁକ୍ତି ମିଳିବ । ଏହି ଧର୍ମରେ ଆତ୍ମା ଅମର ବୋଲି ବିଶ୍ୱାସ କରାଯାଏ, କିନ୍ତୁ ପୁନର୍ଜନ୍ମବାଦରେ ଏହା ବିଶ୍ୱାସ କରେ ନାହିଁ । ବିଶ୍ୱର ଅନ୍ତିମ ଦିବସରେ ଆତ୍ମାମାନେ ଶରୀର ସହ କବରରୁ ଉଠିବେ । ସେମାନଙ୍କର ପାପ-ପୁଣ୍ୟର ବିଚାର କରାଯିବ ଓ ପବିତ୍ର ଆତ୍ମାମାନଙ୍କୁ ଅନନ୍ତକାଳ ପାଇଁ ସ୍ୱର୍ଗକୁ ପଠାଯିବ ଓ ପାପାତ୍ମାମାନଙ୍କୁ ଅନନ୍ତ କାଳପାଇଁ ନରକକୁ ପଠାଯିବ । ଖ୍ରୀଷ୍ଟଧର୍ମର ବିଶ୍ୱାସ ଅନୁଯାୟୀ ସଂସାରରେ ଯେତେ ଦୁଃଖ, ଯନ୍ତ୍ରଣା ରହିଛି ତାହା ମୂଳ-ପାପ ଯୋଗୁ ହିଁ ରହିଛି । ତେବେ ଜନ୍ମରୁ ମଣିଷ-ମଣିଷ ଭିତରେ କାହିଁକି ଏତେ

ବୈଷମ୍ୟ ରହିଛି, କିଏ ଭଲ ପରିବାରରେ ଜନ୍ମ ହେଉଛି ତ କିଏ ଦୁଃସ୍ଥ ପରିବାରରେ ଜନ୍ମ ହେଉଛି, କିଏ ସୁସ୍ଥ ହୋଇ ଜନ୍ମ ହେଉଛି ତ କିଏ ବିକଳାଙ୍ଗ ହୋଇ ଜନ୍ମ ହେଉଛି- ଏହି ପ୍ରଶ୍ନର କୌଣସି ସନ୍ତୋଷଜନକ ବ୍ୟାଖ୍ୟା ଖ୍ରୀଷ୍ଟଧର୍ମରେ ନାହିଁ । ଈଶ୍ୱର କାହାକୁ କେଉଁ ସ୍ଥିତିରେ ଜନ୍ମ ଦେଇ ତାର ପରୀକ୍ଷା ନିଅନ୍ତି ତାହା ଆମ ଚିନ୍ତାର ବହିର୍ଭୂତ ।

ଏହି ତିନୋଟି ଧର୍ମ (ହିନ୍ଦୁଧର୍ମ, ଇଶଲାମ, ଖ୍ରୀଷ୍ଟଧର୍ମ) ଯେଉଁ ଯୁଗରେ ଚିନ୍ତା ରାଜ୍ୟରେ ଏକ ଏକ ସାଂସ୍କୃତିକ ଆଲୋଡନ ଭାବେ ବିଭିନ୍ନ ଭୂଖଣ୍ଡରେ ସୃଷ୍ଟି ହୋଇଥିଲା, ସେ ସମୟରେ ମଣିଷର ବୌଦ୍ଧିକ ସ୍ତର ଅତି ସୀମିତ ରହିଥିଲା । ଜୀବନର ଘନଘଟା, ପ୍ରାକୃତିକ ଘଟଣାବଳୀ ଓ ପ୍ରକୃତିର ବିଶାଳତା ତଥା ଜଟିଳତାକୁ ବିଚାରଶୀଳ ଓ ବିଜ୍ଞାନ ସମ୍ମତ ଧାରାରେ ବୁଝିବାର ସାମର୍ଥ୍ୟ ମଣିଷର ନ ଥିଲା । ସେହି ସମୟରେ ଜୀବନର ଦୁଃଖ, ଦୁର୍ଦ୍ଦଶାକୁ ବୁଝିବାକୁ ଧର୍ମ ପରଂପରାରେ ଈଶ୍ୱରକୈନ୍ଦ୍ରିକ ବିଚାର ଆଧାରରେ କିଛି କିଛି କଳ୍ପନା ସୃଷ୍ଟି ହୋଇଥିଲା । ସେହି କଳ୍ପନା ଆଧାରରେ ଦୁଃଖ ଯନ୍ତ୍ରଣା ଓ ପ୍ରାକୃତିକ ବିପର୍ଯ୍ୟୟକୁ ଦୈବୀ ଦଣ୍ଡ ବୋଲି ଗ୍ରହଣ କରାଯାଉଥିଲା । ଧର୍ମ ଯେଉଁ ସାଂସ୍କୃତିକ ଓ ବୌଦ୍ଧିକ ଆଲୋଡନ ସୃଷ୍ଟି କରିଥିଲା ତାହାର ପରିସୀମା ଭିତରେ ଦୁଃଖ ବା ମନ୍ଦର ଏକ ଏକ ବୋଧଗମ୍ୟ ବ୍ୟାଖ୍ୟା ବିଭିନ୍ନ ପରଂପରାରେ ଗ୍ରହଣ କରାଯାଉଥିଲା । ଧାର୍ମିକ ବିଶ୍ୱାସ, ଈଶ୍ୱରଙ୍କ ପ୍ରତି ସମର୍ପିତ ଜୀବନ ଓ କିଛି ନୀତିବୋଧ ମହତ୍ତର ଜୀବନର ମାନଦଣ୍ଡ ଥିଲା । ଈଶ୍ୱରହିଁ ଆମର ରକ୍ଷକ ଓ ଉଦ୍ଧାରକ ଏହି ଭାବନା ଧର୍ମର ମୂଳମନ୍ତ୍ର ଥିଲା । 'ମାନବିକ ପ୍ରୟାସ ଦ୍ୱାରା ଜୀବନରୁ ଅନେକ ଦୁଃଖ ଯନ୍ତ୍ରଣା ଦୂର ହୋଇପାରିବ' - ଏହି ବିଚାରବୋଧର ଭିତ୍ତି ଦୃଢ଼ ହୋଇନଥିଲା । 'ସବୁକିଛି ଈଶ୍ୱରକୃତ', 'ଯାହା କରିବେ ସାଇଁ, ତାହା କାହାରି ମନରେ ନାହିଁ' ଏହି ପ୍ରକାରର ଜୀବନଦୃଷ୍ଟି ଧାର୍ମିକ ଜୀବନଦୃଷ୍ଟିର ମୂଳତତ୍ତ୍ୱ ଥିଲା । ବହୁ ପରେ ଧର୍ମମାନଙ୍କର ତୁଳନାତ୍ମକ ଅଧ୍ୟୟନରୁ ଏ ସବୁ ଗୁଡ଼ିକ କିପରି କଳ୍ପନା ତାହା ଜଣାଗଲା ।

ଧର୍ମର ପରିସର ବାହାରେ ଦର୍ଶନ ଚିନ୍ତା ଜଗତରେ କିଛି ବୌଦ୍ଧିକ ଆଲୋଡ଼ନ ସୃଷ୍ଟି କରିଛି । ଜୀବନର ଘନଘଟା ବିଷୟରେ କିଛି ନୂତନ ବିଚାର ବିଭିନ୍ନ ସମୟରେ ଓ ବିଭିନ୍ନ ସଭ୍ୟତାରେ ଦାର୍ଶନିକ ମାନେ ଦେଇଛନ୍ତି । ତେବେ ଯେଉଁ ଯୁଗରେ ଈଶ୍ୱରୀୟ ଭାବନା ବୌଦ୍ଧିକ ମାନସପଟରେ ଗଭୀର ଭାବେ ରହିଥିଲା, ସେହି ଯୁଗର କିଛି ଦାର୍ଶନିକ ଈଶ୍ୱର-ବିଶ୍ୱାସ ସହ ଦୁଃଖ ଯନ୍ତ୍ରଣା ଓ ଇଭିଲକୁ ବ୍ୟାଖ୍ୟା କରିବାକୁ ପ୍ରୟାସ କରିଛନ୍ତି । ଦୁଃଖଯନ୍ତ୍ରଣା, ପ୍ରାକୃତିକ ବିପର୍ଯ୍ୟୟ, ମାନବିକ କ୍ରୂରତା ଇତ୍ୟାଦି ମନ୍ଦ ଓ ଅଶୁଭ ଘଟଣାରାଜୀ ଈଶ୍ୱରଙ୍କ ବ୍ୟବସ୍ଥା ଭିତରେ କିପରି ବ୍ୟାଖ୍ୟା ହୋଇପାରିବ ? ଈଶ୍ୱରଙ୍କୁ ସର୍ବ ଶକ୍ତିମାନ ଓ କରୁଣାମୟ ବୋଲି ବିଶ୍ୱାସ କରି ମନ୍ଦ ଓ ଅଶୁଭକୁ କିପରି ବୁଝାଇହେବ ? ଏଠାରେ କେତେକ ଦାର୍ଶନିକ ମତର ସଂକ୍ଷିପ୍ତ ଆଲୋଚନା କରାଯାଉ ।

ଗୋଟିଏ ଦାର୍ଶନିକ ମତରେ ଈଶ୍ୱର ମହତ୍ ଉଦ୍ଦେଶ୍ୟରେ ସବୁ କିଛି ସୃଷ୍ଟି କରିଛନ୍ତି । ପ୍ରକୃତିରେ ଯାହା କିଛି ଅଛି ସବୁର ମହତ୍ତ୍ୱ ଓ ମୂଲ୍ୟ ରହିଛି । ତେବେ ବିଭିନ୍ନ ବସ୍ତୁମାନଙ୍କର ମହତ୍ତ୍ୱ ଓ ମୂଲ୍ୟରେ ଗୁଣାତ୍ମକ ଓ ପରିମାଣାତ୍ମକ ପ୍ରଭେଦ ରହିଛି । ସବୁ ସ୍ତରରେ ସଂଗତି ଓ ଶୃଂଖଳାର ସହ ଈଶ୍ୱର ସବୁ ସୃଷ୍ଟି କରିଥିଲେ । କିନ୍ତୁ କାଳକ୍ରମେ ବସ୍ତୁ ଭିତରେ ଅପରିପୂର୍ଣ୍ଣତା ସୃଷ୍ଟି ହେଲା ଓ ସେହି ପରିଣାମରୁ ଧୀରେ ଧୀରେ ମନ୍ଦର ଉତ୍ପତ୍ତି ହେଲା । ଈଶ୍ୱର ପ୍ରାଣୀକୁ ଚକ୍ଷୁ ଦେଇଛନ୍ତି ସବୁ କଥା ଦେଖିବାକୁ, କିନ୍ତୁ ଚକ୍ଷୁର ଧୀରେ ଧୀରେ ଅବକ୍ଷୟ ଯେପରି ହେବା ସମ୍ଭବ, ସେହିପରି କାଳକ୍ରମେ ମନ୍ଦର ଉତ୍ପତ୍ତି ହେବା ସମ୍ଭବ । ଏତଦ୍‌ବ୍ୟତୀତ ଈଶ୍ୱର ମଣିଷକୁ ସ୍ୱାଧୀନତା ଦେଇଇଛନ୍ତି ଓ ଈଶ୍ୱର ମଣିଷକୁ ତାଙ୍କ ହାତର ଖେଳନା କରି ନାହାନ୍ତି । କିନ୍ତୁ ମଣିଷ ଈଶ୍ୱର ଦତ୍ତ ସ୍ୱାଧୀନତାର ଅପପ୍ରୟୋଗ କରିବା ଦ୍ୱାରା ସମାଜରେ ଦୁଃଖ ଯନ୍ତ୍ରଣାର ପରିସ୍ଥିତି ସୃଷ୍ଟି କରିଛି । ତେଣୁ ସଂସାରରେ ଯଦି ଦୁଃଖ, ମନ୍ଦ ରହିଛି ସେଥିପାଇଁ ଈଶ୍ୱର ଦାୟୀ ନୁହନ୍ତି, ବରଂ ମଣିଷ ହିଁ ଦାୟୀ । ମନ୍ଦ କାର୍ଯ୍ୟଦ୍ୱାରା ମଣିଷ ଯେଉଁ ପାପ ସୃଷ୍ଟି କରୁଛି, ସେହି ପାପର ପ୍ରାୟଶ୍ଚିତ ସ୍ୱରୂପ ପ୍ରାକୃତିକ ବିପର୍ଯ୍ୟୟ ସୃଷ୍ଟି ହେଉଛି । ତେବେ ଇତିହାସର ଅନ୍ତିମ କାଳରେ ଈଶ୍ୱରୀୟ ବିଚାରଦ୍ୱାରା ପୁଣ୍ୟମାନେ ଶାଶ୍ୱତ ଜୀବନର ଅଧିକାରୀ ହେବେ ଓ ଅଧାର୍ମିକମାନେ ଅନନ୍ତ କାଳ ପାଇଁ ଯନ୍ତ୍ରଣା ପାଇବେ, ଫଳତଃ ସଂସାରରେ ନୈତିକ ପରିପୂର୍ଣ୍ଣତା ଆସିପାରିବ । ଏହି ପ୍ରକାରର ବିଚାରବୋଧ ବିଭିନ୍ନ ସାଂସ୍କୃତିକ ଜନଗୋଷ୍ଠୀରେ ଭିନ୍ନ ଭିନ୍ନ ପରିଭାଷାରେ ବି ବ୍ୟକ୍ତ ହୋଇଛି । କେଉଁଠି ବିଶ୍ୱାସ କରାଯାଇଛି ଯେ ସମାଜରେ ପାପର ଭାର ଅଧିକ ହେଲେ ଈଶ୍ୱର ଅବତାର ନେଇ ପାପୀମାନଙ୍କୁ ସଂହାର କରିବେ ଓ ଧର୍ମ, ନ୍ୟାୟର ପରିବେଶ ସ୍ଥାପନ କରିବେ । ଅଧର୍ମର ପରିବେଶ ଆସିଲେ ଈଶ୍ୱର ଧରାପୃଷ୍ଠକୁ ଆସି ବା ନିଜର ଦୂତ ବା ପୁତ୍ରକୁ ପଠାଇ ସବୁ ମନ୍ଦକୁ ଧ୍ୱଂସ କରି ପୁଣ୍ୟ ପ୍ରତିଷ୍ଠା କରିବେ ।

ଏହି ଯୁକ୍ତିର ଅନେକ ଅନ୍ତର୍ନିହିତ ଦୁର୍ବଳତା ରହିବା ମନେହୁଏ । ଯଦି ପ୍ରଥମରୁ ସବୁ ବିଷୟ ସୁସଂହତ ଓ ଶୃଂଖଳିତ ଥିଲା, ସେହି ସ୍ଥିତିରେ ମନ୍ଦ କିପରି ଓ କାହିଁକି ସୃଷ୍ଟି ହେଲା ତାର ଉତ୍ତର କ'ଣ ହେବ ? ମନ୍ଦ ବା ଇଭିଲ ଯେ ସ୍ୱସୃଷ୍ଟ ଏହା ଈଶ୍ୱରୀୟ ବିଧାନକୁ ଆହ୍ୱାନ ଦେଉନାହିଁକି ? ଏକ ସୁସଂହତ ବ୍ୟବସ୍ଥାରେ ତ୍ରୁଟି ରହିବା ସମୀଚୀନ ନୁହେଁ, ଯଦି ଏକ ସୃଷ୍ଟ ବସ୍ତୁ ଓ ବ୍ୟବସ୍ଥା କାଳକ୍ରମେ ନଷ୍ଟ ଦିଗରେ ଯାଉଛି ତେବେ ଏହାର ନୈତିକ ଉତ୍ତରଦାୟିତ୍ୱ ସ୍ରଷ୍ଟା ଈଶ୍ୱରଙ୍କୁ ଦିଆଯିବ କି ନାହିଁ ? ଯଦି କୁହାଯାଏ ଯେ ଈଶ୍ୱର ମଣିଷକୁ ସ୍ୱାଧୀନତା ଦେବାଦ୍ୱାରା ଏପରି ପରିସ୍ଥିତି ଆସିଛି, ତେବେ ଈଶ୍ୱର ଏପରି ମଣିଷ ସୃଷ୍ଟି କରିଥାନ୍ତେ ଯେଉଁମାନେ ସ୍ୱାଧୀନତା ଉପଭୋଗ କରିବେ, ଅଥଚ ସ୍ୱାଧୀନତାର ଅପପ୍ରୟୋଗ କରିବେ ନାହିଁ । ଯୁକ୍ତିରେ ଯାହା କୁହାଯାଉଛି ଯେ ଏକ ଉତ୍ତମ ଓ ସୁସଂହତ ପରିସ୍ଥିତିରୁ କାଳକ୍ରମେ ମନ୍ଦର ଉଦ୍ଭବ ହୋଇଛି ତାହା ଆମର ବାସ୍ତବ ଅନୁଭୂତିରେ ଭ୍ରମାତ୍ମକ ମନେହୁଏ । ସଭ୍ୟତାର କ୍ରମ ବିକାଶକୁ ଯଦି ଲକ୍ଷ୍ୟ କରାଯାଏ ତେବେ ମଣିଷ ଜାତି ଯେ ଏକ ଅସଭ୍ୟ ଓ ଅସଂସ୍କୃତ

ସ୍ଥିତିରୁ ସଭ୍ୟ ଓ ସଂସ୍କୃତିସଂପନ୍ନ ଜୀବନ ଆଡକୁ ଅଗ୍ରସର କରିଛି ଏହା ନିଃସନ୍ଦେହ ମନେହୁଏ । ମଣିଷର ନୈତିକ ଦୃଷ୍ଟି ଧୀରେ ଧୀରେ କ୍ଷୁଦ୍ର ଗୋଷ୍ଠୀରୁ ବୃହତ୍ତର ସମାଜ ଓ ସମଗ୍ର ମାନବଜାତି ପ୍ରତି ପ୍ରସାରିତ ହେବାରେ ଲାଗିଛି । ସୁତରାଂ ମଣିଷର ପ୍ରାରମ୍ଭିକ ଜୀବନ ମହତ୍ତର ଥିଲା ଓ ଧୀରେ ଧୀରେ ମନ୍ଦ ହୋଇ ଚାଲିଲା, ବସ୍ତୁନିଷ୍ଠ ଓ ବାସ୍ତବ ଅନୁଭୂତିରେ ମିଥ୍ୟା ମନେହୁଏ ।

ଅନ୍ୟ ଏକ ଦାର୍ଶନିକ ମତାନୁଯାୟୀ ଈଶ୍ୱର ମଣିଷମାନଙ୍କ ପାଇଁ ଏକ ଦୁଃଖରହିତ ସ୍ୱର୍ଗ କରି ନାହାନ୍ତି, ସେପରି କରିଥିଲେ ମଣିଷ ପ୍ରୟାସର କିଛି ଅର୍ଥ ରହିନଥାନ୍ତା । ଈଶ୍ୱର ମଣିଷକୁ ଅନେକ ନୈତିକ ଗୁଣ ଦେଇ ସୃଷ୍ଟି କରିଛନ୍ତି । ମଣିଷ ଭିତରେ ବୁଦ୍ଧି ଦେଇଛନ୍ତି ଯାଦ୍ୱାରା ସେ ନିଜର ନୈତିକ ଓ ଆଧ୍ୟାତ୍ମିକ ବିକାଶ ଘଟାଇ ପାରିବ । ବଡ଼ ହୋଇ ଜନ୍ମ ହେବା ଓ ସାଧନା ପଥରେ ସଂଗ୍ରାମ କରି ମହନୀୟ ହେବା ଭିତରେ ଗୁଣାତ୍ମକ ପାର୍ଥକ୍ୟ ରହିଛି । ଈଶ୍ୱର ମଣିଷକୁ ନାନା ସମ୍ଭାବନା ଭିତରେ ରଖିଛନ୍ତି ଯେଉଁଠି ପ୍ରତିବନ୍ଧକ, ପ୍ରତିକୂଳ ସ୍ଥିତିରେ ବ୍ୟକ୍ତି ଆତ୍ମପରୀକ୍ଷା ଦେଇ ଆତ୍ମଶୁଦ୍ଧି ଲାଭକରିପାରିବ । ଏହି ଯୁକ୍ତିରେ ଏକଥା କୁହାଯାଇଛି ଯେ ଆମର ପୃଥିବୀଟି ସମ୍ଭବତଃ ସବୁଠାରୁ ଅଧିକ ଅର୍ଥପୂର୍ଣ୍ଣ । ଏକ ଦୁଃଖରହିତ ପୃଥିବୀର ପରିକଳ୍ପନା ଭିତରେ ପ୍ରାକୃତିକ ନିୟମ କାର୍ଯ୍ୟକାରୀ ହୋଇପାରିବ କି ? ମନେ କରାଯାଉ ଈଶ୍ୱର ଦୁଃଖ, ଶୋକ, ଜରାବିହୀନ ଏକ ପୃଥିବୀ ନିର୍ମାଣ କରିଥାନ୍ତେ ଓ ମନୁଷ୍ୟକୁ ସେଠାରେ ସର୍ବଦା ସୁଖକର ସ୍ଥିତି ଭିତରେ ରଖିଥାନ୍ତେ । ସେହି ପ୍ରକାରର ସମ୍ଭାବ୍ୟ ପୃଥିବୀଟି କେତେଦୂର ଅର୍ଥପୂର୍ଣ୍ଣ ହୋଇଥାନ୍ତା ? ସେଠାରେ ପ୍ରାକୃତିକ ନିୟମ ପରିବର୍ତ୍ତନଶୀଳ ହୋଇଥାନ୍ତା ଯାହାଦ୍ୱାରା ତାହା ଏକ ଅବୋଧଗମ୍ୟ ପୃଥିବୀର ଚିତ୍ର ଦିଅନ୍ତା । ଅଗ୍ନିର ସ୍ପର୍ଶ ପୀଡାଦାୟକ, କିନ୍ତୁ ଯଦି ଦୁଃଖ ରହିବ ନାହିଁ, ତେବେ ଅଗ୍ନିର ସ୍ପର୍ଶ କାହାକୁ ଯନ୍ତ୍ରଣା କରିବ ନାହିଁ । ଜଣେ ଗଛ ଉପରୁ ପଡିଲେ କଷ୍ଟ ହେବ ବୋଲି ଗଛରୁ ପଡିବ ନାହିଁ । ଅର୍ଥାତ୍ ସେହି ସମ୍ଭାବ୍ୟ ପୃଥିବୀଟି ଅର୍ଥପୂର୍ଣ୍ଣ ନ ହୋଇ ଅର୍ଥଶୂନ୍ୟ ହେବ । ପୁନଶ୍ଚ ଜୀବନରେ ଦୁଃଖ, କଷ୍ଟ, ଶୋକ, ବିଫଳତା, ପରାଜୟ ରହିଛି ବୋଲି ତ ସୁଖ, ସଫଳତା, ପ୍ରୀତିଭାବ, ଭ୍ରାତୃତ୍ୱଭାବ ଇତ୍ୟାଦି ବେଶ୍ ଆନନ୍ଦର ଅନୁଭବ ଦେଇଥାଏ । ବିଫଳତା, ଦୁଃଖ, କଷ୍ଟ ନଥିଲେ ସଫଳତା ଓ ସୁଖର ମୂଲ୍ୟ ପ୍ରାୟ ରହନ୍ତା ନାହିଁ । ତେଣୁ ଆମ ସଂସାରରେ ଦୁଃଖ, କଷ୍ଟ, ଯନ୍ତ୍ରଣା ରହିଥିଲେ ମଧ୍ୟ ଏହାଠାରୁ ଏକ ଅଧିକ ମହତ୍ତର ବିଶ୍ୱର ପରିକଳ୍ପନା କରାଯାଇ ନପାରେ । ପୁନଶ୍ଚ ମୃତ୍ୟୁ ପରେ ମୁକ୍ତି ବା ଅନନ୍ତ ସୁଖର ଯେଉଁ ସମ୍ଭାବନା ରହିଛି ତାହା ତୁଳନାରେ ଆମର ଦୁଃଖ, କଷ୍ଟ ଯେ ଅତି ନଗଣ୍ୟ ଏହା ମନେହୁଏ ।

ଈଶ୍ୱର ନିୟନ୍ତ୍ରିତ ବ୍ୟବସ୍ଥାକୁ ଗ୍ରହଣ କରି ଦୁଃଖ, କଷ୍ଟକୁ କିପରି ଏହି ଭାବଧାରାରେ ଉଚିତ ବୋଲି ଗ୍ରହଣ କରାଯାଇ ପାରିବ, ତାହାର ସମ୍ଭାବ୍ୟ ବ୍ୟାଖ୍ୟା ଦାର୍ଶନିକମାନେ ଚିନ୍ତା କରିଛନ୍ତି । ଏ କ୍ଷେତ୍ରରେ ଯେଉଁ ସବୁ ବିଚାରର ଅବତାରଣା କରି ଦୁଃଖ ଯନ୍ତ୍ରଣାକୁ ଈଶ୍ୱର' ଅସ୍ତିତ୍ୱ ସହ ସଂଗତ କରିଛନ୍ତି ତାହା ଆମର କଳ୍ପନାକୁ କିଛିଟା ଯୁକ୍ତିଶୀଳ ଆଧାର ଦେ'

ପ୍ରୟାସ କହିଲେ ଅତ୍ୟୁକ୍ତି ହେବନାହିଁ । ତେବେ ଏହି ପ୍ରତ୍ୟେକଟି ସମ୍ଭାବ୍ୟ ବ୍ୟାଖ୍ୟା ତ୍ରୁଟିଯୁକ୍ତ ଓ ସମ୍ବେଦନଶୀଳ ଦୃଷ୍ଟିର ପରିପନ୍ଥୀ । ଆମ ଜଗତର ପରିବେଶକୁ ଏକ କାଳ୍ପନିକ ସ୍ୱର୍ଗ କରିବା କେହି ଈଶ୍ୱରଙ୍କ ପାଖରୁ ଆଶା କରୁ ନାହିଁ । ତେବେ ଯଦି ଈଶ୍ୱରଙ୍କ ଅସ୍ତିତ୍ୱକୁ ସ୍ୱୀକାର କରି ତାଙ୍କୁ ସର୍ବଶକ୍ତିମାନ ବୋଲି ଚିତ୍ରଣ କରାଯିବ, ତେବେ ଈଶ୍ୱର ପ୍ରାକୃତିକ ଦୁର୍ବିପାକକୁ ନିୟନ୍ତ୍ରଣ କରିବା ବା ମଣିଷ ଭିତରର କ୍ରୂରତାକୁ ଦୂର କରିବା ତାଙ୍କ ଠାରୁ କାହିଁକି ଆଶା କରାନଯିବ ? ଯୁଦ୍ଧ, ବିଭୀଷିକା, ଭୂକମ୍ପ ଜନିତ ବିପର୍ଯ୍ୟୟ ଇତ୍ୟାଦି ଯଦି ପୃଥିବୀରେ କେବେ ଘଟି ନଥାନ୍ତା, ତେବେ ପୃଥିବୀର ଇତିହାସ ଭିନ୍ନ ହୋଇଥାନ୍ତା । ମହାମାରୀ ଘଟୁଥିବା ଯୁଗରେ ଅଗଣିତ ମଣିଷ ଯନ୍ତ୍ରଣାରେ ଜର୍ଜରିତ ହୋଇ ମରୁଥିବା ବେଳେ ମଣିଷ ତା'ର ଉପାୟ ଚିନ୍ତା କରିଛି । ଏହି ପ୍ରୟାସ ଦ୍ୱାରା ଆଧିଦୈବିକ ଦଣ୍ଡରୁ ମଣିଷକୁ ରକ୍ଷା କରିବା ବେଳେ ଏକ କରୁଣାମୟ ଈଶ୍ୱର ଏଥିରୁ କ୍ଷାନ୍ତ ରହିବାକୁ କିପରି ଯୁକ୍ତିସିଦ୍ଧ ଆଧାର ଦିଆଯିବ ? ସେହିପରି ଯେଉଁମାନେ ମନ୍ଦ କାର୍ଯ୍ୟରେ ସଂପୃକ୍ତ ବା ଈଶ୍ୱରଙ୍କ ବ୍ୟବସ୍ଥା ପ୍ରତି ସନ୍ଦେହୀ ସେମାନଙ୍କୁ ଅନନ୍ତକାଳ ପାଇଁ ନରକକୁ ପଠାଇବାର ଚିନ୍ତା କେତେଦୂର ମାନବିକ ? ଅଧିକାଂଶ ଧର୍ମ ନରକର ପରିକଳ୍ପନା କରି ଧର୍ମବିରୋଧୀ ମାନଙ୍କୁ ଅନନ୍ତ କାଳ ପାଇଁ ନରକକୁ ପଠାଇବାର ଯେଉଁ ବାଣୀ ଶୁଣାଇଛନ୍ତି ତାହା ସଭ୍ୟ ଦୃଷ୍ଟିଭଙ୍ଗୀର ପ୍ରତିକୂଳ । ଅଗଣିତ ନିଷ୍ପାପ ଶିଶୁ ଦୁରାରୋଗ୍ୟ ବ୍ୟାଧିରେ ଜର୍ଜରିତ ହେବା, ସତ୍ୟ-ନ୍ୟାୟ ପଥରେ ଥାଇ ଯନ୍ତ୍ରଣାର ଜୀବନ ବଞ୍ଚିବା, ଜଣେ ଜଣେ ହିଟଲରଙ୍କ ପାଇଁ ପୃଥିବୀ ବକ୍ଷ ରକ୍ତରଂଜିତ ହେବା କେଉଁ ଈଶ୍ୱରୀୟ-ନ୍ୟାୟ ପ୍ରତିଷ୍ଠା କରୁଛି ! ଧର୍ମୀୟ ଭାବନାରେ ଓ ଦାର୍ଶନିକ ଚିନ୍ତନରେ ମନ୍ଦ, ଅଶୁଭ, ବିପର୍ଯ୍ୟୟ ଇତ୍ୟାଦି ଈଶ୍ୱରୀୟ ବ୍ୟବସ୍ଥା ସହ କିପରି ସଂଯୋଜିତ ହୋଇ ରହିପାରିବ ସେ ବିଷୟରେ ବହୁ ଚର୍ଚ୍ଚା ହୋଇଛି । ଏ ସତ୍ତ୍ୱେ ସମସ୍ୟାର ସମାଧାନ ମିଳି ନାହିଁ । ଈଶ୍ୱରଙ୍କୁ ଯଦି ସତ୍ୟ, ନ୍ୟାୟର ପ୍ରତୀକ ଭାବେ ନିଆଯିବ, ତେବେ ସଂସାର ଈଶ୍ୱରୀୟ ନ୍ୟାୟଠାରୁ ଯେ ଯୋଜନ ଦୂରରେ ରହିଛି ଏହା କହିବା ଅସମୀଚୀନ ହେବ ନାହିଁ । ମୋଟ ଉପରେ ଆମ ସଂସାରରେ ଯେତେଦିନ ପର୍ଯ୍ୟନ୍ତ ଅନ୍ୟାୟ, ଅବାଞ୍ଛିତ ଦୁଃଖ ଯନ୍ତ୍ରଣା, ପ୍ରାକୃତିକ ବିପର୍ଯ୍ୟୟ ଜନିତ ବିଭୀଷିକା ପରି ଘଟଣାମାନ ଥିବ, ସେ ପର୍ଯ୍ୟନ୍ତ ଈଶ୍ୱରୀୟ ନ୍ୟାୟ ବ୍ୟବସ୍ଥା ପ୍ରତି ସନ୍ଦେହ ରହିବ । ଈଶ୍ୱରଙ୍କୁ ସର୍ବଶକ୍ତିମାନ ଓ କରୁଣାମୟ ବୋଲି ବିଶ୍ୱାସ କରିବା ଓ ବାସ୍ତବ ସ୍ଥିତିରେ ମଣିଷର ରାଶି ରାଶି ଅହେତୁକ ଦୁଃଖ ଯନ୍ତ୍ରଣା ଓ ସାମାଜିକ ସ୍ତରରେ ଅନ୍ୟାୟ ଓ କ୍ରୂରତା ଦେଖୁଥିବା ଏକ ସମ୍ବେଦନଶୀଳ ଓ ଚିନ୍ତାଶୀଳ ବ୍ୟକ୍ତିର ମନରେ ଈଶ୍ୱରୀୟ ବ୍ୟବସ୍ଥା ପ୍ରତି ସନ୍ଦେହ ସୃଷ୍ଟି ହେବା ଅତି ସ୍ୱାଭାବିକ ମନେହୁଏ ।

ସଭ୍ୟତାର କ୍ରମବିକାଶ ଓ ବଞ୍ଚିବାର ମାନରେ କ୍ରମବର୍ଦ୍ଧିଷ୍ଣୁ ଅଗ୍ରଗତିରୁ ଏହା ଜଣାପଡେ ଯେ ମଣିଷ ଏକ ଆଦିମ ସ୍ତରରୁ ନାନା ପରିବର୍ତ୍ତନ ଦେଇ ସଭ୍ୟ ଜୀବନ ସ୍ତରକୁ ଆସିଛି । ମଣିଷର ବିଚାରଶୀଳ ସାମର୍ଥ୍ୟ, ବୈଜ୍ଞାନିକ ଉଦ୍‌ଭାବନ ଓ ଆବିଷ୍କାର, ନୂଆ ନୂଆ ପ୍ରଯୁକ୍ତିର ପ୍ରୟୋଗ ଓ ସାମାଜିକ ଚେତନାର ବିକାଶ ଦ୍ୱାରା ସଭ୍ୟତା ଆଗକୁ ଯାଇଛି । ଏକ

ଶଙ୍କାକୁଳ ପରିବେଶରୁ ଏକ ସୁସଂହତ ସାମାଜିକ ଜୀବନର କ୍ରମ ଅଭ୍ୟୁଦୟ ଘଟିଛି । ବିଭିନ୍ନ ସଭ୍ୟତାରେ ମାନବୀୟ ସଙ୍କଟରୁ ଜନଗଣଙ୍କୁ ଉନ୍ନତ କରିବାରେ ମଣିଷ ତାର ବିଚାର ବୁଦ୍ଧ ପ୍ରୟୋଗ କରି ପନ୍ଥାର ଅନ୍ୱେଷଣ କରିଛି । ମଣିଷର ପ୍ରୟାସ ଦ୍ୱାରା ନୂଆ ବାଟର ସନ୍ଧାନ ମିଳିଛି, ରୋଗବାଧକ ମାନଙ୍କୁ ନିୟନ୍ତ୍ରଣ ପାଇଁ ଜ୍ଞାନର ବିକାଶଦ୍ୱାରା ଗଣମୃତ୍ୟୁର ତାଣ୍ଡବରୁ ମଣିଷ ରକ୍ଷା ପାଇଛି, ପ୍ରାକୃତିକ ବିପର୍ଯ୍ୟୟ ଘଟିଲେ ପୀଡିତ ଜନଗୋଷ୍ଠୀକୁ ସହାନୁଭୂତିର ହାତ ପ୍ରସାରିତ ହୋଇ ଆସୁଛି, ସମଗ୍ର ମାନବଜାତି ଭିତରେ ଭାତୃତ୍ୱର ମନୋଭାବ ବୃଦ୍ଧି ପାଇଛି । ଏହି ସବୁ ହେତୁବାଦୀ ଜୀବନଦୃଷ୍ଟିରୁ ସମ୍ଭବ ହୋଇଛି । ହେତୁବାଦ ଅହେତୁକ ବିଶ୍ୱାସରୁ ଦୃଷ୍ଟି ଫେରାଇ ପ୍ରୀତିପୂର୍ଣ୍ଣ ବିଶ୍ୱାସ ଓ ଗୁଣାତ୍ମକ ଜୀବନ ବଞ୍ଚିବା ପାଇଁ ସର୍ବଦା ଆବେଦନ ସୃଷ୍ଟି କରି ଆସିଛି । ଏହା ଏହି ବିଶ୍ୱାସ ସୃଷ୍ଟି କରିଛି ଯେ ମଣିଷର ପ୍ରୟାସ ଦ୍ୱାରା ଓ ସତ୍‌ବିଚାରଦ୍ୱାରା ଜୀବନର ଗୁଣାତ୍ମକ ମାନ ବୃଦ୍ଧି ପାଇପାରିବ, ଦୁଃଖ ଦୁର୍ଦ୍ଦଶାକୁ ଦୂର କରାଯିବା ସମ୍ଭବ ହେବ ତଥା ମାନବିକ ସମ୍ବେଦନଶୀଳ ମୂଲ୍ୟବୋଧକୁ ପ୍ରସାର କରାଯାଇପାରିବ । ଶିକ୍ଷାର ବିକାଶଦ୍ୱାରା ଜୀବନର ମୂଲ୍ୟ ନେଇ ସାମାଜିକ ଚେତନାକୁ ଉନ୍ନତ କରିହେବ, ଅର୍ଥନୈତିକ ଓ ରାଜନୈତିକ ବ୍ୟବସ୍ଥାକୁ ନ୍ୟାୟପୂର୍ଣ୍ଣ ଓ ଜନହିତକାରୀ ଲକ୍ଷ୍ୟ ଦିଗରେ ଅଭିପ୍ରେତ କରିହେବ । ସମାଜରେ ଯାହା ସମସ୍ୟା ଓ ସଂକଟ ରହିଛି ତାର ଯଥାର୍ଥ ଅନୁଶୀଳନ ଦ୍ୱାରା ପରିସ୍ଥିତିରେ ଉନ୍ନତିବିଧାନ କରାଯାଇ ପାରିବ । ପ୍ରତ୍ୟେକ ବ୍ୟକ୍ତିର ମର୍ଯ୍ୟାଦା, ମାନବିକ ଅଧିକାରକୁ ସାମାଜିକ ଜୀବନରେ ସ୍ୱୀକୃତି ଦିଆଯାଇ ପାରିବ । ଏକ ନ୍ୟାୟପୂର୍ଣ୍ଣ, ପ୍ରୀତିପୂର୍ଣ୍ଣ ଓ ଉତ୍ତରଦାୟୀ ସାମାଜିକ ପରିବେଶକୁ ମଣିଷ ପ୍ରୟାସରେ ରୂପ ଦିଆଯିବା ସମ୍ଭବ । ଆମର ସମସ୍ୟାକୁ କେଉଁ କଳ୍ପିତ ଦେବତା ବା ଈଶ୍ୱର ସମାଧାନ କରିବେ ନାହିଁ ବା ଅତୀତରେ କରିନାହାନ୍ତି । ମଣିଷର ପ୍ରୟାସ ଦ୍ୱାରା ବ୍ୟବସ୍ଥାର ଉନ୍ନତି ସମ୍ଭବ ହେବ ଓ ଜୀବନର ମହତ୍ତ୍ୱ ବୃଦ୍ଧି ପାଇବ । ସମାଜରେ ନାଗରିକ ଶୃଂଖଳାବୋଧ ଓ ଉତ୍ତରଦାୟିତ୍ୱବୋଧ ପରି ମୂଲ୍ୟଚୟକୁ ସାର୍ବଜନୀନ କରାଯାଇପାରିବ ।

ଉପସଂହାରରେ ମଣିଷ ସମାଜରେ ଯାହା ଦୁଃଖ, ଦୁର୍ଦ୍ଦଶା ରହିଛି ତାହାକୁ କେଉଁ କଳ୍ପିତ ଦୈବୀଶକ୍ତି ସମାଧାନ କରିଦେବେ ନାହିଁ । ବରଂ ଆମର ସଂଘବଦ୍ଧ ପ୍ରୟାସ ଓ ଆନ୍ତରିକ ଉଦ୍ୟମରେ ଆମେ ସମାଧାନର ପନ୍ଥା ବାହାର କରିପାରିବା । ଧର୍ମ, ଜାତି, ଜାତୀୟତା ଗୋଟିଏ ସମୟରେ ଯେଉଁ ଆବେଗ ସୃଷ୍ଟି କରି ସମାଜକୁ ଭାଗ ଭାଗ କରୁଥିଲା ଓ ତାହାକୁ ଈଶ୍ୱରୀୟ ସ୍ୱୀକୃତି ଦେବାକୁ ଉଦ୍ୟମ ହେଉଥିଲା, ସେହି ଦୃଷ୍ଟିଭଙ୍ଗୀରେ ଯଥେଷ୍ଟ ପରିବର୍ତ୍ତନ ହେଲାଣି । ମାନବବାଦୀ ବିଚାରବୋଧ ଆମ ସଂସାରକୁ ଏକତ୍ୱ ବନ୍ଧନରେ ଯୋଡିବାକୁ ସମର୍ଥ ବୋଲି ଭାବନା ଯଥେଷ୍ଟ ଦୃଢ଼ ଭିତ୍ତି ନେଲାଣି । ପ୍ରାକୃତିକ ଦୁର୍ବିପାକକୁ ପ୍ରତିହତ କରିବା ପାଇଁ କିଛି ଜ୍ଞାନକୌଶଳ ମଣିଷ ନିଜର ପ୍ରୟାସଦ୍ୱାରା ଜାଣିବାକୁ ସମର୍ଥ ହେଲାଣି, ତଥାପି ଆହୁରି ଅନେକ ବାଟ ଯିବାକୁ ରହିଛି । ସଭ୍ୟତାର ଅଗ୍ରଗତି ସହ ନୂଆ ନୂଆ ସଂକଟ ବି ସୃଷ୍ଟି ହୋଇ ଚାଲିଛି ।

ତେବେ ଯେ କୌଣସି  ସଂକଟ ପାଇଁ ମଣିଷ ଅସହାୟ ହୋଇ କେଉଁ ଈଶ୍ୱରଙ୍କ ପାଖରେ ଶରଣ ପଶୁ ନାହିଁ, ବରଂ ବିଚାର ବୁଦ୍ଧି ଖଟାଇ ବାଟ ଖୋଜୁଛି, ସମାଧାନର ସୂତ୍ର ବାହାର କରିବାକୁ ପ୍ରୟାସ କରୁଛି । ପରିବେଶ ଜନିତ ସଂକଟ, ସନ୍ତ୍ରାସବାଦ ଜନିତ ମାନବିକତା ବିରୋଧୀ ଭାବଧାରା, ନୂତନ ସାମ୍ରାଜ୍ୟବାଦ ଜନିତ ଶୋଷଣ ବିରୁଦ୍ଧରେ ବିଶ୍ୱରେ ସଚେତନତା ବୃଦ୍ଧି ପାଇବାରେ ଲାଗିଛି । ବିଶ୍ୱର ଚିନ୍ତାଶୀଳ, ମାନବହିତୈଷୀ ହେତୁବାଦୀମାନେ ମଣିଷ ଜାତିର ଏକତ୍ୱର ବାର୍ତ୍ତା ଦେଇ ପୃଥିବୀରୁ ଅସହିଷ୍ଣୁତା, ହିଂସା, ସନ୍ତ୍ରାସବାଦ, ଅମାନବିକତାକୁ ଦୂର କରିବାକୁ ପ୍ରୟାସ ଜାରି ରଖିଛନ୍ତି । ବୈଜ୍ଞାନିକ କ୍ରିୟାଶୀଳତାଦ୍ୱାରା ସାରା ପୃଥିବୀ ଗୋଟିଏ କ୍ଷୁଦ୍ର ଗ୍ରାମରେ ରୂପାନ୍ତରିତ ହେବାରେ ଲାଗିଛି । ଆଧୁନିକ ବିଜ୍ଞାନ ପୃଥିବୀରୁ ଦୂରତ୍ୱ କମାଇବାରେ ସମର୍ଥ ହେଲାଣି । ସାରା ବିଶ୍ୱର ଜନଗଣଙ୍କ ଭିତରେ ଆଦାନ ପ୍ରଦାନ ବୃଦ୍ଧି ପାଇବାରେ ଲାଗିଛି । ତେବେ ଏହି ସ୍ଥିତିରେ ଆମେ ହୃଦୟବତ୍ତାରେ ମଧ୍ୟ ଏକତ୍ର ହୋଇପାରିବା । ସାରା ବିଶ୍ୱର ଜନଗଣଙ୍କ ଭିତରେ ଭାତୃତ୍ୱର ଭାବନା ସୃଷ୍ଟିକରି ସମସ୍ତଙ୍କୁ ମାନସିକ ସ୍ତରରେ ମାନବିକ ପ୍ରୀତି ବନ୍ଧନରେ ଯୋଡିବା ପାଇଁ ବିଶ୍ୱର ଜ୍ଞାନୀ,ଗୁଣୀ, ଦରଦୀ ମଣିଷମାନେ କେତେ ଆନ୍ତରିକତା ସୃଷ୍ଟି କରିଚାଲିଛନ୍ତି । ଯେଉଁଠି ଯାହା ଜ୍ଞାନର ବିକାଶ ହେଉଛି ତାର ସୁଫଳ ସମଗ୍ର ମଣିଷ ଜାତି ଲାଭ କରିପାରୁଛି । ଏହା ସଭ୍ୟତାର ସବୁଠାରୁ ବଡ଼ ସାଂସ୍କୃତିକ ଉତ୍ତରଣ କହିଲେ ଅତ୍ୟୁକ୍ତି ହେବନାହିଁ ।

ବୈଜ୍ଞାନିକ ବିଚାରବୋଧ ଓ ମାନବବାଦର ସମନ୍ୱିତ ଅଭିବ୍ୟକ୍ତି ହେଉଛି ହେତୁବାଦ । କହିବା ନଷ୍ପ୍ରୟୋଜନ ଯେ ଏ ପ୍ରତ୍ୟେକଟି ଭାବଧାରା ସାର୍ବଜନୀନ ଓ ସତ୍ୟ ପ୍ରତି ସର୍ବଦା ଉନ୍ମୁକ୍ତ । ବିଜ୍ଞାନ ପ୍ରକୃତିର ରହସ୍ୟକୁ ଉଦ୍‌ଘାଟିତ କରି ଜ୍ଞାନର ଦିଗନ୍ତକୁ ବିସ୍ତାର କରିଚାଲିଛି । ଫଳତଃ ସଂସାରରୁ ଅନେକ ଦୁଃଖ ଦୁର୍ଦ୍ଦଶାର ଅନ୍ତ ହୋଇ ପାରିଛି । କୁଷ୍ଠ, ବସନ୍ତ, ପ୍ଲେଗ ଇତ୍ୟାଦି ମାରାତ୍ମକ ରୋଗକୁ ଏହା ଦୈବୀ ଦଣ୍ଡ କହି ସେଥିରୁ ତ୍ରାଣ ପାଇଁ ପ୍ରାର୍ଥନା କରିବା ଦ୍ୱାରା ସମାଜର ଉପକାର ହୋଇନାହିଁ । ବରଂ ବର୍ଷ ବର୍ଷର ଗବେଷଣା ଦ୍ୱାରା ତାହାର କାରଣ ଜାଣିବା ଯୋଗୁ ଏସବୁ ରୋଗର ଯନ୍ତ୍ରଣାରୁ ମଣିଷ ଜାତି ଅନେକ ସୁଫଳ ଲାଭ କରିଛି । ଏହା ମଣିଷର ପ୍ରୟାସରେ ସମ୍ଭବ ହୋଇଛି । ସେହିପରି ମାନବବାଦ ମଣିଷ ମଣିଷ ଭିତରର ପ୍ରାଚୀର ଓ ଭେଦଭାବକୁ ଦୂର କରି ବିଶ୍ୱ ଭାତୃତ୍ୱର ଭାବନା ସୃଷ୍ଟି କରିବାରେ ସହାୟକ ହୋଇଛି । ଅଜ୍ଞତା ଓ ଅମାନବିକତା ଦୂର କରିବା ପାଇଁ ହେତୁବାଦ ବୌଦ୍ଧିକ ଆବେଦନ ସର୍ବଦା ଦେଇଆସିଛି । ତାର ପରିଣତି ସ୍ୱରୂପ ସଭ୍ୟତା ଆଗକୁ ଯାଇଛି, ବିଚାରଧାରାରେ କ୍ରାନ୍ତି ଆସିଛି ଓ ବିଶ୍ୱ ଏକ ପରିବାରରେ ରୂପାନ୍ତରିତ ହେବାର ସମ୍ଭାବନା ସୃଷ୍ଟି ହୋଇଛି ।  ମୋଟ ଉପରେ ଏକ ଦୁଃଖରହିତ ବିଶ୍ୱ ସମାଜ ପାଇଁ ହେତୁବାଦ ସର୍ବଦା ନିଜର ସଂପୃକ୍ତି ଓ ପ୍ରତିବଦ୍ଧତା ବ୍ୟକ୍ତ କରିଆସିଛି । ସବୁ ସଭ୍ୟତାରେ ହେତୁବାଦୀମାନେ ସଂସ୍କାରିତ ଚେତନାର ଅଗ୍ରଦୂତ ଓ ଏକ ଦୁଃଖରହିତ ସମତା-ଆଧାରିତ ପ୍ରୀତିପୂର୍ଣ୍ଣ ବିଶ୍ୱର ପଥପ୍ରଦର୍ଶକ । ମୁକ୍ତ ମନ, ବିଚାରଶୀଳ ଦୃଷ୍ଟି, ମାନବବାଦୀ ଜୀବନଦର୍ଶନ ଓ ବୈଜ୍ଞାନିକ ମାନସିକତା ହେତୁବାଦର ଅନ୍ତଃସ୍ୱର ।



# ସତ୍ୟର ସ୍ୱରୂପ ଓ ଧର୍ମ ପରିବର୍ତ୍ତନ

*ଅଧ୍ୟାପକ ନୀଳମଣି ସାହୁ*

"ଏକମ୍ ସତ ବିପ୍ରାଃ ବହୁଧା ବଦନ୍ତି !" ଏହି ବାକ୍ୟଟିର ଅର୍ଥ ହେଲା : ସତ୍ୟ ଏକ କିନ୍ତୁ ଜ୍ଞାନୀମାନେ ତାକୁ ବିଭିନ୍ନ ଭାବରେ କହିଥାନ୍ତି । କିନ୍ତୁ ଆମକୁ ଏଠାରେ ମନେ ରଖିବାକୁ ହେବ ଯେ ଜ୍ଞାନୀମାନେ ଏହି 'ସତ୍ୟ' ଶବ୍ଦକୁ ବିଭିନ୍ନ ଭାବରେ ବ୍ୟବହାର କରନ୍ତି ।

"ସତ୍ୟ ହିଁ ଭଗବାନ" ବୋଲି କହିଲା ବେଳେ ସେମାନେ 'ସତ୍ୟ' ଶବ୍ଦକୁ ଭଗବାନ ଅର୍ଥରେ ବ୍ୟବହାର କରିଥାନ୍ତି । ସତ୍ୟ ତଥା ଭଗବାନ ଏକ ଓ ଅଭିନ୍ନ । ଏହା ହେଲା ସତ୍ୟ ଶବ୍ଦର ଆଧିଭୌତିକ ବା (metaphysical) ବ୍ୟବହାର । ଏହି ଅର୍ଥରେ ଉଦ୍ଧୃତ ବାକ୍ୟର ଅର୍ଥ ହେବ- ଭଗବାନ ଏକ ଅଥଚ ଜ୍ଞାନୀମାନେ ତାଙ୍କୁ ବିଭିନ୍ନ ଭାବରେ ବର୍ଣ୍ଣନା କରିଥାନ୍ତି । କିନ୍ତୁ ଆମେ ଦେଖୁ ବିଭିନ୍ନ ଧର୍ମରେ ଜ୍ଞାନୀମାନେ ଭଗବାନଙ୍କ ସମ୍ପର୍କରେ ଯେଉଁସବୁ ଭିନ୍ନ ଭିନ୍ନ ବର୍ଣ୍ଣନାମାନ ଦେଇଛନ୍ତି ଅଧିକାଂଶ ସ୍ଥଳେ ସେଗୁଡ଼ିକ ପରସ୍ପର ବିରୋଧୀ । ତେଣୁ ସକଳ ମାନବ ଜାତି ସେହି ଏକା ଭଗବାନଙ୍କୁ ପୂଜା କରନ୍ତି ବୋଲି କୁହା ଯାଉଥିଲେ ମଧ ବିଭିନ୍ନ ଧର୍ମର ଅନୁଗାମୀମାନଙ୍କ ମଧ୍ୟରେ ରହିଥିବା ଦ୍ୱନ୍ଦ୍ୱ, ଅସହିଷ୍ଣୁତା ଓ ହିଂସାଭାବର ମୂଳରେ ରହିଛି ଜ୍ଞାନୀମାନଙ୍କର ଏହି ପରସ୍ପର ବିରୋଧୀ ବର୍ଣ୍ଣନାବଳୀ । ସେଗୁଡ଼ିକ ମଧ୍ୟରୁ କେଉଁଗୁଡ଼ିକ ସତ ଏବଂ କେଉଁଗୁଡ଼ିକ ମିଛ କୌଣସି ଭାବରେ ସାର୍ବଜନୀନ ପଦ୍ଧତିରେ ଜାଣିବାର ବାଟ ନାହିଁ । ସମସ୍ତ କଥା କେବଳ ବିଶ୍ୱାସର କଥା । ବିଭିନ୍ନ ଧର୍ମର ଅନୁଗାମୀମାନଙ୍କ ପାଇଁ ନିଜନିଜ ଧର୍ମର ସବୁକଥା ସତ;ମିଛର ପ୍ରଶ୍ନ ନାହିଁ, ସନ୍ଦେହର ପ୍ରଶ୍ନ ନାହିଁ । ଯିଏ ଯେଉଁଥିରେ ବିଶ୍ୱାସ କଲା ସେହି ଅନୁସାରେ ନିଜ ଜୀବନକୁ ପରିଚାଳିତ କଲା । ତଦ୍ୱାରା କାହାର ବିରୋଧ ହେଲା, କାହା ପ୍ରତି ହିଂସା ହେଲା, ସେଥିରେ ସେମାନଙ୍କର କିଛି ଯାଏ

ଆସେ ନାହିଁ । ଧାର୍ମିକ ବିଶ୍ୱାସ ପାଇଁ ସେମାନେ ଜୀବନ ଦେବା ପାଇଁ ପ୍ରସ୍ତୁତ, ଜୀବନ ନେବା ପାଇଁ ମଧ୍ୟ ସଦା ପ୍ରସ୍ତୁତ । ତେଣୁ ଉଦ୍ଧୃତ ବାକ୍ୟରେ 'ସତ୍ୟ' ଶବ୍ଦଟି ଯେଉଁ ଅର୍ଥରେ ବ୍ୟବହୃତ ହୋଇଛି ତାହା ଆମ ଚର୍ଚ୍ଚାର ଅନ୍ତର୍ଭୁକ୍ତ ନୁହେଁ ।

'ସତ୍ୟ' ଶବ୍ଦର ଅନ୍ୟ ଏକ ବ୍ୟବହାରରେ ଏହାକୁ ସତ୍ତା ବା reality ସହ ଏକାକାର କରାଯାଇ ଥାଏ । ଏହା ମଧ୍ୟ 'ସତ୍ୟ' ଶବ୍ଦର ଅନ୍ୟ ଏକ ଧରଣର ଆଧିଭୌତିକ ବା (metaphysical) ବ୍ୟବହାର । ଏଠାରେ ସତ୍ୟ ଓ ତଥ୍ୟକୁ ଏକାକାର କରାଯାଇ ଥାଏ । ସତ୍ୟ ଓ ତଥ୍ୟ ଅଭିନ୍ନ ବୋଲି କୁହାଯାଇଥାଏ । ଏହି ବ୍ୟବହାର ଅନୁସାରେ ଉଦ୍ଧୃତ ବାକ୍ୟର ଅର୍ଥ ହେବ ତଥ୍ୟ ଏକ ଅଥଚ ଜ୍ଞାନୀମାନେ ତାକୁ ବିଭିନ୍ନ ଭାବରେ ବର୍ଣ୍ଣନା କରିଥାନ୍ତି । କିନ୍ତୁ ଦେଖିବାକୁ ମିଳେ ଯେ ସୂର୍ଯ୍ୟାସ୍ତ କାଳରେ ପଶ୍ଚିମ ଆକାଶର ସୌନ୍ଦର୍ଯ୍ୟକୁ ଦେଖି ବିଭିନ୍ନ ଲୋକ ବିଭିନ୍ନ ଭାବରେ ବର୍ଣ୍ଣନା କରି ପାରନ୍ତି । ଯାହା ନିକଟରେ ଯେତେ ଅଧିକ 'ରଙ୍ଗ-ଶବ୍ଦ' ଅଛି ଓ ବର୍ଣ୍ଣନା କରିବା ଶକ୍ତିରେ ଯିଏ ଯେତେ ଅଧିକ ପାରଙ୍ଗମ, ତାହାର ବର୍ଣ୍ଣନା ସେହ ଅନୁସାରେ ଅଧିକ ବ୍ୟାପକ ଓ ସୁନ୍ଦର ହେବ । ତଥାପି ଏଠାରେ ତଥ୍ୟ ଏକ ଅଥଚ ବର୍ଣ୍ଣନା ଭିନ୍ନ ଭିନ୍ନ । ଯଦି ତଥ୍ୟ ଓ ସତ୍ୟ ଏକ ତେବେ, ଏକା ତଥ୍ୟ ଉପରେ ପର୍ଯ୍ୟବସିତ ଏହି ସମସ୍ତ ବର୍ଣ୍ଣନା ସତ୍ୟ ହୋଇଥାନ୍ତା, କିନ୍ତୁ ତା ଦେଖା ଯାଏନାହିଁ । କୋଠା ତଳେ ଲୋକଟିଏ ମରି ପଡିଛି– ଏହା ହେଲା ଏକ ତଥ୍ୟ । ଏହି ତଥ୍ୟକୁ ବିଭିନ୍ନ ଭାବରେ ପ୍ରକାଶ କରାଯାଇପାରେ । କିଏ କହିପାରେ : (୧) ଲୋକଟି କୋଠାରୁ ପଡି ମଲା । ଆଉ କିଏ କହିପାରେ : (୨) ଲୋକଟି କୋଠାରୁ ଡେଇଁ ଆତ୍ମହତ୍ୟା କଲା । (୩) ସାତ ତାଲା କୋଠାରୁ ଡେଇଁ ଲୋକଟି ଆତ୍ମହତ୍ୟା କଲା ।(୪) ଅଶି ଫୁଟ ଉଚ୍ଚ କୋଠାରୁ ଡେଇଁ ଲୋକଟି ଆତ୍ମହତ୍ୟା କଲା । (୫) କେହି ଜଣେ ଲୋକଟିକୁ କୋଠାରୁ ପେଲି ଦେଇ ହତ୍ୟା କଲା । ଇତ୍ୟାଦି । ଏହି ବାକ୍ୟଗୁଡିକୁ ନିରୀକ୍ଷଣ କଲେ ଆମେ ଦେଖିବା ଯେ (୧), (୨), (୩) ଓ (୪) ଏକମାତ୍ର ସତ ହୋଇ ପାରନ୍ତି ଏବଂ ସେଗୁଡିକ ଯଦି ସତ ତେବେ (୫) ମିଛ ଓ (୫) ଯଦି ସତ ତେବେ ଅନ୍ୟ ଗୁଡିକ ମିଛ । ଅପର ପକ୍ଷରେ, ଲୋକଟି ଯଦି ଆତ୍ମହତ୍ୟା କରି ନଥାଏ ତେବେ (୨), (୩) ଓ (୪) ମିଛ । ଅଥଚ (୨) ସହ (୩) ଅବା (୪) କୁ ତୁଳନା କଲେ ଆମେ ଦେଖିବା ଯେ (୩) ଅବା (୪), (୨) ଅପେକ୍ଷା ଅଧିକ ସୂଚନା ଦିଏ, ତେଣୁ ଅଧିକ ନିର୍ଦ୍ଦିଷ୍ଟ । ଯେଉଁ ବାକ୍ୟ ଯେତେ ଅଧିକ ସୂଚନା ଦେବ, ଯେତେ ଅଧିକ ନିର୍ଦ୍ଦିଷ୍ଟ ହେବ, ତାର ମିଛ ପ୍ରମାଣିତ ହେବାର ସମ୍ଭାବନା ସେତେ ବେଶି । 'ସତ୍ୟ' ଶବ୍ଦର ଏପରି ଧରଣର ଅତିପ୍ରାକୃତିକ ବ୍ୟବହାରରେ ମଧ୍ୟ ଆମର ସ୍ପୃହା ନାହିଁ ।

"ଏକମ୍ ସତ ବିପ୍ରାଃ ବହୁଧା ବଦନ୍ତି" ବୋଲି କୁହାଯାଉଥିଲେ ମଧ୍ୟ ଆମେ ଜ୍ଞାନ ବୋଲି ଯାହାକୁ କହୁ ତାହା ବିଭିନ୍ନ ପ୍ରକାର ସତ୍ୟର ଏକ ଭଣ୍ଡାର । ଆମ ଜ୍ଞାନ ଭଣ୍ଡାରରେ

ବିଭିନ୍ନ ପ୍ରକାରର ସତ୍ୟ ରହିଛି ଏବଂ ସେହି ସତ୍ୟଗୁଡିକର ନିର୍ଦ୍ଧାରଣର ଧାରା ମଧ୍ୟ ଭିନ୍ନ ଭିନ୍ନ । ଏହି ସଂସାର ସମ୍ପର୍କରେ କିଛି ସୂଚନା ଦେବା ପାଇଁ ଯେଉଁ ବାକ୍ୟ ଗୁଡିକ ବ୍ୟବହାର ହୋଇଥାଏ ସେଗୁଡିକରୁ କିଛି ସତ ହୋଇପାରେ ଓ ଆଉ କିଛି ମିଛ ହୋଇପାରେ । ଏହି ଧରଣର ମତ ମିଛ ବା ସତ୍ୟାସତ୍ୟ ହିଁ ଆମ ଆଲୋଚନାର ବିଷୟବସ୍ତୁ ।

ବିଭିନ୍ନ ପ୍ରକାରର ସତ୍ୟ ମଧ୍ୟରୁ ପ୍ରଥମେ ଗାଣିତିକ ସତ୍ୟ କଥା ବିଚାର କରାଯାଉ । "୩+୨=୫" - ଏହା ଏକ ଗାଣିତିକ ବାକ୍ୟ । ଏହି ବାକ୍ୟଟି ଯାହା କହୁଛି ତାହା ସତ । କିନ୍ତୁ ଆମେ ଯଦି "୩+୨=୪" କହିବା ତେବେ ତାହା ମିଛ ହେବ । ଆମେ ଏଠାରେ 'ସତ', 'ମିଛ' ଶବ୍ଦଗୁଡିକୁ ବ୍ୟବହାର କରି କହିଲେ, ଅଥଚ ଶିକ୍ଷକ ଶ୍ରେଣୀଗୃହରେ 'ଠିକ୍', 'ଭୁଲ୍' ଶବ୍ଦଗୁଡିକ ବ୍ୟବହାର କରି କହନ୍ତି । ଶିକ୍ଷକ ଏହି ଶବ୍ଦଗୁଡିକ ବ୍ୟବହାର କରିବାର ଅର୍ଥ ହେଲା ଉତ୍ତର ଯଦି ଗଣିତଶାସ୍ତ୍ରର ନିୟମାବଳୀ ଅନୁସାରେ ହୋଇଛି ତେବେ ତାହା ଠିକ୍ (ସତ), ଅନ୍ୟଥା ଭୁଲ (ମିଛ) । ତେଣୁ ଗାଣିତିକ ସତ୍ୟାସତ୍ୟ ଗାଣିତିକ ନିୟମାବଳୀ ଉପରେ ନିର୍ଭର କରେ । ଗାଣିତିକ ସତ୍ୟ ଗାଣିତିକ ନିୟମାନୁବର୍ତ୍ତୀ । ବିଭିନ୍ନ ନିୟମଗୁଚ୍ଛର ଭିତ୍ତିରେ ବିଭିନ୍ନ ଧରଣର ଗଣିତ ସୃଷ୍ଟି କରାଯାଇପାରେ ।

"ବିରାଡିଟି ଆସନ ଉପରେ ବସିଛି"-ଏହା ଏକ ଅନୁଭୂତିଭିତ୍ତିକ ବାକ୍ୟ । ଏହାର ସତ୍ୟାସତ୍ୟ ଜାଣିବା ପାଇଁ ଆମକୁ ଅନୁଭୂତିର ସାହାଯ୍ୟ ନେବାକୁ ହେବ । ଅନୁଭୂତି ବିନା ଏହାର ସତ୍ୟାସତ୍ୟ ଜାଣି ହେବନାହିଁ । ଆମକୁ ଦେଖିବାକୁ ହେବ ବିରାଡିଟିଏ ଅଛି କି ନାହିଁ, ଆସନଟିଏ ଅଛି କି ନାହିଁ, ଯଦି ବିରାଡି ଓ ଆସନ ଉଭୟ ଅଛି, ତେବେ ଆମକୁ ଦେଖିବାକୁ ହେବ ବିରାଡିଟା ଆସନ ଉପରେ ବସିଛି କି ନାହିଁ । ଯଦି ବସିଥିବ, ବାକ୍ୟଟି ସତ । ଅନ୍ୟଥା ମିଥ୍ୟା । ଅନୁଭୂତିଭିତ୍ତିକ ବାକ୍ୟଗୁଡିକର ସତ୍ୟାସତ୍ୟ ଏହିଭାବେ ନିରୂପଣ କରାଯାଏ ।

"ସମସ୍ତ କାଉ କଳା"-ଏହି ବାକ୍ୟଟି ମଣିଷର ବହୁ ଅନୁଭୂତିକୁ ଏକାଠି ବାନ୍ଧି ଏକ ସାର୍ବିକ ବା ସାଧାରଣ ବାକ୍ୟରେ ପ୍ରକାଶିତ । ସତ୍ୟାସତ୍ୟ ଜାଣିବା ପାଇଁ ଗୋଟିଏ ଦୁଇଟି କାଉର ରଙ୍ଗକୁ ଦେଖି ଏହି ସାର୍ବିକ ବାକ୍ୟଟିର ସତ୍ୟାସତ୍ୟ ଜାଣି ପାରିବାନାହିଁ । ସତ୍ୟାସତ୍ୟ ଜାଣିବା ପାଇଁ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ସମସ୍ତ କାଉକୁ ଏକାଠି ମଧ୍ୟ କରି ପାରିବାନାହିଁ । ଅଥଚ ମଣିଷ ଅତୀତରେ କେବେ ଅନ୍ୟ ରଙ୍ଗର କାଉ ଦେଖିଥିବା କଥା କେଉଁଠି ବି ବର୍ଣ୍ଣିତ ହୋଇନାହିଁ । ଯେଉଁଠି ବି କାଉର ରଙ୍ଗ ବିଷୟରେ ବର୍ଣ୍ଣନା ରହିଛି, ତାର ରଙ୍ଗ କଳା ବୋଲି ବର୍ଣ୍ଣିତ ହୋଇଛି । ବର୍ତ୍ତମାନର ମଣିଷ ମଧ୍ୟ ଅନ୍ୟ ରଙ୍ଗର କାଉ ଦେଖୁନାହିଁ । ବର୍ତ୍ତମାନ ପର୍ଯ୍ୟନ୍ତ ଏହି ବିରୋଧୀ ଅନୁଭୂତିର ଅଭାବ ଓ ମଣିଷ ଭବିଷ୍ୟତରେ ଅନ୍ୟ ରଙ୍ଗର କାଉ ହୁଏତ ଦେଖିବନି ଏହି ଆଶା ନେଇ ଏହି ସାର୍ବିକ ବା ସାଧାରଣ ବାକ୍ୟଟିକୁ ସତ୍ୟ ବୋଲି ଗ୍ରହଣ କରାଯାଇଥାଏ । ତଥାପି ଏହାର ବିରୋଧୀ ଅନୁଭୂତି, ଅର୍ଥାତ୍ ଅନ୍ୟ ରଙ୍ଗର

ଏକ କାଉ, ଯେଉଁ ଦିନ ମଣିଷ ଦେଖିବ ସେହି ଦିନ ଏକ ସାର୍ବିକ ବାକ୍ୟଟି ମିଥ୍ୟା ପ୍ରମାଣିତ ହେବ । "ସମସ୍ତ ହଂସ ଧଳା"-ଅତୀତରେ ବିରୋଧୀ ଅନୁଭୂତିର ଅଭାବରୁ ଏହି ସାର୍ବିକ ବା ସାଧାରଣ ବାକ୍ୟଟିକୁ ସତ୍ୟ ବୋଲି ଗ୍ରହଣ କରାଯାଉଥିଲା । କିନ୍ତୁ ପରବର୍ତ୍ତୀ କାଳରେ ଅଷ୍ଟ୍ରେଲିଆରେ କିଛି ପକ୍ଷୀ ମଣିଷର ନଜରକୁ ଆସିଲା ଯେଉଁମାନଙ୍କ ନିକଟରେ ହଂସର ସମସ୍ତ ସାଂଜ୍ଞିକ ଗୁଣ ଥିଲା ଅଥଚ ସେମାନେ ରଙ୍ଗରେ କଳା । ଏହା ଫଳରେ ସତ୍ୟ ବୋଲି ଧରା ଯାଉଥିବା ବାକ୍ୟ "ସମସ୍ତ ହଂସ ଧଳା" - ମିଥ୍ୟା ପ୍ରମାଣିତ ହେଲା । ବର୍ତ୍ତମାନ କେତେକ ହଂସ ଧଳା ତ ଆଉ କେତେକ ହଂସ କଳା । କେତେକ କ୍ଷେତ୍ରରେ ସକଳ ମାନବଜାତି ନିକଟରେ ବିରୋଧୀ ତଥ୍ୟର ଅଭାବ "ସମସ୍ତ କାଉ କଳା"-ଭଳି ସାର୍ବିକ ବା ସାଧାରଣ ବାକ୍ୟଗୁଡ଼ିକୁ ସତ୍ୟ ବୋଲି ଗ୍ରହଣ କରିବା ପାଇଁ ପ୍ରୋତ୍ସାହନ ଦେଇଥାଏ ।

ଅନ୍ୟ ଏକ ସାର୍ବିକ ବାକ୍ୟ ବିଚାରକୁ ନିଅନ୍ତୁ- "ସମସ୍ତ ମଣିଷ ମରଣଶୀଳ ।" ଏହି ସାର୍ବିକ ବାକ୍ୟଟି "ସମସ୍ତ କାଉ କଳା" ଭଳି ଅନୁଭୂତିଭିତ୍ତିକ । କିନ୍ତୁ ଏହାର ବିରୋଧୀ ତଥ୍ୟ- ଅମର ମଣିଷଟିଏ - ର ଅଭାବ ଯୋଗୁଁ ଏହାକୁ ସତ୍ୟ ବୋଲି ଗ୍ରହଣ କରାଯାଇ ଥାଏ । ଏହାର ସତ୍ୟତା ପ୍ରତିଷ୍ଠା କରିବାର ମାର୍ଗ ସ୍ୱତନ୍ତ୍ର । ଏହାର ସତ୍ୟତା ମଣିଷ ଓ ମରଣ ମଧ୍ୟରେ ଥିବା କାରଣ- କାର୍ଯ୍ୟ ସମ୍ପର୍କ ଉପରେ ପ୍ରତିଷ୍ଠିତ । ଯଦି କେହି ଜଣେ ମଣିଷ ହୋଇଥିବ, ତେବେ ସେ ନିଶ୍ଚୟ ମରିବ, ଏଥିରେ ସନ୍ଦେହ ନାହିଁ । ମଣିଷ ଓ ମରଣଶୀଳତା ମଧ୍ୟରେ ଥିବା କାରଣ-କାର୍ଯ୍ୟ ସମ୍ପର୍କ ଯୋଗୁଁ ତାହା ନିଶ୍ଚିତ । ଏଭଳି ବାକ୍ୟର ସତ୍ୟାସତ୍ୟ କାରଣ-କାର୍ଯ୍ୟ ସମ୍ପର୍କ ଉପରେ ପ୍ରତିଷ୍ଠିତ ।

ପରମାଣୁ ତତ୍ତ୍ୱ କଥା ବିଚାରକୁ ନିଅନ୍ତୁ । ପରମାଣୁଟିଏ କେହି କେବେ ସ୍ୱଚକ୍ଷୁରେ ଅବା ଶକ୍ତିଶାଳୀ ଅଣୁବିକ୍ଷଣ ଯନ୍ତ୍ର ସାହାଯ୍ୟରେ ଦେଖିନାହିଁ । ଅତି ଶକ୍ତିଶାଳୀ କ୍ୟାମେରା ସାହାଯ୍ୟରେ ତାର ଫଟୋ ମଧ୍ୟ ନିଆଯାଇ ପାରିନାହିଁ । କିନ୍ତୁ ପରମାଣୁ ତତ୍ତ୍ୱର ପ୍ରୟୋଗ ଯୋଗୁଁ ଆମେ ଦେଖୁଛେ ପରମାଣୁ ଜାତ ବିଦ୍ୟୁତଶକ୍ତି ଦ୍ୱାରା ଆମର କଳକାରଖାନା ଚାଲିବା ସଙ୍ଗେ ସଙ୍ଗେ ସହର ଓ ଗ୍ରାମାଞ୍ଚଳ ଆଲୋକିତ କରି ମଣିଷ ଜୀବନକୁ ସୁଖମୟ କରୁଛି । ପୁଣି ସେହି ପରମାଣୁ ତତ୍ତ୍ୱର ପ୍ରୟୋଗ ବଳରେ ପରମାଣୁ ବୋମା ତିଆରି ହୋଇ ସମଗ୍ର ମାନବ ସଭ୍ୟତା ତଥା ଜୀବଜଗତକୁ ଧ୍ୱଂସର ଗହ୍ୱର ଆଡକୁ ଠେଲି ନେଉଛି । କୌଣସି ଭାବରେ ହେଲେ ପରମାଣୁଟିଏ ନ ଦେଖିଲେ ମଧ୍ୟ ପରମାଣୁ ତତ୍ତ୍ୱକୁ ସତ୍ୟ ବୋଲି ଆମେ ବିଚାର କରିଥାଉ । ଏଭଳି କ୍ଷେତ୍ରରେ କାର୍ଯ୍ୟକାରିତା ବାକ୍ୟଟିର ସତ୍ୟାସତ୍ୟର ମାପକାଠି ବୋଲି ଧରାଯାଇଥାଏ ।

ଜ୍ଞାନର ବିଭିନ୍ନ କ୍ଷେତ୍ରରେ system building ବା ତନ୍ତ୍ର ଗଠନ କରାଯାଇଥାଏ । ଏହି ଧାରାରେ ଜ୍ୟାମିତିକୁ ଏକ system ବା ତନ୍ତ୍ର କୁହାଯାଇଥାଏ ।

ଗୋଟିଏ ନୂତନ ବାକ୍ୟ ଯଦି ତନ୍ତ୍ର ମଧ୍ୟରେ ଥିବା ଅନ୍ୟ ବାକ୍ୟଗୁଡ଼ିକର ସମର୍ଥନ ପାଇ ଓ ଅନ୍ୟ ବାକ୍ୟ ଗୁଡ଼ିକୁ ସମର୍ଥନ ଯୋଗାଇ ପରସ୍ପରର ପରିପୂରକ ହୋଇ ତନ୍ତ୍ର ମଧ୍ୟରେ ଦ୍ୱନ୍ଦ୍ୱବିହୀନ ସହାବସ୍ଥାନ କରେ, ତେବେ ବାକ୍ୟଟିକୁ ସତ୍ୟ ବୋଲି ଗ୍ରହଣ କରା ଯାଇଥାଏ । ଏହି ଧାରାନୁସାରେ କୌଣସି ଏକ ବାକ୍ୟ ସତ ନା ମିଛ ଜାଣିବା ପାଇଁ ବାକ୍ୟଟି ଏକ ତନ୍ତ୍ର ମଧ୍ୟରେ ଦ୍ୱନ୍ଦ୍ୱବିହୀନ ସହାବସ୍ଥାନ କରିପାରୁଛି କି ନାହିଁ ତାହା ଦେଖିବାକୁ ପଡିଥାଏ । ଏବଂ ସେହି ପ୍ରକ୍ରିୟାରେ ଫଳ ହିଁ ସ୍ଥିର କରେ ଏକ ବାକ୍ୟର ସତ୍ୟାସତ୍ୟ ।

"ଅଯୋଧ୍ୟାର ରାଜା ଦଶରଥଙ୍କର ଜ୍ୟେଷ୍ଠ ପୁତ୍ର ରାମ ସୀତାଙ୍କ ସ୍ୱାମୀ ଅଟନ୍ତି"- ଏହି ବାକ୍ୟର ସତ୍ୟାସତ୍ୟ ଆମକୁ ରାମାୟଣ ଗ୍ରନ୍ଥ ମଧ୍ୟରେ ଖୋଜିବାକୁ ହେବ । ରାମାୟଣ ବାହାରେ ଖୋଜିଲେ ଏହାର ସତ୍ୟାସତ୍ୟ ନିର୍ଦ୍ଧାରଣ କରି ହେବନି । ରାମାୟଣରେ ଯଦି ସେପରି କୌଣସି ବର୍ଣ୍ଣନା ଥିବ ତେବେ ବାକ୍ୟଟି ସତ । ଯଦି ନଥାଏ ବାକ୍ୟଟି ମିଛ ।

ଆଉ କେତେକ ବାକ୍ୟ ସର୍ବଦା ସତ୍ୟ । ତାହା ଦୁଇ ପ୍ରକାରର । ପ୍ରଥମ ପ୍ରକାରର ସତ୍ୟ ତର୍କଶାସ୍ତ୍ର ଓ ଗଣିତଶାସ୍ତ୍ରରେ ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ, 'କ କ ଅଟେ ।' 'କାଉ କଳା ଓ ଅ-କଳା ଉଭୟ ହୋଇ ପାରିବ ନାହିଁ ।' ଏଭଳି ସ୍ୱତଃସିଦ୍ଧ ବାକ୍ୟଗୁଡ଼ିକ ତର୍କଶାସ୍ତ୍ରର ମୂଳଭିତ୍ତି । ଗାଣିତିକ ନିୟମାନୁସାରେ ଏହା ସର୍ବଦା ସତ୍ୟ । ସେପରି ସଂସାରରେ ଯାହା ଘଟୁଥିଲେ ମଧ୍ୟ 'ବର୍ଷା ହେଉଛି ବା ହେଉନି'-ଏହି ବାକ୍ୟଟି ସର୍ବଦା ସତ୍ୟ । $(କ+ଖ)^{୨}=କ^{୨}+ଖ^{୨}+୨କଖ$- ଏକ ସାର୍ବିକ ଗାଣିତିକ ସତ୍ୟ ।

ଅନ୍ୟ ପ୍ରକାରର ସର୍ବଦା ସତ୍ୟ ବୋଲି ବିଚାର କରାଯାଉଥିବା ବାକ୍ୟଗୁଡ଼ିକ ହେଲା ଜ୍ୟୋତିଷଶାସ୍ତ୍ରର ନିୟମାବଳୀ । ଜ୍ୟୋତିଷଶାସ୍ତ୍ରକୁ ଆଜିକାଲି ଅନେକ ଏକ ବିଜ୍ଞାନ ବୋଲି ମାନୁଛନ୍ତି । ବିଜ୍ଞାନର ନିୟମାବଳୀ ଭଳି ଏହାର ନିୟମାବଳୀ ଅଲଘଂନୀୟ ବୋଲି ଦାବି କରୁଛନ୍ତି । ସେଗୁଡ଼ିକ ସଂଶୟର ବାହାରେ ବୋଲି ବିଚାରୁଛନ୍ତି । ବିଜ୍ଞାନର ଯେ କୌଣସି ଏକ ନିୟମକୁ ଯଦି ଆମେ ବିଚାରକୁ ନେବା ତେବେ କେଉଁ କେଉଁ ଅବସ୍ଥାରେ ତାହା ମିଛ ପ୍ରମାଣିତ ହୋଇ ପାରିବ ତାର ସୂଚନା ଥାଏ ଅବା ବୈଜ୍ଞାନିକମାନେ ତାକୁ ମିଛ ପ୍ରମାଣିତ କରିବାର ଯେଉଁ ଧାରା ତାକୁ ଜାଣି ଥାଆନ୍ତି । ଜ୍ୟୋତିଷଶାସ୍ତ୍ରର ନିୟମ କ୍ଷେତ୍ରରେ କିନ୍ତୁ ସେପରି କିଛି ବ୍ୟବସ୍ଥା ନଥାଏ । ଗଣନା ଅନୁସାରେ ଫଳ ନ ଫଳିଲେ ତାହା ଭୁଲ ଭାବଚକ୍ର ଯୋଗୁଁ ବା ଅନ୍ୟ କାରଣରୁ ହୋଇଥାଇପାରେ ବୋଲି ଧରା ଯାଇଥାଏ । ଜ୍ୟୋତିଷଶାସ୍ତ୍ରର ନିୟମ ନିର୍ଭୁଲ ବୋଲି ଗ୍ରହଣ କରାଯାଇଥାଏ । ଧରାଯାଉ ଜ୍ୟୋତିଷଶାସ୍ତ୍ରରେ ଏପରି ଏକ ନିୟମ ରହିଛି ଯେ ଜଣେ କନ୍ୟାର ଭାବଚକ୍ର ସପ୍ତମରେ ମଙ୍ଗଳ ରହିଲେ ସେ ବାଲ୍ୟ ବିଧବା ହେବ । ଜଣେ ସ୍ତ୍ରୀଲୋକର ଭାବଚକ୍ରରେ ତାହା ରହିଛି, ଅଥଚ ବୃଦ୍ଧା ବୟସ ପର୍ଯ୍ୟନ୍ତ ସେ ସଧବା ରହିଛି । ସେପରି କ୍ଷେତ୍ରରେ ନିୟମଟି ଭୁଲ ପ୍ରମାଣିତ ହେବା କଥା । କିନ୍ତୁ ତା ହେବ

ନାହିଁ ସ୍ତ୍ରୀଲୋକଟିର ଭାବଚକ୍ରଟି ଭୁଲ ଅବା ସେ ବାଲ୍ୟକାଳରେ ମନେ ମନେ ପତି ରୂପେ ବରଣ କରିଥିବା ବ୍ୟକ୍ତିର ମୃତ୍ୟୁ ହୋଇଥିବା ବା ଅନ୍ୟ କିଛି । ଅଥଚ ନିୟମଟି ନିର୍ଭୁଲ । ପୁଣି ଆଜିକାଲି ବାଲ୍ୟ ବିବାହ ଆଇନାନୁଯାୟୀ ମନା । ବାଲ୍ୟ ବିବାହ ନାହିଁ ତ ବାଲ୍ୟ ବିଧବା ହେବା ପ୍ରଶ୍ନ ଉଠୁନାହିଁ । ସେପରି ସ୍ଥଳେ ଜ୍ୟୋତିଷଶାସ୍ତ୍ରର ଏହି ନିୟମର ସ୍ଥିତି କଅଣ ?

ସତ୍ୟ ଏକ ନୁହେଁ, ସତ୍ୟ ବିଭିନ୍ନ ପ୍ରକାରର ଓ ସେଗୁଡ଼ିକର ସତ୍ୟାସତ୍ୟ ନିର୍ଦ୍ଧାରଣ ଧାରା ମଧ୍ୟ ଭିନ୍ନ ଭିନ୍ନ ବୋଲି ଆମେ କହିଲେ ଏବଂ ତହିଁ ମଧ୍ୟରୁ କେତୋଟିର ଉଦାହରଣ ଊର୍ଦ୍ଧ୍ୱରେ ବିଚାର କଲେ । ଆମେ ବର୍ତ୍ତମାନ ଧାର୍ମିକ ସତ୍ୟ କଥା ବିଚାର କରିବା ।

ପୃଥିବୀ ପୃଷ୍ଠରେ ବହୁ ପ୍ରକାରର ଧର୍ମ ରହିଛି । କାହାର ଅନୁଗାମୀ ସଂଖ୍ୟା ସ୍ୱଳ୍ପ ତ କାହାର ଅସଂଖ୍ୟ । କେଉଁଟା ସ୍ଥାନୀୟ ତ କେଉଁଟା ବିଶ୍ୱବ୍ୟାପୀ । କିନ୍ତୁ ସମସ୍ତ ଧର୍ମରେ ସତ୍ୟାସତ୍ୟ ନିର୍ଦ୍ଧାରଣର ମୂଳ ଭିତ୍ତି ହେଲା ବିଶ୍ୱାସ । 'ସତ୍ୟାସତ୍ୟ ନିର୍ଦ୍ଧାରଣ' ବୋଲି କହିଲେ ମଧ୍ୟ ଭୁଲ ହେବ । କାରଣ ବିଶ୍ୱାସେ ଲଭଇ କୃଷ୍ଣ, ତର୍କେ ବହୁଦୂର । ଯାହା ବି ଯୁକ୍ତିତର୍କ ହୁଏ ବିଶ୍ୱାସ କରାଯାଉଥିବା ତତ୍ତ୍ୱକୁ ଭିତ୍ତି କରି ଏବଂ ସେହି ବିଶ୍ୱାସକୁ ଦୃଢ଼ କରିବା ଉଦ୍ଦେଶ୍ୟ ନେଇ । ବିଶ୍ୱାସ ଭିତ୍ତିରେ ଧର୍ମ ମଣିଷର ସମ୍ପୂର୍ଣ୍ଣ ଆତ୍ମସମର୍ପଣ ଦାବି କରିଥାଏ । ଧର୍ମୀୟ ବାକ୍ୟଗୁଡ଼ିକର ସତ୍ୟାସତ୍ୟ ନର୍ଭର କରେ ଆପଣଙ୍କ ବିଶ୍ୱାସ ଉପରେ । ଆପଣ ବିଶ୍ୱାସ କଲେ ସତ, ନକଲେ ମିଛ ।

ଆପଣ ଯଦି ଜଣେ ହିନ୍ଦୁ, ତେବେ ଆପଣଙ୍କ ଧର୍ମଗ୍ରନ୍ଥ ଗୁଡ଼ିକରେ ଯେଉଁ ସମସ୍ତ କଥା କୁହାଯାଇଛି ସେଗୁଡ଼ିକ ସବୁ ଆପଣଙ୍କ ପାଇଁ ସତ । ସେଗୁଡ଼ିକରେ ଉଲ୍ଲେଖ କରାଯାଇଥିବା ଦେବଦେବୀ ମଧ୍ୟ ଆପଣଙ୍କ ପାଇଁ ବାସ୍ତବ । ବେଳେ ବେଳେ ସେମାନଙ୍କର ତଥା ଧର୍ମର ସୁରକ୍ଷା ପାଇଁ ଆପଣ ଜୀବନ ଦେବା ପାଇଁ ପ୍ରସ୍ତୁତ । ଜୀବନ ନେବା ପାଇଁ ମଧ୍ୟ ପ୍ରସ୍ତୁତ । ଅନ୍ୟାନ୍ୟ ଧର୍ମର ଧର୍ମଗ୍ରନ୍ଥ ଗୁଡ଼ିକ ଆପଣଙ୍କ ପାଇଁ କିଛି ମାନେ ରଖେନାହିଁ । ସେଗୁଡ଼ିକର ଦେବାଦେବୀ ଆପଣଙ୍କ ପାଇଁ ଅବାସ୍ତବ ।

ସେପରି ଅନ୍ୟାନ୍ୟ ଧର୍ମର ଅନୁଗାମୀମାନେ ନିଜ ନିଜର ଧର୍ମବିଶ୍ୱାସ ଭିତରେ ବୁଡ଼ି ରହିଛନ୍ତି । ଆପଣଙ୍କ ଧର୍ମର ଧର୍ମଗ୍ରନ୍ଥଗୁଡ଼ିକ ସେମାନଙ୍କ ପାଇଁ କିଛି ମାନେ ରଖନା । ଆପଣଙ୍କର ଦେବାଦେବୀ ସେମାନଙ୍କ ପାଇଁ ଅବାସ୍ତବ । ବେଳେ ବେଳେ ଆପଣଙ୍କ ଭଳି ଧର୍ମର ସୁରକ୍ଷା ପାଇଁ ସେମାନେ ମଧ୍ୟ ଜୀବନ ଦେବା ପାଇଁ ପ୍ରସ୍ତୁତ । ଜୀବନ ନେବା ପାଇଁ ମଧ୍ୟ ପ୍ରସ୍ତୁତ । ଆପଣଙ୍କର ଧର୍ମୀୟ ବ୍ୟବହାର ଯେପରି ସେମାନଙ୍କର ଧର୍ମୀୟ ବ୍ୟବହାର ମଧ୍ୟ ଠିକ୍ ସେପରି ।

ଧର୍ମ ପରିବର୍ତ୍ତନ କଲେ ଘଟେ କଅଣ ? ଜଣେ ମଣିଷ ଗୋଟିଏ ଧାରଣାଜାଲକୁ ପରିତ୍ୟାଗ କରି ଅନ୍ୟ ଏକ ଧାରଣାଜାଲକୁ ଆବୋରି ନେଇଥାଏ । ଆପଣ ଯଦି ଜଣେ ହିନ୍ଦୁ

ତାହାହେଲେ ଆପଣ ହିନ୍ଦୁ ଧର୍ମୀୟ ଧାରଣା ଜାଲକୁ ଆଦରି ନେଇଛନ୍ତି । ଯାହାରି ବଳରେ ହିନ୍ଦୁ ଦେବଦେବୀ, ଇତ୍ୟାଦି ଆପଣଙ୍କୁ ବାସ୍ତବ ପ୍ରତୀୟମାନ ହେଉଛି । କାଲି ଯଦି ଆପଣ ଧର୍ମ ପରିବର୍ତ୍ତନ କରିବେ, ଧରନ୍ତୁ, ଖ୍ରୀଷ୍ଟ ଧର୍ମ ଗ୍ରହଣ କରିବେ, ତେବେ ଆପଣଙ୍କ ମନରୁ ହିନ୍ଦୁ ଧର୍ମୀୟ ଧାରଣାଜାଲକୁ କାଢ଼ି ଦେଇ ତା ସ୍ଥାନରେ ଥୋଇବେ ଖ୍ରୀଷ୍ଟ ଧର୍ମୀୟ ଧାରଣାଜାଲକୁ । ଫଳରେ ଆଜି ପର୍ଯ୍ୟନ୍ତ ସତ ବୋଲି ମାନୁଥିବା ହିନ୍ଦୁ ଧର୍ମୀୟ ଜଗତ ଆପଣଙ୍କ ପାଇଁ ମିଛ ହୋଇଯିବ ଏବଂ ଯେଉଁ ଖ୍ରୀଷ୍ଟଧର୍ମୀୟ ଜଗତ ଆଜିପର୍ଯ୍ୟନ୍ତ ଆପଣଙ୍କ ପାଇଁ ମିଛ ଥିଲା, ସତ ହୋଇଯିବ । ଆଜି ପର୍ଯ୍ୟନ୍ତ ହନ୍ଦୁ ଧର୍ମ ପାଇଁ ଜୀବନ ଦେବା ତଥା ନେବା ପାଇଁ ପ୍ରସ୍ତୁତ ଥିଲେ । କାଲିଠୁଁ ଖ୍ରୀଷ୍ଟ ଧର୍ମ ପାଇଁ ଜୀବନ ଦେବା ତଥା ନେବା ପାଇଁ ପ୍ରସ୍ତୁତ ରହିବେ । ଅଥଚ ସଂସାରଟା ଯେମିତି ଥିଲା ସେମିତି ରହିବ । ହିନ୍ଦୁ ଧର୍ମରେ ଥିଲା ବେଳେ ଫୁଟିଲା ପାଣିରେ ହାତ ପୁରେଇଲେ ହାତ ପୋଡି ଯାଉଥିଲା, ଅଥଚ ଖ୍ରୀଷ୍ଟୀୟ ଧର୍ମ ଗ୍ରହଣ କରିବା ପରେ ଆଉ ହାତ ପୋଡିବନି, ଅବା ହିନ୍ଦୁ ଧର୍ମରେ ଥିଲା ବେଳେ ମାଡ଼ କାଟୁଥିଲା, ଅଥଚ ଖ୍ରୀଷ୍ଟ ଧର୍ମ ଗ୍ରହଣ କରିବା ପରେ ଆଉ ମାଡ ନକାଟି ଫୁଲ ପଡିଲା ଭଳି ଲାଗିବ- ଏପରି କିଛି ନୁହେଁ । ଧର୍ମ ପରିବର୍ତ୍ତନ କରି ଅନ୍ୟ ଧର୍ମ ଛାଡି ହିନ୍ଦୁ ଧର୍ମକୁ ଆଶ୍ରୟ କଲେ ମଧ୍ୟ ଏହି ଧର୍ମ ପରିବର୍ତ୍ତନ ଯୋଗୁଁ ବାସ୍ତବ ସଂସାରରେ କୌଣସି ପ୍ରକାର ପରିବର୍ତ୍ତନ ଘଟିବ ନାହିଁ ।

ଆଦିବାସୀ ଜୀବନ ସରଳ । ଆଦିବାସୀ ବାପୁଡା ସରଳ । ସେମାନଙ୍କର ନିଜସ୍ୱ ଦେବଦେବୀ ଅଛନ୍ତି । ସେମାନଙ୍କୁ ସେମାନେ ପ୍ରତ୍ୟକ୍ଷ ବୋଲି ମାନନ୍ତି । ହଜାର ହଜାର ବର୍ଷ ଧରି ସେମାନଙ୍କ ପୀଠରେ କୁକୁଡା, ଛେଳିମେଣ୍ଢାଙ୍କଠୁଁ ଆରମ୍ଭ କରି ମଣିଷମାନଙ୍କୁ ମଧ୍ୟ ବଳି ଦେଇଛନ୍ତି ବୋଲି କୁହାଯାଏ । ଆଜି ଯଦି ସେହି ଆଦିବାସୀ ଅନ୍ୟ କୌଣସି ଧର୍ମରେ ଦୀକ୍ଷିତ ହୋଇଗଲା, ତେବେ ସେହି ପ୍ରତ୍ୟକ୍ଷ ଦେବଦେବୀ ଆଦିବାସୀଟି ସେମାନଙ୍କ ପୀଠ ଦେଇ ଗାଁରୁ ଗଲାବେଳେ ବା ଗାଁକୁ ଫେରିଲା ବେଳେ ତାର ବାଟ ଓଗାଳି " ହଜାର ହଜାର ବର୍ଷ ଧରି ତୋର ପୂର୍ବପୁରୁଷମାନେ ଆମକୁ ପୂଜାକରି ଆସୁଥିଲେ, ତୁ କଅଣ ଆମକୁ ପୂଜା ନ କରି ବେଖାତିର କରି ବାଟ କାଟି ଚାଲି ଯାଉଛୁ, ଅନ୍ୟ ଦେବତାଙ୍କୁ ପୂଜା କରୁଛୁ" - ବୋଲି ତାକୁ ତ ପଚାରୁ ନାହାନ୍ତି । ତେବେ କିଏ କେଉଁ ଧର୍ମ ପରିବର୍ତ୍ତନ କଲା ଅବା ନିଜର ଧର୍ମରେ ରହିଲା ସେହି କଥା ନେଇ ଦେବଦେବୀମାନେ ବ୍ୟସ୍ତ ନୁହଁନ୍ତି ତ ? ନା ଆଉ କଣ ?

ଧର୍ମ ପରିବର୍ତ୍ତନ ମଣିଷ କରେ କାହିଁକି ? ମଣିଷର ଧର୍ମ ପରିବର୍ତ୍ତନର ଅନ୍ତରାଳରେ ବିଭିନ୍ନ କାରଣ ରହିଛି । ସେହି ସମସ୍ତ କାରଣର ଆଲୋଚନା ଆମ୍ଭେମାନେ ଏଠାରେ କରି ପାରିବାନାହିଁ । କେବଳ କେତୋଟିର ଆଲୋଚନା କରିବା ।

ଆପଣ ଓଡିଶାରେ, ଓଡିଆ ପରିବାରରେ ଜନ୍ମ ହେଲେ ବୋଲି ଆପେ ଆପେ, ଆପଣଙ୍କର ଅଜଣାରେ ଓଡିଆ ଭାଷାଟା ଆପଣଙ୍କ ଭାଷା, ମାତୃଭାଷା, ହୋଇଗଲା । କେବଳ ପରେ ଭାଷାଟି ସମ୍ପର୍କରେ ସଚେତନ ହେବା ପରେ, ତାର ବ୍ୟାକରଣ ଜାଣିଲେ ତାରି ସମ୍ପର୍କରେ

ଆଲୋଚନା କଲେ । ଠିକ୍ ସେପରି ଆପଣ ହିନ୍ଦୁ ପରିବାରରେ ଜନ୍ମ ହୋଇ ପରିବାରର ହିନ୍ଦୁ ପରିବେଶରେ ବଢ଼ିଲେ ବୋଲି ହିନ୍ଦୁ ଧର୍ମଟି ଆପଣଙ୍କର ହୋଇଗଲା । ପିଲାଦିନୁ ପ୍ରସାଦ, ପିଠାପଣା, ନୂଆ ଜାମାପଟା, ଆନନ୍ଦଉତ୍ସବର ମହାସ୍ରୋତରେ ଆପଣ ଭାସି ଚାଲିଲେ । ପିଲାଦିନେ ଅମାନିଆ ହୋଇ ମନ୍ଦିରରେ ଦେବଦେବୀଙ୍କୁ ଜୁହାର କରି ନଥିଲେ ତ ପିତାମାତାଙ୍କ କାନମୋଡା ଅଥବା ତରାଟ ଚାହାଣୀ ଆପଣଙ୍କୁ ଧର୍ମପଥରେ ରଖିଥିବ । ଆପଣଙ୍କର ପିଲାଦିନର ଏହି ଅମାନିଆଭାବ ଧର୍ମ ବିରୁଦ୍ଧରେ ଆପଣଙ୍କ ପ୍ରତିବାଦ ଯୋଗୁଁ ନଥିଲା, ଥିଲା ଆପଣଙ୍କ ଶିଶୁସୁଲଭ ସରଳତା ଯୋଗୁଁ । କିନ୍ତୁ ପରେ ଜୀବନର କୌଣସି ବାସ୍ତବତା ଆପଣଙ୍କୁ ଧର୍ମର ବିଭିନ୍ନ ଦିଗ ସମ୍ପର୍କରେ ବିଭିନ୍ନ ପ୍ରଶ୍ନ ପଚାରିବା ପାଇଁ ବାଧ କରିପାରେ । ଯେପରି ପ୍ରାଚୀନ କାଳରେ ବୁଦ୍ଧଙ୍କୁ ବାଧକରିଥିଲା, ମହାବୀର, ଯୀଶୁ ଖ୍ରୀଷ୍ଟ, ମହମ୍ମଦଙ୍କୁ ବାଧ କରିଥିଲା । ଏପରିକି ଚାର୍ବାକପନ୍ଥୀ ବସ୍ତୁବାଦୀମାନଙ୍କର ଉଦ୍ଦେଶ୍ୟ ଧର୍ମର ଖଣ୍ଡନ ହେଲେ ସୁଦ୍ଧା ସେମାନେ ଧର୍ମ ସମ୍ପର୍କିତ ଚିନ୍ତାରୁ ବାଦ୍ ପଡି ନଥିଲେ । ଆଧୁନିକ ଯୁଗରେ ମଧ୍ୟ ବହୁ ମହାମନୀଷୀଙ୍କ ମନ ଧର୍ମ ସମ୍ପର୍କିତ ବିଭିନ୍ନ ପ୍ରଶ୍ନନେଇ ଆନ୍ଦୋଳିତ ହୋଇଥିଲା । କେହି ଧର୍ମର ଗଣ୍ଡି ମଧ୍ୟରେ ସଂସ୍କାର ଆଣିଲେ ତ କେହି ଏକ ନୂତନ ଧର୍ମର ବାଣୀ ପ୍ରଚାର କଲେ ଅବା କାହାର ଅନୁଗତମାନେ ତାଙ୍କୁ ଓ ତାଙ୍କ ବାଣୀକୁ ପୀଠରେ ଥୋଇ ଏକ ନୂତନ ଧର୍ମର ସୂତ୍ରପାତ କଲେ । କେହି କେହି ଧର୍ମର ଗଣ୍ଡି ବାହାରକୁ ମଧ୍ୟ ଗଲେ, ବସ୍ତୁବାଦୀ ନାସ୍ତିକ ବୋଲି ପରିଚିତ ହେଲେ । ଏହି ସମସ୍ତ କ୍ଷେତ୍ରରେ ଯାହାସବୁ ଘଟିଲା ତାହା ମାନସିକ ସ୍ତରରେ ସଚେତନ ମନରେ ଘଟିଲା । ଆଜି ମଧ୍ୟ ବାସ୍ତବ ପରିସ୍ଥିତିର ଚାପରେ ଆମ ମନରେ ସେହି ଭଳି ପ୍ରଶ୍ନ ଜାଗ୍ରତ ହୋଇପାରେ । ସେହି ପରିପ୍ରେକ୍ଷୀରେ ଆମ ନିଜ ଧର୍ମ ଓ ଅନ୍ୟାନ୍ୟ ଧର୍ମର ମୌଳିକ ତତ୍ତ୍ୱଗୁଡିକର ତୁଳନାତ୍ମକ ବିଚାର କରିପାରୁ । ଆବଶ୍ୟକତା ଅନୁଭବ କଲେ ନିଜର ଧର୍ମ ମଧ୍ୟ ପରିବର୍ତ୍ତନ କରିପାରୁ । ଏପରି ତାତ୍ତ୍ୱିକ ବିଚାରଭିତ୍ତିକ ସଚେତନ ଧର୍ମ ପରିବର୍ତ୍ତନ ପାଇଁ ଆମର ସମ୍ବିଧାନ ମଧ୍ୟ ଅନୁମତି ଦିଏ ।

କେବଳ ତାତ୍ତ୍ୱିକ ବିଚାର ଭିତ୍ତିରେ ଯଦି ଧର୍ମ ପରିବର୍ତ୍ତନ ହେଉଥାନ୍ତା, ତେବେ ଯେଉଁମାନେ ଶିକ୍ଷିତ ଅବା ଧର୍ମୀୟ ତତ୍ତ୍ୱଜ୍ଞାନ ବୁଝିବା, ତୁଳନାତ୍ମକ ବିଚାର କରିବାପାଇଁ ସକ୍ଷମ ସେମାନଙ୍କ ମଧ୍ୟରେ ଧର୍ମ ପରିବର୍ତ୍ତନ ବହୁଳାଂଶରେ ଦୃଷ୍ଟିଗୋଚର ହୁଅନ୍ତା । କିନ୍ତୁ ତାହା ଘଟୁନାହିଁ । ଯେଉଁମାନଙ୍କ କ୍ଷେତ୍ରରେ ଧର୍ମ ପରିବର୍ତ୍ତନ ବହୁଳାଂଶରେ ପରିଲକ୍ଷିତ ହେଉଛି, ସେମାନେ ଶିକ୍ଷିତ ଗୋଷ୍ଠୀରେ ଯିବେନାହିଁ, ଧର୍ମଗୁଡିକର ଗୂଢ଼ ତତ୍ତ୍ୱଜ୍ଞାନ ବୁଝିବାର ତଥା ସେଗୁଡିକର ତୁଳନାତ୍ମକ ବିଚାର କରିବାର କ୍ଷମତା ସେମାନଙ୍କର ରହିଛି ବୋଲି ଧରାଯିବନାହିଁ । ସେମାନେ ଆଦିବାସୀ ହୁଅନ୍ତୁ, ଅନୁସୂଚିତ ଜାତିର ହୁଅନ୍ତୁ ଅବା ପଛୁଆ ବର୍ଗର ହୁଅନ୍ତୁ, ସେମାନେ ସମସ୍ତେ ଦଳିତ, ପତିତ, ଶୋଷିତ ।

ଉଚ୍ଚ ଜାତିର, ଧନିକ ଶ୍ରେଣୀର ଲୋକମାନେ ଆହୁରି ଧନ, ଆହୁରି ସୁଖର ସନ୍ଧାନରେ, କୌଣସି ମନସ୍କାମନା ପୂର୍ଣ୍ଣର ଆଶାରେ ଗୋଟିଏ ବାବାଙ୍କୁ ଛାଡି ଆଉ ଗୋଟିଏ ବାବାଙ୍କ ପଛରେ ଦଉଡିଲା ଭଳି ଏମାନେ ନିଜ ଦୁଃସ୍ଥ ସ୍ଥିତିର ସାମାନ୍ୟତମ ଉନ୍ନତି ଆଶାରେ ଗୋଟିଏ ଧର୍ମଛାଡି ଅନ୍ୟ ଧର୍ମର ଆଶ୍ରୟ ନିଅନ୍ତି । ରାଜ୍ୟର ସୀମା ଏପଟେ ଗୋଟିଏ ଧର୍ମର ଅନୁଗାମୀ ଭାବେ ପରିଚିତ ହୁଅନ୍ତି ତ ସୀମା ସେପଟେ ଅନ୍ୟ ଏକ ଧର୍ମର ଅନୁଗାମୀ ଭାବେ ସେମାନଙ୍କର ପରିଚୟ ମିଳେ । ସୀମାର ଉଭୟ ପଟେ ସେମାନେ କିପରି ଲାଭବାନ ହୋଇଥାନ୍ତି ତାହା ସମୟାନ୍ତରରେ ଖବରକାଗଜରେ ବାହାରୁଛି । ତାହା ପଢ଼ି ମନେହୁଏ ସେମାନଙ୍କ କ୍ଷେତ୍ରରେ ଧର୍ମ ପରିବର୍ତ୍ତନ ଆଉ ଏକ ମାନସିକ ଆବଶ୍ୟକତା ହୋଇ ରହିନି-ଭୋକିଲା ପେଟର ସୁଯୋଗରେ ତାହା ଅନ୍ୟମାନଙ୍କ ପାଇଁ ରାଜନୀତିର ଏକ ଖେଳ ହୋଇ ସାରିଲାଣି ।

ହିନ୍ଦୁ ସମାଜରେ ଜାତିପ୍ରଥା ଏକ ସାମାଜିକ କଳଙ୍କ । ହିନ୍ଦୁ ସମାଜର ସାମାଜିକ ଶିଡିର ତଳ ପାହାଚରେ ଯେଉଁମାନେ ବସିଛନ୍ତି, ସେମାନଙ୍କୁ ନାନା ଅତ୍ୟାଚାର, ଅପମାନର ସାମନା କରିବାକୁ ପଡିଥାଏ । ସେଥିରୁ ରକ୍ଷା ପାଇବା ପାଇଁ - ଅନ୍ୟ ମଣିଷଙ୍କ ସହ ସମାନ ମର୍ଯ୍ୟାଦା ପାଇଁ - କିଛି ଲୋକ ଧର୍ମ ପରିବର୍ତ୍ତନ କରନ୍ତି ବୋଲି କୁହାଯାଏ । ସୁଫଳ କିଛି ମିଳେନା । କାରଣ ଏହି କଳଙ୍କ ଅନ୍ୟଧର୍ମକୁ ମଧ୍ୟ କଳଙ୍କିତ କରିଛି । ଭାରତରେ ଖ୍ରୀଷ୍ଟଧର୍ମ, ଇଶ୍ଲାମଧର୍ମ, ଏପରିକି ବୌଦ୍ଧଧର୍ମ ମଧ୍ୟ ଏହି କଳଙ୍କରୁ ମୁକ୍ତ ନୁହେଁ । ହିନ୍ଦୁ ଜାତିପ୍ରଥାର ନିରୋଳା ଛାପ ସେହି ଧର୍ମଗୁଡିକରେ ଦେଖିବାକୁ ମିଳେ । ମଣିଷ ଧର୍ମ ବଦଳାଏ କିନ୍ତୁ ତାର ଜାତି ବଦଳେନା । ସଂରକ୍ଷଣ ବ୍ୟବସ୍ଥାରେ ସେମାନଙ୍କ ଭାଗ ପାଇଁ ଦାବି ତାହାର ଜ୍ୱଳନ୍ତ ଉଦାହରଣ । ଧର୍ମ ପରିବର୍ତ୍ତନ ପରେ ସାଧାରଣ ମଣିଷଟିର କୌଣସି ଆଖିଦୃଷ୍ଟିଆ ପରିବର୍ତ୍ତନ ହୁଏନା ।

ତଥାପି ଦେଶରେ ଧର୍ମ ପରିବର୍ତ୍ତନ ପ୍ରକ୍ରିୟା ଚାଲିଛି । କେହି ନିଜ ଧର୍ମର ଅନୁଗତମାନଙ୍କ ସଂଖ୍ୟା ବୃଦ୍ଧି କରିବା ଉଦ୍ଦେଶ୍ୟରେ ଧର୍ମ ପରିବର୍ତ୍ତନ ପାଇଁ ଅନ୍ୟ ଧର୍ମର ଲୋକଙ୍କୁ ପ୍ରୋତ୍ସାହିତ କରୁଛି ତ କେହି ରାଜନୈତିକ ରାଜରାସ୍ତାର ମାଇଲଖୁଣ୍ଟଗୁଡିକୁ ଅତିକ୍ରମ କରିବା ଉଦ୍ଦେଶ୍ୟରେ ଅଧିକ ପ୍ରୋତ୍ସାହନ ଦେଇ ପାଲଟା ଧର୍ମାନ୍ତର କରାଉଛି । ଆଜି ଗୋଟିଏ ଜାତିର କିଛି ଲୋକ ହିନ୍ଦୁ ଧର୍ମ ତ୍ୟାଗ କରି ଅନ୍ୟ କୌଣସି ଧର୍ମ ଗ୍ରହଣ କଲେ । କାଲି ସେମାନଙ୍କୁ ପାଲଟା ଧର୍ମାନ୍ତର କରି ପୁଣି ସେହି ଜାତିରେ ଥୋଇ ଦେବାଟା ଅତି ସହଜ । କିନ୍ତୁ ଯେଉଁ ପରିବାରର ଲୋକେ ଶହ ଶହ ବର୍ଷ ଧରି ଅନ୍ୟ ଧର୍ମରେ ରହିଛନ୍ତି, ସେହିପରି ଲୋକଙ୍କୁ ହିନ୍ଦୁ ଧର୍ମର ପରିସର ମଧ୍ୟକୁ ଆଣିଲେ କେଉଁ ଜାତିରେ ଥୋଇବ ତାହା ହିନ୍ଦୁ ସମାଜର ଏକ ବଡ଼ ସମସ୍ୟା ।

୧୮୬୭ ମସିହାରେ ପ୍ରକାଶିତ ଗ୍ରନ୍ଥ, ପୁଞ୍ଜି (Capital) ର ପ୍ରଥମ ଖଣ୍ଡରେ "କାମ-ଦିନ" ସମ୍ପର୍କରେ ଲିଖିତ ଅଧ୍ୟାୟରେ ଯୁକ୍ତରାଷ୍ଟ୍ର ଆମେରିକାର ନ୍ୟାସନାଲ୍ ଲେବର ୟୁନିୟନ୍ ଦ୍ୱାରା ଆଠ-ଘଣ୍ଟିଆ କାମଦିନ ପାଇଁ ସେହି ସମୟରେ ଆରମ୍ଭ ହୋଇଥିବା ଆନ୍ଦୋଳନ ପ୍ରତି ମାର୍କ୍ସ ଦୃଷ୍ଟି ଆକର୍ଷଣ କରିଛନ୍ତି । ବହିଟିର ଏହି ଅଂଶଟି ଅତି ବିଖ୍ୟାତ କାରଣ ଏହି ଅଂଶଟିରେ କଳା (ନିଗ୍ରୋ) ଓ ଗୋରା ଶ୍ରମିକମାନଙ୍କର ଶ୍ରେଣୀସ୍ୱାର୍ଥର ଐକ୍ୟ ସମ୍ପର୍କରେ ମାର୍କ୍ସ ହୃଦୟସ୍ପର୍ଶୀ ଅବତାରଣା କରି ଲେଖିଛନ୍ତି :

"ଯେତେଦିନ ପର୍ଯ୍ୟନ୍ତ ଦାସପ୍ରଥା ପ୍ରଜାତନ୍ତ୍ରର ଏକ ଭାଗକୁ ବିରୂପ କରୁଥିଲା ସେତେଦିନ ପର୍ଯ୍ୟନ୍ତ ଯୁକ୍ତରାଷ୍ଟ୍ର ଆମେରିକାରେ ଯେକୌଣସି ଧରଣର ହେଉ ନା କାହିଁକି ସ୍ୱାଧୀନ ଶ୍ରମିକ ଆନ୍ଦୋଳନ ପଙ୍ଗୁ ହୋଇ ଯାଉଥିଲା । ଗୋରା ଚମଡାର ଶ୍ରମିକମାନେ କେବେହେଁ ନିଜକୁ ମୁକ୍ତକରି ପାରିବେନି ଯେତେଦିନ ପର୍ଯ୍ୟନ୍ତ କଳା ଚମଡାର ଶ୍ରମିକମାନଙ୍କର ଦେହରେ ଦାସତ୍ୱର ଚିଆଁ ଦିଆଯାଉଥିବ । କିନ୍ତୁ ଦାସପ୍ରଥାର କବର ଭିତରୁ ଏକ ନୂଆ ଶକ୍ତିଶାଳୀ ଜୀବନ ଲମ୍ଫ ମାରି ଉଭା ହେଲା । ଗୃହଯୁଦ୍ଧର ପ୍ରଥମ ଫଳ ହେଲା ଆଠ-ଘଣ୍ଟିଆ କାମ-ଦିନ ପାଇଁ ଆନ୍ଦୋଳନ-ଏପରି ଏକ ଆନ୍ଦୋଳନ ଯାହା ଏକ୍ସପ୍ରେସ ବେଗରେ ଆଟ୍‌ଲାଣ୍ଟିକ୍ ମହାସାଗର ଠାରୁ ପ୍ରଶାନ୍ତ ମହାସାଗର, ନିଉ ଇଂଲଣ୍ଡ ଠାରୁ କ୍ୟାଲିଫର୍ଣ୍ଣିଆ ପର୍ଯ୍ୟନ୍ତ ବ୍ୟାପିଗଲା ।"

ଅତୀତରେ ଯୁକ୍ତରାଷ୍ଟ୍ର ଆମେରିକାରେ ଶ୍ରମିକ ଆନ୍ଦୋଳନକୁ ଦାସପ୍ରଥା ଦୁର୍ବଳ କଲା ଭଳି ଭାରତରେ ଚାଷିମୂଲିଆ, ଗରିବ ମଣିଷର ଆନ୍ଦୋଳନକୁ ଜାତିପ୍ରଥା ଦୁର୍ବଳ କରୁଛି । ତେଣୁ ଜାତିପ୍ରଥା ବିରୁଦ୍ଧରେ ଏକ ବଳିଷ୍ଠ ସାମାଜିକ ଆନ୍ଦୋଳନର ଆବଶ୍ୟକତା ରହିଛି ।

ହଜାର ହଜାର ବର୍ଷ ଧରି ଜାତିପ୍ରଥା ଯେଉଁ ଅର୍ଥନୈତିକ ଭିତ୍ତି ଉପରେ ଠିଆ ହୋଇ ରହିଥିଲା, ସେହି ଅର୍ଥନୈତିକ ଭିତ୍ତି ଅପସରି ଯାଉଛି । ତେଣୁ ଜାତିପ୍ରଥା ଅପସରି ଯିବା ନିଶ୍ଚିତ । ମଣିଷ ମନରେ ଜମାଟ ବାନ୍ଧି ରହିଥିବା ଯୋଗୁଁ ସମୟସାପେକ୍ଷ । କିନ୍ତୁ ଦୁର୍ବଳ କାନ୍ଥଟି ପଡିବାଟା ନିଶ୍ଚିତ । ହେଲେ ତାକୁ ଆମେ ଭାଙ୍ଗି ଦେବା ନା ଆପେ ଆପେ ପଡିବା ପାଇଁ ଛାଡି ଦେବା ? ଏଇଟା ହିଁ ଅସଲ ପ୍ରଶ୍ନ । ଆପେ ଆପେ ପଡିବା ପାଇଁ ଛାଡି ଦେଲେ ମଝି ସ୍ରୋତରେ କେତେ ଯେ ଲୋକ ଉବୁଟୁବୁ ହୋଇ ମରିବେ ତାର ଠିକଣା ନାହିଁ ।

ଧର୍ମୀୟ ସତ୍ୟର ସ୍ୱଭାବ କଣ ଆମେ ଦେଖିଲେ । ବୌଦ୍ଧିକ ଆବଶ୍ୟକତା ଯୋଗୁଁ ଧର୍ମ ପରିବର୍ତ୍ତନ କରିବାଟା ଅଲଗା କଥା । କିନ୍ତୁ ଜାତିପ୍ରଥାର ଚାପ ଯୋଗୁଁ ହେଉ ଅବା ପେଟର ଜ୍ୱାଳା ଯୋଗୁଁ ହେଉ ବାସ୍ତବ ଜୀବନରେ ଉପୁଜୁଥିବା ସମସ୍ୟାବଳୀର ସମାଧାନର ବାଟ ଧର୍ମ ପରିବର୍ତ୍ତନ ନୁହେଁ । ଧର୍ମ ପରିବର୍ତ୍ତନ ସତ୍ତ୍ୱେ ସଂସାରଟା ଯେମିତି ଥିଲା ସେମିତି

ରହିଥାଏ । କେବଳ ଲୁଣ ଖାଲରୁ ଯାଇ ଚୁନ ଖାଲରେ ଅବା ଚୁନ ଖାଲରୁ ଯାଇ ଲୁଣ ଖାଲରେ ପଡିବା କଥା । ତେଣୁ ଜୀବନରେ ଉପୁଜୁଥିବା ସମସ୍ୟାବଳୀର ସମାଧାନର ବାଟ ଜୀବନ ମଧ୍ୟରେ ହିଁ ଖୋଜିବାକୁ ହେବ । ଜୀବନ ବାହାରେ ନୁହେଁ ।

ଆଜି ମଧ୍ୟ ଏହି ସଂସାରରେ, ଭୌତିକ ଜଗତରେ ଉପୁଜୁଥିବା ସମସ୍ୟାବଳୀର ସମାଧାନର ବାଟ ଏହି ସଂସାର, ଭୌତିକ ଜଗତ ମଧ୍ୟରେ ନ ଖୋଜି ବେଳେ ବେଳେ ମଣିଷ ଆଧିଭୌତିକ ଜଗତରେ ଖୋଜେ । ଧର୍ମ ସେହି ଆଧିଭୌତିକ ମାର୍ଗଗୁଡିକ ମଧ୍ୟରୁ ଗୋଟିଏ । ସମୟର ଅତୀତକୁ ଦେଖିଲେ ଅନନ୍ତ, ଭବିଷ୍ୟତକୁ ଦେଖିଲେ ମଧ୍ୟ ଅନନ୍ତ । ଏହି ଦୁଇ ଅନନ୍ତ ମଧ୍ୟରେ ମଣିଷ ଜୀବନର ଆୟୁଷ ସୀମିତ । ଏହି ସୀମିତ ଆୟୁଷ ନେଇ ମଣିଷ ବିଚାର କରେ ଯେ ଧର୍ମର ମଧ୍ୟ ଆରମ୍ଭ ନାହିଁ କି ଶେଷ ନାହିଁ ।

କିନ୍ତୁ ବିଜ୍ଞାନ କହେ ମଣିଷକୁ ମଣିଷ ହିସାବରେ କେହି ସୃଷ୍ଟି କରିନାହିଁ । ସେ ହେଉଛି ଏକ ସୁଦୀର୍ଘ ପ୍ରାକୃତିକ ବିବର୍ତ୍ତନ ପ୍ରକ୍ରିୟାର ଫଳ । ତାହା ଯଦି ସତ ତେବେ ଧର୍ମ ମଣିଷକୁ ସୃଷ୍ଟି କରିନାହିଁ, ମଣିଷ ସୃଷ୍ଟି କରିଛି ଧର୍ମକୁ । କେତେକ ଧର୍ମ ଐତିହାସିକ ଯୁଗରେ ସୃଷ୍ଟି ହୋଇଥିଲା ତ କେତେକ ସୃଷ୍ଟି ହୋଇଥିଲା ପ୍ରାଗୈତିହାସିକ ଯୁଗରେ । ଗୌତମ ବୁଦ୍ଧ, ମହାବୀର, ଯୀଶୁଖ୍ରୀଷ୍ଟ, ମହମ୍ମଦ, ନାନକ, ଇତ୍ୟାଦି ହେଲେ ଇତିହାସ ଯୁଗର ।

ପ୍ରତ୍ୟେକ ଧର୍ମ ପ୍ରବର୍ତ୍ତକ ଗୁରୁ କହନ୍ତି, “ଭଗବତ୍ କୃପା, ଭଗବତ୍ ସାନ୍ନିଧ୍ୟ, ମୁକ୍ତିର ମୁଁ ହେଉଛି ଏକମାତ୍ର ମାର୍ଗ, ଏକମାତ୍ର ପଥ ।” ବିଜ୍ଞାନ ବର୍ତ୍ତମାନର ପିଢ଼ି ହାତରେ ସେଲ୍ ଫୋନ୍ ଦେଲା । ତେଣୁ ଆମ ପୂର୍ବ ପିଢ଼ିର ଲୋକମାନେ ନିଶ୍ଚିତ ରୂପେ ତାର ବ୍ୟବହାରରୁ ବଞ୍ଚିତ ହୋଇଛନ୍ତି । ଠିକ୍ ସେମିତି ଆଜି ଯଦି ଜଣେ ଗୁରୁ କହନ୍ତି, “ଭଗବତ୍ କୃପା, ଭଗବତ୍ ସାନ୍ନିଧ୍ୟ, ମୁକ୍ତିର ମୁଁ ହେଉଛି ଏକମାତ୍ର ମାର୍ଗ, ଏକମାତ୍ର ପଥ” – ତେବେ ସେ ସିନା ବର୍ତ୍ତମାନ ସଠିକ୍ ପଥ ଦେଖେଇଦେଲେ, କିନ୍ତୁ ଏହା ପୂର୍ବରୁ ଯେଉଁ ମଣିଷମାନେ ସଂସାର ତ୍ୟାଗ କଲେଣି ସେମାନେ ଭଗବତ୍ କୃପା, ଭଗବତ୍ ସାନ୍ନିଧ୍ୟରୁ କ’ଣ ବଂଚିତ ଥିଲେ ? ପୁଣି ଏହି ଗୁରୁଙ୍କ ପରେ ଆଉ ଜଣେ ଗୁରୁ ଆସି ସେହି ଏକା କଥା କହିବେ, “ଭଗବତ କୃପା, ଭଗବତ ସାନ୍ନିଧ୍ୟ, ମୁକ୍ତିର ମୁଁ ହେଉଛି ଏକମାତ୍ର ପଥ” – ତେବେ ତାଙ୍କର ପୂର୍ବତନ ଗୁରୁଙ୍କ ମାର୍ଗକୁ ବର୍ତ୍ତମାନର ଗୁରୁ ଭୁଲ ପ୍ରମାଣିତ କରିଦେଲେ । ତାହେଲେ ପୂର୍ବତନ ଗୁରୁଙ୍କ ପ୍ରଦର୍ଶିତ ମାର୍ଗ ଯେଉଁମାନେ ଅନୁସରଣ କରିଥିଲେ ସେମାନେ ଭଗବତ କୃପା, ସାନ୍ନିଧ୍ୟ ତଥା ମୁକ୍ତିରୁ ବଞ୍ଚିତ ହୋଇଥିବେ ନିଶ୍ଚୟ ? ଯଦି ବଞ୍ଚିତ ହୋଇ ନଥିବେ ତେବେ ପୂର୍ବତନ ଗୁରୁଙ୍କ ମାର୍ଗ ଠିକ୍ ଥିଲା । ଯଦି ତାହା ଠିକ୍ ଥିଲା ତେବେ ବର୍ତ୍ତମାନ ଗୁରୁଙ୍କ ମାର୍ଗ ଠିକ୍ ହେଉ ବା ଭୁଲ୍ ହେଉ ଅନାବଶ୍ୟକ । ଏହା କେବଳ ନିଜର ସ୍ୱାର୍ଥ ସିଦ୍ଧି ତଥା ମଣିଷକୁ ଭାଗ ଭାଗ କରିବା ଛଡା ଅନ୍ୟ କିଛି କରିବ ନାହିଁ ।

କେତେବେଳେ କିଏ ରାଜୁତି କରେ । ଅତୀତରେ ଧର୍ମ ରାଜୁତି କରୁଥିଲା ତ ବର୍ତ୍ତମାନ  ବିଜ୍ଞାନ ରାଜୁତି କରୁଛି । ଅତୀତରେ ସଂସାରର କୌଣସି ସମସ୍ୟା ସମ୍ପର୍କରେ, ମଣିଷର କୌଣସି ସମସ୍ୟା ସମ୍ପର୍କରେ କିଛି କହିବାର ଥିଲେ ଧର୍ମର ଭାଷାରେ କୁହାଯାଉଥିଲା, ବର୍ତ୍ତମାନ ବିଜ୍ଞାନର ଭାଷାରେ କୁହାଯାଉଛି । ଏପରିକି ଗୁରୁମାନେ ନିଜ ନିଜର ମତକୁ ବିଜ୍ଞାନର ପରିଭାଷାରେ ପ୍ରକାଶ କରିବାକୁ ଚେଷ୍ଟା କରି, ନିଜ ନିଜର ମତକୁ ବିଜ୍ଞାନ ସମ୍ମତ ବୋଲି କହୁଛନ୍ତି । ମଣିଷ ସମ୍ପର୍କରେ ଧର୍ମ କହେ ମଣିଷ ଭଗବାନ ସୃଷ୍ଟ, ବିଜ୍ଞାନ କହେ ସେ ହେଉଛି ଏକ ସୁଦୀର୍ଘ ପ୍ରାକୃତିକ ବିବର୍ତ୍ତନ ପ୍ରକ୍ରିୟାର ଫଳ । ଏହି ଦୁଇ କଥା ସତ ହୋଇ ପାରିବନି - ଗୋଟିଏ ସତ, ଅନ୍ୟଟି ମିଛ । ସୃଷ୍ଟିତତ୍ତ୍ୱକୁ ମଣିଷ ହଜାର ହଜାର ବର୍ଷ ଧରି ବିଶ୍ୱାସ କରି ଆସିଛି ।  ଏହି ହଜାର ହଜାର ବର୍ଷରେ ମଣିଷର କୌଣସି ଆଖିଦୃଷ୍ଟିଆ ପରିବର୍ତ୍ତନ ହେଉ ନଥିଲା, କିନ୍ତୁ ଚାର୍ଲସ ଡାରୱିନ୍ (୧୮୦୯-୧୮୮୨) ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଯେଉଁ ବିବର୍ତ୍ତନ ତତ୍ତ୍ୱ ଉପସ୍ଥାପନ କରି ବିଜ୍ଞାନ ଜଗତରେ ବୈପ୍ଳବିକ ପରିବର୍ତ୍ତନ  ଆଣିଲେ ତାରି ଫଳରେ ମଣିଷ ଓ ଜୀବଜଗତ ସମ୍ପର୍କରେ ବହୁ ତଥ୍ୟ ସଂଗ୍ରହ କରାଯାଇ ପାରିଛି ତଥା ସେଗୁଡିକର ପ୍ରୟୋଗ ମଣିଷ ଓ ଜୀବଜଗତ କ୍ଷେତ୍ରରେ ବହୁ ପରିବର୍ତ୍ତନ ଆଣୁଛି । ତେଣୁ ମାନବିକ ସମସ୍ୟାର ସମାଧାନର ବାଟ ମାନବ ସମାଜ ମଧ୍ୟରେ ହିଁ ଖୋଜିବାର ଆବଶ୍ୟକତା ରହିଛି । ଧର୍ମ ମଧ୍ୟରେ ନୁହେଁ ।

ଅତୀତରେ ଧର୍ମ ନାମରେ କେତେ ଧର୍ମଯୁଦ୍ଧ ନ ହୋଇଛି ! କେତେ ଧନଜୀବନ ନଷ୍ଟ ନ ହୋଇଛି ! ସାମ୍ପ୍ରଦାୟିକ ଦଙ୍ଗାର ଫଳାଫଳ ତ ଆମେ ଅଙ୍ଗେ ନିଭଉଛେ । ଧର୍ମ ପରିବର୍ତ୍ତନ ସାମାଜିକ ଉତ୍ତେଜନା ବୃଦ୍ଧି କରୁଛି । ମଣିଷ ସୃଷ୍ଟ ଧର୍ମ ମଣିଷକୁ ନିଜର ଦାସ ନକରୁ । ମଣିଷଟି ମଣିଷର ନଜରରେ ସର୍ବଦା ରହୁ ।



# ଧର୍ମାଂଧତା ଓ ହେତୁବାଦ

*ଅଧ୍ୟାପକ ପ୍ରସନ୍ନ କୁମାର କରବର*

ପ୍ରତ୍ୟହ ବିରିୟାନି ଖାଉଥିବା ଲୋକଟି ଶାଗ ପଖାଳରେ ତୃପ୍ତି ଖୋଜେ, ଗଧିଆ ଖାଲ କାଉଡି ବାଲା ଚାହେଁ ତାଜ ପ୍ୟାଲେସରେ ବସି ବର୍‌ଫି ବିରିୟାନିର ମଜ୍ଜା ଉଠାନ୍ତା । କିନ୍ତୁ ବାସ୍ତବତା ଅତି ନିଷ୍ଠୁର, ନିର୍ମମ । ସେପରି ସୁଖ ସମସ୍ତଙ୍କୁ ମିଳେ ନାହିଁ । ବାସ୍ତବତାରେ ଯଦି ସୁଖ ମିଳୁ ନାହିଁ ତେବେ ସୁଖର ସ୍ୱପ୍ନ ଦେଖିବାରେ ତ ବାଧା ନାହିଁ । ସେପରି ସ୍ୱପ୍ନର ଉପାୟ ସବୁ ଧର୍ମର ବାବା, ମାତା, ସାଧୁ, ଦିବ୍ୟପୁରୁଷ ଓ ତଥାକଥିତ ସିଦ୍ଧାଚାର୍ଯ୍ୟମାନଙ୍କ ପାଖରେ ମହଯୁଦ ଅଛି । ବେଦ, ବାଇବେଲ, କୋରାନ, ପୁରାଣ, ଶାସ୍ତ୍ରକୁ ମନ୍ଥା ମନ୍ଥି କରି ସେମାନେ ଏପରି ସାଲସା ପ୍ରସ୍ତୁତ କରିଛନ୍ତି ଯାହା ଏପଟ ଜୀବନର ଦୁଃଖ ମୋଚନ ସହ ସେପଟର ସୁଖ ପାଇଁ ଫଳପ୍ରସୁ ମହୌଷଧି । ମାତ୍ର ସେଥିପାଇଁ ଅର୍ଥ ଶ୍ରାଦ୍ଧ କରିବାକୁ ପଡିବ । ଏହି ଅର୍ଥକୁ ପାଥେୟ କରି ବିପୁଳ ଧନ ଠୁଳ କରି ପାରୁଛନ୍ତି ବିଭିନ୍ନ ଧର୍ମର ବେପାରୀ ବର୍ଗ ।

ଧର୍ମ, ସ୍ୱର୍ଗ, ଈଶ୍ୱର, ଦିବ୍ୟଶକ୍ତି, ଦିବ୍ୟଚେତନା, ଆଧ୍ୟାତ୍ମିକତା, ଅତିମାନସ ଶକ୍ତି- ଏସବୁ ସପନର ସୁନାହରିଣ-ସୁଖ ପାଇଁ ଜଳା କବାଟ । ଯଦି ସୁଖଟା ଏପଟେ ମିଳୁନି ତେବେ ସେପଟେ ମିଳିବାର ଉପାୟ ବାହାର କରନ୍ତି ଧର୍ମ ଓ ଧର୍ମାଧୀଶ ମାନେ । ଅଧିକାଂଶ ଧର୍ମ ଶରୀର ଠାରୁ ଆତ୍ମାକୁ ଅଲଗା ବୋଲି ମାନନ୍ତି । କିନ୍ତୁ ଏହା ଏକ ଅନ୍ଧବିଶ୍ୱାସ । ଏହାର ବୈଜ୍ଞାନିକ ଭିତ୍ତି ନାହିଁ । ପ୍ରମାଣରହିତ ବିଶ୍ୱାସକୁ ଅନ୍ଧବିଶ୍ୱାସ କୁହାଯାଏ । ଏହି ଅନ୍ଧବିଶ୍ୱାସଟି ବହୁ ସାମାଜିକ, ଧାର୍ମିକ ତଥା ରାଜନୈତିକ କାର୍ଯ୍ୟକଳାପର ଜନନୀ । ଆଉ ଏପରି ବିଶ୍ୱାସରୁ ଜାତ ସକଳ କାର୍ଯ୍ୟ କଳାପ ହେଉଛି କୁସଂସ୍କାର । ସଂସ୍କାରର ପ୍ରକୃତ ଅର୍ଥ ହେଉଚି ପ୍ରଗତିବାଦୀ

ପରିବର୍ତ୍ତନ । ଧର୍ମ ସଂସ୍କାର, ଅର୍ଥ ସଂସ୍କାର, ନୀତି ସଂସ୍କାର ଠାରୁ ଆରମ୍ଭ କରି ପ୍ରୀତି ସଂସ୍କାର ପର୍ଯ୍ୟନ୍ତ ସମସ୍ତ ଖଣ୍ଡ ବାକ୍ୟ ପ୍ରଗତିଶୀଳତାକୁ ହିଁ ବୁଝାନ୍ତି । ଅନ୍ୟ ପକ୍ଷରେ କେତେକ ଚିନ୍ତା ବା କାର୍ଯ୍ୟ ଏକଦା ଆମ ପାଇଁ ହିତକର ଥିଲେ, ମାତ୍ର ସାମାଜିକ ବିବର୍ତ୍ତନ ମଧ୍ୟରେ ସେମାନଙ୍କର ଉପଯୋଗିତା ହରାଇ ବସିଛନ୍ତି । ଧର୍ମ ବା ପରଂପରାର ଦ୍ୱାହି ଦେଇ ସେପରି ଚିନ୍ତା ବା କାର୍ଯ୍ୟକୁ ସମର୍ଥନ କରିବା ହିଁ କୁସଂସ୍କାର । ଏଥିରୁ ପ୍ରତୀୟମାନ ହୁଏ ଯେ ଆମେ ଆଜି ଯାହାକୁ କୁସଂସ୍କାର କହୁଛୁ ତାହା ଦିନେ ସମାଜରେ ସଂସ୍କାର ଥିଲା । ସାମାଜିକ ବିବର୍ତ୍ତନ ଓ ହେତୁବାଦର ବିକାଶ ଯୋଗୁଁ ଆଜି ତାହା କୁସଂସ୍କାରରେ ପରିଣତ ହୋଇଛି । ଲର୍ଡ ବର୍ଟ୍ରାଂଡ ରସେଲ ଲେଖିଛନ୍ତି ଯେ ରବିନ (କୋକିଳ ଜାତୀୟ) ପକ୍ଷୀଟିଏ ବୃଦ୍ଧ ହୋଇଗଲେ, ଖାଦ୍ୟ ସଂଗ୍ରହରେ ଅକ୍ଷମ ହେଲେ, କିମ୍ବା ଆଘାତ ପ୍ରାପ୍ତ ହେଲେ ତାର ଜାତିଭାଇ ମାନେ ଏକଯୁଟ ହୋଇ ତାକୁ ଖୁଂପି ମାରି ଦିଅନ୍ତି । ଆମ ଦେଶରେ କାଉମାନେ ମଧ୍ୟ ଦୁର୍ବଳ ଓ ଅସହାୟ କାଉକୁ ଗୋଡ଼େଇ ଗୋଡ଼େଇ ମାରି ପକାନ୍ତି । କିନ୍ତୁ ମଣିଷଟିଏ ଭିନ୍ନକ୍ଷମ ହେଲେ, ଆହତ ହେଲେ କିମ୍ବା ବୃଦ୍ଧ ହେଲେ ଆମେ ତାକୁ ସହଯୋଗର ହାତ ବଢ଼ାଉ, ଥଇଥାନର ବ୍ୟବସ୍ଥା କରୁ, ତା ପାଇଁ ଉତ୍ତମ ପେନସନ ଯୋଜନା କରୁ । ଅକ୍ଷମ ବୃଦ୍ଧଟିର ଯତ୍ନ ନେବାଟା ହେଉଛି ସଂସ୍କାର । ପୁରୁଷ ପୁରୁଷ ଧରି ଆମେ ଏ କାର୍ଯ୍ୟଟି କରି ଆସୁଅଛୁ । ଅନୁଭୂତି ଆମକୁ ଶିକ୍ଷା ଦେଇଛି ଯେ ପରସ୍ପରର ସହଯୋଗରେ ହିଁ ମଣିଷ ଜୀବନ ସଂଗ୍ରାମରେ ବଞ୍ଚିବ; ଏକୁଟିଆ ନୁହେଁ । ଏପରି ସହଯୋଗକୁ ଆମେ ମଣିଷ ପଣିଆ କହୁ । ଏହା ମାନବ ସମାଜର ଦୀର୍ଘ ଦିନର ଅର୍ଜିତ ଅନୁଭୂତି, ପରୀକ୍ଷିତ ସିଦ୍ଧାନ୍ତ । ଏହା ମାନବବାଦ । ଧର୍ମ ଓ ଈଶ୍ୱର- ଉଭୟଙ୍କୁ ପରିତ୍ୟାଗ କରିଥିବା ଭୋଲଟେୟାର, ରୁଷୋ, ମାର୍କ୍ସ, ରସେଲ ଓ ପଣ୍ଡିତ ନେହେରୁଙ୍କ ପରି ବ୍ୟକ୍ତି ଗଣ ଏହିପରି ସୈଦ୍ଧାନ୍ତିକ ମାନବବାଦର ପୃଷ୍ଟପୋଷକ ଥିଲେ । ପ୍ରକୃତି ଓ ପ୍ରାକୃତିକ ଘଟଣାବଳୀର ଗଭୀର ଅନୁଧ୍ୟାନ, ସମୀକ୍ଷା, ବିଶ୍ଳେଷଣ ସହିତ ଦେଶ, କାଳ ଓ ପାତ୍ରର ପ୍ରୟୋଗାତ୍ମକ ପରୀକ୍ଷା ନିରୀକ୍ଷା ପରେ ଯେଉଁ ସିଦ୍ଧାନ୍ତ ମାନ ଉପଲବ୍ଧ ହୁଏ ତାହା ହିଁ ବୈଜ୍ଞାନିକ ସିଦ୍ଧାନ୍ତ, ହେତୁବାଦୀ ବିଚାର । ମଣିଷର କାର୍ଯ୍ୟ କଳାପକୁ ଅନୁଶୀଳନ କରି, ତାହାର ମାନସିକତାର ଇତିହାସକୁ ଆଧାର କରି ଫ୍ରୟେଡ଼ ଏହି ସିଦ୍ଧାନ୍ତରେ ଉପନୀତ ହେଲେ ଯେ ମଣିଷ କସ୍ମିନ କାଳେ ତାହାର ବର୍ତ୍ତମାନରେ ସନ୍ତୁଷ୍ଟ ନୁହେଁ । ତାର ବର୍ତ୍ତମାନରୁ ମୁକୁଳିବାକୁ ସେ ସଦା ତତ୍ପର । ଏହାମଧ୍ୟ ହେତୁବାଦୀ ଚିନ୍ତାଧାରା । ଏପରି ଇଚ୍ଛା ଯୋଗୁ ହିଁ ମାନବ ସଭ୍ୟତା ଗତିଶୀଳ ହୁଏ, ବିକାଶ ଘଟେ ।

୧୯୯୦ ମସିହାରେ ସୋଭିଏତ ୟୁନିୟନର ବିଭାଜନ ଘଟିଲା । ସମାଜବାଦ ଧ୍ୱଂସ ପ୍ରାପ୍ତ ହେଲା । ଧନୀ ଗରିବ ଭେଦରେ ସମାଜ ବିଭାଜିତ ହେଲା । ରାଜଧାନୀ ମସ୍କୋରେ ହଜାର ହଜାର କୋଟିପତି ସୃଷ୍ଟି ହେଲେ । ୨୦୦୦ ମସିହା ପାଖାପାଖି ବେଳକୁ ରାଜଧାନୀ

ମସ୍କୋରେ ଏକ ବିଚିତ୍ର ଘଟଣା ଘଟିଲା । ଜୀର୍ଣ୍ଣ ବସ୍ତ୍ର ପରିହିତ ଦଳେ ଯୁବକଙ୍କୁ ରେଳବାଇ ପୋଲିସ ଭିକ ମାଗୁଥିବା ଅଭିଯୋଗରେ ଗିରଫ କଲା । ତଦନ୍ତରୁ ଜଣାଗଲା ଯେ ସେମାନେ ସମସ୍ତେ କୋଟିପତି ପିତାର ସନ୍ତାନ । ଦାରିଦ୍ର୍ୟକୁ ଅନୁଭବ କରିବା ପାଇଁ ସେମାନେ ଏପରି ମାର୍ଗର ଆଶ୍ରୟ ନେଇଥିଲେ ।

ତେବେ ଏ ଯନ୍ତ୍ରଣାଦାୟକ ବର୍ତ୍ତମାନରୁ ନିସ୍ତାର ପାଇବାର ଉପାୟ କ'ଣ ? ଏହାର ଏକମାତ୍ର ଉତ୍ତର ହେଉଛି ପରିବର୍ତ୍ତନ । ଏଥିପାଇଁ ମଣିଷ ଆଗରେ ଦୁଇଟି ବିକଳ୍ପ ରହିଛି । ପ୍ରଥମଟି ହେଉଛି ଏକ ସୁଖକର ଭବିଷ୍ୟତର କଳ୍ପନା । ଉପସ୍ଥିତ ଯନ୍ତ୍ରଣାର କାରଣ ନିର୍ଣ୍ଣୟ କରି ତାହାର ଉପଯୁକ୍ତ ତର୍ଜ୍ଜମା କରିବା, ବ୍ୟକ୍ତି ଓ ସମାଜର କଷ୍ଟ ଉପଶମ ପାଇଁ ବିହିତ ବ୍ୟବସ୍ଥା କରିବା, ଏଥିପାଇଁ ବିଜ୍ଞାନ, ବୈଷୟିକ ବିଦ୍ୟା, ପରିବେଶର ଉପଯୁକ୍ତ ଅନୁଧ୍ୟାନ ଏବଂ ଆମ ପୂର୍ବଜ ମାନଙ୍କର କେତେକ ପରୀକ୍ଷିତ ଓ ସନ୍ତୁଳିତ ବିଚାର (ଯାହାକି ସମାଜ କଲ୍ୟାଣ ପାଇଁ ଆଜି ମଧ୍ୟ ଉପଯୋଗୀ) ଗ୍ରହଣ କରି ଜୀବନର ପଥକୁ ସହଜ, ସରଳ, ସୁଷମ ଓ ସୁଖମୟ କରି ଗଢ଼ିବା । ଏପରି ଆଭିମୁଖ୍ୟକୁ ନିଜସ୍ୱ କରିଥିବା ବ୍ୟକ୍ତିଟି ହେଉଛି ହେତୁବାଦୀ । ଦ୍ୱିତୀୟଟି ହେଉଛି ପଛକୁ ବିହଂଗମ ଦୃଷ୍ଟି ରଖି ସେହି ଦିଗକୁ ଫେରିବାର ଅପଚେଷ୍ଟା । ଆମ ଜେଜେ ଏ ନୂଆ ପ୍ରଗତି ଗ୍ରହଣ କରିବାକୁ ନାରାଜ । ସେ ଥିଲେ ଜଣେ ଛାମୁଆଁ ଚାଷୀ, ଆଠପଟ ବଳଦ ପୋଷୁଥିଲେ, ରଖିଥିଲେ ବି ଲଂଗଳ କଂଟିଆ ନିଶ । ଆଜି ସେକଥା ନାହିଁ । ତାଙ୍କ ପୁଅ ଚଳାଉଛି ଟ୍ରାକ୍ଟର । ହଡ଼ା ବଳଦ ଗୁଡା ଗୋଟି ଗୋଟି ହୋଇ ଆରପାରି ହେଲେ ଶଗଡ଼, ଲଙ୍ଗଳ, ମଇ ଆଦି ଗଲେ ଚୁଲିକି । କେବଳ ସିଏ ଏକ ବିଲୁପ୍ତ ଅତୀତର ଶେଷ ସନ୍ତକ ହିସାବରେ ସୁକୁ ସୁକୁ ହେଉଛନ୍ତି । ସଦାବେଳେ ଗୁମରୁଛନ୍ତି, କି ଥିଲା ଏ ରାଜ୍ୟ ! କି ହୋଇଛି ଆଜ ! ଧର୍ମ ବୁଡ଼ିଗଲା । କେବଳ ମୋ ଜେଜେ ନୁହନ୍ତି, ଅନେକ ଲୋକ ମଧ୍ୟ ଦଳେ ଗୁମୁରା ପାରା ପରି ଶୋକ ସାରଣୀରେ ଦଗ୍ଧିଭୂତ– 'କୁଆଡ଼େ ଗଲା ସେ ପଖାଳ ଭାତ ଓ ଟାଂପରା ଶୁଖୁଆ ! ମାଣିଆ ବାନ୍ଧ ଶାଢ଼ୀ ! ଢେଙ୍କିକୁଟା ଚାଉଳ ତ ସାତ ସପନ ହେଲା ! କମାର, କୁମ୍ଭାର, ବାରିକ, କେଉଟ ଦେଶାନ୍ତରୀ ହେଲେଣି । ପିପିଲି ଚାନ୍ଦୁଆର ଭେଳା ବୁଡିଗଲା । ପଥର ଶିଳ୍ପ ହେଉଛି ଓଡ଼ିଶାର ଆତ୍ମା, ଓଡିଆ ସଂସ୍କୃତିର ପରିଚୟ । ତାକୁ ପରମ ଛାଡ଼ି ସାରିଲାଣି, ଜୀବଟା ଦୁକୁ ଦୁକୁ ହେଉଛି । ସବୁ ମରଣ ମୁହାଁ । ଦୋଷୀ କିଏ ? ଉତ୍ତରଟା ବି ସେଇମାନେ ଦିଅନ୍ତି– ବିଜ୍ଞାନ, ପ୍ରଯୁକ୍ତିବିଦ୍ୟା, ଆମଦାନୀ ସଂସ୍କାର, ଧାର୍ମିକ ଅବକ୍ଷୟ ।

ବିଚିତ୍ର ଏମାନଙ୍କର ଯୁକ୍ତି – ଅତୀତର ମଣିଷ ଗୁଡ଼ିକ ଥିଲେ ସରଳ, ନିରାମୟ ଓ ନୀତି ବଶିଷ୍ଟ । ଆଧ୍ୟାତ୍ମିକ ଚିନ୍ତାରେ ଉବୁଟୁବୁ ହେଉଥିଲେ । ଆଉ ଭୋଗ ବିଳାସକୁ ମାଟିଆ ଚିଲ ମନେ କରୁଥିଲେ । ଭୌତିକତା ବାଦ ଆଧୁନିକ ମଣିଷକୁ ଭୋଗବାଦୀ କରିଦେଲା । ମଦ, ମାତ୍ସର୍ଯ୍ୟ ଓ ମୋହିନୀ କନ୍ୟା ବିନାଶର ପଥ ଉନ୍ମୁକ୍ତ କରିଦେଲେ । ଘଡ଼ି ଘଡିକେ

ରାହାଜାନୀ, କଥା କଥାକେ ହତ୍ୟା, ଧର୍ଷଣ ଓ କର୍ଷଣ । ମୋ ଜେଜେ ଭାବନ୍ତି ଯେ ଉପସ୍ଥିତ ଯନ୍ତ୍ରଣାରୁ ମୁକୁଳିବାର ଉପାୟ ହେଉଚି ସ୍ୱର୍ଗ ପ୍ରାପ୍ତି ପାଇଁ ସାଧନା ଏବଂ ଏହାର ସୂତ୍ର ଶାମ ବାବା, କାମ ବାବା ଓ ଦାମ ବାବାଙ୍କ ପାଖରେ ଅଛି । ଏହି ମୁନି, ଋଷି, ଧର୍ମଯାଜକ ଓ ଈଶ୍ୱର ଭକ୍ତମାନେ ସେପଟ ସୁଖ ସଂଧାନର ଲୋଭ ଦେଖାଇ ନାନାଦି କୃଚ୍ଛ ସାଧନା ପାଇଁ ଲୋକଙ୍କୁ ମତାନ୍ତି । ଯୋଗ, ମୌନବ୍ରତ, ପ୍ରାଣାୟମ, ଉପବାସ ଏବଂ ଶରୀରକୁ ନିର୍ଯ୍ୟାତନା ଦେଇ ସେମାନେ ଏକ ବିଚିତ୍ର ସୁଖ ପାଆନ୍ତି । ସେପଟ ସୁଖର ମାୟାରେ ପଡ଼ି ମଣିଷ ଏପଟ ସୁଖକୁ ପରିତ୍ୟାଗ କରେ ଏବଂ ସେହି ବିଚିତ୍ର ସୁଖପାଇଁ ଅନ୍ୟମାନଙ୍କର ମନ୍ଦ ଅଭିପ୍ରାୟକୁ ଜାହିର କରନ୍ତି । ଭଲ ଖାଦ୍ୟ, ଉନ୍ନତ ପରିଧାନ, ଭଲ ରୋଜଗାର, ଯୌନଲାଳସା, ଇନ୍ଦ୍ରିୟ ସୁଖକୁ ଏମାନେ ପୈଶାଚିକ ବିଚାର କରନ୍ତି ଏବଂ ଏପରି ବିଷୟାମଗ୍ନ ବ୍ୟକ୍ତିକୁ କଠିନ ଦଣ୍ଡ ପ୍ରଦାନର ବ୍ୟବସ୍ଥା କରନ୍ତି । ଏମାନେ ହେଉଛନ୍ତି ଧାର୍ମିକ ମୌଳବାଦୀ, ସ୍ଥିତାବସ୍ଥାର କାହାଳିଆ ।

ପ୍ରାଚୀନ ସଭ୍ୟତାରେ ମଣିଷର ପାରମ୍ପରିକ ଜୀବନଶୈଳୀ ଥିଲା ଧର୍ମଭିତ୍ତିକ । ଧର୍ମ ଆମର ସାମାଜିକ, ଅର୍ଥନୈତିକ, ଜୀବନକୁ ମାର୍ଗଦର୍ଶନ ଦେବା ସହ ସାଧାରଣ ମଣିଷର ଐତିହ୍ୟ ଓ ଚାଲିଚଳନ ପାଇଁ ନୀତି ନିର୍ଦ୍ଧାରଣର ମୁଖ୍ୟ ସାଧନ ଥିଲା । ଏହାର ପ୍ରମୁଖ ଦୁର୍ବଳତା ଏହି ଯେ ଏହାର ଆଦର୍ଶ ଓ ବ୍ୟାବହାରିକ ପ୍ରୟୋଗ ମଧ୍ୟରେ ଆକାଶ ପାତାଳ ପ୍ରଭେଦ ଥିଲା । ସବୁ ଧର୍ମ ଭ୍ରାତୃତ୍ୱ ଓ ସମଭାବର ଆଦର୍ଶ ପ୍ରଚାର କରନ୍ତି, ମାତ୍ର କାର୍ଯ୍ୟରେ ଈର୍ଷା, ବିଦ୍ୱେଷ, ଅହମିକାର ବିଷମଞ୍ଜି ବପନ କରନ୍ତି । ଧର୍ମ ସମାଜରେ ବହୁଧା ସଂପ୍ରଦାୟ ସୃଷ୍ଟି କରେ ଏବଂ କଳହ ଓ ରକ୍ତପାତ ସୃଷ୍ଟିକରେ, ଜାତିଗତ ବୈଷମ୍ୟ ପାଇଁ ଖୋରାକ ଯୋଗାଏ । ଏକ ପରିବର୍ତ୍ତିତ ସମାଜରେ ମଣିଷର କୌଳିକ ବୃତ୍ତିର ଦ୍ରୁତ ପରିବର୍ତ୍ତନ ଘଟୁଛି ଯାହା ଶାସ୍ତ୍ରାନୁମୋଦିତ ନୁହେଁ । ଜେଜେ ପଢ଼ିଥିଲେ ଯେ ଅଯୋଧ୍ୟାରେ ଚଣ୍ଡାଳ ପୁତ୍ର ଶଂଭୁକ ବେଦ ମନ୍ତ୍ର ଉଚ୍ଚାରଣ କରିବା ହେତୁ ବ୍ରାହ୍ମଣ ପୁତ୍ରର ଅକାଳ ମୃତ୍ୟୁ ହେଲା । ଏପରି ଅଧର୍ମକୁ ରାଜାଧିରାଜ ରାମଚନ୍ଦ୍ର ସହିଥାନ୍ତେ କିପରି ? ସେ ଚଣ୍ଡାଳକୁ ବଧ କଲେ ଏବଂ ବ୍ରାହ୍ମଣ ଶିଶୁ ବଞ୍ଚିଲା । ରାମରାଜ୍ୟର ଟେକ ରହିଲା । ଧର୍ମର ଜୟ ହେଲା । ଆଜିକାର ସମାଜରେ କୌଳିକ ବୃତ୍ତିର ଘନ ଘନ ପରିବର୍ତ୍ତନ ହେଉଛି । ଏହା ଅଧର୍ମ ଓ ସାମୂହିକ ବିନାଶର ଜଳାକବାଟି । ଯଦି ଖଣ୍ଡାଟେ ହାତରେ ପଡ଼ି ଯାଆନ୍ତା ସେ ଖୁରୁଧା ପାଇକ ପରି ବିଚକ୍ଷଣ ନୃତ୍ୟ ପ୍ରଦର୍ଶନ କରି ଦି ଚାରିଟା ବିଧର୍ମୀଙ୍କୁ ଆରପାରି କରି ଦିଅନ୍ତେ ।

କିନ୍ତୁ ଜେଜେ ଓ ତାଙ୍କ ପରି ଧର୍ମବିଶ୍ୱାସୀ ପଣ୍ଡିତ ମାନେ କେବେ ପରୀକ୍ଷା କରି ଦେଖିଛନ୍ତି କି ସେମାନଙ୍କ ଏହି ବିଚାର କେତେଦୂର ସତ୍ୟ ? ଏହି ଆପ୍ତ ବାକ୍ୟ ଆଜିକାର ସମାଜ ପାଇଁ କେତେଦୂର ଗ୍ରହଣ ଯୋଗ୍ୟ ? ସେମାନେ ସେପରି ପରୀକ୍ଷା କରିବେ ନାହିଁ, କରିପାରିବେ ନାହିଁ କାରଣ ସେଗୁଡ଼ିକ ଈଶ୍ୱରଙ୍କ ମୁଖ ନିଃସୃତ ବାଣୀ-ବାଇବେଲ, କୋରାନ,

ଜେନ୍ଦାଭେସ୍ତା, ଗୀତା, ଉପନିଷଦ ଓ ପରମ ଶାସ୍ତ୍ର ଭାଗବତର ବାଣୀ । ଈଶ୍ୱରଙ୍କ ମୁଖନିଃସୃତ ଥିବାରୁ ଏଗୁଡିକ ଅସତ୍ୟ, ଅଳୀକ କିମ୍ବା ଅନାବଶ୍ୟକ ହେବାର ସମ୍ଭାବନା ଆଦୌ ନାହିଁ । ପରୀକ୍ଷା ଅନାବଶ୍ୟକ ।

ଏହାହିଁ ବିଶ୍ୱାସ ଓ ହେତୁବାଦ ମଧ୍ୟରେ ମୌଳିକ ପ୍ରଭେଦ । ହେତୁବାଦୀ ମାନେ କେବଳ ଏହି କାରଣ ଯୋଗୁଁ ଧର୍ମ ଓ ଈଶ୍ୱରଙ୍କୁ କଠୋର ସମାଲୋଚନା କରିଛନ୍ତି । ହେତୁବାଦୀ ଦାର୍ଶନିକ ବର୍ଟ୍ରାଂଡ଼ ରସେଲ କହନ୍ତି ଯେ ମଣିଷ ମାଟି ନିର୍ମିତ ପଦାର୍ଥ ଏବଂ ଏହି ଶରୀର ବାହାରେ ଆତ୍ମା ବୋଲି କିଛି ନାହିଁ । ତେଣୁ ମୃତ୍ୟୁପରେ ସବୁ ଶେଷ । ସେ ନିଶ୍ଚିତ ଥିଲେ ଯେ ଶରୀରକୁ ଛାଡି ଆତ୍ମା, ପରମାତ୍ମା, ଦିବ୍ୟଚେତନା, ଅତି ମାନସ ଶକ୍ତି ଆଦି ପଦାର୍ଥ କବି କଳ୍ପନା ଛଡ଼ା ଅନ୍ୟ କିଛି ନୁହେଁ । ଶରୀରଟି ଧ୍ୱଂସ ହେଲେ ଆତ୍ମାଟାଏ ଘୂରି ବୁଲେ ଏପରି ଦୃଷ୍ଟିଭଙ୍ଗୀ ହେଉଛି ହେତୁବାଦୀ ଚିନ୍ତାର ବିପରୀତ, କପୋଳ କଳ୍ପିତ । ଫ୍ରାନ୍ସରେ ଜୋଆନ୍ ଅଫ ଆର୍କ ନାମ୍ନୀ ଜନୈକା ତରୁଣୀ ଦାବି କଲା ଯେ ତା ଠାରେ ଏକ ଐଶ୍ୱରିକ ଶକ୍ତି ପ୍ରବେଶ କରିଥିଲା ଏବଂ ଇଂରେଜ ମାନଙ୍କ ବିରୁଦ୍ଧରେ ଲଢ଼ି ଫ୍ରାନ୍ସକୁ ମୁକ୍ତ କରିବାକୁ ପ୍ରେରଣା ଯୋଗାଉଥିଲା । ସେ ସମୟର ଫରାସୀ ସମାଜ ଏପରି ଏକ ଅହେତୁକବାଦୀ ସିଦ୍ଧାନ୍ତକୁ ଗ୍ରହଣ କରିଗଲା । ତେବେ ବୁଝି ହୁଏନା ଈଶ୍ୱର କାହିଁକି ଫରାସୀ ମାନଙ୍କୁ ଏତେ ପ୍ରେମ କରୁଥିଲେ ଏବଂ ଇଂରେଜ ମାନଙ୍କୁ ଏତେ ଘୃଣା କରୁଥିଲେ ? ଏହି ଦିବ୍ୟଚେତନା, ଅନ୍ତଃସ୍ୱର, ହେଉଚି ଏକା ପ୍ରକାରର ମାନସିକ ବେମାରୀ । ଆଉ ବ୍ୟକ୍ତି ଜଣକ ଯଦି ଦାର୍ଶନିକ ହୋଇଥାନ୍ତି ସେ ଏହାକୁ କହନ୍ତି -ଅତିମାନସ ଶକ୍ତି, ଐଶ୍ୱରୀୟ ଶକ୍ତି କିମ୍ବା ସେହିପରି ଏକ ରସାଳ ପରିକଳ୍ପନା । ହେତୁବାଦୀ ଏସବୁ ଅଶରୀରୀ ଉପସ୍ଥିତିକୁ ଆଦୌ ବିଶ୍ୱାସ କରେ ନାହିଁ । ସେ ଜାଣେ ଯେ ବର୍ତ୍ତମାନରେ ଅତିଷ୍ଠ ରୁଗ୍ଣ ମାନସିକତା ସଂପନ୍ନ ବ୍ୟକ୍ତିଟି ଅଧିକ ସୁଖ ପ୍ରାପ୍ତିର ଆଶା ରଖି ଏପରି ଆକାଶିଆ ସ୍ୱପ୍ନ ଦେଖେ । ହେତୁବାଦୀର କାର୍ଯ୍ୟ ପରିସର ହେଉଛି ପ୍ରକୃତି ଓ ପ୍ରାକୃତିକ ଘଟଣାବଳୀ ତେଣୁ ହେତୁବାଦୀ ଦୃଷ୍ଟିକୋଣରୁ ପ୍ରକୃତି ବ୍ୟତିରେକ ଅନ୍ୟ ସମସ୍ତ ନୈସର୍ଗିକ ଚିନ୍ତା ହେଉଛି ଉଦ୍‌ଭଟ, ଅଳୀକ କଳ୍ପନା ଏବଂ ଅନ୍ଧବିଶ୍ୱାସ । ଭୂତ, ଦେବଦୂତ, ଈଶ୍ୱର, ଆତ୍ମା, ଚେତନା, ଆଧ୍ୟାତ୍ମିକ ଚେତନା, ଅତିମାନସ ଶକ୍ତି, ଦିବ୍ୟଚେତନା-ଏମାନେ ସମସ୍ତେ ଅଶରୀରୀ ପ୍ରାମାଣିକ ତଥ୍ୟ ନୁହନ୍ତି, ତେଣୁ ହେତୁବାଦୀ ମାନେ ଏ ସବୁରେ ଆସ୍ଥା ପ୍ରକଟ କରନ୍ତି ନାହିଁ । ସ୍ୱର୍ଗ ହେଉଛି ଏହିପରି ଏକ କପୋଳ କଳ୍ପିତ ଗପ । ସେଠାରେ ବାବା, ଚମତ୍କାରୀ, ରହସ୍ୟମୟୀ ସାଧୁ ମାନେ ଘରବାଡ଼ି କିଣି ବସବାସ କରୁଛନ୍ତି । ଆମ କାଳର ଆଧୁନିକ ବାବା ଓ ସଂସ୍ଥାମାନେ ସେଠାରେ ଡିହ କିଣିବାରେ ଯତ୍ନବାନ ଅଛନ୍ତି । ସେଠି ରୋଗ ବଇରାଗ ନାହିଁ, ଦୁଃଖ ନାହିଁ, ସ୍ୱାଦିଷ୍ଟ ଖାଦ୍ୟ ମିଳେ । ନନ୍ଦନ କାନନ ଅଛି, ପାରିଜାତ ପୁଷ୍ପ ଅଛି, ଐରାବତ ହସ୍ତୀ ସହିତ ଉଚୈଶ୍ରବା ଘୋଡ଼ା ବି ଅଛି । କୋରାନରେ ବର୍ଣ୍ଣିତ

ସ୍ୱର୍ଗରେ ପଠାଣ ମାନଙ୍କୁ  ଖଜୁରୀ କୋଳି, ମରୁଦ୍ୟାନ ଓ ସୁନ୍ଦରୀ ଲଳନା ମିଳନ୍ତି । ଆଉ ଖ୍ରୀଷ୍ଟିୟାନ ସ୍ୱର୍ଗରେ ନମିଳେ କ'ଣ ?  ମର୍ତ୍ତ୍ୟରେ ଭଲ କର୍ମ କରିଥିଲେ ସ୍ୱର୍ଗରେ ବର୍ଫ, ବିରିୟାନି ଏପରିକି ଭଲ ବାପା ମାଆ ବି  ମିଳି ପାରିବେ । ଏହିପରି ଆଉ ଏକ ମତାନ୍ଧତା ହେଉଛି ଯେ ବିଷୟାରେ ଅତ୍ୟଧିକ ମାତିଲେ କାମନା ବୃଦ୍ଧିପ୍ରାପ୍ତ ହୁଏ, ମନ ଅତୃପ୍ତ ରହେ । ଏପରି ମଣିଷର ଆତ୍ମା ମୃତ୍ୟୁ ପରେ ସ୍ୱର୍ଗକୁ ନଯାଇ ଅନ୍ୟ ଶରୀରରେ ପ୍ରବେଶ କରି ବହୁତ ଉପଦ୍ରବ କରେ । ଆମଦେଶରେ ହାଡ଼ବାଇ ପ୍ରବେଶ ହେଉଛି ଏହି ପ୍ରକାର ଏକ ଅନ୍ଧବିଶ୍ୱାସ । ମଧ୍ୟଯୁଗରେ ଖ୍ରୀଷ୍ଟିୟାନ ମାନେ ଏହାକୁ ଶଇତାନର କାରସାଦି ବିଚାର କରୁଥିଲେ ଏବଂ ଆକ୍ରାଂତ ବ୍ୟକ୍ତିକୁ ନାନାଦି ଶାରୀରିକ ନିର୍ଯ୍ୟାତନା ଦେଇ ପ୍ରେତାତ୍ମା ପୀଡ଼ିତାକୁ ପୋଡ଼ି ମାରି ଦେଉଥିଲେ । ପଠାଣ ଓ ମୌଳବାଦୀ ହିନ୍ଦୁମାନେ ମଧ୍ୟ ଏପରି ବର୍ବର ନରହତ୍ୟାରେ ଜଡ଼ିତ ଥିବାର ପ୍ରମାଣ ରହିଛି । ହିନ୍ଦୁଧର୍ମରେ ଶାସ୍ତ୍ର ଆଧାରରେ ଭୋଗବାଦକୁ ଦାନବିକ ଆଖ୍ୟା ଦିଆଯାଇଛି । ରାବଣ, କଂସ, ମହିଷାସୁର ଆଦି ଅସୁର ଭୋଗବାଦର ଶିକାର ହୋଇଛନ୍ତି । କିନ୍ତୁ ଆମ ସମୟର ଇଣ୍ଟରନେଟ୍ ବାବା ମାନେ ଭୋଗବାଦ ବିରୁଦ୍ଧରେ ଗର୍ଜୁଥିବା ବେଳେ ଆସନ ତଳେ ମୋବାଇଲ ଫୋନ୍ ଓ କକ୍ଷ ମଧ୍ୟରେ ଏୟାର କଣ୍ଡିସନର ଭୋଗବାଦର ନୀରବ ସୈନିକ ଭାବରେ ସେମାନଙ୍କର କାମ ସମ୍ପାଦନ କରି ଚାଲିଥାନ୍ତି । ପୁଣି ଦୁଇ ଚାରିଲକ୍ଷ ଭେଟି ନଦେଲେ ଏମାନଙ୍କ ପାଟିରେ ତାଲା ପଡ଼ିଯାଏ । ଭୋଗବାଦ ପ୍ରତିରୋଧର ଦ୍ୱାହି ଦେଇ ପୂର୍ବତନ ଗଡ଼ଜାତ ମାନଙ୍କରେ ରାଜନ୍ୟ ବର୍ଗ ପ୍ରଜାମାନଙ୍କୁ ଉଦ୍ଦେଶ୍ୟମୂଳକ ଭାବରେ ଗରିବ ରଖୁଥିଲେ, ପ୍ରଜାମାନଙ୍କୁ ଛାତପକା ଘର ନିଷିଦ୍ଧ ଥିଲା । ଗୃହ ସମ୍ମୁଖରେ କାରୁକାର୍ଯ୍ୟ ସମ୍ପନ୍ନ ମହାର୍ଘ ଗବାକ୍ଷର ବ୍ୟବହାର ତଥା ନାରୀ ଓ ପୁରୁଷ ମାନଙ୍କର ସ୍ୱର୍ଣ୍ଣାଦି ଅଳଙ୍କାର ପରିଧାନ ଉପରେ ଅଘୋଷିତ ପ୍ରତିବନ୍ଧକ ଥିଲା । ହେତୁବାଦୀ ମାନେ ଏପରି ଅଯୌକ୍ତିକ ଯୁକ୍ତିକୁ ବେଖାତିର କରନ୍ତି । କାରଣ ସେମାନେ ସେପଟ ସୁଖ ଉପରେ ବିଶ୍ୱାସ ରଖନ୍ତି ନାହିଁ । କନ୍‌ଫୁସିୟସ କହିଛନ୍ତି ଜୀବନ ଉପରେ ଧ୍ୟାନ ରଖ, ମରଣ ପଛରେ ଗୋଡ଼ାଇଛ କାହିଁକି ?

ଈଶ୍ୱରବିଶ୍ୱାସୀର ମତ ଯେ ଇନ୍ଦ୍ରିୟ ଦ୍ୱାରା ଈଶ୍ୱରଙ୍କୁ ଜାଣିହେବ ନାହିଁ । ଖୋଦ୍ ଭଗବଦଗୀତାରେ ଈଶ୍ୱର କହିଛନ୍ତି, "ମୁଁ ସକଳ ସୃଷ୍ଟିର ଆଧାର, ମୁଁ ତମ ସମସ୍ତଙ୍କୁ ଜାଣେ, ମାତ୍ର ତମେ ମୋତେ କଦାପି ଜାଣି ପାରିବ ନାହିଁ ।" ବାଇବେଲର ପୁରାତନ ପୁସ୍ତକରେ ପଶୁପାଳକ ଜୋବ୍‌କୁ ସଦା ପ୍ରଭୁ ଠିକ୍ ଏହି କଥା ହିଁ କହିଛନ୍ତି । ଜୋବ୍ ଅତ୍ୟନ୍ତ ନୀତିବାନ, ଧାର୍ମିକ, ପରୋପକାରୀ ଓ ବିବେକବନ୍ତ ଥିଲେ । ନିୟମିତ ଈଶ୍ୱର ଆରାଧନା କରୁଥିଲେ । ମାତ୍ର ସେ  ଅସାଧ୍ୟ ଚର୍ମରୋଗରେ ଆକ୍ରାନ୍ତ ହେଲେ, ଈଶ୍ୱରଙ୍କ ଉପରେ ଅଭିମାନ କଲେ । ବିନା ପାପରେ ସେ କାହିଁକି ଦଣ୍ଡିତ ହେଉଛନ୍ତି ବୋଲି ପ୍ରଶ୍ନ କଲେ । ସଦାପ୍ରଭୁ ଉତ୍ତର ଦେଲେ "ତମେ ମଣିଷ । ତମର ଜ୍ଞାନ ସୀମାବଦ୍ଧ । ତମର ଦର୍ଶନ, ଶ୍ରବଣ, ଚର୍ବଣ,  ଆଘ୍ରାଣ-

ସବୁ ସୀମିତ । ଜ୍ଞାନ ମଧ୍ୟରେ ଅସୀମକୁ ଜାଣିବ କିପରି ?" ବିଭିନ୍ନ ଧର୍ମର ବଡ଼ପଣ୍ଡା ମାନେ ଦାବି କରନ୍ତି ଯେ ଈଶ୍ୱର ଅନନ୍ତ, ଅସୀମ, ଅପରିମିତ ଓ ଅବ୍ୟକ୍ତ, କିନ୍ତୁ ତାଙ୍କୁ ଅନୁଭବ କରି ହେବ, ଦେଖି ହେବନାହିଁ । ଆମ ସମୟରେ କିଛି ରହସ୍ୟମୟ ଧର୍ମପ୍ରାଣ ବ୍ୟକ୍ତି ଏପରି ଏକ ଅନୁଭବର ଦୃଢ଼ ସମର୍ଥକ ଅଛନ୍ତି ।

ଇଟାଲୀୟ ଦାର୍ଶନିକ ବେନୋଡେଟୋ କ୍ରୋକ୍‌ଙ୍କ ମତରେ ଆମ ଜାଣିବାର, ଅନୁଭବ କରିବାର ଏକମାତ୍ର ମାଧ୍ୟମ ହେଉଛି ଭାଷା । ଏପରି କିଛି ଜିନିଷ ନାହିଁ ଯାହାକୁ ଆପଣ ଜାଣିଛନ୍ତି କିନ୍ତୁ ଭାଷାରେ ପ୍ରକାଶ କରି ପାରୁନାହାନ୍ତି । ଭାଷାରେ କୌଣସି ବିଷୟ ପ୍ରକାଶ କରିପାରୁ ନାହାନ୍ତିର ଏକମାତ୍ର ଅର୍ଥ ହେଉଛି ଯେ ଆପଣ ସେ ବିଷୟଟି ମୋଟେ ଜାଣି ନାହାନ୍ତି । ଧର୍ମ ସେପଟ ବିଶ୍ୱ ପାଇଁ "ତତ୍ତ୍ୱମୀମାଂସା ବା ମେଟାଫିଜିକ୍‌ସ ଶବ୍ଦଟିକୁ ପ୍ରୟୋଗ କରେ । ମାତ୍ର ହେତୁବାଦୀ କେବଳ ଫିଜିକ୍‌ସ ଉପରେ ନିର୍ଭରଶୀଳ ତେଣୁ ସେ ମେଟାଫିଜିକ୍ସ ମାୟାରେ ଧନ୍ଦି ହୁଏ ନାହିଁ । ହେତୁବାଦୀ ଦାର୍ଶନିକ ଭୋଲ୍‌ଟେୟାରଙ୍କର ଉକ୍ତିଟି ପ୍ରଣିଧାନ ଯୋଗ୍ୟ:- ମେଟାଫିଜିକ୍ସ ବା ତତ୍ତ୍ୱମୀମାଂସାର ଦୁଇଟି ଭାଗ ରହିଛି : ପ୍ରଥମ ଭାଗ - ଯାହା ଇନ୍ଦ୍ରିୟଦ୍ୱାରା ସବୁ ମଣିଷ ଜାଣନ୍ତି ଓ ଦ୍ୱିତୀୟଭାଗ ଯାହା ସେମାନେ କେବେ ବି ଜାଣିପାରିବେ ନାହିଁ । ହେତୁବାଦୀର ଦୁନିଆଁ ତା ଚାରିପାଖରେ ପଡିଛି । ମଣିଷ ହେଉଛି ତା ଦୁନିଆଁର କେନ୍ଦ୍ରବିନ୍ଦୁ । ସେ କିପରି ଭଲରେ ରହିବ, ଭଲ ଖାଇବ, ଭଲ ପିନ୍ଧିବ, ମୁକ୍ତ ଚିନ୍ତା କରି ପାରିବ, ଶୃଙ୍ଖଳମୁକ୍ତ ଜୀବନ ଯାପନ କରିପାରିବ- ଏଇଟା ହେଉଛି ହେତୁବାଦୀର ପ୍ରଥମ ଓ ପ୍ରଧାନ ଚିନ୍ତା । ଈଶ୍ୱରବିଶ୍ୱାସୀ ଈଶ୍ୱରଙ୍କ ଏକଛତ୍ରବାଦ ପ୍ରତିଷ୍ଠା ପାଇଁ ଉଛନ୍ନ । ସେ ସ୍ୱର୍ଗରାଜ୍ୟ ଚିନ୍ତାରେ ମସଗୁଲ । ତାର ମତ ହେଲା, ଯେଉଁ ଲୋକଟି ଈଶ୍ୱରଙ୍କୁ ବିଶ୍ୱାସ କରୁଛି ସେ ସମସ୍ତ ସାହାଯ୍ୟ ସହଯୋଗର ହକ୍‌ଦାର । ଅନ୍ୟଥା ସେ ରାକ୍ଷସ, ଶଇତାନର ଗୋଲାମ ଏବଂ ଶାରୀରିକ ନିର୍ଯ୍ୟାତନା ଏପରିକି ମୃତ୍ୟୁଦଣ୍ଡ ପାଇଁ ହକ୍‌ଦାର ।

ପ୍ରାଚୀନ ଗ୍ରୀସରେ ଏପିକ୍ୟୁରସ୍ ଥିଲେ ଜଣେ ପ୍ରବୀଣ ଶିକ୍ଷକ ଓ ବିଖ୍ୟାତ ଦାର୍ଶନିକ । ସେ ଈଶ୍ୱରଙ୍କୁ ସିଧା ସଳଖ ପ୍ରତ୍ୟାଖାନ କରୁ ନଥିଲେ କାରଣ ତାଙ୍କର ପୂର୍ବଜ ସକ୍ରେଟିସ ଗ୍ରୀସ୍‌ର ଈଶ୍ୱର ମାନଙ୍କୁ ଅବମାନନା କରୁଥିବା ଅଭିଯୋଗରେ ପ୍ରାଣଦଣ୍ଡ ପାଇଥିଲେ । ମାତ୍ର ସେ ଚତୁରତାର ସହ କହୁଥିଲେ ଯେ ଦେବତା ମାନେ ଅଲୌକିକ ଶକ୍ତିର ଅଧିକାରୀ ନୁହନ୍ତି । ମଣିଷକୁ ପୁରସ୍କୃତ କିମ୍ବା ଦଣ୍ଡିତ କରିବାର କ୍ଷମତା ସେମାନଙ୍କର ନାହିଁ । ସେ ମଧ୍ୟ ମରଣୋତ୍ତର ଜୀବନକୁ ଦୃଢ଼ ବିରୋଧ କରୁଥିଲେ । କହିବା ବାହୁଲ୍ୟ ଯେ ନାସ୍ତିକତା ଅଭିଯୋଗରେ ତାଙ୍କୁ କ୍ରୀଟ୍‌ରୁ ଦେଶାନ୍ତର ଶାସ୍ତି ମିଳିଥିଲା । ତଥା କଥିତ ପଣ୍ଡିତ ମାନେ ତାଙ୍କୁ ସୁଖ ସନ୍ଧାନୀ, ଭୋଗବାଦୀ, ଇନ୍ଦ୍ରିୟାସକ୍ତ ବ୍ୟଭିଚାରୀ ଅଭିହିତ କରନ୍ତି, କିନ୍ତୁ ଏପରି ଅଭିଯୋଗ ତଥ୍ୟରହିତ ଓ ଭିତ୍ତିହୀନ । ଏପିକ୍ୟୁରସ ବନ୍ଧୁତା ଓ ପ୍ରକୃତି ପ୍ରେମକୁ ହିଁ ପ୍ରକୃତ ସୁଖ ବିଚାର କରୁଥିଲେ ।

ପୁରୋହିତ ଓ ଶାସକ ମାନଙ୍କର କୁଚକ୍ରୀ ଗୋଷ୍ଠୀ ସଲା ସୁତୁରାରେ ଧର୍ମକୁ ସମାଜ ଉପରେ ଲଦି ଦିଅନ୍ତି । ଧର୍ମ ଗୋଷ୍ଠୀଚେତନାର ବିକାଶ ଘଟାଇବା ସହିତ ବ୍ୟକ୍ତି ସ୍ୱାଧୀନତାକୁ ଧ୍ୱଂସ କରେ । ହେତୁବାଦୀ ବ୍ୟକ୍ତି ସ୍ୱାଧୀନତାର ପ୍ରବଳ ସମର୍ଥକ, ତେଣୁ ସେ ଧର୍ମର ଅନ୍ଧ ଦିଗନ୍ତକୁ ସମୀକ୍ଷା ଓ ବିଶ୍ଳେଷଣ କରିବା କ୍ଷଣି ପୁରୋହିତ-ଶାସକ କୁଚକ୍ରୀ ଗୋଷ୍ଠୀ ତାକୁ ବିଧର୍ମୀ ଆଖ୍ୟା ଦେଇ ନାନାଦି ଯନ୍ତ୍ରଣା ଦିଅନ୍ତି । ଧର୍ମ ହେଉଛି ସାମ୍ପ୍ରଦାୟିକତାବାଦର ଜନନୀ । ଶିୟା-ସୁନ୍ନୀ, କ୍ୟାଥୋଲିକ-ପ୍ରୋଟେଷ୍ଟାଣ୍ଟ, ଇହୁଦୀ-ଇସଲାମ, କିରସ୍ଥାନ- ପଠାଣ ବିଦ୍ୱେଷ ଯୋଗୁଁ ଅତୀତରେ ଲକ୍ଷ ଲକ୍ଷ ଲୋକଙ୍କର ଜୀବନ ହାନୀ ଘଟିଛି । ୧୯୪୭ ମସିହାରେ ହିନ୍ଦୁ-ମୁସଲମାନ ଦଙ୍ଗାରେ ଦଶଲକ୍ଷ ଲୋକଙ୍କ ମୃତ୍ୟୁ ଘଟିବା ସହିତ କୋଟି କୋଟି ମଣିଷ ବାସଚ୍ୟୁତ ହେଲେ । ହିନ୍ଦୁ ଧର୍ମରେ ପୁରୋହିତ-ଶାସକ କୁଚକ୍ରୀ ଗୋଷ୍ଠୀ ଈଶ୍ୱରଙ୍କ ଦ୍ୱାହି ଦେଇ ଜାତିବାଦ ସୃଷ୍ଟି କଲେ । ଜାତି ମାଧମରେ ଜାତିଆଣ ବିଦ୍ୱେଷ ସୃଷ୍ଟି ହେଲା ଯାହାର ବିଷଜ୍ୱାଳାକୁ ସଂବିଧାନ ବି ଏପର୍ଯ୍ୟନ୍ତ ପ୍ରଶମିତ କରିପାରି ନାହିଁ । ଈଶ୍ୱର ଓ ତାଙ୍କ ଅନୁଚର ମାନଙ୍କର ନିଷ୍ଠୁର ଅନୁଶାସନକୁ ହଜାର ହଜାର ବର୍ଷ ଧରି ବିରୋଧ କରି ଆସିଛନ୍ତି ହେତୁବାଦୀମାନେ । ବିଶ୍ୱାସକୁ ଘୃଣା କରୁଥିବା ଯୋଗୁଁ ହେତୁବାଦୀ ଧର୍ମ ଓ ଈଶ୍ୱରଙ୍କୁ କଟାକ୍ଷ କରେ । ରୋମାନ କବି ଲୁକ୍ରେସିୟସଙ୍କ ମତରେ ମର୍ତ୍ତ୍ୟରେ ଈଶ୍ୱର ସୃଷ୍ଟି ହେବାର ମୂଳ ଉପାଦାନ ହେଉଛି ଭୟ । ଥମାସ ହବସଙ୍କ ମତରେ ଧର୍ମ ହେଉଛି କାଳରାତ୍ରୀର ସାମ୍ରାଜ୍ୟ । ଭୋଲ୍‌ଟେୟାର ଫରାସୀ ଲେଖକ ଓ ଦାର୍ଶନିକ କହିଛନ୍ତି ଯେ ପ୍ରଥମ ଦିବ୍ୟପୁରୁଷ ହେଉଛି ପ୍ରଥମ ଭ୍ରଷ୍ଟ ବ୍ୟକ୍ତି ଯେ ପ୍ରଥମ ମୂର୍ଖକୁ ଭେଟିଛନ୍ତି । ତାଙ୍କର ଅନ୍ୟମତ ଟି ହେଉଛି:- ଈଶ୍ୱର ସଦାକାଳେ ଦୁର୍ଦ୍ଦାନ୍ତ, ବିଶାଳ ସେନା ବାହିନୀର ସମର୍ଥକ । ଡେଭିଡହ୍ୟୁମ - : (ଇଂରେଜ ଦାର୍ଶନିକ) ଯଦି ଆତ୍ମା ବୋଲି କିଛି ଅଛି ତାହା ଶରୀର ପରି ମୃତ୍ୟୁ ପ୍ରବଣ । ରବର୍ଟ ଗ୍ରୀନ ଇଂଗରସୋଲ : - (ପ୍ରସିଦ୍ଧ ଆମେରିକୀୟ ଲେଖକ ଓ ବକ୍ତା) - ବିଶ୍ୱାସାଧୀନ ମଣିଷ ଜାଲି ଘେରା ବାକ୍ସ ମଧ୍ୟରେ ଆବଦ୍ଧ ବିହଂଗମ । ମୁକ୍ତ ଚିନ୍ତକଟି ଇଗଲ ପରି ଡେଣା ଉନ୍ମୁକ୍ତ ରଖି ଦାର୍ଗମ୍ୟାର ଘନବାଦଲର କାଳିମାକୁ ଭେଦ କରୁଥାଏ । ଆବ୍ରାଞ୍ଜି ବିୟେର୍ସ: - ଆମେରିକୀୟ ବ୍ୟଙ୍ଗ ସାହିତ୍ୟିକ - ୧. ସନ୍ଥ ହେଉଛି ଶଇତାନର ପରିମାର୍ଜିତ ଓ ସଂପାଦିତ ସଂସ୍କରଣ । ୨. ଧର୍ମ ହେଉଛି ଭୟ ଓ ଆଶାର ଅଲିଅଳୀ କନ୍ୟା ଯେ କି ଅଜ୍ଞାନୀଙ୍କୁ ଅଚିନ୍ତ୍ୟର ସ୍ୱରୂପ ଉପରେ ପ୍ରବଚନ ପ୍ରଦାନ କରେ । ମଣିଷର ଈଶ୍ୱରଙ୍କ ପ୍ରତି ଏବଂ କୁକୁରର ମଣିଷ ପ୍ରତି ପ୍ରଦର୍ଶିତ ଭାବାତ୍ମକ ଆଚରଣ ହେଉଛି ଭକ୍ତି । ନିତସେ:- ୧. ଈଶ୍ୱରଙ୍କର ଏକମାତ୍ର ବ୍ୟଖ୍ୟା ହେଉଛି ଯେ ସେ ଅବିଦ୍ୟମାନ । ୨. ବାଇବେଲରେ ଯୀଶୁଙ୍କ ବର୍ଣ୍ଣନା ଏକ ବିସ୍ମୟକର ଇନ୍ଦ୍ରଜାଲ । ଧର୍ମ ଓ ଈଶ୍ୱରଙ୍କ ସମ୍ପର୍କରେ ଏପରି ମତ ଉପସ୍ଥାପନ କରୁଥିବା ଉପରୋକ୍ତ ବ୍ୟକ୍ତିମାନେ ମାନବ ସଭ୍ୟତାର ଗୋଟିଏ ଲେଖାଏ ମାଇଲ ଖୁଣ୍ଟ । ମାନବ ସେବାରେ ସମର୍ପିତ ଏହି ମହାମାନବ ମାନଙ୍କର ଚିନ୍ତାଧାରାକୁ

କେବଳ ଦୁଇଟି ବାକ୍ୟରେ ପ୍ରକାଶ କରାଯାଇପାରେ । ଜୀବନକୁ ଭଲପାଅ । ମୃତ୍ୟୁ ଚିନ୍ତାରେ ଛନ୍ଦି ହୁଅନାହିଁ । ବିବର୍ତ୍ତନବାଦ ଅନୁସାରେ ମଣିଷ ସଙ୍ଘର୍ଷ କରି ବଞ୍ଚି ଆସିଛି ଏବଂ ଏ ସଙ୍ଘର୍ଷର ବିରାମ ନାହିଁ । ପ୍ରକୃତି, ପାଣିପାଗ, ଭୂଗୋଳ- ସମସ୍ତେ ସମୟାନୁକ୍ରମେ ରଙ୍ଗ ବଦଳାଉଛନ୍ତି । ସେମାନଙ୍କ ସହ ତାଳ ରଖି ବଦଳିଲେହିଁ ମଣିଷ ଜାତି ରହିବ ନଚେତ ଅନ୍ୟ ବହୁ ପ୍ରଜାତି ପରି ଧ୍ୱଂସ ପାଇଯିବ । ଏହି ବଦଳିବାହିଁ ପ୍ରତିକ୍ଷଣରେ, ପ୍ରତି ମୁହୂର୍ତ୍ତରେ ଆମ ଅଲକ୍ଷ୍ୟରେ ଘଟିଛି । ୧୮୫୭ ମସିହାରେ ଡାରଉଇନଙ୍କ ଉଦ୍ଭାବିତ ଏ ସିଦ୍ଧାନ୍ତ (ବିବର୍ତ୍ତନବାଦ) ଗୋଟିଏ ସୈଦ୍ଧାନ୍ତିକ ବିଚାର ଆଡକୁ ଅଙ୍ଗୁଳି ନିର୍ଦ୍ଦେଶ କରେ- ବଦଳିବାଟା ଜୀବନ, ସ୍ଥାଣୁତ୍ୱ ହେଉଛି ନିର୍ବାପନ । ପ୍ରଣିଧାନ ଯୋଗ୍ୟ ଯେ ବିବର୍ତ୍ତନର ପ୍ରତିଟି ସୋପାନରେ ମଣିଷର ଜୀବନଧାରା ପରିବର୍ତ୍ତିତ ଘଟୁଛି । ବିବର୍ତ୍ତନର ଏ ଧାରା ହଠାତ୍ ଚିହ୍ନଟ କରି ହୁଏ ନାହିଁ । କିନ୍ତୁ ମଣିଷ ଜାତିର ଦୀର୍ଘ ଜୀବନ ପ୍ରବାହକୁ ନିରୀକ୍ଷଣ କଲେ ଏହା ଅନୁଭୂତ ହୁଏ । ଉଦାହରଣ ସ୍ୱରୂପ ଲୌହଯୁଗ ମଣିଷର ଚାଲିଚଳନ, ରୀତି ନୀତି, ବିଶ୍ୱାସ ଓ ସାମାଜିକ ବ୍ୟବସ୍ଥା ମଧ୍ୟଯୁଗୀୟ ମଣିଷର ଜୀବନଧାରାଠାରୁ ଅଲଗା । ସେହି ପରି ଆମ କାଳର ସାମାଜିକ ପରଂପରା, ସଂସ୍କାର, ଅର୍ଥନୈତିକ ଜୀବନ ଯାପନ ମଧ୍ୟଯୁଗୀୟ ଜୀବନ ଧାରାଠାରୁ ଭିନ୍ନ । ଇତିହାସ ମଣିଷର ଏହି ବିବର୍ତ୍ତିତ ଧାରାର ଚଳନ୍ତିକା ହୋଇଥିବାରୁ ଏହି ସୂକ୍ଷ୍ମ ପରିବର୍ତ୍ତନ ଧାରାକୁ ଭଲଭାବରେ ଲିପିବଦ୍ଧ କରିଥାଏ । ତେଣୁ ପ୍ରସିଦ୍ଧ ଚୀନା ଦାର୍ଶନିକ କନଫୁସିୟସ୍ ତାଙ୍କର ଅନୁଗତ ମାନଙ୍କୁ ପ୍ରଚୁର ଇତିହାସ ପଠନ ପାଇଁ ଉପଦେଶ ଦେଉଥିଲେ । ଜୀବନଧାରାର ଏକ ଚଳମାନ ବିବୃତି ହୋଇଥିବାରୁ ଇତିହାସ ବି କୌଣସି ଗୋଟିଏ ଜାଗାରେ ଅଟକି ଯାଏ ନାହିଁ, ଦେଶ, କାଳ ଭେଦ ଭିତ୍ତିରେ ବଦଳୁଥାଏ, ଆଗକୁ ବଢୁଥାଏ । ମୋଟ ଉପରେ ଇତିହାସ ହେଉଛି ପରିବର୍ତ୍ତନର ଏକ ନିର୍ଭରଯୋଗ୍ୟ ଦସ୍ତାବିଜ । ପୁରୁଣା ଜୀବନଶୈଳୀର କ୍ରମିକ ଅବକ୍ଷୟ ଘଟୁଥିବା କଥା ସତ୍ୟ । ଏହାର ଏକମାତ୍ର ଉତ୍ତର ହେଉଛି ଯେ ଯାନ୍ତ୍ରିକ ସଭ୍ୟତା ପୁରୁଣା ବୃତ୍ତିର ସହଜ ଓ ଉନ୍ନତ ବିକଳ୍ପ ବାହାର କରିଛି, ତେଣୁ ପୁରୁଣା ମୂଲ୍ୟବୋଧରେ ସଂଶୋଧନ ହେଉଛି, ନୂଆ ମୂଲ୍ୟବୋଧର ପ୍ରସାର ଘଟୁଛି । ପୁରୁଣା ବେପାର ସାଜିଛି ଫଟା ଚଡ଼ତଡି । ପରିବର୍ତ୍ତନ ଏକ ସ୍ୱାଭାବିକ ପ୍ରକ୍ରିୟା ଓ ଏହା ଅବ୍ୟାହତ ରହିବ ।

ଆମର ସାମାଜିକ, ସାଂସ୍କୃତିକ, ନୈତିକ ମୂଲ୍ୟବୋଧର ମୂଳ ନିୟନ୍ତ୍ରକ ହେଉଛି ଅର୍ଥନୀତି । ଅର୍ଥନୈତିକ ବ୍ୟବସ୍ଥାର ମୂଳ ଖମ୍ବ ହେଉଛନ୍ତି ଚାହିଦା ଓ ଯୋଗାଣ । ଏହି ଚାହିଦା ଓ ଯୋଗାଣ ବ୍ୟବସ୍ଥାରେ ଯେତେ ଦ୍ରୁତ ପରିବର୍ତ୍ତନ ଘଟିବ, ସମାଜର ଶ୍ରମ ବ୍ୟବସ୍ଥା, ସାମାଜିକ ଓ ସାଂସ୍କୃତିକ ବ୍ୟବସ୍ଥାରେ ତଦନୁରୂପ ପରିବର୍ତ୍ତନ ଘଟିବ । କୌଳିକ ବୃତ୍ତି ମଧ୍ୟ ଚାହିଦା ଓ ଯୋଗାଣ ନିୟମ ଉପରେ ନିର୍ଭରଶୀଳ । ପୂର୍ବେ ବୟନ ଶିଳ୍ପ ଆମ ଆଭିଜାତ୍ୟର ସନ୍ତକ ଥିଲା । ବସ୍ତ୍ରକଳା ବେଶ୍ ଉନ୍ନତ ଥିଲା । କାଳକ୍ରମେ ଏହାର ଭଲ ଯାନ୍ତ୍ରିକ ବିକଳ୍ପ

ବାହାରିଲା, ଲୋକଙ୍କର ରୁଚି ବଦଳିଲା, ହସ୍ତତନ୍ତ ବସ୍ତ୍ରର ଚାହିଦା କମିଲା । ତା ଛଡା ତନ୍ତୀପୁଅ ବି ପାରମ୍ପରିକ ତନ୍ତୀ ହେବା ପାଇଁ ନାରାଜ । ସେ ପାଠ ପଢ଼ିଛି, ହାତରେ ଅନେକ ବିକଳ୍ପ । ଶିଳ୍ପ ସଭ୍ୟତା ତା ପାଇଁ ଅନେକ ନୂତନ କର୍ମର ବ୍ୟବସ୍ଥା କରିଛି, ଦରମା ଭଲ ଏବଂ ସେ ଯାହା ଅର୍ଜନ କରୁଛି ବୟନିକା ତାର କାଣିଚାଏ ବି ତାକୁ ଦେଇ ପାରି ନଥାନ୍ତା । ନୂଆ କର୍ମ କ୍ଷେତ୍ରରେ କୌଳିକ ବିଦ୍ୟା ଜନିତ ଜାତି ଭେଦାଭେଦ ଭାବନା ମଧ୍ୟ ନାହିଁ । ତାକୁ ଆଉ କେହି ତନ୍ତୀ କହିପାରିବେ ନାହିଁ । ପୁଣି ସବୁ କୌଳିକ ପ୍ରଥାର ଉନ୍ନତ ବିକଳ୍ପ ବାହାରି ଗଲାଣି । ଲୁଗା ସଫାହେବ, କେଶ କର୍ତନ ହେବ, ମାତ୍ର ସ୍ୱାଭିମାନ ଲୁଣ୍ଠିତ ହେବ ନାହିଁ । ଚାଉଳ ବି ମିଳିବ କିନ୍ତୁ କୁଟେଇ ଡୁଣୀର ହାଡ଼ଭଙ୍ଗା ବେଠିରୁ ନୁହେଁ । ମେସିନ ଧାନ ପେଷିବ । ଯନ୍ତ୍ର ଏସବୁ କର୍ମ ସାଧନ କରୁଥିବାରୁ ସମୟାନୁକ୍ରମେ ବହୁ କୌଳିକ ବୃତ୍ତିର ପ୍ରାଧାନ୍ୟ କମି ଗଲାଣି । କେଶ ବିନ୍ୟାସକାରୀ ସେଲୁନ ମାଲିକଟି ନାପିତ ନୁହେଁ ସେ ଏକ ସମାଜର କାର୍ଯ୍ୟକାରୀ ସଭାପତି । ଆମଘର ପାଖର ତେଲ ଲୁଣ ବିକ୍ରେତାଟି ତୈଳିକ ବୈଶ୍ୟ ନୁହେଁ, ନାମଟି ତାର ଶ୍ୟାମ ସୁନ୍ଦର ତ୍ରିପାଠୀ । ବାପା ପ୍ରଫେସର ଥିଲେ । ବାହା ହୋଇଛି କନ୍ଧମାଳର ନର୍ସ ଇସାବୋଲା ଡୀର୍କିକୁ । ଜାତିଗତ ଦ୍ୱେଷ ପ୍ରଶମିତ ହେବାରେ ଲାଗିଛି । ହୃଦୟର ମିଳନ ଧର୍ମର ଚକ୍ରବ୍ୟୂହକୁ ତୋଡ଼ଫୋଡ଼ କରିଦେଇଛି । ତଥାପି ସହରରେ ସେ ଭଦ୍ରବ୍ୟକ୍ତିଟି ଢେଙ୍କିକୁଟା ଚାଉଳ ପାଇଁ ବ୍ୟାଟିଂ କରୁଛି କାହିଁକି ? କାରଣଟି ହେଉଛି ସେ ପ୍ରଗତି ଓ ପରିବର୍ତ୍ତନରେ ଅତିଷ୍ଠ । ସେ ସ୍ଥିତାବସ୍ଥାର ଚମ୍ପିୟାନ । ମୌଳବାଦୀ ପଛକୁ ଫେରିବାର ଯୋଜନା କରେ । ଆଉ ଯେଉଁମାନେ ଅନାଗତକୁ ଆମନ୍ତ୍ରଣ ଦିଅନ୍ତି, ସେମାନେ ହେଲେ ପ୍ରଗତିବାଦୀ, ସେମାନେ ଆଗକୁ ଚାଲନ୍ତି, ଅବଶ୍ୟ ପଛକୁ ସିଂହାବଲୋକ କରିବାକୁ ଭୁଲନ୍ତି ନାହିଁ । ଆମେ କୁଆଡ଼କୁ ଯିବା ? ଆଗକୁ ନା ପଛକୁ । ପ୍ରାଚୀନ ଭାରତର ଏକ ସାମନ୍ତବାଦୀ ପରିଚୟ ଥିଲା । ଏପରି ସମାଜରେ ଦଳେ ଲୋକ ଖଟନ୍ତି ଏବଂ ସେମାନଙ୍କ କଷ୍ଟୋପାର୍ଜିତ ଧନରେ ପୁରୋହିତ, ରାଜା ଓ କାନୁଗୋଇ ମାନେ ଅୟସ୍କାନ୍ତ ଜୀବନ ଉପଭୋଗ କରନ୍ତି । ଉପଭୋଗ ସାମଗ୍ରୀ ସେମାନଙ୍କ ଅକ୍ତିଆରରେ ଥିଲା । ଶିଳ୍ପ ଓ ପ୍ରଯୁକ୍ତି ବିଦ୍ୟାର ବିକାଶ ଯୋଗୁଁ ଉକ୍ତ ସାମଗ୍ରୀ ଗୁଡିକ ସାଧାରଣ ମଣିଷର ପହଞ୍ଚକୁ ଆସିଗଲା । ଆଗେ ପୁରୋହିତ, ରାଜା ଓ ରାଜାନୁଗ୍ରହୀ ବ୍ୟକ୍ତି କହୁଥିଲେ ନୀଚ ବର୍ଗୀୟ ମାନେ ଶୁଣୁଥିଲେ । ଶିକ୍ଷାର ବ୍ୟାପକ ପ୍ରସାର ଯୋଗୁଁ ଏବେ ତଳତଳିଆ ବର୍ଗ ବି ବାକ୍ୟ ବିନ୍ଧାଣୀ ପାଲଟି ଗଲେଣି । ଏ ପ୍ରକାର ପରିବର୍ତ୍ତନ ଦଳେ ଲୋକଙ୍କ ଦେହସୁହା ହେଉନାହିଁ । ସେଇମାନେହିଁ ସ୍ଥିରତାର ସପ୍ତସ୍ୱର ବଜାଉଛନ୍ତି । ତେବେ ସଂଖ୍ୟାଧିକ ଲୋକ ଭବିଷ୍ୟତର କଳ୍ପନାରେ ମସଗୁଲ । ସେମାନେ ନୂଆ ସୁଖ, ନିଆରା ଅନୁଭବର ଚିର ସନ୍ଧାନୀ, ସେମାନଙ୍କୁ ସମାଜ, ସଂସ୍କାର କିମ୍ବା ଆଦର୍ଶର ଦ୍ୱାହି ଦେଇ ଅଟକାଇ ହେବ ନାହିଁ । ସ୍ଥିତାବସ୍ଥାରେ ସେମାନଙ୍କର ଆଗ୍ରହ ନାହିଁ, ପରିବର୍ତ୍ତନ ହିଁ ସେମାନଙ୍କର

ବଞ୍ଚିବାର ଚାବିକାଠି । ଅତୀତକୁ ଝୁରୁଥିବା ବ୍ୟକ୍ତିଟି ରକ୍ଷଣଶୀଳ । ତାର ମୂଳ ବିଚାରଟି ହେଉଛି, ଯାହାଥିଲା ତାହା ଥାଉ, ଇତିଶ୍ରୀ ବାଞ୍ଛା ସାହୁ' ।

ମୁଖ୍ୟତଃ ଧର୍ମହିଁ ଅତୀତ ଉପରେ ଗଭୀର ଆସ୍ଥା ରଖେ, ଆଉ ଆମ ଆଚାର ବିଚାର ଓ ସାଂସ୍କୃତିକ ଜୀବନର ଅଶୀ ପ୍ରତିଶତ କାର୍ଯ୍ୟଧାରାକୁ ନିୟଂତ୍ରଣ କରେ । ପୃଥିବୀର ସବୁଧର୍ମ ଗୋଟିଏ କଥାରେ ସହମତ । ଅତୀତ ଗୌରବମୟ ଥିଲା । ଦେବତା ଓ ମଣିଷ କାନ୍ଧକୁ କାନ୍ଧ ମିଳାଇ ବଞ୍ଚୁଥିଲେ । ସତ୍ୟ ଓ ନ୍ୟାୟର ରକ୍ଷା ପାଇଁ ବେଳେବେଳେ ମଣିଷ ମଧ ଦେବତା ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ଦେଉଥିଲା । ମଣିଷ ଏତେ ଶୁଦ୍ଧ ଓ ବିଚାରବନ୍ତ ଥିଲା ଯେ ଦେବତାମାନେ ତାକୁ ଖାତିର କରୁଥିଲେ, ସହଯୋଗର ହସ୍ତ ପ୍ରସାରିତ କରୁଥିଲେ । ମଣିଷକୁ ସେଇ ଅତୀତକୁ ଫେରିବାକୁ ହେବ । ଏପରି ବିଶ୍ୱାସ ଯୋଗୁଁ ଧର୍ମାଧୀଶ ମାନେ ସବୁ କାଳରେ ପ୍ରଗତିର କଣ୍ଠରୋଧ କରି ଆସିଛନ୍ତି, କାରଣ ପ୍ରଗିତବାଦୀ ଚିନ୍ତା ଏକ ନିର୍ଦ୍ଧାରିତ ସତ୍ୟ ଉପରେ ବିଶ୍ୱାସ ରଖେ ନାହିଁ । ଧର୍ମାଧୀଶ କହେ ଯେ ଆଦାମ ଓ ଇଭ ମଣିଷ ସମାଜର ଆଦି ପିତାମାତା । ଡାରଓ୍ୱିନଙ୍କ ବିବର୍ତ୍ତନବାଦ କହେ ଯେ ଆଦାମ ଓ ଇଭଙ୍କର କୋଟି କୋଟି ବର୍ଷ ପୂର୍ବରୁ ମଧ ମଣିଷ ଥିଲା । ଆଦାମ ଓ ଇଭ୍ ରୂପରେ ପ୍ରକାଶିତ ହେବା ପୂର୍ବରୁ ସେ ବିଭିନ୍ନ ଅବସ୍ଥା ଓ ଆକାର ମଧ ଦେଇ ଗତି କରିଛି- ଜେଲିରୁ ଆରମ୍ଭ କରି ମାଙ୍କଡ଼ ଓ ନିଏଣ୍ଡରଥାଲ ମଣିଷ ପର୍ଯ୍ୟନ୍ତେ । ଏମାନେ ବି ଆଦାମର ପୂର୍ବଜ । ମାତ୍ର ଧର୍ମ ଏହାକୁ ଗ୍ରହଣ କରେ ନାହିଁ, କାରଣ ବିବର୍ତ୍ତନକୁ ସ୍ୱୀକାର କଲେ ଧର୍ମର ସବୁ ମୌଳିକ ତତ୍ତ୍ୱ ଅଚଳ ହୋଇଯିବ । ସବୁ ମୁଖ୍ୟ ଧର୍ମ ଅନ୍ତତଃ ଗୋଟିଏ ପ୍ରାଥମିକ ସିଦ୍ଧାନ୍ତରେ ଏକମତ । ଆଦି ମାନବ ଗୁଡାକ ସୁନାମୁଣ୍ଡା ଥିଲେ । ଆଦାମ, ଇଭ, ମୂଳରୁ ସଚ୍ଚୋଟ, ସରଳ, ନିଷ୍କପଟ ଓ ସତ୍ୟବନ୍ତ ଥିଲେ । ଆମ ସତ୍ୟଯୁଗ ମଣିଷ ଗୁଡା ତ ସୁନା ପାତ୍ରରେ ଭୋଜନ କରୁଥିଲେ କାରଣ ସୁନାପ୍ରତି ସେମାନଙ୍କର ଅଯଥା ମୋହ ନଥିଲା । ପାଣ୍ଡୋରା ବାକ୍ସଟା ଖୋଲାଯିବା ପୂର୍ବରୁ ଗ୍ରୀକ୍‌ମାନେ ବି ଅତି ନିର୍ମଳ ଥିଲେ, ଚେହେରା ସୁନା ପରି ଝଟକୁ ଥିଲା- ହଳଦୀ ଗରଗର ପରି ଦେଖା ଯାଉଥିଲେ । ମାତ୍ର ଯେଉଁ ମୁହୂର୍ତ୍ତରେ ସେମାନଙ୍କୁ ବିଷୟାର ମୋହ ଘାରିଲା ସେମାନଙ୍କର ଅଧୋଗତି ଆରମ୍ଭ ହେଲା । ଖସିଗଲା ଗୋଡ଼ ତଳକୁ ତଳକୁ-ସତ୍ୟ ଯୁଗରୁ ଖସି ଖସି କଳିଯୁଗରେ ରହିଲାଣି । ଗୋଡ଼ ସେମିତି ଖସି ଚାଲିଛି, ଥମିବାର ନାଆଁ ଧରୁନାହିଁ । ଅତୀତଟା ଧର୍ମାଧୀଶ ମାନସରେ ଦାଉ ଦାଉ ହୋଇ ଜଳୁଛି । ଏଇଥି ଯୋଗୁଁ ଦଳେ ଲୋକଙ୍କର ଅତୀତ ପାଇଁ ଏତେ ଶ୍ରଦ୍ଧା । ସତୀଦାହ, ନରବଳି ଆଦି କୁକର୍ମରେ ଧର୍ମର ସମର୍ଥନ ଥିଲା । ପ୍ରଗତିବାଦୀ ଚିନ୍ତନ ଏହାକୁ ଜଘନ୍ୟ ନରହତ୍ୟା ଅଭିହିତ କରିଛି । ମାତ୍ର ନିକଟରେ ରାଜସ୍ଥାନର ଜଣେ ପୂର୍ବତନ ମହାରାଣୀ ତଥା ପ୍ରମୁଖ ସାଂସଦ ଘୋଷଣା କଲେ ଯେ ସ୍ୱଇଚ୍ଛାରେ ସତୀ ହେବା ଏକ ଗାରିମାମୟ ପରମ୍ପରା ଏବଂ ଶାସନ ଏଥିରେ ଅଯଥା ହସ୍ତକ୍ଷେପ କରିବା ଅନୁଚିତ ।

ସେହିପରି ପଶୁବଳି ଦେବା ସପକ୍ଷରେ ଧର୍ମାନ୍ଧ ବ୍ୟକ୍ତି ଉଦ୍ଭଟ ଯୁକ୍ତିର ଆଶ୍ରୟ ନିଅନ୍ତି । ସେମାନଙ୍କ ସହ ତାଳ ରଖି ଦଳେ ବହକାଲିଆ ସଂସ୍କୃତି ବିଶାରଦ ଏବେ ମଧ୍ୟ ଢେଙ୍କିକୁଟା ଚାଉଳ, ପୁରୁଣା ପଲଙ୍କ, ପୁରୁଣା ଛତା, ପୁରୁଣା କଠଉ, ପରୁଣା ବଡିଭଜା ଓ ଦହି ପଖାଳର ଚମ୍ପିୟନ । ଏମାନଙ୍କ ମଧ୍ୟରୁ ଅଧିକାଂଶ ହେଉଛନ୍ତି ତୁରନ୍ତକବି, ଗଳିତ ନଖଦନ୍ତ ଲେଖକ, ଖୁଚୁରା ଚିତ୍ରକର ଓ ଦର୍ଦ୍ଦୁର ରବା ରାଜନେତା । ଆଉ ଏମାନେ ସପନ ବୁଣିବାରେ ଧୁରନ୍ଧର ଭାଟଓ୍ୱାଡେକର । ଏମାନଙ୍କୁ ଅତୀତଟା ଚିନି ଚିନି ଲାଗେ, ଭବିଷ୍ୟତଟା ପିତା ଚିରେଇତା । ଏମାନେ ହେତୁବାଦୀ ବିଚାରର ଅଘୋଷିତ ଶତ୍ରୁ । କିଛି ଦିନ ତଳେ ଜଣେ ମନ୍ତ୍ରୀ ଘୋଷଣା କଲେ ଯେ ସରକାର ଭାଗବତ ଟୁଙ୍ଗିକୁ ପୁନରୁଦ୍ଧାର କରିବେ- ତାହା ପୁଣି ସରକାରୀ ଖର୍ଚ୍ଚରେ । ଏ ଭାଗବତ ଘର ଟି କି ପ୍ରକାର ଅନୁଷ୍ଠାନ ? ପ୍ରକୃତରେ ଏହା ଏକ ଧର୍ମସ୍ଥଳୀ । ଏଠି ଭାଗବତ ଗୋସାଇଁ ପୂଜା ପାଆନ୍ତି । ଏହା ଏକ ପୁରୁଷ ପ୍ରଧାନ ଅନୁଷ୍ଠାନ ଯେଉଁଠି ନାରୀର ଭୂମିକା ଆଦୌ ନାହିଁ କାରଣ ମନୁ ମହାରାଜ ବତେଇଛନ୍ତି ଯେ ମହିଳା ନାହି ତଳକୁ ଅପବିତ୍ର । ସେ ଭାଗବତ ଟୁଙ୍ଗିକୁ ପଶିବ କିପରି ? ସାମନ୍ତବାଦୀ ଶାସନରେ ଭାଗବତ ଗୋସେଇଁଙ୍କ ରକ୍ଷଣା ବେକ୍ଷଣ ପାଇଁ ଜମିବାଡ଼ି ଖଞ୍ଜା ଥିଲା ଯାହାକୁ ଆଜିକାଲି ଗ୍ରାମର ଜମି ମାଫିଆ ମାଡ଼ି ବସିଛି । ଏଠି ଯେଉଁ ନ୍ୟାୟ ନିଶାପ ହୁଏ ତାହା ଗ୍ରାମର କତିପୟ ଉଚ୍ଚ ବର୍ଗର ଲୋକଙ୍କ ଦ୍ୱାରା ସମ୍ପାଦିତ ହୁଏ କାରଣ ଭାଗବତ ଟୁଙ୍ଗିର ବାରଣ୍ଡାରେ ନୀଚ ବର୍ଗର ସ୍ଥାନ ନାହିଁ । ଏହି ଘରଟି ଗ୍ରାମର ଅଶୀ ପ୍ରତିଶତ ଲୋକଙ୍କ ଅପହଞ୍ଚ । ମୁଷ୍ଟିମେୟ ସବର୍ଣ୍ଣ ଲୋକଙ୍କର ହୁଙ୍କାପିଟା ନୀତିକୁ ନ୍ୟାୟର ଦର୍ଜା ଦିଆଯାଏ ଏବଂ ସଂଖ୍ୟାଧିକ ନିରୀହ ବ୍ୟକ୍ତିଙ୍କ ଉପରେ ତାହାକୁ ଲଦି ଦିଆଯାଏ । ଏପରି ଏକ ଅନ୍ଧକାରୀ ଶାସନକୁ ଉଜ୍ଜୀବିତ ରଖିବାକୁ ଅଣ୍ଟା ଭିଡିଛନ୍ତି ସାମ୍ବିଧାନିକ ଗଣତନ୍ତ୍ର ମାଧ୍ୟମରେ ନିର୍ବାଚିତ ସରକାର । ଏବେ ଜଣେ ଯନ୍ତ୍ର, ମନ୍ତ୍ର, ତନ୍ତ୍ର, ବିଶ୍ୱାସୀ ରାଜନେତା ଘୋଷଣା କରିଦେଲେ ଯେ ଖୋଳ, କରତାଳ ଓ ନଗର କୀର୍ତ୍ତନ ହେଉଛି ଓଡିଆ ଆଧ୍ୟାତ୍ମିକତାର ସ୍ୱରୂପ, ଜଗନ୍ନାଥ ସଂସ୍କୃତିର ପରୀକ୍ଷିତ ଗବ୍ୟଘୃତ । ତାଙ୍କ ଡାହାଣ ପାଳିଆ ମାନେ ପାଳି ଧରିଲେ, ସଂକୀର୍ତ୍ତନ ଦଳ ଗଠନ ପାଇଁ ସରକାରୀ ପ୍ରୋତ୍ସାହନ ମିଳୁ । ତାପରେ ଦୂଆ ଉଠିବ ଏମାନଙ୍କୁ କଳାକାର ଘୋଷଣା କର, ଭତ୍ତା ଦିଅ, ଛତା ବି ଦିଅ । ଆମ ସାମ୍ବିଧାନିକ ବ୍ୟବସ୍ଥାର ମୂଳ ମନ୍ତ୍ର ହେଉଛି ଧାର୍ମିକ ନିରପେକ୍ଷତା । କିନ୍ତୁ ସମାଜ ମଙ୍ଗଳ, ଦିବ୍ୟ ଜୀବନ ଓ ଦିବ୍ୟ ସଂସ୍କୃତି ଆଳରେ ଦଳେ ନ୍ୟସ୍ତ ସ୍ୱାର୍ଥ ନେତା ଓ ତାଙ୍କ ବୋଲକରାମାନେ ଜାତିଆଣ ଭାବ ଓ ଧର୍ମାନ୍ଧତାକୁ ପଛଦ୍ୱାର ଦେଇ ଗୃହ ପ୍ରବେଶ କରାଉଛନ୍ତି । ଏମାନେ ପଛ ମୁହାଁ ମଣିଷ, ଆଗକୁ ଦେଖି ପାରନ୍ତି ନାହିଁ । ଏମାନଙ୍କ ପ୍ରତି ସତର୍କ ରହିବାକୁ ପଡିବ ନଚେତ ପ୍ରଗତିର ରଥଚକ ଶିଥିଳ ହୋଇଯିବ, ହେତୁବାଦର ଲକ୍ଷ୍ୟ ସାଧନ ହୋଇ ପାରିବ ନାହିଁ ।



# ହେତୁବାଦର ଆବଶ୍ୟକତା

*ଶ୍ରୀ ବାଲ୍ମୀକି ନାୟକ*

ହେତୁବାଦ ନୂଆ ଶବ୍ଦ ନୁହେଁ । ଏହାର ଅର୍ଥ ବ୍ୟାପକ ଭାବେ ବହୁ ପ୍ରାଚୀନ କାଳରୁ ପ୍ରଚଳିତ । ହେତୁ ଅର୍ଥ କାରଣ । ଯେକୌଣସି ବସ୍ତୁ ବା ଘଟଣାର କାରଣ ଜାଣିବା ପାଇଁ ପୁରା କାଳରୁ ମଣିଷ ପ୍ରୟାସ କରୁଛି । ଭୌତିକ ଜଗତରେ ପ୍ରାକୃତିକ ଘଟଣା ସମୂହର ରହସ୍ୟ ଜାଣିବା ପାଇଁ ଯେଉଁ ଜ୍ଞାନ ମଣିଷମାନେ ପ୍ରୟୋଗ କରି ଆସୁଛନ୍ତି, ତାହା ହିଁ ହେତୁବାଦ ବୋଲି କହିଲେ ଭୁଲ ହେବ ନାହିଁ । କାଳକ୍ରମେ ଦୁନିଆରେ ଏକ ସୃଷ୍ଟିକର୍ତ୍ତାର ପରିକଳ୍ପନା କେତେକ ମଣିଷ ମନରେ ଜାତ ହେଲା । ଠିକ୍ ସେହି ସମୟରେ ହିଁ ଆଉ କିଛି ମଣିଷ ସୃଷ୍ଟିକର୍ତ୍ତାର ପରିକଳ୍ପନାକୁ ଅସ୍ୱୀକାର ବି କଲେ । ସେମାନଙ୍କର ହେତୁବାଦୀ ମନ ସୃଷ୍ଟିର ଅନ୍ୟ କାରଣ ଖୋଜିଲା । ପୃଥିବୀ ପୃଷ୍ଠରେ ଉପଲବ୍ଧ-ବସ୍ତୁ ଓ ଜୀବସତ୍ତାକୁ ପରୀକ୍ଷା, ନିରୀକ୍ଷା କରି ଗବେଷଣା କଲେ । କାଳ୍ପନିକ ସୃଷ୍ଟିକର୍ତ୍ତା ପ୍ରମାଣରହିତ ଏବଂ ବୈଜ୍ଞାନିକ ତଥ୍ୟ ଗୁଡିକ ପ୍ରମାଣ ସହିତ ଆମକୁ ମିଳିଲା । ବିଡ଼ମ୍ବନା ହେଉଛି ଯେ ପ୍ରମାଣରହିତ କାଳ୍ପନିକ ଶକ୍ତି ତଥାକଥିତ ଈଶ୍ୱରଙ୍କ ସମର୍ଥକ ମାନଙ୍କ ସଂଖ୍ୟା ଦୁନିଆରେ ବହୁତ ଅଧିକ ହୋଇଗଲା ଏବଂ ପ୍ରମାଣ ସହିତ ବିବର୍ତ୍ତନବାଦକୁ ସମର୍ଥନ କରୁଥିବା ଲୋକମାନଙ୍କ ସଂଖ୍ୟା କମ୍ ରହିଗଲା । ହଜାର ହଜାର ବର୍ଷ ପରେ ଆଜିର ଦୁନିଆରେ ବିବର୍ତ୍ତନବାଦକୁ ସମର୍ଥନ କରୁଥିବା ଏବଂ ତଥାକଥିତ ଈଶ୍ୱର ସତ୍ତାକୁ ଅସ୍ୱୀକାର କରୁଥିବା ହେତୁବାଦୀଙ୍କ ସଂଖ୍ୟା ତୀବ୍ର ଗତିରେ ବୃଦ୍ଧି ପାଉଛି । ଏହା ନିଶ୍ଚିତ ଭାବେ ମାନବ ସମାଜ ପାଇଁ ଏକ ବୈଚାରିକ କ୍ରାନ୍ତି ସୃଷ୍ଟି କରିଛି । ଏହା ଦ୍ୱାରା ଭବିଷ୍ୟତର ବଂଶଧର ହୁଏତ ଧର୍ମରହିତ ଏକ ମାନବବାଦୀ ସମାଜରେ ବାସ କରିବେ । ଯେଉଁଠି ଧର୍ମ ନାମରେ ଈର୍ଷା, ଦ୍ୱେଷ, ଘୃଣା, ହିଂସା, ଯୁଦ୍ଧ, ହତ୍ୟା ଓ ଶୋଷଣ

କମ ହୋଇଯିବ । ଧର୍ମର ପରିଭାଷା, ଆଧ୍ୟାତ୍ମିକ ନ ହୋଇ, ମାନବଧର୍ମରେ ପରିବର୍ତ୍ତନ ହୋଇ 'କର୍ମ ହିଁ ଧର୍ମ' ହୋଇ ଯିବ । କାଳ୍ପନିକ ସ୍ୱର୍ଗର ମୋହ ଏବଂ ନର୍କର ଭୟରୁ ମୁକ୍ତ ହୋଇ ବାସ୍ତବିକ ଦୁନିଆର ସୁଖକୁ ଉପଭୋଗ ଓ ଦୁଃଖକୁ ଅନୁଭବ କରିବ ।

ଆଦିମ କାଳରେ ଆସ୍ତିକ ମାନବ ସଂଖ୍ୟା ଅଧିକ ହେବାର କାରଣ ହେଉଛି- ସେତେବେଳେ ଜ୍ଞାନର ଅଭାବ ଥିଲା ଏବଂ ବିଜ୍ଞାନ ବିକାଶ ଲାଭ କରି ନଥିଲା । ଆଜିର ଦୁନିଆଁରେ ଜ୍ଞାନର ଅଭାବ ନାହିଁ ଏବଂ ବିଜ୍ଞାନ ତୀବ୍ର ଗତିରେ ବିକାଶ ହେଉଛି । ସେଥିପାଇଁ ଅତିପ୍ରାକୃତିକ ଶକ୍ତି ଓ ସତ୍ତାରେ ବିଶ୍ୱାସ ହ୍ରାସ ପାଇବାରେ ଲାଗିଛି । ଯେଉଁମାନେ ହେତୁବାଦର ଅନ୍ୟ ଅର୍ଥ ନିରୀଶ୍ୱରବାଦ ବୋଲି ଜାଣନ୍ତି, ସେମାନଙ୍କ ଧାରଣା ହେତୁବାଦୀମାନେ ନାସ୍ତିକ । ହେତୁବାଦୀମାନେ ଭୂତ, ପ୍ରେତ, ଦେବୀ, ଦେବତା, ଆତ୍ମା-ପରମାତ୍ମାଙ୍କୁ ବିଶ୍ୱାସ କରୁନାହାନ୍ତି । ସେମାନେ ଧର୍ମବିରୋଧୀ, ଅସାମାଜିକ ଓ ଅନୈତିକ କାର୍ଯ୍ୟ କରୁଥିବା ବ୍ୟକ୍ତି । ହେତୁବାଦ ବିଚାରଧାରା ଏକ ଧର୍ମବିରୋଧୀ ବିଚାରଧାରା ବୋଲି ଅଧିକାଂଶ ଲୋକ ଭାବନ୍ତି । ସମାଜ ପାଇଁ ଏହା ଆଦୌ ଆବଶ୍ୟକ ନୁହେଁ ବୋଲି କହନ୍ତି । ହେତୁବାଦ ଉପରେ ଆଲୋଚନା କରିବାକୁ ସେମାନେ ଭୟ କରନ୍ତି । ଭୟ କରିବାର ମୁଖ୍ୟତଃ ଦୁଇଟି କାରଣ ଥାଏ । ପ୍ରଥମତଃ ମନରେ ଧର୍ମ ଓ ଈଶ୍ୱରପ୍ରତି ଥିବା ବିଶ୍ୱାସ ଦୋହଲିଯିବ । ଦ୍ୱିତୀୟତଃ ଧର୍ମ ଓ ଈଶ୍ୱର ବିଷୟରେ ହେତୁବାଦୀ ପ୍ରଶ୍ନଗୁଡ଼ିକର ତର୍କସଙ୍ଗତ ଉତ୍ତର ମିଳିବ ନାହିଁ । ସେମାନେ ହେଉଛନ୍ତି ରୂଢ଼ିବାଦୀ ଓ ଭାଗ୍ୟବାଦୀ ମଣିଷ । ପୂର୍ବରୁ ଯାହା ଯେମିତି ଅଛି, ତାହାକୁ ସେମିତି ହିଁ ଗ୍ରହଣ କରି ପରିସ୍ଥିତି ସହ ବୁଝାମଣା କରି ଚଳିବାକୁ ସେମାନେ ପସନ୍ଦ କରିଥାନ୍ତି । ପରିବର୍ତ୍ତନକୁ ସେମାନେ ସ୍ୱୀକାର କରିବାକୁ ଭୟ କରନ୍ତି । ପ୍ରାଚୀନ ରୂଢ଼ିବାଦ, ପରମ୍ପରା ଓ ଅବୈଜ୍ଞାନିକ ନୀତିରେ ସେମାନେ କୌଣସି ପରିବର୍ତ୍ତନକୁ ସ୍ୱୀକାର କରିପାରନ୍ତି ନାହିଁ । ହେତୁବାଦ ମଣିଷ ଜୀବନ ପାଇଁ କେତେ ଜରୁରୀ ଏହା ସାଧାରଣ ଲୋକମାନେ କଳ୍ପନା ବି କରିପାରନ୍ତି ନାହିଁ ।

ହେତୁବାଦୀ ଲୋକ ଯଦି କେଉଁଠି ଚମତ୍କାର ପ୍ରଦର୍ଶନ କରି ଲୋକମାନଙ୍କୁ ଠକୁଥିବା ଘଟଣାର ପର୍ଦ୍ଦାଫାଶ କରିଦିଏ, ସେଇଠି ଏହି ପରମ୍ପରାବାଦୀ ଲୋକମାନେ ହେତୁବାଦୀଙ୍କୁ ବିରୋଧ କରି ଯୁକ୍ତି ବାଢ଼ିଥାନ୍ତି । ସେମାନଙ୍କ ଯୁକ୍ତି ହେଲା ଯଦି ବା କେହି ଚମତ୍କାର ପ୍ରଦର୍ଶନ ଦ୍ୱାରା ଦି'ପଇସା ରୋଜଗାର କରି ନିଜ କୁଟୁମ୍ବ ପୋଷୁଛି ତ କ୍ଷତି କଅଣ ? ସାରା ଦେଶରେ ତ' କୋଟି କୋଟି ଟଙ୍କାର ଭ୍ରଷ୍ଟାଚାରର ଖେଳ ଚାଲିଛି, ହେତୁବାଦୀମାନେ କଅଣ ସେମାନଙ୍କ ପର୍ଦ୍ଦାଫାଶ କରି ପାରୁଛନ୍ତି ? ସେମାନଙ୍କ ଯୁକ୍ତିର ଅର୍ଥ ହେଲା ଯଦି ବଡ଼ ଚୋରକୁ ଧରି ନପାରୁଛ, ତେବେ ଛୋଟ ଚୋରକୁ ଧରିଲେ ବି ଛାଡିଦିଅ । ଏହିଭଳି ଯୁକ୍ତି କରୁଥିବା ବ୍ୟକ୍ତିଙ୍କୁ ହେତୁବାଦର ଅସଲ ଉଦ୍ଦେଶ୍ୟ କିପରି ବା ବୁଝେଇ ହେବ ?

ହେତୁବାଦର ଅର୍ଥ ହେଉଛି - ବିବେକଶୀଳ, ବୁଦ୍ଧିବାଦୀ ଓ ତର୍କଶୀଳ ହେବା । ସାଧାରଣ ଭାଷାରେ କୁହାଯାଇପାରେ, ନିଜର ବୁଦ୍ଧି ଓ ବିବେକର ପ୍ରୟୋଗ କରି ସତ୍ୟର ସନ୍ଧାନ କରିବା । ଯେଉଁ ବ୍ୟକ୍ତି ନିଜର ବୁଦ୍ଧି ବଳରେ ନିଜ ଚାରିପାର୍ଶ୍ୱରେ ଥିବା ସଂସାରକୁ ଜାଣିବା ଓ ବୁଝିବା ସହିତ ପ୍ରତ୍ୟେକ କାର୍ଯ୍ୟକୁ ସୁଚାରୁ ରୂପେ ସଂପାଦନ କରିବାକୁ ପ୍ରୟାସ କରେ, ସେ ହିଁ ସଚ୍ଚା ହେତୁବାଦୀ ।

ମଜାକଥା ହେଉଛି-ଆପଣ ଯେକୌଣସି ବ୍ୟକ୍ତିକୁ ଯଦି ପ୍ରଶ୍ନ କରିବେ, କଅଣ ଆପଣ ସବୁକାମ ନିଜ ବୁଦ୍ଧି ପ୍ରୟୋଗ କରି କରନ୍ତି ? ସେ ଦୃଢ଼ତାର ସହିତ କହିବ ହଁ ମୁଁ ମୋର ବୁଦ୍ଧିରେ ହିଁ ସମସ୍ତ କାମ କରେ । ପ୍ରକୃତରେ କ'ଣ ବ୍ୟକ୍ତି ଜଣକ ସତ କହୁଛି ? ହୁଏତ ନାହିଁ । କାରଣ ବହୁତ କମ୍ ଲୋକ ସ୍ୱାଧୀନ ଭାବେ ନିଜର ବୁଦ୍ଧି ବଳରେ କାମ କରିଥାନ୍ତି । ବାକି ଅନ୍ୟମାନେ ଅନ୍ୟର ନିର୍ଦ୍ଦେଶ କିମ୍ବା ନିର୍ଦ୍ଧାରିତ ପଦ୍ଧତିକୁ ପାଳନ କରିଥାନ୍ତି । ଏହାର କାରଣ ହେଉଛି, ସମାଜରେ ପିଲାଟିବେଳୁ ଶିକ୍ଷା ଦିଆଯାଏ କି ବଡମାନଙ୍କ କଥା ମାନି ଚଳ, ବଡ଼ମାନଙ୍କର ଆଜ୍ଞାକୁ ପାଳନ କର, ଧର୍ମଗ୍ରନ୍ଥରେ ଲିଖିତ ନିର୍ଦ୍ଦେଶଗୁଡିକୁ ବିଶ୍ୱାସ କର, କୌଣସି ପ୍ରକାର ପ୍ରଶ୍ନ  କରନାହିଁ, ମନରେ କିନ୍ତୁ, ପରନ୍ତୁ ଭଳି ସନ୍ଦେହ ରଖନାହିଁ, ଯାହା ବି କୁହାଯାଇଛି ତାହାକୁ ସଂପୂର୍ଣ୍ଣ ରୂପେ ସ୍ୱୀକାର କର । ଗୁରୁଙ୍କ ମହାନତା ଏବଂ ଶିଷ୍ୟର ଆଜ୍ଞାକାରୀ ଗୁଣକୁ ଦର୍ଶାଇବା ପାଇଁ ମହାଭାରତର ଗୁରୁ ଦ୍ରୋଣାଚାର୍ଯ୍ୟ ଏବଂ ଶିଷ୍ୟ ଏକଲବ୍ୟର ଉପାଖ୍ୟାନକୁ ସମସ୍ତେ ଉଦ୍ଧାର କରିଥାନ୍ତି । ଅର୍ଥାତ୍  ପିଲାଟି ଦିନରୁ ମଣିଷ ମନରେ ଉଠୁଥିବା ଜିଜ୍ଞାସାକୁ ଶାନ୍ତ କରିବା ପାଇଁ ସମସ୍ତ ମାର୍ଗ ରୁଦ୍ଧ କରିଦିଆଯାଏ । ଫଳରେ ବ୍ୟକ୍ତି ରୂଢ଼ିବାଦୀ, ମିଥ୍ୟାବାଦୀ, ତର୍କହୀନ ବିଷୟବସ୍ତୁ ଓ ଅବୈଜ୍ଞାନିକ ଭାବନା ଉପରେ ଆସ୍ଥା ପ୍ରକଟ କରେ । ଫଳରେ ବ୍ୟକ୍ତି ନିଜର ବୁଦ୍ଧି ଓ ବିବେକକୁ ବନ୍ଧକ ରଖି ନିଜେ ମାନସିକ ଗୋଲାମୀ  ହୁଏ ଅର୍ଥାତ୍ ବିବେକଶୀଳ ନହୋଇ ବିବେକହୀନ ହୁଏ । ଅନ୍ଧବିଶ୍ୱାସ ଓ ଅସତ୍ୟକୁ ସଂସ୍କୃତି ଓ ପରଂପରାର ମୂଲ୍ୟ ଦିଏ । ସେହି ବିବେକହୀନ ବ୍ୟକ୍ତିମାନେ ହିଁ ହେତୁବାଦକୁ ବିରୋଧ କରିଥାନ୍ତି ।

ମଣିଷ ଜନ୍ମରୁ ହିଁ ତର୍କଶୀଳ ମନ ନେଇ ଆସେ । ସେ ନିଜର ଜିଜ୍ଞାସା ପ୍ରବୃତ୍ତି ଯୋଗୁଁ ସଂସାରକୁ ଜାଣିବା ଓ ବୁଝିବା ପାଇଁ କଅଣ, କାହିଁକି, କିପରି, କେବେ, କେଉଁଠି ଇତ୍ୟାଦି  ପ୍ରଶ୍ନ କରିଥାଏ । ତେଣୁ ଜ୍ଞାନ ଅର୍ଜନର ପ୍ରଥମ ପାହାଚ ହେଉଚି ପ୍ରଶ୍ନ ଓ ଅନୁସନ୍ଧିତ୍ସା । ପ୍ରଶ୍ନର ସନ୍ତୋଷଜନକ ଉତ୍ତର ନ ମିଳିବା ଯାଏଁ ମଣିଷ ତର୍କ କରିଥାଏ । ଧର୍ମଗୁରୁମାନଙ୍କ ପାଇଁ ଧର୍ମ ଓ ଈଶ୍ୱର ସଂପର୍କରେ ତର୍କସଂଗତ ଉତ୍ତର ଦେବା ଏକ କଠିନ ସମସ୍ୟା ଥିଲା ଓ ଆଜି ବି ଅଛି । ତେଣୁ ପ୍ରଶ୍ନକର୍ତ୍ତାର ମୁହଁ ବନ୍ଦ ରଖିବା ପାଇଁ କୁହାଗଲା "ବିଶ୍ୱାସେ ମିଳଇ

ହରି, ତର୍କେ ବହୁଦୂର" । ଏହି ମନ୍ତ୍ର ଭଲ କାମକଲା । ଈଶ୍ୱରଙ୍କୁ କାହିଁକି କୌଣସି ଇନ୍ଦ୍ରିୟ ଦ୍ୱାରା ଅନୁଭବ କରି ହେଉନି ? ପ୍ରଶ୍ନର ଉତ୍ତର ହେଲା "ମାନିଲେ ଠାକୁର, ନମାନିଲେ ପଥର" । ଅର୍ଥାତ୍ ଈଶ୍ୱରଙ୍କୁ ଅନୁଭବ କରିପାରୁ ନଥିବା ଦୋଷତକ ଭକ୍ତ ମୁଣ୍ଡରେ ଥୋଇ ଦିଆଯାଇଛି । ଭକ୍ତ ଯଦି ଈଶ୍ୱରଙ୍କୁ ଅନୁଭବ କରୁନାହିଁ ତେବେ ଭକ୍ତ ମନରେ ଭକ୍ତି ନାହିଁ । ଏଥିରେ ଆଉ ତର୍କର ଅବକାଶ ରହିଲା ନାହିଁ ।

ଆଜିକାଲି ଭଗବାନଙ୍କ ସହିତ ଭକ୍ତଙ୍କୁ ଯୋଡ଼ିବା ପାଇଁ ଇଣ୍ଟରନେଟ୍‌ର ସାହାଯ୍ୟ ନିଆଯାଉଛି । ଟାଇମସ୍ ଅଫ୍ ଇଣ୍ଡିଆରେ ପ୍ରକାଶିତ ଏକ ଖବର ଅନୁସାରେ ଫୁଜନ୍ ମଲ୍ଲୁ ନାମକ ଜଣେ ବ୍ୟକ୍ତି ଅନ୍‌ଲାଇନ୍ ପ୍ରସାଦ ଓ୍ୱେବ୍‌ସାଇଟ୍ ଖୋଲି, ଭାରତର ପ୍ରାୟ ୫୦ ଗୋଟି ପ୍ରସିଦ୍ଧ ମନ୍ଦିରର ପ୍ରସାଦ ଭକ୍ତଙ୍କ ପାଖକୁ ପଠାଇ ଦେଉଛନ୍ତି । ମାତ୍ର ୫୦୧ ଟଙ୍କା ତାଙ୍କ ଖାତରେ ଜମାକଲେ, ସେ ୭ରୁ ୧୦ ଦିନ ଭିତରେ ପ୍ରସାଦ ପଠେଇ ଦେବେ । ସେ କୁହନ୍ତି ପ୍ରତିଦିନ ହାରାହାରି ୨୦୦ ଭକ୍ତଙ୍କ ଅର୍ଡର ସେ ପାଉଛନ୍ତି । ଏଥିରେ ପ୍ରକାଶିତ ଅନ୍ୟ ଏକ ଖବର ହେଉଛି ଦକ୍ଷିଣ ଭାରତୀୟ ମନ୍ଦିରମାନଙ୍କରେ ମହିଳାମାନଙ୍କ ଦ୍ୱାରା ଅର୍ପଣ କରାଯାଉଥିବା ମୁଣ୍ଡର ଲମ୍ବା କେଶକୁ ଓ୍ୱେଭ୍‌ସ ହେୟାର ନାମକ ଏକ ବ୍ୟବସାୟୀ ସଂସ୍ଥା, ପ୍ରତି କିଲୋଗ୍ରାମ ୫୦୦୦ ରୁ ୨୫୦୦୦ ଟଙ୍କାରେ କିଣିନେଇ ଓ୍ୱିଗ୍ ତିଆରି କରି ବାହାର ଦେଶକୁ ରପ୍ତାନି କରନ୍ତି । ଏହି କମ୍ପାନୀର ମାଲିକ ମଲ୍ଲିକ ଶ୍ରୀ କୁମାର ଏହି ବ୍ୟବସାୟରୁ କେତେ ଫାଇଦା ପାଆନ୍ତି ? ସେ କଥା ଅବଶ୍ୟ ପ୍ରକାଶ କରିନାହାନ୍ତି ।

ଏହି ଦୁଇଟି ଉଦାହରଣରୁ ଗୋଟିଏ କଥା ତ ସ୍ପଷ୍ଟ ହେଉଛି ଯେ ଭକ୍ତଙ୍କ ଆସ୍ଥାକୁ ପୁଞ୍ଜି କରି ଖୁବ୍ ସହଜରେ ବ୍ୟବସାୟ କରିହେଉଛି । ଦୂର ଦୂରାନ୍ତରେ ଥିବା ମନ୍ଦିରର ପ୍ରସାଦ କିଣି ସେବନ କଲେ ଯଦି ପୁଣ୍ୟ ପ୍ରାପ୍ତ ହେଉଛି, ତେବେ ସେଇଠି ଭକ୍ତି ଏକ ଲୋକ ଦେଖାଣିଆ ଛଳନା ନୁହେଁକି ? ମହିଳାଙ୍କ ଅତି ପ୍ରିୟ ଏବଂ ସୌନ୍ଦର୍ଯ୍ୟର ପ୍ରତୀକ କେଶରାଶିକୁ କାଟିନେଇ ବିକ୍ରି କରୁଥିବା ଦଲାଲମାନେ ତ ଧନୀ ହୋଇ ଯାଉଛନ୍ତି କିନ୍ତୁ ସରଳ ବିଶ୍ୱାସୀ ମହିଳାମାନେ ଏକ ମିଥ୍ୟା ଆଶ୍ୱାସନା ବ୍ୟତୀତ ପାଉଛନ୍ତି କ'ଣ ?

ସମାଜର ମଣିଷମାନଙ୍କୁ ଆମେ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରି ବିଚାର କରିବା । ପ୍ରଥମ ଭାଗରେ ମଣିଷମାନେ କଠିନ ପରିଶ୍ରମ କରି ସଚ୍ଚୋଟ ଭାବେ ଜୀବିକା ନିର୍ବାହ କରିଥାନ୍ତି । ଏଥିପାଇଁ ସେମାନଙ୍କୁ ଯଦିଓ ବିଭିନ୍ନ ପ୍ରକାର ସମସ୍ୟାର ସମ୍ମୁଖୀନ ହେବାକୁ ପଡିଥାଏ, ତଥାପି ସେମାନେ ନିଜର ଦୃଢ଼ ମନୋବଳ ଯୋଗୁଁ ସଫଳତା ହାସଲ କରିଥାନ୍ତି । ସେହିମାନଙ୍କ ଯୋଗୁଁ ସମାଜର ମଙ୍ଗଳ ସାଧନ ହୋଇଥାଏ । ସମାଜରେ ଆଜି ଯେତିକି ନୈତିକତା ବଞ୍ଚିଛି, ସେହିମାନଙ୍କ ଯୋଗୁଁ, ଦ୍ୱିତୀୟ ଭାଗର ମଣିଷମାନେ ଶ୍ରମକାତର,

କାମଚୋର ଏବଂ ପଳାୟନବାଦୀ । ସେମାନେ ବିନା ପରିଶ୍ରମରେ କିମ୍ୱା ଅଳ୍ପ ପରିଶ୍ରମରେ ଅଧିକରୁ ଅଧିକ ଧନ ରୋଜଗାର କରିବାର ସହଜ ରାସ୍ତା ଖୋଜି ବୁଲନ୍ତି । ଶ୍ରମବିହୀନ ଉପାର୍ଜନ ପାଇଁ ପ୍ରତ୍ୟେକ ଧର୍ମର ବଡ଼ପଣ୍ଡା ମାନେ ଧର୍ମକୁ ନେଇ ବେପାର କରିବା ଏକ ସାଧାରଣ ଅନୁଭବ । ସେହିମାନଙ୍କ ଯୋଗୁଁ ସମାଜରେ ବିଶୃଙ୍ଖଳା, ଅସୁରକ୍ଷା ଓ ଭ୍ରଷ୍ଟାଚାର ବଢ଼ି ଚାଲିଛି ।

ହେତୁବାଦର ମହତ୍ତ୍ୱପୂର୍ଣ୍ଣ ଉଦ୍ଦେଶ୍ୟ ହେଉଛି ସଚ୍ଚୋଟ, ପରିଶ୍ରମୀ ଏବଂ ସରଳ ବିଶ୍ୱାସୀ ଲୋକମାନଙ୍କୁ ଠକ, ଧୂର୍ତ୍ତ ଓ ଭଣ୍ଡ ଲୋକମାନଙ୍କ ଦ୍ୱାରା ଧର୍ମ ନାମରେ ହେଉଥିବା ଶାରୀରିକ, ମାନସିକ ଓ ଆର୍ଥିକ ଶୋଷଣରୁ ମୁକ୍ତ କରିବା । ଚୋର, ଡାକୁ, ସ୍ମଗଲର ଆଦି ରାତିର ଅନ୍ଧାରରେ ସମାଜ ଓ ପୋଲିସ୍‌କୁ ଡରି ଡରି ଲୁଣ୍ଠନ କରିଥାନ୍ତି କିନ୍ତୁ ଧର୍ମଆଳରେ ଶୋଷଣ କରୁଥିବା ତଥାକଥିତ ପୂଜକ, ବାବା, ତାନ୍ତ୍ରିକ, ଜ୍ୟୋତିଷମାନଙ୍କର କାହାକୁ ଭୟ ନଥାଏ । ସେମାନେ ଦିନର ଆଲୁଅରେ ବି ଭକ୍ତମାନଙ୍କୁ ବୋକା ବନେଇ ଧନ ଲୁଟି ନେଇପାରନ୍ତି । କାରଣ ଧର୍ମବିଶ୍ୱାସୀ ଭକ୍ତ ସ୍ୱଇଚ୍ଛାରେ ଦାନ, ଦକ୍ଷିଣା ଦେଇ ଖୁସି ମନରେ ଘରକୁ ଫେରିଥାନ୍ତି । ଏହାହିଁ ବିଡ଼ମ୍ୱନା ।

ହେତୁବାଦ ହେଉଛି ଏକ ବୌଦ୍ଧିକ ପ୍ରକ୍ରିୟାର ପରିଣାମ । ହେତୁବାଦକୁ ଅନୁସରଣ କରିବା ସହଜ କାମ ନୁହେଁ । ହେତୁବାଦକୁ ସମାଜର ସମସ୍ତ ରୂଢ଼ିବାଦୀ ପରମ୍ପରା, କାଳ୍ପନିକ ଦେବୀ ଦେବତାଙ୍କ କାହାଣୀ ଓ ଉପାଖ୍ୟାନକୁ ପ୍ରତ୍ୟାଖ୍ୟାନ କରିବାକୁ ପଡିଥାଏ । ଧର୍ମର ଭିତ୍ତିହୀନ ବିଶ୍ୱାସର ନାଗଫାଶରୁ ନିଜକୁ ମୁକ୍ତ କରିବାକୁ ପଡିଥାଏ । ହେତୁବାଦୀ ମାର୍ଗରେ ଚାଲିବା ପାଇଁ କେହି ସାଙ୍ଗ ମିଳିବା କଷ୍ଟକର । ବେଳେବେଳେ ନିଜ ପରିବାର, ସମ୍ପର୍କୀୟ, ସାଙ୍ଗ ସାଥୀ ଏବଂ ସମାଜକୁ ବି ତ୍ୟାଗ କରିବାକୁ ପଡିଥାଏ । ମନକୁ ଦୃଢ଼ କରି ରୂଢ଼ିବାଦୀ ବିନାଶକାରୀ ଶକ୍ତିମାନଙ୍କ କବଳରୁ ସମାଜକୁ ମୁକ୍ତ କରିବା ପାଇଁ ସଂଘର୍ଷ କରିବାକୁ ପଡିଥାଏ । ହେତୁବାଦୀଙ୍କ ସଂଘର୍ଷରେ ଏକମାତ୍ର ଅସ୍ତ୍ର ହେଉଛି ବିଜ୍ଞାନ ଓ ତର୍କଶୀଳତା । ମୁକ୍ତମନା ବୁଦ୍ଧିଜୀବୀମାନେ ତର୍କଶୀଳ ବିଚାର ଦ୍ୱାରା ମଣିଷ ମନରୁ ଅହେତୁକ ଭୟ ଓ ଅହେତୁକ ବିଶ୍ୱାସକୁ ଦୂର କରିବାକୁ ପ୍ରୟାସ କରିଥାନ୍ତି । ଯାହାଫଳରେ ମଣିଷ ମନରେ ଆତ୍ମବିଶ୍ୱାସ ବୃଦ୍ଧି ପାଇଥାଏ । ହେତୁବାଦୀମାନଙ୍କୁ ସମାଜରେ ପ୍ରଚଳିତ ଧର୍ମ ବା ମତ ସମ୍ପର୍କୀୟ ଶାସ୍ତ୍ର ଓ ଗ୍ରନ୍ଥଗୁଡ଼ିକୁ ଅଧ୍ୟୟନ କରି ନିଷ୍ପକ୍ଷ ମନରେ ବିଶ୍ଳେଷଣ କରିବାକୁ ପଡିଥାଏ । ବିଶ୍ଳେଷଣ କଲାପରେ ଯେଉଁଗୁଡିକ ଆବଶ୍ୟକ ବା ତର୍କସଂଗତ ନଲାଗେ, ସେଗୁଡ଼ିକୁ ତ୍ୟାଗ କରିବା ପାଇଁ ଜନସାଧାରଣଙ୍କୁ ପ୍ରେରିତ କରିବାକୁ ପଡ଼ିଥାଏ । ହେତୁବାଦୀ ନିଜର ଦୃଷ୍ଟିଭଙ୍ଗୀ ବିସ୍ତାର କରି ଜାତି, ଧର୍ମ, ଭାଷା କ୍ଷେତ୍ରର ସଂକୀର୍ଣ୍ଣ ସୀମାରୁ ମୁକ୍ତ ହେବାକୁ ପଡ଼ିଥାଏ । ହେତୁବାଦୀମାନଙ୍କୁ "ଧର୍ମ ନିରପେକ୍ଷ" ନହୋଇ "ଧର୍ମରହିତ" ହେବାକୁ ପଡ଼ିଥାଏ ।

ଜଣେ ସଂସାର ବୈରାଗୀ ସାଧୁର ତ୍ୟାଗ ଏବଂ ଜଣେ ସଂସାରପ୍ରେମୀ ହେତୁବାଦୀର ତ୍ୟାଗ ଭିତରେ ଅନେକ ପ୍ରଭେଦ ରହୁଛି । ସଂସାର ବୈରାଗୀ ସାଧୁ ମୁହଁରେ ସିନା ସଂସାରକୁ ମିଛ ଓ ମାୟା କହି ଛଳନା କରନ୍ତି କିନ୍ତୁ ପ୍ରକୃତରେ ସେହିମାନେ ହିଁ ସବୁଠାରୁ ବେଶୀ ମୋହମାୟା ଗ୍ରସ୍ତ । ଆଜିର ଯୁଗରେ ମଠ, ଆଶ୍ରମ, ମନ୍ଦିର ଓ ଧର୍ମସ୍ଥଳମାନଙ୍କରେ ବାସ କରୁଥିବା ସଂସାର ବୈରାଗୀମାନଙ୍କ ଜୀବନଶୈଳୀ କେତେ ସୁଖମୟ, ସେ କଥା ସଭିଏଁ ଜାଣିପାରୁଥିଲେ ବି ତର୍କ କରି ପ୍ରତିବାଦ କରିବାକୁ କେହି ସାହସ କରୁନାହାନ୍ତି । ଯଦି କୌଣସି ସଂସାରପ୍ରେମୀ, ମାନବବାଦୀ ହେତୁବାଦୀ ଏହାର ପ୍ରତିବାଦ କରିବାକୁ ଆଗେଇ ଆସେ, ତେବେ ଶଠ ବୈରାଗୀମାନଙ୍କ ଅନ୍ଧ ଭକ୍ତମାନେ ରେ ରେ କାର ଶବ୍ଦ କରି ମାଡ଼ି ଆସନ୍ତି । ଆମର ଧାର୍ମିକ ଭାବନାକୁ ଆଘାତ କରୁଛି କହି ମାରିବା ପାଇଁ ତିଆର ହୋଇଯାଆନ୍ତି ।

ସେହି ଅନ୍ଧ ଭକ୍ତମାନଙ୍କୁ ଯଦି ଆପଣ ପ୍ରଶ୍ନ କରିବେ ଆପଣ କଅଣ ଅନ୍ଧବିଶ୍ୱାସୀ ? ସେମାନେ ଦୃଢ଼ତାର ସହିତ ଦାବି କରି କହିବେ ମୋଟେ ନୁହେଁ । ମୁଁ ଜଣେ ପ୍ରଗତିଶୀଳ ଶିକ୍ଷିତ ବ୍ୟକ୍ତି ଏବଂ ଅନ୍ଧବିଶ୍ୱାସୀ ନୁହେଁ । ମୁଁ ଭୂତ, ପ୍ରେତ, ମନ୍ତ, ତନ୍ତ ଓ ଯାଦୁବିଦ୍ୟାକୁ ଆଦୌ ମାନେନାହିଁ । କିନ୍ତୁ ସେମାନେ ଆତ୍ମା-ପରମାତ୍ମା, ଜ୍ୟୋତିଷ ଶାସ୍ତ୍ର, ଭାଗ୍ୟ ଓ ଭଗବାନଙ୍କୁ ନିଶ୍ଚୟ ବିଶ୍ୱାସ କରିଥାନ୍ତି । ସେମାନେ ସ୍ୱର୍ଗ, ନର୍କ, ପୁନର୍ଜନ୍ମ, ମୋକ୍ଷ, ରାଶି, ଗ୍ରହ, ନକ୍ଷତ୍ର ଉପରେ ବି ଗଭୀର ବିଶ୍ୱାସ ରଖିଥାନ୍ତି । ସେମାନଙ୍କ ସାଧାରଣ ତର୍କ ହେଉଛି ଏହି ବିଶାଳ ବ୍ରହ୍ମାଣ୍ଡକୁ ପରିଚାଳିତ କରିବା ପାଇଁ କୌଣସି ଏକ ମହାନ ଶକ୍ତି ନିଶ୍ଚୟ ଅଛି ।

ହେତୁବାଦୀ ପ୍ରଶ୍ନ ହେଉଛି- ସେହି ମହାନ୍ ଶକ୍ତିଟି କ'ଣ ? ଏହି ଦାର୍ଶନିକ ପ୍ରଶ୍ନର ଉତ୍ତର ଦେବା ପାଇଁ ଅନେକ ଧର୍ମାଚାର୍ଯ୍ୟ ଓ ଶାସ୍ତ୍ରପଣ୍ଡିତ ବିଭିନ୍ନ ତର୍କ ପ୍ରସ୍ତୁତ କରି ଚେଷ୍ଟା କରିଛନ୍ତି କିନ୍ତୁ ସେଗୁଡିକ ବିଜ୍ଞାନସମ୍ମତ କିମ୍ୱା ତର୍କସିଦ୍ଧ ହୋଇପାରିନାହିଁ । ବରଂ ଅନେକ ବିରୋଧାଭାସ ଓ ଦ୍ୱନ୍ଦ୍ୱ ସୃଷ୍ଟି କରିଛି । ସେଥିପାଇଁ ଏକ ପ୍ରଚଳିତ ପ୍ରବାଦ ହେଉଛି- "ନାନା ମୁନି ନାନା ମତ" । ପ୍ରଶ୍ନ ଉଠୁଛି-ଈଶ୍ୱର ଯଦି ସତ୍ୟ ଓ ଏକ, ତେବେ ମତ କାହିଁକି ଭିନ୍ନ ? ସୂର୍ଯ୍ୟ, ଚନ୍ଦ୍ର, ପୃଥିବୀ ଆଦି ଉପରେ ତ କାହାରି ଦ୍ୱିମତ ନାହିଁ । ଈଶ୍ୱର ଉପରେ ଦ୍ୱିମତ କାହିଁକି ? ଅର୍ଥାତ୍ ଯାହା ନାହିଁ, ତାହା ଅଛି ବୋଲି ଦାବି କଲେ ନିଶ୍ଚୟ ମତ ପାର୍ଥକ୍ୟ ହେବ ।

ବିଡ଼ମ୍ୱନା ଯେ- ଆଜିର ଆଧୁନିକ ବୈଜ୍ଞାନିକ ଯୁଗରେ ବି ପ୍ରାୟ ନବେ ପ୍ରତିଶତରୁ ଊର୍ଦ୍ଧ୍ୱ ଜନତା ନିଜର ତର୍କ ବୁଦ୍ଧିକୁ କୌଣସି ନା କୌଣସି ଧର୍ମଗୁରୁ, ଧାର୍ମିକ ବସ୍ତୁ, ଧାର୍ମିକ ଗ୍ରନ୍ଥ କିମ୍ୱା ଧର୍ମ ସ୍ଥଳରେ ବନ୍ଧକ ରଖି ଦେଉଛନ୍ତି । ବହୁତ ଅଳ୍ପ ଲୋକ ହିଁ ସ୍ୱାଧୀନ ଚିନ୍ତନର ମାଲିକ ଅଛନ୍ତି । ସେଥିପାଇଁ ଆମେ ପ୍ରଗତି ପଥରେ ଗୋଟିଏ ପାଦ ଆଗକୁ ଗଲାପରେ, ଦୁଇପାଦ ପଛକୁ ଫେରିଆସୁଛୁ । ବୈଜ୍ଞାନିକ ଚିନ୍ତନର ଅଭାବ ଯୋଗୁଁ ଅନେକ ଡାକ୍ତର, ଇଞ୍ଜିନିୟର, ବିଜ୍ଞାନ ଶିକ୍ଷକ ଓ ଛାତ୍ରଗଣ ବିଶ୍ୱାସ କରନ୍ତି ଯେ- "ଯେତେ ପରିଶ୍ରମ କଲେ ବି

ଭାଗ୍ୟରେ ଲେଖା ନଥିଲେ କିଛି ବି ପ୍ରାପ୍ତ ହେବ ନାହିଁ।" "ଈଶ୍ୱର ନ ଚାହିଁଲେ କେହି ବି ସଫଳତା ହାସଲ କରିପାରିବ ନାହିଁ।" ସେମାନଙ୍କର ଏହି ବିଶ୍ୱାସକୁ ଯଦି ଆମେ କିଛି ସମୟ ପାଇଁ ସତ ବୋଲି ମାନିବା, ତଥାପି ପ୍ରଶ୍ନ ଉଠୁଛି- ଭାଗ୍ୟ ପରିବର୍ତ୍ତନ କରିବା ପାଇଁ ଏବଂ ସଫଳତା ପାଇବା ପାଇଁ ଲୋକମାନେ ଧର୍ମଗୁରୁ (ଏକ ମଣିଷ) ପାଖକୁ ଦୌଡୁଛନ୍ତି କାହିଁକି ? ବିଧାତା ଲେଖିଥିବା ଭାଗ୍ୟ ଓ ଈଶ୍ୱର ନିର୍ଦ୍ଧାରଣ କରିଥିବା କର୍ମଫଳକୁ ପରିବର୍ତ୍ତନ କରିଦେବାର ଶକ୍ତି କଅଣ ଧର୍ମଗୁରୁମାନଙ୍କ ପାଖରେ ଅଛି ? ସବୁକିଛି ପ୍ରହେଳିକା ବ୍ୟତୀତ ଅନ୍ୟ କିଛି ନୁହେଁ।

ଆମର ବ୍ୟକ୍ତିଗତ ଅନୁଭବ ଆଧାରରେ ସ୍ପଷ୍ଟ ସନ୍ଦେଶ ଦେବାକୁ ଚାହୁଁଛୁ ଯେ କୌଣସି ମାନସିକ ନକରି, କୌଣସି ପୂଜାପାଠ ନକରି, କେବଳ ଡାକ୍ତରଙ୍କ ଚିକିତ୍ସା ଓ ପରାମର୍ଶ ମାନି ଚଳିଲେ, ଯେ କୌଣସି ରୋଗରୁ ମୁକ୍ତି ମିଳିପାରିବ। ଯେଉଁ ରୋଗ ଅଥବା ଦୁର୍ଘଟଣାଜନିତ ରୋଗୀଙ୍କୁ ଡାକ୍ତରମାନେ ସମ୍ଭାଳି ପାରୁ ନାହାନ୍ତି, ସେମାନଙ୍କୁ ତଥାକଥିତ ଭଗବାନ ବି ରକ୍ଷା କରି ପାରୁନାହାନ୍ତି। ଅନ୍ୟ ଏକ ଉଦାହରଣ ଛାତ୍ରଛାତ୍ରୀଙ୍କ ପରୀକ୍ଷାରେ ଭଲ ନମ୍ବର ରଖି ପାଶ୍ କରିବା ପାଇଁ କୌଣସି ଦେବୀ ଦେବତାଙ୍କ ଆଶୀର୍ବାଦ ଜରୁରୀ ନୁହେଁ। ଅନେକ ହେତୁବାଦୀ ଛାତ୍ର ଛାତ୍ରୀ ଗଭୀର ଅଧ୍ୟୟନ କରି, କେବେ ବି ପୂଜା ପାଠ ନକରି ପରୀକ୍ଷାରେ ଭଲ ନମ୍ବର ରଖି ପାଶ୍ କରିଛନ୍ତି ଏବଂ ଉଚ୍ଚ ପଦବୀର ପ୍ରାପ୍ତ ଚାକିରି ବି ପାଇଛନ୍ତି।

ଆଜି ଭାରତର ବିଭିନ୍ନ ରାଜ୍ୟରେ ହେତୁବାଦୀ ସଂଗଠନ ସୃଷ୍ଟି ହୋଇଛି। ଏହି ସଂଗଠନରେ ଅନେକ ବୁଦ୍ଧିଜୀବୀ ସ୍ୱେଚ୍ଛାସେବୀ ବ୍ୟକ୍ତି ନିସ୍ୱାର୍ଥପର ଭାବେ ବିନା ଦରମାରେ କାମ କରୁଛନ୍ତି। ବିଡ଼ମ୍ବନା ହେଉଛି ଯେ ଯେଉଁମାନଙ୍କ ମଙ୍ଗଳ ପାଇଁ ସେମାନେ ପରିଶ୍ରମ କରୁଛନ୍ତି, ସେହିମାନେ ହିଁ ହେତୁବାଦୀମାନଙ୍କୁ ବିରୋଧ କରୁଛନ୍ତି। ମଣିଷ ସମାଜର ହିତ ସାଧନ କରିବାକୁ କାମ କରୁଥିବା ହେତୁବାଦୀମାନଙ୍କୁ ଭାଗ୍ୟବାଦୀବର୍ଗର ଲୋକମାନେ ସହଜରେ ସ୍ୱୀକାର କରି ପାରୁନାହାନ୍ତି। କାରଣ ଭଣ୍ଡ ଓ ଧୂର୍ତ୍ତ ଧର୍ମଗୁରୁଙ୍କ ପ୍ରବଚନ ସେମାନଙ୍କ ମନକୁ ଏକ ମାୟାବୀ ଜାଲରେ ବାନ୍ଧି ରଖିଥାଏ। ଧୋକା ଖାଇବା ପରେ ବୁଝିପାରନ୍ତି କିନ୍ତୁ ଅନେକ ଡେରିରେ ବୁଝନ୍ତି।

ହେତୁବାଦ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ସତ୍ୟ ଓ ମିଥ୍ୟାକୁ ପୃଥକ୍ କରି ପ୍ରମାଣିତ କରିଥାଏ ଏବଂ ସତ୍ୟ ଯେତେ କଠୋର ବା ଅପ୍ରିୟ ହେଲେ ବି ସମସ୍ତଙ୍କ ଆଗରେ ପ୍ରତ୍ୟକ୍ଷ ପ୍ରମାଣ କରିବାର କ୍ଷମତା ରଖିଥାଏ। ସତ୍ୟର ମାର୍ଗ ସର୍ବଦା କଠିନ ବୋଲି ସଭିଏଁ ମାନନ୍ତି। ସେଥିପାଇଁ ଏହି ମାର୍ଗରେ ଚାଲୁଥିବା ଲୋକମାନଙ୍କ ସଂଖ୍ୟା ବହୁତ କମ୍। ପୂର୍ବ ଇତିହାସରୁ ବି ଜଣାପଡ଼େ, ହେତୁବାଦୀଙ୍କ ସଂଖ୍ୟା ଦୁନିଆର ସମସ୍ତ ଦେଶରେ କମ୍ କିନ୍ତୁ ଅନ୍ଧବିଶ୍ୱାସୀ ଓ

ମିଥ୍ୟାଚାରୀ ପ୍ରଚାରକ ମାନଙ୍କ ସଂଖ୍ୟା ବହୁତ ଅଧିକ । ସେହିମାନେ ଅଧିକ ପ୍ରତିଷ୍ଠିତ ଏବଂ ସମ୍ମାନିତ ବ୍ୟକ୍ତି ।

ହେତୁବାଦ ଆମର ସଂଘର୍ଷମୟ ଜୀବନକୁ ଅପେକ୍ଷାକୃତ ଭାବେ ସହଜ ଓ ସରଳ କରିଥାଏ । ଭାଗ୍ୟବାଦୀ ଚିନ୍ତାଧାରା ଆମର ସଂଘର୍ଷକୁ ବହୁତ ଜଟିଳ କରି ଦେଇଥାଏ । ଯାହାଦ୍ୱାରା ଆମର ମୂଲ୍ୟବାନ ସମୟ, ଶକ୍ତି ଓ ଧନ କ୍ଷତି ହୋଇଥାଏ କିନ୍ତୁ ପ୍ରତିବଦଳରେ କିଛି ବି ମିଳି ନଥାଏ । ଧର୍ମଶାସ୍ତ୍ରର ରହସ୍ୟମୟ ଦର୍ଶନ ଭିତରେ ପଶି ମନକୁ ଭାରାକ୍ରାନ୍ତ ନକରି ବୈଜ୍ଞାନିକ ପଦ୍ଧତିରେ ପ୍ରତ୍ୟେକ ବିଷୟକୁ ନିରୀକ୍ଷଣ, ପରୀକ୍ଷଣ, ଗବେଷଣା ଓ ବିଶ୍ଳେଷଣ କଲେ, ଜୀବନରେ ସୁଖ, ସମୃଦ୍ଧି  ବୃଦ୍ଧି ହେବ । ତେଣୁ ପ୍ରତ୍ୟେକ ସଚେତନ ନାଗରିକ ମୁକ୍ତ ମନରେ ହେତୁବାଦକୁ ସ୍ୱୀକାର କରିବା କେବଳ ଆବଶ୍ୟକ ନୁହେଁ ବରଂ ଏହା ଏକ ମାନବୀୟ କର୍ତ୍ତବ୍ୟ ।



# ଲଙ୍ଗୁବାବା ଓ ମଙ୍ଗୁବାବା ଉପାଖ୍ୟାନ

*ଡାକ୍ତର ନିହାର ରଂଜନ ମହାପାତ୍ର*

ପାଠକ ମାନଙ୍କୁ ପ୍ରଥମରୁ ସୂଚାଇ ଦେଉଛି ଯେ, ଯାହା ଲେଖୁଛି ସତ ଲେଖୁଛି । ନିଜେ ଅନୁଭବ କରିଥିବା କଥା ବର୍ଣ୍ଣନା କରୁଛି ।

**ଲଙ୍ଗୁବାବା ଚରିତ :-** ୧୯୯୫ ମସିହା କଥା । ଦିନେ ଗୋପପୁର ଅଞ୍ଚଳରେ ପ୍ରଚାର ହେଲା ଜଣେ ତରୁଣ କଉପୁନି ପିନ୍ଧା ସିଦ୍ଧ ପୁରୁଷଙ୍କର ଆବିର୍ଭାବ ହୋଇଛି । ସେ କଥାବାର୍ତ୍ତା ପ୍ରାୟ କରୁନାହାନ୍ତି । ଗୋଟିଏ ନିଛାଟିଆ ଅନାବାଦି ପଦାରେ ଛୋଟିଆ ଟୁଙ୍ଗିଟିଏ କରି ଅଧିକାଂଶ ସମୟ ଧ୍ୟାନମଗ୍ନ ରହୁଛନ୍ତି । ସାମାନ୍ୟ ଫଳ ଆହାର ଓ ନାକବାଟେ କେବଳ କ୍ଷୀର ପାନ କରୁଛନ୍ତି । ମୁଣ୍ଡତଳକୁ ଗୋଡ ଉପରକୁ କରି ହାତ ଯୋଡ଼ି ଦୀର୍ଘ ସମୟ ଅବିରାମ ପ୍ରାର୍ଥନା କରୁଛନ୍ତି । ଯଦିଓ ସେ ଏକା ତାଙ୍କ ଟୁଙ୍ଗିରେ ରହୁଛନ୍ତି, ପ୍ରତେକ ଦିନ ରାତି ଅଧରେ ତାଙ୍କ ଟୁଙ୍ଗିରୁ ଏକ ସମୟରେ ଖଞ୍ଜଣି, ଗିନି, ଢ଼ୋଲ, ଶଙ୍ଖ ଆଦି ବାଜୁଥିବାର ଶୁଣାଯାଉଛି । କଉପୁନି ଛଡା ଅନ୍ୟ କୌଣସି ବସ୍ତ୍ର ପିନ୍ଧୁ ନଥିବାରୁ ବୋଧହୁଏ ସେ ଲଙ୍ଗୁବାବା ନାମରେ ଏହି ଅଞ୍ଚଳରେ ଖ୍ୟାତ ହେଲେ । ବାବାଙ୍କର କିଛି ମାହାତ୍ମ୍ୟ ଅଛି ବୋଲି ଲୋକମାନେ କୁହାକୁହି ହେଲେ । ଧୀରେ ଧୀରେ ଟୁଙ୍ଗିକୁ ଜନ ସମାଗମ ବଢ଼ିଲା । ଏକଦା ପରିତ୍ୟକ୍ତ ହୋଇଥିବା ସ୍ଥାନଟି ଚଳଚଞ୍ଚଳ ହୋଇ ଟୁଙ୍ଗିଟି ଅଳ୍ପ କେତେ ଦିନ ମଧ୍ୟରେ ଗୋଟିଏ ଛୋଟକାଟିଆ ଆଶ୍ରମକୁ ରୂପାନ୍ତରିତ ହେଲା । ନିୟମିତ ନାମ ଓ ଧୂପ (ଗଞ୍ଜେଇ ଧୂପ) ଚାଲିଲା । କେତେ ଜଣ ଶିଷ୍ୟ ଉତୁରି ବାବାଙ୍କ ମହିମା ପ୍ରଚାର କଲେ । କିଛି ଭକ୍ତମାନଙ୍କ ଦାନ, ଦକ୍ଷିଣା, ଅକୁଣ୍ଠ ସହଯୋଗରେ ଆଶ୍ରମର ପରିସର ବଢ଼ି ବେଳକୁ ବେଳ ଆକର୍ଷଣୀୟ ହେଲା । ହଠାତ୍ ଦିନେ

ପ୍ରଚାର ହେଲା, ବାବା ରୋଗୀକୁ ଛୁଇଁ କିଛି ପତ୍ର ବା ଚେର ମୂଳି ଦେଇ ଅସାଧ୍ୟ ରୋଗସବୁ ଦୂର କରିପାରୁଛନ୍ତି । ଯନ୍ଦା, ପମ୍ପୁଡି ପରି ଲୋକମାନେ ଧାଡି ଲମ୍ବିଲେ । କିଛି ଦିନପରେ ରୋଗୀମାନଙ୍କର ସେଠାକୁ ଯିବା ଆପେ ଆପେ ବନ୍ଦ ହୋଇଗଲା । କାରଣ ଜଣେ ସାପକାମୁଡା ବ୍ୟକ୍ତିର ମୃତ୍ୟୁ ସେଠାରେ ହେଲା ଓ ନିକଟସ୍ଥ ସ୍ୱାସ୍ଥ୍ୟ କେନ୍ଦ୍ର ଦାୟିତ୍ୱରେ ଥିବା ଅଧିକାରୀଙ୍କୁ ଆଶ୍ରମରେ ଚାଲିଥିବା କାର୍ଯ୍ୟ ବିଷୟରେ ମୁଁ ବାରମ୍ବାର ଜଣାଇବାରୁ ସେ ଥାନାରେ ଖବର ଦେଲେ ଓ ବୋଧହୁଏ ଖାକି ପୋଷାକ ଦେଖି ବାବା ଚିକିତ୍ସା ଧନ୍ଦା ବନ୍ଦ କଲେ ।

ଲଙ୍ଗୁବାବାଙ୍କର ବଇଦ ପଣିଆ ସିନା ବନ୍ଦ ହେଲା, ହେଲେ ଆଶ୍ରମରେ ଗହଳି-ଚହଳି ଓ ଅନ୍ୟ ସବୁ କାର୍ଯ୍ୟକଳାପ ପୂର୍ବପରି ଚାଲିଲା । ନୂତନ ଭକ୍ତ ମାନଙ୍କୁ ବାବା ରାତିରେ ମନ୍ତ୍ର ଦିଅନ୍ତି । ମନ୍ତ୍ର ନେବା ଲୋକ ଓ ବାବା ମୁହାଁ ମୁହିଁ ହୋଇ ବସନ୍ତି । ସେମାନଙ୍କ ଉପରେ ଗୋଟିଏ ବସ୍ତ୍ର ପକାଯାଏ । ବାବା ଭକ୍ତଙ୍କ କାନରେ ମନ୍ତ୍ର ଦିଅନ୍ତି । ବାବା ଓ ତାଙ୍କର କିଛି ଅନୁଗତ କୁହନ୍ତି, ମନ୍ତ୍ର ଅଭ୍ୟାସ କରିବା ଲୋକର ପାରିବାରିକ ଅଶାନ୍ତି, ଶାରୀରିକ ଅସୁସ୍ଥତା, ଦାରିଦ୍ର୍ୟ, ଖରାପ ବେଳା ଦୂର ହୁଏ ଓ ରିଷ୍ଟ ଖଣ୍ଡନ ହେବାରୁ ସେ ସବୁଥିରେ ସଫଳ ହୁଏ । ଦିନେ ରାତି ୮ଟାରେ ଜଣେ ସ୍ତ୍ରୀ ଲୋକ ସାମାନ୍ୟ ଖଣ୍ଡିଆ ଖାବରା ହୋଇ ମୋ କ୍ଲିନିକକୁ ଆସିଲେ । ତାଙ୍କୁ ଆଣିଥିବା ୨/୩ ଜଣ ଲୋକ କହିଲେ ବାବାଙ୍କ ପାଖରୁ ମନ୍ତ୍ର ନେଇ ଫେରୁଥିବା ବେଳେ ମୁଣ୍ଡ ବୁଲାଇବାରୁ ସେ ତଳେ ପଡିଯାଇ ଏପରି ଆଘାତ ପାଇଛନ୍ତି । ରୋଗୀଙ୍କୁ ପରୀକ୍ଷା କରି ଜାଣିଲି ତାଙ୍କଠାରେ କିଛି ନିଶାଦ୍ରବ୍ୟର ପ୍ରଭାବ ରହିଛି । ପଚାରିବାରୁ ରୋଗୀଙ୍କ ସମ୍ପର୍କୀୟମାନେ କହିଲେ ବାବା ପ୍ରଥମେ ଭକ୍ତଙ୍କୁ ଠାକୁରଙ୍କ ଭୋଗ ଖାଇବାକୁ ଦେଇ ମନ୍ତ୍ର ଗାନ ଦ୍ୱାରା ସମ୍ମୋହିତ କରି କାନରେ ମନ୍ତ୍ର ଦେଲେ ଓ ଲିଖିତ ମନ୍ତ୍ର ଦେଇ ସବୁଦିନ ସକାଳେ ଓ ସଂନ୍ଧ୍ୟାରେ ପଢ଼ିବାକୁ କହିଲେ । ରୋଗୀଙ୍କୁ ଚିକିତ୍ସା କରି ବିଦାକଲି ଓ ତା ପରଦିନ ସଂନ୍ଧ୍ୟାରେ ଡ୍ରେସିଙ୍ଗ୍ ପାଇଁ ଆସିବାକୁ ପରାମର୍ଶ ଦେଲି । ତାପର ଦିନ ରୋଗୀ ନିର୍ଦ୍ଦିଷ୍ଟ ସମୟରେ ଆସି ପହଞ୍ଚିଲେ । ଡ୍ରେସିଙ୍ଗ୍ ରୁମ୍‌କୁ ନେଇ ହଠାତ୍ ତାଙ୍କୁ ମୁଁ ପଚାରିଲି "ଆପଣଙ୍କ ପରି ଭଦ୍ର ଓ ଶିକ୍ଷିତ ମହିଳା ବାବାଙ୍କ ଅଶ୍ଳୀଳ କାର୍ଯ୍ୟକଳାପକୁ ପ୍ରତିବାଦ ନକରି କିପରି ମଥାପାତି ସହିଲେ ? ସେ ଭୟାତୁର ଓ ଆଖି ଛଳ ଛଳ କରି କହିଲେ ପ୍ରସାଦ ଖାଇବାର କିଛି ସମୟରେ ତାଙ୍କ ମୁଣ୍ଡ ଭୀଷଣ ବୁଲାଇ ନିଦୁଆ ଲାଗିଲା ଓ ବାବା ମନ୍ତ୍ର ବୋଲି ଉଭୟଙ୍କ ମୁଣ୍ଡ ଉପରେ ମଠା ପକାଇ ତାଙ୍କ ଅଙ୍ଗ ପ୍ରତ୍ୟଙ୍ଗରେ ହସ୍ତ ସଞ୍ଚାଳନ କଲେ । ସେ ବିରୋଧ କରିବାକୁ ଚେଷ୍ଟା କଲେ ମଧ୍ୟ ଖୁବ୍ ଦୁର୍ବଳ ଅନୁଭବ କରିବାରୁ ବିଶେଷ ପ୍ରତିରୋଧ କରି ପାରିଲେନି । ଆଉ କଦାପି ଆଶ୍ରମକୁ ଯିବେ ନାହିଁ ବୋଲି ସେ କହିଲେ । ମୁଁ କହିଲି ଏହାଦ୍ୱାରା କିଛି ଲାଭ ହେବ ନାହିଁ । ଦୋଷୀକୁ ଦଣ୍ଡ ଓ ଅନ୍ୟ ଭଉଣୀ ମାନଙ୍କ ଇଜ୍ଜତ ରକ୍ଷା କରିବାକୁ ହେଲେ ତାଙ୍କୁ ମୁହଁ ଖୋଲିବାକୁ ହେବ । ସେ ଜମା ରାଜି ହେଲେ ନାହିଁ । କହିଲେ ତାଙ୍କ ସ୍ୱାମୀ ଅତ୍ୟନ୍ତ ବଦ୍‌ରାଗୀ ଓ ଏକବୁଝା ଲୋକ । ସ୍ୱାମୀ ଜାଣିଲେ ପ୍ରଳୟ ହେବ ଓ ଲଜ୍ଜା

ସହି ନପାରି ସେ ଆତ୍ମହତ୍ୟା କରିବାକୁ ବାଧ୍ୟ ହେବେ । ସମ୍ପୃକ୍ତ ବ୍ୟକ୍ତିଙ୍କ ପାରିବାରିକ ସମସ୍ୟା, ଲୋକ ଲଜ୍ଜା ଓ ସାମାଜିକ ପ୍ରତିଷ୍ଠା ହାନୀ କଥା ଚିନ୍ତା କରି ମୁଁ ନୀରବ ରହିବାକୁ ଉଚିତ୍ ମନେ କଲି । କିନ୍ତୁ ଯେକୌଣସି ଉପାୟରେ ସେ ଭଣ୍ଡ ବାବାର ମୁଖା ଖୋଲିବାକୁ ପ୍ରତିଜ୍ଞା କଲି ।

ନିକଟସ୍ଥ ଗ୍ରାମର ଜଣେ ପିତୃହୀନ ବାଳିକା ମିନତୀ ସାହୁ ଡିପ୍ଲୋମା ନର୍ସିଙ୍ଗ୍‌ର ଫାଇନାଲ ପରୀକ୍ଷା ଦେଇ ଘରେ ଆସି ଥାଆନ୍ତି । ଅଭ୍ୟାସ ପାଇଁ ସେ ବେଳେ ବେଳେ ମୋ କ୍ଲିନିକ୍‌କୁ ଆସନ୍ତି । କହିବି- ନକହିବି ଭାବିଭାବି ଶେଷରେ ତାଙ୍କୁ ମୁଁ ମୋର ମନକଥା କହିଲି । ସେ ଜମା ରାଜି ହେଲେ ନାହିଁ । ଭଲଭାବେ ବୁଝାଇବା ପରେ ସେ ତାଙ୍କ ମାଆଙ୍କୁ ଆଣି ମୋ ପାଖକୁ ଆସିଲେ । ମୋ ଠାରୁ ଆଗରୁ ଅନେକ କିଛି ସାହାଯ୍ୟ ପାଇଥିବା ମାଆ ଓ ଝିଅ ଶେଷରେ ଅନ୍ୟମାନଙ୍କ ମଙ୍ଗଳ ପାଇଁ ମୋ ପ୍ରସ୍ତାବରେ ରାଜି ହେଲେ । ଯୋଜନା ଅନୁଯାୟୀ ଦିନେ ସନ୍ଧ୍ୟାପରେ ମିନତୀକୁ ମୋର ଜଣେ ପରିଚିତ ବୟସ୍କ ବ୍ୟକ୍ତି ନେଇ ବାବାଙ୍କ ନିକଟରେ ପହଞ୍ଚିଲେ । ପ୍ରଥମେ ଉଭୟେ ବାବାଙ୍କ ଚରଣ ସ୍ପର୍ଶ କରି ଆଶୀର୍ବାଦ ନେଲେ । ବ୍ୟକ୍ତି ଜଣକ କହିଲେ, "ବାବା ! ଅଭାବ-ଅସୁବିଧା ଓ ବିଭିନ୍ନ ରୋଗ ସହ ଆମ ଘରେ ସଦାବେଳେ ପାରିବାରିକ ଅଶାନ୍ତି ଲାଗି ରହୁଛି । ମା-ଝିଅ ଜମା ପଡୁନାହାନ୍ତି । ସଦାବେଳେ ଘରେ ଗଣ୍ଡଗୋଳ । ଆପଣ ଆମକୁ ଏ ଦୁଃଖରୁ ଉଦ୍ଧାର କରନ୍ତୁ" । ବାବା ଉଭୟଙ୍କୁ କିଛି ସମୟ ନୀରବରେ ନିରୀକ୍ଷଣ କଲେ । ଆଖିବୁଜି କିଛି ସମୟ ବସିଲେ ଏବଂ କହିଲେ, ଝିଅ ମନ୍ତ୍ର ନେଇ ନିଷ୍ଠାରେ ରହିଲେ ସବୁକିଛି ସମାଧାନ ହୋଇ ଘର ସୁଖ-ଶାନ୍ତିରେ ପୂରି ଉଠିବ । ନିର୍ଦ୍ଦିଷ୍ଟ କୋଠରୀକୁ ମିନତୀଙ୍କୁ ନିଆଗଲା । ବାବାଙ୍କର ଅନ୍ୟମନସ୍କତାର ସୁଯୋଗ ନେଇ ମୋ କଥା ଅନୁସାରେ ମିନତୀ ଠାକୁରଙ୍କ ଭୋଗକୁ ଫିଙ୍ଗି ଦେଇ ଖାଇବାର ଅଭିନୟ କଲେ, ୧୦ ମିନିଟ୍ ପରେ ମିଛରେ ଢୁଳାଇଲେ । ଭଦ୍ରବ୍ୟକ୍ତି ବାହାରେ ଅପେକ୍ଷା କଲେ । ମିନତୀ ଓ ଅନର୍ଗଳ ଶ୍ଳୋକ ଆବୃତ୍ତି କରୁଥିବା ବାବା ମୁହାଁମୁହିଁ ହୋଇ ବସିଲେ । ଉଭୟଙ୍କ ଉପରେ ପବିତ୍ର ବସ୍ତ୍ର ପଡିଲା । ୨/୩ ମିନିଟ୍ ପରେ ଉପର ବସ୍ତ୍ରକୁ ଫିଙ୍ଗି ହାଉଳି ଖାଇ ମିନତୀ ସେଠାରୁ ଉଠି ଆସି ବାହାରୁ ଚପଲ ଆଣି ବାବାଙ୍କୁ ପ୍ରହାର କଲେ । ମିନତୀଙ୍କ ଠାରୁ ସବୁକଥା ଶୁଣି ବାବାଙ୍କ ଅଶାଳୀନ ଆଚରଣକୁ ନିନ୍ଦାକରି ଭଦ୍ରବ୍ୟକ୍ତି ଜଣକ ମଧ୍ୟ ଉଚ୍ଚ ଗଳାରେ ଭୀଷଣ ପାଟିତୁଣ୍ଡ କଲେ । ହୋ-ହାଲା ଶୁଣି ବାହାରୁ ଲୋକ ଆସି ଜମିଗଲେ । କିଛି ଯୁବକ ସବୁକଥା ଶୁଣି ବାବାଙ୍କୁ ଉତ୍ତମ-ମଧ୍ୟମ ଦେଇ ଗୋଟିଏ ଲଙ୍ଗଳ ଦଉଡି ଆଣି ସେଥିରେ ବାବାଙ୍କ ଅଣ୍ଟାକୁ ବାନ୍ଧି ଭିଡି ଭିଡି କ୍ଲବ୍ ଆଡେ ନେଲେ । କ୍ଲିନିକ୍‌ରେ ମତେ ଜଣେ ବ୍ୟକ୍ତି ଆସି କହିଲେ, ଶହ ଶହ ବ୍ୟକ୍ତି ବାବାଙ୍କୁ ଧକିଆ, ବେକିଆ ଦେଇ ବାନ୍ଧି ରାସ୍ତାରେ ନେଉଛନ୍ତି । ବାବାଙ୍କର ଖେଳ ଖତମ୍ ହେଲା ବୋଲି ଜାଣିଲି କିନ୍ତୁ ଭୟ କଲି, ଲୋକେ ଯେପରି ଭାବେ ଆଇନ୍‌କୁ ହାତକୁ ନେଲେଣି, ଅସୁବିଧା ହୋଇପାରେ । ସାଙ୍ଗେ ସାଙ୍ଗେ ବଡମ୍ବା ଥାନାକୁ

ଖବର ଦେଲି । କିଛି ସମୟ ପରେ ପୋଲିସ୍ ଆସି ବାବାଙ୍କୁ କ୍ଲବରୁ ଉଦ୍ଧାର କରି ସରକାରୀ ଡାକ୍ତରଖାନାରେ ଚିକିତ୍ସା କରାଇ ଥାନାକୁ ନେଲେ । ଉକ୍ତ ଯୁବକମାନେ ଗାଁ ସଭାପତିଙ୍କ ନେତୃତ୍ୱରେ ନିଜେ ନିର୍ମାଣ କରିଥିବା ଆଶ୍ରମକୁ ଭାଙ୍ଗି ସେଠାରେ ଖେଳପଡିଆ କରିବେ ବୋଲି ସ୍ଥିର କଲେ । ରାତାରାତି ଆଶ୍ରମ ଭଙ୍ଗା ଚାଲିଲା । ବିଭିନ୍ନ ଠାକୁର ସରଞ୍ଜାମ, ଲୁଗାପଟା ସହ ଆଶ୍ରମରୁ ମିଳିଲା ପ୍ରାୟ ୧୭,୦୦୦ ଟଙ୍କା, କିଛି ବାଦ୍ୟଯନ୍ତ୍ର, ବିପୁଳ ପରିମାଣର ଗଞ୍ଜେଇ ଓ ୩୦ ଟି ନାଇଟ୍ରୋସନ୍-ଟେନ୍ ଟାବ୍‌ଲେଟ । ବୋଧହୁଏ ଏହି ଟାବ୍‌ଲେଟ୍‌କୁ ଗୁଣ୍ଡ କରି ପ୍ରସାଦରେ ମିଶାଇ ମହିଳା ଭକ୍ତଙ୍କୁ ନିଶାଗ୍ରସ୍ତ କରାଇ ବାବା ନିଜର ବିକୃତ ରୁଚିକୁ ଚରିତାର୍ଥ କରୁଥିଲେ । ସବୁଠାରୁ ସାଂଘାତିକ ଜିନିଷ ଗୋଟିଏ ପ୍ୟାକେଟ୍‌ରୁ ମିଳିଲା । ନିକଟବର୍ତ୍ତୀ ଅଞ୍ଚଳର କିଛି ଝିଅ ବୋହୂଙ୍କର ନଗ୍ନ ରଙ୍ଗୀନ ଫଟୋ ସେଥିରେ ଥିଲା । ବାବାଙ୍କ ଠାରୁ ଖବର ସଂଗ୍ରହ କରି ପୋଲିସ୍ ଆସି ଧରିଥିଲା ବାବାଙ୍କ ଅନ୍ତରଙ୍ଗ ହୋଇଥିବା ଜଣେ ଫଟୋଗ୍ରାଫରଙ୍କୁ, ଯିଏକି ସେହି ଅଞ୍ଚଳର ଜଣେ ବିଶେଷ ଧନୀ ତଥା ପ୍ରଭାବଶାଳୀ ରାଜନୀତିଜ୍ଞଙ୍କର ପୁତୁରା ଥିଲା । ଏତେ ପ୍ରମାଣ ଥିବା ସତ୍ତ୍ୱେ ରାଜନୈତିକ ଚାପ ଓ ଲାଞ୍ଚ ଦ୍ୱାରା ଫଟୋଗ୍ରାଫର ମୁକୁଳିଗଲା । ବାବା ମଧ୍ୟ କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ । ଉପରୁ ଚାପ ଓ ମୋଟା ଅଙ୍କର ଅର୍ଥ କାରବାର ହୋଇଥିବା କଥା ଶୁଣାଗଲା । ପରେ ଫଟୋଗ୍ରାଫରଙ୍କ ଠାରୁ ଜାଣିଲି ବାବା ଅନେକ ଟଙ୍କା ବ୍ୟାଙ୍କରେ ରଖିଛନ୍ତି ଓ ଉପର ମହଲରେ ତାଙ୍କର ଖୁବ୍ ଭଲ ହାତ ଅଛି । ବାବାଙ୍କୁ ଦୁଷ୍କର୍ମରେ ପ୍ରତ୍ୟକ୍ଷଭାବେ ସାହାଯ୍ୟକରି ସେ ଖୁବ୍ ଆର୍ଥିକ ଫାଇଦା ହାସଲ କରିଛନ୍ତି । ବିପରୀତ ସେକସ୍‌ପ୍ରତି ଆକର୍ଷଣ, ଯାହାକି ମଣିଷର ଆଦିମ ପ୍ରବୃତ୍ତି, ତାହା ବାବାଙ୍କଠାରେ ଅତି କୁତ୍ସିତ ରୂପରେ ଥିଲା । ସରଳ ଲୋକଙ୍କର ଧର୍ମପ୍ରତି ଦୁର୍ବଳତା ଓ ଅଜ୍ଞତାକୁ ଲକ୍ଷ୍ୟ କରି ସହଜ ଉପାୟରେ ଧନ ରୋଜଗାର ଓ ନିଜର କୁପ୍ରବୃତ୍ତିକୁ ଚରିତାର୍ଥ କରିବା ପାଇଁ ସେ ବାବାଜୀ ବୃତ୍ତିକୁ ଆଦରି ଥିଲେ । ଫଟୋଗ୍ରାଫ୍‌ରଙ୍କ ଠାରୁ ଆହୁରି ମଧ୍ୟ ଜାଣିଲି ବାବା ପାଦ ଦ୍ୱାରା ଗିନି, ହାତଦ୍ୱାରା ଏକ ସମୟରେ ଖଞ୍ଜଣି ଓ ଢ଼ୋଲ, ପାଟିରେ ଗୋଟିଏ ନଳୀ ରଖି ଶଙ୍ଖପରି ଶବ୍ଦ ସୃଷ୍ଟି କରିପାରନ୍ତି । ବାବାଙ୍କ ଅସାମାଜିକ କାର୍ଯ୍ୟ ବିଷୟରେ ଲୋକଙ୍କୁ କିଛିଟା ସଚେତନ କରିପାରିଥିବାରୁ ଆମକୁ କିଛିଟା ଆତ୍ମ ସନ୍ତୋଷ ମିଳିଥିଲେ ମଧ୍ୟ ସେ ଓ ତାଙ୍କ ସହଯୋଗୀ ଯେପରି ଭାବେ ସହଜରେ ଆଇନ୍ ଜାଲରୁ ମୁକୁଳିଗଲେ, ତାହା ଆମକୁ ଖୁବ୍ ବ୍ୟଥିତ କଲା ।  ମୋର ଅନୁମାନ ବାବା ଅନ୍ୟ କେଉଁଠାରେ ତାଙ୍କ ରୂପ ବଦଳାଇ ତାଙ୍କର ପୁରୁଣା ଖେଳ ଚଳାଇଥିବେ । ମିନତୀଙ୍କ ସାହସିକତା ପାଇଁ ତାଙ୍କୁ ଉପଯୁକ୍ତ ଭାବେ ପୁରସ୍କୃତ କରାଯାଇଥିଲା ।

ମଙ୍ଗୁବାବା ଚରିତ:- ୨୦୦୧ ମସିହା କଥା । ଅନେକ ଛୋଟକାଟିଆ ଅସାମାଜିକ କାର୍ଯ୍ୟକରି ଗୋପପୁର ଅଞ୍ଚଳରୁ ଫେରାର ହୋଇ ଯାଇଥିବା ମଙ୍ଗୁଳି ନାମକ ଜଣେ ଖୁବ୍

ଦରିଦ୍ର ଯୁବକର ହଠାତ୍ ଦିନେ ସେହି ଅଞ୍ଚଳରେ ଆବିର୍ଭାବ ହେଲା ଏକ ଭିନ୍ନ ରୂପରେ । ସାଇବାବା କଟିଙ୍ଗ୍‌ର ବାଳ, ରବିଶଙ୍କର କଟିଙ୍ଗ୍‌ର ଦାଢ଼ି ଓ ରଜନୀଶ୍ ଢ଼ଙ୍ଗର ଠାଣି ଓ ବାଣୀ ସହ ତାର ବେପରୁଆ ଖର୍ଚ୍ଚ ଦେଖି ଲୋକ ଆଶ୍ଚର୍ଯ୍ୟ ହେଲେ । ଲମ୍ବା ସିନ୍ଦୁରକଲି, ରୁଦ୍ରାକ୍ଷ ଓ ଏକ ରଙ୍ଗର ଚୂଡିଦାର ସହ ପଞ୍ଜାବୀ ହେତୁ ବହୁ ଦୂରରୁ ଦେଖି ତାଙ୍କୁ ବାରି ହୋଇଯାଉଥାଏ । ଚେହେରା ତଥା କଥାର ଚାତୁରିରେ ବ୍ୟକ୍ତିକୁ ହିପ୍ନୋଟାଇଜ୍ କରି ମୋହି ନେବାର ସାମର୍ଥ୍ୟ ତାଙ୍କର ଥିଲା । ଲୋକ ତାଙ୍କୁ ଆଉ ମଙ୍ଗୁଳି ନଡାକି  ମଙ୍ଗୁବାବା ବୋଲି ଡାକିଲେ । ଲୋକ ମାନଙ୍କଠାରୁ ଶୁଣିଲି ସେ ତନ୍ତ୍ର ବିଦ୍ୟା ହାସଲ କରିବା ପରେ ବେତାଳ ସାଧନ କରି ବିଭିନ୍ନ ଅଞ୍ଚଳରେ ନିଜର କରିସ୍ମା ଦେଖାଇ କିଛି ଦିନ ପାଇଁ ଜନ୍ମସ୍ଥାନକୁ ଆସିଛନ୍ତି । କେଉଁ ଜାଗାର ମାଟି ତଳେ କେଉଁ ଠାକୁର ମୂର୍ତ୍ତି ସବୁ କେବେଠାରୁ ଅଜଣା ଭାବେ ପଡିରହିଛନ୍ତି ତଥା କାହାଘର, ଅଗଣା, ବ୍ୟବସାୟ ପ୍ରତିଷ୍ଠାନର କିଛି ଫୁଟ୍ ତଳେ ମୁହଁମାଡି ପଡିରହିଥିବା ଠାକୁର ମୂର୍ତ୍ତିମାନଙ୍କୁ ସେ ବିଦ୍ୟା ଦ୍ୱାରା ଜାଣିପାରି ବିଧି ଅନୁସାରେ ଉଦ୍ଧାର କରିଥାନ୍ତି । ଯେଉଁ ସ୍ଥାନର ମାଟିତଳେ ଠାକୁର ପୂଜା ନପାଇ ପଡିରହିଥାନ୍ତି, ସେ ଘରେ ବ୍ୟବସାୟ ପ୍ରତିଷ୍ଠାନରେ କୁଆଡେ ସବୁବେଳେ ଅମଙ୍ଗଳ, ଅଶାନ୍ତି ଓ କ୍ଷତି ଲାଗିରହିଥାଏ । ନିୟମ ଅନୁଯାୟୀ ମୂର୍ତ୍ତି ଉଦ୍ଧାର ହୋଇ ପୂଜା ପାଇଲେ ଦୁଃସମୟ ଦୂର  ହୋଇ କୁଆଡେ ସୌଭାଗ୍ୟ ମାଡି ଆସେ । ବହୁତ ବଡ଼ ବଡ ଲୋକଙ୍କ ପାଖରୁ ବାବାଙ୍କ ପାଖକୁ ଅଧିକାଂଶ ସମୟ ଫୋନ୍ ଆସେ । ବେଳେ ବେଳେ କିଛି ବଡବଡିଆ ଗାଡିମଟରରେ ଆସି ବାବାଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି ସସମ୍ମାନେ ନିଅନ୍ତି ଓ ତାପରଦିନ ଛାଡି ଦେଇଯାଆନ୍ତି । ଦିନେ ବଡି ଭୋରରୁ କିଛି ଲୋକ ଦେଖିଲେ ବାବା ଗୋଟିଏ ପୋଖରୀ ନିକଟରେ ଗୋଟିଏ ବେଲ ଗଛ ମୂଳେ ବସି ପୂଜା କର୍ମ କରୁଛନ୍ତି । ଟିକିଏ ଆଗରେ ଗୋଟିଏ ଜୀବନ୍ତ ନାଗ ସାପ ପଡିରହିଛି । ଅଳ୍ପ ସମୟ ମଧ୍ୟରେ ହଜାର ହଜାର ଲୋକ ଜମା ହୋଇଗଲେ । ବାବା ପୂଜା ସାରି ସାପ ନିକଟକୁ ଯାଇ ଚନ୍ଦନ ଓ ସିନ୍ଦୂର ଲଗାଇଲେ । ମୁଣ୍ଡିଆ ମାରିଲେ । ବାବା ଘୋଷଣା କଲେ, ସେହି ସ୍ଥାନର ମାଟିତଳେ ପିତ୍ତଳ ନାଗ ଦୀର୍ଘଦିନ ହେଲା ପୂଜା ନହୋଇ ପଡିରହିଛି । ଲୋକମାନେ ସାପ ନିକଟକୁ ହାତଯୋଡି ଗଲେ ମଧ୍ୟ ସେ ନ କାମୁଡି ସାମାନ୍ୟ ଏପଟ ସେପଟ ହୋଇ ଶୋଇ ରହୁଥାଏ । ବାବା ମାଟିଖୋଳି ଲୋକଙ୍କ ସାମ୍ନାରେ ପିତ୍ତଳ ନାଗ ଉଦ୍ଧାର କଲେ । ଦିନେ ନା ଦିନେ ସେଠାରେ ଗୋଟିଏ ଶିବ ମନ୍ଦିର ନିର୍ମାଣ କରିବେ ବୋଲି ବାବା କହିବାରୁ ଅନେକ ଦର୍ଶକ ନିଜର ସାମର୍ଥ୍ୟ ଅନୁସାରେ ଆର୍ଥିକ ସାହାଯ୍ୟ କଲେ । ବାବା ସାପଟିକୁ ହାତରେ ଧରି ନିକଟସ୍ଥ ବୁଦାରେ ଛାଡି ଦେଲେ ଓ ଲୋକଙ୍କଠାରୁ ମନ୍ଦିର ନିର୍ମାଣ ନାମରେ ଟଙ୍କା ଆଦାୟ କରି ଚାଲିଲେ । ନିକଟସ୍ଥ କେତେକ ଅଞ୍ଚଳରୁ ଦୁର୍ଗା ମୂର୍ତ୍ତି, ରାମ-ସୀତା ମୂର୍ତ୍ତି, ଶିବଲିଙ୍ଗ ଆଦି ବାହାର କରି ବାବା ଖୁବ୍ ଧନ ଓ ନାଁ କମାଇଲେ । ସ୍ଥାନ ଦେଖି ସେ ୫,୦୦୦ ଟଙ୍କାରୁ

୨୦,୦୦୦ ଟଙ୍କା ପର୍ଯ୍ୟନ୍ତ ଦାବି କରନ୍ତି । ବେଳକୁ ବେଳ ଧନ ଓ ଖାତିରି ଏପରି ବୃଦ୍ଧି ପାଇଲା ଯେ , ଦଳେ ଲୋକ ତାଙ୍କ ପଛରେ ସଦାବେଳେ ବୁଲିଲେ । ସେ ଆଖିବୁଜା ଖର୍ଚ୍ଚ କରନ୍ତି, ନିଜେ ଖୁବ୍ ଖାଆନ୍ତି ଓ ଅନ୍ୟକୁ ଖୁଆନ୍ତି । ଆଖି ଅଧିକାଂଶ ସମୟ ନାଲ୍ ନାଲ୍ ହୋଇଥାଏ । ଏତେ ଧନ ତାଙ୍କର ରୋଜଗାର ହେଲା ଯେ, ସେ ମଝିରେ ମଝିରେ ବିଭିନ୍ନ ସ୍କୁଲ ପିଲା, କ୍ଲବ୍ ପିଲା ଓ ବିଭିନ୍ନ ସଂଘର ସଭ୍ୟଙ୍କୁ ସ୍ୱେଚ୍ଛାରେ ଭୋଜି ପ୍ରଦାନ କଲେ ।

ବାବା ଦିନେ ମୋ ନିକଟକୁ କେତୋଟି ୫୦୦ ଟଙ୍କିଆ ନୋଟ୍ ରେଜା କରିବାକୁ ଆସିଥିଲେ । ତାଙ୍କୁ ମୁଁ କହିଲି, "ବାବା ! ଆମ ଘରର ଗୋଟିଏ ବଖରାରେ ଆମେ ଯେ କେହି ଶୋଇଲେ ମଧ୍ୟ ଶାନ୍ତିରେ ଶୋଇ ପାରୁ ନାହୁଁ । ରାତିସାରା ଦୁଃସ୍ୱପ୍ନ ହେଉଛି । ଭୟ ଭୟ ଲାଗୁଛି, କିଛି ଅସୁବିଧା ଅଛିକି ?" ବାବା ତତ୍‌କ୍ଷଣାତ୍ ପରୀକ୍ଷା କରିବାକୁ ଚାହିଁଲେ ଓ ସେହି କୋଠରୀକୁ ଯାଇ ଚାରିକୋଣ ଓ ମଝିସ୍ଥାନକୁ ଗୋଟିଏ ମୁନିଆ ଲୁହା ସାହାଯ୍ୟରେ ସାମାନ୍ୟ ରାମ୍ପି ବିଭିନ୍ନ ଠାଣିରେ ପରୀକ୍ଷା ନିରୀକ୍ଷା କରି କହିଲେ, "ଘରର ନୈଋତ କୋଣରୁ ୪ ହାତ ୧ ଚାଖଣ୍ଡ ତଳେ ଦକ୍ଷିଣ କାଳୀ ମୁଁହମାଡି ରହିଛନ୍ତି । ଆଗକୁ ଭୀଷଣ ବିପଦ । ଏପରିକି ସେ ଗୋଟିଏ-ଦୁଇଟି ମୁଣ୍ଡ ନେବାର ମଧ୍ୟ ସମ୍ଭାବନା ରହିଛି" । ପ୍ରତିକାର ବିଧି ପଚାରିବାରୁ ଆନୁଷଙ୍ଗିକ ପୂଜା, କର୍ମକର୍ମାଣି, ଦେବୀଙ୍କ ଉଦ୍ଧାର, ଅଭିଷେକ, ପ୍ରତିଷ୍ଠା ଆଦିରେ ୨୦,୦୦୦ ଟଙ୍କା ଖର୍ଚ୍ଚ ହେବ ବୋଲି ସେ କହିଲେ । ୧୫,୦୦୦ ଟଙ୍କାରେ କଥା ତୁଟିଲା । ଏକା ନିଃଶ୍ୱାସରେ ଶ୍ଳୋକ ଆକାରରେ ୧୪ଟି ପୂଜା ସାମଗ୍ରୀ ଠିକ୍ କରି ରଖିବାକୁ ବାବା ମତେ କହିଲେ । ୨/୩ ଥର ପଚାରି ସେ ସବୁ ଲେଖି ରଖିଲି । ଗଣନାକରି ଶନିବାର ରାତି ୧୨ଟାରୁ ପୂଜା ଆରମ୍ଭ ହୋଇ ରାତି ୪ଟା ସୁଦ୍ଧା ଉଦ୍ଧାର ଓ ପ୍ରତିଷ୍ଠା କାର୍ଯ୍ୟ ସରିଯିବ ବୋଲି ସେ ମୋତେ ପ୍ରତିଶ୍ରୁତି ଦେଲେ ।

ମୋର ଜଣେ ହାଇସ୍କୁଲ ସମୟର ଅନ୍ତରଙ୍ଗ ବନ୍ଧୁ ସେତେବେଳେ ଢେଙ୍କାନାଳ ଥାନାର ଭାରପ୍ରାପ୍ତ ଅଧିକାରୀ ଥିଲେ । ତାଙ୍କ ସହ ଯୋଗାଯୋଗ କଲି । ସେ ଜଣେ ଷ୍ଟାଫ୍ ସହ ସାଦା ପୋଷାକରେ ଶନିବାର ରାତିରେ ଆସି ଆମ ଘରେ ପହଞ୍ଚିଲେ । ମଙ୍ଗୁବାବୁଙ୍କ କଥା ଅନୁଯାୟୀ ଘରୁ ସବୁ ଜିନିଷ କାଢ଼ି ପରିଷ୍କାର କରି ଧୋଇ ସମସ୍ତ ପୂଜା-ଜିନିଷ ସଜାଡି ରଖିଲି । ରାତି ୧୧ଟାରେ ବାବା ଆସି ଘରକୁ ଦେଖିଲେ ଓ ପୂଜା ଆରମ୍ଭ କଲେ । ହଠାତ୍ ନଡିଆଟିକୁ ଜୋର୍‌ରେ ପିଟିଦେଲେ । ନଡିଆ ପାଣି ଯେଉଁଠି ପଡିଲା ସେଠାରେ ନୂତନ ଶୈଳୀରେ ବିଭିନ୍ନ ମନ୍ତ୍ର ଉଚ୍ଚାରଣ ଓ ବିକୃତ ଅଙ୍ଗଭଙ୍ଗୀ ସହ ସ୍ୱତନ୍ତ୍ର ଭାବେ ପୂଜାବିଧି ସମାପନ କରି ବାବା ଓ ତାଙ୍କ ସାଥୀ ମାଟି ଖୋଳିବା ଆରମ୍ଭ କଲେ । ଲାଇଟ୍ ଜଳିବ ନାହିଁ, କେବଳ ଦୀପ ଜଳିବ କହିବାରୁ ଅଧିକ ଘିଅ ଓ ମୋଟା ବଳିତା ଦେଇ ଏକ ଉଜ୍ଜଳ ଦୀପର ବ୍ୟବସ୍ଥା କଲି । ଝାଳନାଳ ହୋଇ ଗୁରୁ-ଶିଷ୍ୟ ଦେଢ ଘଣ୍ଟା ଭିତରେ ୪ ହାତରୁ ଅଧିକ

ଖୋଳି ଦେଲେ । ତାଙ୍କର ପ୍ରତ୍ୟେକ କାର୍ଯ୍ୟକଳାପକୁ ମୁଁ ସତର୍କ ଦୃଷ୍ଟି ରଖିଥାଏ । ଗାତକୁ ପରୀକ୍ଷା କରି ବାବା କହିଲେ, "ସ୍ନାନ ସମାପନ କରି ତନ୍ତ୍ର ଅନୁଯାୟୀ ହୋମକାର୍ଯ୍ୟ କରି ଆଉ ମାତ୍ର ୨ ଇଞ୍ଚ ଖୋଳି ମୁଁ ମାତାଙ୍କୁ ଉଦ୍ଧାର କରିବି ।" ବାବା ଓ ତାଙ୍କ ସହଯୋଗୀ ସ୍ନାନ ପାଇଁ ଚାଲି ଯିବା ପରେ ମୁଁ ଆଉ କିଛି ଖୋଳି ଦେଖିଲି ଭିତରେ କିଛି ନାହିଁ ବା ସେହି ବଖରାରେ ମଧ୍ୟ କିଛି ନାହିଁ । ପ୍ରଥମେ ବାବାଙ୍କ ଶିଷ୍ୟ ସମ୍ପୂର୍ଣ୍ଣ ଓଦା ହୋଇ କିଛି ଫୁଲ ଧରି ଆସିଲେ । ଫୁଲକୁ ଦେଖିବା ବାହାନାରେ ମୁଁ ତାଙ୍କୁ ପରୀକ୍ଷା କରି ଦେଖିଲି । କିଛି ପାଇଲି ନାହିଁ । କିଛି ସମୟ ପରେ ବାବା ସମ୍ପୂର୍ଣ୍ଣ ଉଲଗ୍ନ ହୋଇ ହାତ ଯୋଡି ଦୌଡି ଦୌଡି ଆସିଲେ । ଘର ନିକଟ ହେବା ମାତ୍ରେ ଜିଭକୁ ବାହାର କରି କିଳିକିଳା ରାବ କରି ମାଡ଼ି ଆସିଲେ । ଫାଟକ ଅତିକ୍ରମ କରିବା ମାତ୍ରେ ମୋର ପୋଲିସ୍ ବନ୍ଧୁ ହଠାତ୍ ଅନ୍ଧାରୁ ବାହାରି ଆସି ତାଙ୍କ ସାମ୍ନାରେ ଖୁଣ୍ଟ ପରି ଠିଆ ହୋଇଗଲେ । ଦ୍ରୁତଗତିରେ ଧାଇଁଧାଇଁ ଆସୁଥିବା ବାବା ହଠତ୍ ବନ୍ଧୁଙ୍କ ସହ ଧକ୍କାଖାଇ ପଡିଗଲେ ଏବଂ ତାଙ୍କ ବାମ କାଖତଳୁ ଗୋଟିଏ ମାଟିବୋଳା ପିତଳ ଦୁର୍ଗାମୂର୍ତ୍ତି ଖସି ପଡିଲା । ବାବା ସେଠାରୁ ଉଠି ସେହି ଉଲଗ୍ନ ଅବସ୍ଥାରେ ଧାଇଁ ପଳାଇ ଯିବାକୁ ଚେଷ୍ଟା କରୁଥିବା ବେଳେ ମୋର ବନ୍ଧୁ ଓ ତାଙ୍କ ସାଥୀ ତାଙ୍କୁ ଗୋଡାଇ ପୋଲିସିଆ ଗାଳି ସହ କାବୁକରି ନେଲେ । ଏସବୁ ଦେଖି ବାବାଙ୍କ ଚେଲା କୋଡି, ଶାବଳ ଛାଡି ପଡି ଉଠି ପାଚେରି ଡେଇଁ ଫେରାର୍ ହେଲେ । ମୁଁ ବାବାଙ୍କ ପାଖରେ ପହଞ୍ଚି ତାଙ୍କୁ ବସ୍ତ୍ର ପ୍ରଦାନ କରନ୍ତେ, ସେ କାନ୍ଦି କାନ୍ଦି ମୋର ଗୋଡ଼ ଧରି ପେଟ ନିମନ୍ତେ ଏସବୁ ନାଟ କରିଛନ୍ତି କହି କ୍ଷମା ପ୍ରାର୍ଥନା କଲେ । ମୁଁ କହିଲି "ଏମାନେ ହେଉଛନ୍ତି ପୋଲିସ୍ ଡିପାର୍ଟମେଣ୍ଟ ଲୋକ । ବିଭିନ୍ନ ଅଞ୍ଚଳରୁ ତମ ଠକାମି କଥା ଶୁଣି ଆପେ ଆପେ ଆସି ପହଞ୍ଚିଛନ୍ତି ।" କେଉଁ କେଉଁ ଅଞ୍ଚଳରେ ସେ ଏପରି ଠକାମି ଧନ୍ଦା କରିଛନ୍ତି ସବୁ ମାନିଗଲେ । ଆମେ ହିସାବକଲୁ, ୨ ମାସ ମଧ୍ୟରେ ସେ ପାଖାପାଖି ୧ ଲକ୍ଷ ଟଙ୍କା ରୋଜଗାର କରିଛନ୍ତି । କିନ୍ତୁ ସଞ୍ଚୟ କରି କିଛି ରଖି ନାହାନ୍ତି । ପ୍ରାୟ ସବୁ ଖର୍ଚ୍ଚ କରି ଦେଇଛନ୍ତି । ଜୀବନ୍ତ ନାଗସାପ ନାଟକର ଭିତିରିକଥା କହିବାକୁ ଅନୁରୋଧ କରିବାରୁ ସେ କହିଲେ ଯେ ଜଣେ କେଳାଠାରୁ ୨୦୦ ଟଙ୍କାର ବିଷାକ୍ତ ଦାନ୍ତ ଭଙ୍ଗା ଯାଇଥିବା ନାଗ ସାପଟିଏ କିଣିଲେ । ତାକୁ ଅଫିମ ପାଣି ଫୋଡିବାରୁ ସେ ନିଷ୍କ୍ରିୟ ହୋଇ ପଡିରହିଲା । ସାପର ଆଖି ପତା ନଥିବାରୁ ସେ ଚାହିଁ କରି ଶୁଏ । ଚତୁରତାର ସହ ପିତଳ ନାଗମୂର୍ତ୍ତି ମାଟିତଳୁ ବାହାର କରି ହଜାର ହଜାର ଲୋକଙ୍କୁ ବୋକା ବନାଇ ସେ ମନ୍ଦିର ନାମରେ ଲକ୍ଷାଧିକ ଟଙ୍କା ରୋଜଗାର କରିଥିଲେ । ନିକଟସ୍ଥ ଥାନାରେ ଅପରାଧୀକୁ ହସ୍ତାନ୍ତର କରିବାକୁ ମୋ ବନ୍ଧୁ ପରାମର୍ଶ ଦେଲେ । କିନ୍ତୁ ଅତୀତର ତିକ୍ତ ଅଭିଜ୍ଞତା ହେତୁ ମୁଁ ରାଜି ହେଲିନାହିଁ । ତାଙ୍କୁ ଡରେଇବା ପାଇଁ ଡାଇରିରେ ବାବାଙ୍କ ବକ୍ତବ୍ୟ ସବୁ ଲିପିବଦ୍ଧ ହେଲା ଓ ଜୀବନରେ ଆଉ କଦାପି ଏପରି ଦୁଷ୍କର୍ମ କରିବେ ନାହିଁ ବୋଲି ଲେଖି ଦସ୍ତଖତ କଲେ । ମୋ

ଘର ମରାମତି ଓ ପୂଜା ସାମଗ୍ରୀ ପାଇଁ ଖର୍ଚ୍ଚ କରିଥିବା ୩୦୦୦ ଟଙ୍କା ସକାଳେ ଆଣି ମତେ ଦେବେ ବୋଲି ରାଜି ହେଲେ । ସତକୁ ସତ ସକାଳେ ମତେ ୩୦୦୦ ଟଙ୍କା ଦେଇ ଆଉ ଜୀବନରେ କେବେ କେଉଁଠାରେ ଏହି ଠକାମି ଧନ୍ଦା କରିବେ ନାହିଁ ବୋଲି ମତେ ବାରମ୍ବାର କହି ମୋଠାରୁ ବିଦାୟ ନେଲେ ।

ମୁଁ ଭାବିଥିଲି ଏହି ଘଟଣା ବିଷୟରେ ବୋଧହୁଏ କେହି କିଛି ଜାଣି ପାରିବେ ନାହିଁ । କିନ୍ତୁ ଧୀରେ ଧୀରେ କଥା ପ୍ରଘଟ ହେଲା । ଏପରି ଠକାମି ଶିକାର ହୋଇଥିବା ଜଣେ ବ୍ୟକ୍ତି, ଯିଏକି ଜମିବାଡି ବିକି ବାବାଙ୍କୁ ୧୦,୦୦୦ ଟଙ୍କା ଦେଇଥିଲେ, ସେ ପଇସା ମାଗି ନିରାଶ ହୋଇ ଲୋକମେଳି କରି ବାବାଙ୍କୁ ଏପରି ମରଣାନ୍ତକ ଆକ୍ରମଣ କଲେ ଯେ, ଯାହାଫଳରେ ବାବା ପ୍ରାୟ ୧ ମାସ କାଳ କଟକ ବଡ଼ ମେଡିକାଲରେ ରହି ଚିକିତ୍ସିତ ହେଲେ । ସେଠାରୁ ଆସି ମୋ ପାଖରେ ଚିକିତ୍ସିତ ହେଲେ । ଏତେ ଅର୍ଥ ରୋଜଗାର କରିଥିଲେ, ଶେଷରେ ନିଜର ଚିକିତ୍ସା ପାଇଁ ମତେ ପଇସା ଦେଇ ପାରିଲେ ନାହିଁ । ଏପରିକି ସାଧାରଣ ଖାଦ୍ୟ, ପୋଷାକ ଯୋଗାଡ଼ କରିବା କଷ୍ଟକର ହେଲା । ଧନ ଥିବା ବେଳେ ବାବାଙ୍କଠାରୁ ଖୁବ୍ ଫାଇଦା ହାସଲ କରିଥିବା ବନ୍ଧୁମାନଙ୍କ ମଧ୍ୟରୁ କେହି ଦେଖା ଦେଲେ ନାହିଁ । ତାଙ୍କୁ ମୁଁ ଉପଦେଶ ଦେଲି, ତାଙ୍କର କହିବା ଶୈଳୀ ଯେପରି ନାଟକୀୟ ଓ କିଛି କିଛି ହାତ ସଫାଇ ତାଙ୍କୁ ଯେପରି ଜଣା, ସେ ଚେଷ୍ଟା କଲେ ଜଣେ ଭଲ ଯାଦୁକର ହୋଇପାରିବେ । ଲୋକଙ୍କ ମନୋରଞ୍ଜନ କରି ପେଟ ପୋଷି ପାରିବେ । ମୁଁ ତାଙ୍କ ଠାରୁ ଆଣିଥିବା ୩୦୦୦ଟଙ୍କା ସହ ଆଉ ୨୦୦୦ ଟଙ୍କା ମିଶାଇ ୫୦୦୦ଟଙ୍କା ଦେଲି ଏବଂ ଓଡିଶାର ଜଣେ ପ୍ରସିଦ୍ଧ ମାଜିସିଆନ୍‌ଙ୍କର ଠିକଣା ଦେଇ ଚିଠିଟିଏ ମଧ୍ୟ ଦେଲି । ତାଙ୍କୁ ସାହସ ଦେଲି ଏବଂ କହିଲି ଏ କ୍ଷେତ୍ରରେ ସେ ଯଦି ସଫଳ ହୋଇ ଜୀବନକୁ ପୁଣି ଥରେ ନୂଆକରି ଗଢ଼ିପାରିବେ, ତେବେ ମୁଁ ସବୁଠାରୁ ଅଧିକ ଆନନ୍ଦିତ ହେବି । ସତକୁ ସତ ମାତ୍ର ୬/୭ ମାସ ମଧ୍ୟରେ ସେ ଅନେକ ଖେଳରେ ପାରଦର୍ଶିତା ଲାଭ କଲେ । ମଦ, ଗଞ୍ଜେଇ ଓ ଅନେକ ନିଶା ଜିନିଷରେ ଅଭ୍ୟସ୍ତ ଥିବା ମଙ୍ଗୁଳିବାବୁ ସବୁ ଛାଡି ଦେଲେ । ଧୀରେ ଧୀରେ ବିଭିନ୍ନ ଆବଶ୍ୟକୀୟ ସରଞ୍ଜାମ କିଣି ଓଡିଶାର ବିଭିନ୍ନ ସ୍କୁଲ ଓ ବଡ ବଡ ଯାତ୍ରା ମାନଙ୍କରେ ସୁନ୍ଦର ଐନ୍ଦ୍ରଜାଲିକ କଳା ଓ କୌଶଳ ପ୍ରଦର୍ଶନ କରି ନିଜର ବାକ୍ ଚାତୁରି ଦ୍ୱାରା ଲୋକଙ୍କ ମନ କିଣି ଭଲ ରୋଜଗାର କରି ସ୍ୱଚ୍ଛନ୍ଦରେ ଚଳୁଛନ୍ତି ।

ହେ ପ୍ରିୟ ପାଠକ ବନ୍ଧୁ ! ଆପଣ ଭଲ ଭାବରେ ଲକ୍ଷ୍ୟ କରନ୍ତୁ, ଦେଖିବେ ଆପଣଙ୍କ ଅଞ୍ଚଳର ସରପଞ୍ଚ, କାଉନସିଲର, ଚେୟାରମ୍ୟାନ୍ ଆଦି କେତେକ ରାଜନେତା ଯେଉଁ ପରିମାଣରେ କଳାଧନ ଅର୍ଜନ ପାଇଁ ଆଗ୍ରହୀ କେତେକ ବିଧାନସଭା ସଦସ୍ୟ, ସାଂସଦ, ମନ୍ତ୍ରୀ ଆଦି ସେହି ଅନୁପାତରେ ଅଧିକ କଳାଧନର ଅଧିକାରୀ । ଆପଣଙ୍କ ଅଞ୍ଚଳର ସରକାରୀ

ଅଫିସ୍, ଥାନା, ବ୍ଲକ୍ ଆଦିର ପ୍ରତ୍ୟେକ କାମ ପାଇଁ ଛୋଟକାଟିଆ କର୍ମଚାରୀଟିଏ ଯେତିକି ଲାଞ୍ଚ ଦାବିକରେ, ତା ଉପରକୁ ଉପର ଥିବା ଅଫିସରମାନେ ସେହି ଅନୁପାତରେ ଅଧିକ ଲାଞ୍ଚ ନିଅନ୍ତି । ସେହିପରି ଗାଁ ଗହଳର ଛୋଟ କାଟିଆ ବାବା, ସାଧୁରୂପୀ ଭଣ୍ଡମାନେ ଯେଉଁ ସ୍ତରର ଶୋଷଣ, ଠକାମି ଓ ଅପରାଧ ଆଦି କରନ୍ତି, ଜିଲ୍ଲାସ୍ତରୀୟ, ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରର ବାବାମାନେ ସେହି ଅନୁପାତରେ ଅଧିକ ଶୋଷକ, ଧୂର୍ତ୍ତ ଓ ଅପରାଧୀ । ଅବଶ୍ୟ ଖୁବ୍ କମ୍ କ୍ଷେତ୍ରରେ କେଉଁଠି କିଛି ବ୍ୟତିକ୍ରମ ଥାଇପାରେ । କିନ୍ତୁ ମୋଟାମୋଟି ଚିତ୍ର ସାରା ଭାରତରେ ପ୍ରାୟ ସମାନ । ଜୀବନରେ ସୁଖ-ଦୁଃଖ, ହସ-କାନ୍ଦ, ହାର-ଜିତ୍, ରୋଗ ଆଦି ନିଶ୍ଚୟ ରହିବ । ବିଭିନ୍ନ ସମସ୍ୟା ସହିତ ବାର୍ଦ୍ଧକ୍ୟ ଅବସ୍ଥା ଓ ଶେଷକୁ ମୃତ୍ୟୁ ଅବଶ୍ୟମ୍ଭାବୀ । ନିଜେ ଠିକ୍ ଭାବେ ବୁଦ୍ଧି, ବିବେକ ଓ ସାଧାରଣ ଜ୍ଞାନ ପ୍ରୟୋଗ କଲେ ଅନେକ ସମସ୍ୟା ମାନଙ୍କର ସମାଧାନ ଆପେ ଆପେ ହୋଇଯିବ । ସକରାତ୍ମକ ମନୋଭାବ ସହ ବାସ୍ତବତାକୁ ଗ୍ରହଣ କରିନେଲେ ଦୁଃଖ ରହିବ ନାହିଁ । ଏମିତି କୌଣସି ଚମତ୍କାରିତା, ଯାଦୁ ବା ଉପାୟ ପୃଥିବୀରେ କାହାକୁ ଜଣାନାହିଁ, ଯିଏକି ନିଜ ଇଚ୍ଛା ମୁତାବକ ସମସ୍ୟା ଗୁଡିକୁ ସମାଧାନ କରିଦେବ ବା ସବୁ ସୁଖ ଅଜାଡି ଦେବ । କେତେକ ବିଶେଷ ପରିସ୍ଥିତିକୁ ଛାଡିଦେଲେ ଆମେ ନିଜେ ହିଁ ଆମ ସୁଖ ବା ଦୁଃଖର କାରଣ । ତେଣୁ ନିଜେ ଆତ୍ମ ସମର୍ପଣ କରି କୌଣସି ବାବାଙ୍କ ପଛରେ ଧାଇଁଲେ ମରିଚିକା ପଛରେ ଧାଇଁବା ପରି ଶେଷରେ ହତାଶ ହେବେ ଓ ଦୁଃଖ ପାଇବେ ।



# ବୌଦ୍ଧିକ ଅଂଧବିଶ୍ୱାସ

*ଡ. ଧନେଶ୍ୱର ମହାପାତ୍ର*

ଆଜି ସମଗ୍ର ଭାରତୀୟ ସମାଜ ଅନ୍ଧବିଶ୍ୱାସରେ ପରିପୂର୍ଣ୍ଣ । ଅଶିକ୍ଷିତ ଲୋକମାନଙ୍କ ଚିନ୍ତାଧାରାରେ ଏହା ଖୁବ୍ ବେଶୀ, ଶିକ୍ଷିତ ଲୋକଙ୍କ ଚିନ୍ତାଧାରାରେ ମଧ୍ୟ କମ୍ ନୁହେଁ । ଅଶିକ୍ଷିତମାନଙ୍କର ଅଂଧବିଶ୍ୱାସକୁ ଆମେ ସହଜରେ ଜାଣିପାରୁଁ, କିଂତୁ ଶିକ୍ଷିତ ମାନଙ୍କର ଅନ୍ଧବିଶ୍ୱାସକୁ ସହଜରେ ଜାଣି ହୁଏ ନାହିଁ । ଏହିପରି ଜାଣି ହେଉନଥିବା, କିନ୍ତୁ ଶିକ୍ଷିତମାନଙ୍କ ମନରେ ବସା ବାଂଧିଥିବା ଅଂଧବିଶ୍ୱାସକୁ ଆମେ କହୁ ବୌଦ୍ଧିକ ଅଂଧବିଶ୍ୱାସ ।

ଶିକ୍ଷିତ ଓଡିଆମାନଙ୍କର ଏକ ବୌଦ୍ଧିକ ଅଂଧବିଶ୍ୱାସ ହେଉଛି ଓଡିଶାର ଅତୀତ ଗୌରବ । ଅନେକ ଭାବନ୍ତି, ଓଡିଶା ଅତୀତରେ ଏକ ସମୃଦ୍ଧଶାଳୀ ରାଜ୍ୟ ଥିଲା । ଧନ ଜନ ଗୋପ ଲକ୍ଷ୍ମୀରେ ପରିପୂର୍ଣ୍ଣ ଥିଲା । ଓଡିଆମାନେ ବୀର ଥିଲେ । ଗଂଗାଠାରୁ ଗୋଦାବରୀ ଯାଏ ରାଜ୍ୟ ଜିଣିଥିଲେ । ପଦାତିକ ଯୁଦ୍ଧରେ ନିପୁଣ ଥିଲେ । ସେମାନଙ୍କୁ କୁହାଯାଉଥିଲା 'ପାଇକ' । ଓଡିଆ ବଣିକମାନେ ବୋଇତରେ ସମୁଦ୍ର ଅତିକ୍ରମ କରି ବିଦେଶରେ ବାଣିଜ୍ୟ କରୁଥିଲେ । ସେମାନଙ୍କୁ କୁହାଯାଉଥିଲା 'ସାଧବ' । ସାଧବମାନେ ବାଣିଜ୍ୟ କରି ବିଦେଶରୁ ବହୁ ଧନସମ୍ପଦ ଆଣୁଥିଲେ । ଲୋକମାନେ ସୁଖଶାନ୍ତିରେ ଥିଲେ । ଇତ୍ୟାଦି ଇତ୍ୟାଦି । ଏହି ମର୍ମରେ କେତେ କବି କେତେ ଗୀତ, କବିତା ଲେଖିଛନ୍ତି । କେତେ ଲେଖକ କେତେ ପ୍ରବନ୍ଧ ଓ କଥା ଆଦି ରଚନା କରିଛନ୍ତି । ସଭାସମିତିରେ ବକ୍ତାମାନେ ଏହି ମର୍ମରେ ସୁନ୍ଦର ଭାଷଣ ଦେଉଛନ୍ତି କିଂତୁ ଏହା ଓଡିଆ ମାନଙ୍କର ଏକ ଅଂଧବିଶ୍ୱାସ ଛଡା କିଛି ନୁହେଁ । ଯେଉଁ ଜାତି ଅନ୍ୟ ଜାତିଙ୍କ ସହିତ ତାଳଦେଇ ଚାଲିପାରନ୍ତି ନାହିଁ, ସେମାନେ ହିଁ ଅତୀତ ଗୌରବ କଳ୍ପନା କରନ୍ତି । ସେମାନଙ୍କର ଏହା ଆତ୍ମସଂତୋଷ ମାତ୍ର । ପ୍ରକୃତରେ ସେମାନଙ୍କର

ଅତୀତ ଗୌରବ ନଥାଏ । ଓଡିଆମାନଙ୍କର ଅତୀତ ଗୌରବ ନଥିଲା । ଓଡିଶାରେ ଯେଉଁ ଅତୀତ ସୁଖସମୃଦ୍ଧି ବା ପ୍ରାଚୁର୍ଯ୍ୟ କଥା କୁହାଯାଏ, ତାହା ଥିଲା ରାଜା, ମହାରାଜା ବା ସଂଭ୍ରାନ୍ତ ଗୋଷ୍ଠୀଂକର । ସେମାନଙ୍କର ସୁଖ ସମୃଦ୍ଧି ବା ପ୍ରାଚୁର୍ଯ୍ୟକୁ ଜନସାଧାରଣଙ୍କ ସୁଖ ସମୃଦ୍ଧି ବା ପ୍ରାଚୁର୍ଯ୍ୟ ବୋଲି କୁହାଯାଇନପାରେ । ଓଡିଶାକୁ ଶାସନ କରିଥିବା ମହାରାଜାମାନଙ୍କ ସମୟରେ ଯେଉଁସବୁ ବିବରଣୀ ମାଦଳା ପାଞ୍ଜିରେ ରହିଛି, ସେଥିରୁ ଜଣାପଡେ, ଓଡିଶା ନିତାନ୍ତ ଦୁର୍ଦ୍ଦଶାଗ୍ରସ୍ତ ରାଜ୍ୟ ଥିଲା । ଏ ରାଜ୍ୟରେ ବାରମ୍ବାର ଦୁର୍ଭିକ୍ଷ ପଡୁଥିଲା । ବହୁ ଲୋକ ଖାଇବାକୁ ନପାଇ ମୃତ୍ୟୁମୁଖରେ ପଡୁଥିଲେ । ଏପରିକି ପେଟ ବିକଳରେ ମନୁଷ୍ୟ ମନୁଷ୍ୟ ମାଂସ ଖାଉଥିଲା । ଏଠାରେ ପ୍ରଫେସର ଆର୍ତ୍ତବଲ୍ଲଭ ମହାଂତିଙ୍କ ସମ୍ପାଦିତ ମାଦଳାପାଞ୍ଜିରୁ କେତୋଟି ବିବରଣୀ ଦିଆଗଲା ।

କପିଳେନ୍ଦ୍ର ଦେବ : ଏ ରାଜାଙ୍କ ୧୧ ଅଙ୍କେ ରାଇଜେ ମହରଗ କରି ଧାନ ଭରଣ ୧୦୫ କାହାଣ ହୋଇଲା । ସେ ମହରଗରେ ବହୁତ ଲୋକ ମଲେ । ୨୭ ଅଙ୍କେ ରାଇଜେ ଅପାଳକ କଲା । ଧାନ ଭରଣ ୧୦୦ କାହାଣ ହୋଇଥିଲା । ୩୨ ଅଙ୍କେ ରାଇଜେ ଗଲା ଧୋଇ । ୩୩ ଅଙ୍କେ ଯେ ବତାଶି ପୁଣି କଲା, ଅନେକ ଲୋକ ସେ ମହରଗରେ ମଲେ ।

ନିଶଙ୍କଭାନୁ ଦେବ: ଏ ରାଜାଙ୍କ ୧୭ ଅଙ୍କେ ଓଢ଼ଣ ଷଷ୍ଠୀଦିନ ବଡ଼ ବତାସ କଲା । ବଡ଼ ଦେଉଳ ନୀଳଚକ୍ର ଆଡେ ହୋଇପଡିଲା । ବିଶାଶଏ କାହାଣ ଧାନ ଭରଣ ହୋଇଥିଲା । ବହୁତ ଲୋକ ସେ ମହରଗରେ ମଲେ ।

ଦିବ୍ୟସିଂହ ଦେବ : ଏ ରାଜାଙ୍କ ୧୯ ଅଙ୍କେ ତୁଳ ୨୦ ଦିନେ ଶନିବାରେ ବଡ ବତାସ କଲା । ବଡ଼ ଦେଉଳ ଉପରୁ ନୀଳଚକ୍ର ଭାଙ୍ଗି ଗଣପତିଙ୍କ ଆଗେ ତଳେ ପଡିଲା । ସବୁ ଦେଉଳମାନଙ୍କରୁ ପଥର ଚକ୍ରମାନ ପଡିଲା । ଦୁଇ ବେଢ଼ାରୁ କାଙ୍ଗୁଲାଯାକ ପଡିଲା । ବଟ ଗଛରୁ ଡାଳମାନ ଭାଙ୍ଗିଲା । ସବୁ ଲୋକଙ୍କ ଘରଦ୍ୱାର ଭାଙ୍ଗିଲା । ଗାଈ ମହିଷୀ ଅନେକ ମଲେ । ଅନେକ ମଣିଷ ମଲେ । ଧାନ ଭରଣ ୭୫ କାହାଣ ହୋଇଲା । ମନିଷ ମାଆଁସ ମନିଷ ଖାଇଲା ।

ମୁକୁନ୍ଦ ଦେବ : ଏ ମହାରାଜାଙ୍କ ଅଠର ଅଙ୍କେ ମହରଗ ହୋଇଲା । ଧାନ ଭରଣକୁ ୭୫ କାହାଣ ହୋଇଲା । ମନିଷ ମାଂସ ମନିଷ ଖାଇଲେ ।

ରାମଚନ୍ଦ୍ର ଦେବ : ଏଦିନେ ଓଡିଶାରେ ମହରଗ କଲା । ବିଶାଶଏ କାହାଣ ଧାନ ଭରଣ ହୋଇଲା ।

ଚକ୍ରପ୍ରତାପ ଦେବ: ଏ ରାଜାଙ୍କ ପାଞ୍ଚ ଅଙ୍କେ ଦଶମାଣ ନଉତି ଧାନ ତିନି କାହାଣ ଦଶପଙ୍କ ହୋଇଲା ।

ଦିବ୍ୟସିଂହ ଦେବ : ୧୦ ଅଙ୍କରେ ମହରଗ କଲା । ଧାନ ଭରଣ ୭୫ କାହାଣ ହୋଇଲା । ମଣିଷ ମାଂସ ମଣିଷ ଖାଇଲା । ଇତ୍ୟାଦି ।

ଇଂରେଜ ଶାସନ କାଳରେ ୧୮୬୬ ମସିହାରେ ଓଡିଶାରେ ଯେଉଁ ଦୁର୍ଭିକ୍ଷ ପଡିଥିଲା, ସେ କଥା କାହାକୁ ବା ଅଜଣା ? ସେହି ଦୁର୍ଭିକ୍ଷରେ ଖାଇବାକୁ ନ ପାଇ ଓଡିଶାର ଲକ୍ଷ ଲକ୍ଷ ଲୋକ ପୋକ ମାଛି ପରି ମରି ପଡିଥିଲେ ।

ଆମର ଅନୁମାନ, ମାଦଳାପାଂଜିରେ ଯେଉଁ ବିବରଣୀ ସବୁ ଦିଆଯାଇଛି, ତାହା ଖୁବ୍ ଉତ୍କଟ ଅବସ୍ଥାର ବିବରଣୀ ହୋଇଥିବ । ଛୋଟ ଛୋଟ ମହରଗ ବା ଦୁର୍ଭିକ୍ଷର ବିବରଣୀ ଲିପିବଦ୍ଧ ହୋଇନଥିବ । ତେଣୁ ଓଡିଶା ଯେ, ସମୃଦ୍ଧଶାଳୀ ରାଜ୍ୟ ନଥିଲା, ଏହା ନିଃସନ୍ଦେହ । ଏ ରାଜ୍ୟରେ ବାରମ୍ବାର ଦୁର୍ଭିକ୍ଷ ଓ ମହରଗ ପଡୁଥିଲା । କୁହାଯାଏ କପିଳେନ୍ଦ୍ର ଦେବ ଖୁବ୍ ପରାକ୍ରମଶାଳୀ ରାଜା ଥିଲେ । 'ନବକୋଟି କର୍ଣ୍ଣାଟକକଳବର୍ଗେଶ୍ୱର' ଉପାଧି ଧାରଣ କରିଥିଲେ; କିଂତୁ ତାଙ୍କ ରାଜତ୍ୱକାଳରେ ମଧ୍ୟ ତିନି ଚାରିଥର ଦୁର୍ଭିକ୍ଷ ପଡିଥିବାରୁ, ବହୁ ଲୋକ ଖାଇବାକୁ ନପାଇ ମରିଥିବାର, ଏପରିକି ମଣିଷ ମାଂସ ମଣିଷ ଖାଇଥିବାର ବିବରଣୀ ରହିଛି । ଅନ୍ୟାନ୍ୟ ରାଜାମାନଙ୍କ ରାଜତ୍ୱରେ ବା କଅଣ ହୋଇନଥିବ ! ଏଥିରୁ ଜଣାପଡେ, କପିଳେନ୍ଦ୍ର ଦେବ ପରାକ୍ରମୀ ରାଜା ଥିଲେ ସତ, କିଂତୁ ପ୍ରଜାମାନଙ୍କ ପାଇଁ କିଛି କରିନଥିଲେ ।

ଯେଉଁ ତିନୋଟି ମଂଦିର ପାଇଁ ଓଡିଆମାନେ ପୂର୍ବପୁରୁଷମାନଙ୍କର ଗୌରବ ଗାନ କରନ୍ତି, ତାହା ମଧ୍ୟ ଅହେତୁକ । ସେହି ତିନୋଟି ମନ୍ଦିର ହେଉଛି ପୁରୀ ଶ୍ରୀଜଗନ୍ନାଥ ମନ୍ଦିର, କୋଣାର୍କ ସୂର୍ଯ୍ୟମଂଦିର ଓ ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର । ଏ ତିନୋଟିଯାକ ମଂଦିର ଓଡିଆ ରାଜାମାନେ କରାଇନଥିଲେ, କରାଇଥିଲେ ଅଣଓଡିଆ ରାଜାମାନେ । ଶ୍ରୀଜଗନ୍ନାଥ ମଂଦିର ପ୍ରଥମେ ଛୋଟ ମଂଦିରଟିଏ ଥିଲା । ତାହାକୁ ଗଢ଼ାଇଥିଲେ ଚୋଳଗଂଗଦେବ । ଚୋଳଗଂଗଦେବ ଥିଲେ ଦ୍ରାବିଡ ଜାତୀୟ । ତାଙ୍କ ପୁତ୍ର ଅନଂଗଭୀମଦେବ ଖୁବ ପରାକ୍ରମୀ ରାଜା ହୋଇଥିଲେ । ବର୍ତ୍ତମାନ ପୁରୀରେ ଯେଉଁ ଜଗନ୍ନାଥ ମନ୍ଦିର ଅଛି, ତାହାକୁ ଅନଂଗଭୀମଦେବ ତୋଳାଇଥିଲେ । ତାଙ୍କ ପୁତ୍ର ନରସିଂହ ଦେବ, ଯାହାଙ୍କୁ ଲାଙ୍ଗୁଳା ନରସିଂହ ଦେବ ବୋଲି ମଧ୍ୟ କୁହାଯାଏ, ସେ କୋଣାର୍କ ମନ୍ଦିର ତୋଳାଇଥିଲେ । କାହାରି କାହାରି ମତରେ ତାଙ୍କ ପୋଷାକର ପଛପଟକୁ ଲାଙ୍ଗୁଳ ପରି କ'ଣ ଗୋଟାଏ ଝୁଲୁଥିଲା, ତେଣୁ ତାଙ୍କୁ ଲାଙ୍ଗୁଳା ନରସିଂହ ଦେବ ବୋଲି କୁହାଯାଉଥିଲା; କିନ୍ତୁ ପ୍ରକୃତ କଥା ଏହା ହୋଇନଥିବ । ତାଙ୍କର ଲାଙ୍ଗୁଳା ପ୍ରକୃତି ଅର୍ଥାତ୍ ଖିଆଲୀ ଚରିତ୍ର ଯୋଗୁ ଏପରି ନାମକରଣ ହୋଇଯାଇଥିବ ।

ଲାଂଗୁଳା ପ୍ରକୃତିର ରାଜା ହୋଇନଥିଲେ ସେ କ'ଣ ଗୋଟାଏ ଗଭୀର ନଦୀମୁହାଣକୁ ପୋତାଇ ସେଠି ବିଶାଳ ମନ୍ଦିରଟାଏ କରାଇବାକୁ ଇଚ୍ଛା କରିଥାନ୍ତେ ?

ଓଡିଶାରେ ଯେଉଁ ଶିବେଇ ସାଆନ୍ତରା ପ୍ରବାଦ ପ୍ରଚଳିତ ଅଛି, ଯଥା ଶିବେଇ ସାଆନ୍ତରାଙ୍କୁ ରାଜା ଆଦେଶ ଦେଇଥିଲେ ଚନ୍ଦ୍ରଭାଗା ନଦୀ ମୁହାଣକୁ ପୋତି ମଂଦିର କରାଇବାପାଇଁ, ଶିବେଇ ସାଆନ୍ତରା କୂଳ ଆଡରୁ ନ ପୋତାଇ ନଦୀର ଭିତର ଆଡ଼କୁ ପୋତାଇଲେ, ଯେତେ ପଥର ପକାଗଲା ପଥର ଥାକିଲା ନାହିଁ, ଶିବେଇ ସାଆନ୍ତରା ହତାଶ ହୋଇ ବୁଲିଲେ, ଦିନେ ଗୋଟିଏ ଗରିବ ବୁଢ଼ୀଘରେ ରହିଲେ, ବୁଢ଼ୀଟି ତାଙ୍କୁ ଜାଉ କରି ଖାଇବାକୁ ଦେଲା, ଜାଉ ଖୁବ୍ ଗରମ ଥିଲା, ଶିବେଇ ସାଆନ୍ତରା ଥାଳୀରୁ ପାଖେଇ ପାଖେଇ ନଖାଇ ଏକାବେଳକେ ମଝିରୁ ହାତ ପୂରାଇଦେଲେ, ହାତ ପୋଡିଗଲା, ବୁଢ଼ୀ କହିଲା- 'ପୁଅ, ଶିବେଇ ସାଆନ୍ତରା ପରି କ'ଣ ହେଉଛୁ ! ବୁଢ଼ୀର ଏହି କଥାରେ ଶିବେଇ ସାଆନ୍ତରାଙ୍କର ବୁଦ୍ଧି ଆସିଲା, ସେ ନଦୀମୁହାଣକୁ କୂଳ ଆଡୁ ପୋତାଇବାକୁ ସମର୍ଥ ହେଲେ, ଏହିପରି ଯେଉଁ ପ୍ରବାଦଟି ଅଛି, ସେଥିରୁ ବେଶ୍ ଜାଣି ହେଉଛି, ଯେଉଁ ରାଜା ଶିବେଇ ସାଆନ୍ତରାଙ୍କୁ ଗୋଟାଏ ନଦୀମୁହାଣ ଉପରେ ମନ୍ଦିର ଗଢ଼ାଇବାକୁ ଆଦେଶ ଦେଇଥିଲେ, ସେ ନିଶ୍ଚୟ ଖିଆଲୀ ପ୍ରକୃତିର ହୋଇଥିବେ । ତା' ନ ହୋଇଥିଲେ ସୁଦୀର୍ଘ ସମୁଦ୍ରବେଳାଭୂମି ଥାଉଁ ଥାଉଁ କେଉଁଠି ମନ୍ଦିର ନ କରାଇ ଗଭୀର ନଦୀମୁହାଣଟା ଉପରେ କରାଇବାକୁ କାହିଁକି ଚାହିଁଥାଆନ୍ତେ ? ଆମର ଅନୁମାନ, ନଦୀ ମୁହାଣ ଉପରେ ହୋଇଥିବାରୁ ହିଁ କୋଣାର୍କର ମୁଖ୍ୟ ମନ୍ଦିର ଭାଙ୍ଗି ପଡିଲା ।

ଲିଙ୍ଗରାଜ ମନ୍ଦିରକୁ ମଧ୍ୟ ଅଣ ଓଡିଆ ରାଜା ତୋଳାଇଥିଲେ । ଯଯାତି କେଶରୀ ମାଳବ ରାଜ୍ୟରୁ ଆସି ଓଡିଶାରେ କେଶରୀ ରାଜବଂଶ ପ୍ରତିଷ୍ଠା କରିଥିଲେ । ଯଯାତି ଓ ତାଙ୍କର ଗୋଟିଏ ଭଉଣୀ, ଯାହାର ନାମ ଥିଲା ବିମଳା, ବିମାତାଙ୍କ ବ୍ୟବହାର ସହିନପାରି ପଳାଇ ଆସିଥିଲେ, ଓଡିଶାର ଜଣେ ରାଜାଙ୍କ ଝିଅ ଯଯାତିଙ୍କୁ ବିବାହ କରିଥିଲେ, ଏପରି ଏକ ପ୍ରବାଦକୁ ଆଧାର କରି କବିବର ରାଧାନାଥ ରାୟ 'ଯଯାତି କେଶରୀ' କାବ୍ୟ ଲେଖିଛନ୍ତି । ଏହିପରି ଭାବରେ ଦେଖିଲେ ଯେଉଁ ତିନୋଟି ବଡ ମନ୍ଦିର ପାଇଁ ଓଡିଆମାନେ ଗର୍ବ କରନ୍ତି, ସେଗୁଡିକୁ ତୋଳାଇଛନ୍ତି ଅଣଓଡିଆ ରାଜାମାନେ ।

ଓଡିଶାର ଅଣଓଡିଆ ରାଜାମାନେ କାହିଁକି ଏତେ ବଡ଼ ବଡ଼ ମନ୍ଦିର ତୋଳାଇଥିଲେ ? ସେମାନେ ଦେଖିଥିଲେ ଓଡିଆମାନେ ନିରୀହ, କିନ୍ତୁ ପଥରଶିଳ୍ପରେ ନିପୁଣ । ସେ କାଳରେ କୀର୍ତ୍ତି ରଖିବାର ପ୍ରଧାନ ପନ୍ଥା ଥିଲା ମନ୍ଦିର ନିର୍ମାଣ । ପ୍ରଜାମାନଙ୍କର ଅନ୍ନ ବସ୍ତ୍ରାଦିର ବ୍ୟବସ୍ଥା ନକରି ରାଜାମାନେ ମନ୍ଦିରନିର୍ମାଣକୁ ପ୍ରାଧାନ୍ୟ ଦେଉଥିଲେ । ସେଥିରେ ଅଜସ୍ର ଅର୍ଥ ବ୍ୟୟ

କରିବା ସଂଗେ ସଂଗେ, ପ୍ରଜାମାନଙ୍କୁ ବେଠି ଖଟାଇ ନିର୍ଯ୍ୟାତିତ ମଧ୍ୟ କରୁଥିଲେ । ଓଡିଶାରେ ରାଜାମାନଙ୍କର ବେଠି ଖଟାଇବା କାର୍ଯ୍ୟ ୧୯୪୭ ପର୍ଯ୍ୟନ୍ତ ମଧ୍ୟ ଚଳିଆସୁଥିଲା । ଲାଂଗୁଳା ନରସିଂହଦେବ ଯେ କୋଣାର୍କ ମନ୍ଦିର ନିର୍ମାଣରେ ନିଷ୍ଠୁର ମନୋଭାବ ଧରିଥିଲେ, ଏହାର ଜ୍ୱଳନ୍ତ ପ୍ରମାଣ ଧର୍ମପଦ କିଂବଦନ୍ତୀ । କିଂବଦନ୍ତୀ ଅନୁସାରେ ଧର୍ମପଦ ମାତୃଗର୍ଭରେ ଥିଲାବେଳେ ତା'ର ବାପ ବିଶୁ ମହାରଣା କୋଣାର୍କ ମନ୍ଦିର ନିର୍ମାଣକୁ ଯାଇଥିଲା । ରାଜା ବାରବର୍ଷ ଧରି ବିଶୁ ମହାରଣାକୁ ଘରକୁ ଛାଡିନଥିବେ । ମଝିରେ ଯଦି ଥରେ ଦି'ଥର ତାକୁ ଘରକୁ ଆସିବାକୁ ଅନୁମତି ଦେଇଥାନ୍ତେ, ତେବେ ତା' ପୁଅ ଧର୍ମପଦ ତାକୁ ବାପା ବୋଲି ନିଶ୍ଚୟ ଜାଣି ଥାଆନ୍ତା; କିନ୍ତୁ କିଂବଦନ୍ତୀ କହେ, ଯେତେବେଳେ ବାପକୁ ଦେଖିବାକୁ ବାହାରିଲା, ମାଆ ତାକୁ ନିଜ ବାଡିର ବରକୋଳି ଗଛରୁ କିଛି ବରକୋଳି ତୋଳି ଦେଲା ଏବଂ ବାପ ଯେଉଁ କୁକୁରଟିକୁ ପାଳିଥିଲେ, ସେହି କୁକୁରଟିକୁ ସାଂଗରେ ନେବାକୁ କହିଲା, ଯାହାକୁ ଦେଖିଲେ ବାପ ତାକୁ ନିଜ ପୁଅ ଧର୍ମପଦ ବୋଲି ଜାଣିପାରିବ । ବାପ ଯଦି ଥରେ ଦି'ଥର ଘରକୁ ଆସିଥାଆନ୍ତା ଏବଂ ପୁଅକୁ ଦେଖିଥାଆନ୍ତା, ତେବେ ମାଆ ପୁଅକୁ ଚିହ୍ନାଇବାର ଚିନ୍ତା କାହିଁକି କରିଥାଆନ୍ତା ? ତେଣୁ ଅଣଓଡିଆ ରାଜାମାନେ ଓଡିଆ ଶିଳ୍ପୀ ତଥା ଶ୍ରମିକମାନଙ୍କ ପ୍ରତି ନିଷ୍ଠୁର ମନୋଭାବ ଧରିଥିଲେ, ଏହା ନିଃସନ୍ଦେହରେ କୁହାଯାଇପାରେ । ନିର୍ଦ୍ଦିଷ୍ଟ ଦିନ ଭିତରେ ମନ୍ଦିର ନିର୍ମାଣ ପୂର୍ଣ୍ଣ ହୋଇ ନ ପାରିଲେ ବାରଶହ ଶିଳ୍ପୀଙ୍କ ମୁଣ୍ଡକାଟ ହେବ, ଏହା ରାଜାଙ୍କର ନିଷ୍ଠୁର ମନୋଭାବର ପରିଚାୟକ ନୁହେଁ କି ? ତା'ଛଡା ଗଂଗବଂଶୀ ରାଜାମାନେ ଯେ କଦର୍ଯ୍ୟ ପ୍ରକୃତିର ଥିଲେ, ତାହା କବିବର ରାଧାନାଥଙ୍କ 'ପାର୍ବତୀ' କାବ୍ୟରୁ ଜଣାପଡୁନାହିଁ କି ?

ଏହି ପ୍ରକାରେ ଅଣଓଡିଆ ରାଜାମାନଙ୍କ ଦ୍ୱାରା ଜୋରଜବରଦସ୍ତି ତୋଳାଯାଇଥିବା ମନ୍ଦିରଗୁଡିକୁ ଓଡିଆମାନେ ନିଜର ଅତୀତ ଗୌରବ ମନେ କରୁଛନ୍ତି, ଏହା ଅଂଧବିଶ୍ୱାସ ଛଡ଼ା କିଛି ନୁହେଁ । ବିଶାଳକାୟ ମଂଦିରମାନ ନିର୍ମାଣ କରାଇ ଅଣଓଡିଆ ରାଜାମାନେ ଓଡିଆ ଜନସାଧାରଣଙ୍କୁ ଦୁଃଖ ଦୁର୍ଗତିର ଚରମ ସୀମାକୁ ଠେଲି ଦେଇଥିଲେ । ଯେତେ ବିପୁଳ ଅର୍ଥ ସେମାନେ ମନ୍ଦିର ନିର୍ମାଣରେ ଲଗାଇଥିଲେ ସେସବୁକୁ ଯଦି ସେମାନେ ପ୍ରଜାମାନଙ୍କ ଉନ୍ନତି ପାଇଁ ଲଗାଇଥାନ୍ତେ, ତେବେ ଓଡିଶାରେ ବାରଂବାର ଦୁର୍ଭିକ୍ଷ ଓ ମହରଗ ପଡିନଥାନ୍ତା ଓ ମଣିଷମାନେ ମଣିଷମାଂସ ଖାଇନଥାନ୍ତେ । ଓଡିଆମାନେ ଯେ ନିତାନ୍ତ ଦରିଦ୍ର ଜାତିରେ ପରିଣତ ହୋଇଛନ୍ତି, ଏହା ଏବର ନୁହେଁ, ବହୁପୂର୍ବରୁ । ଓଡିଶାରେ ପ୍ରଥମେ ଅଣଓଡିଆ ରାଜାମାନଙ୍କ ଦ୍ୱାରା ଏବଂ ପରେ ଓଡିଆ ରାଜାମାନଙ୍କ ଦ୍ୱାରା ଓ ସଂଭ୍ରାନ୍ତ ବଂଶୀୟମାନଙ୍କ ଦ୍ୱାରା ତୋଳା ହୋଇଥିବା ବହୁ ସଂଖ୍ୟକ ମନ୍ଦିର ହିଁ ଓଡିଶାର ଦାରିଦ୍ର୍ୟ ପାଇଁ ଦାୟୀ ।

ଓଡିଶାରେ ଅତୀତ ଗୌରବ କଳ୍ପନା କରିବାରେ ଶିକ୍ଷିତ ଓଡିଆମାନେ ଏତେ ଅନ୍ଧବିଶ୍ୱାସୀ ଯେ ସେମାନେ ହାସ୍ୟାସ୍ପଦ କଥା ସବୁ ମଧ୍ୟ କଳ୍ପନା କରିବାକୁ ଭଲ ପାଆନ୍ତି । ଯେପରି-ବୁଦ୍ଧଦେବ ଓଡିଶାରେ ଜନ୍ମଗ୍ରହଣ କରିଥିଲେ, କାଳିଦାସ ଓଡିଶାରେ ଜନ୍ମଗ୍ରହଣ କରିଥିଲେ, ଅମୁକ ଓଡିଆ କବିଙ୍କ ଘରକୁ ଆସି ଭଗବାନ ପୂରଣ ହୋଇନଥିବା ପଦକୁ ପୂରଣ କରିଦେଇ ଯାଇଥିଲେ, ଅମୁକ ଓଡିଆ ରାଜା ସମଗ୍ର ଭାରତବର୍ଷରେ ସାମ୍ରାଜ୍ୟ ବିସ୍ତାର କରିଥିଲେ, ଅମୁକ ଅଣଓଡିଆ ରାଜା ଓଡିଶାରୁ ନିଜର ନିଷ୍ଠୁର ପ୍ରକୃତିକୁ ବଦଳାଇ ଦୟାଳୁ ପ୍ରକୃତି ଗ୍ରହଣ କରିଥିଲେ ଇତ୍ୟାଦି ଇତ୍ୟାଦି ! ପୁଣି ଆଶ୍ଚର୍ଯ୍ୟର କଥା, ଯେଉଁ 'କଳିଙ୍ଗ' ନାମକ ରାଜ୍ୟ ଓଡିଆ ରାଜ୍ୟ ନଥିଲା, ତାହାକୁ ଓଡିଆମାନେ ନିଜ ପୂର୍ବପୁରୁଷଙ୍କ ରାଜ୍ୟ ବୋଲି କଳ୍ପନା କରି 'କଳିଙ୍ଗାଃ ସାହିସିକାଃ' ଉଲ୍ଲେଖ କରୁଛନ୍ତି । ସଂସ୍କୃତରେ 'ସାହସିକାଃ' ର ଅର୍ଥ ଯେଉଁମାନେ ସହସା ଅର୍ଥାତ୍ ନବୁଝି ନ ବିଚାରି କାମ କରନ୍ତି ।

ଏହିଭଳି ବହୁ ପ୍ରକାର ବୌଦ୍ଧିକ ଅନ୍ଧବିଶ୍ୱାସ ଶିକ୍ଷିତ ଓଡିଆମାନଙ୍କର ଚିନ୍ତାଧାରାକୁ ମଧ୍ୟ ଆଚ୍ଛନ୍ନ କରି ରଖିଛି । ଉକ୍ତ ସାଲବେଗଙ୍କ ପ୍ରସଙ୍ଗଟି ମଧ୍ୟ ତଦ୍ରୂପ । ଯେତେବେଳେ ଭାରତର ଅଧିକାଂଶ ଅଞ୍ଚଳକୁ ମୋଗଲମାନେ ଶାସନ କରୁଥିଲେ, ଦଳେ ମୋଗଲ ଓଡିଶା ଆକ୍ରମଣ କରିବାକୁ ଆସିଥିଲେ । ସେମାନେ ପୁରୀ ଅଞ୍ଚଳରେ ଯାଉଥିବା ବେଳେ ଜଣେ ମୋଗଲ ସୈନିକ ସେହି ଅଞ୍ଚଳର କୌଣସି ବ୍ରାହ୍ମଣ ଶାସନର ଗୋଟିଏ ସୁନ୍ଦରୀ ଝିଅକୁ ଦେଖିଥିଲା । ପରେ ସେହି ଝିଅଟିକୁ ସେ ଅପହରଣ କରିନେଇଥିଲା । ଶୁଣାଯାଏ ସେ ଝିଅଟି କୁଆଡେ ବିଧବା ଥିଲା । ମୋଗଲ ସୈନିକ ତାକୁ ପତ୍ନୀ କଲା, କିନ୍ତୁ ପତ୍ନୀ ଗର୍ଭବତୀ ଥିଲାବେଳେ ସେ ଓଡିଶାରୁ ଚାଲିଗଲା । ପୁଅଟିଏ ଜନ୍ମହେଲା । ତାର ନାମ ସାଲବେଗ । ସାଲବେଗର ପିତା ଯବନ ଅର୍ଥାତ ମୁସଲମାନ ଏବଂ ମାତା ବ୍ରାହ୍ମଣୀ । ମାତା ବ୍ରାହ୍ମଣୀ ହେଲେ ମଧ୍ୟ ହିନ୍ଦୁମାନେ ପୁଅଟିକୁ ଯବନ ମନେ କଲେ ଏବଂ ମାଆ ପୁଅଙ୍କୁ ସମାଜରେ ସ୍ଥାନ ଦେଲେନାହିଁ । ଅତିଦୁଃଖରେ ମାଆଟି ପୁଅକୁ ପାଳି ବଡ଼ାଇଲା, କିନ୍ତୁ ଅଳ୍ପ କେତୋଟି ବର୍ଷ ପରେ ପରପୁରକୁ ଚାଲିଗଲା ।

ପୁଅଟିର ବଞ୍ଚିବା ପାଇଁ ଅନ୍ୟ କୌଣସି ରାହା ନଥିଲା । ସେ ପୁରୀ ବଡଦାଣ୍ଡକୁ ଗଲା । ଜଗନ୍ନାଥଙ୍କ ଦର୍ଶନ କରିବାକୁ ତ ବହୁତ ଲୋକ ପୁରୀ ଯାଉଥିଲେ ଏବଂ ବଡଦାଣ୍ଡରେ ଭିକାରୀମାନଙ୍କୁ ଦାନ ଧର୍ମ କରୁଥିଲେ । ସାଲବେଗ ବଡ ଦାଣ୍ଡରେ ବସି ଭିକ ମାଗିଲେ । ଖାଲି ମାଗିଲେ ହୁଏତ କେହି କିଛି ନ ଦେଇପାରନ୍ତି, ତେଣୁ ସେ ଜଗନ୍ନାଥଙ୍କ ଭଜନ ଗାଇଲେ । ସେତେବେଳେ ଯେଉଁସବୁ ଭଜନଗୀତ ପ୍ରଚଳିତ ଥିବ, ସେସବୁ ଗାଇଥିବେ । ଗୀତ ରଚନା କରିବାର ଶକ୍ତି ତାଙ୍କର ଥିଲା । ତେଣୁ ସେ ନିଜେ ମଧ୍ୟ ଗୀତ ରଚନା କରିଥିଲେ ।

ଏହି ସାଲବେଗଙ୍କୁ ଏବେ ଶିକ୍ଷିତ ଓଡ଼ିଆମାନେ ଜଗନ୍ନାଥ ସଂସ୍କୃତିର ଏକ ଉଜ୍ଜ୍ୱଳ ଉଦାହରଣ ଭାବେ ଉଲ୍ଲେଖ କରୁଛନ୍ତି । ସେମାନେ କହୁଛନ୍ତି ଜଗନ୍ନାଥ ସଂସ୍କୃତି ସର୍ବଧର୍ମ ସମନ୍ୱୟର ସଂସ୍କୃତି । ଏହି ସଂସ୍କୃତିରେ ମୁସଲମାନ ମଧ୍ୟ ଜଗନ୍ନାଥଙ୍କୁ ଭକ୍ତି କରନ୍ତି । ଉଦାହରଣସ୍ୱରୂପ ସାଲବେଗ ମୁସଲମାନ ହୋଇ ମଧ୍ୟ ଜଗନ୍ନାଥଙ୍କର ଭକ୍ତ ଥିଲେ, କିନ୍ତୁ ଏହି ଉଦାହରଣଟି ଓଡିଆମାନଙ୍କ ମନରେ ଜଡିତ ହୋଇଯାଇଥିବା ଏକ ଅନ୍ଧବିଶ୍ୱାସ ଛଡା କିଛି ନୁହେଁ । କାରଣ, ସାଲବେଗ ଜଣେ ସ୍ୱାଭାବିକ ମୁସଲମାନ ନ ଥିଲେ । ତାଙ୍କର ମାତା ଥିଲେ ହିନ୍ଦୁ ଏବଂ ପିତା ଥିଲେ ମୁସଲମାନ । ତାଙ୍କ ଜନ୍ମ ପଛରେ ରହିଛି ଓଡିଆ ଜାତି ପକ୍ଷରେ ଏକ ଅପମାନଜନକ କଥା । ଅପମାନକୁ ଗୌରବ ମନେ କରିବା ଏବଂ ଅପମାନସୂଚକ କଥାଟାକୁ ଦେଶବିଦେଶ ବୁଲି ପ୍ରଚାର କରିବା ଅନ୍ଧବିଶ୍ୱାସୀମାନଙ୍କର ହିଁ କାମ । କୌଣସି ସ୍ୱାଭାବିକ ମୁସଲମାନ ଅର୍ଥାତ୍ ଯାହାଙ୍କର ପିତା ମୁସଲମାନ ଏବଂ ମାତା ମୁସଲମାନ, ଜଗନ୍ନାଥଙ୍କର ଭକ୍ତ ବା ଉପାସକ ହୋଇଥିଲେ ତାଙ୍କୁ ହିଁ ଉଦାହରଣ ରୂପେ ଉପସ୍ଥାପନ କରାଯିବା ଉଚିତ୍ । ଆମେ ମହାତ୍ମା ସାଲବେଗଙ୍କର ଅବଜ୍ଞା କରୁନାହୁଁ, ବରଂ ତାଙ୍କୁ ପ୍ରଣାମ ଜଣାଉଛୁଁ । ସେ ଜଗନ୍ନାଥଙ୍କର ଭଜନ ଭାବେ ଯେଉଁ ଗୀତଗୁଡ଼ିକ ରଚନା କରିଯାଇଛନ୍ତି, ସେଗୁଡ଼ିକ ଓଡିଆ ସାହିତ୍ୟର ସମ୍ପଦ; କିନ୍ତୁ ତାଙ୍କୁ ମୁସଲମାନ ରୂପେ ଚିତ୍ରଣ କରି ଜଗନ୍ନାଥ ସଂସ୍କୃତିର ମହତ୍ତ୍ୱ ପ୍ରତିପାଦନ କରିବା ଯୁକ୍ତିଯୁକ୍ତ ନୁହେଁ । ମୁସଲମାନ ଔରସରୁ ଜାତ ହୋଇଥିଲେ ମଧ୍ୟ ମାଆ ହିନ୍ଦୁ ଥିଲେ ବୋଲି ସାଲବେଗ ଜଗନ୍ନାଥଙ୍କର ଭକ୍ତ ହୋଇଥିଲେ । ମାଆ ଯଦି ମୁସଲମାନ ହୋଇଥାନ୍ତେ, ତେବେ ସାଲବେଗ ଜଗନ୍ନାଥଙ୍କ ଭକ୍ତ ହୋଇଥାନ୍ତେ କି ? ତାଛଡା ବଡଦାଣ୍ଡରେ ବସି ଭିକ ମାଗିବା ଛଡା ତାଙ୍କର ଅନ୍ୟ ରାହା ଥିଲା କି ?

କେବଳ ଓଡିଶାରେ ନୁହେଁ, ସମଗ୍ର ଭାରତରେ ବୌଦ୍ଧିକ ଅନ୍ଧବିଶ୍ୱାସର ପ୍ରାବଲ୍ୟ । ଉଦାହରଣସ୍ୱରୂପ ସମସ୍ତେ କହନ୍ତି ବା ଧାରଣା ପୋଷଣ କରନ୍ତି ଯେ, ଭାରତର ସଂସ୍କୃତି, ଦର୍ଶନ, ଧର୍ମ, ସାହିତ୍ୟ, ସଭ୍ୟତା ଆଦି ମହାନ୍, କିନ୍ତୁ ସମସ୍ତେ ଜାଣନ୍ତି, ଭାରତକୁ ବହୁ ବିଦେଶୀ ଜାତି ଶାସନ କରିଥିଲେ । ଇଂରେଜମାନେ ଶାସନ କରିଥିଲେ ପ୍ରାୟ ୨୦୦ ବର୍ଷ, ତାଙ୍କ ପୂର୍ବରୁ ପଠାଣ ଅର୍ଥାତ୍ ଆଫଗାନମାନେ ଶାସନ କରିଥିଲେ ପ୍ରାୟ ୨୦୦ ବର୍ଷ, ତାଙ୍କ ପୂର୍ବରୁ ମଙ୍ଗୋଲୀୟମାନେ ଅର୍ଥାତ୍ ମୋଗଲମାନେ ଶାସନ କରିଥିଲେ ପ୍ରାୟ ୩୦୦ ବର୍ଷ, ତାଙ୍କ ପୂର୍ବରୁ ଆରବୀୟମାନେ ଶାସନ କରିଥିଲେ ପ୍ରାୟ ୨୦୦ ବର୍ଷ, ତାଙ୍କ ପୂର୍ବରୁ ଗ୍ରୀକ୍, ଶକ, ହୂଣ ଆଦି ଜାତିର ଲୋକମାନେ ମଧ୍ୟ ଭାରତକୁ ଶାସନ କରିଥିଲେ । କେତେକ ଜାତି ସମଗ୍ର ଭାରତ ଉପରେ ଆଧିପତ୍ୟ ବିସ୍ତାର କରିଥିଲେ, ଆଉ କେତେକ ଏ ଦେଶର ବିଭିନ୍ନ ଅଞ୍ଚଳ ଉପରେ ଆଧିପତ୍ୟ ବିସ୍ତାର କରିଥିଲେ । ପୃଥିବୀରେ ଭାରତ ଭିନ୍ନ ଅନ୍ୟ କୌଣସି ଦେଶ ନାହିଁ, ଯାହାକୁ ଏତେ ବୈଦେଶିକ ଜାତି, ଏତେ ଦୀର୍ଘକାଳ ଧରି ଶାସନ କରିଥିଲେ ।

ବର୍ତ୍ତମାନ ମଧ୍ୟ ଭାରତ ଏକ ପ୍ରଚଣ୍ଡ ଦୁର୍ନୀତିଗ୍ରସ୍ତ ଦେଶ ରୂପେ ଜଣାଶୁଣା । ଏସବୁ ସତ୍ତ୍ୱେ ଯଦି ଆମେ କହିବା ଭାରତର ଧର୍ମ, ସଂସ୍କୃତି, ସାହିତ୍ୟ ଆଦି ମହାନ୍, ଏହା ଆମର ଅନ୍ଧବିଶ୍ୱାସ ଛଡ଼ା କ'ଣ ହୋଇପାରେ ? କୌଣସି ଦେଶର ବିଚାରଧାରାରୁ ଜାତୀୟ ଚରିତ୍ରର ସ୍ୱରୂପ ଗଠିତ ହୋଇଥାଏ । ସେହି ଦେଶର ସଂସ୍କୃତି ଜାତୀୟ ଚରିତ୍ର ପାଇଁ ବାହାର ଦେଶର ସଂସ୍କୃତି ଓ ବିଚାରଧାରା ଦାୟୀ ନୁହେଁ । ଯେଉଁ ଦେଶର ଜାତୀୟ ଚରିତ୍ର ଉଚ୍ଚମାନର, ତାହା ସେହି ଦେଶର ସଂସ୍କୃତି ଓ ବିଚାରଧାରା ଯୋଗୁଁ ହିଁ ଉଚ୍ଚମାନର । ଯେଉଁ ଦେଶର ଜାତୀୟ ଚରିତ୍ର ନିମ୍ନମାନର, ତାହା ସେହି ଦେଶର ସଂସ୍କୃତି ଓ ବିଚାରଧାରା ଯୋଗୁଁ ହିଁ ନିମ୍ନମାନର । ଭାରତୀୟମାନଙ୍କର ଜାତୀୟ ଚରିତ୍ର କାହିଁକି ନିମ୍ନମାନର ଥିଲା, ଯାହାଫଳରେ ବିଦେଶୀମାନେ ବହୁ ଶତାବ୍ଦୀ ଧରି ସେମାନଙ୍କୁ ଶାସନ କରିଥିଲେ ଏବଂ କାହିଁକି ବର୍ତ୍ତମାନ ମଧ୍ୟ ନିମ୍ନମାନର ଅଛି, ଯାହାଫଳରେ ପ୍ରତ୍ୟେକ କ୍ଷେତ୍ରକୁ ଦୁର୍ନୀତି ଗ୍ରାସ କରୁଛି, ତାହାର କାରଣ ରହିଛି ଭାରତର ସଂସ୍କୃତି ଓ ବିଚାରଧାରା ମୂଳରେ ।

ଭାରତରେ ଅନ୍ଧବିଶ୍ୱାସ ଏତେ ବ୍ୟାପକ ଯେ ପୂଜା ଉପାସନା ମଧ୍ୟ ଏହାର ଆସ୍ଥାନ ଜମାଇଛି । କାମନା ପୂରଣ ପାଇଁ ଦିଅଁଦେବତାଙ୍କୁ ଭୋଗଦେବା ବା ଭୋଗ ମନାସିବା ଏହାର ଏକ ଜ୍ୱଳନ୍ତ ଉଦାହରଣ । ବ୍ୟବସାୟ ବାଣିଜ୍ୟରେ ଉନ୍ନତି ହେବାପାଇଁ, ପରୀକ୍ଷାରେ ପାସ୍ କରିବାପାଇଁ, ଚାକିରି ମିଳିବା ପାଇଁ, ଚାକିରିରେ ପଦୋନ୍ନତି ମିଳିବା ପାଇଁ, ମୋକଦ୍ଦମାରେ ଜୟ ହେବାପାଇଁ, ନିର୍ବାଚନରେ ଟିକେଟ ମିଳିବା ପାଇଁ, ନିର୍ବାଚନ ଜୟଲାଭ ପାଇଁ, ଅରିଷ୍ଟ ଖଣ୍ଡନ ପାଇଁ, ରୋଗ ଭଲ ହେବାପାଇଁ, ଏପରିକି ଚୋରି ଡକାଏତିରେ ସାଫଲ୍ୟ ମିଳିବା ପାଇଁ, ଦୁର୍ନୀତିରେ ମଧ୍ୟ ସଫଳ ହେବାପାଇଁ ଏହିପରି ବିଭିନ୍ନ କାମନା ନେଇ ଲୋକେ ଦେବଦେବୀଙ୍କ ପୂଜା ଉପାସନା କରନ୍ତି । ପୂଜା ଉପାସନା ମୂଳରେ କେବଳ ସ୍ୱାର୍ଥକାମନା ହିଁ ନିହିତ । "ମୋ ଭାଇବନ୍ଧୁ, ମୋ ପଡୋଶୀ, ମୋ ଗାଁ ଲୋକ ବା ମୋ ଦେଶ ଲୋକ ସୁଖରେ ରହନ୍ତୁ, ସେଥିପାଇଁ ମୁଁ ଭୋଗ ମନାସୁଛି" ଏହି ଉଦ୍ଦେଶ୍ୟ ନେଇ କେହି କେବେ ଭୋଗ ମନାସେ ନାହିଁ । ତେଣୁ ଓଡିଆରେ ଗୋଟିଏ ଉକ୍ତି ଅଛି- "ମା ଝିଅ ଦୁହେଁ ମନ୍ଦିରକୁ ଗଲେ, ଯେଝା ଶୁଭ ଯେଝା ମନାସିଲେ ।"

କାମନା ପୂରଣ ପାଇଁ ଭୋଗଦେବା ବା ଭୋଗ ମନାସିବା କିମ୍ବା ଭୋଗ ଦେଇ କାମନା ପୂରଣ ହେଲା ବୋଲି ଭାବିବା ନିଶ୍ଚିତ ଅନ୍ଧବିଶ୍ୱାସ । ଭୋଗ ଦେଲେ ବା ଭୋଗ ମନାସିଲେ ଯଦି କାମନା ପୂରଣ ହେଉଥାଆନ୍ତା, ତେବେ ସମସ୍ତଙ୍କର ତ ହେଉଥାଆନ୍ତା । ପୂର୍ବ କାଳରେ ରାଜାମାନେ ଯୁଦ୍ଧରେ ଜୟଲାଭ କରିବା ଉଦ୍ଦେଶ୍ୟରେ ଦୁର୍ଗା ବା କାଳିଙ୍କର ପୂଜା ଆରାଧନା କରୁଥିଲେ, ଯୁଦ୍ଧକୁ ଯିବା ପୂର୍ବରୁ ନିଷ୍ଠୟ ପ୍ରାର୍ଥନା ଜଣାଇ ଯାଉଥିଲେ, କିନ୍ତୁ ସମସ୍ତେ କ'ଣ ଜୟଲାଭ କରୁଥିଲେ ? ଯାହା ନିଶ୍ଚିତ ଭାବେ ବା ସଠିକ୍ ଭାବେ ସତ୍ୟ ନୁହେଁ,

ତାହା ଅନ୍ଧବିଶ୍ୱାସ । ତେଣୁ ତନ୍ତ୍ର, ମନ୍ତ୍ର, ଯଜ୍ଞ ଆଦି ମଧ୍ୟ ଅନ୍ଧବିଶ୍ୱାସ । ଅନ୍ଧବିଶ୍ୱାସ କେବେ ସମାଜର ହିତ ସାଧନ କରେନାହିଁ, ଅହିତ ସାଧନ କରେ । ଦେବଦେବୀଙ୍କୁ ଭୋଗ ଦେଲେ ବା ଭୋଗ ମନାସିଲେ କାମନା ପୂରଣ ହୁଏ, ଏହି ଅନ୍ଧବିଶ୍ୱାସ ଭାରତର କମ୍ କ୍ଷତି କରିନାହିଁ । କାରଣ ଏହାଦ୍ୱାରା ସ୍ୱାର୍ଥପରତା ଜାତୀୟ ଚରିତ୍ର ହୋଇଯାଇଛି । ପୂଜା ଉପାସନା ଭଳି ଆଧ୍ୟାତ୍ମିକ ବିଷୟରେ ଯଦି ସମସ୍ତେ ସ୍ୱାର୍ଥକାମନା ପୋଷଣ କରିବେ, ତେବେ ସେମାନେ ସ୍ୱାର୍ଥପର ଜାତି ହେବେନାହିଁ ତ କଅଣ ହେବେ ? ଇଂରେଜମାନେ ଭାରତୀୟମାନଙ୍କର ଉପାସନା ମୂଳରେ ନିହିତ ଥିବା ସ୍ୱାର୍ଥ ଭାବନାକୁ ବେଶ୍ ହୃଦୟଙ୍ଗମ କରିଥିଲେ । ତେଣୁ ପ୍ରଲୋଭନ ଦେଖାଇ ଅନେକ ସ୍ଥଳରେ ବିଜୟଲାଭ କରିଥିଲେ । ସେମାନଙ୍କ ପ୍ରଲୋଭନର ବଶବର୍ତ୍ତୀ ହୋଇ ଏ ଦେଶରେ ବନ୍ଧୁମାନେ ମଧ୍ୟ ବନ୍ଧୁମାନଙ୍କ ବିରୋଧରେ ଯାଇଥିଲେ, ଏପରିକି ବନ୍ଧୁମାନେ ବନ୍ଧୁମାନଙ୍କୁ ହତ୍ୟା ମଧ୍ୟ କରିଥିଲେ ବା କରାଇଥିଲେ । ଝାନ୍‌ସୀରାଣୀ ଲକ୍ଷ୍ମୀବାଈ, ବୀର ସୁରେନ୍ଦ୍ର ସାଏ, ଜୟୀ ରାଜଗୁରୁ ଆଦି ବୀରମାନେ ପ୍ରଲୋଭନର ବଶବର୍ତ୍ତୀ ବନ୍ଧୁମାନଙ୍କ ଯୋଗୁଁ ହିଁ ମୃତ୍ୟୁମୁଖରେ ପଡିଥିଲେ । ଇଂରେଜମାନେ ଏ ଦେଶରେ ଯୁଦ୍ଧ କରି ଯେତେ ସାଫଲ୍ୟ ଲାଭ କରିନଥିଲେ, ପ୍ରଲୋଭନ ଦେଖାଇ ତତୋଽଧିକ ସାଫଲ୍ୟ ଲାଭ କରିଥିଲେ । ସ୍ୱାର୍ଥପରତାରୁ ଜନ୍ମନିଏ ପରସ୍ପର ପ୍ରତି ଈର୍ଷା ଓ ବିଶ୍ୱାସଘାତକତା । ଏହା ବର୍ତ୍ତମାନ କେତେ ବ୍ୟାପକ, ବୋଲିବା ନିଷ୍ପ୍ରୟୋଜନ । ଆମ ଉପାସନା ଧାରାରୁ ଭୋଗ ଦେବା ବା ଭୋଗ ମନାସିବା ଧାରାଟିକୁ ବାଦ୍ ଦିଆଯାଉ, ଦେଖିବେ ସ୍ୱାର୍ଥପରତା ୫୦ ଭାଗ ହ୍ରାସ ପାଇଯିବ ।

କେହି କହିପାରନ୍ତି, ଏହା ବହୁ କାଳରୁ ପ୍ରଚଳିତ ହୋଇଆସୁଛି, ବାଦ୍ ଦିଆଯିବା ଉଚିତ ହେବ କି ? ଏ ପ୍ରସଙ୍ଗରେ ବୁଝି ରଖିବାକୁ ହେବ, ଆମେ ପ୍ରଜାତନ୍ତ୍ର ଅର୍ଥାତ୍ ଜନତନ୍ତ୍ର କାଳରେ ପ୍ରବେଶ କରିଥାଇଁ । ଯେଉଁସବୁ କଥା ରାଜତନ୍ତ୍ର କାଳରେ ବିଧି ବିବେଚିତ ହେଉଥିଲା, ସେ ସମସ୍ତ ପ୍ରଜାତନ୍ତ୍ର କାଳରେ ବିଧି ବିବେଚିତ ହୋଇନପାରେ । କେତେକ ହୋଇପାରେ, କିନ୍ତୁ ସମସ୍ତ ନୁହେଁ । ଆମେ ଯଦି ରାଜତନ୍ତ୍ର ଯୁଗର ସବୁ ବିଚାରଧାରାକୁ ଗ୍ରହଣ କରିବା, ତେବେ ଜନତନ୍ତ୍ରର ମହତ୍ତ୍ୱ ବୁଝିପାରିବା ନାହିଁ କି ଏହାର ସୁଫଳ ପାଇପାରିବା ନାହିଁ । ରାଜତନ୍ତ୍ରରେ ବିଧି ବିବେଚିତ ହୋଇଥିବା ଅନେକ କଥା ଜନତନ୍ତ୍ରରେ ଗ୍ରହଣୀୟ ନୁହେଁ । ଉଦାହରଣ ସ୍ୱରୂପ ଶ୍ରୀରାମ ଚନ୍ଦ୍ରଙ୍କ ଚରିତ । ଶ୍ରୀରାମଚନ୍ଦ୍ରଙ୍କର ଅନେକ ଉତ୍ତମ ଗୁଣ ଥିଲା, କିନ୍ତୁ ସେ ନିଜ ପତ୍ନୀଙ୍କ ପ୍ରତି ଯେଉଳି ନିର୍ଦ୍ଦୟ ଆଚରଣ କରିଥିଲେ, ଜନତନ୍ତ୍ରରେ ତାହା ଆଦର୍ଶ ନୁହେଁ, କିନ୍ତୁ ରାଜତନ୍ତ୍ରରେ ତାହାକୁ ପ୍ରଶଂସା କରାଯାଉଥିଲା । ରାମ, ରାବଣକୁ ମାରିଲା ପରେ ଯେତେବେଳେ ସୀତା ତାଙ୍କ ପାଖକୁ ଆସିଲେ, ରାମ କହିଦେଲେ- 'ଆଗେ ଅଗ୍ନିରେ ପ୍ରବେଶ କରି ସତୀତ୍ୱର ପରିଚୟ ଦିଅ, ତାପରେ ମୁଁ ତୁମକୁ ଗ୍ରହଣ କରିବି । କାଳେ ଲୋକ ସନ୍ଦେହ କରୁଥିବେ ତୁମେ ରାବଣର ସଂସ୍ପର୍ଶରେ ଆସିଥିବ ।' ସେ ଯୁଗ ଯଦି ଜନତନ୍ତ୍ର ଯୁଗ

ହୋଇଥାଆନ୍ତା, ତେବେ ସୀତା ରାମଙ୍କୁ କହିଦେଇ ଥାଆନ୍ତେ- "ହେ ସ୍ୱାମୀ, ତୁମେ ତ ମୋତେ କେତେବର୍ଷ ଛାଡି ରହିଲ, କାଳେ ଲୋକେ ସନ୍ଦେହ କରୁଥିବେ, ତୁମେ ଅନ୍ୟ କୌଣସି ନାରୀର ସମ୍ପର୍କରେ ଆସିଥିବ । ତେଣୁ ତୁମେ ଆଗେ ଅଗ୍ନିରେ ପ୍ରବେଶ କରି ସତ୍ ପୁରୁଷର ପରିଚୟ ଦିଅ ।' ସୀତା କିନ୍ତୁ ସେପରି କହିପାରିନଥିଲେ, କାରଣ ସେ ଯୁଗରେ ପୁରୁଷର ଆଧିପତ୍ୟ ଉପରେ ପାଟି ଫିଟାଇବାକୁ ନାରୀର ଶକ୍ତି ନଥିଲା । ନିରୀହତା ଅବଲମ୍ବନ କରିବା ଛଡା ଅନ୍ୟ କୌଣସି ବାଟ ନଥିଲା । ଏଭଳି ରାଜତନ୍ତ୍ର କାଳୀନ କଥାକୁ ବର୍ତ୍ତମାନ ଆଦର୍ଶ ମନେକରିବା ପ୍ରଚଣ୍ଡ ଅନ୍ଧବିଶ୍ୱାସ ଛଡା ଆଉ କଅଣ ? ଗଙ୍ଗାଧର ମେହେରଙ୍କର "ତପସ୍ୱିନୀ" କାବ୍ୟରେ ଗୋଟିଏ ଉକ୍ତି ରହିଛି, ଯାହାର ଅର୍ଥ ହେଉଛି 'ଗୋ ସଖୀ, ମୁଁ ମରିଗଲେ ମୋତେ ଜାଳିଦେବ, ମୋ ଶରୀର ଯେଉଁ ପାଉଁଶରେ ପରିଣତ ହୋଇଯିବ, ତାହାକୁ ନେଇ ଗୋଟିଏ ଗଛମୂଳେ ଦେବ । ସେଥିରୁ ସାର ପାଇ ଗଛଟି ବଢ଼ିବ । ଗଛଟି ବଢ଼ିଗଲେ ତାହାର କାଠରୁ ହଳେ ପାଦୁକା ତିଆରି କରାଇ ରାମଙ୍କୁ ଦେବ । ରାମ ସେହି ପାଦୁକା ଉପରେ ପାଦ ରଖି ଚାଲିଲେ ମୋ ପତ୍ନୀତ୍ୱ ସାର୍ଥକ ହେବ ।" ଏଭଳି ଚିନ୍ତାଧାରାକୁ ଗଙ୍ଗାଧରଙ୍କର ରାଜତନ୍ତ୍ରୀୟ ଅନ୍ଧବିଶ୍ୱାସ ବୋଲି କହିଲେ ଭୁଲ୍ ହେବ ନାହିଁ ।

ଶ୍ରୀରାମଚନ୍ଦ୍ରଙ୍କୁ 'ମର୍ଯ୍ୟାଦା ପୁରୁଷୋତ୍ତମ' କୁହାଯାଉଥିଲା । କାରଣ ତାଙ୍କ ସମୟରେ ଯେଉଁ ଶାସ୍ତ୍ର ନିୟମ ବା ଆଚାର ପ୍ରଚଳିତ ଥିଲା, ତାହାରି ଭିତରେ ସେ କାର୍ଯ୍ୟ କରିଥିଲେ । ସଂସ୍କୃତରେ 'ମର୍ଯ୍ୟାଦା' ଶବ୍ଦର ଅର୍ଥ ସୀମାସରହଦ । ରାମଚନ୍ଦ୍ର ସେ କାଳ ନୀତିନିୟମ ବା ଆଚାର ବିଚାରର ସୀମାସରହଦ ଭିତରେ କାର୍ଯ୍ୟ କରିଥିଲେ । କୌଣସି ନିୟମ ଆଦୌ ଉଲ୍ଲଂଘନ କରିନଥିଲେ । ତାଙ୍କ ସମୟରେ ଗୋଟିଏ ଶାସ୍ତ୍ରନିୟମ ଥିଲା ଶୂଦ୍ରମାନେ ତପସ୍ୟା କରିପାରିବେ ନାହିଁ । ତେଣୁ ରାମଚନ୍ଦ୍ର ଯେତେବେଳେ ଦେଖିଲେ ଜଣେ ଶୂଦ୍ର ତପସ୍ୟା କରୁଛି, ତାକୁ ସେ ହତ୍ୟା କଲେ । ଏହିପରି ସମସ୍ତ ଶାସ୍ତ୍ରନିୟମକୁ ସେ ମାନିଥିଲେ, ତେଣୁ ତାଙ୍କୁ କୁହାଯାଉଥିଲା 'ମର୍ଯ୍ୟାଦା ପୁରୁଷୋତ୍ତମ' । କିନ୍ତୁ ବର୍ତ୍ତମାନ ସ୍ୱୟଂ ରାଷ୍ଟ୍ରପତି ମଧ୍ୟ ଯଦି ତପସ୍ୟା କରୁଥିବା ଶୂଦ୍ରକୁ ମାରିବେ, ତାଙ୍କୁ ଜେଲ ଦଣ୍ଡ ବା ଫାଶୀଦଣ୍ଡ ମିଳିବ । ସେହିପରି ଭଗବାନ ଶ୍ରୀକୃଷ୍ଣ ଆଠ ପତ୍ନୀ ଗ୍ରହଣ କରିଥିଲେ । ଆଜି ଯଦି ସେ ଜନ୍ମଗ୍ରହଣ କରି ଆଠ ପତ୍ନୀ ଗ୍ରହଣ କରିବେ, ନିଶ୍ଚୟ ନିନ୍ଦାର ପାତ୍ର ହେବେ । ଗ୍ରହଣ କରିପାରିବେ କି ନାହିଁ ସନ୍ଦେହ । ତେଣୁ ଭଗବାନ ହୁଅନ୍ତୁ ବା ଭଗବାନଙ୍କ ଦୂତ ବା ପୁତ୍ର ହୁଅନ୍ତୁ, କାହାରି ସବୁ କଥା ସବୁକାଳରେ ଗ୍ରହଣୀୟ ନୁହେଁ । ଯେଉଁମାନେ ଗ୍ରହଣୀୟ ବୋଲି ଭାବନ୍ତି, ସେମାନେ ଅନ୍ଧବିଶ୍ୱାସୀ ।

ସେହିପରି ବହୁ ପୂର୍ବ କାଳରୁ ଭାରତୀୟ ମାନଙ୍କ ମନରେ ଚେର ଭିଡି ଆସିଥିବା ଏକ ଅନ୍ଧବିଶ୍ୱାସ ହେଉଛି ରାଶିଫଳ । ଓଡିଶାରେ ଏହାର ପ୍ରାଦୁର୍ଭାବ ବେଶୀ । ଓଡିଶାର ସବୁ

ଖବରକାଗଜ ଏହାକୁ ସବୁ ଓଡିଆଙ୍କ ମୁଣ୍ଡରେ ପୂରାଇବା ପାଇଁ ଅଣ୍ଟା ଭିଡି ଲାଗି ପଡିଛନ୍ତି । ଥରେ ଏ ଲେଖକ ପୁଣ୍ୟାତ୍ମା ରାଧାନାଥ ରଥ, 'ସମାଜ' ସମ୍ପାଦକଙ୍କୁ ବିନୀତ ଭାବରେ ପଚାରିଥିଲା- 'ବାବୁଜୀ, ସମ୍ବାଦପତ୍ରରେ ରାଶିଫଳ ଦିଆଯିବା କ'ଣ ସମ୍ବାଦପତ୍ରର ଧର୍ମ ? ଜାତୀୟ ଚରିତ୍ର ବା ବ୍ୟକ୍ତି ଚରିତ୍ରର ନିର୍ମାଣରେ ଏହାର କୌଣସି ଭୂମିକା ଅଛିକି ? ଓଲଟି ଏହା ଜନମାନସକୁ ଅନ୍ଧବିଶ୍ୱାସୀ ତଥା ଦୁର୍ବଳ କରିବାରେ ଏବଂ ଏକ ଭାଗ୍ୟବାଦୀ ମନସ୍ତତ୍ତ୍ୱ ନିର୍ମାଣ କରିବାରେ ସାହାଯ୍ୟ କରୁନାହିଁ କି ? ତେବେ 'ସମାଜ'ରେ ରାଶିଫଳ ଦିଆଯାଉଛି କାହିଁକି ? ସେହି ହେତୁବାଦୀ ଚିନ୍ତାଶୀଳ ମନୀଷୀ ଟିକିଏ ନୀରବରେ ବସିଲେ । ତା' ପରଦିନ ତତ୍କାଳୀନ ବାର୍ତ୍ତା ସମ୍ପାଦକ ଆନନ୍ଦ ଚନ୍ଦ୍ର ପାଣିଙ୍କୁ 'ସମାଜ' ରେ ରାଶିଫଳ ପ୍ରକାଶ ନ କରିବାକୁ ନିର୍ଦ୍ଦେଶ ଦେଇଥିଲେ । 'ସମାଜ' ରେ ରାଶିଫଳ ପ୍ରକାଶ ବନ୍ଦ ହୋଇଥିଲା । କିନ୍ତୁ ପରେ ଯେତେବେଳେ ସବୁ ସମ୍ବାଦପତ୍ରରେ ରାଶିଫଳ ଦିଆଗଲା, 'ସମାଜ' ରେ ମଧ୍ୟ ଦିଆଗଲା ।

ବର୍ତ୍ତମାନ ସର୍ବନିମ୍ନ କୋଡିଏ ଲକ୍ଷ ଓଡିଆ ଲୋକ କୌଣସି ନା କୌଣସି ଓଡିଆ ସମ୍ବାଦପତ୍ର ପଢନ୍ତି । ସେହି କୋଡିଏ ଲକ୍ଷ ଲୋକଙ୍କୁ ଓଡିଆ ଜାତିର ଶିକ୍ଷିତ ବର୍ଗ କୁହାଯାଇପାରେ । ପ୍ରତ୍ୟେକ ଓଡିଆ ସମ୍ବାଦପତ୍ରରେ ରାଶିଫଳ ଦିଆଯାଉଥିବାରୁ ଅନ୍ତତଃ କୋଡିଏ ଲକ୍ଷ ଓଡିଆ ପ୍ରତିଦିନ ରାଶିଫଳ ପଢୁଛନ୍ତି । ଅନେକ ନିଜର ରାଶିଫଳ ଜାଣିବାକୁ ଏପରି ଉତ୍କଣ୍ଠିତ ତଥା ବ୍ୟଗ୍ର ହୋଇଗଲେଣି ଯେ, ସମ୍ବାଦପତ୍ର ଖଣ୍ଡିଏ ପାଇଲାମାତ୍ରେ ଆଗେ ରାଶିଫଳ ଉପରେ ଆଖି ପକାଉଛନ୍ତି । ଏହାଦ୍ୱାରା ସେମାନଙ୍କର ଭାଗ୍ୟବାଦୀ ବିଶ୍ୱାସ, ମାନସିକ ଦୁର୍ବଳତା ଓ ଆତ୍ମକୈନ୍ଦ୍ରିକ ଭାବ ଯେ ବଢୁଛି, ଏଥିରେ ସନ୍ଦେହ ନାହିଁ ।

କୌତୂହଳର ବିଷୟ, ଆମେ ଦିନେ ଦିନେ ତିନି ଚାରିଟା ସମ୍ବାଦପତ୍ରରୁ ଦୈନିକ ରାଶିଫଳ ମିଳାଇ ଦେଖିଛୁ, ସେଗୁଡିକ ମଧ୍ୟରେ ସାମଞ୍ଜସ୍ୟ ନଥାଏ । କୌଣସି ରାଶିର ଫଳ ଗୋଟିଏ ସମ୍ବାଦପତ୍ରରେ ଶୁଭ ଥିବାବେଳେ ଅନ୍ୟ ସମ୍ବାଦପତ୍ରରେ ଅଶୁଭ ଥାଏ । ଜଣେ ଅଧ୍ୟାପକ ବନ୍ଧୁ କହୁଥିଲେ, ସେ ଅଧ୍ୟାପକ ହେବା ପୂର୍ବରୁ ଏକ ସମ୍ବାଦପତ୍ରରେ ସହସମ୍ପାଦକ ଥିଲେ । ଯେଉଁ ସପ୍ତାହରେ ଜ୍ୟୋତିଷଙ୍କଠାରୁ ରାଶିଫଳ ଲେଖା ମିଳୁନଥିଲା, ସେ ନିଜେ ରାଶିଫଳ ଏଣୁ ତେଣୁ କରି ଲେଖି ଛପାଇ ଦେଉଥିଲେ ।

କେହି କହିପାରନ୍ତି, ଆମେ ଯେଉଁଦିନ ରାଶିଫଳରୁ ଅଶୁଭ ସୂଚନା ପାଇବା, ସେଦିନ ସତର୍କତାର ସହିତ ଚଳିବା, କାହାରି ସହିତ ଝଗଡା ଝାଟି କରିବା ନାହିଁ କି କୌଣସି ପ୍ରକାର ଅସଦ୍‌ଭାବ ଆଚରଣ କରିବା ନାହିଁ । ତେବେ କଥା ହେଉଛି, ଆମେ ସବୁଦିନ ସତର୍କତାର ସହିତ ଚଳିବାକୁ ତଥା ସବୁଦିନ ସମସ୍ତଙ୍କ ସହିତ ସଦ୍‌ଭାବ ଆଚରଣ କରିବାକୁ ଶିଖିବା ନାହିଁ କାହିଁକି, କେବଳ ଗୋଟିଏ ଗୋଟିଏ ଦିନ ପାଇଁ ଶିଖିବା କାହିଁକି ? ତା ଛଡା ଜୀବନରେ ସୁଖ

ଆସିବ, ଦୁଃଖ ଆସିବ, ଦୁଃଖ ଆସିବ, ସୁଖ ଆସିବ, ଏହା ଧ୍ରୁବ ସତ୍ୟ । ଶେଷକୁ ଧ୍ରୁବ ସତ୍ୟ ବାର୍ଦ୍ଧକ୍ୟ ଓ ମୃତ୍ୟୁ । କଅଣ ଘଟିବ, କେହି କହିପାରିବେ ନାହିଁ । ତେବେ ଆମେ ଯଥାସମ୍ଭବ ସତର୍କତାର ସହିତ ଓ ଆବେଗର ବଶବର୍ତ୍ତୀ ନହୋଇ ଚଳିବା ଉଚିତ ।

ଓଡିଶାରେ ଅଜସ୍ର ଅନ୍ଧବିଶ୍ୱାସର ଲୀଳାସ୍ଥଳୀ ହୋଇ ରହିଛି ନାରୀମାନଙ୍କର ଚିନ୍ତାଧାରା । ବହୁ ଓଷା, ବ୍ରତ, ବାର ପାଳନ ତନ୍ମଧ୍ୟରୁ ଅନ୍ୟତମ । ସାବିତ୍ରୀ ବ୍ରତ, ସୁଦଶା ବ୍ରତ, ମଙ୍ଗଳା ଓଷା, ବାଟ ଓଷା, ବଡ ଓଷା, ଖୁଦୁରୁକୁଣୀ ଓଷା, ଦୂତୀବାହନ ଓଷା, ଚାନ୍ଦ ଓଷା, ଜାଗର ଓଷା, କୃଷ୍ଣ ଜନ୍ମ ଓଷା, ରାଧାଜନ୍ମ ଓଷା, କୁଆଁରପୁନେଇଁ ଓଷା, ମାଣବସା, ଅନନ୍ତ ବ୍ରତ, ସନ୍ତୋଷୀ ମାଆ ପୂଜା, ସୋମନାଥ ବ୍ରତ, ରବିନାରାୟଣ ବ୍ରତ, ବୁଧେଇ ଓଷା, ହନୁମାନ ପୂଜା, ଶନି ପୂଜା ଇତ୍ୟାଦି ଇତ୍ୟାଦି । ବିଭିନ୍ନ ଅଞ୍ଚଳରେ ବିଭିନ୍ନ ଓଷା ବ୍ରତ । ସବୁଥିରେ ପ୍ରଥମ ତଥା ପ୍ରଧାନ ନିୟମଟା ହେଉଛି ଉପବାସ । ପୂରା ଦିନରାତି ପାଇଁ ହେଉ ବା କେବଳ ଦିନବେଳା ପାଇଁ ହେଉ ବା କେବଳ ରାତିବେଳା ପାଇଁ ହେଉ, ଉପବାସଟା ଧାର୍ଯ୍ୟ । ଗାଁଗହଳିରେ ନାରୀମାନଙ୍କର ଯେ ପ୍ରକାର ସ୍ୱାସ୍ଥ୍ୟଭଙ୍ଗ, ଅର୍ଥାତ ଅଧିକାଂଶଙ୍କର ରକ୍ତହୀନତା, ମୁଣ୍ଡବିନ୍ଧା, ଜ୍ୱର, ଛାତିପୋଡା, ପେଟବିନ୍ଧା, ଅନିୟମିତ ଋତୁସ୍ରାବ, ମୁଣ୍ଡବୁଲା ଆଦି ଯେତେ ରୋଗ, ସେସବୁର ମୁଖ୍ୟ କାରଣ ଅତ୍ୟଧିକ ଉପବାସ । ଗରିବ ଘରର ସ୍ତ୍ରୀ ଲୋକମାନେ ଘରର, ପୁଣି ବାହାରର ଅନେକ ଖଟଣି ଖଟି ଖଟି ଦୁର୍ବଳ ହୁଅନ୍ତି । ସେଥିରେ ପୁଣି ଓଷା, ବ୍ରତ ପାଳନ କର, ଉପବାସରେ ରହି ରହି ଆହୁରି ଦୁର୍ବଳ ହୁଅନ୍ତି । ଓଷା, ବ୍ରତ ପାଳନର ଉଦ୍ଦେଶ୍ୟ ହେଉଛି ପରିବାରର ମଙ୍ଗଳ କାମନା, ତେବେ ପରିବାରର ମଙ୍ଗଳ କାମନା ପୁରୁଷମାନଙ୍କର ମଧ୍ୟ ରହିଛି, ପୁରୁଷମାନେ ଓଷା, ବ୍ରତ ପାଳନ କରୁନାହାନ୍ତି କାହିଁକି ? ନାରୀମାନଙ୍କୁ ନିରୀହା କରି ରଖିବା ଛଡା ଏହାର ଅନ୍ୟ କୌଣସି ଉଦ୍ଦେଶ୍ୟ ନାହିଁ ବୋଲି କୁହାଯାଇପାରେ ।

ଓଷା, ବ୍ରତାଦି ସମ୍ବନ୍ଧରେ ଯେଉଁସବୁ କଥା କାହାଣୀ ଅଛି, ସେସବୁ ଏତେ ନିମ୍ନରୁଚିର ବା ଅମାର୍ଜିତ ରୁଚିର ଯେ ସଭ୍ୟ ସମାଜରେ ସେସବୁକୁ ପଢ଼ିବା ବା ଶୁଣିବା ନିଷିଦ୍ଧ ହେବା କଥା । ଉଦାହରଣସ୍ୱରୂପ 'ଦୂତିବାହନ ଓଷା' ନାମରେ ଗୋଟିଏ ଓଷା । ଏହା ବେଶୀ ଗାଁ ଗହଳିରେ ପ୍ରଚଳିତ । ଏହାର କାହାଣୀ ହେଉଛି ଜଣେ ବିଧବା ବ୍ରାହ୍ମଣୀ ସୂର୍ଯ୍ୟପୂଜା କରୁଥିଲା । ଦିନେ ସୂର୍ଯ୍ୟଦେବ ପ୍ରସନ୍ନ ହୋଇ ବିଧବା ବ୍ରାହ୍ମଣୀର ଘରକୁ ଆସିଲେ । ଗଲାବେଳକୁ ବ୍ରାହ୍ମଣୀର ଲେଉଟିଆ ଶାଗ କିଆରୀରେ ପରିସ୍ରା କରିଦେଇଗଲେ । ଅବଶ୍ୟ ଶାଗ କିଆରୀ ବୋଲି ସେ ଜାଣିନଥିଲେ । ତା'ପରଦିନ ସେହି ବିଧବା ବ୍ରାହ୍ମଣୀ ଶାଗକିଆରୀରୁ ଶାଗ କାଟିନେଇ ଖରଡି ଖାଇଲା । ସେ ଗର୍ଭବତୀ ହେଲା ଏବଂ ଯଥାସମୟରେ ଗୋଟିଏ ପୁତ୍ର ସନ୍ତାନକୁ ଜନ୍ମଦେଲା । ଲୋକେ ବିଧବା ବ୍ରାହ୍ମଣୀକୁ ନିନ୍ଦା କରିବାରୁ ସେ ସୂର୍ଯ୍ୟଦେବଙ୍କୁ ଗୁହାରି କଲା । ସୂର୍ଯ୍ୟଦେବ

ତା' ପାଖକୁ ଆସିଲେ । ପୁତ୍ରଟିର ନାମ ରଖିଲେ ଦୂତିବାହନ ଏବଂ ତାକୁ ଅଲୌକିକ କ୍ଷମତା ପ୍ରଦାନ କରିଲେ । ଅଲୌକିକ କ୍ଷମତା ବଳରେ ଦୂତିବାହନ ନାରୀମାନଙ୍କର ମନକଥା ସବୁ ପୂର୍ଣ୍ଣକଲା । ତାହାରି ନାମରେ ଚାଲିଲା ଦୂତିବାହାନ ଓଷା । ଏହି ଅଶିଷ୍ଟ କାହାଣୀକୁ ନେଇ ଚାଲୁଥିବା ଓଷାକୁ ଆମେ ଆମର ମହନୀୟ ସଂସ୍କୃତି ବୋଲି କହିପାରିବା ? ପୁଣି ଅନନ୍ତ ଉତ୍ତାପ ଓ ଶକ୍ତିର ଆଧାର ସୂର୍ଯ୍ୟ ବ୍ରାହ୍ମଣୀ ପାଖକୁ ଗୋଟିଏ ମଣିଷ ରୂପ ଧରି ଆସିବା ହାସ୍ୟାସ୍ପଦ ନୁହେଁକି ?

ଆଉ ଗୋଟିଏ ଓଷା 'ବଡ଼ ଓଷା' । ଶିବଙ୍କ କୃପାଲାଭ ଉଦ୍ଦେଶ୍ୟରେ ଏହା ପାଳନ କରାଯାଏ । ଏହାର କାହାଣୀ ହେଉଛି- ଗୋଟାଏ ଚୋର ଜଣେ କୃଷକର ଧଳା ବଳଦଟିକୁ ଚୋରି କରିନେଇଗଲା । କୃଷକଟି ରାଜାଙ୍କ ନିକଟରେ ଗୁହାରି କଲା । ରାଜା ବଳଦ ଚୋରି କରିଥିବା ଚୋରକୁ ବଳଦ ସହିତେ ଧରିଆଣିବାକୁ ରକ୍ଷୀଙ୍କୁ ଆଦେଶ ଦେଲେ । ଚୋର ନିରୂପାୟ ହୋଇ ଶିବଙ୍କୁ ପ୍ରାର୍ଥନା କଲା । ରକ୍ଷାକର, ରକ୍ଷାକର । ଶିବ ପ୍ରସନ୍ନ ହୋଇ ଧଳା ବଳଦକୁ କଳା କରିଦେଲେ । ଫଳରେ ଚୋରି ପ୍ରମାଣିତ ହୋଇପାରିଲା ନାହିଁ । ଚୋର ରକ୍ଷା ପାଇଲା । ବିଚରା କୃଷକଟି, ପ୍ରକୃତରେ ଯାହାର ବଳଦ, ସେ ମିଥ୍ୟା ଅଭିଯୋଗରେ ରାଜାଙ୍କ ଦ୍ୱାରା ଦଣ୍ଡିତ ହେଲା । ଏହି ଅନ୍ଧବିଶ୍ୱାସପୂର୍ଣ୍ଣ କାହାଣୀଟି ଅନ୍ୟାୟକୁ ପ୍ରଶ୍ରୟ ଦେଉନାହିଁକି ? ଏଭଳି ଓଷାଗୁଡ଼ାକୁ ନିଷିଦ୍ଧ କରାହେବା ଉଚିତ ।

ସାବିତ୍ରୀ ବ୍ରତ କଥା ସମସ୍ତେ ଜାଣନ୍ତି । କାହାଣୀ ଅନୁସାରେ ସାବିତ୍ରୀ ନିଜର ପତିବ୍ରତା ଗୁଣ ବଳରେ ମୃତ୍ୟୁଦେବତା ଯମଙ୍କ ହାତରୁ ସ୍ୱାମୀଙ୍କ ଜୀବନ ଆଣି ପାରିଥିଲେ । ଅତଏବ ସେହିଭଳି ପତିବ୍ରତା ଗୁଣ ଲାଭ କରିବା ନିମନ୍ତେ ପତ୍ନୀମାନେ ସାବିତ୍ରୀ ବ୍ରତ ପାଳନ କରୁଛନ୍ତି । ଭଲ କଥା । ପତିବ୍ରତା ଗୁଣ ନାରୀର ଭଲ ଗୁଣ । କିନ୍ତୁ କେଉଁ ପତି ପତ୍ନୀବ୍ରତା ଗୁଣ ଲାଭ କରିବା ନିମନ୍ତେ ବ୍ରତଟିଏ ପାଳନ କରୁଛନ୍ତି ? କେଉଁ ପୁରାଣ ଶାସ୍ତ୍ରରେ ଅଛି, ପତିଟିଏ ପତ୍ନୀବ୍ରତା ଗୁଣ ବଳରେ ଯମଦେବତାଙ୍କ ହାତରୁ ପତ୍ନୀର ଜୀବନକୁ ଘେନି ଆସିଥିଲେ ? ଆହା ! ବିଚାରୀ ସାବିତ୍ରୀ ପ୍ରତି କେତେ ଦରଦ ! କେତେ ସାଧୁ, ସନ୍ଥ, ଦାର୍ଶନିକ ମାନଙ୍କର ତାର ମହତ୍ତ୍ୱ ପ୍ରତିପାଦନ ପାଇଁ କେତେ ପ୍ରୟାସ ! ଯେଉଁ କଥା ସମ୍ପୂର୍ଣ୍ଣ ଅବାସ୍ତବ ବା କାଳ୍ପନିକ, ଯେପରି - ଯମରାଜ ନାମକ ଦେବତା ଆସି ସତ୍ୟବାନଙ୍କ ପ୍ରାଣକୁ ବାନ୍ଧି ନେଇଥିଲେ, ସତେ ଯେପରି ଯମରାଜ ନାମକ ଦେବତା କେଉଁଠି ଅଛନ୍ତି ଏବଂ ସେ ପ୍ରାଣକୁ ଆଳୁ, ପିଆଜ ବାନ୍ଧିନେଲା ଭଳି ବାନ୍ଧି ନିଅନ୍ତି । ପତିବ୍ରତା ସାବିତ୍ରୀ ଶୂନ୍ୟମଣ୍ଡଳରେ ତାଙ୍କ ପଛେ ପଛେ ଚାଲିଲେ, ସତେ ଯେପରି ଶୂନ୍ୟମଣ୍ଡଳରେ ପାହାଚ ସବୁ ଅଛି ! ଏହିପରି କାଳ୍ପନିକ କାହାଣୀ, ଯାହା କି ମର୍ତ୍ତ୍ୟ ପ୍ରକୃତିରେ ସମ୍ପୂର୍ଣ୍ଣ ଅସମ୍ଭବ, ସେସବୁକୁ ନେଇ କେତେ ତତ୍ତ୍ୱ ପରିବେଷଣ ଚାଲିଛି । ପୁଣି ଲୋକେ ସାଧୁ ସନ୍ଥ, ଯେଉଁମାନେ କି ଖଟି ଖାଆନ୍ତି ନାହିଁ,

ପର ଧନରେ ଓ ପର ପରିଶ୍ରମରେ ଆନନ୍ଦରେ ଚଳନ୍ତି, ସେମାନେ ସେହି ତତ୍ତ୍ୱକୁ 'କି ମହାନ୍ ! କି ଚମତ୍କାର' କହି ଭାବ ଗଦ ଗଦ ହୋଇଉଠନ୍ତି ! କିନ୍ତୁ କେହି ଜଣେ ହେଲେ କହନ୍ତି ନାହିଁ-ହେ ପୁରୁଷଗଣ ! ପତ୍ନୀବ୍ରତ ଗୁଣ ଲାଭ କରିବାପାଇଁ ବ୍ରତଟିଏ ପାଳନ କର । କେହି କହନ୍ତି ନାହିଁ, ଯଦି ବ୍ରାହ୍ମଣ କୁଳର ବା ଅନ୍ୟ କୌଣସି କୁଳର ନାରୀଟିଏ ବିଧବା ହେଲେ ପତ୍ନୀ ସ୍ମୃତି ଉଦ୍ଦେଶ୍ୟରେ ଏକାଦଶୀ ବ୍ରତ ପାଳନ କରୁଛି, ତେବେ ବ୍ରାହ୍ମଣ କୁଳର ବା ଅନ୍ୟ କୌଣସି କୁଳର ନରଟିଏ ବିପତ୍ନୀକ ହେଲେ ପତ୍ନୀ ସ୍ମୃତି ଉଦ୍ଦେଶ୍ୟରେ ଏକାଦଶ ବ୍ରତ ପାଳନ କରିବା ଉଚିତ । ଆମେ ଦୃଢ଼ତାର ସହିତ କହିପାରୁଁ, ଏହିପରି ଓଷା, ବ୍ରତ ରୂପୀ ଅନ୍ଧବିଶ୍ୱାସର ବଶବର୍ତ୍ତୀ ଥିବା ପର୍ଯ୍ୟନ୍ତ ନାରୀମାନେ ଜନତନ୍ତ୍ରର ମହତ୍ତ୍ୱ ବୁଝି ପାରିବେ ନାହିଁ କି ଭୋଟ ଖଣ୍ଡିଏ ଦେବାକୁ ଯୋଗ୍ୟ ହୋଇପାରିବେ ନାହିଁ ।

ଦିଅଁଦେବତା, ସାଧୁ ସନ୍ଥ ଓ ତାନ୍ତ୍ରିକ ମାଂତ୍ରିକମାନଙ୍କ ସମ୍ବନ୍ଧରେ ଲୋକମାନଙ୍କ ମନରେ ଏତେ ଅନ୍ଧବିଶ୍ୱାସ ରହିଛି ଯେ ସେସବୁ ହିଁ ଭାରତର ପତନ ଘଟାଇଛି । ପୂର୍ବଜନ୍ମ, ପରଜନ୍ମ, ସ୍ୱର୍ଗପୁର, ବୈକୁଣ୍ଠପୁର, ଯମପୁର, ପୂର୍ବଜନ୍ମ ସଂସ୍କାର, ପୂର୍ବଜନ୍ମର କର୍ମଫଳ ଏ ଜନ୍ମରେ ଭୋଗିବାକୁ ପଡେ, ଈଶ୍ୱର, ବ୍ରହ୍ମ, ତେତିଶକୋଟି ଦେବଦେବୀ, ସେମାନଙ୍କର ଚାରି ବାହୁ, ଛଅ ବାହୁ, ଆଠ ବାହୁ, ଦଶ ବାହୁ, ଚାରି ମୁଖ, ପାଞ୍ଚ ମୁଖ, ଛଅ ମୁଖ ଆଦି ରୂପ, ପେଚା, ମୂଷା, ସିଂହ, ମୟୂର, ମଇଁଷି, ହଂସ ଆଦି ବିଭିନ୍ନ ପଶୁ ବା ପକ୍ଷୀ ବାହନ, ପିତୃଲୋକ, ପ୍ରେତଲୋକ, କ୍ଷୀର ସାଗର ଭିତରେ ଅନନ୍ତ ନାଗର ଫଣାତଳେ ବିଷ୍ଣୁଙ୍କର ଶୟନ, ଲକ୍ଷ୍ମୀ ସରସ୍ୱତୀଙ୍କର ପାଦସଂଚାଳନ, କାମଧେନୁ ଓ କଳ୍ପବୃକ୍ଷଙ୍କ ଦ୍ୱାରା ସର୍ବବାଂଛା ପୂରଣ, ମୁନି ଋଷି ଓ ସାଧୁ ସନ୍ଥମାନଙ୍କର ତଥା ସତୀ ସ୍ତ୍ରୀ ମାନଙ୍କର ଅସାଧ୍ୟ ସାଧନ ଯଥା: ଗୋଟିଏ ଚାଉଳରେ କୋଟିଏ ଲୋକଙ୍କୁ ଖାଇବାକୁ ଦେବା, ନିଜ ଶରୀର ଛାଡି ଅନ୍ୟ ଶରୀରରେ ପ୍ରବେଶ କରିବା, ଆଦେଶ ଦେଇ ତାଳଗଛ ଓ ନଡିଆ ଗଛ ଆଦିକୁ ନୁଆଇଁ ଆଣି ଫଳ ତୋଳିବା, ଯମପୁରକୁ ଯାଇ ଯମଙ୍କ ଠାରୁ ବ୍ରହ୍ମଜ୍ଞାନ ଲାଭ କରିବା, ଏପରିକି ଯମଙ୍କୁ ଚାପୁଡା ମାରି ପାଞ୍ଜି ଛଡାଇଆଣି ଆୟୁଷ ଦେଖିବା, ଶୂନ୍ୟରେ ତନ୍ତ ଚଳାଇ ବସ୍ତ୍ର ବୁଣିବା, ଆଖି ବୁଜି ଟିକିଏ ବସି ତ୍ରିଭୁବନର କଥା ଜାଣିବା, ଛୁଇଁଦେଇ ବ୍ୟାଧି ଦୂର କରିଦେବା, ଅନ୍ଧକୁ ଆଖିଦେବା, ଅପୁତ୍ରିକକୁ ପୁତ୍ର ଦେବା, ନିର୍ଦ୍ଧନକୁ କୁବେର ସମ୍ପତ୍ତି ଦେବା, ଅଭିଶାପରେ ଜାଳିଦେବା ବା ବିଲେଇ, କୁକୁର, ସାପ, ପଥର, ରାକ୍ଷସ ପ୍ରଭୃତି କରିଦେବା ସତୀ ନାରୀ ଅଗ୍ନିରେ ପ୍ରବେଶ କରି ଶୁଦ୍ଧ ସୁବର୍ଣ୍ଣ ପରି ଜାଜ୍ୱଲ୍ୟମାନ ହୋଇ ବାହାରିବା, ସତୀ ନାରୀ, ସହସ୍ର ଛିଦ୍ର କଳସୀରେ ପାଣି ଆଣିବା ଏବଂ ଟୋପେ ପାଣି ନ ବୋହିବା, ସତୀ ନାରୀ ଏକ ରାତିକୁ ସାତ ରାତି କରିଦେବା, ସୂର୍ଯ୍ୟ, ପବନ, ଇନ୍ଦ୍ର ଆଦି ଦେବତା ଓ ମାନବୀଙ୍କ ମିଳନରୁ ପୁତ୍ର ଜାତ ହେବା, ଭକ୍ତଙ୍କ ହାତରୁ ଭଗବାନ ନଡିଆ ଲଡୁ ଆଦି ନେଇ ଖାଇବା, ସାଧୁସନ୍ଥ

ବା ଦେବଦେବୀମାନେ ଭକ୍ତଙ୍କ ବିପତ୍ତିରୁ ରକ୍ଷା କରିବା, ପର୍ବତ ଉପାଡି ହାତ ଉପରେ ରଖି ଆକାଶରେ ଉଡି ଉଡି ଯିବା, ଜନ୍ମ ହେଲା ମାତ୍ରେ ସୂର୍ଯ୍ୟକୁ ଗିଳିବାକୁ ଯିବା, ଯଜ୍ଞକୁଣ୍ଡରୁ ନାରୀ ଜନ୍ମହେବା, କାନବାଟେ ପୁଅ ଜନ୍ମ ହେବା, ଦେହ ମଳିରୁ ପୁଅ ଜନ୍ମ ହେବା, ଆମ୍ବ ଟାକୁଆଟିଏ ପୋତିବା ମାତ୍ରେ ଗଛ ହେବା ଓ ସତ କହିବା ମାତ୍ରେ ଫଳିବା, ଏମିତି କେତେ ଯେ ଅନ୍ଧବିଶ୍ୱାସପୂର୍ଣ୍ଣ କାହାଣୀ ଜନମାନସକୁ ଆଚ୍ଛନ୍ନ କରି ରଖିଛି, ତାହାର କଳନା ନାହିଁ ।

ପୁରାଣ ସବୁ ପ୍ରଚଣ୍ଡ ରାଜତଂତ୍ର ଯୁଗରେ ରଚିତ ହୋଇଥିଲା । ସେଥିରେ ଯେଉଁ ତତ୍ତ୍ୱ, ଆଦର୍ଶ ବା ଚିନ୍ତାଧାରା ସବୁ ପ୍ରତିଫଳିତ ହୋଇଛି, ତାହା ଅନ୍ଧବିଶ୍ୱାସ ଛଡା କିଛି ନୁହେଁ । ତାହାକୁ ଗ୍ରହଣ କଲେ ଜନତନ୍ତ୍ରରୁ ଟିକିଏ ହେଲେ ସୁଫଳ ମିଳିବ ନାହିଁ । ଅନେକ ପୁରାଣରେ ଏପରି କଦର୍ଯ୍ୟ କଥା ମାନ ଅଛି, ଯାହାକୁ ପଢ଼ିଲେ ମନ ବିରକ୍ତ ହୋଇଉଠେ ଏବଂ ପୁରାଣକୁ ଫିଙ୍ଗିଦେବାକୁ ଇଚ୍ଛା ହୁଏ । ଉଦାହରଣ ସ୍ୱରୂପ ବ୍ରହ୍ମବୈବର୍ତ୍ତ ପୁରାଣରେ ୧୦୬ ଅଧ୍ୟାୟରେ କୁହାଯାଇଛି- "ପତିଦୋଷେ ମହାସାଧ୍ୱୀ ପତିଂ ନ ନିଷ୍ଠୁରଂ ବଦେତ୍ । ଯଦି ସୋଢୁମସକ୍ତା ଚ ପ୍ରାଣଂ ତ୍ୟଜ୍ୟତି ଧର୍ମତଃ" ଅର୍ଥାତ୍ ପତିବ୍ରତା ନାରୀ ପତି ଦୋଷ କଲେ ମଧ୍ୟ ତାଙ୍କୁ ପଦଟିଏ ନିଷ୍ଠୁର କଥା କହିବା ଉଚିତ ନୁହେଁ । ଯଦି ସେ ପତିଙ୍କର ଦୋଷକୁ ସହ୍ୟ ନକରି ପାରିବେ, ତେବେ ଆତ୍ମହତ୍ୟା କରିଦେବା ଉଚିତ । ଏହା ତାର ଧର୍ମୋଚିତ କର୍ତ୍ତବ୍ୟ । ପୁଣି ଗରୁଡ ପୁରାଣର ୧୦୯ ଅଧ୍ୟାୟରେ କୁହାଯାଇଛି- "ଦୁର୍ଜନାଃ ଶିଳ୍ପିନୋ ଦାସା ଦୁଷ୍ଟାଶ୍ଚ ପଟହାଃ ସ୍ତ୍ରିୟଃ । ତାଡିତାଃ ମାର୍ଦବଂ ଯାନ୍ତି ନ ତେ ସତ୍କାରଭାଜନାଃ । ଅର୍ଥାତ୍ ଦୁଷ୍ଟ ଶିଳ୍ପୀ, ଦୁଷ୍ଟ ଚାକର, ମର୍ଦଳ ବାଜା ଏବଂ ଦୁଷ୍ଟା ସ୍ତ୍ରୀ, ଏମାନଙ୍କୁ ବାଡେଇଲେ ଏମାନେ ବାଟକୁ ଆସନ୍ତି । ପୁଣି ଉକ୍ତ ଗ୍ରନ୍ଥରେ କୁହାଯାଇଛି- " ପିତା ରକ୍ଷତି କୌମାରେ ଭର୍ତ୍ତା ରକ୍ଷତି ଯୌବନେ । ପୁତ୍ରଷ୍ଚ ସ୍ଥାବିରେ ରକ୍ଷେତ୍ ନ ସ୍ତ୍ରୀ ସ୍ୱାତନ୍ତ୍ର୍ୟ ମର୍ହତି ।" ଅର୍ଥାତ୍ ନାରୀକୁ ବାଲ୍ୟକାଳରେ ରକ୍ଷାକରେ ପିତା, ଯୌବନରେ ରକ୍ଷାକରେ ସ୍ୱାମୀ, ଏବଂ ବାର୍ଦ୍ଧକ୍ୟରେ ରକ୍ଷାକରେ ପୁତ୍ର । ଅତଏବ ନାରୀ କୌଣସି ସମୟରେ ସ୍ୱାତନ୍ତ୍ର୍ୟର ଅଧିକାରିଣୀ ନୁହେଁ । ଏହିପରି ଭାବରେ କଦର୍ଯ୍ୟ ଉକ୍ତି ଓ କାହାଣୀ ସବୁ ସଂସ୍କୃତ ପୁରାଣ ଏବଂ ଲୌକିକ ଓ ସାହିତ୍ୟରେ ଭରି ରହିଛି । 'ସମୟମାତୃକା' ନାମକ କାବ୍ୟରେ ଗୋଟିଏ ବିଧବା ଯୁବତୀର କାହାଣୀ ଯେପରି ଭାବରେ ବର୍ଣ୍ଣନା କରାଯାଇଛି, ତାହା ଚୋରଚଣ୍ଡାଳ ମଧ୍ୟ ଭାବିପାରିବ ନାହିଁ । ଘୋର ଉଦ୍‌ବେଗର କଥା, ଅନ୍ଧବିଶ୍ୱାସ ପରିପୂର୍ଣ୍ଣ ପୌରାଣିକ କାହାଣୀଗୁଡାକୁ ଏବେ ପୁଣି ସାହିତ୍ୟ ରୂପ ଦିଆଯାଉଛି । ଅନେକ ପୌରାଣିକ ଚରିତ୍ରକୁ ନେଇ ଅନେକ ବହି ଲେଖାଯାଉଛି । ପ୍ରବଚକମାନେ ପୁରାଣ କାହାଣୀ ଗୁଡାକୁ ଗପୁଛନ୍ତି, ପୁଣି ଟିଭିରେ ବଡ଼ ମନୋରଞ୍ଜକ ଢ଼ଙ୍ଗରେ ସେଗୁଡାକୁ ପରିବେଷଣ କରାଯାଉଛି । ଏହାଦ୍ୱାରା ଦୀର୍ଘ କାଳରୁ ମୁଣ୍ଡା ହୋଇ ଆସିଥିବା ଜନଗଣଙ୍କର ମୁଣ୍ଡ ଅଧିକ ମୁଣ୍ଡା ହେବା ନିଶ୍ଚିତ ।

ସୁଦୀର୍ଘ ରାଜତନ୍ତ୍ର ଯୁଗରୁ ଚଳି ଆସିଥିବା ଆଚାର ବିଚାର ଓ ଆଦର୍ଶ ସବୁ ଏପର୍ଯ୍ୟନ୍ତ ବଳବତ୍ତର ରହିଛି । ଏବେ ମଧ୍ୟ ସଭାରେ ଧର୍ମଗ୍ରନ୍ଥ, ଗୀତାର ବାଣୀ ଉଦ୍ଧୃତ କରାଯାଉଛି ।

"ମୁଁ ପଶୁମାନଙ୍କ ମଧ୍ୟରେ ସିଂହ, ମୁଁ ହାତୀମାନଙ୍କ ମଧ୍ୟରେ ଐରାବତ, ମୁଁ ଘୋଡାମାନଙ୍କ ମଧ୍ୟରେ ଉଚ୍ଚୈଃଶ୍ରବା, ମୁଁ ନଦୀଚରମାନଙ୍କ ମଧ୍ୟରେ କୁମ୍ଭୀର, ମୁଁ ପାଣ୍ଡବମାନଙ୍କ ମଧ୍ୟରେ ଅର୍ଜୁନ, ମୁଁ ଶସ୍ତ୍ରଧାରୀମାନଙ୍କ ମଧ୍ୟରେ ରାମଚନ୍ଦ୍ର, ମୁଁ ମଣିଷ ମାନଙ୍କ ମଧ୍ୟରେ ରାଜା, ମୁଁ ବୃକ୍ଷମାନଙ୍କ ମଧ୍ୟରେ ଅଶ୍ୱତ୍ଥ, ମୁଁ ନଦୀ ମାନଙ୍କ ମଧ୍ୟରେ ଗଙ୍ଗା, ମୁଁ ପର୍ବତମାନଙ୍କ ମଧ୍ୟରେ ହିମାଳୟ, ମୁଁ ଦେବତାମାନଙ୍କ ମଧ୍ୟରେ ଇନ୍ଦ୍ର ଇତ୍ୟାଦି ।

ଏଭଳି ଉକ୍ତି ଗୀତାରେ ରହିବା ଆଉ ଉଚିତ ନୁହେଁ । କାରଣ, ଏଥିରେ ବଡବଡିଆମାନଙ୍କୁ ପ୍ରାଧାନ୍ୟ ଦିଆଯାଇଛି । ଅବଶ୍ୟ ଭଗବାନ କହିଛନ୍ତି – "ନ ତଦସ୍ତି ବିନା ଯତ୍ ସ୍ୟାନ୍ ମୟା ଭୂତଂ ଚରାଚରମ୍" ଅର୍ଥାତ୍ ବିଶ୍ୱ ବ୍ରହ୍ମାଣ୍ଡରେ ଏପରି କିଛି ନାହିଁ, ଯାହା ମୋର ଅନ୍ତର୍ଗତ ନୁହେଁ; ତଥାପି ବଡବଡିଆମାନଙ୍କୁ ନିଜର ତେଜସଂଭୂତ ବୋଲି ନିର୍ଦ୍ଦିଷ୍ଟ କରି କହିବା ମୂଳରେ ରାଜତାଂତ୍ରିକ ଚିନ୍ତାଧାରା ନିହିତ ଥିଲା । ସେ ସମୟ ଯଦି ଜନତନ୍ତ୍ର ସମୟ ହୋଇଥାଆନ୍ତା, ତେବେ ଭଗବାନ ନିଶ୍ଚୟ କହିଥାଆନ୍ତେ- "ନରମାନଙ୍କ ମଧ୍ୟରେ କୃଷକ ।" କାରଣ, ସମାଜରେ କୃଷକମାନେ ହେଉଛନ୍ତି ସର୍ବଶ୍ରେଷ୍ଠ ଓ ସବୁଠାରୁ ବଡ ବର୍ଗ ।

ରାଜାମାନେ ଗଲାପରେ ଯଦି କୁହାଯାଏ "ମୁଁ ମନୁଷ୍ୟମାନଙ୍କ ମଧ୍ୟରେ ରାଜା" ଏହା ଅନ୍ଧବିଶ୍ୱାସ ନୁହେଁ ତ ଆଉ କ'ଣ ? ମନୁଷ୍ୟ ଚନ୍ଦ୍ରପୃଷ୍ଠରେ ପହଞ୍ଚିଲା ପରେ ଯଦି କୁହାଯାଏ ମନୁଷ୍ୟର ଆତ୍ମା ଚନ୍ଦ୍ରକୁ ଯାଏ, ଏହା ଅନ୍ଧବିଶ୍ୱାସ ନୁହେଁ ତ ଆଉ କ'ଣ ? ଯଦି ଜନତନ୍ତ୍ର ଯୁଗରେ ଉପଦେଶ ଦିଆଯାଏ "ତୁଲ୍ୟନିନ୍ଦାସ୍ତୁତି ମୌନୀ ତୁଲ୍ୟମାନାପମାନୟୋଃ" ଅର୍ଥାତ୍ ନିନ୍ଦା ପ୍ରଶଂସାକୁ ସମାନ ମଣିବ, ମାନ ଅପମାନକୁ ସମାନ ମଣିବ, ତେବେ ଜନତନ୍ତ୍ର ବ୍ୟର୍ଥ ହେବ ନାହିଁ କି ? ଆମେ ଦେଖୁଥାଇଁ ବଡ ବଡ ଲୋକଙ୍କର ନିନ୍ଦା ଅପମାନକୁ ଭୟ ନାହିଁ, ସେମାନେ ଲାଜ ସରମ ଅନୁଭବ କରୁନାହାନ୍ତି । କେବଳ କିଛିକାଳ ମୌନ ହୋଇ ରହିଯାଉଛନ୍ତି, ତା'ପରେ ପୁଣି ଉଠୁଛନ୍ତି । ଏ ପ୍ରକାର ନିର୍ବିକାର ବା ଅବିଚଳିତ ଭାବ ସେମାନେ ଗୀତାରୁ ହିଁ ପାଉଛନ୍ତି । ନିନ୍ଦନୀୟ କର୍ମ କରି ନିର୍ବିକାର ବା ଅବିଚଳିତ ରହିବା, ଏହା ଜନତାଂତ୍ରିକ ବିଚାରବୁଦ୍ଧି ନୁହେଁ । ଫୁଲମାଳ ଓ ଜୋତାମାଳକୁ ସମାନ ମଣିବା, ଏହା କେଉଁ ବିଚାର ବୁଦ୍ଧିର କଥା ? ଏହାଦ୍ୱାରା ସମାଜ ପ୍ରତି କ୍ୟାଲସନେସ ବା ବଧୀରତା ସୃଷ୍ଟି ହୁଏ । ସମାଜ ସଚେତନତା ସୃଷ୍ଟି ହୁଏ ନାହିଁ । ଏପ୍ରକାର ବିଚାରବୁଦ୍ଧି ଆମ ଦେଶରେ ବହୁ ପୂର୍ବ କାଳରୁ ଗଡିଆସିଛି । ଏହା କେବଳ ବର୍ତ୍ତମାନର ନୁହେଁ । ନିନ୍ଦା ପ୍ରଶଂସା ପ୍ରତି ସମାନ ମନୋଭାବ ବ୍ୟକ୍ତିପକ୍ଷରେ ଲାଭଦାୟକ ହୋଇପାରେ, କିନ୍ତୁ ସମାଜ ପକ୍ଷରେ କ୍ଷତିକାରକ । ଭାରତରେ

ତାହା ହିଁ ହୋଇଛି । ଆମେ ବର୍ତ୍ତମାନ ଯେଉଁ ଉତ୍ତମ ବିଚାର ବୁଦ୍ଧି ବା ନୈତିକତାର ଅବକ୍ଷୟ ହେଉଛି ବୋଲି କହୁଥାଇଁ ବା ଅନୁଭବ କରୁଥାଇଁ, ତାହା ଇଂରେଜ ଶାସନ କାଳରେ, ବିଶେଷତଃ ସ୍ୱାଧୀନତା ଆନ୍ଦୋଳନ କାଳରେ ପ୍ରତିଷ୍ଠିତ ହୋଇଥିଲା । ଇଂରେଜମାନେ ଗଲାପରେ ତାହା ଭାଙ୍ଗି ପଡୁଛି ।

ଏହିପରି ସବୁ ଧର୍ମଗ୍ରନ୍ଥରେ ରହିଛି ଅନେକ ଅନ୍ଧବିଶ୍ୱାସ ଏବଂ ସବୁଥିରେ ରହିଛି ଜନତଂତ୍ରର ପରିପଂଥୀ ଅନେକ ଚିନ୍ତାଧାରା । ସେସବୁ ଧୀରେ ଧୀରେ ଦୂର ହେବା ଦରକାର । ଆମେ ଯେପର୍ଯ୍ୟନ୍ତ ମନେ କରୁଥିବା ତାଜମହଲ ଆମ ଦେଶର ଗୌରବ, ସେପର୍ଯ୍ୟନ୍ତ ଆମର ଜନତାଂତ୍ରିକ ବିଚାରବୁଦ୍ଧି ଆସିନାହିଁ ବୋଲି ବୁଝିବାକୁ ହେବ । ଏହାର ଅର୍ଥ ନୁହେଁ ତାଜମହଲର ରକ୍ଷଣାବେକ୍ଷଣ ନକରିବା । ଦେଶର ଗୌରବ ତାହା, ଯାହା ସମସ୍ତ ଜନସାଧାରଣଙ୍କ ପାଇଁ ଗୌରବ । ଯେତେବେଳେ ଭାରତର ସମସ୍ତ ଜନସାଧାରଣ ପେଟପୂରା ଖାଇବାକୁ ପାଇବେ, ଶିକ୍ଷା ଓ ସ୍ୱାସ୍ଥ୍ୟର ସୁବିଧା ପାଇବେ, ସମସ୍ତେ କାମ ପାଇବେ, ସମସ୍ତେ ସୁଖରେ ରହିବେ, ତାହା ହିଁ ହେବ ଭାରତର ଗୌରବ ।

ରାଜତଂତ୍ର କାଳରେ ଏହା ସଂଭବ ହୋଇନଥିଲା, କାରଣ ସେକାଳର ଆଦର୍ଶ ଥିଲା ଭିନ୍ନ । ସେହି ଆଦର୍ଶ ହିଁ ଘୋର ବୈଷମ୍ୟକୁ ସ୍ୱୀକୃତି ଦେଇଥିଲା । ହଜାର ହଜାର ବର୍ଷର ରାଜତଂତ୍ର ପରେ ଆମ ଦେଶକୁ ଆସିଛି ଜନତଂତ୍ର, କିଂତୁ ରାଜତନ୍ତ୍ରକାଳୀନ ବିଚାରଧାରା ଏ ଦେଶରେ ପ୍ରବଳ ଚେର ଭିଡି ରହିଛି । ଜନତଂତ୍ରକୁ ସୁଦୃଢ଼ କରିବା ପାଇଁ ଏସବୁ ବିଶ୍ୱାସର ପ୍ରାବଲ୍ୟକୁ ଦୃଢ଼ ଚେତନା ପ୍ରଚାର ବଳରେ ହ୍ରାସ କରିବା ସବୁବର୍ଗଙ୍କ ଧେୟ ହେବା ଆବଶ୍ୟକ ।



# ଅନ୍ଧବିଶ୍ୱାସ ବନାମ ଯୁକ୍ତିଶୀଳ ବିଚାର

*ଡ. ସଂଗୀତା ରଥ*

ଅବୈଜ୍ଞାନିକ, ଯୁକ୍ତିହୀନ ଗଭୀର ବିଶ୍ୱାସକୁ ଅନ୍ଧବିଶ୍ୱାସ କୁହାଯାଏ । ଅନ୍ୟଭାବରେ କହିବାକୁ ଗଲେ, ଯେଉଁ ବିଶ୍ୱାସ ସତ୍ୟ ନୁହେଁ, ବିଜ୍ଞାନସିଦ୍ଧ ନୁହେଁ, ଯୁକ୍ତିଯୁକ୍ତ ମଧ୍ୟ ନୁହେଁ ତାହାକୁ ଅନ୍ଧବିଶ୍ୱାସ ବା ଅପବିଶ୍ୱାସ ବୋଲି ବିବେଚନା କରାଯାଏ । ଅନେକ ସମୟରେ ଲୋକମାନେ ଘଟଣାର ପ୍ରକୃତ କାରଣ ଅନୁସନ୍ଧାନ ନ କରି, ଅଲୌକିକ ଓ ଅଦ୍ଭୁତ କାରଣତତ୍ତ୍ୱ ମାଧ୍ୟମରେ ଘଟଣାଟି ବ୍ୟାଖ୍ୟା କରିବାକୁ ଚେଷ୍ଟା କରିଥାନ୍ତି । ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ଅଗ୍ରଗତି ସତ୍ତ୍ୱେ, ବୌଦ୍ଧିକ କ୍ଷେତ୍ରରେ ମନୁଷ୍ୟ ଖୁବ୍ ଉନ୍ନତ ପ୍ରାଣୀ ହୋଇମଧ୍ୟ ଗୁଡାଏ ଅବାନ୍ତର ଚିନ୍ତାଧାରାକୁ ଗ୍ରହଣ କରି ନେଇଥାଏ । ବିକାଶଶୀଳ ହେଉ ବା ବିକଶିତ, ପୃଥିବୀର ସବୁଦେଶର ଲୋକ ଏପରି ଭ୍ରାନ୍ତ ଧାରଣାର ପୃଷ୍ଠପୋଷକତା କରିଚାଲିଥାନ୍ତି । ଅଶିକ୍ଷିତ ଓ ଦୁର୍ବଳମନା ବ୍ୟକ୍ତି ବେଶି ପରିମାଣରେ ଅନ୍ଧବିଶ୍ୱାସର ବଶବର୍ତ୍ତୀ ବୋଲି ବିଶ୍ୱାସ କରାଯାଉଥିଲେ ମଧ୍ୟ ଖୁବ୍ ଶିକ୍ଷିତ ଓ ବୁଦ୍ଧିମାନ ବ୍ୟକ୍ତି ମଧ୍ୟ ଅନ୍ଧବିଶ୍ୱାସୀ ହୋଇଥାନ୍ତି ।

ପ୍ରତ୍ୟେକ ବିଷୟରେ ଅଗଣିତ ଅନ୍ଧବିଶ୍ୱାସ ଶହଶହ ବର୍ଷ ଧରି ଚଳି ଆସୁଛି । ଅନେକ ବିଶ୍ୱାସ ଖୁବ୍ ନିରୀହ ଏବଂ ସମାଜର ବିଶେଷ କ୍ଷତି କରୁ ନଥିବା ବେଳେ ଅନେକ ଗୁଡିଏ ବିଶ୍ୱାସର ପରିଣତି ସମାଜ ପାଇଁ କ୍ଷତିକାରକ ହୋଇଥାଏ । ଅନେକ ଲୋକ ବିଶ୍ୱାସ କରନ୍ତି ଯେ ଯାନବାହାନରେ ନିର୍ଦ୍ଦିଷ୍ଟ ସଂଖ୍ୟା ବ୍ୟବହାର କଲେ, ଘର ସାମ୍ନାରେ କଳସୀ ରଖିଲେ, ବ୍ୟବସାୟ ପ୍ରତିଷ୍ଠାନ ଆଗରେ ଲେମ୍ବୁଲଙ୍କା ବା ଆମ୍ବପତ୍ରର ମାଳ ଟଙ୍ଗାଇଲେ ଶୁଭ ହୁଏ । କେହି କେହି ଲେଖନ୍ତି "ଓଁ ଶୁଭଲାଭ" । ଅଥଚ ଲାଭକ୍ଷତି ସହିତ ଏହାର କୌଣସି

ସଂପର୍କ ନଥାଏ । ସେହିପରି ବାହାଘର ବେଳେ ଝିଅଟି କଳାଶାଢ଼ୀ ପିନ୍ଧିଲେ, ଭଙ୍ଗା ଦର୍ପଣରେ ଜଣେ ମୁହଁ ଦେଖିଲେ, ବାମ ଆଖି କୌଣସି କାରଣରୁ ଡେଇଁଲେ ଅଶୁଭ ବୋଲି ବିଚାର କରାଯାଏ । ଖରାପ ଦୃଷ୍ଟିରୁ ରକ୍ଷା କରିବା ପାଇଁ ପିଲାଙ୍କ ଦେହରେ କଳା ଲଗାଯାଇଥାଏ । କାହା ହାତରେ ଲୁଣଲଙ୍କା ଦେଲେ କଳିଲାଗିବ ବୋଲି ବିଶ୍ୱାସ କରାଯାଏ । କେତେ ଗୁଡିଏ ଦିନକୁ ଶୁଭ ବୋଲି ବିଚାର କରାଯାଏ ଏବଂ ଏହି ଶୁଭଦିନରେ ବିବାହ, ଗୃହପ୍ରବେଶ ଓ ବ୍ୟବସାୟ କାର୍ଯ୍ୟ ଆରମ୍ଭ କରାଯାଏ । ଏହି ଦିନଗୁଡିକ ପ୍ରକୃତରେ ଶୁଭଦିନ ହୋଇଥିଲେ ସମସ୍ତେ ହୁଏତ ବୈବାହିକ ଓ ଗାର୍ହସ୍ଥ୍ୟ ଜୀବନରେ ସୁଖୀ ଓ ବ୍ୟବସାୟରେ ପ୍ରତିଷ୍ଠିତ ହୋଇପାରନ୍ତେ । କିନ୍ତୁ ସେପରି କିଛି ହୁଏ ନାହିଁ । ମାତାଙ୍କ ସହିତ ସାଦୃଶ୍ୟ ଥିବା ପୁତ୍ର ଓ ପିତାଙ୍କ ସହିତ ସାଦୃଶ୍ୟ ଥିବା କନ୍ୟା ସୁଖୀ ହୁଏ ବୋଲି ଭ୍ରାନ୍ତଧାରଣା ଥାଏ । ଆଖିଟେରା ଥିବା ନାରୀ କୁଆଡେ ଭାଗ୍ୟବତୀ ହୁଅନ୍ତି ଅଥଚ ପାଦ ବଡ଼ ଥିବା ନାରୀ ଭାଗ୍ୟହୀନା ହୁଅନ୍ତି । ଛୋଟ ପାଦବିଶିଷ୍ଟା ନାରୀ ସୁନ୍ଦରୀ ଓ ଭାଗ୍ୟବତୀ ବୋଲି ବିଚାର କରାଯାଉଥିବାରୁ ଆଗକାଳରେ ଚାଇନାରେ ଝିଅମାନେ ନିଜ ପାଦକୁ ବାନ୍ଧି ରଖୁଥିଲେ । ଛୋଟ ପାଦ ଯୋଗୁଁ ପରବର୍ତ୍ତୀ କାଳରେ ଚାଇନା ସୁନ୍ଦରୀ ମାନେ ଠିକ୍ ଭାବରେ ଚାଲି ମଧ ପାରୁ ନଥିଲେ । ପାଶ୍ଚାତ୍ୟ ଦେଶମାନଙ୍କରେ ତେର ସଂଖ୍ୟାକୁ ଅଶୁଭ ବୋଲି ବିବେଚନା କରାଯାଏ । ତେଣୁ ହୋଟେଲମାନଙ୍କରେ ବାର ନମ୍ବର ପରେ ଚଉଦ ନମ୍ବର କୋଠରୀ ଥାଏ । ଯୀଶୁଖ୍ରୀଷ୍ଟ ଶୁକ୍ରବାର ଦିନ କ୍ରୁସବିଦ୍ଧ ହୋଇଥିବାରୁ ସେମାନେ ଏହି ବାରଟିକୁ ଅଶୁଭ ବୋଲି ଭାବିଥାନ୍ତି । ପଶୁପକ୍ଷୀଙ୍କୁ ନେଇ ମଧ ଅନେକ ଅନ୍ଧବିଶ୍ୱାସ ସୃଷ୍ଟି କରାଯାଇଛି । ଯେପରି ନେଉଳ, ହଳଦୀବସନ୍ତ, ଦୁଇଟି ବଣି, ଭଦ୍‌ଭଦ୍‌ଳିଆ, ପକ୍ଷୀ ଦେଖିଲେ ଶୁଭ ବା ଯାତ୍ରା କଲାବେଳେ ହାତୀ ବା ମୟୁର ଦେଖିଲେ ଶୁଭ ଅଥଚ କଳାବିରାଡି ଦେଖିଲେ ଅଶୁଭ ବୋଲି ବିଶ୍ୱାସ କରାଯାଏ । ମୁଣ୍ଡରେ ଝିଟିପିଟି ପଡିଲେ ବା ପେଚା ରାବିଲେ ଖରାପ ହେବ ବୋଲି ଲୋକେ ଭାବନ୍ତି । ସୂର୍ଯ୍ୟପରାଗ ଓ ଚନ୍ଦ୍ରଗ୍ରହଣ ସମୟରେ ବହୁ କାଳରୁ ପାକ୍‌ନିଷେଧ ଚଳି ଆସୁଛି । ଏ ସମୟରେ ହଜମ ପ୍ରକ୍ରିୟାରେ ବାଧା ସୃଷ୍ଟି ହୁଏ ବୋଲି ଭାରତୀୟମାନଙ୍କର ଏକ ବଦ୍ଧମୂଳ ଭୁଲ ଧାରଣା ରହିଆସିଛି । ମଜାର କଥା, ଗ୍ରହଣ କାଳର ଖାଇବା ଅନୁଚିତ ଭାବି ପୂର୍ବରୁ ଆବଶ୍ୟକତାରୁ ଅଧିକ ଓ ଖୁବ୍ ଗରିଷ୍ଠ ଖାଦ୍ୟ ଲୋକେ ଖାଇ ଥାଆନ୍ତି ଯାହା ବଦହଜମ ସୃଷ୍ଟି କରିବାର ସମ୍ଭାବନା ବଢ଼େଇ ଦେଇଥାଏ ।

ମଣିଷ ନିଜେ ଧର୍ମ ଓ ଜାତି ସୃଷ୍ଟି କରିଛି । ପୂର୍ବପୁରୁଷଙ୍କ ମାଧ୍ୟମରେ ବା ବିଭିନ୍ନ ପରିସ୍ଥିତିରେ ମଣିଷ ଭିନ୍ନ ଭିନ୍ନ ଧର୍ମ ଗ୍ରହଣ କରିଥାଏ । ସବୁ ଧର୍ମର ମଣିଷ ସମାନ, ସମାନ ତାଙ୍କର ମନ, ଆବେଗ, ଅସହାୟତା, ସୁଖ ଏବଂ ଦୁଃଖ, ଅଥଚ ଧର୍ମକୁ ନେଇ ଅନେକ ଭ୍ରାନ୍ତଧାରଣା ଓ ବିଶ୍ୱାସ ସୃଷ୍ଟି କରାଯାଇଥାଏ । ନିଜ ଧର୍ମ ଶ୍ରେଷ୍ଠ, ଅନ୍ୟ ଧର୍ମ ଓ

ଧର୍ମାବଲମ୍ବୀମାନେ ଘୃଣ୍ୟ ଏପରି ଏକ ଭ୍ରାନ୍ତଧାରଣା ଓ ଧର୍ମୀୟ ଭାବପ୍ରବଣତା ମଣିଷ ମଣିଷ ମଧ୍ୟରେ ବିଭେଦ ସୃଷ୍ଟି କରିଥାଏ । ଭାବପ୍ରବଣତା ମଣିଷ ମଣିଷ ମଧ୍ୟରେ ବିଭେଦ ସୃଷ୍ଟି କରିଥାଏ । ଅସଂଖ୍ୟ ଉଗ୍ରବାଦ, ନରସଂହାର, ରକ୍ତପାତ, ଲୁଣ୍ଠନ ଓ ଧ୍ୱଂସର ତାଣ୍ଡବଲୀଳାକୁ ପ୍ରୋତ୍ସାହିତ କରେ ଏହି ଧର୍ମାନ୍ଧତା । ମନୁଷ୍ୟ ଗୋଟିଏ ଜାତି ଓ ମାନବିକତା ହିଁ ମନୁଷ୍ୟ ଜାତିର ଏକମାତ୍ର ଧର୍ମ । ଧର୍ମାଚରଣ କହିଲେ ପୂଜା, ଉପାସନା, ଆରାଧନା, କର୍ମକାଣ୍ଡ ବା ବିଭିନ୍ନ ପର୍ବପର୍ବାଣି ପାଳନ କରିବା ନୁହେଁ । ଧର୍ମାଚରଣ କହିଲେ ଜାତି, ବର୍ଣ୍ଣ, ଧର୍ମ ଊର୍ଦ୍ଧ୍ୱରେ ପ୍ରତ୍ୟେକ ବ୍ୟକ୍ତିର ସୁଖ, ସ୍ୱାଚ୍ଛନ୍ଦ୍ୟ, ମହତ୍ତ୍ୱ, ସମ୍ମାନ ଓ ଅଧିକାରକୁ ଗୁରୁତ୍ୱ ଦେବାକୁ ହିଁ ବୁଝାଏ ।

କିନ୍ତୁ ଦୁଃଖର ବିଷୟ, ଧର୍ମ ଓ ଈଶ୍ୱରଙ୍କ ନାମରେ ଆମ ସମାଜରେ ଭୟଙ୍କର କୁସଂସ୍କାର ଓ ଅନ୍ଧବିଶ୍ୱାସ ପ୍ରଚଳିତ । ସବୁ ଧର୍ମର ଲୋକେ ଈଶ୍ୱରଙ୍କୁ ବିଭିନ୍ନ ଭାବରେ କଳ୍ପନା କରିଛନ୍ତି ଏବଂ ଈଶ୍ୱରଙ୍କୁ ଖୁସି କରିବା ପାଇଁ ନିଜକୁ ସୁହାଇଲା ପରି ଗୁଡାଏ ଧର୍ମାଚରଣ ସୃଷ୍ଟି କରିଛନ୍ତି । ଯାହା ପରବର୍ତ୍ତୀ କାଳରେ ପରମ୍ପରାରେ ପରିଣତ ହୋଇଛି । ନୋବେଲ ପୁରସ୍କାର ବିଜେତା ବିଖ୍ୟାତ ବୈଜ୍ଞାନିକ ଆଇନଷ୍ଟାଇନ ମଣିଷ ସୃଷ୍ଟି କରିଥିବା ଧର୍ମଧାରଣାକୁ ଅତ୍ୟନ୍ତ ପିଲାଳିଆ ବୋଲି କହିଥିଲେ । ଧର୍ମ ସହିତ ଅଲୌକିକତା ଓ ଚମତ୍କାରିତାକୁ ଯୋଡି ଲୋକଙ୍କୁ ପ୍ରଭାବିତ କରିବା ପାଇଁ ଚେଷ୍ଟା କରାଯାଇଥାଏ । ଯେପରି ମୁସଲମାନ ସଂପ୍ରଦାୟର ଲୋକେ କବର ଉପରେ ଚାଦର ପକାଇ ପୂଜା କରନ୍ତି ଏବଂ ବିଶ୍ୱାସ କରନ୍ତି ଯେ ତଦ୍ୱାରା ସେମାନଙ୍କର ସବୁ ଇଚ୍ଛା ପୂରଣ ହୋଇଯିବ । ହିନ୍ଦୁ ଧର୍ମରେ ଠାକୁରାଣୀଙ୍କୁ ପ୍ରସନ୍ନ କରିବା ପାଇଁ ପଶୁବଳି ଏପରିକି ମଣିଷବଳି ମଧ୍ୟ ଦିଆଯାଏ । ସ୍ୱାର୍ଥ ଲାଭ ପାଇଁ ନିରୀହ ଶିଶୁଙ୍କୁ ମଧ୍ୟ ବଳି ଦିଆଯାଏ । ଠାକୁର, ଠାକୁରାଣୀ ମାନଙ୍କୁ ବିଭିନ୍ନ କାମ ପାଇଁ ତୋଷାମଦ କରାଯାଏ ଓ ଲାଞ୍ଚ ମଧ୍ୟ ଯଚାଯାଏ । ଛୋଟ କାମଟି, କରିଦେଲେ ଅଳ୍ପ ପଇସାର ଭୋଗ ଓ ବଡ଼ କାମଟିଏ କରିଦେଲେ ଅଧିକ ପଇସାର ଭୋଗ ଯଚାଯାଏ । ଅର୍ଥାଭାବରୁ ଚିକିତ୍ସା ନ ପାଇ ମୃତ୍ୟୁବରଣ କରିବା ଯୁବକର ଅସହାୟ ବାପା, ଧାର କରଜ କରି ସର୍ବସ୍ୱାନ୍ତ ହୋଇ ପୁତ୍ରର ଶୁଦ୍ଧିକ୍ରିୟା କରେ । ପୁତ୍ରର ଅସୁସ୍ଥତା ବେଳେ ଆଦୌ ସାହାଯ୍ୟ କରି ନଥିବା ଜ୍ଞାତିକୁଟୁମ୍ବ ଓ ବନ୍ଧୁପରିଜନଙ୍କୁ ମଣିଷ ନିଜର ବ୍ୟକ୍ତିଗତ, ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ଲାଭ ପାଇଁ ବ୍ୟବହାର କରେ । ଧର୍ମର ପୃଷ୍ଠପୋଷକତା କରୁଥିବା ବ୍ରାହ୍ମଣ, ପୂଜକ ଆଦି ତଥା କଥିତ ଧର୍ମର ରକ୍ଷକମାନେ ନିଜର ଆର୍ଥିକ ଲାଭ ପାଇଁ ନାନା ନିୟମ କାନୁନ୍ କରି, ଲୋକମାନଙ୍କ ମନରେ ଗୁଡାଏ ଭୟ ସୃଷ୍ଟି କରି, ସେମାନଙ୍କ ଉପରେ ଅତ୍ୟାଚାର କରିଥାନ୍ତି । ପୂଜାପାର୍ବଣ ମାନଙ୍କରେ ସାଧାରଣ ଲୋକଙ୍କୁ ଭୟଭୀତ କରି ଗୁଣ୍ଡାଶ୍ରେଣୀୟ ଲୋକ ପଇସା ଆଦାୟ କରି ମଉଜ ମଜଲିସ କରନ୍ତି । ଧର୍ମ ଓ ଭଗବାନଙ୍କ ନାମ ନେଇ ଅତ୍ୟାଚାର କଲେ ମଧ୍ୟ ଲୋକେ ତାକୁ

ଅତ୍ୟାଚାର ବୋଲି ଭାବନ୍ତି ନାହିଁ । ପଇସା ରୋଜଗାର ପାଇଁ ନୂଆ ନୂଆ ଠାକୁର ଠାକୁରାଣୀ ମାନଙ୍କର ଆବିର୍ଭାବ ହୁଏ । ଅନେକ ଲୋକ ଧର୍ମ ଓ ଈଶ୍ୱରଙ୍କ ବିଷୟରେ ଗୁଜବ ସୃଷ୍ଟି କରି, ଏହାକୁ ପ୍ରଚାର କରି ମଜା ନିଅନ୍ତି । ଯେପରି ଗଣେଶ କ୍ଷୀର ପିଇଲେ । ଦେବୀଦୁର୍ଗା ମାଟିତଳୁ ଆତ୍ମପ୍ରକାଶ କଲେ, ବାଇଗଣ ଫାଳରୁ ଆଲ୍ଲାଙ୍କର ସଙ୍କେତ ମିଳିଲା, ତିରୁପତିଙ୍କ ଅଖଣ୍ଡ ଦୀପ ଲିଭିଗଲା ଆଦି ଗୁଜବ ପ୍ରଚାର ହୁଏ । ଏହି ଗୁଜବ ଗୁଡିକୁ ଅନ୍ଧବିଶ୍ୱାସୀ ଲୋକେ ଅତି ସହଜରେ ଗ୍ରହଣ କରନ୍ତି ଏବଂ କର୍ମ ଭଳି ପବିତ୍ର କର୍ତ୍ତବ୍ୟକୁ ଛାଡିଦେଇ ଏହି କୁସଂସ୍କାରପୂର୍ଣ୍ଣ ରଚନାରେ ବିଶ୍ୱାସ କରି ହଜାର ହଜାର ସଂଖ୍ୟାରେ ଧାଆନ୍ତି ଘଟଣାସ୍ଥଳକୁ । ଏପରି ଅନେକ ଗୁଜବ ପରବର୍ତ୍ତୀ କାଳରେ ଧର୍ମବିଶ୍ୱାସରେ ପରିଣତ ହୁଏ ଏବଂ ଆଉ ଅନେକ ଗୁଜବ କାଳକ୍ରମେ ତାର ଅସ୍ତିତ୍ୱ ହରାଏ ।

ପୁରୁଷ ପ୍ରଧାନ ଭାରତୀୟ ସମାଜରେ ପୁରୁଷମାନଙ୍କ ତୁଳନାରେ ନାରୀମାନଙ୍କୁ ଗୌଣ ସ୍ଥାନରେ ରଖାଯାଇଥାଏ । ଧର୍ମନାମରେ ନାରୀମାନଙ୍କ ପାଇଁ ଅନେକ ସାମାଜିକ ନୀତିନିୟମ ସୃଷ୍ଟି କରାଯାଇଥାଏ । ଯେପରି ପୁରୁଷର ଗୁରୁତ୍ୱ ଦୃଷ୍ଟିକୁ ଶୁଭ କାମରେ ପୁରୁଷ ସ୍ତ୍ରୀର ଡାହାଣ ପଟେ ବସେ । ସ୍ୱାମୀଙ୍କର ମଙ୍ଗଳ ଓ ଦୀର୍ଘଜୀବନ କାମନା କରି ସ୍ତ୍ରୀମାନେ ସାବିତ୍ରୀ ଅମାବାସ୍ୟା ଓ କରବାଚୌତ ଆଦି ପୂଜା କରନ୍ତି । ଅଥଚ ସ୍ତ୍ରୀର ମଙ୍ଗଳ ମନାସୀ ସ୍ୱାମୀମାନଙ୍କର କୌଣସି ପୂଜା କରିବାର ପରମ୍ପରା ନାହିଁ । ଅବଶ୍ୟ ପୂଜା କରିବା ସହିତ ସ୍ୱାମୀର ଦୀର୍ଘଜୀବନର କୌଣସି ସମ୍ପର୍କ ନାହିଁ । ସମ୍ପର୍କ ଥିଲେ ସବୁ ସ୍ୱାମୀ ଦୀର୍ଘଜୀବୀ ହୁଅନ୍ତେ । କିନ୍ତୁ ଏପରି ଗୋଟିଏ ପରମ୍ପରା ସମାଜରେ ସ୍ୱାମୀମାନଙ୍କ ତୁଳନାରେ ସ୍ତ୍ରୀମାନଙ୍କର ଜୀବନର ମୂଲ୍ୟ କମ୍- ଏପରି ଏକ ବାର୍ତ୍ତା ବହନ କରେ । ମୁସଲମାନ ଧର୍ମରେ ତିନିଥର ସ୍ୱାମୀ "ତଲାକ" କରିଦେଲେ ବିବାହ ବିଚ୍ଛେଦ ହୋଇଯାଏ । ଅତ୍ୟାଚାରିତ ହେଉଥିଲେ ମଧ୍ୟ ସ୍ତ୍ରୀ ମାନଙ୍କ ପାଇଁ ସ୍ୱାମୀଠାରୁ ଅଲଗା ହେବାର କୌଣସି ସହଜ ବ୍ୟବସ୍ଥା ନାହିଁ । ଧର୍ମନାମରେ ହିନ୍ଦୁ ବିଧବା, ବିଶେଷତଃ ବ୍ରାହ୍ମଣ ବିଧବା ମାନଙ୍କ ଉପରେ ବହୁ ଅତ୍ୟାଚାର କରାଯାଏ । ସେମାନଙ୍କୁ ଧଳାଶାଢ଼ୀ ପିନ୍ଧିବାକୁ ଓ ଆମିଷ ଭୋଜନ ପ୍ରତ୍ୟାହାର କରିବାକୁ ବାଧ୍ୟ କରାଯାଏ । ଶୁଭକାମରେ ସେମାନେ ଯୋଗ ଦେଲେ ଅମଙ୍ଗଳ ହେବ ବୋଲି ବିଚାର କରାଯାଏ । ଅଥଚ ବିପତ୍ନୀକ ପୁରୁଷ ପାଇଁ ସେପରି କୌଣସି ବାରଣ ନଥାଏ । ଅଶିକ୍ଷା ଓ ଦାରିଦ୍ର୍ୟ ମଧ୍ୟରେ ବୁଡି ରହିଥିବା ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଗୁଣିଗାରେଡି ନାମରେ ଗରିବ, ନିରୀହ, ଅସହାୟ ବିଧବା ମହିଳାମାନଙ୍କୁ ଡାହାଣୀ କହି ମାରିଦିଆଯାଏ । ଗୁଣିଆମାନେ ପଇସା ନେଇ,ବିଧବା ମହିଳାମାନଙ୍କୁ ଡାହାଣୀ ବୋଲି ଗୁଜବ ପ୍ରଚାର କରନ୍ତି । ସେମାନଙ୍କୁ ବାହାର କରି ନଚେତ୍ ମାରି ତାଙ୍କର ଜମି ହଡପ କରିଦିଆଯାଏ । ସ୍ୱାମୀର ମୃତ୍ୟୁରେ ସ୍ତ୍ରୀର କୌଣସି ଭୂମିକା ନଥିବା ସତ୍ତ୍ୱେ ସ୍ୱାମୀର ମୃତ୍ୟୁପରେ ସମ୍ମାନର ସହ ବଂଚିବାର ଅଧିକାର

ସ୍ତ୍ରୀମାନଙ୍କୁ ଦିଆଯାଏ ନାହିଁ । ୧୮୨୯ ପର୍ଯ୍ୟନ୍ତ ଭାରତର ବିଭିନ୍ନ ସ୍ଥାନରେ ସ୍ୱାମୀର ମୃତ୍ୟୁ ପରେ ତାର ଚିତାରେ ସ୍ତ୍ରୀକୁ ଜୀବନ୍ତ ଅବସ୍ଥାରେ ଜବରଦସ୍ତ ଦଗ୍ଧ କରାଯାଉଥିଲା ଏବଂ ପରବର୍ତ୍ତୀ ସମୟରେ ଏମାନଙ୍କୁ 'ସତୀମାତା' ଭାବରେ ପୂଜା କରି ଏହି ପ୍ରଥାକୁ ଗୌରବମଣ୍ଡିତ କରାଯାଉଥିଲା । ଧର୍ମନାମରେ ଏହାଠାରୁ ଅଧିକ ବର୍ବରତା କ'ଣ ହୋଇପାରେ !

ଧର୍ମ ଓ ଈଶ୍ୱରଙ୍କ ପ୍ରତି ମଣିଷର ଅହେତୁକ ଦୁର୍ବଳତାର ସୁଯୋଗ ନେଇ କିଛି ପ୍ରତାରକ ଧର୍ମ, ଈଶ୍ୱର, ଆଧ୍ୟାତ୍ମିକତା ଆଦି ଶବ୍ଦ ବାରମ୍ବାର ବ୍ୟବହାର କରି, ଲୋକେ ଶୁଣିଥିବା ପୌରାଣିକ ଚରିତ୍ରମାନଙ୍କ ପରି ବେଶଭୂଷା ହୋଇ ନିଜକୁ ସ୍ୱୟଂ ଭଗବାନ ବା ଭଗବାନଙ୍କର ଅବତାର ବୋଲି ଘୋଷଣା କରିଥାନ୍ତି । ଭଗବାନରୂପୀ ଏ ଭଣ୍ଡ ବ୍ୟକ୍ତିମାନେ ବାବା, ମାତା, ସ୍ୱାମୀ, ଜଗଦ୍‌ଗୁରୁ, ମହର୍ଷି, ଆଚାର୍ଯ୍ୟ ଆଦି ରୂପରେ ଆବିର୍ଭାବ ହୁଅନ୍ତି । ଲୋକଙ୍କୁ ପ୍ରଭାବିତ କରିବା ପାଇଁ କିଛି ଯାଦୁବିଦ୍ୟା ଓ ହାତ ସଫେଇ ଶିଖି, ଚମତ୍କାରିତା ଦେଖାନ୍ତି । ଧର୍ମ ଓ ନୈତିକତାର ଭାଷଣ ଦେଇ ବିନା ପରିଶ୍ରମରେ ପ୍ରଚୁର ଅର୍ଥ, ପ୍ରାଚୁର୍ଯ୍ୟ ଓ ଯୁବତୀମାନଙ୍କ ସାନ୍ନିଧ ପାଇଁ ବିଳାସପୂର୍ଣ୍ଣ ଜୀବନ ବିତାଇଥାନ୍ତି । ସେମାନଙ୍କର ମିଥ୍ୟା ମହିମାର ପ୍ରଚାର ଓ ପ୍ରସାର ପାଇଁ ବହୁ ବ୍ୟକ୍ତି ନିୟୋଜିତ ହୋଇଥାନ୍ତି । ସମାଜରେ ଭଗବାନଙ୍କୁ ନେଇ ଗୁଡାଏ ଭୟ ଓ ଅନ୍ଧବିଶ୍ୱାସ ସୃଷ୍ଟି କରାଯାଇଥିବାରୁ ଭଗବାନ ରୂପୀ ବାବା ମାନଙ୍କର ଅସ୍ତିତ୍ୱ ଓ ମହିମାକୁ ନେଇ ପ୍ରଶ୍ନ ପଚାରିବାକୁ ଲୋକମାନେ ସାହାସ କରନ୍ତି ନାହିଁ । ତାଙ୍କର ସବୁ ଉପଦେଶକୁ ଅନ୍ଧ ଭାବରେ ଗ୍ରହଣ କରି ପଥଭ୍ରଷ୍ଟ ହୁଅନ୍ତି । ସେମାନେ ବୁଝିପାରନ୍ତି ନାହିଁ ଯେ ଏହି ବାବା ମାତା ମାନେ ଅତି ସାଧାରଣ ରକ୍ତମାଂସଧାରୀ ମଣିଷ ଓ ସେମାନଙ୍କ ପାଇଁ ମଧ୍ୟ ଜରା, ବ୍ୟାଧି ଓ ମୃତ୍ୟୁ ଅନିର୍ବାର୍ଯ୍ୟ । ଅସୁସ୍ଥ ହେଲେ ଆଧ୍ୟାତ୍ମିକତା ଓ ଅଲୌକିକତାର ସାହାଯ୍ୟ ନେଇ ସେମାନେ ସୁସ୍ଥ ହୁଅନ୍ତି ନାହିଁ । ବରଂ ବୈଜ୍ଞାନିକ ଉପାୟରେ ଚିକିତ୍ସା କରାଯାଉଥିବା ଚିକିତ୍ସାଳୟ ଓ ଚିକିତ୍ସକଙ୍କର ସାହାଯ୍ୟ ନିଅନ୍ତି । ଧରାପଡିଗଲେ ଦାବି କରୁଥିବା ଐଶ୍ୱରୀୟ ଶକ୍ତିର-ଉପଯୋଗ କରି ବର୍ତ୍ତି ମଧ୍ୟ ପାରନ୍ତି ନାହିଁ । ଦୁଃଖର ବିଷୟଯେ, ଏବେ ବି ଲୋକମାନେ ବିଜ୍ଞାନଭିତ୍ତିକ ତଥ୍ୟ ଅପେକ୍ଷା ପୌରାଣିକ କଥା ବସ୍ତୁକୁ ଅଧିକ ପ୍ରାଧାନ୍ୟ ଦିଅନ୍ତି ।

ରାସ୍ତାକଡରେ ବସି, ଜ୍ୟୋତିଷ ହସ୍ତରେଖା ବା ଜାତକ ଦେଖି ନିଜେ ଅଥବା ଶୁଆ ମାଧ୍ୟମରେ ଅନ୍ୟର ଭାଗ୍ୟ କଥା କୁହନ୍ତି । ଏ ବୃତ୍ତି ଅଧମ ଲୋକଙ୍କର ଜୀବିକା ହୋଇପାରେ, ମାତ୍ର ତଦ୍ୱାରା କେତେ ଯେ ଲୋକ ମାନସିକ ଦୁର୍ଦ୍ଦଶା ଭୋଗନ୍ତି, ତାହା ବିଚାରକୁ ନିଆଯାଏ ନାହିଁ । ଦଶ କୋଡିଏ ଟଙ୍କା ପାରିଶ୍ରମିକରେ ପୂରା ଭବିଷ୍ୟତ ବାଣୀ କୁହାଯାଇପାରେ । ଅଥଚ ନିଜ ଭବିଷ୍ୟତ ଜାଣି ନ ପାରି ଅନ୍ୟମାନଙ୍କ ଭାଗ୍ୟ କଥା କହୁଥିବା ଲୋକଟି ରାସ୍ତାକଡ଼ରେ ସାରାଜୀବନ ବସିଥାଏ । ତଥାପି ଲୋକମାନେ ତା କଥା ବିଶ୍ୱାସ କରି ଭିଡ ଜମାନ୍ତି । ଏବେବି ବାସ୍ତୁଶାସ୍ତ୍ର, ଫେଙ୍ଗସୁଇ, ହସ୍ତରେଖା, ଖଟବିଦ୍ୟା, ନଖବିଦ୍ୟା ବଂଚିରହିଛି । ସାପ କାମୁଡିଲେ

ଆଜି ବି ଲୋକେ ଡାକ୍ତରଙ୍କ ପାଖକୁ ନଯାଇ ଗୁଣିଆପାଖକୁ ଝଡା ଫୁଙ୍କା ପାଇଁ ଯାଉଛନ୍ତି ଓ ମୃତ୍ୟୁମୁଖରେ ପଡୁଛନ୍ତି । କିଛି ଲୋକ ଦୁଷ୍ଟଗ୍ରହ ମାନଙ୍କୁ ଭୋଗରାଗ ଦେଇ ବା ନିଜେ ଗୁଡାଏ ମୁଦି ପିନ୍ଧି ସନ୍ତୁଷ୍ଟ କରିବାକୁ ଚେଷ୍ଟା କରନ୍ତି । ବ୍ରାହ୍ମଣକୁ ଦକ୍ଷିଣା ଦେଇ, ବ୍ରାହ୍ମଣ ବତାଇଥିବା କିଛି ଏଣୁ ତେଣୁ କାମ କରିଦେଲେ ଦୁଷ୍ଟ ଗ୍ରହ ଗୁଡିକ ତତ୍‌କ୍ଷଣାତ ସନ୍ତୁଷ୍ଟ ହୋଇ ଯାଆନ୍ତି ଓ ଖରାପ ପ୍ରଭାବ ପକାଇବାରୁ କୁଆଡେ ନିବୃତ୍ତ ରହନ୍ତି ! ଆଜି କାଲି ଅଧିକାଂଶ ସମ୍ବାଦପତ୍ରରେ ରାଶିଫଳ ବାହାରେ । ମଜାର କଥା ଯେ, ଯଦି ତିନି ଚାରୋଟି ସମ୍ବାଦପତ୍ରର ରାଶିଫଳ ମିଶାଇ ଦେଖାଯାଏ, ସେଥିରେ କିଛି ବି ସାମଞ୍ଜସ୍ୟ ନଥାଏ । ଗୋଟିଏ ସମ୍ବାଦ ପତ୍ରରେ ରାଶିଫଳ ଶୁଭ ଥିଲାବେଳେ ଅନ୍ୟଟିରେ ଅଶୁଭ ଥାଏ । ସମ୍ବାଦ ପତ୍ର ଓ ଟେଲିଭିଜନ୍‌ରେ ରହି ରାଶିଫଳର ପ୍ରକାଶ ଓ ଆଲୋଚନା ଜନମାନସକୁ ଅନ୍ଧବିଶ୍ୱାସୀ ଓ ଦୁର୍ବଳ କରିବାରେ ଓ ଭାଗ୍ୟବାଦୀ ମନସ୍ତତ୍ତ୍ୱ ସୃଷ୍ଟି କରିବାରେ ସାହାଯ୍ୟ କରେ । ଦୁଃଖର ବିଷୟ ଯେ, ଏକବିଂଶ ଶତାବ୍ଦୀରେ ମଧ୍ୟ ଲୋକେ ଜ୍ୟୋତିର୍ବିଦ୍ୟା ଅପେକ୍ଷା ଜ୍ୟୋତିଷଶାସ୍ତ୍ରକୁ ଅଧିକ ବିଶ୍ୱାସ କରନ୍ତି ।

ଭୂତ, ପ୍ରେତ, ଡାହାଣୀ, ସବୁ ମଣିଷର କଳ୍ପନା । ଏହାର କୌଣସି ବାସ୍ତବିକତା ନାହିଁ । କିନ୍ତୁ ଅର୍ଦ୍ଧଶିକ୍ଷିତ, ଏପରିକି ଶିକ୍ଷିତ ଲୋକମାନେ ଭୂତ ବିଷୟରେ ବହୁ ଅବାନ୍ତର, ଉଦ୍ଭଟ ଓ କାଳ୍ପନିକ କଥା ଅନ୍ଧଭାବରେ ଗ୍ରହଣ କରିନିଅନ୍ତି । ଭୂତ ଗୋଡାଇବା, ଭୂତର ଥଣ୍ଡା ହାତ୍ ପିଠିରେ ବାଜିବା, ତାର ନିଶ୍ୱାସ ପ୍ରଶ୍ୱାସ ଅନୁଭବ କରିବା ଆଦି ବହୁ ଗଳ୍ପ ଶୁଣିବାକୁ ମିଳେ । ପ୍ରକୃତରେ କେହି ଭୂତ ଦେଖି ନଥାନ୍ତି । ଅନ୍ୟମାନଙ୍କ ଠାରୁ ଗପ ଶୁଣିଥାନ୍ତି । ପୂର୍ବରୁ ଗାଁ ମାନଙ୍କରେ ବିଜୁଳି ଆଲୁଅ ନଥିଲା । ଅନ୍ଧାରୁଆ ରାସ୍ତାରେ ବଡ଼ ବଡ଼ ଗଛ ତଳେ ଯିବା ବେଳେ ପକ୍ଷୀମାନଙ୍କର ଫଡ୍ ଫଡ୍ ଶବ୍ଦ ବା ଜୀବଜନ୍ତୁଙ୍କର ଦୌଡା ଦୌଡି ଶବ୍ଦ ଶୁଣି ବାଟୋଇଟି ଡରିଯାଉଥିଲା । ସେ ଏ ପ୍ରକାର ଘଟଣାକୁ ଭୌତିକ ଘଟଣା ବୋଲି ଭାବି ନେଉଥିଲା । ଅନ୍ଧାର ରାତିରେ କୋକିଶିଆଳି ଆଖିରୁ ବିକିରଣ ହେଉଥିବା ଫସ୍‌ଫୋରେନ୍‌ସ୍ ବା ସ୍ଫୁରଦୀପ୍ତ ଅନେକ ସମୟରେ ଭୂତ ବା ହୁଳା ଦେବତାର ଭ୍ରମ ସୃଷ୍ଟି କରେ । ଗାଁ ମଶାଣୀରେ ଜୁଳୁଜୁଳିଆ ପୋକର ଆଲୁଅ ଡାହାଣୀ ଭାବେ ପ୍ରତୀୟମାନ ହୁଏ । ଭୂତ ବା ଡାହାଣୀ ଭାବି ଡରିଯାଉଥିବା ଲୋକ ସାହାସର ସହିତ ପରୀକ୍ଷା କଲେ ଭୂତ ଆଉ ଦେଖାଯିବ ନାହିଁ । ନିଜର ଭ୍ରମ ଦୂର ହେବ । ବହୁ ଲୋକ ଏକାଠି ଯାଉଥିଲେ ଭୂତ ଦେଖନ୍ତି ନାହିଁ । ଦିନରେ, ଆଲୋକିତ ରାସ୍ତାରେ ଭୂତ ଦେଖାଯାଏ ନାହିଁ । ଯିଏ ମାନସିକ ସ୍ତରରେ ସୁସ୍ଥ, ଭୌତିକ କାଣ୍ଡରେ ବିଶ୍ୱାସ କରେ ନାହିଁ, ସେ ଆଦୀ ଭୂତ ଦେଖେ ନାହିଁ । ଅନ୍ଧବିଶ୍ୱାସୀ ଲୋକହିଁ ଭୂତ ଦେଖେ । ଗୋଟିଏ ଗୋଟିଏ ପରିବାରରେ ବାରମ୍ବାର ଭୌତିକ କାଣ୍ଡ ଘଟିବା ଦେଖାଯାଏ । ପରୀକ୍ଷା କଲେ ଜଣାପଡ଼େଯେ, ପରିବାର ସଦସ୍ୟ ମାନଙ୍କର ଅନ୍ଧବିଶ୍ୱାସ ଯୋଗୁଁ ସବୁ ଜିନିଷର

ରହସ୍ୟଭେଦ କରିବା ପାଇଁ ସେମାନେ ଜମା ଚେଷ୍ଟା କରି ନଥାନ୍ତି । ମାନସିକ ଭୟ ଓ ଉତ୍ତେଜନା ଯୋଗୁଁ ଯେ କୌଣସି ସାଧାରଣ ଘଟଣାକୁ ମାନବୀୟ କାର୍ଯ୍ୟ ବୋଲି ନଭାବି ଐଶ୍ୱରିକ କ୍ରିୟା ବା ଭୌତିକ କାଣ୍ଡ ବୋଲି ସେମାନେ ଧରି ନିଅନ୍ତି । ଏସବୁ ଭୁଲ୍ ଧାରଣାକୁ ଲୋକଙ୍କ ମନରୁ ଦୂର କରିବା ପାଇଁ ପଦକ୍ଷେପ ନିଆଯିବା ପରିବର୍ତ୍ତେ ଆଜିକାଲି ଗଣମାଧ୍ୟମ ଗୁଡ଼ିକରେ ନିୟମିତ ଭାବରେ ଭୂତ ସଂପର୍କୀୟ ଧାରାବାହିକ ଓ ଚଳଚିତ୍ର ପ୍ରସାରିତ ହେଉଛି । ସମ୍ବାଦପତ୍ର ମାନଙ୍କରେ ମଧ୍ୟ ଭୂତ ସମ୍ବନ୍ଧୀୟ ଭିତ୍ତିହୀନ, ମନଗଢ଼ା କଥା ପ୍ରକାଶିତ ହେଉଛି ।

ଗାଁମାନଙ୍କରେ କାଳିସୀ ଲାଗିବା, ମରିଯାଇଥିବା ଆତ୍ମା ଜଣେ ଜୀବନ୍ତ ଲୋକ ଦେହରେ ପଶି ଭୂତ ଭବିଷ୍ୟତ କଥା କହିବା ଆଦି ଦେଖାଯାଏ । ଗାଁରେ ଏସବୁ ବାରମ୍ବାର ଘଟୁଥିବାରୁ ପ୍ରକୃତରେ କାଳିସୀ ଲାଗୁଛି ବା ମୃତ ଆତ୍ମା ପଶିଯାଉଛି ବୋଲି ଗ୍ରାମବାସୀମାନେ ବିଶ୍ୱାସ କରନ୍ତି । ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ କାଳିସୀ, ଡାହାଣୀ, ଭୂତ କେହି ଲାଗନ୍ତି ନାହିଁ । ଏପରି ଲାଗୁଥିବା ବ୍ୟକ୍ତିଟିର ବହୁତ ସମସ୍ୟା ଥାଏ । ଅତ୍ୟନ୍ତ ଅସ୍ୱସ୍ତିକର ପରିସ୍ଥିତିରେ ସେ ସମୟ କଟାଉଥାଏ । ସେ ଯାହା ବିରୁଦ୍ଧରେ ଯାହା କହିବାକୁ ଚାହୁଁଥାଏ ଅଥଚ ସାଧାରଣ ପରିସ୍ଥିତିରେ ସେସବୁ କହିବା ସମ୍ଭବ ହୋଇନଥାଏ କାଳିସୀ ବା ମୃତ ଆତ୍ମା ବାହାନାରେ ସେ ସବୁ କଥା କହିଦିଏ । ମନଇଚ୍ଛା ଗାଳି ଦିଏ । ଧର ନିରୀହ ଅସହାୟ ବୋହୂଟି ଉପରେ ଖୁବ୍ ଅତ୍ୟାଚାର ହେଉଛି । ତାର ଅତ୍ୟାଚାରରୁ ମୁକ୍ତି ପାଇବାର କୌଣସି ଉପାୟ ନାହିଁ । ସେ ଏକଥା କାହକୁ କହି ବି ପାରୁନାହିଁ । ଏ କ୍ଷେତ୍ରରେ ଡାହାଣୀ ଓ କାଳିସୀ ମାଧ୍ୟମରେ ସେ ତାର ଅତ୍ୟାଚାରର କାହାଣୀ କହିପକାଏ । ଅତ୍ୟାଚାର କରୁଥିବା ଲୋକ ଭୟଭୀତ ହୋଇ ରହେ ଓ ଅତ୍ୟାଚାର ବନ୍ଦ କରିଦିଏ । ତାକୁ ଡର ହୁଏ । ଭବିଷ୍ୟତରେ କାଳିସୀ ଲାଗିଲେ ବୋହୂ ହୁଏତ ପୁଣି ସବୁକଥା କହିଦେବ । ଡାହାଣୀ ଲାଗୁଥିବା ବ୍ୟକ୍ତି ବି ବିଶ୍ୱାସ କରେ ଯେ, ତାକୁ ଡାହଣୀ ଲାଗୁଛି, ଡାହାଣୀ ହିଁ ଏହି ସବୁକଥା କୁହାଉଛି । ସମସ୍ୟାର ସମାଧାନ ହୋଇଗଲେ ଡାହାଣୀ ଛାଡ଼ିଯାଏ ।

ଗୋଟିଏ ସ୍ଥାନରେ ବାସ କରୁଥିବା ଲୋକମାନଙ୍କର ପ୍ରଚଳିତ ଅନ୍ଧବିଶ୍ୱାସ ଅନ୍ୟ ଗୋଟିଏ ସ୍ଥାନର ଲୋକେ ଗ୍ରହଣ କରିପାରନ୍ତି ନାହିଁ । ଗାଁ ଗହଳିରେ କାଳିସୀ ଲାଗିବା ଘଟଣା ସହରବାସୀଙ୍କୁ ଅଦ୍ଭୁତ ଲାଗିପାରେ । ଭାରତୀୟ ମାନଙ୍କର ଅନେକ ଅନ୍ଧବିଶ୍ୱାସ ପାଶ୍ଚାତ୍ୟ ଦେଶର ଲୋକମାନଙ୍କୁ ପାଗଳାମିର ଲକ୍ଷଣ ବୋଲି ମନେ ହୋଇପାରେ । କେବେ କେବେ ଗୋଟିଏ ସ୍ଥାନରେ ପ୍ରଚଳିତ ଥିବା ଅନ୍ଧବିଶ୍ୱାସ ଅନ୍ୟ ସ୍ଥାନମାନଙ୍କୁ ମଧ୍ୟ ସଂପ୍ରସାରିତ ହୁଏ । ଯେପରି ଦକ୍ଷିଣ ଅଫ୍ରିକାରେ ଶବ ସହିତ ମୋବାଇଲ୍ ଫୋନ୍ ଓ ବ୍ୟାଟେରୀ ନେବାର ପରମ୍ପରା କିଛି ବର୍ଷ ହେଲା ଆରମ୍ଭ ହୋଇଛି । ବର୍ତ୍ତମାନ ଏହି ପରମ୍ପରାଟି ଆୟରଲ୍ୟାଣ୍ଡ, ଅଷ୍ଟ୍ରେଲିଆ, ଆମେରିକାକୁ ମଧ୍ୟ ବ୍ୟାପିଲାଣି । ଗୋଟିଏ ଧର୍ମର ଅନ୍ଧବିଶ୍ୱାସ ଅନ୍ୟ ଧର୍ମାବଲମ୍ବୀଙ୍କୁ

ଅଦ୍ଭୁତ ଲାଗିପାରେ । ଗୋଟିଏ ଯୁଗର ଅନ୍ଧବିଶ୍ୱାସ ସେ ଯୁଗର ଲୋକମାନଙ୍କୁ ଯୁକ୍ତିଯୁକ୍ତ ଲାଗୁଥିଲେ ମଧ୍ୟ ଅନ୍ୟ ଯୁଗର ଲୋକଙ୍କୁ ଭୟଙ୍କର ଲାଗିପାରେ । ଯେପରି ଊନବିଂଶ ଶତାବ୍ଦୀରେ ପ୍ରଚଳିତ ସତୀ ପ୍ରଥା ଏବେ ଲୋକଙ୍କୁ ଚରମ ପାଷାଣ୍ଡତା ବା ବର୍ବରତା ବୋଲି ମନେହେବ ।

ସମାଜରୁ ହିଁ ମଣିଷ ଅନ୍ଧବିଶ୍ୱାସ ଶିଖିଥାଏ । ବାପା, ମା, ବନ୍ଧୁବାନ୍ଧବ, ଶିକ୍ଷକ, ଏପରିକି ଗଣମାଧ୍ୟମ ଅନେକ ଅନ୍ଧବିଶ୍ୱାସ ଶିଖାନ୍ତି । ପିଲାଟି ଦିନରୁ ନିଜର ବିଚାର ବୁଦ୍ଧି ଆସିବା ପୂର୍ବରୁ ଗୋଟିଏ ଜିନିଷ ବାରମ୍ବାର ଶୁଣିବା ଫଳରେ ପିଲାଟି ମନରେ ଏକ ଧାରଣା ଜନ୍ମେ ଯେ, ସେ ଶୁଣିଥିବା ବିଷୟ ଗୁଡ଼ିକ ସତ୍ୟ । ଅନେକ ସମୟରେ ସବୁ ଜିନିଷର ସତ୍ୟାସତ୍ୟ ଅନୁସନ୍ଧାନ କରିବା ବା ପରୀକ୍ଷା ନିରୀକ୍ଷା କରିବା ସମ୍ଭବ ନୁହେଁ । ସେ ଭାବେ ଶହ ଶହ ବର୍ଷ ଧରି ଚଳିଆସୁଥିବା ଓ ଅଧିକାଂଶ ଲୋକ ବିଶ୍ୱାସ କରୁଥିବା କଥାଟି ଭୁଲ କିପରି ହେବ । ତେଣୁ ସେ ନିଜ ଅଜାଣତରେ ସେଗୁଡ଼ିକ ଗ୍ରହଣ କରିନିଏ । ପ୍ରସିଦ୍ଧ ମନୋବିଜ୍ଞାନୀ କାର୍ଲ୍ ୟୁଙ୍ଗ ଏହାକୁ "ସାମୂହିକ ଅଚେତନ" (Collective unconscious) ବା "ବଂଶାନୁକ୍ରମିକ ଅଚେତନ" (Racial unconcious) ବୋଲି କହିଥିଲେ । ଯେଉଁ ପରିବାର ଯେତେ ଅନ୍ଧବିଶ୍ୱାସୀ ହୋଇଥାଏ, ସେହି ପରିବାରର ପିଲାମାନେ ଯୁକ୍ତିଶୀଳ ବିଚାରଠାରୁ ସେତେ ଦୂରରେ ଥାଆନ୍ତି ତା ଛଡ଼ା ଭାରତୀୟ ସମାଜରେ ନୂଆ ଭାବରେ ବା ସ୍ୱାଧୀନ ଭାବରେ ଭାବିବାକୁ ପିଲାଙ୍କୁ ଉତ୍ସାହିତ କରାଯାଏ ନାହିଁ । ଗତାନୁଗତିକ ବିଶ୍ୱାସକୁ ଗ୍ରହଣ କରିବାକୁ ଶିଖାଯାଏ । ଭଗବାନ, ଧର୍ମ ବିଷୟରେ ଏପରି ଡର ସୃଷ୍ଟି କରାଯାଇଥାଏ ଯେ, ଏହାଉପରେ କୌଣସି ଆଲୋଚନା କରିବାକୁ ସୁଯୋଗ ଦିଆଯାଏ ନାହିଁ । ଧର୍ମରେ ବହୁ ପରସ୍ପରବିରୋଧୀ ବିଶ୍ୱାସ ଥିଲେ ମଧ୍ୟ ତା ଉପରେ ତର୍କମା କରିବାର ସାହାସ ନଥାଏ । ତେଣୁ ଅଧିକାଂଶ ଲୋକ ବିନା ଭାବିଚିନ୍ତି ତାଙ୍କର ପରିବାର ବା ପୂର୍ବପୁରୁଷ ଯାହା ଭାବିଛନ୍ତି ବା କହିଛନ୍ତି ତାକୁ ଗ୍ରହଣ କରିନିଅନ୍ତି ।

ବିଶିଷ୍ଟ ସାହିତ୍ୟିକ ନୋବେଲ ପୁରସ୍କାର ବିଜେତା ବରଟ୍ରାଣ୍ଡ ରସେଲଙ୍କ ମତରେ "ଅନ୍ଧ ବିଶ୍ୱାସର ପ୍ରଧାନ ଉତ୍ସ ହେଉଛି ଆସନ୍ନ ବିପଦ ପ୍ରତି ଆତଙ୍କ ମଣିଷର ଅନିଶ୍ଚିତତାର ଆଶଙ୍କା ଓ ଦୁର୍ଭାଗ୍ୟର ଡର" । ଅପ୍ରାତ୍ୟାଶିତ ମୃତ୍ୟୁର ଭୟ ମଧ୍ୟ ଥାଏ । ସେ ନିଜକୁ ଅସହାୟ ମନେ କରୁଥାଏ । ମନୋବିଜ୍ଞାନୀ ଭ୍ୟାସ "ବିଲିଭିଙ୍ଗ ଇନ୍ ମ୍ୟାଜିକ୍ : ସାଇକୋଲୋଜି ଅଫ୍ ସୁପରଷ୍ଟିସନ୍" ପୁସ୍ତକରେ ଲେଖିଛନ୍ତି ଯେ, ମଣିଷ ଯେତେବେଳେ କୌଣସି ଘଟଣା ଓ ଦୁର୍ଘଟଣାକୁ ନିୟନ୍ତ୍ରଣ କରିପାରେ ନାହିଁ, ସେତେବେଳେ ହିଁ ସେ ଅନ୍ଧବିଶ୍ୱାସର ଆଶ୍ରୟ ନିଏ । କିନ୍ତୁ ଯେତେବେଳେ ସେ ବିପଦର କାରଣ ବୁଝିପାରେ ଏବଂ ବିପଦକୁ ସଂପୂର୍ଣ୍ଣ ଭାବରେ ନିୟନ୍ତ୍ରଣ କରିପାରେ, ଅନ୍ଧବିଶ୍ୱାସ ଲୋପ ପାଇଯାଏ । ସତରଶହ ଶତାବ୍ଦୀର ଶେଷ ଭାଗ

ଯାଏ ଅଧିକାଂଶ ରୋଗର କାରଣ ଜଣା ନଥିଲା । ରୋଗ ଉପଶମ ପାଇଁ ଲୋକମାନେ ମୁଖ୍ୟତଃ ପୂଜକ ଓ ଗୁଣିଆ ଉପରେ ନିର୍ଭର କରୁଥିଲେ । ବସନ୍ତ ରୋଗର କାରଣ ଜଣା ନଥିବାରୁ ବସନ୍ତ ହେଲେ ଠାକୁରାଣୀଙ୍କୁ ସନ୍ତୁଷ୍ଟ କରିବା ପାଇଁ କୁକୁଡ଼ାବଳି ଓ ପଣା ଅର୍ପଣ କରାଯାଉଥିଲା । ତିନିଶହ ବର୍ଷ ତଳେ ଇଂଲାଣ୍ଡର ଲୋକେ ପ୍ରେତାତ୍ମା, ଦୁଷ୍ଟାତ୍ମା ଓ ଦେବଦେବୀମାନେ ବିଭିନ୍ନ ରୋଗ ସୃଷ୍ଟି କରୁଛନ୍ତି ବୋଲି ଭାବୁଥିଲେ । ପ୍ଲେଗ ରୋଗ ଦୁଷ୍ଟାତ୍ମାମାନଙ୍କ ଦ୍ୱାରା ହେଉଛି ବୋଲି ବିଶ୍ୱାସ କରି ସେମାନଙ୍କୁ ଗୋଲାପର ତୋଡା ଉପହାର ଦେଇ ଖୁସି କରିବାକୁ ଚେଷ୍ଟା କରୁଥିଲେ । ମାଇକ୍ରୋସ୍କୋପର ଉଦ୍ଭାବନ ହେବାରୁ ବହୁ ରୋଗ ଜୀବାଣୁ ଓ ଭୂତାଣୁ ଜନିତ ବୋଲି ଜଣାପଡିଲା । ଏସବୁକୁ ନିୟନ୍ତ୍ରଣ କରିବା ପାଇଁ ଆଣ୍ଟିବାଓଟିକ୍ ଓ ପ୍ରତିଷେଧକ ଟିକା ପ୍ରସ୍ତୁତ କରାଗଲା ଓ ରୋଗ ଜନିତ ଅନ୍ଧବିଶ୍ୱାସ ଦୂର ହେଲା ।

ଜୀବନରେ ଅପ୍ରାତ୍ୟାଶିତ ଭାବରେ ଦେଖାଯାଉଥିବା ଜଟିଳ ପରିସ୍ଥିତିକୁ ବା ଭୟଙ୍କର ବିପଦକୁ ସାମନା କରିବା ଆଦୌ ସହଜ ନୁହେଁ । ବିପଦ ସମୟରେ ଧୈର୍ଯ୍ୟର ସହ ବସିରହି ବିପଦ ବରଣ କରିବା ଅପେକ୍ଷା, କାଳ୍ପନିକ, ଅବାନ୍ତର ହେଉପଛେ, କିଛି ଗୋଟିଏ କାର୍ଯ୍ୟରେ ନିଜକୁ ନିୟୋଜିତ କଲେ, ବିପଦ ହୁଏତ ଖଣ୍ଡନ ହୋଇଯିବ ବୋଲି ଏକ ଭ୍ରାନ୍ତ ଧାରଣା ସୃଷ୍ଟି ହୁଏ । ଏହି ସବୁ କାର୍ଯ୍ୟ ନିରାଶା ଓ ଅସହାୟତାକୁ କିଛି ପରିମାଣରେ କମେଇଦିଏ । ଚିନ୍ତାଗ୍ରସ୍ତ ଓ ଉଦବିଗ୍ନ ହେଲେ କିଛି ଲୋକ ଭଗବାନଙ୍କ ନାମ ହଜାର ଥର ଉଚ୍ଚାରଣ କରନ୍ତି, ମାଳା ଜପନ୍ତି, ବିଭିନ୍ନ ଜପ ଓ ମନ୍ତ୍ର ଆବୃତ୍ତି କରନ୍ତି । ଏସବୁ କରିବା ଦ୍ୱାରା କିଛି ସମୟ ପାଇଁ ସେମାନେ ଭୟଙ୍କର ବାସ୍ତବତା ଠାରୁ ଦୂରେଇ ଯାଆନ୍ତି । ଏପରି ବ୍ୟବହାର ମାତ୍ରାଧିକ ଭାବରେ ଦେଖାଇଲେ ମନୋବିଜ୍ଞାନୀମାନେ ଏହାକୁ "ବାଧକାରୀ ଆଦେଶନ ଆତ୍ମପାଗଳାମୀ" (Obsessive Compulsive neurosis) ବୋଲି କହିଥାନ୍ତି । ଯେଉଁମାନେ ମାନସିକ ସ୍ତରରେ ଦୁର୍ବଳ, ନିଜ ଶକ୍ତି, ସାମର୍ଥ୍ୟ ଉପରେ ଯଥେଷ୍ଟ ବିଶ୍ୱାସ ରଖନ୍ତି ନାହିଁ, ସେମାନେ ଜଟିଳ ପରିସ୍ଥିତିରୁ ମୁକ୍ତିପାଇବା ପାଇଁ ଅଲୌକିକ, ଅଦୃଶ୍ୟ ଶକ୍ତି ଓ ଚମତ୍କାରିତା ଉପରେ ଅଧିକ ଭରସା ରଖନ୍ତି । ପ୍ରତ୍ୟେକ ସଫଳତା ଓ ବିଫଳତାକୁ ଭାଗ୍ୟ, ପ୍ରାରବ୍ଧ, ଆଶୀର୍ବାଦ ଓ ଅଭିଶାପ ମାଧ୍ୟମରେ ବ୍ୟାଖ୍ୟା କରନ୍ତି । ନିଜର ଦାୟିତ୍ୱ ନିଅନ୍ତି ନାହିଁ, ସବୁ ପୂର୍ବ ନିର୍ଦ୍ଧାରଣ ବୋଲି ବିଶ୍ୱାସ କରନ୍ତି । କୌଣସି ଗୁରୁତ୍ୱପୂର୍ଣ୍ଣ ଘଟଣା ପୂର୍ବରୁ "ପରିଶ୍ରମ ଅନୁଯାୟୀ ଫଳ ପାଅ" ବୋଲି କୁହାନଯାଇ "ସବୁଠାରୁ ଅଧିକ ଭାଗ୍ୟବାନ୍ ହୁଅ ବୋଲି ଆଶୀର୍ବାଦ ଦିଆଯାଏ । ଏ ପ୍ରକାର ଭାଗ୍ୟବାଦୀ ମନସ୍ତତ୍ତ୍ୱ ସମାଜ ପାଇଁ ଆଦୌ ଶୁଭଙ୍କର ନୁହେଁ । ମଣିଷ ଭାଗ୍ୟ ନେଇ ଜନ୍ମ ହୁଏ ନାହିଁ ବରଂ ଗଭୀର ଆତ୍ମବିଶ୍ୱାସ, ଦୃଢ଼ ଇଚ୍ଛାଶକ୍ତି ଓ କଠିନ ପରିଶ୍ରମ ଦ୍ୱାରା ସେ ନିଜର ଭାଗ୍ୟକୁ ନିୟନ୍ତ୍ରଣ କରେ ।

ପାଖାପାଖି ସମୟରେ ଘଟିଥିବା ଦୁଇଟି ଘଟଣା ପରସ୍ପରର କାରଣାଶ୍ରୟୀ ହେବେ, ଏପରି କିଛି ମାନେ ନାହିଁ । ଅନେକ ସମୟରେ ସଂପର୍କ ନଥିବା, ଅଥଚ ପାଖାପାଖି ସମୟରେ ଘଟିଥିବା ଦୁଇଟି ଘଟଣାକୁ ମଣିଷ ଯୋଡିଦିଏ ଓ ଭାବିବାକୁ ଆରମ୍ଭ କରେ ଯେ, ତାର ବିପର୍ଯ୍ୟୟ ବା ଉନ୍ନତି ପାଇଁ ସେହି ଘଟଣା ବା ବିଷୟଟି ଦାୟୀ, ଏହାକୁ "ଭ୍ରମାତ୍ମକ ସଂଯୋଗ" ବୋଲି କୁହାଯାଏ । ଉଦାହରଣ ସ୍ୱରୂପ, ରାସ୍ତାରେ ଯିବା ବେଳେ ପଥଚାରୀ କଳାବିରାଡିଟିଏ ଦେଖିଲା ଏବଂ ତାପରେ ତାର ଛୋଟ ଧରଣର ଦୁର୍ଘଟଣାଟିଏ ମଧ୍ୟ ଘଟିଲା । ଦୁର୍ଘଟଣା ସହିତ କଳା ବିରାଡିର କୌଣସି ସମ୍ପର୍କ ନଥିବା ସତ୍ତ୍ୱେ ଲୋକଟି ଏହି ଦୁଇଟି ଜିନିଷ ଯୋଡିଦେଲା ଓ କଳା ବିରାଡି ହିଁ ତାର ଦୁର୍ଘଟଣାର କାରଣ ବୋଲି ଭାବିବାକୁ ଲାଗିଲା । ଆହୁରି ଅନେକ ଥର କଳା ବିରାଡି ଦେଖି ତାର କିଛି ହୋଇ ନଥିବା କଥା ବା ସେହିଦିନ ସେ ଛୋଟ ଦୁର୍ଘଟଣା ପରେ ଅନେକ ଭଲ ଘଟଣା ଘଟିଥିବା କଥା ସେ ଭୁଲିଗଲା । ଅନ୍ଧବିଶ୍ୱାସୀ ଲୋକେ ସଂପର୍କ ନଥିବା ଦୁଇଟି ଘଟଣାକୁ ପରସ୍ପର ସହିତ ସଂପର୍କ ଅଛି ବୋଲି ଭାବିନିଅନ୍ତି । ତାଙ୍କର ଅନ୍ଧବିଶ୍ୱାସକୁ ଦୃଢ଼ୀଭୂତ କରୁଥିବା ଘଟଣା ଗୁଡିକୁ ସେମାନେ ମନେ ରଖନ୍ତି । ଯେଉଁ ସୂଚନା ଗୁଡିକ ସେମାନଙ୍କର ଅନ୍ଧବିଶ୍ୱାସକୁ ଦୃଢ଼ୀଭୂତ କରୁନଥାଏ ସେମାନେ ତାକୁ ଗ୍ରହଣ କରନ୍ତି ନାହିଁ । ବରଂ ଭୁଲି ଯାନ୍ତି ।

ବିଜ୍ଞାନର ଅଗ୍ରଗତି ଯୋଗୁଁ ଉନ୍ନତ ତଥ୍ୟର ଆବିଷ୍କାର ଓ ଉଦ୍ଭାବନ ହେଉଛି । କୁସଂସ୍କାରର କଳାବାଦଲ ମଣିଷ ଜୀବନରୁ ଆସ୍ତେ ଆସ୍ତେ ଦୂରୀଭୂତ ହେଉଛି । ଦୀର୍ଘ ଅତୀତରୁ ଆଜିଯାଏଁ ଦୃଢ଼ୀଭୂତ ହୋଇଥିବା ଭ୍ରାନ୍ତଧାରଣା ଓ ଅନ୍ଧବିଶ୍ୱାସର ମୂଳୋତ୍ପାଟନ କରି ସତ୍ୟର ପ୍ରତିଷ୍ଠା କରିବା ଆଦୌ ସହଜ ଓ ସରଳ ନୁହେଁ । ଏଥିପାଇଁ ବୈଜ୍ଞାନିକ ଓ ସମାଜ ସଂସ୍କାରକ ମାନଙ୍କୁ ବହୁ ତ୍ୟାଗ ସ୍ୱୀକାର କରିବାକୁ ପଡିଥାଏ । ବହୁ ଆଗରୁ ଟଲେମୀ କଳ୍ପନା କରିଥିଲେ " ଭୂକୈନ୍ଦ୍ରିକ ବିଶ୍ୱ" । ତା ଅର୍ଥ ପୃଥିବୀ ମଝିରେ ଅଛି ଓ ତା ଚାରିପଟେ ଗ୍ରହମାନେ ଘୂରୁଛନ୍ତି । କୋପରନିକାସ୍‌ଙ୍କ ସହିତ ଏକମତ ହେଲେ ଇଟାଲୀର ବୈଜ୍ଞାନିକ ଜିଓର୍ଦାନୋ ବ୍ରୁନୋ । ଏହି ଆବିଷ୍କାର ଥିଲା ତତ୍‌କାଳୀନ ସମାଜର ଚିନ୍ତାଧାରା ବିରୋଧୀ । ଧର୍ମଗ୍ରନ୍ଥ ବାଇବେଲ "ପୃଥିବୀ ବିଶ୍ୱ ବ୍ରହ୍ମାଣ୍ଡର କେନ୍ଦ୍ରବିନ୍ଦୁ" ଧାରଣାର ପୃଷ୍ଠ ପୋଷକତା କରୁଥିଲା । ରୋମାନ୍ କାଥଲିକ ଗୀର୍ଜାରେ ବ୍ରୁନୋଙ୍କର ବିଚାର ହେଲା । ସର୍ବ ସମ୍ମୁଖନରେ ପାଦ୍ରୀମାନେ ବ୍ରୁନୋଙ୍କୁ ଅତ୍ୟନ୍ତ ନୃଶଂସ ଭାବରେ ଜିଅନ୍ତା ପୋତି ମାରିଦେଲେ । ସତୀପ୍ରଥା ଉଚ୍ଛେଦ କରିବା ପାଇଁ ସମାଜ ସଂସ୍କାରକ ରାଜା ରାମ ମୋହନ ରାୟଙ୍କୁ ଅନେକ ସଂଗ୍ରାମ କରିବାକୁ ପଡିଥିଲା । ଆଇନ୍‌ଷ୍ଟାଇନ୍‌ଙ୍କ ଭାଷାରେ, "ବୈଜ୍ଞାନିକ ଗବେଷଣା ହିଁ ଅନ୍ଧବିଶ୍ୱାସକୁ ହ୍ରାସ କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରେ । ଗବେଷଣାଲବ୍ଧ ଜ୍ଞାନ କାରଣ ଓ ପ୍ରଭାବ ଭିତ୍ତିକ ହୋଇଥିବାରୁ ତାହା ଜନସାଧାରଣଙ୍କର ଚିନ୍ତାର ନବୀକରଣ କରିବା ପାଇଁ ସମର୍ଥ

ହୁଏ । କିନ୍ତୁ ଜନସାଧାରଣଙ୍କର ସହଯୋଗ ବିନା ସେମାନଙ୍କୁ ଅନ୍ଧବିଶ୍ୱାସ କବଳରୁ ମୁକ୍ତ କରିବା ବୈଜ୍ଞାନିକ ମାନଙ୍କ ପକ୍ଷେ ସମ୍ଭବ ନୁହେଁ ।

ବିଚାରଶୀଳ ଦୃଷ୍ଟିଭଙ୍ଗୀକୁ ଆଧାର କରି, ସରଳ ବିଶ୍ୱାସ ଓ ପରମ୍ପରାକୁ ମୂଲ୍ୟାୟନ କରିବା ଦରକାର । ଧର୍ମ ସହିତ ଅଲୌକିକତାର କୌଣସି ସଂପର୍କ ନାହିଁ । ଆଜିପର୍ଯ୍ୟନ୍ତ ଦେଖାଦେଇଥିବା ଓ ଶୁଣାଯାଇଥିବା ସମସ୍ତ ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ ଘଟଣା ଗୁଡିକର କୌଣସି ସତ୍ୟତା ନାହିଁ । ବିଜ୍ଞାନାଗାରର ନିୟନ୍ତ୍ରିତ ବାତାବରଣ ମଧ୍ୟରେ ଚମତ୍କାର ପ୍ରଦର୍ଶନ ପାଇଁ ବୈଜ୍ଞାନିକମାନେ କୋଟି କୋଟି ଟଙ୍କାର ଘୋଷଣା କରିଥିଲେ ସୁଦ୍ଧା ଆଜି ପର୍ଯ୍ୟନ୍ତ କେହି ବି ଏ ଆହ୍ୱାନକୁ ଗ୍ରହଣ କରି ପାରି ନାହାନ୍ତି । ହେତୁବାଦୀ ଆନ୍ଦୋଳନର ପ୍ରମୁଖ ଭୂମିକା ନେଇଥିବା ବୈଜ୍ଞାନିକ ଆବ୍ରାହାମ୍.ଟି.କୋଭୁର ଏଭଳି ଚମତ୍କାରିତାକୁ ଖୋଲାଖୋଲି ଭାବରେ ଆହ୍ୱାନ କରିବାକୁ ଜନସାଧାରଣଙ୍କୁ ନିବେଦନ କରିଥିଲେ । ଆଜିକୁ ଅଢେଇ ହଜାର ବର୍ଷ ତଳେ ବୁଦ୍ଧଦେବ ଧର୍ମାନ୍ଧତା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ମଣିଷ ସତ୍ୟକୁ ସତ୍ୟ ଓ ମିଥ୍ୟାକୁ ମିଥ୍ୟା ବୋଲି ଜାଣିବା ଦରକାର ବୋଲି ସେ କହୁଥିଲେ । ଅଥଚ ଏକବିଂଶ ଶତାବ୍ଦୀର ମଣିଷମାନଙ୍କର ଏପରି ପ୍ରଶ୍ନବିହୀନ ଅନ୍ଧ ଅନୁସରଣ ପ୍ରଗତିଶୀଳ, ବିକାଶୋନ୍ମୁଖୀ ସମାଜ ପାଇଁ ଆଦୌ ଶୁଭଙ୍କର ନୁହେଁ ।

ମଣିଷ ବୁଦ୍ଧିମାନ ଓ ଯୁକ୍ତିଶୀଳ । କୌଣସି ଅବାସ୍ତବ, ଅଯୌକ୍ତିକ ଚିନ୍ତାଧାରାକୁ ଗ୍ରହଣ କରିବା ପୂର୍ବରୁ, ତର୍ଜମା କରି, ପ୍ରକୃତ ପରୀକ୍ଷା ନିରୀକ୍ଷା କରି ନେବା ଦରକାର । ସକଳ ପରମ୍ପରା ଓ ବିଶ୍ୱାସକୁ ମୂଲ୍ୟାୟନ କରିବା ଦରକାର । ଅନ୍ଧ ଭାବରେ ବିନା ଭାବିଚିନ୍ତି ଯେ କୌଣସି କଥା ଗ୍ରହଣ କରିବା ଆଦୌ ସମୀଚୀନ ନୁହେଁ । ଏକବିଂଶ ଶତାବ୍ଦୀର ମଣିଷ ସତ୍ୟର ଆହ୍ୱାନ କରୁ । ପ୍ରଶ୍ନ ପଚାରିବା ଶିଖୁ । ପ୍ରଶ୍ନ ପଚାରିବା ଦ୍ୱାରା ସହସ୍ରାବ୍ଦୀ ଧରି ପ୍ରଚଳିତ ମିଥ୍ୟାର ଅନ୍ତ ଘଟିବ । ଜ୍ଞାନ ରାଜ୍ୟରେ ଚିର ସତ୍ୟ ବା ଅନ୍ତିମ ସତ୍ୟ ବୋଲି କିଛି ନାହିଁ । ବିଶ୍ୱର ବ୍ୟାପକତା ଓ ଆମର ସୀମିତ ଅନୁଭୂତି ଭିତ୍ତିରେ କୌଣସି ଜ୍ଞାନକୁ ଚିରନ୍ତନ, ଶାଶ୍ୱତ ଓ ଧ୍ରୁବ ବୋଲି ଗ୍ରହଣ କରାଯାଇ ପାରିବ ନାହିଁ । ଜ୍ଞାନରାଜ୍ୟର ନୂତନ ସମ୍ଭାବନାକୁ ସ୍ୱୀକାର କରିବାକୁ ହେବ । ବିଚାରବନ୍ତ ମଣିଷ ଅନ୍ଧବିଶ୍ୱାସର ବଶବର୍ତ୍ତୀ ନହୋଇ, ଏକ ସ୍ୱାଧୀନ ତଥା ମୁକ୍ତ ମନ ନେଇ, ବିଚାର କରି ସିଦ୍ଧାନ୍ତରେ ଉପନୀତ ହେବା ଦରକାର । ତା'ଛଡା ଅନ୍ଧବିଶ୍ୱାସ ଦୂର କରିବା ଓ ସଚେତନତା ସୃଷ୍ଟି କରିବା ପାଇଁ ସରକାରୀ ଓ ବେସରକାରୀ ସ୍ତରରେ ସାମୂହିକ ଓ ସଂଘବଦ୍ଧ ଉଦ୍ୟମ କରିବା ଦରକାର । ଗଣ ମାଧ୍ୟମ ଗୁଡିକ ମଧ୍ୟ ଭୂତକାହାଣୀ ଉପରେ ଆଧାରିତ ଧାରା ବାହିକ ଓ ଅଲୌକିକ ଘଟଣାବଳୀର ପ୍ରଚାର ଓ ପ୍ରସାରରୁ ନିବୃତ୍ତ ରହିବା ଦରକାର । ଚମତ୍କାରିତାର ଭେଲିକି ଦେଖାଇ ପ୍ରତାରଣା କରୁଥିବା ଲୋକଙ୍କୁ କଠୋରରୁ କଠୋର ଦଣ୍ଡରେ ଦଣ୍ଡିତ କରିବା ଦରକାର ।



# ଆମର ଜନଜୀବନ ଓ କୁସଂସ୍କାର

ଶ୍ରୀ ଭୂପେନ ମହାପାତ୍ର

ଚେମୀ ଗୋଟିଏ ୨୦ ବର୍ଷର ଝିଅ । ବାଉରୀ ଜାତିର । ଅଚାନକ ତାର ୨ ବର୍ଷର ପୁଅଟି ପୋଖରିରେ ପଡି ମରିଗଲା । ସ୍ୱାଭାବିକ, ତାକୁ ଆଘାତ ଲାଗିଲା । ଏକ ମାତ୍ର ପୁଅ । କିଛି ଦିନ ପରେ ଦିନେ ସଂଜବେଳେ ଚେମି ଯେତେବେଳେ ସେଇ ପୋଖରୀକୁ ଗଲା ଲୁଗା ଧୋଇବାକୁ ସେ ଚିତ୍କାର କରି ଉଠିଲା । ସମସ୍ତେ ଦୌଡି ଆସିଲେ । ଦେଖିଲେ ଚେମି ମୂର୍ଚ୍ଛାପ୍ରାୟ । ପ୍ରଳାପ କରୁଛି, ଯାହା କହୁଛି ମୋଟେ ସ୍ପଷ୍ଟ ନୁହେଁ ।

ସମସ୍ତେ କହିଲେ ତାକୁ 'ଜଳ ଦେବତୀ' ଡାକୁଥିଲେ । ଯିଏ ଛୁଆକୁ ନେଇଛି, ସେ ମାଆକୁ ମଧ୍ୟ ନେବ । ଦୁହେଁ ଏକାଠି ରହିବେ । ଗୁଣିଆ ଆସିଲେ । ପୂଜା ପାଠ ବେଶ୍ ଚାଲିଲା କିଛି ଦିନ । ନିଶାର୍ଦ୍ଧରେ ଜଳ ଦେବତାଙ୍କ ପୂଜା ହେଲା । ଚେମୀ କିନ୍ତୁ ଭଲ ହେଲା ନାହିଁ । ଚେମୀର ବର ବିଚାରା କୃଷି ଶ୍ରମିକ । ତଥାପି ତାର ଖର୍ଚ୍ଚର ସୀମା ନାହିଁ । ସେ ସର୍ବସ୍ୱାନ୍ତ ହେଲା । ଚେମୀ ଶେଷରେ ଗଲା ।

କାବୁଲି ଜଣେ ଆଠ ବର୍ଷର ପିଲା । ପ୍ଲିହା କି ଯକୃତ ରୋଗ ହୋଇଥିଲା, ପେଟ ଫୁଲିଗଲା, ଗାଁ କବିରାଜ କହିଲେ ଯା ପାଇଁ 'ଚେଙ୍କ' ଏକମାତ୍ର ଔଷଧ, ଥରେ ନୁହେଁ, ତିନୋଟି ଅମାବାସ୍ୟା ରାତିରେ ଶ୍ମଶାନ ଘାଟ ଠାରେ ପୂଜା ସାରି ତିନି ଥର ନେବାକୁ ହେବ । ରୋଗ ବାଏଁ ବାଏଁ ଉଡିଯିବ ।

ସେ ବର୍ଷ ବର୍ଷା ହେଲା ନାହିଁ, ମରୁଡି ହେଲା । ଗାଁ ମନ୍ଦିରର ପୂଜକ କହିଲେ ମା କାଳୀ ରୁଷିଛନ୍ତି । ବର୍ଷା ହେବ ନାହିଁ । ପ୍ରଚୁର ଭୋଗ ରାଗ ସହ ପୂଜା କଲେ ବର୍ଷା ହେବ ।

ପୂଜା ହେଲା । କିନ୍ତୁ ବର୍ଷା ହେଲା ନାହିଁ । ବିଶିଷ୍ଟ ଗୁଣିଆ ଯେ କି କାଳୀସାଧକ ମଧ୍ୟ, କହିଲେ ମା ରକ୍ତ ମାଗୁଚନ୍ତି । ମୋତେ କାଲି ରାତିରେ ସପ୍ନେଇଛନ୍ତି । ଯୋଉଠୁ ହେଉ

ଗୋଟେ ଛୋଟ ପିଲାକୁ ଦେଖ । ଏ ସାଇରେ ଯଦି ନାହିଁ ହାଡିସାଇରେ ମିଳିବ । ମେଞ୍ଚା ମେଞ୍ଚା ପିଲା । ଗୋଟାଏ ଉଠାଇ ଆଣିଲେ ଚଳିବ । କେହି ଜାଣି ପାରିବ ନାହିଁ । ଗୋଟିଏ ପିଲାରେ ଦାୟ ନା ସାରା ଦେଶରେ ଦାୟ, ଦେଖିବ ମେଘ ପ୍ରବଳ ବର୍ଷିବ ଚାଷ ଭଲ ହେବ । ଦେଶ ବଞ୍ଚିଯିବ ।

ଆଜି ଏକବିଂଶ ଶତାବ୍ଦୀରେ ଏ ପ୍ରକାର କୁସଂସ୍କାର ତଥା ଦେଶରେ ଖାଲି ଗାଁ ଗହଳିରେ ନୁହେଁ ସହରରେ ମଧ୍ୟ ଲୋକଙ୍କ ମନକୁ ସମ୍ପୂର୍ଣ୍ଣ ଆକ୍ରାନ୍ତ କରି ରହିଛି । ଏହାହିଁ ସମଗ୍ର ଭାରତର ଚିତ୍ର । ଜଣେ କାଶ୍ମୀର ଠାରୁ କୁମାରିକା ପର୍ଯ୍ୟନ୍ତ ଏବଂ ପୂର୍ବରୁ ନାଗାଲେଣ୍ଡ ଠାରୁ ପଶ୍ଚିମରେ ଗୁଜୁରାଟ ଯାଏ ବୁଲି ଆସିଲେ ମଧ୍ୟ ସେ ଏଇ ଚିତ୍ର ଦେଖିବ । ଆମର ପ୍ରତି ରକ୍ତ କଣିକାରେ କୁସଂସ୍କାର ଜୀବାଣୁ ଜନ୍ମ ଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସତେଜ ରହିଥାଏ । ଏବଂ ଏ ରୋଗ ଏତେ ଭୟଙ୍କର ଯେ ତାହା କୌଣସି ଉପଚାରରେ ଭଲ ହୁଏ ନାହିଁ ।

କୁହାଯାଏ କୁସଂସ୍କାର ଓଡିଶାରେ ବେଶି । ଓଡିଶାରେ ବେଶି କଥାଟା ଶତ ପ୍ରତିଶତ ସତ୍ୟ ବୋଲି କହିବେ । ଯୋଉଠି ଧାର୍ମିକ ଅଂଧବିଶ୍ୱାସ, ଠାକୁର ବିଶ୍ୱାସ ବା ଈଶ୍ୱର ବିଶ୍ୱାସ ବେଶି ସେଠି ହୁଏତ ଅନ୍ଧବିଶ୍ୱାସ ବେଶି ବୋଲି କହିହେବ । ସେଇ ଦୃଷ୍ଟିରୁ ଓଡିଶାର ଲୋକେ ବେଶି ଦେବଦେବୀ ବିଶ୍ୱାସୀ ବୋଲି କହି ହେବ । କାରଣ ଓଡିଶାରେ ଦେବଦେବୀଙ୍କ ମନ୍ଦିର ବେଶି ଏବଂ ଏହି ଦେବ ଦେବୀମାନେ ଯୁଗ ଯୁଗରୁ ନିଜର ଗୋଟାଏ ଅଜଣା ପ୍ରଭାବ ପକେଇ ଲୋକଙ୍କୁ ଆକ୍ରାନ୍ତ କରି ରଖିଛନ୍ତି । ପୁରୁଷାନୁକ୍ରମେ ସେମାନେ ସେଥିରୁ ମୁକ୍ତ ହୋଇ ପାରନ୍ତି ନାହିଁ । ମୁକ୍ତ ହେବାକୁ ସେମାନେ ଇଚ୍ଛା ମଧ୍ୟ କରନ୍ତି ନାହିଁ । ବରଂ ସେଇ ପ୍ରଭାବକୁ ସେମାନେ ଆଶୀର୍ବାଦ ଏବଂ ସେଥିରୁ ଅଲଗା ହେବାକୁ ଅଭିଶାପ ବୋଲି ମନେ କରନ୍ତି । ଏହାହିଁ ଆମ ସମାଜରେ କୁସଂସ୍କାରର ପ୍ରକୃତ ସ୍ଥିତି ।

ଅନ୍ଧ ବିଶ୍ୱାସ ଯେ ଖାଲି ଭାରତରେ ଥିଲା ତା ନୁହେଁ, ସବୁ ଦେଶରେ ଥିଲା ଏବଂ ଅଛି ମଧ୍ୟ । ମଣିଷ ପ୍ରଥମେ ଥିଲା ଏକାନ୍ତ ଆଦିମ । ବଣ ଜଙ୍ଗଲରେ ରହି ଫଳ ମୂଳ ଖାଇ, ପଶୁ ଶିକାର କରି ସେ ବଞ୍ଚିଥିଲା । ଏପରିକି ସେତେବେଳେ କଞ୍ଚା ମାଂସ ମଧ୍ୟ ଖାଉଥିଲା । ଅଗ୍ନିର ସଂଧାନ ପାଇଲା ପରେ ସେ ତାକୁ ନିଜ ବ୍ୟବହାରରେ ଲଗେଇଲା । ତାପରେ ସେ କୃଷି କରି ଶିଖିଲା । ନିଜ ପାଇଁ ଜଳର ଆବଶ୍ୟକତା କଥା ବୁଝିଲା ପରେ ନଦୀକୂଳ କିମ୍ବା ଜଳାଶ୍ରୟ (ହ୍ରଦ) ପାଖରେ ବାସ କଲା । ଏହି ସମୟରେ ମଧ୍ୟ ମଣିଷର ଅଭାବ ଓ ଅସୁବିଧାକୁ ଏବଂ ସେଥିରୁ ମୁକ୍ତି ପାଇବାର ଉପାୟ ଖୋଜି ନ ପାଇବାରୁ ସେ ଗୋଟାଏ ଅଜଣା ଶକ୍ତିଉପରେ ବିଶ୍ୱାସ ରଖିଲା । ସେ ବିଶ୍ୱାସଟି ବହୁ ରୂପ ଓ ରୂପାନ୍ତର ମାଧ୍ୟମରେ ଆସି ଶେଷରେ ଈଶ୍ୱରର ରୂପ ନେଲା ଏବଂ ତାହା ଏଯାବତ ମଣିଷର ସମସ୍ତ ବିଶ୍ୱାସର ଅନ୍ତିମ ଶକ୍ତି କେନ୍ଦ୍ର ନାମରେ ପରିଚିତ ।

ଇତି ମଧ୍ୟରେ ମଣିଷର, ତାର ଶରୀରର, ତାର ମାନସିକ, ବୌଦ୍ଧିକ ବିଚାର, ଜ୍ଞାନର ପରିସୀମା ଏ ସବୁର ବହୁ ପରିବର୍ତ୍ତନ ସଂଘଟିତ ହୋଇ ଯାଇଛି । ଜଳବାୟୁ, ଖାଦ୍ୟ, ଚିନ୍ତାଶକ୍ତି ବଳରେ ସେ ବହୁ ପରିବର୍ତ୍ତନ ଭିତର ଦେଇ ଗତି କରି ଥିଲେ ମଧ୍ୟ ତାର କେବେ ବି ଦେଖିନଥିବା ସେଇ ଅରୂପ ଈଶ୍ୱରଟିକୁ ତାର କଳ୍ପିତ ସିଂହାସନରୁ ହଟେଇବାକୁ ଇଚ୍ଛା କରି ନାହିଁ । ଈଶ୍ୱରଙ୍କ ସହିତ ମଣିଷର ସମ୍ପର୍କ ସେଇ ଆଦିମ କାଳରୁ ମଣିଷର ଜନ୍ମ ଓ ପରଂପରା କ୍ରମେ ସେ ସମ୍ପର୍କ  ଗଢ଼ୁଥାଏ ।

ମଣିଷର ଜ୍ଞାନର ପରିସୀମା ଯେତେବେଳେ ବ୍ୟାପ୍ତ ହେଲା, ସେ ଅଧିକରୁ ଅଧିକ ସମସ୍ୟାର ସମ୍ମୁଖୀନ ହେଲା ସେତେବେଳେ ତା ମନରେ ପ୍ରଶ୍ନ ଉଠିଲା ଏହା କାହିଁକି ହେଲା ଓ କିପରି ହେଲା । ଏହା ପଛରେ କ'ଣ ରହସ୍ୟ ରହିଛି ? ଏଇ ପ୍ରଶ୍ନରୁ ହିଁ ବିଜ୍ଞାନର ସୃଷ୍ଟି । ଏହା ଗୋଟିଏ ଦିନରେ ହୋଇନାହିଁ କିମ୍ବା ସହଜ ଓ ସାଧାରଣ ଭାବରେ ମଧ୍ୟ ହୋଇନାହିଁ । ବହୁ ସଂଘର୍ଷ ଓ ବିରୋଧାଭାସ ମଧ୍ୟରେ ବିଜ୍ଞାନର ଗତି ହୋଇଛି । ମଣିଷ ସତ୍ୟର (ଯାହା ତା ମନରେ ସୃଷ୍ଟି ହୋଇଥିବା ପ୍ରଶ୍ନର ଉତ୍ତର ପାଇଁ) ଅନୁସନ୍ଧାନ ପାଇଁ ଯେତିକି ଆଗକୁ ଯାଇଛି ସେତିକି ସେ ନୂଆ ତଥ୍ୟର ସମ୍ମୁଖୀନ ହୋଇଛି ଏବଂ ସେତେବେଳେ ପୁରୁଣା ତଥ୍ୟ ବା ପଥ ସବୁ ଭୁଲ ମନେ ହେଉଛି । ଏହାହିଁ ବିଜ୍ଞାନ ଏବଂ ବିଜ୍ଞାନ ହିଁ ସତ୍ୟ । ତାର ବିକଳ୍ପ ନାହିଁ । ଏହି ସତ୍ୟ ଯେତେବେଳେ ଦୃଢ଼ ହୋଇ ଠିଆହେଲା ସେତେବେଳେ ତାର ପୁରୁଣା ବିଶ୍ୱାସ ତା ଆଗରେ ମଳିନ ହୋଇ ଦେଖାଗଲା । ତାହା ଅସତ୍ୟରେ ପରିଣତ ହେଲା । ସତ୍ୟ ଓ ଅସତ୍ୟ ଭିତରେ ଏଇଠି ରେଖାଟିଏ ସୃଷ୍ଟି ହେଲା । ବିଭାଜନ ରେଖା ।

ମହାମାନବ ବୁଦ୍ଧ ହିଁ ପ୍ରଥମେ ଏହି ଅସତ୍ୟଟିକୁ ଖୋଲି ମଣିଷ ଆଗରେ ଅତି ଦମ୍ଭର ସହିତ ଦେଖେଇ ଦେଇଥିଲେ । ସେ କହିଲେ ମୃତ୍ୟୁଟା ସତ୍ୟ । ତାକୁ ସୋରିଷ ମୁଠାକରେ ଭଲ କରି ହେବ ନାହିଁ କି ଜୀବନ ଫେରେଇ ଆଣିହେବ ନାହିଁ । ସ୍ୱୟଂ ଈଶ୍ୱର ମଧ୍ୟ ସେ ସତ୍ୟକୁ ବଦଳାଇ ପାରିବେ ନାହିଁ । ଏ ସବୁ ସତ୍ତ୍ୱେ ଯେତେବେଳେ କେହି ଅଧ୍ୟାତ୍ମ ବ୍ୟକ୍ତି ବା ସନ୍ଥ ଦେହ ତ୍ୟାଗ କରନ୍ତି ସେତେବେଳେ ତାଙ୍କ ଶିଷ୍ୟ ମାନେ ପ୍ରଚାର କରନ୍ତି ତାଙ୍କ ଗୁରୁ ଦେହ ତ୍ୟାଗ କରିଥିଲେ ମଧ୍ୟ ପୁଣି ଥରେ ସେ ଦେହକୁ ତାଙ୍କ ଆତ୍ମା ଫେରି ଆସିବ ଏବଂ ସେ ଉଠି ବସିବେ ।

କହିବାର ଉଦ୍ଦେଶ୍ୟ ହେଉଛି ଗୋଟାଏ ସମୟରେ ବିଜ୍ଞାନ ତାର ସ୍ଥିତି ଜାହିର କରିଥିଲେ ମଧ୍ୟ ଭୁଲ ବିଶ୍ୱାସ  ମଣିଷ ମଣିଷ ଭିତରେ ଅଛି ଏବଂ ସେ ଦୁଇଟି  ଭିତରେ ଦ୍ୱନ୍ଦ୍ୱ ଓ ସଂଘର୍ଷ ଜାରି ରହିଛି । ଏହି ସମୟରେ ସତ୍ୟ ଓ ଅସତ୍ୟ ବା ଯାହାକୁ ଆମେ ବିଶ୍ୱାସ ଓ ଅନ୍ଧବିଶ୍ୱାସ ବୋଲି କହିଆଉ ତା ଭିତରେ ଦ୍ୱନ୍ଦ୍ୱ ଓ ସଂଘର୍ଷ ବେଶ୍ ଜୋରଦାର ହେଲା । ମଣିଷ

ମନର ଦୁର୍ବଳତାକୁ ନେଇ ଚତୁର ଲୋକମାନେ  ନିଜକୁ ସାଧୁ ସନ୍ନ୍ୟାସୀ କହି ଏବଂ ନିଜ ମାଧ୍ୟମରେ ଈଶ୍ୱରଙ୍କଠାରୁ ଯେ କୌଣସି ବିଷୟରେ କରୁଣା ହାସଲ କରିହେବ  କହି ଲୋକଙ୍କ ଠାରୁ ଅର୍ଥ ଓ ଧନ ରତ୍ନ ଆଦାୟ କରି ଆଣିଥାନ୍ତି । ଅବଶ୍ୟ ଏହା ସତ୍ୟ ଯେ ଓଡିଶାରେ ଲୋକଙ୍କଠାରେ ଏ ଦୁର୍ବଳତା ବେଶି । ଯୋଉଠି ଏ ଦୁର୍ବଳତା ଯେତେ ବେଶି ସେଠି ଲୋକେ ଠକାମିର ଶିକାର ସେତେ ବେଶି ହୁଅନ୍ତି । ଏବଂ ସେଇଠି ମଧ ସାଧୁ ସନ୍ଥ ଓ ବାବା ନାମରେ ଲୋକଙ୍କୁ ବେଶି ଶୋଷଣ କରାଯାଏ । ଏ ସବୁ ହୁଏ ଈଶ୍ୱର ବା ଦେବ ଦେବୀଙ୍କ ନାଁରେ ଏବଂ ତା ପଛରେ ଲୁକ୍କାୟିତ ଥାଏ ବ୍ରାହ୍ମଣବାଦ । ବାବାବାଦ ଓ ବ୍ରାହ୍ମଣବାଦ ଭିତରେ କିଛି ପାର୍ଥକ୍ୟ ନାହିଁ, ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଗୋଟିଏ -  ସରଳ ଲୋକଙ୍କୁ ଶୋଷଣ କରିବା । ସାଧାରଣ ମଣିଷ କେମିତି କେଜାଣି ମୋଟେ ବୁଝେ ନାହିଁ ଯେ ଈଶ୍ୱର ବା ଦେବତାମାନେ ପ୍ରଚୁର ଭୋଗ ବଦଳରେ ମଣିଷକୁ ସୁଖ ସୁବିଧା ଦେଇପାରିବେ ନାହିଁ । ସମସ୍ତ ଧାର୍ମିକ ଭାବଧାରାରେ ଏହା ଅନୈତିକ, ଯାହା ଈଶ୍ୱର ମଧ ଗ୍ରହଣ କରନ୍ତି ନାହିଁ ଏବଂ ଏବର ସାମାଜିକ ବ୍ୟବସ୍ଥାରେ ତାକୁ ଲାଞ୍ଚ କୁହାଯିବ ଯୋଉଥିରେ ଆଇନ ଅନୁସାରେ ଉଭୟ ଦାତା ଓ ଗ୍ରହୀତା ଦଣ୍ଡନୀୟ ।

ଅବୋଧ ମଣିଷ ବୁଝେନାହିଁ ଯେ ଧର୍ମ ସବୁବେଳେ ମଣିଷକୁ ସତ୍ୟ ଓ ନ୍ୟାୟ ମାଧ୍ୟମରେ ରୁଚିଶୀଳ କରି ଗଢ଼ିବାକୁ କହିଥାଏ । ସେ କ୍ଷେତ୍ରରେ ଈଶ୍ୱରଙ୍କୁ ନିଜର ସୁଖ ସମୃଦ୍ଧି ପାଇଁ ମାଧ୍ୟମ କରାଯାଇପାରେନା । ଅତ୍ୟଧିକ ସୁଖ ଓ ସମୃଦ୍ଧି ପାଇଁ ଆବଶ୍ୟକତା ଅପେକ୍ଷା ପ୍ରଚୁର ଲାଭ ପାଇବାର ଆଶା ପାଇଁ ମଣିଷ ନୀତିନୈତିକତାର ରାସ୍ତା ପୁଣି ଅନୈତିକତାକୁ ଆଶ୍ରା କରେ । ଏହାହିଁ ପ୍ରଥମେ ଅନ୍ଧବିଶ୍ୱାସକୁ ପ୍ରଶ୍ରୟ ଦିଏ । ମଣିଷ ଭାବେ ପ୍ରଚୁର ପାଇବାକୁ ହେଲେ ଈଶ୍ୱରଙ୍କ ଆଶୀର୍ବାଦ ଏକାନ୍ତ ଆବଶ୍ୟକ ଏବଂ ସେ ଆଶୀର୍ବାଦ ପାଇବାକୁ ହେଲେ ଈଶ୍ୱର ଓ ମଣିଷଙ୍କ ଭିତରେ ଦଲାଲ ସାଜିଥିବା ପୂଜକ ବା ବାବାଙ୍କୁ ଖୁସି କରାଇବାକୁ ହେବ । ଏଇଠି ବିଜ୍ଞାନ ଧର୍ମୀ ବିଶ୍ୱାସଟି ସଂପୂର୍ଣ୍ଣ ପରାଜୟ ସ୍ୱୀକାର କରେ ଓ ତା ଜାଗାରେ ଅନ୍ଧବିଶ୍ୱାସ ସିଂହାସନ ଦଖଲ କରେ । ଅନ୍ଧବିଶ୍ୱାସୀ ମଣିଷଟି ସେତେବେଳେ ନିଜର ବିଚାରଶୀଳତା ହରାଏ । ତାର ସମସ୍ତ ବିଚାର ବୁଦ୍ଧି, ଚିନ୍ତା ଓ ଚେତନା , ଶିକ୍ଷା ଦୀକ୍ଷା ତା ଠାରୁ ଲୋପ ପାଇଥାଏ । ସେ ସେତେବେଳେ ଅମଣିଷ ପାଲଟେ କାରଣ ତା ଭିତରେ ଲୋଭହିଁ, ରାଜତ୍ୱ କରୁଥାଏ ।

ଆମେ ଆଗରୁ ଓଡିଶାରେ ଲୋକଙ୍କର ଅନ୍ଧବିଶ୍ୱାସର ମାତ୍ରା ଯଥେଷ୍ଟ ବେଶି ଓ ତାର କାରଣ ବିଷୟରେ କିଛି କହିଛୁ, ତେବେ ଏଠାରେ ଆଉ କେତୋଟି ଉଦାହରଣ ଦେଲେ ବୋଧେ ଯଥେଷ୍ଟ ହେବ । ଓଡିଶାରେ ଅନ୍ଧବିଶ୍ୱାସ କେତେ ଉତ୍କଟ ଓ ତାହା କିପରି ଭୟାବହ ରୂପ ଧାରଣ କରିପାରେ, ପଚାଶ ଦଶକରେ ଘଟିଥିବା ଅନୁଗୋଳର ରନ୍ତଲେଇ

ଘଟଣାର ବିଭତ୍ସ ଇତିହାସ ଏବେ ମଧ୍ୟ ଲୋକେ ଭୁଲି ନାହାନ୍ତି । ସେତେବେଳେ ଏହା ସାରା ଦେଶରେ ଚହଳ ସୃଷ୍ଟି କରିଥିଲା । ରନ୍ତଲେଇ ବାବା ଏପରି ଏକ ଔଷଧ ଦେଉଛନ୍ତି (ମାଗଣାରେ) ଯାହା ମଣିଷର ଯେକୌଣସି ଦୂରାରୋଗ୍ୟ ବ୍ୟାଧିକୁ ନିମିଷକେ ଭଲ କରି ଦେଉଛି । ଏଥିରେ ବିଶ୍ୱାସ କରି ସେଠାକୁ ଲୋକ ଛୁଟିଲେ । ଦିନକୁ ହଜାର ହଜାର । ସେତେବେଳେ ଅନୁଗୋଳର ସେହି ଗ୍ରାମ ଏକ ଅଗମ୍ୟ ସ୍ଥାନ । ଲକ୍ଷ ଲକ୍ଷ ଲୋକ ଏକାଠି ହେବା ଦ୍ୱାରା ଆରମ୍ଭ ହେଲା ହଇଜା, ତାକୁ ନିୟନ୍ତ୍ରଣ କରିବାକୁ ସେତେବେଳେ ସରକାରଙ୍କର କ୍ଷମତା ନାହିଁ । ତାଛଡା ସେତେବେଳେ ସରକାର ଲୋକଙ୍କର ଧାର୍ମିକ ଧାରଣାକୁ ବାଧା ଦେବାକୁ ଚାହୁଁ ନଥିଲେ । ଏବେ ମଧ୍ୟ ସେ କଥା ଅଛି । ତେଣୁ ହଇଜାରେ ହଜାର ହଜାର ଲୋକ ମରୁଥିଲେ ମଧ୍ୟ ବାହାରୁ ଲୋକ ଆସିବା ବନ୍ଦ ହେଉ ନଥିଲା । ସରକାର ଥିଲେ ନିରବଦ୍ରଷ୍ଟା । ମାତ୍ରାଧିକ କାଳ ମୃତ୍ୟୁର ଏ ତାଣ୍ଡବ ଲୀଳା ଚାଲିଲା ଏବଂ ତାହା ପ୍ରବଳ ବେଗରେ ପଡୋଶୀ ଜିଲ୍ଲାମାନଙ୍କୁ ମଧ୍ୟ ବ୍ୟପିଗଲା ।

ଖବର ଯାଇ ଆମେରିକାରେ ପହଞ୍ଚିଲା । ନିୟୁୟର୍କ ଟାଇମସ ପରି ବହୁଳ ପ୍ରସାରିତ ସଂବାଦପତ୍ରରେ ଓଡିଶାର ଅନୁଗୋଳ ପରି ଏକ ବଣ ଜଙ୍ଗଲରେ ଘେରା ରାଜ୍ୟରେ ଜଣେ ଭଣ୍ଡ ବାବାଙ୍କ ଗୋଟିଏ ଏପରି ଔଷଧରୁ ସବୁ ପ୍ରକାର ରୋଗ ଭଲ ହୋଇ ପାରିବ ବୋଲି ବିଶ୍ୱାସ କରି ସାରା ଦେଶରୁ ହଜାର ହଜାର ଲୋକ ସେଠି ପହଞ୍ଚିଲେ; ଏବଂ ଶେଷରେ ହଇଜା ବ୍ୟାପିବାରୁ ଏବେ ଦୈନିକ ହଜାର ହଜାର ଲୋକ ସେଠି ମରୁଛନ୍ତି । ସେଠାରେ ଲୋକେ କେତେ ମାତ୍ରାରେ ଅନ୍ଧବିଶ୍ୱାସୀ ତାହାହିଁ ଦେଖିବାର କଥା ।

ଯେଉଁ ସମୟରେ ନିଉୟର୍କ ଟାଇମସ୍‌ରେ ଏହା ପ୍ରକାଶ ପାଇଥିଲା ଠିକ୍ ସେତିକି ବେଳେ ଭାରତ ସେବକ ସମିତିର ସଦସ୍ୟ ଶ୍ୟାମ ସୁନ୍ଦର ମିଶ୍ର ଆମେରିକାରେ ଥିଲେ ଏବଂ ଏହା ଜାନୁଆରୀ ୧୯୫୧ରେ (୩.୨.୨୦୦୫ ସମାଜରେ ପୁନଃ ପ୍ରକାଶିତ) ପ୍ରଥମେ ସମାଜରେ ପ୍ରକାଶ ପାଇଥିଲା । ସେତେବେଳେ ଆମେରିକାରେ ଥିବା ଭାରତୀୟ (ବିଶେଷ କରି ଓଡିଶାବାସୀ) ଙ୍କ ମୁଣ୍ଡ ତଳକୁ ହୋଇ ଯାଇଥିଲା । ଏ କଳଙ୍କର ଦାଗ ଓଡିଶା ବାସୀଙ୍କ ମନରୁ ଏ ଯାଏ ଲିଭି ନାହିଁ । ଏ ଘଟଣା ଘଟି ଥିଲା ବିଂଶ ଶତାବ୍ଦୀର ମଧ୍ୟଭାଗରେ । ସେତେବେଳେ ଅବଶ୍ୟ ଓଡିଶା ଦୀର୍ଘ ଶହ ଶହ ବର୍ଷର ମୋଗଲ, ମରହଟ୍ଟା ଓ ଶେଷରେ ଇଂରେଜ ଶାସନର ଅଂଧଯୁଗ ଭିତର ଦେଇ ଗତି କରି ଥିବାରୁ ଆଧୁନିକତାର ଆଲୋକ ଦେଖି ପାରି ନ ଥିଲା । ଆଧୁନିକ ଶିକ୍ଷାର (ଯାହା ବିଜ୍ଞାନ କଥା କହିଥାଏ ଓ ମଣିଷକୁ ପ୍ରତ୍ୟେକ କଥାରେ ସଚେତନ ହେବାକୁ ଶିକ୍ଷା ଦେଇଥାଏ) ଆଲୋକ ତାକୁ ସେ ଯାଏ ସ୍ପର୍ଶ ମଧ୍ୟ କରି ନଥାଏ । ଏ କଥା ସମସ୍ତେ ଜାଣନ୍ତି ପ୍ରାକ୍ ସ୍ୱାଧୀନତା କାଳରେ ଓଡିଶାରେ ଇଂରାଜୀ ଶିକ୍ଷା ଏପରିକି ସ୍କୁଲ ଶିକ୍ଷା ପ୍ରତି ମଧ୍ୟ ଭୁଲ ଧାରଣା ଥିଲା । ଲୋକମାନେ ଭାବୁଥିଲେ ସ୍କୁଲକୁ

ଯାଇ ଇଂରାଜୀ ପଢ଼ିଲେ ପିଲାମାନେ ଖ୍ରୀଷ୍ଟିୟାନ ହୋଇଯିବେ । ଏହା ବି ଏକ ଗମ୍ଭୀର ଅନ୍ଧବିଶ୍ୱାସ ।

ସ୍ୱାଧୀନତାର ଠିକ ଚାରିବର୍ଷ ପରେ ରନ୍ତଲେଇ ଘଟଣା । ଅନୁଗୋଳ ସେତେବେଳେ ଢେଙ୍କାନାଳ ରାଜ୍ୟର ଅଂଶବିଶେଷ ଏବଂ ଢେଙ୍କାନାଳର ରାଜକୀୟ ଶାସନ ବହୁ ଭାବରେ ଲୋକଙ୍କ ଉପରେ ଅତ୍ୟାଚାର କରି ଭୟଭୀତ କରି ରଖିଥିଲା । ଏପରିକି ସେମାନେ ଖବର କାଗଜ ଖଣ୍ଡେ ମଧ୍ୟ ସମସ୍ତଙ୍କ ସାମନାରେ ପଢ଼ିପାରୁ ନ ଥିଲେ । ଅନୁଗୋଳକୁ ବାହାରୁ ଗମନା ଗମନର କୌଣସି ସୁବିଧା ନଥିଲା । ଫଳରେ ସେ ଅଂଚଳ ସଂପୂର୍ଣ୍ଣ ରୂପେ ବାହାର ଜଗତରୁ ବିଚ୍ଛିନ୍ନ ଥିଲା । ଏ ଅବସ୍ଥାରେ ସେମାନଙ୍କର ଈଶ୍ୱର ଦୁଇଜଣ । ରାଜା ଓ ବାବା । ଏମାନଙ୍କ କଥା ବା ଆଦେଶ ଲୋକଙ୍କ ପକ୍ଷେ ବେଦ ବାଣୀ । ସେମାନେ ସ୍ପଷ୍ଟ ଭାବେ କହୁଥିଲେ ସେମାନେ ହିଁ ଈଶ୍ୱରଙ୍କ ଅଂଶବିଶେଷ । ଗୋଟାଏ ଅନ୍ଧକାରର ଯୁଗରେ ବଣ ଜଙ୍ଗଲରେ ବାସ କରୁଥିବା ଲୋକଙ୍କ ପକ୍ଷେ ଭଣ୍ଡ ବାବାଙ୍କ ବାଣୀଙ୍କୁ ଈଶ୍ୱରଙ୍କ ବାଣୀ ଭାବରେ ଗ୍ରହଣ କରିବା ସ୍ୱାଭାବିକ ।

ବିଂଶଶତାବ୍ଦୀରେ ସିନା ଶିକ୍ଷା ଅଭାବରୁ ଲୋକେ ବିଶ୍ୱାସ ଓ ଅନ୍ଧବିଶ୍ୱାସ ଭିତରେ ଫରକଟା ଜାଣି ପାରିନଥିଲେ । ପ୍ରକୃତ ଈଶ୍ୱରଙ୍କୁ ଚିହ୍ନି ପାରି ନଥିଲେ । କିନ୍ତୁ ଏକବିଂଶ ଶତାବ୍ଦୀଟି ଆଉ ସେ ଦିନର ଚିତ୍ର ବହନ କରୁନାହିଁ । ସମୟ ଅନେକ ବଦଳି ଗଲାଣି । ପ୍ରଶସ୍ତ ଓ ପ୍ରଚୁର ଆଧୁନିକ ଶିକ୍ଷାବଳରେ ମଣିଷର ଜ୍ଞାନ ଓ ବୁଦ୍ଧି ଯଥେଷ୍ଟ ବିକାଶଲାଭ କଲାଣି । ଭୁଲ ଓ ଠିକ୍ ବାଛିବାରେ ତାର ଶକ୍ତି ଓ ସାମର୍ଥ୍ୟ ଯଥେଷ୍ଟ ବୃଦ୍ଧି ପାଇଛି । ସାମାଜିକ ସୁରକ୍ଷାର ପରିସର ବୃଦ୍ଧି ପାଇଛି । ସମାଜ ଓ ପରିବାର ଭିତରେ ସେ ନିଜକୁ ସମ୍ପୂର୍ଣ୍ଣ ସୁରକ୍ଷିତ ମନେ କରିବାର ଯଥେଷ୍ଟ କାରଣ ରହିଛି, ସେ ଦମ୍ଭର ସହିତ ନିଜକୁ ଅନେକ ପ୍ରତିକୂଳ ଅବସ୍ଥାର ସମ୍ମୁଖୀନ ହେଇ ପାରିବ ବୋଲି ଭାବୁଛି । ଇତି ମଧ୍ୟରେ ରାଷ୍ଟ୍ରୀୟ ସ୍ୱାସ୍ଥ୍ୟସେବାର ପରିସର ମଧ୍ୟ ଯଥେଷ୍ଟ ବୃଦ୍ଧି ପାଇଛି, ବିଜ୍ଞାନ ସମ୍ମତ ସ୍ୱାସ୍ଥ୍ୟ ସେବା ଏବେ ନାଗରିକର ଅଧିକାର ଭିତରକୁ ଆସି ସାରଛି । ଶିକ୍ଷା ଓ ସ୍ୱାସ୍ଥ୍ୟ ଯେପରି ସହଜରେ ଉପଲବ୍ଧ ହୁଏ ତାର ଦାୟିତ୍ୱ ରାଷ୍ଟ୍ର ଗ୍ରହଣ କରି ସାରିଛି । ଅସଲ କଥା ହେଲା ଏକବିଂଶ ଶତାବ୍ଦୀରେ ମାନବିକ ଅଧିକାର ବିଷୟରେ ମଣିଷ ସଚେତନ ହେଲାଣି । ଏବଂ ସେ ଅଧିକାର ଯେପରି କ୍ଷୁର୍ଣ୍ଣ ନ ହୁଏ ସେଥିପ୍ରତି ମଧ୍ୟ ରାଷ୍ଟ୍ର ସଚେତନ ଅଛି । ଏହା ହିଁ ତ ସ୍ୱାଧୀନତାର ପ୍ରକୃତ ଅର୍ଥ । ସ୍ୱାଧୀନତାର ଦୀର୍ଘ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱ ସମୟ ଭିତରେ ସାଧାରଣ ମଣିଷର ଆର୍ଥିକ ଅବସ୍ଥାର ବିରାଟ ପରିବର୍ତ୍ତନ ଆସିଛି, ଜୀବନଶୈଳୀ ସଂପୂର୍ଣ୍ଣ ବଦଳିଛି । ଶିକ୍ଷା ଓ ସ୍ୱାସ୍ଥ୍ୟସେବାର ଉନ୍ନତି ଯୋଗୁଁ ମଣିଷର ପରମାୟୁ ମଧ୍ୟ ବଢ଼ିଛି । ଯାହାକୁ ଏଯାବତ ଆମେ ଈଶ୍ୱରଙ୍କ ଆଶୀର୍ବାଦ ବା ଭାଗ୍ୟ ବୋଲି ବିଶ୍ୱାସ କରି ଆସୁଥିଲୁ ।

୧୯୫୦ ର ଅବସ୍ଥା ଏବେ ଆଉ ମୋଟେ ନାହିଁ କି ଅନୁଗୋଳ ମଧ୍ୟ ତାହାର ସେ ଦିନର ଅନୁଗୋଳ ହୋଇ ରହିନାହିଁ । ରାଜ୍ୟର ସବୁଠି ଗୋଟିଏ ଯୁଗପତ୍ ପରିବର୍ତ୍ତନର ସ୍ପଷ୍ଟ ଛବି ଅବଶ୍ୟ ଅଛି । ତା ସତ୍ତ୍ୱେ ଭାଗ୍ୟବାଦ ଓ ବାବାବାଦ ଓଡିଶାରେ ପ୍ରବଳ ଭାବେ ବଢ଼ିଛି । ଅନ୍ଧବିଶ୍ୱାସ ଓ କୁସଂସ୍କାର ଶହେଗୁଣରୁ ବେଶି ବଢିଛି । ସତେ ଅବା ଆମେ ସମସ୍ତେ ଏବେ ଅନ୍ଧବିଶ୍ୱାସ ରାଜତ୍ୱର ପ୍ରଜା ପାଲଟି ଯାଇଛୁ । ଓଡିଶାର ଉପକୂଳବର୍ତ୍ତୀ ଜିଲ୍ଲାମାନେ ଏବେ ଶିକ୍ଷା ଓ ସ୍ୱାସ୍ଥ୍ୟସେବାରେ ଅଗ୍ରଣୀ ଜିଲ୍ଲା ବୋଲି କୁହାଯାଉଛି । ଓଡିଶାର ବରେଣ୍ୟ ରାଜନେତା, କବି, ଲେଖକ, ମହାନ ସାଂସ୍କୃତିକ କର୍ମୀ, ସମାଜ ସଂସ୍କାରକ ସମସ୍ତେ ପ୍ରାୟ ଏହି ଅଂଚଳରୁହିଁ ଆସିଛନ୍ତି ଏବଂ ଦେଶ ଓ ରାଜ୍ୟର ନାଁକୁ ଉପରକୁ ନେଇଛନ୍ତି । ଇତିହାସର ପୃଷ୍ଠା ଆଜି ସେମାନଙ୍କୁ ନେଇ ଗର୍ବିତ । ତା ସତ୍ତ୍ୱେ ଏବେ ସେଇ ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ବାବାବାଦ ପ୍ରଚଣ୍ଡ ବେଗରେ ବୃଦ୍ଧି ପାଇଛି । ଅନ୍ଧବିଶ୍ୱାସ ସାଧାରଣ ଜନଜୀବନର ବ୍ରତ ବୋଲି ଧରାଗଲାଣି । ବାବାଙ୍କ ପାଦଧୂଳି ଯେ ବହୁ ରୋଗ ଭଲ କରିପାରେ, ବାବାଙ୍କ ପାଦରୁ ଝରୁଥିବା ମହୁ ଯେ ପ୍ରାକୃତିକ ମହୁଠାରୁ ଅଧିକ ମୂଲ୍ୟବାନ ଏକଥା ମଧ୍ୟ ସେମାନେ ବିଶ୍ୱାସ କରନ୍ତି । ବାବା ମାନେ ଏବେ ଏପରି ବଟିକା ପ୍ରସ୍ତୁତ କରୁଛନ୍ତି ବୋଲି କହୁଛନ୍ତି ଯେ ଯାହା ନାରୀମାନେ ସେବନ କଲେ ପୁତ୍ର ସଂତାନ ଜାତ ହେବ । କୌଣସି ବୈଜ୍ଞାନିକ ସମର୍ଥନ ନ ଥାଇ ଏମାନେ ଶାସ୍ତ୍ରାନୁମୋଦିତ ଜଡିବୁଟିର କାରଖାନା ମଧ୍ୟ ଖୋଲୁଛନ୍ତି ଏବଂ ସେ ଔଷଧ ଅସଲି ବୋଲି ଦାବି କରୁଛନ୍ତି । ଲୋକମାନଙ୍କର ବି ଏଥିରେ ପ୍ରଚଣ୍ଡ ବିଶ୍ୱାସ । ଫଳରେ ଏହାଦ୍ୱାରା ଏବେ ଶହ ଶହ କୋଟିର ବଜାର ଗଢ଼ି ଉଠିଛି । ବିଦେଶରେ ତାର ବଜାର ଅଛି ବା ନାହିଁ ଅବଶ୍ୟ ଆମେ ଜାଣୁନା ।

ସମୟ ଯେତିକି ଗଡୁଛି, ଶିକ୍ଷା ଓ ସ୍ୱାସ୍ଥ୍ୟସେବା ଯେତିକି ବଢୁଛି ଅନ୍ୟ ଦିଗରେ ଆମର ଅନ୍ଧବିଶ୍ୱାସ ବଢୁଛି ଓ ବୈଜ୍ଞାନିକ ଚିନ୍ତନ ପ୍ରତି ଅବଜ୍ଞା ସେତିକି ବଢୁଛି । ଜିଭ କାଟି ଠାକୁରଙ୍କୁ ଦେଲେ ବିବାହ ପାଇଁ ଭଲ ଝିଅ ମିଳିବା ସହିତ ଚାକିରି ବି ମିଳିବ । ବିଶ୍ୱାସ ବୋଧେ ଓଡିଶାରେ ପ୍ରଥମେ ଦେଖିବାକୁ ମିଳିଲା । ମା' ପୁଅର ସମ୍ପର୍କ ଏତେ ନିବିଡ ଓ ଆତ୍ମୀୟ ସେଥିରେ କଥାରେ ଅଛି ପୁଅ ଅନ୍ଧ ହେଇଥିଲେ ମଧ୍ୟ ମା କୁହେ ସେ ଜନ୍ମରୁ ଅନ୍ଧ ନ ଥିଲା । କିନ୍ତୁ ଗୋଟିଏ ଘଟଣାରେ ଜଣେ ମାଆ ତାର ପୁଅକୁ କାଟି ତାର ରକ୍ତ ଠାକୁରଙ୍କୁ ଦେଲା । ତାର ବିଶ୍ୱାସ ଦେବତା ପ୍ରସନ୍ନ ହେଇ ମାଆର ଦାରିଦ୍ର୍ୟ ଦୂର କରିବେ । ଏ ସବୁକୁ ମାନସିକ ରୋଗଛଡା ଆଉ କଅଣ କହିହେବ ? ଜଣେ ବାବା ପ୍ରଚାର କଲେ ଯେ ରୁପାର ଛୋଟ ଫରୁଆ ଭିତରେ ସେ ଏପରି କିଛି ଦେବେ (ଯାହାକୁ ଦେଖିବା ମନା) ତାକୁ ଘରେ ରଖି ପୂଜା କଲେ କୌଣସି ପ୍ରକାର ପ୍ରାକୃତିକ ବିପତ୍ତି ପଡିବ ନାହିଁ, ଅଧିକନ୍ତୁ ଘରର କାହାରି କୌଣସି ପ୍ରକାର ଦର୍ଘଟଣା ଜନିତ କ୍ଷତି ହେବ ନାହିଁ । ଓଡିଶାରେ ଏହି ସବୁ ବାବାଙ୍କର

ବିରାଟ ସାମ୍ରାଜ୍ୟ ରହିଛି । ଲୋକମାନଙ୍କର ଏମାନଙ୍କ ଉପରେ ବିଶ୍ୱାସ ଏତେ ବେଶି ଯେ ନିକଟରେ ଗୋଟିଏ ଘଟଣାରେ ଜଣେ ଯୁବକ ତାର ନବ ବିବାହିତା ପତ୍ନୀକୁ ପ୍ରଥମ ରାତିରେ ବାବାଙ୍କୁ ସମର୍ପଣ କରିବାକୁ ପତ୍ନୀକୁ ନେଇ ଆଶ୍ରମରେ ଛାଡିଥିଲେ । ନାରୀଟି ଏଥିରେ ପ୍ରତିବାଦ କରିବାରୁ ବାବାଙ୍କ ଉଦ୍ଦେଶ୍ୟ ଅବଶ୍ୟ ସଫଳ ହେଲା ନାହିଁ । ଅଧିକନ୍ତୁ ମାମଲା ଏବେ କୋର୍ଟରେ । ଆମେ ଏ କ୍ଷେତ୍ରରେ ନାରୀଟିକୁ ପ୍ରଶଂସା କରିବା ସହିତ ତାକୁ ସବୁ ପ୍ରକାର ସାହାଯ୍ୟ ସମର୍ଥନ ଯୋଗାଇ ଦେବା ଉଚିତ । ଜନସାଧାରଣ ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ଏଥିପାଇଁ ଆଗେଇ ଆସିବା ଉଚିତ୍ ।

ନାରୀଟି ଯେତେବେଳେ ଗୋଟାଏ ଘରୋଇ ଟି.ଭି. ଚାନେଲକୁ ସାକ୍ଷାତ ଦେଇ ତା ଉପରେ ହେଉଥିବା ଶାରୀରିକ ଓ ମାନସିକ ଅତ୍ୟାଚାରର ମର୍ମଭେଦୀ ଯନ୍ତ୍ରଣା କଥା କାନ୍ଦି କାନ୍ଦି କହୁଥିଲା ଦର୍ଶକମାନଙ୍କ ଶ୍ରୁତି ମଧ୍ୟ ବିଦାରିତ ହେଉ ଯାଉଥିଲା, ଏବେ କହନ୍ତୁ ତ ପୃଥିବୀର କେଉ ବ୍ୟକ୍ତି ଏପରି କଳଙ୍କ କାଳିମାର ଇତିହାସଟିଏ ଲେଖି ପାରିବ, ଓଡିଆ ଛଡା ? ଅନ୍ଧବିଶ୍ୱାସ ତାର ଏପରି ଶୀର୍ଷ ସ୍ଥାନକୁ ଉଠି ଯାଇଛି ଯେ ପରିବାରର ତଥା ନିଜର ସୁଖ ଓ ସମୃଦ୍ଧି ପାଇଁ ସେ ତାର ନବବିବାହିତା ପତ୍ନୀକୁ ମଧ୍ୟ ବାବାକୁ ପ୍ରଥମ ରାତିରେ ଉପଭୋଗ ପାଇଁ ଉପହାର ଦେଇପାରେ ।

ନାରୀ ପାଇଁ ପୃଥିବୀରେ ବହୁ ଯୁଦ୍ଧ ଓ ସଂଘର୍ଷ ଘଟିଯାଇ ବହୁ ରକ୍ତପାତ ହେଇ ଥିବା କଥା ଆମକୁ ଇତିହାସ କୁହେ । କିନ୍ତୁ ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇ ଅନ୍ୟକୁ ନିଜ ସ୍ତ୍ରୀକୁ ଉପହାର ଦେବାର ନଜିର କୋଉଠି ବି ନାହିଁ । ଆଗାମୀ ପିଢ଼ି ଯେତେବେଳେ କୁସଂସ୍କାରର ଇତିହାସ ଲେଖିବ ସେତେବେଳେ କିପରିଭାବରେ ତାକୁ ଚିତ୍ରଣ କରିବ ?

ତେବେ ଅନ୍ଧବିଶ୍ୱାସ ଯେ ଖାଲି ଓଡିଶାରେ ଅଛି, ଭାରତର ଅନ୍ୟାନ୍ୟ ଅଞ୍ଚଳରେ ନାହିଁ ସେ କଥା କହି ହେବନାହିଁ । ବାବା ମାନଙ୍କ ପାଇଁ ଭାରତ ଗୋଟିଏ ସୁନ୍ଦର ଚାରଣ ଭୂମି । ପୁରାଣର ନଜିର ଦେଇ କିଛି ଚତୁର ଲୋକ ରଂଗ ବେରଙ୍ଗର ବସ୍ତ୍ର ପିନ୍ଧି ସାଧୁ, ସନ୍ନ୍ୟାସୀ ଓ ବାବା ବେଶରେ ସରଳ ଓ ନିରୀହ ଲୋକମାନଙ୍କୁ ଅତି ସହଜରେ ଠକନ୍ତି ଓ ସେମାନଙ୍କର ସର୍ବସ୍ୱ ଲୁଟନ୍ତି । ବାଳିକା ଓ ବିବାହିତା ନାରୀମାନଙ୍କୁ ମଧ୍ୟ ଧର୍ମ ଓ ଈଶ୍ୱରଙ୍କ ନାଁରେ ଧର୍ଷଣ କରନ୍ତି । କାରଣ ଅଧିକାଂଶ ସ୍ଥାନରେ ଏଇ ନାରୀମାନଙ୍କ ଦେହ ଉପଭୋଗ ସେମାନଙ୍କର ପ୍ରଧାନ ଉଦ୍ଦେଶ୍ୟ ଥାଏ । ଏହାର ମୂଳ କାରଣ ମଧ୍ୟ ଅନ୍ଧବିଶ୍ୱାସ । ବାବା ଆମକୁ ଈଶ୍ୱରଙ୍କ ଠାରେ ପହଞ୍ଚାଇ ଦେବେ ଏବଂ ସବୁ ସୁଖ ସମ୍ଭୋଗ ଆମ ପାଖରେ ଅଜାଡି ଦେବେ । ଶତ୍ରୁକୁ ଆପଣାର କରିଦେବେ । ଈପସିତ ବସ୍ତୁ ବା ବ୍ୟକ୍ତିଟି ଆମ ହାତ ମୁଠାରେ ରହିବ । ମନସ୍କାମନା ସମ୍ପୂର୍ଣ୍ଣ ହେବ ।

ପ୍ରଶ୍ନ ଉଠିପାରେ ପଚାଶ ଦଶକରେ ଥିବା ଦେଶ ଆଧୁନିକ ଶିକ୍ଷା କ୍ଷେତ୍ରରେ ଅଗ୍ରଗତି କରି ନ ଥିଲା, ଲୋକଙ୍କୁ ସହଜରେ ସ୍ୱାସ୍ଥ୍ୟ ସେବା ମିଳୁ ନଥିଲା ଏବଂ ସର୍ବୋପରି ପ୍ରଶାସନ ମଧ୍ୟ ଦୃଢ଼ ନଥିଲା । ସେତେବେଳେ ଲୋକେ ସାହାରାହୀନ ହେଇ ଅତି ମାତ୍ରାରେ ଭଗବତ୍ ବିଶ୍ୱାସୀ ହେଇ ଉଠୁଥିଲେ, କୋଉଟା ଠିକ ଓ କୋଉଟା ଭୁଲ ବିଚାର କରି ପାରୁ ନଥିଲେ କିନ୍ତୁ ଏକବିଂଶ ଶତାବ୍ଦୀରେ ସେମାନେ ସେ ଭୁଲ କାହିଁକି କଲେ ? ଶିକ୍ଷା କ୍ଷେତ୍ରରେ ଯଥେଷ୍ଟ ଉନ୍ନତି ହେଇ ଏବଂ ବାସ୍ତବ କ୍ଷେତ୍ରରେ ସଚେତନ ବା ଏନ୍‌ଲାଇଟେନେଡ୍ ହେଇ ମଧ୍ୟ ଭୁଲଟାକୁ ଠିକ୍ ଭାବି ତା ଆଡକୁ କିପରି ଆକୃଷ୍ଟ ହେଲେ ?

ତାର କାରଣ ଏକବିଂଶ ଶତାବ୍ଦୀରେ ଆମର ସାମାଜିକ ଓ ରାଜନୈତିକ ବ୍ୟବସ୍ଥାରେ ପରିବର୍ତ୍ତନ ଆସିଲା । ଶିକ୍ଷାର ପରିସର ଯଥେଷ୍ଟ ବୃଦ୍ଧି ପାଇଥିଲେ ମଧ୍ୟ ତାହା ଥିଲା ରାଜନୀତିର କର୍ତ୍ତୃତ୍ୱାଧୀନ । ଆମ ସଂବିଧାନରେ ଆମେ ଯେଉଁ ଗଣତାନ୍ତ୍ରିକ ବିଧି ବ୍ୟବସ୍ଥାର ନୀତି ନିୟମ ସବୁ ଖଂଜିଛୁ ସେଥିରେ ଗଣଙ୍କୁ ସର୍ବୋଚ୍ଚ ସ୍ଥାନରେ ରଖିଛୁ । ସେମାନଙ୍କ ପ୍ରତିନିଧି ବସ୍ତୁତଃ ଶାସନର ମୁଖ୍ୟ । ତାର ଅର୍ଥ ସେଇମାନେ ହିଁ କ୍ଷମତାର କେନ୍ଦ୍ରବିନ୍ଦୁ । ଯଦିଓ ଆମ ବିଧି ବିଧାନରେ ଧର୍ମକୁ ଅଲଗା ରଖାଯାଇଛି, କ୍ଷମତାକୁ ଆସିବା ପୂର୍ବରୁ ରାଜନେତାମାନେ ଜାତି, ଧର୍ମ ଓ ସଂପ୍ରଦାୟ ମାଧ୍ୟମରେ ଲୋକଙ୍କୁ ଏକଯୁଟ କରି ଭୋଟବେଙ୍କ ତିଆରି କରନ୍ତି । ଧର୍ମାନୁଷ୍ଠାନ, ପ୍ରାର୍ଥନା କେନ୍ଦ୍ର ଓ ଆଶ୍ରମ ଗୁଡିକ ଏଥିରେ ନିଜକୁ ପ୍ରତ୍ୟକ୍ଷରେ ହେଉ ଅଥବା ପରୋକ୍ଷରେ ସଂଶ୍ଳିଷ୍ଟ କରି ଦିଅନ୍ତି । ଅନ୍ୟ ଦିଗରେ ଆଶ୍ରମ ବା ଧର୍ମାନୁଷ୍ଠାନରେ ରାଜନେତା ବା କ୍ଷମତାର ଅଳିନ୍ଦ ସହିତ ସଂଶ୍ଳିଷ୍ଟ ଥିବା ବ୍ୟକ୍ତିମାନଙ୍କୁ ଦେଖିଲେ ସାଧାରଣ ଜନତାର ସେ ଆଶ୍ରମ ବା ବାବାଙ୍କ ପ୍ରତି ଆସ୍ଥା ଓ ବିଶ୍ୱାସ ବଢ଼ି ଯାଏ । ଏହା ଏକ ସଠିକ୍ ସଂସ୍ଥା ବୋଲି ସେମାନେ ଭାବନ୍ତି । ଆଶ୍ରମକୁ ଅନେକ ସମୟରେ ଉଚ୍ଚଶିକ୍ଷିତ, ଜ୍ଞାନୀ, ଗୁଣୀ ଓ ପଣ୍ଡିତମାନେ ମଧ୍ୟ ଯାଆନ୍ତି । ଡାକ୍ତର ଓ ବୈଜ୍ଞାନିକମାନେ ମଧ୍ୟ ଭାବନ୍ତି ଭଗବତ କୃପା ନ ଥିଲେ ସେମାନଙ୍କ ପେଷାରେ ଉନ୍ନତି ଆସିବ ନାହିଁ । ଆଉ କେହି କେହି କହନ୍ତି ବିଜ୍ଞାନ ଓ ଈଶ୍ୱର ଏମାନେ ଭିନ୍ନ ଭିନ୍ନ କ୍ଷେତ୍ରରେ ମାଲିକ । ବିଜ୍ଞାନ କେବଳ ନିଜ ପେଷା ପାଇଁ ଏବଂ ଈଶ୍ୱର ଜୀବନର ମାର୍ଗ ଦର୍ଶନ ପାଇଁ ।

ଶ୍ରୀହରିକୋଟା ରକେଟ ଲଂଚିଂ କେନ୍ଦ୍ରରେ ଏହି ଲେଖକ ଦେଖିଛି ବିଜ୍ଞାନର ସର୍ବୋଚ୍ଚ ଆସନରେ ଥିବା ବିଜ୍ଞାନୀ ମାନେ ମଧ୍ୟ ମହାକାଶକୁ ରକେଟ୍ ଉଡାଇବା ପୂର୍ବରୁ ପୂଜା ପାଠ କରନ୍ତି ଓ ମନେ ମନେ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରି ମହାକାଶ ଯାନର ଶୁଭ ଯାତ୍ରା ମନାସନ୍ତି ।

ମଣିଷ ପାଇଁ ଧର୍ମର ଆବଶ୍ୟକତା କ'ଣ ରହଛି ! ଗୋଟାଏ ସୁନ୍ଦର ମାନସିକ ଖାଦ୍ୟ । ମହାମନୀଷୀ କାର୍ଲମାର୍କ୍ସ ଏ କଥା ସ୍ୱୀକାର କରନ୍ତି । ଧର୍ମର ଶକ୍ତି ଏତେ ବେଶି

ଜାଣିଲା ପରେ ପୃଥିବୀର ଅନ୍ୟାନ୍ୟ ଦେଶ ପରି ତା ପାଇଁ ଯେତେ ଛୋଟ ହେଲେ ମଧ୍ୟ, ଗୋଟାଏ ଛୋଟ ସହରକୁ ସ୍ୱତନ୍ତ୍ର ଦେଶର ମାନ୍ୟତା ଦିଆଯାଉଛି । (ଭାଟିକାନ ସିଟି) ।

ଯେଉଁ ଦେଶର ଲୋକଙ୍କ ଭିତରେ ଧାର୍ମିକ ମତାନ୍ଧତା ଯେତେ ବେଶି ତାର ନେତୃତ୍ୱ ଯେତେ ବେଶି ଧର୍ମ ଭାବାପନ୍ନ, ସେଠି ଅନ୍ଧବିଶ୍ୱାସ ସେତିକି ଶକ୍ତିଶାଳୀ । କାରଣ ଧାର୍ମିକ ଭାବ ବିନା ଅନ୍ଧବିଶ୍ୱାସ ତିଷ୍ଠି ପାରେ ନାହିଁ । ଏମାନେ ଅଙ୍ଗାଙ୍ଗୀ ଭାବେ ଜଡିତ ।

ଏବେ ଆମେ ଧର୍ମ ଓ ଅନ୍ଧବିଶ୍ୱାସ ସହିତ ଆମ ସାହିତ୍ୟର ସଂପର୍କକୁ ଦେଖିବା । ଓଡିଆ ସାହିତ୍ୟରେ ଧାର୍ମିକ ଭାବଧାରାର ଗୋଟାଏ ବିରାଟ ଭୂମିକା ରହିଛି । ଆମ ଭାଷାର ସାହିତ୍ୟର ଆରମ୍ଭରୁ ଧାର୍ମିକ ଭାବଧାରା, ବିଶେଷ କରି ବିଭିନ୍ନ ଦେବଦେବୀଙ୍କ ସହିତ ଜଗନ୍ନାଥଙ୍କ ଭୂମିକାକୁ ସମସ୍ତେ ସ୍ୱୀକାର କରନ୍ତି । ଓଡିଆ ଜନଜୀବନ ସହିତ ଜଗନ୍ନାଥ ଓ ତାଙ୍କ ପରିବାର ଘନିଷ୍ଠ ଭାବେ ସଂପୃକ୍ତ । ମଧ୍ୟଯୁଗୀୟ କିଛି ସାହିତ୍ୟରେ ଯଦିଓ କିଛି ପ୍ରଗତିବାଦୀ ଚିନ୍ତାଧାରା ପ୍ରକାଶ ପାଇଥିଲା ପରେ ବୋଧେ ତାହା ଜଗନ୍ନାଥୀୟ ପ୍ରଭାବରେ ମ୍ଳାନ ପଡିଗଲା । ପଞ୍ଚସଖାଙ୍କ ସାହିତ୍ୟରେ ଜାତି ସଂପ୍ରଦାୟ କଥାକୁ ଗ୍ରହଣ କରାଯାଇ ନଥିଲା । ଲକ୍ଷ୍ମୀପୁରାଣରେ କବି ଆଉଟିକିଏ ଆଗକୁ ଯାଇ ଛୁଆଁ ଅଛୁଆଁ ଓ ନାରୀ ସଶକ୍ତିକରଣ କଥା ମଧ୍ୟ କହିଛନ୍ତି । ପରବର୍ତ୍ତୀ ସମୟରେ ଦଳିତ କବି ଭୀମଭୋଇ ଅତି ଦମ୍ଭର ସହିତ ଜାତିପ୍ରଥା ଓ ମୂର୍ତ୍ତିପୂଜା ବିରୁଦ୍ଧରେ କହିଛନ୍ତି । କିନ୍ତୁ ପରବର୍ତ୍ତୀ ଅବସ୍ଥାରେ (ଭଗବତ ପାଣିଗ୍ରାହୀଙ୍କ ପରି ଅଳ୍ପ କେତେକଙ୍କୁ ବାଦ୍ ଦେଲେ) ଅନ୍ୟମାନେ ଜଗନ୍ନାଥଙ୍କୁ ଓଡିଆର ସଂସ୍କୃତି ସହିତ ମିଶେଇଛନ୍ତି ଓ ତାଙ୍କୁ ଗଣଦେବତା ବୋଲି କହୁଛନ୍ତି । ଫଳରେ ଆମ ସାହିତ୍ୟ ପୁଣି ଅଧିକ ପରିମାଣରେ ଧର୍ମ, ଠାକୁର, ଦେବତା ଆଡକୁ ଆଗେଇ ଯାଉଛି । ଜଗନ୍ନାଥଙ୍କ ଉପରେ ଆମର ଶହ ଶହ ବର୍ଷର ସାହିତ୍ୟ ଥିଲା ବେଳେ ଆମର ମନେ ହୁଏ ଏବେ ତାହା ବହୁ ପରିମାଣରେ ବଢ଼ିଛି । ଏବେ ଆମ ସାହିତ୍ୟ ପତ୍ରିକା ମାନଙ୍କରେ ଜଗନ୍ନାଥଙ୍କ ଫଟୋ ଓ ପର୍ବ ପର୍ବାଣୀର ପ୍ରବଂଧ ଓ ଚିତ୍ର ପ୍ରାୟ ରହୁଛି । ପ୍ରମୁଖ ସାହିତ୍ୟ ପତ୍ରିକାରେ ସେ ସବୁ ଦେଖିବାକୁ ମିଳୁଛି । ଗତ ନବ କଳେବର ସମୟରେ କେବଳ ନବ କଳେବର ଉପରେ ଅନ୍ତତଃ କୋଡିଏଟା ସ୍ୱତନ୍ତ୍ର ପତ୍ରିକା ପ୍ରକାଶ ପାଇଛି । ଏଥିରେ ଗବେଷଣାମୂଳକ ପ୍ରବଂଧ ସବୁ ରହିଛି । ଏ ସବୁ ଅତ୍ୟନ୍ତ ଉପାଦେୟ ଓ ତାର ଆବଶ୍ୟକତା ମଧ୍ୟ ରହିଛି । ଶିକ୍ଷା ଓ ଗବେଷଣା କ୍ଷେତ୍ରରେ ତାର ଉପାଦେୟତାକୁ ଆଡେଇ ଦେଇ ହେବ ନାହିଁ । କହିବାର ଉଦ୍ଦେଶ୍ୟ ହେଉଛି ଓଡିଶାରେ ଜଗନ୍ନାଥୀୟ ସଂସ୍କୃତି ଓ ପରଂପରାର ଭୂମିକାକୁ ସ୍ୱୀକାର କରିବାକୁ ହେବ । ସାଧାରଣ ଜନତା ଉପରେ ତାର ପ୍ରଚଣ୍ଡ ପ୍ରଭାବ ଥିଲା ଓ ରହିଛି । ଧାର୍ମିକ ଭାବନାକୁ ଏହା ଉଜ୍ଜୀବିତ କରେ । ତା ଫଳରେ ଆମେ ଏବେ ଏପରି ଅବସ୍ଥାକୁ ଆସିଛୁଁ ଯେ ରଥ ଦଉଡିକୁ ଛୁଇଁଲେ କିମ୍ବା ସମସ୍ତ ଶାସ୍ତ୍ରୀୟ ନୀତି ନିୟମକୁ ଅବଜ୍ଞା କରି ରଥ ଉପରକୁ ଚଢ଼ିଲେ ଏବଂ ସେଠି ଦିଅଁଙ୍କୁ ଛୁଇଁଲେ ମହାପୁଣ୍ୟ

ଅର୍ଜନ ହୁଏ ବୋଲି ଗୋଟେ ଧାରଣା ଆମକୁ ଏବେ ପାଗଳ କରିଛି । ଏସବୁ ଘଟଣା ଏବେ ସମସ୍ତ ରାଜ୍ୟକୁ ମହା ବିତର୍କସହିତ ଛନ୍ଦି ଦେଇଛି । ଏହା ପ୍ରକୃତରେ ପାପ କି ପୁଣ୍ୟ ତାହା କିଏ କହିବ ? ଆମ ନ୍ୟାୟିକ ବ୍ୟବସ୍ଥା ତାର ସମାଧାନ କରି ପାରିବ ? ତେବେ ଏହା ସହିତ ଆମର ଧାର୍ମିକ ଅନ୍ଧବିଶ୍ୱାସ ସହ ଜଡିତ ଅଛି ଏଥିରେ ସନ୍ଦେହ ନାହିଁ । ଧର୍ମ ଓ ପାପ ଏସବୁ ମଣିଷର ସୁସ୍ଥ ମାନସିକତାର ଲକ୍ଷଣ । ମଣିଷର ସୁସ୍ଥ ମନ କେବଳ ଠିକ ଓ ଭୁଲର ବିଚାର କରିପାରେ । ପଙ୍କିଳ ମନ ହିଁ ସବୁ ପାପର ଆଧାର । ସେଇ ଅବସ୍ଥାରୁ ମୁକ୍ତି ପାଇବା ପାଇଁ ମନ ବ୍ୟାକୁଳ ହୁଏ ।ଗଙ୍ଗାରେ ଗାଧୋଇଲେ ପାପରୁ ମୁକ୍ତି ମିଳେ ନାହିଁ ଖାଲି ମନକୁ ଶାନ୍ତି ଦେବା କଥା ।

ଆମର ଏବର ସାହିତ୍ୟ ମଧ୍ୟ ଅନେକ ସମୟରେ ଅନ୍ଧବିଶ୍ୱାସକୁ ଉତ୍ସାହିତ କରୁଛି । ଏବେ ଯୋଉ ସାହିତ୍ୟ ପ୍ରକାଶ ପାଉଛି ସେଥିରେ ଅନେକ ସମୟରେ ଜଗନ୍ନାଥୀୟ ପ୍ରଭାବ କିମ୍ବା ଈଶ୍ୱରୀୟ ପ୍ରଭାବ ରହୁଛି । ମଣିଷର ଅସହାୟତା କଥା ଲେଖିଲା ବେଳେ ତାହା ମନକୁ ମନ ଆସିଯାଉଛି । ଆଉ କେତେକ ସ୍ଥଳରେ ପାରାସାଇକୋଲୋଜି ପରି ମଣିଷର କେତେକ ରୁଗ୍ଣ ଅବସ୍ଥା କଥା ମଧ୍ୟ ରହିଛି । ଏସବୁକୁ ମଣିଷ ମନର ବିକାର ବୋଲି କହିହେବ । ଉନ୍ନତ ଓ ରୁଚିଶୀଳ ସାହିତ୍ୟର ମାନ ନିର୍ଦ୍ଧାରଣ ବେଳେ ଏହାକୁ କିପରି ଭାବରେ ବିଚାର କରାଯିବ ତାହା ଭିନ୍ନ କଥା । ତେବେ ଭୋଟ ବଳରେ ତାର ମାନ ନିର୍ଦ୍ଧାରଣ କରି ହେବ ନାହିଁ । ଭୋଟ ବଳରେ ଲୋକ ପ୍ରତିନିଧି ବାଛିବା ପରି ହେବ । ପୁଣି ଏଇ ସବୁ ସାହିତ୍ୟ ଯଦି ପୁରସ୍କାର ପାଏ ତେବେ ପିଢ଼ି ତାକୁ ଆଖିବୁଜି ଅନୁସରଣ କରେ । ଅଜସ୍ର ଅଳିଆ ସେଥିରୁ ବାହାରି ପଡେ ।

ଆମେ ଏବେ ଗଣମାଧ୍ୟମର ଭୂମିକା ଉପରକୁ ଆସିବା । ଏକବିଂଶ ଶତାବ୍ଦୀରେ ସବୁଠାରୁ ଶକ୍ତିଶାଳୀ ମାଧ୍ୟମ ହେଲା ଗଣମାଧ୍ୟମ । ପ୍ରଚାରର ମାଧ୍ୟମ ଯେ ଜନ ମତକୁ ପରିଚାଳିତ କରିବାରେ ଗୋଟାଏ ବିରାଟ ଭୂମିକା ଗ୍ରହଣ କରିପାରେ ଏ କଥା ପ୍ରଥମେ ଜଣା ପଡିଲା ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରୁ । ଜୟ ପରାଜୟର ଗୋଟାଏ ନିର୍ଣ୍ଣାୟକ ଅବସ୍ଥା ସୃଷ୍ଟି କରି ପାରେ ଗଣମାଧ୍ୟମ । ତେଣୁ ପ୍ରଶାସନର ସବୁଠାରୁ ବେଶି ଭୟ ଥାଏ ଗଣମାଧ୍ୟମକୁ ।

ବିଂଶ ଶତାବ୍ଦୀର ମଧ୍ୟଭାଗ ପରେ ଆମର ମୁଦ୍ରଣ ପ୍ରକ୍ରିୟାରେ (ଟେକନୋଲୋଜି) ବହୁତ ପରିବର୍ତ୍ତନ ଆସିଲା । ପୁରାତନ ବ୍ୟବସ୍ଥା ବଦଳିଲା ଓ ନୂଆ ବ୍ୟବସ୍ଥା ଆସିଲା ଫଳରେ ଗଣ ମାଧ୍ୟମ ବିଭାଜିତ ହେଲା । ପ୍ରିଣ୍ଟ ଓ ଇଲେକଟ୍ରୋନିକ ଗଣମାଧ୍ୟମ ଏମାନଙ୍କର ଅତ୍ୟାଧୁନିକତା ଫଳରେ ପୃଥିବୀର ଗୋଟିଏ ପ୍ରାନ୍ତରୁ ଖବର ନେଇ ଅନ୍ୟ ପ୍ରାନ୍ତରେ ପହଞ୍ଚିବାକୁ ଗୋଟିଏ ମିନିଟରୁ କମ ସମୟ ଲାଗିଲା । ଏହାଦ୍ୱାରା ପ୍ରଚାରର ମାଧ୍ୟମ ଅଧିକ ଶକ୍ତିଶାଳୀ ହେଲା । ଲୋକଙ୍କ ମନ ଉପରେ ତାହା ପ୍ରଭାବ ପକେଇଲା । ରୁଟିରେ ଯଦି ସମାନ ଭାବରେ

ଦୁଇଟା ଜାଗରେ ପୋଡ ଯାଇ କଣା ହେଲା ତାହା ଯେତେବେଳେ ଗଣମାଧ୍ୟମରେ ଜଗନ୍ନାଥଙ୍କ ଆଖି ପରି ପ୍ରଚାର ହେଲା ସେତେବେଳେ ତ୍ରୁଟି କରୁଥିବା ଲୋକର ମହତ୍ତ୍ୱ ବଢ଼ିଯାଏ । ସେ ଈଶରଙ୍କ ଆଶୀର୍ବାଦ ଲାଭ କରେ ବୋଲି କୁହାଯାଏ । ତା ପରେ ସେ ନିଜେ ଈଶ୍ୱରଙ୍କ ଦୂତ ପାଲଟି ଯାଏ । ଉଭୟ ଗଣ ମାଧ୍ୟମରେ ତାହା ଘଣ୍ଟାକ ଭିତରେ ସହସ୍ର କୋଶକୁ ଗଲା ପରେ ସେଠାକୁ ଲୋକ ଛୁଟନ୍ତି । କିନ୍ତୁ ଏହା ଯେ ଅନ୍ଧବିଶ୍ୱାସ ସେ କଥା ଗଣମାଧ୍ୟମ ମୋଟେ କୁହେ ନାହିଁ । ଏବେ ଏଇ ପ୍ରଚାର ମାଧ୍ୟମକୁ ସାଧୁ ସନ୍ନ୍ୟାସୀ ଓ ଅସାଧୁ ବାବା ମାନେ ତାଙ୍କ ନିଜ ସ୍ୱାର୍ଥ ପାଇଁ ବେଶି ବ୍ୟବହାର କରୁଛନ୍ତି । ଗଣମାଧ୍ୟମ ମଧ୍ୟ ସବୁ ପ୍ରଶ୍ରୟ ଦେଉଛି । ଫଳରେ ଯାବତ ଅନ୍ଧବିଶ୍ୱାସ ଓ କୁସଂସ୍କାରର ବିଜ୍ଞାପନ ସବୁ ସେଥିରେ ପ୍ରକାଶ ପାଉଛି । ମନ୍ତ୍ର, ତନ୍ତ୍ର, ଜ୍ୟୋତିଷ, ବାସ୍ତୁ ଶାସ୍ତ୍ର ଓ ଫେଙ୍ଗସୁଇ ପ୍ରଭୃତି ଯେତେ ସବୁ ପଚା ସଢ଼ା ବିଦ୍ୟା ଆମର ଥିଲା ସେ ସବୁ ଏବେ ବିଜ୍ଞାପନ ମାଧ୍ୟମରେ ଆସି ଲୋକଙ୍କ ମନରେ ବସା ବାନ୍ଧିଲାଣି । ଏସବୁ ନାମୀ ଦାମୀ ସଂବାଦପତ୍ରରେ ପ୍ରକାଶ ପାଉଥିବାରୁ ଲୋକେ ବିଶେଷ କରି ଦୁର୍ବଳ ମାନସିକତାର ବଶବର୍ତ୍ତୀ ଥିବାରୁ ସେମାନେ ତାକୁ ସତ୍ୟ ବୋଲି ଗ୍ରହଣ କରୁଛନ୍ତି । ଏବେତ ବିଲଡର ମାନେ ଘର ତିଆରି କରି ବିକ୍ରି ପାଇଁ ଯେଉଁ ବିଜ୍ଞାପନ ଦେଉଛନ୍ତି ସେଥିରେ ସ୍ପଷ୍ଟ ଭାବେ ଲେଖୁଛନ୍ତି ଯେ ଏହା ବାସ୍ତୁଶାସ୍ତ୍ରର ନିୟମ, ତଥ୍ୟାନୁସାରେ ତିଆରି ହୋଇଛି । ଫଳରେ ତାର ଦାମ ହୁ ହୁ ବଢ଼ିଯାଉଛି ।

ଅନ୍ଧବିଶ୍ୱାସକୁ ଏବେ ବହୁ ଭାବରେ ପ୍ରଚାର ପାଇଁ ବୈଦ୍ୟୁତିକ ଗଣମାଧ୍ୟମରେ ଶହ ଶହ ଚାନେଲ ଖୋଲା ଗଲାଣି । ସେଥିରେ ରାଶି ନକ୍ଷତ୍ର ଅନୁଯାୟୀ ଭାଗ୍ୟ ଫଳ ଜ୍ୟୋତିଷଶାସ୍ତ୍ର ଇତ୍ୟାଦି ପ୍ରଚାର ହେଲାଣି । କେତେକ ତ ଏସବୁକୁ ବିଜ୍ଞାନ ବୋଲି କହି ସ୍କୁଲ କଲେଜ ମାନଙ୍କରେ ଏହା ଶିକ୍ଷା ଦେବାକୁ ମତପୋଷଣ କରୁଛନ୍ତି । ଛୋଟ ପିଲାର କଅଁଳ ମନରେ ପ୍ରଥମରୁ ବାପା ମାଆମାନେ ଭଗବତ ବିଶ୍ୱାସ ଭର୍ତ୍ତି କରି ଦିଅନ୍ତି ଏବଂ କହନ୍ତି ଈଶ୍ୱରଙ୍କ ଆଶୀର୍ବାଦ ବିନା ଜୀବନରେ କୌଣସି ପ୍ରକାର ଉନ୍ନତି ସମ୍ଭବ ନୁହେଁ । ମଣିଷ ଜୀବନରେ ବିଜ୍ଞାନର ଆବଶ୍ୟକତା ଯେ ଅତି ଜରୁରୀ ସେ କଥା ସେ ଜାଣିପାରେ ନାହିଁ ।

ଗଣମାଧ୍ୟମରେ ଏବେ ସୋସିଆଲ ମିଡିଆର ଗୋଟାଏ ବଡ଼ ଭୂମିକା ରହିଛି । ମଣିଷ ଭିତରେ ସଂପର୍କ ଯୋଡିବାରେ ଏବଂ ସେମାନଙ୍କୁ ଦେଶ ରାଜ୍ୟ ନିର୍ବିଶେଷରେ ନିକଟତର କରାଇବାରେ ତାର ଅବଦାନକୁ ଅସ୍ୱୀକାର କରିହେବ ନାହିଁ । ଏକବିଂଶ ଶତାବ୍ଦୀରେ ବିଜ୍ଞାନର ଏ ଅଭିନବ ପ୍ରୟାସ ମଣିଷକୁ ଦେଇଛି ଆଗକୁ ବଢ଼ିବାର ଓ ନୂତନ ଭାବଗତ ସମ୍ପର୍କର ପୃଥିବୀ ଗଢ଼ିବାର ନୂତନ ପ୍ରେରଣା ।

କିନ୍ତୁ ଏବେ ଦେଖାଯାଉଛି ତାକୁ ମଧ୍ୟ ବେଳେ ବେଳେ ଭିନ୍ନ ଭାବରେ ବ୍ୟବହାର କରାଯାଉଛି । ଫେସବୁକ୍‌ରେ ଏବେ ସାହିତ୍ୟ ଆସୁଛି । ଶୁଭ ସୂଚନା । ବହି ଓ ପତ୍ର ପତ୍ରିକାରୁ

ଆଖି ବୁଲେଇ ମଣଷ ସହଜରେ ଓ ସୁବିଧାରେ ଏବେ ଗଳ୍ପ କବିତାକୁ ଆପଣେଇ ସଂଗେ ସଂଗେ କବି ଓ ଲେଖକ ସହିତ ସଂପର୍କ ସ୍ଥାପନ କରି ପାରୁଛି । ସୋସିଆଲ ମିଡିଆର ସାହିତ୍ୟକୁ ଗୋଟାଏ ବିରାଟ ଦାନ' କିନ୍ତୁ ତାକୁ ଯଦି ଆମେ ଈଶ୍ୱରଙ୍କ ଅବଦାନ କହିବା ଓ ତାର ଭାବ ବିନିମୟକୁ ଈଶ୍ୱରଙ୍କ ଆଶୀର୍ବାଦ କହିବା ଠିକ୍ ହେବ ନାହିଁ । ସାହିତ୍ୟ ପୁସ୍ତକକୁ ମିଡିଆ ମାଧ୍ୟମରେ ଦେବଦେବୀଙ୍କୁ ଉତ୍ସର୍ଗ କରିବା ବିଜ୍ଞାନର ଅବମାନନା ହେବ ଏବଂ ତାର ସ୍ଥିତିକୁ ଅସ୍ୱୀକାର କରିବା ସହିତ ସମାନ ହେବ । ଆମେ ବିଜ୍ଞାନର ସମସ୍ତ ସୁବିଧା ନେବା, କିନ୍ତୁ ଈଶ୍ୱରଙ୍କ ଜୟଗାନ କରିବା ପରି ହେବ । ତାର ଅର୍ଥ ଏବେ ମଧ ଆମ ମାନସିକତାର ପରିବର୍ତ୍ତନ ଆସି ନାହିଁ । ଏହା ଆମର ଗୁଣାତ୍ମକ ଶିକ୍ଷା ନୁହେଁ ବୋଲି କହିବା ଠିକ୍ ହେବ ।

ଦୁର୍ଭାଗ୍ୟର କଥା ଆମ ଦେଶରେ ବିଜ୍ଞାନ ଓ ତାର ଗବେଷଣା ପାଇଁ ଆବଶ୍ୟକ ପରିମାଣର ଅର୍ଥ ଖର୍ଚ୍ଚ ହୁଏ ନାହିଁ । ଗୋଟିଏ ହିସାବରୁ ଜଣା ଯାଏ ପୃଥିବୀର ଅନ୍ୟାନ୍ୟ ଦେଶ ତୁଳନାରେ ଭାରତରେ ଅନେକ କମ୍ ଅର୍ଥ ଖର୍ଚ୍ଚ ହୁଏ । ବିଜ୍ଞାନ ଶିକ୍ଷା ଓ ଗବେଷଣାରେ ଯେତେବେଶି ଖର୍ଚ୍ଚ ହେବ ସେତେ ଭଲ । ପ୍ରାଥମିକ ଶିକ୍ଷାଠାରୁ ଆରମ୍ଭ କରି ଉଚ୍ଚତର ଶିକ୍ଷା ପର୍ଯ୍ୟନ୍ତ ସବୁସ୍ତରରେ ବିଜ୍ଞାନ ଶିକ୍ଷାକୁ ପ୍ରାଧାନ୍ୟ ଦିଆଯିବା ଉଚିତ । ମଣିଷର ଜୀବନ ଗଠନରେ ବିଜ୍ଞାନର ଭୂମିକାକୁ ଅସ୍ୱୀକାର କରି ହେବ ନାହିଁ । ଗଣମାଧ୍ୟମରେ ଅବାସ୍ତବ ଓ ଅବୈଜ୍ଞାନିକ ପ୍ରଚାରକୁ ବନ୍ଦ କରିବାକୁ ଆଇନ ହେବା ଉଚିତ । ଯାହା ଲୋକଙ୍କୁ ଭୁଲ ସଂକେତ ଦେଇଭୁଲ ରାସ୍ତାରେ ପରିଚାଳିତ କରେ ସେ ସବୁକୁ ଦୃଢ଼ ହସ୍ତରେ ଦମନ କରାଯିବା ଉଚିତ । ବିଜ୍ଞାନର ପ୍ରଚାର ପାଇଁ ଅଧିକ ଯତ୍ନ ନିଆଯିବା ଉଚିତ ଏବଂ ଏଥିପାଇଁ ସାମାଜିକ ଅନୁଷ୍ଠାନମାନଙ୍କୁ ଉତ୍ସାହିତ କରିବା ଉଚିତ । ସରକାରଙ୍କ ନୀତି ନିୟମ (ପଲିସ) ଏଥିପାଇଁ ସ୍ପଷ୍ଟହେବା ଉଚିତ ।



# ଫଳିତ ଜ୍ୟୋତିଷ-ଏକ ନିଷ୍ଫଳ ଆସ୍ଫାଳନ

*ଅଧ୍ୟାପକ ଡମ୍ବରୁଧର ବେହେରା*

ଜ୍ୟୋତିର୍ବିଦ୍ୟା ବା ଜ୍ୟୋତିଷ ଶାସ୍ତ୍ରକୁ ପ୍ରଥମେ ଦୁଇଟି ମୌଳିକ ଶାଖାରେ ବିଭକ୍ତ କରାଯାଇଥିଲା । ମହାକାଶର ଗ୍ରହ ନକ୍ଷତ୍ର ମାନଙ୍କର ଗତିବିଧିକୁ ଗଣନା କରିବାର ବିଦ୍ୟାକୁ ପ୍ରାକୃତିକ ଜ୍ୟୋତିର୍ବିଦ୍ୟା  ବା ଗଣିତ ଜ୍ୟୋତିଷ (Natural Astrology) ବୋଲି କୁହାଯାଇଥିଲା । ଏବଂ ମଣିଷର ଜୀବନ ଓ ଭାଗ୍ୟ ଉପରେ ଗ୍ରହ ଓ ନକ୍ଷତ୍ର ମାନଙ୍କର ତଥାକଥିତ ପ୍ରଭାବ ଓ ଫଳାଫଳ ନିର୍ଣ୍ଣୟ କରିବାର ବିଦ୍ୟାକୁ ବୈଚାରିକ ଜ୍ୟୋତିର୍ବିଦ୍ୟା ବା ଫଳିତ ଜ୍ୟୋତିଷ (Judicial Astrology) କୁହାଯାଉଥିଲା । ପରବର୍ତ୍ତୀ ସମୟରେ ଗଣିତ ଜ୍ୟୋତିଷର ପ୍ରଭୂତ ଉନ୍ନତି ହୋଇ ତାହା ଜ୍ୟୋତିର୍ବିଜ୍ଞାନ (Astronomy) ଭାବରେ ପରିଚିତ ହେଲା । କିନ୍ତୁ ଫଳିତ ଜ୍ୟୋତିଷ ସେଇ ଆଦିମ ଯୁଗର କାଳ୍ପନିକ ଆଖ୍ୟାନ ମଧ୍ୟରେ ସୀମାବଦ୍ଧ ହୋଇ ଲୋକବିଶ୍ୱାସରେ ରହିଆସିଛି ।

ଜ୍ୟୋତିଷ ବିଦ୍ୟାର ପ୍ରଥମ ସ୍ରଷ୍ଟା ହେଉଛନ୍ତି ପ୍ରାଚୀନ ବେବିଲୋନ୍‌ର ଅଧିବାସୀ ଗଣ, ଯେଉଁମାନେ ବିଶେଷ ଭାବରେ ଯାଯାବର ଜୀବନ ଯାପନ କରୁଥିଲେ । ମୁକ୍ତ ଆକାଶତଳେ ବସବାସ କରି ଦିନର ଅସହ୍ୟ ଗରମ ମଧ୍ୟରେ ବିଭିନ୍ନ ସ୍ଥାନକୁ  ଯାତାୟତ ନକରି ରାତିର ଶୀତଳ ପରିବେଶରେ ଗ୍ରହ ଓ ନକ୍ଷତ୍ର ମାନଙ୍କର ଅବସ୍ଥିତି ଓ ଗତିବିଧିକୁ ଲକ୍ଷ୍ୟକରି ଗମନାଗମନ କରୁଥିଲେ । ବାଲୁକା ସମୁଦ୍ର ମଧ୍ୟରେ ହଜି ନଯାଇ କେଉଁ ନକ୍ଷତ୍ର ଦିଗରେ ଗଲେ କେଉଁ ମରୁଦ୍ୟାନରେ ପହଞ୍ଚିବେ ତାହା ସେମାନେ ନିର୍ଣ୍ଣୟ କରୁଥିଲେ । ପରେ ଏହି ଗ୍ରହମାନଙ୍କ ମଧ୍ୟରେ ଥିବା ଅପେକ୍ଷିକ ଅବସ୍ଥାନ ଏବଂ ନିଶ୍ଚଳ ନକ୍ଷତ୍ର ମାନଙ୍କ ସହିତ ସେମାନଙ୍କର ଆପେକ୍ଷିକ ଅବସ୍ଥାନ ଆଦି ଗଣନା କରିବା ସଙ୍ଗେ ସଙ୍ଗେ ବିଭିନ୍ନ ଦୈବୀବାଣୀକୁ ଏଥି ସହିତ ଯୋଡ଼ି ଦିଆଗଲା । ଅର୍ଥାତ୍ ଯଦି ଗ୍ରହ ମାନଙ୍କର ଏକ ନିର୍ଦ୍ଦିଷ୍ଟ

ଅବସ୍ଥାନ ସମୟରେ କୌଣସି ଉଲ୍ଲେଖନୀୟ ଘଟଣା ପୃଥିବୀ ପୃଷ୍ଠରେ ଘଟିଲା, ତେବେ ସେହି ନିର୍ଦ୍ଦିଷ୍ଟ ଅବସ୍ଥାନର ପୁନରାବୃତ୍ତି ହେବବୋଲି ପରିକଳ୍ପନା କରାଗଲା । ମଣିଷର ବିଭିନ୍ନ ମାନସିକ ଅବସ୍ଥା ଓ ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗ ଉପରେ ମଧ ଗ୍ରହ ଓ ନକ୍ଷତ୍ରଙ୍କ ପ୍ରଭାବ କଳ୍ପନା କରାଯାଇ ମଧ୍ୟଯୁଗର ଶେଷଭାଗ ପର୍ଯ୍ୟନ୍ତ ଫଳିତ ଜ୍ୟୋତିଷ ଔଷଧ ବିଜ୍ଞାନର ଏକ ବିଶେଷ ଅଂଶ ଭାବରେ ପରିଗଣିତ ହେଉଥିଲା । ଖାଲି ସେତିକି ନୁହେଁ, ମଣିଷର ଜନ୍ମ ସମୟରେ କାଳ୍ପନିକ ରାଶିଚକ୍ରର କେଉଁ ସ୍ଥାନରେ କେଉଁ ନକ୍ଷତ୍ରର ଆବିର୍ଭାବ ହେଲା ତାହା ଗଣନା କରି ମଣିଷର ଭବିଷ୍ୟତ ନିର୍ଦ୍ଧାରଣ କରିବା ସମ୍ଭବ ବୋଲି ବିଶ୍ୱାସ ସୃଷ୍ଟି କରାଗଲା ।

କୋଟି କୋଟି କିଲୋମିଟର ଦୂରରେ ଥିବା ନକ୍ଷତ୍ର ମାନଙ୍କର ଆଲୋକ ପୃଥିବୀ ପୃଷ୍ଠରେ ଥିବା ମଣିଷ ମାନଙ୍କ ସ୍ୱଭାବ ଓ ପ୍ରକୃତିକୁ କିପରି ପ୍ରଭାବିତ କରନ୍ତି ତାହା ଅବାସ୍ତବ, ଅଯୌକ୍ତିକ ଓ ଅବୈଜ୍ଞାନିକ ହେଲେ ମଧ ଅତୀତରେ ଗଣିତ ଜ୍ୟୋତିଷ ଅପେକ୍ଷା ଫଳିତ ଜ୍ୟୋତିଷକୁ ଅଧିକ ପ୍ରାଧାନ୍ୟ ଦିଆଯାଉଥିଲା ଏବଂ ରୋମ୍ ଓ ଇଜିପ୍ଟର ଅଧିବାସୀ ମାନଙ୍କ ମଧରେ ଏହା ବିଶେଷ ଆଦୃତ ଥିଲା । ବିଂଶ ଶତାବ୍ଦୀରେ ପାଶ୍ଚାତ୍ୟ ଦେଶ ମାନଙ୍କରେ ଫଳିତ ଜ୍ୟୋତିଷ ଅପେକ୍ଷା ଗଣିତ ଜ୍ୟୋତିଷକୁ ଅଧିକ ପ୍ରାଧାନ୍ୟ ଦିଆଯାଉଥିଲେ ମଧ ଭାରତରେ ଫଳିତ ଜ୍ୟୋତିଷକୁ ଅଧିକ ଗୁରୁତ୍ୱ ଦେବା ପରିତାପର ବିଷୟ । ଗଣିତ ଜ୍ୟୋତିଷର ଉତ୍କର୍ଷ ଯୋଗୁ ମଣିଷ ଚନ୍ଦ୍ରରେ ପାଦଦେବା ବେଳେ ଭାରତରେ ଚନ୍ଦ୍ରପୂଜା ଚାଲିଛି ଏବଂ ଚନ୍ଦ୍ର ମହାଦଶାର କଳ୍ପନା କରାଯାଇ ଚନ୍ଦ୍ରରିଷ୍ଟ ଖଣ୍ଡନ ପାଇଁ ସ୍ୱର୍ଣ୍ଣଚନ୍ଦ୍ର ବା ରୌପ୍ୟଚନ୍ଦ୍ର ପୂଜକକୁ ଦାନ କରାଯାଉଛି । ଫଳିତ ଜ୍ୟୋତିଷ କେତେ ମୂଲ୍ୟହୀନ, କେତେ ଅନ୍ତଃସାରଶୂନ୍ୟ ତାହା ପ୍ରତିପାଦିତ କରିବା ପ୍ରୋକ୍ତ ପ୍ରବନ୍ଧର ଉଦ୍ଦେଶ୍ୟ ।

ଫଳିତ ଜ୍ୟୋତିଷର ମୂଳାଧାର ସମ୍ପର୍କରେ ପ୍ରଥମେ ଆଲୋଚନା କରିବା । ଜ୍ୟୋତିଷୀମାନେ ଯେଉଁ ନବଗ୍ରହ ସମ୍ପର୍କରେ କହନ୍ତି, ତନ୍ମଧ୍ୟରୁ ଚାରୋଟି ଗ୍ରହ ଆଦୌ ଗ୍ରହ ପଦବାଚ୍ୟ ନୁହନ୍ତି । ସୂର୍ଯ୍ୟ ଏକ ନକ୍ଷତ୍ର, ଚନ୍ଦ୍ର ପୃଥିବୀର ଏକ ଉପଗ୍ରହ ଏବଂ ରାହୁ ଓ କେତୁ ମହାକାଶରେ ଦୁଇଟି କାଳ୍ପନିକ ଜ୍ୟାମିତିକ ବିନ୍ଦୁ । ତେଣୁ ନବଗ୍ରହର ଗଣନା ସମ୍ପୂର୍ଣ୍ଣ ଭ୍ରମାତ୍ମକ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ପୁନଶ୍ଚ ଉଇଲିଅମ୍ ହରସ୍କେଲ୍‌ଙ୍କ ଦ୍ୱାରା ୧୭୮୧ ମସିହାରେ ଆବିଷ୍କୃତ 'ୟୁରୋନସ୍', ଜେ.ସି. ଆଡ଼ାମ୍‌ସ ଏବଂ ଲି ଭେରିଅରଙ୍କ ଦ୍ୱାରା ୧୮୪୬ ରେ ଆବିଷ୍କୃତ 'ନେପଚ୍ୟୁନ୍' ଏବଂ ସି.ଡବ୍ଲ୍ୟୁ.ଟମ୍‌ବାଓଙ୍କ ଦ୍ୱାରା ୧୯୩୦ ମସିହା ଜାନୁଆରୀ ୨୩ରେ ଆବିଷ୍କୃତ 'ପ୍ଲୁଟୋ'ଙ୍କ ସମ୍ପର୍କରେ ଜ୍ୟୋତିଷୀ ମାନେ ନୀରବ । ସୌର ମଣ୍ଡଳର ସେହି ତିନିଗୋଟି ଗ୍ରହମାନଙ୍କର ପ୍ରଭାବ କ'ଣ ମଣିଷ ଉପରେ ଅନୁଭୂତ ହୁଏନାହିଁ ? ଏତଦ୍ ବ୍ୟତୀତ Mike Brown, Chad Trujilo & David Rabinowitz ୨୦୦୩

ମସିହାରେ ସୌରମଣ୍ଡଳର ଦଶମଗ୍ରହ UB313 ଆବିଷ୍କାର କରିଛନ୍ତି । ସେ ଗ୍ରହର ପ୍ରଭାବକୁ କୌଣସି ଜ୍ୟୋତିଷୀ ଗଣନା କରନ୍ତି ନାହିଁ ! ଗଣିତ ଜ୍ୟୋତିଷୀମାନେ 'ପ୍ଲୁଟୋ' ଗ୍ରହକୁ ଏବେ ସୌରମଣ୍ଡଳରୁ ବାଦ୍ ଦେଲେଣି । ତାହା ହେଲେ ଜ୍ୟୋତିଷୀମାନଙ୍କ ମୁଣ୍ଡବ୍ୟଥାତ ଆହୁରି ବଢ଼ିଯିବ !

ସପ୍ତାହର ସାତଟି ଦିନର ନାମକରଣ ବେବିଲୋନିଆର ଅଧିବାସୀଗଣ ସେମାନଙ୍କ ଦ୍ୱାରା ଆବିଷ୍କୃତ ସାତଟି ଗ୍ରହର ନାମ ଅନୁସାରେ କରିଥିଲେ । ସେମାନେ ଯଦି ନଅଟି ଗ୍ରହ ଆବିଷ୍କାର କରିଥାଆନ୍ତେ ତେବେ ସପ୍ତାହକ ସାତ ଦିନ ନହୋଇ ନଅଦିନ ହୋଇଥାଆନ୍ତା । ବେବିଲୋନିଆର ଅଧିବାସୀଙ୍କ ପରେ ଇହୁଦୀମାନେ ସାତଦିନର ସପ୍ତାହ ବିଷୟରେ ଜାଣିଥିଲେ । ଓଲଡ୍ ଟେଷ୍ଟାମେଣ୍ଟରେ ଉଲ୍ଲେଖ ଅଛି ଯେ ଈଶ୍ୱର ଛଅଦିନ ମଧ୍ୟରେ ବିଶ୍ୱକୁ ସର୍ଜନା କରିଥିଲେ ଏବଂ ସପ୍ତମଦିନ ବିଶ୍ରାମ ନେଇଥିଲେ । ଶେଷ ଦିନକୁ ସେମାନେ 'ସାବାଥ' ବୋଲି ନାମକରଣ କରିଛନ୍ତି କିନ୍ତୁ ଅନ୍ୟ କୌଣସି ଦିନର ନାମୋଲ୍ଲେଖ ମଧ୍ୟ କରିନାହାନ୍ତି । ଏପରିକି ନିଉ ଟେଷ୍ଟାମେଣ୍ଟରେ ସପ୍ତାହର ଦିନଗୁଡ଼ିକୁ ପ୍ରଥମ ଦିନ, ଦ୍ୱିତୀୟ ଦିନ ଆଦି କୁହାଯାଇଛି ସିନା ଦିନର ନାମ ଉଲ୍ଲେଖ କରାଯାଇନାହିଁ । ଜ୍ୟୋତିଷୀମାନେ କହନ୍ତି ବେଦରେ ଗ୍ରହମାନଙ୍କର ନାମ ଉଲ୍ଲେଖ ଅଛି । କିନ୍ତୁ ବିଶିଷ୍ଟ ସଂସ୍କୃତ ପଣ୍ଡିତ ପି.ଭି. କାଣେ Survey of Sanskrit Literature (୧୯୬୨) ପୃଷ୍ଠା ୨୭୫-୨୭୭ରେ ଲେଖିଛନ୍ତି ଯେ ସପ୍ତାହର ନାମ ଗୁଡ଼ିକ ବେଦର କୌଣସିଠାରେ ଉଲ୍ଲେଖ ନାହିଁ । ଗ୍ରହମାନଙ୍କ ନାମାନୁସାରେ ସପ୍ତାହର ଦିନଗୁଡିକ ବିଷୟରେ ଭାରତୀୟମାନଙ୍କର ଜ୍ଞାନ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀ ଓ ଖ୍ରୀଷ୍ଟପର ପ୍ରଥମ ଶତାବ୍ଦୀ ମଧ୍ୟରେ ହୋଇଥିବା ସମ୍ଭବ । ଅନ୍ୟ ଜଣେ ସଂସ୍କୃତ ପଣ୍ଡିତ ସି.କେ. ରାଜା ସେହି ପୁସ୍ତକରେ ଲେଖିଛନ୍ତି "ବୈଦିକ ପରମ୍ପରାରେ ଜ୍ୟୋତିଷ ଶାସ୍ତ୍ରର ସ୍ଥାନ ନାହିଁ" । ଏପରିକି ଖ୍ରୀଷ୍ଟପୂର୍ବ ୧୫୦୦ ବର୍ଷରେ ରଚିତ "ବେଦାଙ୍ଗ ଜ୍ୟୋତିଷ" ରେ ମଧ୍ୟ ଗ୍ରହମାନଙ୍କର ନାମୋଲ୍ଲେଖ ନାହିଁ, ଯଦିଓ ଖ୍ରୀଷ୍ଟପୂର୍ବ ୨୦୦୦ ବର୍ଷ ତଳେ ବେବିଲୋନିଆର ଅଧିବାସୀମାନେ ଗ୍ରହମାନଙ୍କ ସମ୍ପର୍କରେ ଜାଣିଥିଲେ । ତେଣୁ ଜ୍ୟୋତିଷୀ ମାନେ ଜ୍ୟୋତିଷଶାସ୍ତ୍ରକୁ ଯେଉଁ ବୈଦିକ ପୁଟ ଦେଉଛନ୍ତି ତାହା ଭ୍ରମାତ୍ମକ ।

ବର୍ତ୍ତମାନ ଜ୍ୟୋତିଷୀମାନଙ୍କ ୧୨ଟି ରାଶି ଓ ୨୭ ନକ୍ଷତ୍ର ସମ୍ପର୍କରେ ଆଲୋଚନା କରିବା । ପ୍ରାୟ ଖ୍ରୀଷ୍ଟପୂର୍ବ ୭୦୦ ବେଳକୁ ବେବିଲୋନିଆର ଅଧିବାସୀ ଗଣ ୩୬୦ ଡିଗ୍ରୀର ରାଶିଚକ୍ର ତିଆରି କରି ତାକୁ ସମାନ ୧୨ ଭାଗରେ ବିଭକ୍ତ କରି ସାରିଥିଲେ । ଗ୍ରୀକ୍‌ମାନେ ସେହି ପଦ୍ଧତିକୁ ଅନୁସରଣ କରିଥିଲେ ଏବଂ ଗ୍ରୀକ୍ ମାନଙ୍କଠାରୁ ଭାରତୀୟମାନେ ସେହି ପଦ୍ଧତି ଗ୍ରହଣ କରିଥିଲେ ବୋଲି ବରାହମିହିର ମୁକ୍ତ କଣ୍ଠରେ ସ୍ୱୀକର କରିଛନ୍ତି । ସେ

ତାଙ୍କର ବୃହତ୍ ସଂହିତାର ୨ୟ ଅଧ୍ୟାୟ ୧୪ଶ ଶ୍ଳୋକ ଏବଂ ବୃହତ ଜାତକମ୍‌ର ୧ମ ଅଧ୍ୟାୟ ୮ମ ଶ୍ଳୋକରେ ଏହା ଉଲ୍ଲେଖ କରିଛନ୍ତି । କିନ୍ତୁ ପ୍ରଶ୍ନ ଉଠେ, ଜ୍ୟୋତିଷୀମାନେ ସମଗ୍ର ମଣିଷ ସମାଜରେ ୧୨ଟି ରାଶି ଅନୁଯାୟୀ ୧୨ ପ୍ରକାର ବ୍ୟକ୍ତିତ୍ୱ ଅଛନ୍ତି ବୋଲି ଯାହା କହିଛନ୍ତି, ତାହା କେତେଦୂର ଠିକ୍ ? ଜ୍ୟୋତିଷୀମାନଙ୍କର ଏହି ବିଭକ୍ତୀକରଣ ସମ୍ପୂର୍ଣ୍ଣ ମନଗଢ଼ା ଓ ଅବାସ୍ତବ । କାରଣ ପ୍ରତ୍ୟେକ ମନୁଷ୍ୟ ପ୍ରତ୍ୟେକଙ୍କଠାରୁ ସମ୍ପୂର୍ଣ୍ଣ ପୃଥକ୍ । ଜଣକର ରୂପ, ଗୁଣ, ଆଚରଣ ବା ମାନସିକତା ଅନ୍ୟ କାହା ସହିତ ସମାନ ନୁହଁ । Every man is an island ସମସ୍ତେ ସମସ୍ତଙ୍କ ଠାରୁ ସମ୍ପୂର୍ଣ୍ଣ ଭିନ୍ନ । ତେଣୁ ସମଗ୍ର ମଣିଷ ସମାଜକୁ ୧୨ ଭାଗରେ ବିଭକ୍ତ କରି ସେମାନଙ୍କର କାର୍ଯ୍ୟାବଳୀ ଓ ଚରିତ୍ରକୁ ୧୨ ଭାଗରେ ସୀମିତ କରିବା ଏକ ଅବାନ୍ତର କଳ୍ପନା ।

ବଡ଼ କୌତୂହଳର ବିଷୟ, ଜ୍ୟୋତିଷୀ ମାନଙ୍କ ୧୨ଟି ରାଶିର ବିଭକ୍ତୀକରଣ ପୂର୍ବରୁ ସମଗ୍ର ମନୁଷ୍ୟ ସମାଜକୁ ୨୭ଟି କ୍ଷେତ୍ର ଅନୁଯାୟୀ ବିଭକ୍ତୀକରଣ ଭାରତୀୟମାନେ କରିଥିଲେ । ଭାରତୀୟ ଜ୍ୟୋତିଷୀ ମାନଙ୍କ ଏହି ବିଭକ୍ତୀକରଣ ବୈଦିକ ଯୁଗରୁ ପ୍ରଚଳିତ ଥିଲେ ମଧ୍ୟ ବୈଦେଶିକ ପ୍ରଭାବରେ ୧୨ଟି ରାଶିର ବିଭକ୍ତୀକରଣ ପରବର୍ତ୍ତୀ ସମୟରେ ପ୍ରବେଶ କରିଥିଲା । ତେବେ ପ୍ରଶ୍ନ ଉଠେ, ଆକାଶରେ ୨୭ଟି ନକ୍ଷତ୍ର ଅଛନ୍ତି ନା ୨୭ଟି ନକ୍ଷତ୍ର ପୁଞ୍ଜ ଅଛି ? ମହାକାଶରେ ଅସଂଖ୍ୟ ନକ୍ଷତ୍ର ଆଉ ନକ୍ଷତ୍ର ପୁଂଜ ଥିବାବେଳେ କେବଳ ୨୭ଟି ନକ୍ଷତ୍ରର ପ୍ରଭାବ ମନୁଷ୍ୟ ଉପରେ ଅନୁଭୂତ ହୁଏ ବୋଲି କହିବା ଭ୍ରମାତ୍ମକ ନୁହେଁକି ? ଜ୍ୟୋତିଷୀମାନେ ଜାଣନ୍ତି ନାହିଁ ଯେ ସୂର୍ଯ୍ୟ ବ୍ୟତିରେକ ପୃଥିବୀର ନିକଟତମ ନକ୍ଷେତ୍ରର ରଶ୍ମି ପୃଥିବୀ ପୃଷ୍ଠରେ ପହଞ୍ଚିବାକୁ ସାଢ଼େ ୪ ବର୍ଷ ଲାଗିଥାଏ । ଅନେକ ନକ୍ଷତ୍ର ପୃଥିବୀଠାରୁ କୋଟି କୋଟି ଆଲୋକବର୍ଷର ଦୂରତାରେ ଅବସ୍ଥାନ କରୁଛନ୍ତି । ଗୋଟିଏ ଗୋଟିଏ ନକ୍ଷତ୍ର ରଶ୍ମି ପୃଥିବୀ ପୃଷ୍ଠରେ ପହଞ୍ଚିବା ପୂର୍ବରୁ ଜଣେ ବ୍ୟକ୍ତି କେବଳ ନୁହେଁ, ତାର ଅଣନାତି ପଣନାତି ମଧ୍ୟ ଜନ୍ମ ହୋଇ ମୃତ୍ୟୁବରଣ କରିସାରିଥିବ । ଏପରିକି ଯଦି କୌଣସି ନକ୍ଷତ୍ର ପ୍ରାକୃତିକ କାରଣବଶତଃ ମହାକାଶରେ ଖଣ୍ଡ ଖଣ୍ଡ ହୋଇ ଅନ୍ତର୍ଦ୍ଧାନ ହୋଇଯାଏ ତାହା ଜାଣିବା ମଣିଷ ପକ୍ଷରେ ଅସମ୍ଭବ । ତେଣୁ ମଣିଷର ଜନ୍ମ ସମୟରେ ନକ୍ଷତ୍ର ମାନଙ୍କର ପ୍ରଭାବ ଗଣନା କରିବା ଏକ ହାସ୍ୟାସ୍ପଦ ବ୍ୟାପାର ।

ପାଞ୍ଚ ହଜାରରୁ ଅଧିକ ବର୍ଷ ପୂର୍ବେ ଯେତେବେଳେ ଗ୍ରହ, ନକ୍ଷତ୍ର ମାନଙ୍କ ସମ୍ପର୍କରେ ମଣିଷର ଧାରଣା ଅସ୍ପଷ୍ଟ ବା ଭ୍ରମାତ୍ମକ ଥିଲା ସେ ସମୟରେ ମଧ୍ୟ ଜ୍ୟୋତିଷମାନେ ଭବିଷ୍ୟବାଣୀ କରୁଥିଲେ ବୋଲି ଇତିହାସରୁ ପ୍ରମାଣ ମିଳେ । ହିନ୍ଦୁ, ବୌଦ୍ଧ, ଖ୍ରୀଷ୍ଟିଆନ୍ ଏବଂ ମୁସଲ୍‌ମାନ ମାନଙ୍କର ଧର୍ମଗ୍ରନ୍ଥ ଗୁଡିକରେ ବର୍ଣ୍ଣିତ ହୋଇଛି ଯେ ପୃଥିବୀର ସୃଷ୍ଟି ପ୍ରଥମେ ହୋଇଥିଲା ଏବଂ ସୂର୍ଯ୍ୟ ଚନ୍ଦ୍ର ଆଦି ଗ୍ରହ ନକ୍ଷତ୍ରମାନେ ପରବର୍ତ୍ତୀ ସମୟରେ ସୃଷ୍ଟି ହୋଇଥିଲେ । ଏହି

ଭ୍ରାନ୍ତ ଧାରଣା ଉପରେ ଅତୀତର ଜ୍ୟୋତିର୍ବିଦ୍ୟା ପର୍ଯ୍ୟବସିତ । ବାଇବେଲ୍‌ରେ ଈଶ୍ୱର କହିଛନ୍ତି -Towards the end of the world the sun and stars will fall to the earth ବାଇବେଲର ଈଶ୍ୱର ଜାଣିନଥିଲେ ଯେ ସୂର୍ଯ୍ୟ ଓ ଅନ୍ୟାନ୍ୟ ନକ୍ଷତ୍ର ମାନେ ପୃଥିବୀଠାରୁ ହଜାର ହଜାର ଗୁଣରେ ବଡ଼ । ପୃଥିବୀର ଆକାର ଗ୍ରହ ନକ୍ଷତ୍ର ମାନଙ୍କଠାରୁ ଯଥେଷ୍ଟ ବଡ଼ ଥିଲା ବୋଲି ଅତୀତରେ ଏକ ଭ୍ରାନ୍ତ ଧାରଣା ଥିଲା । ପୁନଶ୍ଚ ପୃଥିବୀ ଗୋଲାକାର ନୁହଁ ଏବଂ ଏକ ସମତଳ ଭୂମି ବୋଲି ମଣିଷ ମାନଙ୍କର ଏକ ଭ୍ରାନ୍ତ ଧାରଣା ୧୫୪୩ ମସିହା ପର୍ଯ୍ୟନ୍ତ ଥିଲା । ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଆଫ୍ରିକାରେ Flat Earth Society ଥିଲା ଏବଂ ଲୋକମାନେ ପୃଥିବୀ ସମତଳ ବୋଲି ବିଶ୍ୱାସ କରିବା କଥା ବର୍ଟ୍ରାଣ୍ଡ ରସେଲ୍ ଲେଖିଛନ୍ତି । ବିଶ୍ୱ ସମ୍ପର୍କରେ ମଣିଷର ଜ୍ଞାନର ପରିବର୍ତ୍ତନ ଖ୍ରୀଷ୍ଟପୂର୍ବ ୧୫୦ଠାରୁ ବା ଟଲେମିଙ୍କ ସମୟରେ ହୋଇଥିଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଟଲେମି କହିଥିଲେ-"ଚନ୍ଦ୍ର, ବୁଧ, ଶୁକ୍ର, ସୂର୍ଯ୍ୟ, ମଙ୍ଗଳ, ବୃହସ୍ପତି ଓ ଶନି ଆଦି ଗ୍ରହ ପୃଥିବୀ ଚତୁଃପାର୍ଶ୍ୱରେ ଭ୍ରମଣଶୀଳ ।" ପୃଥିବୀ ହେଉଛି ସମଗ୍ର ବିଶ୍ୱର କେନ୍ଦ୍ରବିନ୍ଦୁ ଏବଂ ଟଲେମିଙ୍କ ଗ୍ରହାନୁକ୍ରମ ଭ୍ରମାତ୍ମକ ହୋଇଥିଲେ ମଧ୍ୟ ଅତୀତର ଜ୍ୟୋତିର୍ବିଦ୍ୟା ଏହି ଭ୍ରାନ୍ତ ଧାରଣା ଉପରେ ଆଧାରିତ ଥିଲା । କିନ୍ତୁ କୋପରନିକସ୍‌ଙ୍କ ଆବିର୍ଭାବ ପରେ ସେ ଧାରଣା ସମ୍ପୂର୍ଣ୍ଣ ବଦଳିଗଲା । ବିଶ୍ୱର କେନ୍ଦ୍ରବିନ୍ଦୁ ସୂର୍ଯ୍ୟ ଏବଂ ପୃଥିବୀ ତା'ର ଚତୁର୍ପାର୍ଶ୍ୱରେ ପ୍ରଦକ୍ଷିଣ କରୁଛି ବୋଲି ପ୍ରମାଣିତ ହେଲା । ବିଶ୍ୱ ଯେ ପୃଥିବୀ କୈନ୍ଦ୍ରିକ ନୁହଁ ଏବଂ ସୂର୍ଯ୍ୟ କୈନ୍ଦ୍ରିକ କୋପରନିକସ୍‌ଙ୍କ ଏହି ତତ୍ତ୍ୱକୁ ସମର୍ଥନ କରି ଅତୀତରେ ଗାଲିଲିଓ କାରାଗାରରେ ବନ୍ଦୀ ହୋଇଛନ୍ତି ଏବଂ ଜିଓଡାନୋ ବ୍ରୁନୋଙ୍କୁ ଜ୍ୟୋତିଷୀ ପ୍ରଭାବିତ ରାଜ୍ୟ ଓ ଧର୍ମଯାଜକ ମାନେ ନିଆଁରେ ପୋଡି ମାରି ଦେଇଛନ୍ତି । ଟାଇକୋବ୍ରାହି (Ty cho Brahe) କିନ୍ତୁ ଟଲେମି ଓ କୋପରନିକସଙ୍କ ତତ୍ତ୍ୱ ମଧ୍ୟରେ ଏକ ସମ୍ପର୍କର ସେତୁ ପ୍ରତିଷ୍ଠାକରି କହିଥିଲେ ଯେ, ଗ୍ରହମାନେ ସୂର୍ଯ୍ୟଙ୍କ ଚତୁଃପାର୍ଶ୍ୱରେ ଭ୍ରମଣ କଲେ ମଧ୍ୟ ସୂର୍ଯ୍ୟ ସମେତ ସମସ୍ତ ଗ୍ରହ ପୃଥିବୀର ଚତୁଃପାର୍ଶ୍ୱରେ ପ୍ରଦକ୍ଷିଣ କରୁଛନ୍ତି । କିନ୍ତୁ ବର୍ତ୍ତମାନର ଜ୍ୟୋତିର୍ବିଜ୍ଞାନୀମାନେ ପ୍ରମାଣ କରି ସାରିଲେଣି ଯେ ସୂର୍ଯ୍ୟ ମଧ୍ୟ ବିଶ୍ୱର କେନ୍ଦ୍ରବିନ୍ଦୁ ନୁହଁ । ସୌର ମଣ୍ଡଳ ହେଉଛି ମହାବିଶ୍ୱର ଏକ କ୍ଷୁଦ୍ରାତିକ୍ଷୁଦ୍ର ଅଂଶ ବିଶେଷ । ତେଣୁ ଅତୀତର ଜ୍ୟୋତିଷ ଗଣନା କିପରି ସୀମିତ ଓ ଭ୍ରାନ୍ତଧାରଣା ଗୁଡ଼ିକ ଉପରେ ପର୍ଯ୍ୟବସିତ ଥିଲା ତାହା ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ । କିନ୍ତୁ, ପରିତାପର ବିଷୟ ବିଂଶ ଶତାବ୍ଦୀର ଶେଷଭାଗରେ ୧୯୮୦ ମସିହାରେ ପ୍ରକାଶିତ Astrological Magazine ର ନଭେମ୍ବର ସଂଖ୍ୟାରେ ବିଶିଷ୍ଟ ଜ୍ୟୋତିର୍ବିଦ୍ Cyrus D.F. Abayakoon ଲେଖିଛନ୍ତି "କୋପରନିକସ୍‌ଙ୍କ ସୂର୍ଯ୍ୟକୈନ୍ଦ୍ରିକ ତତ୍ତ୍ୱ ଅପେକ୍ଷା ପ୍ରାଚୀନ ଭାରତୀୟ ମାନଙ୍କ ପୃଥିବୀ କୈନ୍ଦ୍ରିକ ତତ୍ତ୍ୱ ଅଧିକ ବିଜ୍ଞାନ ସମ୍ମତ ।" ଏକଥା ପଢ଼ି ଓଡିଶାର ଜ୍ୟୋତିଷୀମାନେ ଖୁସିରେ ନିଶ୍ଚୟ ଫାଟିପଡିବେ, କାରଣ ମହାମହୋପାଧ୍ୟାୟ ସାମନ୍ତ

ଚନ୍ଦ୍ରଶେଖର ମଧ୍ୟ ବିଶ୍ୱାସ କରୁଥିଲେ ପୃଥିବୀ ସ୍ଥିର ଏବଂ ସୂର୍ଯ୍ୟଚନ୍ଦ୍ର ଆଦି ଗ୍ରହ, ନକ୍ଷତ୍ରମାନେ ପୃଥିବୀର ଚତୁଃପାର୍ଶ୍ୱରେ ଭ୍ରମଣଶୀଳ । ମଣିଷ ଚନ୍ଦ୍ରରେ ବହୁବାର ପଦଚାରଣ କରି ମଙ୍ଗଳ ଗ୍ରହକୁ ଯିବାପାଇଁ ଉଦ୍ୟମ କରୁଥିବା ବେଳେ ପୃଥିବୀକୁ ସ୍ଥିର କହି ସୂର୍ଯ୍ୟ, ଚନ୍ଦ୍ର ତାକୁ ପ୍ରଦକ୍ଷିଣ କରୁଛି ବୋଲି କହିବା କେତେଦୂର ଯୁକ୍ତି ଯୁକ୍ତ ବା ବିଜ୍ଞାନସମ୍ମତ ତାହା ସହଜରେ ଅନୁମେୟ ।

ଫଳିତ ଜ୍ୟୋତିଷୀମାନେ କହନ୍ତି ଯେ ଫଳିତ ଜ୍ୟୋତିଷ ବିଜ୍ଞାନ ସମ୍ମତ, କାରଣ ବଡ଼ ବଡ଼ ବୈଜ୍ଞାନିକ, ଜ୍ୟୋତିର୍ବିଦ ମାନେ ଫଳିତ ଜ୍ୟୋତିଷରେ ବିଶ୍ୱାସ କରନ୍ତି । ସେମାନେ କହନ୍ତି କେପ୍‌ଲର୍, ଗାଲିଲିଓ ଏବଂ ନିଉଟନ୍ ଫଳିତ ଜ୍ୟୋତିଷରେ ବିଶ୍ୱାସ କରୁଥିଲେ । ଅବଶ୍ୟ କେପ୍‌ଲର ଫଳିତ ଜ୍ୟୋତିଷ ଅଧ୍ୟୟନ କରିଥିଲେ, କିନ୍ତୁ ସେ ଗଣିତ ଜ୍ୟୋତିଷରେ ଅଧିକ ମନୋନିବେଶ କରିଥିଲେ । ଫଳିତ ଜ୍ୟୋତିଷକୁ ସମ୍ମାନ ଦେଇଥିଲେ ସେ କପର୍ଦ୍ଦକ ଶୂନ୍ୟ ହୋଇ ପ୍ରାଣତ୍ୟାଗ କରି ନଥାନ୍ତେ । ଗାଲିଲିଓ ଫଳିତ ଜ୍ୟୋତିଷ ଅଧ୍ୟୟନ କରି ଟସ୍‌କାନିର ରାଜା ଫର୍ଡିନାଣ୍ଡଙ୍କ ଜନ୍ମଜାତକ ଅବଶ୍ୟ ତିଆରି କରିଥିଲେ । କିନ୍ତୁ ସେ ନିଜର ଜାତକ ମଧ୍ୟ କରିଥିଲେ ଏବଂ ନିଜ ସ୍ଥିରୀକୃତ ମୃତ୍ୟୁ ଦିବସର କେତେକ ସପ୍ତାହ ପରେ ମୃତ୍ୟୁ ବରଣ କରିଥିଲେ । ନିଉଟନ୍ କିନ୍ତୁ ତାଙ୍କର କୌଣସି ପୁସ୍ତକ ବା ପତ୍ରରେ ଫଳିତ ଜ୍ୟୋତିଷ ବିଷୟ ଉଲ୍ଲେଖ କରିନାହାନ୍ତି । କାହିଁକି ତାଙ୍କୁ ଫଳିତ ଜ୍ୟୋତିଷୀମାନେ ନିଜ ଆଡକୁ ଟାଣୁଛନ୍ତି, ବୁଝା ପଡୁନାହିଁ ବରଂ ସପ୍ତଦଶ ଶତାବ୍ଦୀରେ ନିଉଟନ୍‌ଙ୍କ ମାଧ୍ୟାକର୍ଷଣ ଶକ୍ତିର ଆବିଷ୍କାର ଫଳିତ ଜ୍ୟୋତିଷର ସ୍ଥିତିକୁ ଦୋହଲାଇ ଦେଇଥିଲା ।

ଏହା ଅବଶ୍ୟ ସତ୍ୟ ଯେ ବତାସ, ତୋଫାନ, ଘୂର୍ଣ୍ଣିବାତ୍ୟା, ସାମୁଦ୍ରିକ ଜୁଆର, ବଜ୍ରପାତ ଏବଂ ଉଲ୍‌କାପାତ ଆଦି ଅନେକ ପ୍ରାକୃତିକ ବିପର୍ଯ୍ୟୟ ପୃଥିବୀ ବାହାରର ଶକ୍ତିମାନଙ୍କ ଯୋଗୁ ଘଟିଥାଏ । କିନ୍ତୁ ସେହିସବୁ ପ୍ରାକୃତିକ ବିପର୍ଯ୍ୟୟ ପରି ମଣିଷର ଭାଗ୍ୟକୁ ମଧ୍ୟ ସୂର୍ଯ୍ୟ ଚନ୍ଦ୍ର ଆଦି ପୃଥିବୀର ବାହ୍ୟ ଶକ୍ତିଗଣ ପରିଚାଳନା କରୁଛନ୍ତି ବୋଲି ଭାବିବା ଏକ ଭ୍ରମାତ୍ମକ ବିଶ୍ୱାସ । ଆମେ ଜାଣୁ ଯେ, ନିଜ ଅକ୍ଷଦଣ୍ଡରେ ପୃଥିବୀର ଘୂର୍ଣ୍ଣନ ଯୋଗୁ ଦିନ, ରାତିହୁଏ ଏବଂ ସୂର୍ଯ୍ୟଙ୍କ ଚତୁର୍ଦ୍ଦିଗରେ ଘୂର୍ଣ୍ଣନ ଯୋଗୁ ବିଭିନ୍ନ ଋତୁ ହୋଇଥାଏ ବା ଜଳବାୟୁରେ ପରିବର୍ତ୍ତନ ଘଟିଥାଏ । ଚନ୍ଦ୍ରଙ୍କ ହ୍ରାସ ବୃଦ୍ଧି ଜନିତ ପ୍ରଭାବରେ ସମୁଦ୍ରର ତରଙ୍ଗ ଉଠେ ଏବଂ ସୂର୍ଯ୍ୟ, ଚନ୍ଦ୍ର, ପୃଥିବୀ ଏକ ରେଖାରେ ଅବସ୍ଥାନ କଲେ ସୂର୍ଯ୍ୟପରାଗ ବା ଚନ୍ଦ୍ରଗ୍ରହଣ ହୋଇଥାଏ । କିନ୍ତୁ ରାତି ଯଦି ହୁଏ ତେବେ ସମସ୍ତଙ୍କ ପାଇଁ ରାତିହୁଏ, ଶୀତ ହେଲେ ସମସ୍ତଙ୍କ ପାଇଁ ଶୀତ ହୁଏ, ଚନ୍ଦ୍ର ଗ୍ରହଣ ବା ସୂର୍ଯ୍ୟପରାଗ ବିଭିନ୍ନ ରାଶି ନକ୍ଷତ୍ରରେ ଜନ୍ମ ହୋଇଥିବା ସମସ୍ତ ଲୋକମାନଙ୍କ ପାଇଁ ହୋଇଥାଏ । ବିଭିନ୍ନ ରାଶି ନକ୍ଷତ୍ରର ଲୋକମାନଙ୍କ ପାଇଁ ସମୁଦ୍ରର ଜୁଆର ବା ଭଟ୍ଟା ଭିନ୍ନ ଭିନ୍ନ ହୋଇନଥାଏ ।

ଅନେକ ଫଳିତ ଜ୍ୟୋତିଷୀ କହନ୍ତି ଫଳିତ ଜ୍ୟୋତିଷ ବିଜ୍ଞାନ ସମ୍ମତ କିନ୍ତୁ ଏହା ଉପରେ ଯଥେଷ୍ଟ ବୈଜ୍ଞାନିକ ଗବେଷଣା ହୋଇନାହିଁ । ସେମାନେ ଜାଣି ରଖିବା ଉଚିତ୍ ଏହା ଉପରେ ଅତୀତରେ ଅନେକ ଗବେଷଣା ହୋଇଛି ଏବଂ ସେ ସମସ୍ତ ଗବେଷଣା ଦ୍ୱାରା ଫଳିତ ଜ୍ୟୋତିଷୀ ଏକ ଅବୈଜ୍ଞାନିକ, ଅବାସ୍ତବ ଚିନ୍ତାଧାରା ବୋଲି ପ୍ରମାଣିତ ହୋଇଛି । ଫଳିତ ଜ୍ୟୋତିଷୀମାନେ କହନ୍ତି କେତେକ ନିର୍ଦ୍ଦିଷ୍ଟ ରାଶି ନକ୍ଷତ୍ରର ବ୍ୟକ୍ତିମାନେ ରାଜନୀତିଜ୍ଞ କିମ୍ୱା ବୈଜ୍ଞାନିକ ହେବେ । Case Western Reserve University ର ପଦାର୍ଥ ବିଜ୍ଞାନୀ Prof. John McGervey, American Men of Science ପୁସ୍ତକରୁ ୧୬୬୩ ଜଣ ବୈଜ୍ଞାନିକ ମାନଙ୍କର ଜନ୍ମ ତାରିଖ ସଂଗ୍ରହ କରି ଏବଂ Who's who in American Politics ପୁସ୍ତକରୁ ୬୪୭୫ ଜଣ ରାଜନୀତିଜ୍ଞ ମାନଙ୍କ ଜନ୍ମତାରିଖ ସଂଗ୍ରହ କରି ତନ୍ନତନ୍ନ କରି ପରୀକ୍ଷା କରିଥିଲେ । ରାଶି ନକ୍ଷତ୍ର ଯୋଗୁ ବ୍ୟକ୍ତିତ୍ୱର ଯେଉଁ ବିଭାଜୀକରଣ ଫଳିତ ଜ୍ୟୋତିଷୀମାନେ କରିଥିଲେ ତାହା ଭୁଲ୍ ବୋଲି ପ୍ରତିପାଦିତ ହୋଇଥିଲା । ଅନେକ ରାଜନୀତିଜ୍ଞ ହେବା ବ୍ୟକ୍ତି ବୈଜ୍ଞାନିକ ହୋଇଥିଲେ ଏବଂ ଅନେକ ବୈଜ୍ଞାନିକ ହେବା ବ୍ୟକ୍ତି ରାଜନୀତିଜ୍ଞ ହୋଇଥିଲେ । ଫଳିତ ଜ୍ୟୋତିଷୀମାନେ ବରକନ୍ୟାଙ୍କ ରାଶି ନକ୍ଷତ୍ରର ମେଳକ କରି କହନ୍ତି କେଉଁମାନଙ୍କର ବୈବାହିକ ଜୀବନ ସୁଖମୟ ହେବ ଏବଂ କେଉଁମାନଙ୍କର ଦୁଃଖମୟ ହେବ । ମିସିଗନ୍ ଷ୍ଟେଟ୍ ୟୁନିଭରସିଟିର ମନସ୍ତତ୍ତ୍ୱବିତ୍ Bernard Silverman ୨୯୭୮ ଟି ବିବାହିତ ଦମ୍ପତିଙ୍କର ଏବଂ ୪୭୮ ବିବାହ ବିଚ୍ଛେଦ ଘଟିଥିବା ଦମ୍ପତିଙ୍କର ଜନ୍ମ ଜାତକ ସଂଗ୍ରହ କରି ଅନୁଧ୍ୟାନ କରିଥିଲେ । ସେ ସବୁ ଦମ୍ପତି ମାନଙ୍କର ବୈବାହିକ ଜୀବନ ଓ ଫଳିତ ଜ୍ୟୋତିଷୀଙ୍କ ଭବିଷ୍ୟତବାଣୀ ମଧ୍ୟରେ ସେ କୌଣସି ସାମଞ୍ଜସ୍ୟ ପାଇଲେ ନାହିଁ । କାରଣ ବିବାହ ଦୁଃଖମୟ ହେବ ବୋଲି ଭବିଷ୍ୟତବାଣୀ କରାଯାଇଥିବା ଦମ୍ପତିମାନେ ସୁଖରେ କାଳାତିପାତ କରୁଥିଲେ ଏବଂ ବୈବାହିକ ଜୀବନ ସୁଖମୟ ହେବ ବୋଲି ଭବିଷ୍ୟତବାଣୀ କରାଯାଇଥିବା ଦମ୍ପତିଙ୍କର ବିବାହ ବିଚ୍ଛେଦ ଘଟିଥିଲା । ମଙ୍ଗଳାଧିପତି ରାଶି ନକ୍ଷତ୍ରର ବ୍ୟକ୍ତି ସାହାସୀ ଏବଂ ଶୁକ୍ରାଧିପତି ରାଶି ନକ୍ଷତ୍ରର ବ୍ୟକ୍ତି ସ୍ନେହୀ ଓ ସୌନ୍ଦର୍ଯ୍ୟ ପ୍ରିୟ ବୋଲି ଫଳିତ ଜ୍ୟୋତିଷୀମାନେ କହନ୍ତି । ଜର୍ଜ ୱାସିଙ୍ଗଟନ୍ ୟୁନିଭରସିଟିର Prof. James Barth ଏବଂ James Bennett ୧୯୬୨ ଠାରୁ ୧୯୭୦ ମଧ୍ୟରେ ନୌସେନାରେ ସୈନିକ ଥିବା ବ୍ୟକ୍ତିମାନଙ୍କର ଜନ୍ମଜାତକ ସଂଗ୍ରହ କରି ଅନୁଧ୍ୟାନ କରିଥିଲେ । କିନ୍ତୁ ଅଧିକାଂଶ ସୈନ୍ୟଙ୍କ ଜନ୍ମଜାତକରେ ଭବିଷ୍ୟତବାଣୀ କରାଯାଇ ଥିଲା ଯେ ସେମାନେ ସାହସୀ ନହୋଇ ସୌନ୍ଦର୍ଯ୍ୟ ଉପଭୋଗ କରିବେ । ଗୋଟିଏ ସମୟରେ ବିଭିନ୍ନ ସ୍ଥାନରେ ଜନ୍ମଲାଭ କରିଥିବା ଶିଶୁ ମାନଙ୍କୁ time twins କୁହାଯାଏ । ୧୯୫୮ ମାର୍ଚ୍ଚ ମାସରେ କେତେକ ମିନିଟ୍ ଅନ୍ତରାଳରେ କାନାଡ଼ାରେ ଜନ୍ମଲାଭ କରିଥିବା ୨୦୦୦ ଶିଶୁ ବା time twins ଙ୍କର

ଜନ୍ମଜାତକ ବୈଜ୍ଞାନିକ Geoffrey Dean ଏବଂ ମନସ୍ତତ୍ତ୍ୱବିଦ Lvan Kelly ଅନୁଧ୍ୟାନ କରିଥିଲେ । ଫଳିତ ଜ୍ୟୋତିଷୀମାନେ ଭବିଷ୍ୟତବାଣୀ କରିଥିବା ଶତାଧିକ ଲକ୍ଷଣ ଯଥା- ବୃତ୍ତି, ମାନସିକ ଅବସ୍ଥା, ବୈବାହିକ ଜୀବନ, ପ୍ରବୃତ୍ତି, ସାମାଜିକତା, ଜ୍ଞାନ ଗାରିମା, କଳାତ୍ମକ ଗୁଣ, କ୍ରୀଡ଼ା ନୈପୁଣ୍ୟତା ତଥା ଗାଣିତିକ ବୁଦ୍ଧି ଆଦି ପରୀକ୍ଷା ନିରୀକ୍ଷା କରି ସେମାନେ ଦେଖିଲେ time twins ମାନଙ୍କ ମଧ୍ୟରେ କୌଣସି ସାମ୍ୟତା ନାହିଁ । ଏହି ପର୍ଯ୍ୟବେକ୍ଷଣର ଫଳାଫଳ ୨୦୦୩ ମସିହାରେ ପ୍ରକାଶିତ Journal of Consciousness Studies ର ଅଗଷ୍ଟ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ଏ ସମସ୍ତ ବୈଜ୍ଞାନିକ ଗବେଷଣାରୁ ଏହା ସ୍ପଷ୍ଟ ହୋଇଛି ଯେ ଫଳିତ ଜ୍ୟୋତିଷକୁ ଯେତେ ବୈଜ୍ଞାନିକ ପୁଟ ଦେଲେ ମଧ୍ୟ ତାହା ବିଜ୍ଞାନସମ୍ମତ ନୁହଁ ।

ଫଳିତ ଜ୍ୟୋତିଷୀମାନେ ଦାବି କରନ୍ତି ସେମାନେ ବର୍ଷବର୍ଷ ଧରି ଅସଂଖ୍ୟ ସଠିକ୍ ଭବିଷ୍ୟବାଣୀ କରି ଆସିଛନ୍ତି । ସେମାନଙ୍କ କଥାର ସତ୍ୟତା ପ୍ରତିପାଦନ ପାଇଁ ଦୁଇ ଜ୍ୟୋତିର୍ବିଜ୍ଞାନୀ Roger Culver ଏବଂ Philip Ianna ବିଶିଷ୍ଟ ଜ୍ୟୋତିଷୀ ମାନଙ୍କର ଏବଂ ଖ୍ୟାତାନାମା ଜ୍ୟୋତିଷୀ ଅନୁଷ୍ଠାନର ୩୦୧୧ ଟି ଭବିଷ୍ୟବାଣୀର ପରୀକ୍ଷଣ କରିଥିଲେ । ସେଥିରୁ ଜଣାପଡିଲା କେବଳ ଶତକଡା ୧୦ ଭାଗ ଭବିଷ୍ୟବାଣୀ ସଠିକ ଥିଲା କିନ୍ତୁ ଶତକଡା ୯୦ ଭାଗ ଭୁଲ ହୋଇଥିଲା । ୧୯୮୯ ମସିହାରେ ପ୍ରକାଶିତ Illustated Weekly of India ନଭେମ୍ବର ୨୬ ସଂଖ୍ୟାରେ ୧୩ ଜଣ ଫଳିତ ଜ୍ୟୋତିଷୀ ମାନଙ୍କର ସାକ୍ଷାତକାର ପ୍ରକାଶ ପାଇଥିଲା । ସେମାନଙ୍କୁ ପ୍ରଶ୍ନ କରାଯାଇଥିଲା ୧୯୮୯ ସାଧାରଣ ନିର୍ବାଚନ ପରେ କିଏ ଭାରତର ପ୍ରଧାନମନ୍ତ୍ରୀ ହେବେ । ୧୩ଜଣଙ୍କ ମଧ୍ୟରୁ ୧୨ ଜଣ ଜ୍ୟୋତିଷୀଙ୍କ ଭବିଷ୍ୟବାଣୀ ଭୁଲ୍ ହୋଇଥିଲା । ଯେତେବେଳେ ଜ୍ୟୋତିଷୀବାଣୀ ସତ୍ୟରେ ପରିଣତ ହୋଇଛି ତାହା କେବଳ ସଂଯୋଗ, ସମକାଳିନତା ବା ଆକସ୍ମିକତା ଯୋଗୁ ସମ୍ଭବ ହୋଇଛି । ଜ୍ୟୋତିଷ ଶାସ୍ତ୍ରରେ ବିଶ୍ୱାସ କରୁନଥିବା ଯେକୌଣସି ବ୍ୟକ୍ତି ଯଦି ଏପରି ଆନୁମାନିକ ଭବିଷ୍ୟବାଣୀ କରନ୍ତି ତେବେ ସେ ମଧ୍ୟ ଜ୍ୟୋତିଷୀ ମାନଙ୍କ ପରି କୃତକାର୍ଯ୍ୟ ହେବେ ।

ଜ୍ୟୋତିଷୀ ମାନଙ୍କ ଭବିଷ୍ୟବାଣୀକୁ ଭୁଲ୍ ବୋଲି କହିଲେ କିମ୍ବା କାହିଁକି ଭୁଲ୍ ହେଲା ବୋଲି ପଚାରିଲେ ସେମାନେ ତାହାର କୌଣସି ସନ୍ତୋଷଜନକ ଉତ୍ତର ନଦେଇ ସଠିକ୍ ହୋଇଥିବା ଘଟଣା ମାନଙ୍କର ଉଦାହରଣ ଦେଇଥାଆନ୍ତି । କିନ୍ତୁ ଟିକିଏ ଜୋର୍ କରି ପଚାରିଲେ କହିବେ-ଜାତକ ଭୁଲ ଅଛି, ତେଣୁ ଭବିଷ୍ୟବାଣୀ ଭୁଲ୍ ହୋଇଛି । ଜାତକ ଭୁଲ୍ ହେବାର ସମ୍ଭାବନା ଅଧିକ । କାରଣ ପ୍ରତି ସେକେଣ୍ଡ ଜାତକର ସଠିକ ଗଣନାକୁ ପ୍ରଭାବିତ କରେ । ଜନ୍ମ ସମୟରେ ଯେଉଁ ସମୟକୁ ଲିପିବଦ୍ଧ କରାଯାଏ ତାହା କଦାପି ସଠିକ୍

ହୋଇନଥାଏ କାରଣ ବିଭିନ୍ନ ଲୋକଙ୍କ ଘଣ୍ଟାର ସମୟ ବିଭିନ୍ନ ପ୍ରକାର ହୋଇଥାଏ । ସନ୍ତାନର ଜନ୍ମ ସମୟରେ ଡାକ୍ତରଙ୍କ ଘଣ୍ଟାରେ ୭.୩୦ ମିନିଟ୍ ଯଦି ଅଛି ନର୍ସଙ୍କ ଘଣ୍ଟାରେ ୭.୩୨ ମିନିଟ୍ ଥିବା ବେଳେ ବାପାଙ୍କ ଘଣ୍ଟାରେ ୭.୨୯ ମିନିଟ୍ । ତେବେ କେଉଁ ସମୟକୁ ସଠିକ୍ ବୋଲି ବିଚାର କରିବା ? ଯେ କୌଣସି ଗୋଟିଏ ସମୟକୁ ଜନ୍ମ ସମୟ ବୋଲି ଧରିନେଲେ ଜାତକ ଗଣନା ଭୁଲ୍ ହେବା ସମ୍ଭବ । ଗୋଟିଏ ମିନିଟ୍ ଏପଟ ସେପଟ ହେଲେ ସନ୍ତାନର ରାଶି ନକ୍ଷତ୍ର ଯଦି ବଦଳିଯାଏ, ତେବେ ଜାତକ ଠିକ୍ ଅଛି ବୋଲି କିପରି କହିବ ? ଜ୍ୟୋତିଷୀ ମାନେ ଏହିପରି ଯୁକ୍ତି କରି ଖସି ଯାଆନ୍ତି । ଅନ୍ୟ କେତେକ ଜ୍ୟୋତିଷୀ ବିତଣ୍ଡା ଯୁକ୍ତି କରି କହିବେ-କେଉଁ ବିଜ୍ଞାନଟା ଶତ ପ୍ରତିଶତ ଠିକ୍ ଯେ ? ଡାକ୍ତରଙ୍କ ହାତରେ କ'ଣ ରୋଗୀ ମରୁନାହିଁ ?

ଜ୍ୟୋତିଷୀମାନେ ଆଉ ଯାହାକିଛି ହୁଅନ୍ତୁ ବା ନହୁଅନ୍ତୁ, କିନ୍ତୁ ସେମାନେ ନିଶ୍ଚିତ ଭାବରେ ଏକପ୍ରକାର ମନସ୍ତତ୍ତ୍ୱବିତ୍ । ମଣିଷର ଭବିଷ୍ୟତ ଜାଣିବାର ଇଚ୍ଛା ଏବଂ ନିଜ ପ୍ରଶଂସା ଶୁଣିବାର ଇଚ୍ଛା, ମଣିଷର ଦୁର୍ବଳ ସ୍ମୃତି ଏବଂ ଭୟାଳୁ ମନୋବୃତ୍ତିକୁ ପୁଂଜି କରି ଫଳିତ ଜ୍ୟୋତିଷୀ ମାନେ ଭବିଷ୍ୟବାଣୀ କରିଥାଆନ୍ତି । ସେମାନେ ଭଲ ଭାବରେ ଜାଣନ୍ତି ଲୋକମାନେ କ'ଣ ଶୁଣିବାକୁ ଭଲ ପାଆନ୍ତି । କେଉଁଲୋକ ଶୁଣିବାକୁ ଚାହେଁ ନାହିଁ ସେ ଜଣେ ଉଚ୍ଚମନା ଲୋକ ? କେଉଁ ଲୋକ ଶୁଣିବାକୁ ଚାହେଁ ନାହିଁ ସେ ପ୍ରଭୂତ ସମ୍ମାନର ଅଧିକାରୀ ହେବ ? କିମ୍ବା ତା'ର ଆଶା, ଆକାଙ୍‌କ୍ଷା ଖୁବ୍ କମ୍ ଦିନରେ ପୂରଣ ହେବ ଅବା ତା'ର ସମସ୍ତ ସମସ୍ୟାର ସମାଧାନ ହୋଇଯିବ ? ଜ୍ୟୋତିଷୀମାନେ ମଣିଷର ମନସ୍ତତ୍ତ୍ୱ ଜାଣି ଆନୁମାନିକ ଭାବରେ ଭବିଷ୍ୟବାଣୀ କରିଥାଆନ୍ତି । ମଣିଷ ଏତେ ଭୟାଳୁ ଯେ ନିଜର ଅକ୍ଷମତା ବା ଅସଫଳତା ପାଇଁ ସେ ନିଜକୁ ଦାୟୀ କରିବାକୁ ଭୟ କରିଥାଏ । ତା'ର ଅସଫଳତା ତା'ର ସାଧ୍ୟାତୀତ ବୋଲି ଭାବି ଅନ୍ୟ ଏକ ବାହ୍ୟ ଶକ୍ତି ଉପରେ ଦୋଷାରୋପ କରିବାକୁ ସେ ଭଲପାଏ । ଜଣେ ଲୋକ ଯଦି ଚାକିରିରୁ ବହିଷ୍କୃତ ହୁଏ କିମ୍ବା ତା'ର ସ୍ତ୍ରୀ ତାକୁ ପରିତ୍ୟାଗ କରି ଚାଲିଯାଏ, ତେବେ ସେ ସମସ୍ତ ଘଟଣା ତା'ର ଚାରିତ୍ରିକ ଦୁର୍ବଳତା ପାଇଁ ନହୋଇ ଯଦି କୌଣସି ଗ୍ରହର କୋପ ଯୋଗୁ ଘଟିଛି ବୋଲି କୁହାଯାଏ ତେବେ ସେ ମାନସିକ ସାନ୍ତ୍ୱନା ପାଇ ଆଶ୍ୱସ୍ତ ହୋଇଥାଏ । ଜ୍ୟୋତିଷୀମାନେ ମଣିଷର ଏହି ଦୁର୍ବଳ ମାନସିକତାର ସୁଯୋଗ ନେଇ ନିଜ ସ୍ୱାର୍ଥ ହାସଲ ପାଇଁ ତାହା ପ୍ରୟୋଗ କରିଥାଆନ୍ତି । ଅତୀତ କର୍ମପାଇଁ ରିଷ୍ଟ ଖଣ୍ଡନ ଏବଂ ଭବିଷ୍ୟତ ପାଇଁ ଆଶାର ସମ୍ଭାବନା ସୃଷ୍ଟିକରି ଜ୍ୟୋତିଷୀମାନେ ମଣିଷର ବର୍ତ୍ତମାନକୁ ଶୋଷଣ କରିଥାଆନ୍ତି ।

ଫଳିତ ଜ୍ୟୋତିଷୀ ମାନଙ୍କ ଜାତକ ଗଣନା କିପରି ଭ୍ରମାତ୍ମକ ଏବଂ କିପରି ମିଥ୍ୟା ଉପରେ ଆଧାରିତ ତାହା ଜଣେ ସାଧାରଣ ଲୋକ ମଧ୍ୟ ଚେଷ୍ଟା କରି ଜାଣିପାରିବ । ଜଣେ

ଲୋକ ଗୋଟିଏ ଜନ୍ମ ଜାତକ ନେଇ ଯଦି ବିଭିନ୍ନ ଜ୍ୟୋତିଷୀମାନଙ୍କ ପାଖକୁ ଭିନ୍ନ ଭିନ୍ନ ବେଶରେ ଯାଏ ତେବେ, ସେ ଭିନ୍ନ ଭିନ୍ନ ଭବିଷ୍ୟବାଣୀ ଶୁଣିବାକୁ ପାଇବ । ସେ ମଧ୍ୟରୁ କେତେକର ସାମ୍ୟତା ଥିଲେ ମଧ୍ୟ ଅନ୍ୟ କେତେକ ପରସ୍ପରଠାରୁ ସମ୍ପୂର୍ଣ୍ଣ ପୃଥକ୍ । ସମାନ ଜନ୍ମ ଜାତକର କୋଷ୍ଠୀ ବା କୁଣ୍ଡଳୀ ଗଣନା କରି ଜ୍ୟୋତିଷୀମାନେ ଯଦି ଭିନ୍ନ ଭିନ୍ନ ଭବିଷ୍ୟବାଣୀ କରନ୍ତି ତେବେ ସେହି ଶାସ୍ତ୍ର କେତେ ଯୁକ୍ତିସଂଗତ ବା ବିଜ୍ଞାନସମ୍ମତ ତାହା ସହଜରେ ଅନୁମେୟ ।

ବିଭିନ୍ନ ଫଳିତ ଜ୍ୟୋତିଷୀ ବିଭିନ୍ନ ସମୟରେ କରିଥିବା ଭବିଷ୍ୟବାଣୀ କିପରି ଭୁଲ୍ ବୋଲି ପ୍ରମାଣିତ ହୋଇଛି, ସେ ସମ୍ପର୍କରେ କେତେକ ସୂଚନା ନିମ୍ନରେ ଉଲ୍ଲେଖ କରୁଛି । ଫ୍ରାନସ୍‌ର ପ୍ରସିଦ୍ଧ ଲେଖକ ଓ ଦାର୍ଶନିକ ଭଲ୍‌ଟାୟାର ୩୨ ବର୍ଷ ବଞ୍ଚିବେ ବୋଲି ଦୁଇ ଜଣ ଜ୍ୟୋତିଷୀ କହିଥିଲେ । କିନ୍ତୁ ସେମାନଙ୍କର ଭବିଷ୍ୟବାଣୀକୁ ଭୁଲ୍ ବୋଲି ପ୍ରମାଣିତ କରି ଭଲଟାୟାର୍ ୮୪ ବର୍ଷ ବଞ୍ଚିଥିଲେ । ୧୯୭୧ ସାଧାରଣ ନିର୍ବାଚନରେ କୌଣସି ଦଳ ସଂଖ୍ୟା ଗରିଷ୍ଠତା ହାସଲ କରିବ ନାହିଁ । ଦେଶରେ ମିଳିତ ସରକାର ଗଠିତ ହେବ ଏବଂ ଇନ୍ଦିରାଗାନ୍ଧୀ ଶନିଙ୍କ ପ୍ରଭାବରେ ପୁନଃ ନିର୍ବାଚିତ ହେବେନାହିଁ ବୋଲି ୧୯୭୧ ରେ ପ୍ରକାଶିତ Astrological Magazine ର ଜାନୁଆରୀ ସଂଖ୍ୟାରେ ଦିଲ୍ଲୀର ଜ୍ୟୋତିଷୀ ଏସ.ପି. ଉଦ୍ଧ୍ରେନ, ଭି.ଜଗନ୍ନାଥ ଶାସ୍ତ୍ରୀ ଏବଂ ସମ୍ପାଦକ ବି.ଭି.ରମଣ ମାର୍ଚ୍ଚ ସଂଖ୍ୟାରେ ଭବିଷ୍ୟବାଣୀ କରିଥିଲେ । କିନ୍ତୁ ସେସବୁ ଭବିଷ୍ୟବାଣୀକୁ ମିଥ୍ୟା ପ୍ରମାଣିତ କରି କଂଗ୍ରେସ ଦଳ ସଂଖ୍ୟା ଗରିଷ୍ଠତା ଲାଭ କରିଥିଲା ଏବଂ ଇନ୍ଦିରାଗାନ୍ଧୀ ପ୍ରଧାନମନ୍ତ୍ରୀ ହୋଇଥିଲେ । ପଣ୍ଡିତ ରାସବିହାରୀ ଦାସ ଯାହାଙ୍କ ଜିଭ ଆଗରେ ଭୃଗୁ ସଂହିତା ଅଛି ବୋଲି ଲୋକେ କହନ୍ତି ଏବଂ ଯେ ଶତ ସହସ୍ର ଜାତକ ଅଧ୍ୟୟନ କରି ଭବିଷ୍ୟବାଣୀ କରିଛନ୍ତି ବୋଲି ବାହାସ୍ଫୋଟ ମାରନ୍ତି, ସେ କହିଥିଲେ "ମୋରାରଜୀ ଦେଶାଇ ୧୯୮୨ ପର୍ଯ୍ୟନ୍ତ ପ୍ରଧାନମନ୍ତ୍ରୀ ଭାବରେ କ୍ଷମତାରେ ରହିବେ ଏବଂ ତାଙ୍କ ପରେ ଜଣେ ଯବନ ବା ଅଣହିନ୍ଦୁ ପ୍ରଧାନମନ୍ତ୍ରୀ ହେବେ । କିନ୍ତୁ ଜଣେ ଅନାର୍ଯ୍ୟ ନାରୀ ପ୍ରଧାନମନ୍ତ୍ରୀ ହୋଇପାରିବ ନାହିଁ" । କିନ୍ତୁ ଆମେ ସମସ୍ତେ ଜାଣୁ ୧୯୮୦ ନିର୍ବାଚନର ଫଳାଫଳ କ'ଣ ହେଲା ଏବଂ କିଏ ପ୍ରଧାନମନ୍ତ୍ରୀ ହେଲେ । କନ୍ନଡ଼ ପତ୍ରିକା 'ପ୍ରଜାମାତା' ରେ ଉତ୍ତର କର୍ଣ୍ଣାଟକର ବିଶିଷ୍ଟ ଜ୍ୟୋତିଷୀ ଏନ୍.କେ.ଜୋଗଲେକର ଭବିଷ୍ୟବାଣୀ କରିଥିଲେ ଯେ ୧୯୮୦ ଜାନୁୟାରୀ ମାସରେ ହେବାକୁ ଥିବା ଲୋକସଭା ନିର୍ବାଚନ ପରେ ଜଗଜ୍ଜୀବନ ରାମ କିମ୍ବା ଚନ୍ଦ୍ରଶେଖର ପ୍ରଧାନମନ୍ତ୍ରୀ ହେବେ, ଦେବରାଜ ଉର୍ସ ଉପପ୍ରଧାନମନ୍ତ୍ରୀ ହେବେ, ଭାରତର ରାଷ୍ଟ୍ରପତି ଇସ୍ତଫା ଦେବେ ଏବଂ ମୋରାରଜୀ ଦେଶାଇ କିମ୍ବା ନିଜଲିଙ୍ଗାପ୍ପା ରାଷ୍ଟ୍ରପତି ହେବେ । ତାଙ୍କର ଭବିଷ୍ୟତବାଣୀ କିପରି ହାସ୍ୟାସ୍ପଦ ଥିଲା ଆମେ ଭଲଭାବରେ ହୃଦ୍‌ବୋଧ କରୁଛୁ । ୧୯୮୦ ମସିହା ଡିସେମ୍ବର ମାସରେ ଦୀର୍ଘ ୪ ଦିନ ଧରି ଆନ୍ତର୍ଜାତିକ ଜ୍ୟୋତିଷୀ ସମ୍ମିଳନୀ ହୋଇଥିଲା ଏବଂ ସେଥିରେ ଶତାଧିକ ଭାରତ ଓ ଭାରତ ବାହାରର

ଜ୍ୟୋତିଷୀ ମାନେ ଯୋଗଦାନ କରିଥିଲେ । ସେହି ସମ୍ମିଳନୀକୁ ଆୟୋଜନ କରିଥିଲେ ଭାରତୀୟ ଜ୍ୟୋତିଷୀ ଫେଡେରସନ । ସେହି ସଭାରେ ଫେଡ଼େରେସନ୍‌ର ସଭାପତି ଡକ୍ଟର ନାରାୟଣ ଦତ୍ତ ଶ୍ରୀମାଳି ଭବିଷ୍ୟବାଣୀ କରି କହିଥିଲେ- " ୧୯୮୨ ମସିହା ଶେଷବେଳକୁ ଭାରତ ଓ ପାକିସ୍ଥାନ ମଧ୍ୟରେ ଯୁଦ୍ଧ ହେବ । ୧୯୮୪ ମସିହାରେ ତୃତୀୟ ବିଶ୍ୱ ଯୁଦ୍ଧ ହେବ କିନ୍ତୁ ସେହି ବିଶ୍ୱଯୁଦ୍ଧରେ ଭାରତ ସାମିଲ୍ ହେବନାହିଁ । ଏବଂ ଦଶନ୍ଧିର ଶେଷ ବେଳକୁ ଭାରତ ପଞ୍ଚମ ବୃହତ୍ ଶକ୍ତିଶାଳୀ ରାଷ୍ଟ୍ର ରୂପେ ଆବିର୍ଭୂତ ହେବ ।" ଫଳାଫଳ ଆମେ ସମସ୍ତେ ଜାଣୁ । ଫେଡେରେସନ୍‌ର ସାଧାରଣ ସମ୍ପାଦକ କେ.ଏ. ଦୁବେ ପଦ୍ମେଶ କହିଥିଲେ " ୧୯୮୨ ମସିହା ଡିସେମ୍ବର ୧୪ ତାରିଖ ମଧ୍ୟରେ ଭାରତ ଏବଂ ତାର ପଡ଼ୋଶୀ ରାଷ୍ଟ୍ର ଯୁଦ୍ଧରତ ରହିବେ ଏବଂ ଶେଷରେ ଭାରତର ବିଜୟ ହେବ । ଆମେରିକାର ରାଷ୍ଟ୍ରପତି ରିଗାନ୍ ତାଙ୍କର କାର୍ଯ୍ୟକାଳ ପୂରଣ କରିପାରିବେ ନାହିଁ । ୧୯୮୧ ମସିହାରେ ପାକିସ୍ଥାନ ସରକାରରେ ପରିବର୍ତ୍ତନ ଘଟିବ ।" କିନ୍ତୁ ଆମେ ଜାଣୁ ସେ ସମୟରେ ଭାରତ-ପାକିସ୍ଥାନ କିମ୍ବା ଭାରତ-ଚୀନ୍ ଯୁଦ୍ଧ ହୋଇନାହିଁ । ରିଗାନ୍ ତାଙ୍କର କାର୍ଯ୍ୟକାଳ ପୂରଣ କରିଥିଲେ ଏବଂ ଦ୍ୱିତୀୟଥର ପାଇଁ ମଧ୍ୟ ରାଷ୍ଟ୍ରପତି ହୋଇ ୧୯୮୯ରେ ଇସ୍ତଫା ଦେଇଥିଲେ । ୧୯୮୧ରେ ପାକିସ୍ଥାନ ସରକାରରେ ପରିବର୍ତ୍ତନ ହୋଇନାହିଁ ଏବଂ ଜିଆ-ଉଲ୍-ହକ୍ ଜ୍ୟୋତିଷୀ ମାନଙ୍କ ଭବିଷ୍ୟବାଣୀକୁ ଭୁଲ୍ ପ୍ରମାଣିତ କରି ୧୯୮୮ ପର୍ଯ୍ୟନ୍ତ ପାକିସ୍ଥାନର ରାଷ୍ଟ୍ରପତି ଥିଲେ । ବଡ଼ ଦୁଃଖର ବିଷୟ ଭାରତର କୌଣସି ଜ୍ୟୋତିଷୀ ୧୯୭୫ ମସିହାରେ ଜରୁରୀ କାଳୀନ ପରିସ୍ଥିତି ବା ୧୯୮୪ ରେ ଇନ୍ଦିରାଗାନ୍ଧୀଙ୍କ ହତ୍ୟା ସମ୍ପର୍କରେ ଭବିଷ୍ୟବାଣୀ କରି ନାହାନ୍ତି । ୧୯୮୪ରେ ଯେଉଁ ଲୋକସଭା ନିର୍ବାଚନ ହୋଇଥିଲା ସେ ସମ୍ପର୍କରେ ଭବିଷ୍ୟବାଣୀ କରି ବର୍ତ୍ତମାନ ଦି ଟାଇମସ୍ ଅଫ ଇଣ୍ଡିଆର ରବିବାର ସଂସ୍କରଣରେ ରାଶିଫଳ ଲେଖୁଥିବା ବେଜନ ଦାରୁୱାଲା କହିଥିଲେ "ରାଜୀବ ଗାନ୍ଧୀଙ୍କର ମିଥୁନ ରାଶି । ତେଣୁ ଲୋକସଭା ଦୁଇଟି ଦଳରେ ବିଭାଜିତ ହେବ ଏବଂ କୌଣସି ଦଳ ସଂଖ୍ୟା ଗରିଷ୍ଠତା ଲାଭ କରିପାରିବ ନାହିଁ । ଫଳରେ ରାଜୀବ ଗାନ୍ଧୀ ପ୍ରଧାନମନ୍ତ୍ରୀ ହୋଇପାରିବେ ନାହିଁ ।" କିନ୍ତୁ ନିର୍ବାଚନରେ କଂଗ୍ରେସ ଦଳ କିପରି ପୂର୍ଣ୍ଣ ସଂଖ୍ୟାଗରିଷ୍ଠତା ହାସଲ କଲା ଏବଂ ରାଜୀବ ଗାନ୍ଧୀ ପ୍ରଧାନମନ୍ତ୍ରୀ ହେଲେ ତାହା ଆମେ ଭଲଭାବରେ ଜାଣୁ । ଏହିପରି ଅନେକ ଭବିଷ୍ୟବାଣୀ ମିଥ୍ୟାରେ ପରିଣତ ହୋଇଛି, କିନ୍ତୁ ସେ ସବୁ ଆମେ ଆମର ସ୍ମୃତିପଟରେ ନରଖି ଭୁଲି ଯାଇଛୁ ଏବଂ ଫଳିତ ଜ୍ୟୋତିଷୀଙ୍କ ଭବିଷ୍ୟବାଣୀ ଶୁଣିବାପାଇଁ ତାଙ୍କ ପଛରେ ଧାଇଁଛୁ ।

ଗ୍ରହସଂଯୋଗ ଆବହମାନ କାଳରୁ ସଂଗଠିତ ହୋଇ ଆସୁଅଛି । ମହାକାଶରେ ଗ୍ରହ ଉପଗ୍ରହ ଗୁଡକ ପରିକ୍ରମଣ କରୁଥିବା ବେଳେ ସମୟ ସମୟରେ କେତେକ ଗ୍ରହ ଉପଗ୍ରହ ସୂର୍ଯ୍ୟଙ୍କର ନିକଟତର ହୋଇଯାଆନ୍ତି । ଏହାକୁ ଗ୍ରହ ସଂଯୋଗ ବା ପଞ୍ଜିକାର ମାନେ

'ଗ୍ରହକୂଟ' ବୋଲି କହିଥାଆନ୍ତି । ଏହି ସମୟରେ ପୃଥିବୀରେ ଭୟଙ୍କର ଘଟଣାମାନ ଘଟିଥାଏ ବୋଲି ଜ୍ୟୋତିଷ ବିଶାରଦମାନେ ପୂର୍ବାନୁମାନ କରିଥାଆନ୍ତି । କିନ୍ତୁ ସେ ସମସ୍ତ ଜ୍ୟୋତିଷ ଗଣନା ଯେ ମିଥ୍ୟା ଓ ଭ୍ରମାତ୍ମକ ତାହା ପ୍ରମାଣିତ ହୋଇ ସାରିଛି । ୧୧୮୬ ମସିହା ସେପ୍ଟେମ୍ବର ୧୪ ତାରିଖରେ ଏକ ଗ୍ରହସଂଯୋଗ ହେବ ଏବଂ ସମଗ୍ର ପୃଥିବୀ ଜଳମଗ୍ନ ହେବ ବୋଲି ଭବିଷ୍ୟବାଣୀ କରାଗଲା । ସ୍ପେନ୍ ଠାରୁ ପର୍ସିଆ ପର୍ଯ୍ୟନ୍ତ ଜ୍ୟୋତିଷ ବିଶାରଦମାନେ ସେହି ସମୟରେ ପ୍ରବଳ ବର୍ଷା ଏବଂ ଭୂମିକମ୍ପ ହେବାର ପୂର୍ବାନୁମାନକୁ ଦୋହରାଇଥିଲେ । ଭୂଗର୍ଭରେ ସୁଡ଼ଙ୍ଗମାନ ଖୋଳା ହେଲା, ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କଲେ ଏବଂ ପ୍ରାୟଶ୍ଚିତ କଲେ, ମାତ୍ର ସେହିବର୍ଷ ସମଗ୍ର ୟୁରୋପର ପାଗ ଶାନ୍ତ ଓ ନିର୍ମଳ ରହିଲା । ୧୮୩୫ ମସିହା ଜୁନ୍ ୧୯ ତାରିଖରେ ଏହିପରି ଏକ ବଡ଼ଧରଣର ଗ୍ରହ ସଂଯୋଗ ହୋଇଥିଲା । ମାତ୍ର ସେହି ସମୟରେ ପାଗ ପୂର୍ବଭଳି ଶାନ୍ତ, ନିର୍ମଳ ରହିଥିଲା । ପୃଥିବୀରେ ସେପରି କୌଣସି ପରିବର୍ତ୍ତନ ଦୃଶ୍ୟମାନ ହୋଇନଥିଲା । ୧୯୪୧ ମେ ମାସ ୧୦ ତାରିଖରେ ସେହିପରି ଏକ ପ୍ରଳୟ ସଂଗଠିତ ହୋଇ କଳି ଯୁଗର ଅବସାନ ଏବଂ ସତ୍ୟ ଯୁଗର ଅଭ୍ୟୁଦୟ ହେବ ବୋଲି ପୂର୍ବାନୁମାନ କରାଯାଇଥିଲା । କିନ୍ତୁ ସେପରି କୌଣସି ପରିବର୍ତ୍ତନ ଘଟିନଥିଲା ।୨୦୦୦ ମସିହା ମେ ୧୭ ତାରିଖରେ ପ୍ରଳୟଙ୍କରୀ ମହାବାତ୍ୟା ହେବ ବୋଲି ଜ୍ୟୋତିଷ ବିଶାରଦମାନେ ଭବିଷ୍ୟବାଣୀ ଶୁଣାଇ ଲୋକମାନଙ୍କୁ ଆତଙ୍କିତ କରାଇଥିଲେ କିନ୍ତୁ ସେପରି କୌଣସି ଦୁର୍ଘଟଣା ପୃଥିବୀ ପୃଷ୍ଠରେ ହୋଇନଥିଲା । ସବୁଠାରୁ ମଜାର ବିଷୟ ହେଉଛି ୧୯୯୯ ମସିହା ଅକ୍ଟୋବର ୨୯ ତାରିଖରେ ଯେଉଁ ମହାବାତ୍ୟା ଓଡିଶାରେ ସଂଗଠିତ ହୋଇ ଓଡିଶାର ମେରୁଦଣ୍ଡକୁ ଦୋହଲାଇ ଦେଇଥିଲା ସେ ବିଷୟରେ ଆମର ଜ୍ୟୋତିଷ ବିଶାରଦ ମାନେ କୌଣସି ପୂର୍ବାନୁମାନ କରି ସତର୍କବାଣୀ ଶୁଣାଇ ନଥିଲେ । କିନ୍ତୁ ଆଉ ଏକ ମଜାର ବିଷୟ ହେଉଛି ୨୦୪୦ ମସିହା ସେପ୍ଟେମ୍ବର ୮ ତାରିଖରେ ଏକ ଗ୍ରହ ସଂଯୋଗ ଅନୁଷ୍ଠିତ ହୋଇ ପୃଥିବୀରେ ଭୟଙ୍କର ପରିବର୍ତ୍ତନ ଆଣିବ ବୋଲି ଜ୍ୟୋତିଷ ବିଶାରଦ ମାନେ ସୂଚନା ଦେଇଛନ୍ତି । ଦେଖାଯାଉ ତାଙ୍କର ଏହି ଆସ୍ଫାଳନ ସଫଳ ହେଉଛି କି ବିଫଳ ହେଉଛି !

୨୦୦୭ ମସିହାରେ ୱାର୍ଲ୍ଡ କପ କ୍ରିକେଟରେ ଭାରତର ଶୋଚନୀୟ ପରିଣତି ସମ୍ପର୍କରେ ସମସ୍ତେ ଜାଣନ୍ତି । କିନ୍ତୁ ଭାରତୀୟ ଜ୍ୟୋତିଷ ବିଶାରଦ ମାନେ ଭବିଷ୍ୟବାଣୀ କରିଥିଲେ ଯେ ଭାରତ ନିଶ୍ଚୟ ଜୟଯୁକ୍ତ ହେବ । ଇରଫାନ୍ ପଠାନ୍ ଏବଂ ଏସ୍. ଶ୍ରୀଶାନ୍ତ ପ୍ରାୟ ସମସ୍ତ ଉଇକେଟ୍ ହାସଲ କରିବେ । ଶଚିନ୍ ତେନ୍ଦୁଲକର ଏବଂ ଏମ୍.ଏସ୍. ଧୋନି ଟୁର୍ଣ୍ଣାମେଣ୍ଟର ସର୍ବାଧିକ ରନ୍ ସଂଗ୍ରହ କରିବେ । ସେହବାଗ ସମସ୍ତଙ୍କ ଠାରୁ କମ୍ ରନ୍ କରି ଦର୍ଶକଙ୍କୁ ନିରାଶ କରିବେ । କିନ୍ତୁ ସେହବାଗ ସମସ୍ତଙ୍କୁ ଚକିତ କରି ୧୬୪ ରନ୍ କରି ଟୁର୍ଣ୍ଣାମେଣ୍ଟର ଏକମାତ୍ର ଶତକ ଅର୍ଜନକାରୀ କ୍ରିକେଟ ଖେଳାଳିର ପରିଚୟ ଦେଇଥିଲେ ।

ବେଜନ ଦାରୁଓ୍ୱାଲା ଏବଂ ସଞ୍ଜୟ ଜୁମାନୀ ଆଦି ଜ୍ୟୋତିଷବିଶାରଦ ମାନଙ୍କ ସମସ୍ତ ଗଣନା ନିଷ୍ଫଳ ହୋଇଥିଲା ।

ଆଉ ଏକ ନିଷ୍ଫଳ ଗଣନାର ସୂଚନା ଦେଇଥିଲେ ମଧ୍ୟପ୍ରଦେଶର ଜ୍ୟୋତିଷ ବିଶାରଦ କୁଞ୍ଜଲାଲ । ସେ ଭବିଷ୍ୟବାଣୀ କରିଥିଲେ ଯେ ୨୦୦୫ ମସିହା ଅକ୍ଟୋବର ୨୦ ତାରିଖ ଅପରାହ୍ଣ ୩ ଟାରୁ ୪ଟା ମଧ୍ୟରେ ତାଙ୍କର ମହାନିର୍ବାଣ ହେବ । ନିର୍ଦ୍ଦିଷ୍ଟ ଦିନ କେତେକ ଟି.ଭି. ଚ୍ୟାନେଲ୍ ତାଙ୍କ ଗ୍ରାମକୁ ଯାଇ ସେଠାରୁ ସିଧା ପ୍ରସାରଣ କରିଥିଲେ । ଦେଶବ୍ୟାପୀ ଲକ୍ଷ ଲକ୍ଷ ଲୋକ ଏହି ଇଚ୍ଛାମୃତ୍ୟୁକୁ ଦେଖିବାପାଇଁ ଅପେକ୍ଷା କରିଥିଲେ । କିନ୍ତୁ ସେହିଦିନ ବା ସେହିବର୍ଷ ତାଙ୍କର ମୃତ୍ୟୁ ହୋଇନଥିଲା । କିନ୍ତୁ ଅନ୍ୟ ଏକ ଆସ୍ଫାଳନ କରି ସେ କହିଥିଲେ- ଏବଂ ତାଙ୍କନ ପିତା ପଣ୍ଡିତ କିଶନ୍‌ଲାଲ ନିଜ ମୃତ୍ୟୁ ସମ୍ପର୍କରେ ସଠିକ ଭବିଷ୍ୟବାଣୀ କରିଥିଲେ ।

ବର୍ତ୍ତମାନ ମୁଁ ଆଉ କେତେ ଜଣ ବିଶିଷ୍ଟ ଖ୍ୟାତନାମା ଜ୍ୟୋତିଷୀମାନଙ୍କ ସମ୍ପର୍କରେ କହିବି । ଜଣେ ବିଶିଷ୍ଟ ପ୍ରଖ୍ୟାତନାମା ଜ୍ୟୋତିଷୀ ହେଉଛନ୍ତି Cyrus Abayakoon. ସେ ଗଛମୂଳ, ଫୁଟପାଥର ଜ୍ୟୋତିଷୀ ନୁହନ୍ତି । ଲଣ୍ଡନରେ ପ୍ରତିଷ୍ଠିତ ଏବଂ ନିଜର ହେଲିକପ୍ଟର ଥିବା ଜଣେ ପ୍ରଥିତଯଶା ଫଳିତଜ୍ୟୋତିଷୀ । ସେ ଥରେ ଘାନାର ରାଷ୍ଟ୍ରପତିଙ୍କର କୋଷ୍ଠୀ ଗଣନା କରି କହିଥିଲେ ତାଙ୍କ ଦେଶରେ କେଉଁଠାରେ ତୈଳ ଖଣି ଅଛି । ସେ ଯେତେବେଳେ ଶ୍ରୀଲଙ୍କାର କଲମ୍ବୋ ସହରକୁ ଆସିଥିଲେ ଶ୍ରୀଲଙ୍କାର ହେତୁବାଦୀ ଗୋଷ୍ଠୀ ଆହ୍ୱାନ ଦେଲେ ତାଙ୍କ ରାଷ୍ଟ୍ରପତି ଜୟବର୍ଦ୍ଧନଙ୍କର କୋଷ୍ଠୀ ଗଣନା କରି ସେ କୁହନ୍ତୁ ଶ୍ରୀଲଙ୍କରେ କେଉଁଠାରେ ତୈଳର ସନ୍ଧାନ ମିଳିବ । କିନ୍ତୁ ଲଜ୍ଜାର କଥା ସାଇରସ୍ ଆବେୟାକୁନ୍ ଲୁଚିକରି ଦେଶଛାଡ଼ି ପଳାଇଗଲେ । ଏ ବିଷୟ ଆବ୍ରାହମ୍ ଟି କୋଭୁର ତାଙ୍କର God's Demons And Spirits ପୁସ୍ତକରେ ଉଲ୍ଲେଖ କରିଛନ୍ତି । ବର୍ତ୍ତମାନ ଓଡ଼ିଶାର ଦୁଇଖ୍ୟାତନାମା ଜ୍ୟୋତିଷୀଙ୍କ କଥା କହିବା । ମହାମହୋପାଧ୍ୟାୟ ସାମନ୍ତ ଚନ୍ଦ୍ରଶେଖର ବା ପଠାଣି ସାମନ୍ତ ଓଡିଶାର ଜଣେ ଖ୍ୟାତନାମା ଜ୍ୟୋତିର୍ବିଦ୍ ପଣ୍ଡିତ । କିନ୍ତୁ ସେ ମଧ୍ୟ ଫଳିତ ଜ୍ୟୋତିଷ ଅଧ୍ୟୟନ କରିଥିଲେ । ପରବର୍ତ୍ତୀ ଜୀବନରେ ଫଳିତ ଜ୍ୟୋତିଷରେ ବିଶ୍ୱାସ କିପରି ହରାଇଥିଲେ ତାହା ଅନୁଧ୍ୟାନର ବିଷୟ । ପଠାଣି ସାମନ୍ତଙ୍କ ପାଞ୍ଚ ପୁଅ ଥିଲେ । ତାଙ୍କର ଜ୍ୟେଷ୍ଠ ପୁତ୍ରର ନାମ ଥିଲା ପୀତବାସ ଏବଂ ମଧ୍ୟମ ପୁତ୍ରର ନାମ ଥିଲା ଯଦୁନାଥ । ଦୁଇଜଣଙ୍କର ଜନ୍ମକାତକ ସେ ନିଜେ ତିଆରି କରିଥିଲେ । ସେ ଭବିଷ୍ୟବାଣୀ କରିଥିଲେ ଯେ ତାଙ୍କର ପୁତ୍ରଦ୍ୱୟ ଦୀର୍ଘାୟୁ ହେବେ ଏବଂ ତାଙ୍କ ଅନ୍ତେ ବହୁବର୍ଷ ଧରି କାଳାତିପାତ କରିବେ । କିନ୍ତୁ ତାଙ୍କର ଭବିଷ୍ୟବାଣୀ ଭୁଲ୍ ବୋଲି ପ୍ରମାଣିତ ହୋଇଥିଲା ଏବଂ ତାଙ୍କ ଜୀବନଦଶା ମଧ୍ୟରେ ସେ ବଞ୍ଚିଥାଉଁ ଥାଉଁ ତାଙ୍କର ଦୁଇପୁତ୍ର ଆଖି ବୁଜିଲେ । ପରିଣାମ ସ୍ୱରୂପ ପଠାଣି ସାମନ୍ତ ଫଳିତ ଜ୍ୟୋତିଷରେ ବିଶ୍ୱାସ ହରାଇଥିଲେ ।

(ଚନ୍ଦ୍ରଶେଖର ମିଶ୍ରଙ୍କ ଲିଖିତ ପୁସ୍ତକ-ମହାମହୋପାଧ୍ୟାୟ-ସାମନ୍ତ ଚନ୍ଦ୍ରଶେଖର-ଦ୍ରଷ୍ଟବ୍ୟ) ଆଉ ଜଣେ ଜ୍ୟୋତିଷ ବିଶାରଦ ହେଲେ ପଣ୍ଡିତ ବାଇକୋଳି ମହାପାତ୍ର । ଜ୍ୟୋତିଷ ସମ୍ପର୍କୀୟ ଅନେକ ପୁସ୍ତକ ରଚନା ସେ କରିଛନ୍ତି । ଖଲିକୋଟ ନିର୍ବାଚନ ମଣ୍ଡଳୀରୁ ବିଧାୟକ ପ୍ରାର୍ଥୀ ଭାବେ ସେ ଥରେ ନିର୍ବାଚନ ଲଢ଼ିଥିଲେ । କିନ୍ତୁ ନିଜର ଅମାନତ ହରାଇ ସେ ନିର୍ବାଚନରେ ହାରିଗଲେ । ପ୍ରଶ୍ନ ଉଠେ, ସେ ନିଜର କୋଷ୍ଠୀ ଗଣନା କରି ମାହେନ୍ଦ୍ର ବେଳା ବା ଅମୃତବେଳା କ'ଣ ଜାଣିନଥିଲେ ? ସେହି ସମୟରେ ପ୍ରାର୍ଥୀପତ୍ର ଦାଖଲ କରିଥିଲେ ସେ ତ ନିଶ୍ଚିତ ବିଜୟ ଲାଭ କରିଥାଆନ୍ତେ । ଏଠାରେ ଆଉ ଏକ ପ୍ରଶ୍ନ ଉଠେ, ସମସ୍ତ ବିଧାୟକ ବା ସାଂସଦ ପ୍ରାର୍ଥୀ ଶୁଭବେଳା ଦେଖି ପ୍ରାର୍ଥୀପତ୍ର ଦାଖଲ କରନ୍ତି । ସମସ୍ତେ କ'ଣ ନିର୍ବାଚନରେ ଜୟଯୁକ୍ତ ହୁଅନ୍ତି ? ତେଣୁ ଫଳିତ ଜ୍ୟୋତିଷୀ ମାନଙ୍କ ସ୍ଥିରୀକୃତ ଅମୃତ ବେଳା ବା ବିଷବେଳା, ଶୁଭବେଳା ବା ଅଶୁଭ ବେଳା ସେମିତି କିଛି ନାହିଁ । ଏଠାରେ ଆଉ ଗୋଟିଏ କଥା ମନେପଡ଼େ । ପୃଥିବୀର ପ୍ରଥମ ମହିଳା ପ୍ରଧାନମନ୍ତ୍ରୀ ହେଉଛନ୍ତି ଶିରିମାଭୋ ବନ୍ଦରନାଇକେ । ତାଙ୍କର ବାପା ମଧ୍ୟ ଶ୍ରୀଲଙ୍କାର ରାଷ୍ଟ୍ରପତି ଥିଲେ । ଫଳିତ ଜ୍ୟୋତିଷୀମାନେ ମନାକରିଥିବା ଯୋଗୁ ସେ ତାଙ୍କର ଶପଥଗ୍ରହଣ ଉତ୍ସବକୁ ଠିକ୍ ସମୟରେ ନଆସି ଅଧଘଣ୍ଟା ଡେରିରେ ଆସି ରାଷ୍ଟ୍ରପତି ଭାବେ ଶପଥ ନେଇଥିଲେ । ଏପରି ଶୁଭବେଳାରେ ଶପଥ ନେଇ ପରିଣାମ କ'ଣ ହେଲା ? ନିଜର କାର୍ଯ୍ୟକାଳ ପୂରଣ ହେବା ପୂର୍ବରୁ ଆତତାୟୀ ଦ୍ୱାରା ନିହତ ହେଲେ । ତେଣୁ ଫଳିତ ଜ୍ୟୋତିଷୀଙ୍କ ଭବିଷ୍ୟବାଣୀ ଯେ ଭ୍ରମାତ୍ମକ ଏହା ନିଃସନ୍ଦେହ ।

ବର୍ତ୍ତମାନ ଖବର କାଗଜ ଓ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ରାଶିଫଳ ସମ୍ପର୍କରେ ଆଲୋଚନା କରିବା । ଏଥିରେ ପ୍ରକାଶ ପାଉଥିବା ସମସ୍ତ ଭବିଷ୍ୟବାଣୀ ସମ୍ପୂର୍ଣ୍ଣ ମିଥ୍ୟା । କିନ୍ତୁ ଲୋକମାନେ ଏତେ ନିରୀହ ଏବଂ ଏତେ ସରଳବିଶ୍ୱାସୀ ଯେ, ସେ ସବୁ କଥାକୁ ସେମାନେ ସତ୍ୟବୋଲି ଗ୍ରହଣ କରି ନିଅନ୍ତି । ଜଣେ ସାଧାରଣ ଲୋକ ଟିକିଏ ଚେଷ୍ଟାକଲେ ଏହି ରାଶିଫଳର ଅସାରତା ସହଜରେ ଜାଣିପାରିବ । ଯେ କୌଣସି ରାଶିର ବ୍ୟକ୍ତି ଯେ କୌଣସି ଦିନର ରାଶିଫଳ ଯଦି ସମାଜ, ପ୍ରଜାତନ୍ତ୍ର, ସମ୍ବାଦ, ଧରିତ୍ରୀ, କିମ୍ବା ସମୟ ଆଦି ଖବରକାଗଜ ଗୁଡିକରୁ ପଢେ, ସେ ଦେଖିବ ବିଭିନ୍ନ ସମ୍ବାଦପତ୍ରରେ ଭିନ୍ନ ଭିନ୍ନ ଭବିଷ୍ୟବାଣୀ କରାଯାଇଛି । ପୁନଶ୍ଚ ଜଣେ ମିଥୁନ ରାଶିର ବ୍ୟକ୍ତି ଯଦି ମକର ରାଶିର ଫଳାଫଳ ପଢ଼େ ତେବେ ତାହା ମଧ୍ୟ ତାକୁ ଠିକ୍ ଲାଗିବ । କିନ୍ତୁ ତାହା ସେ ଗ୍ରହଣ କରିବ ନାହିଁ, କାରଣ ତା'ର ରାଶି ମକର ନୁହେଁ । ଏ ସମ୍ପର୍କରେ ଏକ ହାସ୍ୟୋଦ୍ଦୀପକ ଘଟଣା କହୁଛି । Hindustan Times ର ୧୯୮୧ ମସିହା ଜାନୁୟାରୀ ୩ ତାରିଖ ସଂଖ୍ୟାରେ ବିଶିଷ୍ଟ ଲେଖକ ଓ ସାମ୍ବାଦିକ ଖୁସ୍‌ୱନ୍ତ ସିଂହ ତାଙ୍କ ପାଇଁ ଉଦ୍ଦିଷ୍ଟ ସ୍ତମ୍ଭରେ ଲେଖିଥିଲେ ଯେ ସେ ଯେତେବେଳେ Illustrated

Weekly of India ର ସମ୍ପାଦକ ଥିଲେ ସେତେବେଳେ ଜଣେ ବିଶିଷ୍ଟ ଜ୍ୟୋତିଷୀ P.I.H. Naylor ପତ୍ରିକାର ରାଶିଫଳ ନିୟମିତ ଲେଖୁଥିଲେ । କିନ୍ତୁ ଯେତେବେଳେ ସେ କୌଣସି କାରଣ ବଶତଃ ଅନୁପସ୍ଥିତ ରହୁଥିଲେ ଖୁସ୍‌ୱନ୍ତ ସିଂହ ନିଜେ ଜ୍ୟୋତିଷୀ ମାନଙ୍କ ମନୋମୁଗ୍ଧକର ଅସ୍ପଷ୍ଟ ଶବ୍ଦାବଳୀ ପ୍ରୟୋଗ କରି ସମସ୍ତଙ୍କୁ ସୁହାଇଲାଭଳି ରାଶିଫଳ ଲେଖୁଥିଲେ । ତେଣୁ ରାଶିଫଳରେ କେତେ ସତ୍ୟତା ରହିଛି ତାହା ଉପରୋକ୍ତ ଉଦାହରଣରୁ ସ୍ପଷ୍ଟ ଜଣାପଡ଼େ । ରାଶିଚକ୍ର ଓ ରାଶିଫଳ ଯେ ଅବାସ୍ତବ ଓ ଅବୈଜ୍ଞାନିକ ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

ବିଶିଷ୍ଟ ହେତୁବାଦୀ ଆବ୍ରାହମ୍ ଟି. କୋଭୁର ଆଜି ଆମ ଗହଣରେ ନାହାନ୍ତି କିନ୍ତୁ ଏକଲକ୍ଷ ଟଙ୍କାର ପୁରସ୍କାର ଘୋଷଣା କରି ଫଳିତ ଜ୍ୟୋତିଷୀ ମାନଙ୍କୁ ସେ ଯେଉଁ ଆହ୍ୱାନ ଦେଇଥିଲେ ତାହା ଆଜି ମଧ୍ୟ ଅପୂରଣୀୟ ରହିଛି । ସେ ବିଭିନ୍ନ ଦେଶ ଓ ସହରରେ ପ୍ରକାଶିତ ପତ୍ର ପତ୍ରିକା ମାଧ୍ୟମରେ ଆହ୍ୱାନ ଦେଇଥିଲେ- ୧୦ଟି ଜନ୍ମ ଜାତକ (ଯେଉଁଥିରେ ଜନ୍ମର ସଠିକ ତାରିଖ ଓ ସମୟ ତଥା ଜନ୍ମ ସ୍ଥାନର ସଠିକ୍ ଅକ୍ଷାଂଶ ଓ ଦ୍ରାଘିମା ଉଲ୍ଲେଖ ରହିଛି) ଅନୁଧ୍ୟାନ କରି ଯଦି କୌଣସି ଜ୍ୟୋତିଷୀ କହିପାରିବେ ସେହି ଦଶଜଣଙ୍କ ମଧ୍ୟରେ କେତେଜଣ ପୁରୁଷ ବା ସ୍ତ୍ରୀ ଏବଂ କେତେଜଣ ଜୀବିତ ନା ମୃତ ତେବେ ତାଙ୍କୁ ଏକଲକ୍ଷ ଟଙ୍କା ପୁରସ୍କାର ଦିଆଯିବ । ଦଶଟି ଜାତକରୁ ଅନ୍ତତଃ ନ'ଟି କ୍ଷେତ୍ରରେ ଯଦି କେହି ସଠିକ ଉତ୍ତର ଦେଇପାରିବେ ତେବେ ସେ ପୁରସ୍କାରର ହକ୍‌ଦାର ହୋଇପାରିବେ । ଏହି ଆହ୍ୱାନ ଗ୍ରହଣ କରିବା ପୂର୍ବରୁ ଜ୍ୟୋତିଷୀ ମାନଙ୍କୁ ଚୁକ୍ତିନାମା ସହ ଏକ ହଜାର ଟଙ୍କା ଅମାନତ ରଖିବାକୁ ହେବ । ତାଙ୍କ ଉତ୍ତର ସଠିକ୍ ନହେଲେ ସେତ ପୁରସ୍କାର ପାଇବେ ନାହିଁ, ବରଂ ତାଙ୍କର ଏକହଜାର ଟଙ୍କା ବ୍ୟାଜ୍ୟାପ୍ତ ହେବ । ଆଜି ପର୍ଯ୍ୟନ୍ତ କୌଣସି ଜ୍ୟୋତିଷୀ ଏହାକୁ ଗ୍ରହଣ କରି ସଠିକ୍ ଉତ୍ତର ଦେଇନାହାନ୍ତି, ଫଳରେ ବ୍ୟାଜ୍ୟାପ୍ତ ହୋଇଥିବା ଟଙ୍କାର ପରିମାଣ ବଢ଼ି ଚାଲିଛି । ସେହି ଅର୍ଥକୁ ପୁରସ୍କାର ରାଶିରେ ମିଶାଇ ବର୍ତ୍ତମାନ ଶ୍ରୀଲଙ୍କା ହେତୁବାଦୀ ଟ୍ରଷ୍ଟ ୨ ଲକ୍ଷ ଟଙ୍କାର ପୁରସ୍କାର ଘୋଷଣା କରିଛି । କିନ୍ତୁ ହାୟ ! ଜଣେ ମଧ୍ୟ ଜ୍ୟୋତିଷ ବିଶାରଦ ଜ୍ୟୋତିଷ ବାରିଧି ସେହି ଆହ୍ୱାନକୁ ଗ୍ରହଣ କରୁନାହାନ୍ତି । କାରଣ ଫଳିତ ଜ୍ୟୋତିଷୀମାନେ ଭଲଭାବରେ ଜାଣନ୍ତି ତାଙ୍କ ଦ୍ୱାରା ଆଦୃତ ବିଦ୍ୟା ସମ୍ପୂର୍ଣ୍ଣ ମିଥ୍ୟା ।

ଶେଷରେ ଫଳିତ ଜ୍ୟୋତିଷର ଅସାରତା ଓ ଅପକାରୀତା ସମ୍ପର୍କରେ ବୈଜ୍ଞାନିକ ମାନଙ୍କର ମତାମତ ଉଲ୍ଲେଖ କରି ମୋର ପ୍ରବନ୍ଧ ଶେଷ କରିବି । ୧୯୭୫ ମସିହା ସେପ୍ଟେମ୍ବର ମାସରେ ପୃଥିବୀର ବିଭିନ୍ନ ଦେଶର ୧୮୬ ଜଣ ବିଶିଷ୍ଟ ବୈଜ୍ଞାନିକ ଏକ ଘୋଷଣାନାମା ପ୍ରକାଶ କରିଥିଲେ । ସେହି ବୈଜ୍ଞାନିକ ମାନଙ୍କ ମଧ୍ୟରେ ୧୮ ଜଣ ନୋବେଲ୍ ପୁରସ୍କାର

ବିଜେତା ବୈଜ୍ଞାନିକ ଥିଲେ ଏବଂ ଭାରତର ଚନ୍ଦ୍ରଶେଖର ଭେଙ୍କଟ ରମଣଙ୍କ ପୁତୁରା ଡକ୍ଟର ଏସ୍. ଚନ୍ଦ୍ରଶେଖର ମଧ୍ୟ ଥିଲେ । ଆମେରିକାରେ ପ୍ରକାଶିତ ଦି ହ୍ୟୁମାନିଷ୍ଟ ପତ୍ରିକାରେ ସେମାନଙ୍କର ଘୋଷଣାନାମା ପ୍ରକାଶିତ ହୋଇଥିଲା । ଜ୍ୟୋତିଷୀମାନଙ୍କ ପରାମର୍ଶ ଓ ଭବିଷ୍ୟବାଣୀକୁ ଗ୍ରହଣ ନକରିବାକୁ ସେମାନେ ପୃଥିବୀର ଜନଗଣଙ୍କୁ ଅନୁରୋଧ କରିଥିଲେ । ଫଳିତ ଜୋତିଷ ଏକ କୁସଂସ୍କାର, ଏକ ଅନ୍ଧବିଶ୍ୱାସ । ତେଣୁ ତାକୁ ସମ୍ପୂର୍ଣ୍ଣ ପରିତ୍ୟାଗ କରିବାପାଇଁ ବୈଜ୍ଞାନିକ ମାନେ ଅନୁରୋଧ କରିଥିଲେ । ଜଣେ ହେତୁବାଦୀ ଭାବରେ ଏହି ପ୍ରବନ୍ଧ ମାଧ୍ୟମରେ ଆଜି ମୁଁ ମଧ୍ୟ ଅନୁରୋଧ କରୁଛି ଆପଣମାନେ ଫଳିତ ଜ୍ୟୋତିଷ ପରିତ୍ୟାଗ କରନ୍ତୁ । ଚାଲନ୍ତୁ ସମସ୍ତେ ଅସତ୍ୟରୁ ସତ୍ୟକୁ ଯିବା, ଅନ୍ଧାରରୁ ଆଲୋକ ଆଡ଼କୁ ଗତି କରିବା ।



# କୁସଂସ୍କାର ଓ ପାରିବେଶିକ ସଂକଟ

ଡ. କୈଳାସ ଚନ୍ଦ୍ର ଦାଶ

ଆମେମାନେ ଏକମତ ହେବା ଯେ ବିଗତ ଦୁଇଶହ ବର୍ଷ ମଧ୍ୟରେ ବୈଜ୍ଞାନିକ ଓ ପ୍ରଯୁକ୍ତି ବିଦ୍ୟା ସବୁଠାରୁ ଅଧିକ ବିକଶିତ ହୋଇଛି । ଆମର ଧାରଣା ସୃଷ୍ଟି ହୋଇଛି ଯେ ଆଧୁନିକ ଯୁଗ ବିଜ୍ଞାନର ଯୁଗ ଏବଂ ସତ୍ୟ ଅନୁସନ୍ଧାନରେ ବୈଜ୍ଞାନିକ ପ୍ରଣାଳୀ ବିଶେଷ ଉପଯୋଗୀ । ଆଧୁନିକ ଶିକ୍ଷ ସଭ୍ୟତାର ବିକାଶ ଓ ପ୍ରଗତିର ମୁଖ୍ୟ କାରଣ ଭାବେ ଆମେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାକୁ ଗୁରୁତ୍ୱ ଦେଉ ।

ଆମେ ସଭ୍ୟତାର ଆଉ ଗୋଟିଏ ଦିଗକୁ ଲକ୍ଷ୍ୟକଲେ ଆମେ ଜାଣିବା ଯେ ବିଜ୍ଞାନର ଅଗ୍ରଗତି ସହିତ ଅଜ୍ଞତା, କୁସଂସ୍କାର, ଅନ୍ଧବିଶ୍ୱାସ ଏବଂ ବିଚାରହୀନତା ମଧ୍ୟ ବୃଦ୍ଧି ପାଇଛି । କେବଳ ଗାଁଗହଳି ନୁହେଁ, ସହରରେ ମଧ୍ୟ ଏମିତି ଅନେକ ଘଟଣା ଆମେ ଦେଖିବାକୁ ପାଉ ଯାହାକି ଆମ ସମାଜର ଏକ କୁତ୍ସିତ ଚିତ୍ର ପ୍ରଦାନ କରେ । ଏଠାରେ ଅଳ୍ପ କେତେକ ଉଦାହରଣ ପ୍ରାସଙ୍ଗିକ ହେବ । "ଗୁଣିଆ କିମ୍ବା ଡାହାଣୀ ସଂଦେହରେ ହତ୍ୟା" ଶୀର୍ଷକ ଅନେକ ସମ୍ବାଦ ଆମେ ଖବର କାଗଜରୁ ପଢୁ ଏବଂ ପ୍ରତ୍ୟକ୍ଷ ବି କରୁ । ଆମମାନଙ୍କ ଭିତରେ ବହୁ ବ୍ୟକ୍ତି, ଶିକ୍ଷିତ ହୁଅନ୍ତୁ ବା ଅଶିକ୍ଷିତ ହୁଅନ୍ତୁ, ରୋଗ, ବ୍ୟାଧି ଏବଂ ଅନେକ ବ୍ୟକ୍ତିଗତ ତଥା ପାରିବାରିକ ସମସ୍ୟାର କାରଣ ଭାବେ ଗୁଣିଗାରେଡ଼ି, ଗ୍ରହଦୋଷ ଉପରେ ବିଶ୍ୱାସ ରଖନ୍ତି । ତେଣୁ ଏହି ସମସ୍ୟାର ଉତ୍ପତ୍ତି ପାଇଁ ଗୁଣିଆକୁ କିମ୍ବା କିଛି ବ୍ୟକ୍ତି ବିଶେଷଙ୍କୁ ଦାୟୀ କରାଯାଏ । ସାପ କାମୁଡାରେ ଆଘାତପ୍ରାପ୍ତ ବ୍ୟକ୍ତିମାନଙ୍କୁ ଚିକିତ୍ସାଳୟକୁ ନଆଣି ଗୁଣିଆ ପାଖକୁ ନେବାର ବହୁ ଦୃଷ୍ଟାନ୍ତ ଏବେ ମଧ୍ୟ ରହିଛି । ଅନେକ ମାନସିକ ରୋଗୀଙ୍କୁ ଡାହାଣି ଲାଗିଛି କିମ୍ବା କୌଣସି ପ୍ରେତାତ୍ମା ପ୍ରବେଶ କରିଛି ବୋଲି ଧରି ନିଆଯାଇଥାଏ । କୌଣସି ତାନ୍ତ୍ରିକ କିମ୍ବା ଗୁଣିଆର

ସାହାଯ୍ୟ ନିଆଯାଏ, ଏହି ରୋଗୀମାନଙ୍କୁ ଭଲ କରିବା ପାଇଁ । ଗୁଣି ଛଡ଼ାଇବା ପ୍ରଣାଳୀଟି ଏପରି ଅମାନୁଷିକ, ନିଷ୍ଠୁର ଏବଂ ବର୍ବରତାପୂର୍ଣ୍ଣ ଯେ ଜଣେ ନ ଦେଖିଲେ ବିଶ୍ୱାସ କରିପାରିବ ନାହିଁ । କିଛିଦିନ ତଳେ କେତେକ ସ୍କୁଲରେ କିଛି ଛାତ୍ରୀ ବେହୋସ ହେବା ଘଟଣାକୁ ପ୍ରେତାତ୍ମାର କାଣ୍ଡ ବୋଲି କେତେକ ସମ୍ବାଦପତ୍ରରେ ପ୍ରକାଶ ପାଇଥିଲା ।

ଏହିଭଳି ଅନେକ କୁସଂସ୍କାରର କାରଣ ହେଉଛି ଅଜ୍ଞତା ଓ ଅନ୍ଧବିଶ୍ୱାସ । କୁସଂସ୍କାରର କୌଣସି ସଂଜ୍ଞା ଦେଇ ନପାରିଲେ ମଧ୍ୟ ଏହାର ଅର୍ଥ ବ୍ୟାଖ୍ୟା କରାଯାଇ ପାରିବ । ମୋଟାମୋଟି ଭାବେ ଏହା ହେଉଛି କୌଣସି ଅତୀନ୍ଦ୍ରିୟ ଶକ୍ତିରେ ପ୍ରମାଣବିହୀନ ବିଶ୍ୱାସ, ଆଧିଦୈବିକ ତଥା ଅଜ୍ଞେୟ ଓ ଅଭେଦ୍ୟ ଶକ୍ତିରେ ବିଶ୍ୱାସ ଏବଂ ଏଥିପ୍ରତି ଅହେତୁକ ଭୟ, ଭୟ ଜନିତ ଭକ୍ତି ଏବଂ ଭକ୍ତି ଜଣାଇବା ପାଇଁ କେତେକ କର୍ମକାଣ୍ଡ (Rituals) ଇତ୍ୟାଦିର ପାଳନ ।

ଆମର ଦୈନନ୍ଦିନ ଜୀବନରେ ବହୁ କୁସଂସ୍କାର ରହିଛି । କେତେକ ବ୍ୟକ୍ତି, ବସ୍ତୁ, ସ୍ଥାନ, ଅବସ୍ଥା ଓ ସମୟକୁ ଶୁଭ ଏବଂ ଏହିପରି ଅନ୍ୟ କେତେକକୁ ଅଶୁଭ ବା ଅମଂଗଳ ବୋଲି ବିଚାର କରାଯାଇଥାଏ । ଜନ୍ମ, ମୃତ୍ୟୁ ଆଦି ଘଟଣା ଠାରୁ ଆରମ୍ଭ କରି, ଜୀବିକା, ଅଧ୍ୟୟନ, ଯାତ୍ରା, ବିବାହ ଆଦି ଉତ୍ସବରେ ପାରଂପାରିକ ଭାବେ ବହୁ କୁସଂସ୍କାର ରହିଛି । ଉଦାହରଣ ସ୍ୱରୂପ କେତେକ ବାର ବା ତିଥିରେ ବାଳ ଏବଂ ନଖ କାଟିବା, ଆମିଷ ଭକ୍ଷଣ କରିବା, ଯାତ୍ରା କରିବା, ଅଧ୍ୟୟନ କରିବା ଇତ୍ୟାଦି କ୍ଷତିକାରକ, ଅମଙ୍ଗଳକର ଓ ଅଶୁଭ ବୋଲି ବିଚାର କରାଯାଏ । ବହୁତ ଉଚ୍ଚ ଶିକ୍ଷିତ ତଥା ପ୍ରଭାବଶାଳୀ ବ୍ୟକ୍ତିମାନେ ଏହି କୁସଂସ୍କାରରୁ ବି ମୁକ୍ତ ନୁହନ୍ତି । ଏପରି ଅନେକ ବ୍ୟକ୍ତିଙ୍କୁ ଯୁବସମାଜ ଅନ୍ଧାନୁକରଣ କରିଥାନ୍ତି । ତେଣୁ ତଥାକଥିତ ପ୍ରଭାବଶାଳୀ ଲୋକମାନେ ଯେଉଁଭଳି ଆଚରଣ ପ୍ରଦର୍ଶନ କରନ୍ତି ତାହାକୁ ସାଧାରଣ ଲୋକମାନେ କେବଳ ଅନୁକରଣ କରନ୍ତି । ଅତୀତରେ ଜଣେ ବିଖ୍ୟାତ ଚିତ୍ରତାରକା ତାଙ୍କର ଭାବି ପୁତ୍ରବଧୂଙ୍କର ମାଙ୍ଗଳିକ ଦୋଷ କଟାଇବା ପାଇଁ ବହୁପୂଜା ପାଠ କରିଥିବା ସମ୍ବାଦ ଖବରକାଗଜରୁ ଜଣା ପଡ଼ିଥିଲା । ସେହିପରି ଅନେକ ବିଖ୍ୟାତ ଲୋକ ମଧ୍ୟ କୁସଂସ୍କାର ଓ ଅନ୍ଧବିଶ୍ୱାସକୁ ଲୋକପ୍ରିୟ କରାଇ ଥାଆନ୍ତି । ସାଧାରଣ ଲୋକେ ଅସୁସ୍ଥତା ଦୂରକରିବା, ପରୀକ୍ଷାରେ କୃତକାର୍ଯ୍ୟ ହେବା, ବିବାହ ପାଇଁ ଉପଯୁକ୍ତ ପାତ୍ର କିମ୍ବା ପାତ୍ରୀ ପାଇବା, ଚାକିରି ପାଇବା, ବର୍ଷାହେବା, ଉତ୍ତମ ଫସଲ ଅମଳ କରିବା ଇତ୍ୟାଦି ପାଇଁ ଗ୍ରହଶାନ୍ତି କରାଇ ଥାଆନ୍ତି । ଅନେକ କାର୍ଯ୍ୟରେ ସଫଳତା ପାଇବା ପାଇଁ ନିର୍ଦ୍ଦିଷ୍ଟ ପଥର, ମୁଦି, ଚେନ୍, ଲକେଟ ଇତ୍ୟାଦି ଗହଣା କ୍ରୟ କରିଥାନ୍ତି । କେହି କେବେ ପଚାରେ ନାହିଁ ଯେ ସଫଳତା ପାଇଁ (ପ୍ରେମରେ ହେଉ କିମ୍ବା ପରୀକ୍ଷାରେ ହେଉ କିମ୍ବା ଚାକିରି କ୍ଷେତ୍ରରେ ହେଉ) ଯେଉଁ ବ୍ୟକ୍ତି ଏହି ବସ୍ତୁ ବିକ୍ରି କରୁଛନ୍ତି ନିଜେ କାହିଁକି ବ୍ୟବହାର କରି ସମୃଦ୍ଧି ଓ ସଫଳତା ଲାଭ କରୁନାହାନ୍ତି ?

ରାସ୍ତାରେ ବିରାଡି ଦେଖିବାକୁ ଅଶୁଭ ବିଚାର କରିବା ଏକ କୁସଂସ୍କାର ହେଲେ ବି ଏହା ବିଶେଷ କ୍ଷତିକାରକ ନୁହେଁ । ତେବେ କୌଣସି ବ୍ୟକ୍ତିର ଦୃଷ୍ଟିକୁ ବା ସାକ୍ଷାତକୁ ଅଶୁଭ, ଅମଂଗଳ ବା କ୍ଷତିକାରକ ବୋଲି ବିଚାର କରିବାଦ୍ୱାରା ସେହି ବ୍ୟକ୍ତିର ସ୍ୱାଭିମାନ ଓ ସମ୍ମାନକୁ କ୍ଷୁର୍ଣ୍ଣ କରାଯାଇଥାଏ । ଆମ ସମାଜରେ ଗୋଟିଏ ଆଖି ନଥିବା ବ୍ୟକ୍ତିଙ୍କୁ ଅସାଧୁ ବୋଲି ଭାବିବା, ବିଧବା, ନିସନ୍ତାନ ଏବଂ ଅପୁତ୍ରିକ ନାରୀମାନଙ୍କୁ ଅଶୁଭ ବୋଲି ବିଚାର କରାଯିବା ଆଦି କୁସଂସ୍କାର ମଧ୍ୟ ପ୍ରଚଳିତ । ଏହି କୁସଂସ୍କାରଗୁଡ଼ିକ କିପରି ମାରାତ୍ମକ ବିଚାର କରାଯାଉ । ପ୍ରଥମତଃ ସ୍ୱାମୀଙ୍କୁ ହରାଇଥିବା ନାରୀଟି ଅସହାୟ ହୋଇପଡ଼େ । ତାକୁ ସାନ୍ତ୍ୱନା ଦେବା କିମ୍ବା ସାହାଯ୍ୟର ହାତଟିଏ ବଢ଼ାଇବା ପରିବର୍ତ୍ତେ ତା ଉପରେ ବହୁ କଟକଣା ଜାରିକରାଯାଏ । ତାର ଖାଇବା ପିଇବାଠାରୁ ଆରମ୍ଭ କରି କ'ଣ ପରିଧାନ କରିବ ବା କ'ଣ କରିବ ନାହିଁ ତାହା ସାମାଜିକ ପରଂପରାର ଦ୍ୱାହି ଦେଇ ତା' ଉପରେ ଲଦି ଦିଆଯାଏ । ପୁଣି ବିବାହ, ବ୍ରତ ଆଦି ଶୁଭକାର୍ଯ୍ୟ (ତଥାକଥିତ) ରେ ସେଇ ବିଧବା ନାରୀଟି ଯୋଗଦେବା ଅମଙ୍ଗଳ ବୋଲି ବିଚାର କରାଯାଏ । ଏହା ବ୍ୟକ୍ତି ମର୍ଯ୍ୟାଦାର ଉଲଂଘନ ନୁହେଁ କି ?

ଏଠାରେ ଗୁରୁତ୍ୱପୂର୍ଣ୍ଣ ବିଷୟଟି ହେଉଛି ଯେ ଅନେକ କୁସଂସ୍କାର ପରଂପରା କ୍ରମେ ସଂସ୍କୃତିର ଅଂଶ ବିଶେଷ ହୋଇଯାଏ । ଏହାହିଁ ଏକ ଅପସଂସ୍କୃତି । ଏହି ଦୃଷ୍ଟିରୁ କୁସଂସ୍କାରଗୁଡ଼ିକୁ ଦୁଇଭାଗରେ ବିଭକ୍ତ କରାଯାଇ ପାରିବ । ପ୍ରଥମତଃ କ୍ଷତିକାରକ ଓ ବିପଦପୂର୍ଣ୍ଣ କୁସଂସ୍କାର ଏବଂ ଦ୍ୱିତୀୟତଃ ହାନିକାରକ ହୋଇନଥିବା କୁସଂସ୍କାର । କେତେକ କୁସଂସ୍କାର ଯେଉଁଗୁଡ଼ିକ ନିଜ ପାଇଁ କିମ୍ବା ଅନ୍ୟାମାନଙ୍କ ପାଇଁ କ୍ଷତିକାରକ ନୁହନ୍ତି ତାହା ସଂସ୍କୃତିର ବା ପରଂପରାର ଅଂଶ ବିଶେଷ ହୋଇ ରହିଲେ ଆପତ୍ତି ନାହିଁ । ଯଥା ଆମେ କେଉଁ ରଂଗର ପୋଷାକ ପିନ୍ଧିବାକୁ ଶୁଭ ବୋଲି ବିଚାର କରିବା, ଘରକୁ କେଉଁ ରଂଗ କରିବା, ମୃତ ଲୋକ ପାଇଁ ଶୋକସଭା କରିବା, ଆତ୍ମାର ସଦ୍‌ଗତି ପାଇଁ ନୀରବ ପ୍ରାର୍ଥନା କରିବା ବା ତାଙ୍କର ମୂର୍ତ୍ତି ଓ ଛବିରେ ମାଳାଟିଏ ଦେବା ଆଦୌ କ୍ଷତିକାରକ ନୁହେଁ । କିନ୍ତୁ ରାସ୍ତାରେ କେଉଁ କଡ଼ରେ ଗଲେ ଶୁଭ ହେବ, କେତେ ଯୋରରେ ଗାଡ଼ି ଚଳାଇଲେ ଶୁଭ ହେବ ଏହା ନିଜପାଇଁ ତଥା ଅନ୍ୟମାନଙ୍କ ପାଇଁ କ୍ଷତିକାରକ । ଏହା କହିବାର ଉଦ୍ଦେଶ୍ୟ ହେଉଛି ଯେ ମାନବ କଲ୍ୟାଣ ବା ବହୁଜନଙ୍କର ହିତ ସାଧନକୁ ନେଇ ଏକ କାର୍ଯ୍ୟ (Action) ର ଭଲ ମନ୍ଦ ବିଚାର କରାଯାଏ । ମାନବ କଲ୍ୟାଣ ସହିତ ବିଶ୍ୱକଲ୍ୟାଣ ଜଡ଼ିତ । ତେଣୁ ଏକ ପ୍ରମୁଖ ସମସ୍ୟା ଯାହା ମାନବଜାତି ପ୍ରତି ବିପଦ ସୃଷ୍ଟି କରିଛି ତାହା ହେଉଛି ପରିବେଶ ପ୍ରଦୂଷଣ । ତେଣୁ ଏହା ବିଚାର କରିବାକୁ ହେବ ଯେ ଆମେ ଏହି ସମସ୍ୟାର ଏକ ଅଂଶ ନା ଏହାର ସମାଧାନର ଏକ ଅଂଶ ? ଅନେକ କୁସଂସ୍କାର କିପରି ଏହି ସମସ୍ୟାର ଏକ ଅଂଶ ଏବଂ ସେହି ଦୃଷ୍ଟିରୁ ବର୍ଜନୀୟ ତାହା ବିଚାର କରାଯାଉ । ଯେଉଁ କୁସଂସ୍କାର, କର୍ମକାଣ୍ଡ ଏବଂ ବିଧିବିଧାନ ପରିବେଶ

ପ୍ରଦୂଷଣ ଜନିତ ସମସ୍ୟାର ଏକ ଅଂଶ, ସେଗୁଡିକୁ ଆମେ ଚିହ୍ନିବା ଏବଂ ନିରାକରଣ କରିବା ଆବଶ୍ୟକ ।

ଏକଥା ମନେ ରଖିବାକୁ ହେବ ଯେ ବିଜ୍ଞାନ ହେଉ କିମ୍ବା ଧର୍ମ ହେଉ (Religion ଅର୍ଥରେ) କେହିବି ନୈତିକତା ବିହୀନ ହୋଇପାରିବେ ନାହିଁ, ଏବଂ ନୈତିକତା ମାନବ କଲ୍ୟାଣ ଓ ଅକଲ୍ୟାଣର ଉର୍ଦ୍ଧ୍ୱରେ ରହିପାରିବ ନାହିଁ । ତେଣୁ ବିଜ୍ଞାନ ମାନବକଲ୍ୟାଣ ଠାରୁ ଦୂରେଇଯିବା ଉଚିତ୍ ନୁହେଁ । କିନ୍ତୁ ଭିତ୍ତିହୀନ, ଚିରାଚରିତ, ଗତାନୁଗତିକ ଦୃଢ଼ବିଶ୍ୱାସ ଯେଉଁ ଧର୍ମୀୟ ଚନ୍ତାଧାରାରୁ ଆସିଥାଉ ପଛେ ଏହା ବୈଜ୍ଞାନିକ ଚିନ୍ତାଧାରାକୁ ପ୍ରତିରୋଧ କରିବା ଅନୁଚିତ । ଧର୍ମ ଯଦି ବିଜ୍ଞାନର ପ୍ରଗତିର ପଥ ପ୍ରତିରୋଧ କରେ, ଏହା ମାନବ ସମାଜ ପାଇଁ କ୍ଷତିକାରକ ।

ଯେଉଁସବୁ କୁସଂସ୍କାରର କୁପରିଣତି ଆମ ପରିବେଶ ଉପରେ ପଡ଼େ ସେଗୁଡିକ ମଧ୍ୟରେ ଅନେକ ହେଉଛି ଧର୍ମୀୟ କର୍ମକାଣ୍ଡ ଜନିତ । ଆମେ ଯେତେସବୁ ପୂଜା ପାର୍ବଣ, ମୃତକ୍ରିୟା, ଶ୍ରାଦ୍ଧ ଆଦି ପାଳନ କରୁ ସେଗୁଡିକର କୁପ୍ରଭାବ ଆମ ପରିବେଶ ଉପରେ ପଡ଼େ । ଏଗୁଡିକ କିପରି ଜଳ, ସ୍ଥଳ ଓ ଆକାଶକୁ ପ୍ରଦୂଷିତ କରନ୍ତି ଚାଲନ୍ତୁ ବିଚାର କରିବା ।

ବହୁକାଳରୁ ପାରଂପରିକ ଭାବେ ଆମ ରାଜ୍ୟରେ ପ୍ରତ୍ୟେକ ବର୍ଷ ବିଶ୍ୱପ୍ରସିଦ୍ଧ ରଥଯାତ୍ରା ହୁଏ । ଏହି ରଥଗୁଡିକ ନୂତନ ଭାବେ ନିର୍ମାଣ ହେବା ଯୋଗୁଁ ବହୁତ କାଠର ଆବଶ୍ୟକତା ରହିଥାଏ । ତେଣୁ ଏଥିପାଇଁ ବହୁ ସଂଖ୍ୟାରେ ବିଶାଳ ଜୀବନ୍ତ ବୃକ୍ଷ କଟାଯାଏ । ନୟାଗଡ଼, ଦଶପଲ୍ଲା ଆଦି ବିଭିନ୍ନ ଜାଗାରୁ ଯେତିକି କାଠ ପୁରୀର ରଥଯାତ୍ରା ପାଇଁ ଆସେ ସେଠାରେ ଏକର ଏକର ଜଙ୍ଗଲ ସଫା ହୋଇଯାଏ । ଆଜି ଜଙ୍ଗଲ କମି  କମି ଆସୁଥିବା ବେଳେ ଏବଂ ବନୀକରଣର ଜରୁରୀ ଆବଶ୍ୟକତା ଥିବାବେଳେ ଜଙ୍ଗଲରୁ ପୁଣି କାଠ କାଟିବା ଦ୍ୱାରା ପରିବେଶ ଜନିତ ସମସ୍ୟାର ଏହା ଏକ କାରଣ ହୋଇଥାଏ । ଆନନ୍ଦର କଥା ଯେ ଜଗନ୍ନାଥ, ବଳଭଦ୍ର ଏବଂ ଦେବୀ ସୁଭଦ୍ରାଙ୍କ ଏହି ରଥ କାଠ ପାଇଁ ଏବେ ଜଙ୍ଗଲ ସୃଷ୍ଟି କରାଯାଉଛି । ତେବେ ଓଡ଼ିଶାର ଗାଆଁ ଗହଳିଠାରୁ ଆରମ୍ଭ କରି ସହର ପର୍ଯ୍ୟନ୍ତ (ପୁରୀ ରଥଯାତ୍ରା ପ୍ରଭାବରେ) ବହୁ ଜାଗାରେ ରଥଯାତ୍ରା ହେଉଛି । ଏଥିପାଇଁ ପ୍ରତ୍ୟେକ ବର୍ଷ ହଜାର ହଜାର ଗଛ କାଟିବା  ଆବଶ୍ୟକ ପଡୁଛି । ଜଙ୍ଗଲ କ୍ଷୟ  ଏବଂ ପରିବେଶ ପ୍ରଦୂଷଣ ପାଇଁ ଏହା ସାହାଯ୍ୟ କରୁଛି । ଏହି ପରିପ୍ରେକ୍ଷୀରେ ରଥଯାତ୍ରା ପାଇଁ ରଥର ପୁରୁଣା କାଠଗୁଡ଼ିକୁ ପୁନର୍ବାର ବ୍ୟବହାର କରି ରଥ ନିର୍ମାଣ କଲେ କିପରି ହୁଅନ୍ତା ? ଦୁଇ କିମ୍ବା ଚାରିବର୍ଷ ବ୍ୟବଧାନରେ ଥରେ ରଥଯାତ୍ରା କଲେ କିପରି ହୁଅନ୍ତା ? ଅନ୍ତତଃ ଗଛଗୁଡ଼ିକ ବଢ଼ିବାକୁ ସୁଯୋଗ ପାଆନ୍ତେ । ନଚେତ୍ ରଥଯାତ୍ରା ଯେପରି ଅଧିକରୁ ଅଧିକ ସ୍ଥାନରେ ପାଳିତ ହେଉଛି, ଏହା ଭବିଷ୍ୟତରେ ଜଙ୍ଗଲ ଧ୍ୱଂସର ଏକ ମୁଖ୍ୟ କାରଣ ହେବ ।

ଓଡିଶାରେ ବାରମାସରେ ତେର ପର୍ବ । ଏବେ କେତେକ ପୂଜାପାର୍ବଣ କଥା ବିଚାରକୁ ନେବା । ଦୂର୍ଗାପୂଜା, କାଳିପୂଜା, ଗଣେଶପୂଜା, ସରସ୍ୱତୀ ପୂଜା, ବିଶ୍ୱକର୍ମା ପୂଜା, ଗଜଲକ୍ଷ୍ମୀ ପୂଜା ଆଦି ଅନେକ ପୂଜାପାର୍ବଣ ଆମେ ବହୁ ଆଡ଼ମ୍ବରରେ ପାଳନ କରିଥାଉଁ ।

ପ୍ରଥମତଃ ଏହି ପୂଜା ସମୟରେ ଡାକବାଜି ଯନ୍ତ୍ରରୁ ପ୍ରଚାରିତ ଗୀତ ସହିତ ଘଣ୍ଟ, ମର୍ଦ୍ଦଳ, କାହାଳି ଆଦି ବଜାଇ କାନଫଟା ଶବ୍ଦ ସୃଷ୍ଟି କରାଯାଏ । ମୂର୍ତ୍ତି ବିସର୍ଜନ ବେଳେ ଏହିପରି ଶବ୍ଦକରି ସହର ଓ ଗ୍ରାମ ପରିକ୍ରମା କରାଯାଏ । ଏହି ଶବ୍ଦ ପ୍ରଦୂଷଣର କୁପ୍ରଭାବରୁ ଘରେଥିବା ବୃଦ୍ଧ, ବୃଦ୍ଧା, ଶିଶୁ ଏବଂ ଚିକିତ୍ସାଳୟରେ ଅସୁସ୍ଥ ବ୍ୟକ୍ତିମାନେ କେହିବି ନିସ୍ତାର ପାଆନ୍ତି ନାହିଁ । ଆମେମାନେ ସେଥିପ୍ରତି ଉଦାସୀନ । ନୀରବରେ ଏବଂ ଶ୍ରୁତିମଧୁର ତଥା କମ୍ ଶବ୍ଦରେ ଠାକୁର ଓ ଠାକୁରାଣୀଙ୍କୁ ଡକାଯାଇ ପାରନ୍ତା ନାହିଁ! ଏହି ଭସାଣି ପଟୁଆରର ପ୍ରଦର୍ଶନ ବେଳେ ବେଳେ ସାଂପ୍ରଦାୟିକ ସଂଘର୍ଷର ସୂତ୍ରପାତ କରୁଥିବାରୁ ଏହାକୁ ସୀମିତ କରାଗଲେ କିପରି ହୁଅନ୍ତା ?

ପୂଜାସ୍ଥଳ ମାନଙ୍କରେ ହୋମ କରାଯାଏ ଏବଂ ଘିଅ, ତେଲ, ଦୀପ, ଧୂପ ଓ ଝୁଣା ଆଦିର ଧୂଆଁ ଆମକୁ ଅଣନିଶ୍ୱାସୀ କରିପକାଏ । ଆମେ ଜାଣୁ ଯେ ଯେକୌଣସି ଧୂଆଁ ପରିବେଶ ପ୍ରଦୂଷଣ କରାଏ । ମନ୍ଦିର ମଧ୍ୟରେ ଠାକୁର ଯେଉଁ ଗୃହରେ(ଗମ୍ଭୀରା)ଅବସ୍ଥାନ କରନ୍ତି ସେଠାରେ ବାୟୁ ଚଳାଚଳ ହୋଇ ନଥାଏ । ତେଣୁ ସେଠାରେ ଦୀପ ଏବଂ ଧୂପ ନିଶ୍ଚୟ କ୍ଷତିକାରକ । ଅବଶ୍ୟ ଆଜିକାଲି କେତେକ ମନ୍ଦିର ଭିତରେ ଦୀପ ଜଳାଇବା ବନ୍ଦ ହେଲାଣି । କିନ୍ତୁ ଆଲୋକର ଆବଶ୍ୟକତା ନଥିଲାବେଳେ ଏପରି ଦୀପ ନ ଜଳାଇଲେ ହୁଅନ୍ତା ନାହିଁ ? ବିନା ଦୀପ ଏବଂ ଧୂପ ତଥା ମାନସିକ ଅନୁଯାୟୀ ଲକ୍ଷେ ବଳିତା ନ ଜଳାଇ ମାନସିକ ସ୍ତରରେ ଭକ୍ତିଭାବରେ କ'ଣ ଦିଅଁକୁ ପ୍ରାର୍ଥନା କରାଯାଇ ପାରିବ ନାହିଁ ?

କେତେକ ଯୁକ୍ତି କରନ୍ତି ଯେ, ଏହି ଦୀପ, ଧୂପ ଏବଂ ଝୁଣା ଧୂଆଁଦ୍ୱାରା ଅନେକ କୀଟ, ମଶା, ମାଛି ତଥା ଜୀବାଣୁ, ଭୂତାଣୁ ଆଦି ନଷ୍ଟ ହୋଇଥାନ୍ତି । କିନ୍ତୁ ବାସ୍ତବରେ ଏହାର ମାତ୍ରାଧିକ ପ୍ରୟୋଗ ଲାଭ ଅପେକ୍ଷା କ୍ଷତିହିଁ କରିଥାଏ । ଡେଟଲ୍, ବ୍ଲିଚିଂ, ଫିନାଇଲ ନଥିବାବେଳେ ହୁଏତ ଏହାର କିଛି ଉପଯୋଗିତା ଥିଲା । ତେବେ ସଂପ୍ରତି କୀଟ, ମଶା, ମାଛିକୁ ଏସବୁ ଧୂଆଁରେ ନିୟନ୍ତ୍ରଣ କରିବା ସମ୍ଭବ କି ?

ସାର୍ବଜନୀନ ପୂଜାରେ ଭସାଣି ଯାତ୍ରା ଏକ ପ୍ରମୁଖ ଉତ୍ସବ । ମୃଣ୍ମୟ ମୂର୍ତ୍ତିଗୁଡ଼ିକୁ ବିସର୍ଜ୍ଜନ କରିବାକୁ ଏକ ବିରାଟ ଶୋଭାଯାତ୍ରାରେ ନିଆଯାଏ । ସେଗୁଡିକ ଏକ ଜଳାଶୟ ଯଥା ନଦୀ କିମ୍ବା ପୁଷ୍କରିଣୀରେ ନିକ୍ଷେପ କରିବାର ପରଂପରା ରହିଛି । କଳ କାରଖାନାର ବିଷାକ୍ତ ବର୍ଜ୍ଜ୍ୟବସ୍ତୁ ଯେମିତି ନଦୀ ଜଳକୁ ପ୍ରଦୂଷିତ କରେ, ସେହିପରି ଏହି ମୂର୍ତ୍ତିଗୁଡିକ

ଜଳାଶୟର ଜଳକୁ ପ୍ରଦୂଷିତ କରନ୍ତି । ନଦୀ ଓ ପୁଷ୍କରିଣୀ ସଂଖ୍ୟା ବୃଦ୍ଧି ପାଉନାହିଁ । କିନ୍ତୁ ମୂର୍ତ୍ତି ସଂଖ୍ୟା ଓ ପୂଜାମଣ୍ଡପ ସଂଖ୍ୟା ବୃଦ୍ଧି ପାଉଛି । ବିଶେଷଜ୍ଞମାନେ ମତ ଦିଅନ୍ତି ଯେ ଏହି ମୂର୍ତ୍ତିରେ ଥିବା ରାସାୟନିକ ରଂଗଗୁଡ଼ିକ ବିଷାକ୍ତ ହୋଇଥିବାରୁ ଏହା ନଦୀ ଓ ପୁଷ୍କରିଣୀର ଜଳକୁ ଭୟଙ୍କର ପ୍ରଦୂଷିତ କରିଥାଏ । ଏହି ପ୍ରଦୂଷିତ ଜଳ ନାନା ମାରାତ୍ମକ ରୋଗ ସୃଷ୍ଟି କରିଥାଏ । ସୁତରାଂ ମୂର୍ତ୍ତିମାନଙ୍କୁ ଜଳାଶୟରେ ବିସର୍ଜନ କରିବା କ୍ଷତିକାରକ ନୁହେଁ କି ?

କାର୍ତ୍ତିକ ପୂର୍ଣ୍ଣିମାଦିନ ଆମେ ସମସ୍ତେ ପ୍ରତୀକାତ୍ମକ ଭାବରେ ନଦୀ ଓ ପୁଷ୍କରିଣୀ ମାନଙ୍କରେ ଡଂଗା ବା ବୋଇତ ଭସାଉ । ଉଦାହରଣ ସ୍ୱରୂପ ଭୁବନେଶ୍ୱର ବାସୀ ଡଙ୍ଗା ଭସାନ୍ତି, ତେବେ ଲକ୍ଷ ଲକ୍ଷ ଡଙ୍ଗା ପୁଷ୍କରିଣୀର ଜଳକୁ ପ୍ରଦୂଷିତ କରିବା ନିଶ୍ଚିତ । କାର୍ତ୍ତିକ ପୂର୍ଣ୍ଣମୀ ଯିବାର ବହୁଦିନ ପର୍ଯ୍ୟନ୍ତ ହଜାର ହଜାର ପୁଷ୍କରିଣୀର ପଙ୍କୋଧାର କରି ପରିଷ୍କାର କରିବାର ଆବଶ୍ୟକତା ଥିବା ସମୟରେ ତାକୁ ଆମେ ଅଧିକ ପ୍ରଦୂଷିତ କରୁ । ଆମେ ଏହି ସମସ୍ୟାର ଏକ ଅଂଶ ବିଶେଷ । ତେବେ ପରଂପରା ନାଁରେ ଡଙ୍ଗାଭସାଇବା କ'ଣ ଜରୁରୀ ? ପ୍ରତୀକାତ୍ମକ ଭାବେ ସାରା ସହରବାସୀ ଗୋଟିଏ ଡଙ୍ଗା ଭସାଇ ଏହି ପରମ୍ପରା ରଖିପାରନ୍ତେ ନାହିଁକି ? ଏହାଦ୍ୱାରା ଓଡ଼ିଶାର ବାଣିଜ୍ୟ ଐତିହକୁ ସ୍ମରଣ କରି ହେବନାହିଁକି ?

ଆମର ଆଉ ଏକ ପରମ୍ପରା ରହିଛି ଯେ ଶ୍ରାଦ୍ଧ, ହୋମ, ଯଜ୍ଞ ଏବଂ ପୂଜାରେ ବ୍ୟବହୃତ ପଦାର୍ଥ ଯଥା ଆମ୍ବଡାଳ, ଦୁବ, ଚାଉଳ, ଫୁଲ, ପିଣ୍ଡ, ପୂର୍ଣ୍ଣକୁମ୍ଭ ଇତ୍ୟାଦି ପଦାର୍ଥ ନଦୀ କିମ୍ବା ପୁଷ୍କରିଣୀ ଭଳି ଜଳାଶୟରେ ହିଁ ପକାଯିବ । ଏହି ଦ୍ରବ୍ୟଗୁଡ଼ିକ ପାଣିରେ ପଚି ଦୁର୍ଗନ୍ଧ ସୃଷ୍ଟି କରନ୍ତି ଏବଂ ଜଳାଶୟର ପାଣି ଦୂଷିତ ହୋଇଥାଏ । ଏଗୁଡ଼ିକୁ ଆମେ ଖତଗଦାରେ ପକାଇଲେ କିପରି ହୁଅନ୍ତା ?

ମୃତ ବ୍ୟକ୍ତିର ଅନ୍ତିମ ସଂସ୍କାର ବିଭିନ୍ନ ଧର୍ମରେ ବିଭିନ୍ନ ପ୍ରକାରରେ କରାଯାଏ । କେତେକ ଶବକୁ ଦାହ କରନ୍ତି, ଅନ୍ୟ କେତେକ କବର ଦିଅନ୍ତି ବା ମାଟିତଳେ ପୋତିଦିଅନ୍ତି । ପୁଣି କେତେକ ଶବକୁ ଜଳସମାଧି ଦିଅନ୍ତି । ଜଳସମାଧି ଦେବାବେଳେ ଶବକୁ ଏକ ସିନ୍ଦୁକ କିମ୍ବା ସେହିଭଳି ଥଳିରେ ରଖି ତା ସହିତ କିଛି ପଥର ବାନ୍ଧି ନଦୀ ମଧ୍ୟରେ ବୁଡ଼ାଇ ଦିଆଯାଏ । ଏହି ଶବଗୁଡ଼ିକ ପଚି ନଦୀଜଳକୁ ଦୂଷିତ କରେ ।

ଅନେକ ଲୋକ ସେମାନଙ୍କ ପରିବାରର ମୃତ ବ୍ୟକ୍ତିଙ୍କୁ ଗଙ୍ଗାରେ ଭସାଇ ଦିଅନ୍ତି । କାରଣ ସେମାନେ ବିଶ୍ୱାସ କରନ୍ତି ଯେ ଗଙ୍ଗାରେ ବିସର୍ଜନ କଲେ ବ୍ୟକ୍ତିଟି ମୋକ୍ଷ ବା ମୁକ୍ତି ପାଇଥାଏ । ସେଥିଯୋଗୁଁ ମଧ୍ୟ ଗଙ୍ଗାଜଳ ପ୍ରଦୂଷିତ ହୋଇଥାଏ । ମଣିଷ, ଗାଈ, ଗୋରୁ ଆଦିଙ୍କ ଶବ ପଚି ଗଙ୍ଗା ଜଳକୁ ପ୍ରଦୂଷିତ କରାଇଥାଏ । ଯେଉଁ ନଦୀକୁ ଓ ତାର ଜଳକୁ ଆମେ ପବିତ୍ର ବୋଲି କହୁ ତାକୁହିଁ ପ୍ରଦୂଷିତ କରୁ ।

ଦୀପାବଳି ଆମର ଆଉ ଗୋଟିଏ ମହାନ ପର୍ବ । ଏହାକୁ ଆମେ ଆଲୋକର ପର୍ବ ବୋଲି କହୁ । ଦୀପାବଳିରେ କେବଳ ଘିଅ କିମ୍ବା ତେଲରେ ଦୀପ ଜଳାଯାଏ ନାହିଁ । ଏଥିରେ ବହୁତ ପ୍ରକାର ଆତସବାଜି ଏବଂ ଛୋଟ ତାଳଫୋଟକାଠାରୁ ଆରମ୍ଭ କରି ବଡ଼ ବଡ଼ ବମ୍ ଆଦି ଫୁଟାଯାଏ । ଏହି ପର୍ବରେ ବହୁ ସମୟ ଧରି ଶବ୍ଦ ପ୍ରଦୂଷଣ ସହିତ ବାୟୁମଣ୍ଡଳ ବି ପ୍ରଦୂଷିତ ହୋଇଥାଏ । ଛୋଟ ମୋଟ ଅଗ୍ନିକାଣ୍ଡ ଭଳି ଦୁର୍ଘଟଣା ସହିତ ଏହା ବହୁ ପ୍ରକାର ଫୁସ୍ ଫୁସ୍ ଜନିତ ରୋଗ ସୃଷ୍ଟି କରେ । ଶ୍ୱାସ ରୋଗୀମାନେ ଅତ୍ୟଧିକ ହଟହଟା ହୁଅନ୍ତି । ପରିବେଶ ଏହି ଧୂଆଁ ଏବଂ ଅତ୍ୟଧକ ଶବ୍ଦ ଯୋଗୁଁ ପ୍ରଦୂଷିତ ହୋଇଥାଏ । ଏବେ ରାବଣପୋଡ଼ି ମଧ୍ୟ ଗୋଟିଏ ଫେଶନ୍ ହୋଇଛି । ରାବଣ, କୁମ୍ଭକର୍ଣ୍ଣ ଓ ମେଘନାଦଙ୍କର ସୁଉଚ୍ଚ ମୂର୍ତ୍ତିଗୁଡ଼ିକରେ ହଜାର ହଜାର ବାଣ ଖଂଜି ସେଥିରେ ଅଗ୍ନି ସଂଯୋଗ କରାଯାଏ । ଏବେ ପ୍ରାୟ ଅନେକ ଗାଁ ଓ ଛୋଟ ଛୋଟ ସହର ଠାରୁ ଆରମ୍ଭ କରି ବଡ଼ ବଡ଼ ନଗରରେ ଏହିପରି ରାବଣପୋଡ଼ି କରି ବାୟୁମଣ୍ଡଳକୁ ଭୟଙ୍କର ପ୍ରଦୂଷିତ କରାଯାଏ ।

ଏହିପରି ନିର୍ବିଚାରରେ କୌଣସି ନା କୌଣସି ଧାର୍ମିକ ବିଶ୍ୱାସ ବା ପରଂପରା ଆଳରେ ଆମେ ଜଳ, ସ୍ଥଳ, ଆକାଶର ପରିବେଶକୁ ପ୍ରଦୂଷିତ କରିବାରେ ଲାଗିଛେ । ଧରଣୀର ଓ ପ୍ରକୃତିର ଗୋଟିଏ ସହିବାର ସୀମା ନିଶ୍ଚୟ ଅଛି । ଏଠାରେ କୁସଂସ୍କାର ଜନିତ ଯେଉଁ ପରିବେଶ ପ୍ରଦୂଷଣର ଉଦାହରଣ ଦିଆଯାଇଛି ତାହା କେବଳ ଆମକୁ ସେଚେତନ କରିବା ପାଇଁ । ଆମେ ଯାହା ସବୁ କରୁଛେ ତାହା ଆମ ପରିବେଶ ଉପରେ କି ପ୍ରଭାବ ପକାଇବ ତାହା ଭାବିବା ପାଇଁ ଏହାହିଁ ଉଦ୍ଦିଷ୍ଟ ।

କେତେକ ଯୁକ୍ତି କରିଥାନ୍ତି ଯେ ଏତେ କଳ, କାରଖାନା, ଗାଡିମଟରରୁ ଯେଉଁ ଧୂଆଁ ଏବଂ ବିଷାକ୍ତ ଗ୍ୟାସ୍ ନିର୍ଗତ ହେଉଛି, କାରଖାନାର ବିଷାକ୍ତ ପାଣି ନଦୀକୁ ଯେପରି ପ୍ରଦୂଷିତ କରୁଛି ତା ତୁଳନାରେ କର୍ମକାଣ୍ଡ ଜନିତ ଯେଉଁ ପ୍ରଦୂଷଣ ସୃଷ୍ଟିହୁଏ ତାହା ନଗନ୍ୟ । ସାମାନ୍ୟ ଦୀପ, ଧୂପରୁ ନିର୍ଗତ ହେଉଥିବା ଧୂଆଁ, ଅଙ୍ଗାରକାମ୍ଳ ଗ୍ୟାସ୍ ପରିବେଶ ପ୍ରଦୂଷିତ କରୁଛି କହିବା ହାସ୍ୟାସ୍ପଦ ଅଟେ । ବଡ଼ ବଡ଼ କଂପାନୀର ଶିଳ୍ପସଂସ୍ଥାର ବିରାଟକାୟ ଚିମିନିରୁ ଯେଉଁ ଧୂଆଁ ବାହାରୁଛି ସେହି ତୁଳନାରେ ଉପରୋକ୍ତ ବର୍ଣ୍ଣିତ ପ୍ରଦୂଷଣର ଗୁରୁତ୍ୱ ହିଁ ନାହିଁ । ଆଗେ କଳକାରଖାନା ବନ୍ଦ ହେଉ ତାପରେ ଯେଉଁ କଥା ।

ଉର୍ପରୋକ୍ତ ଯୁକ୍ତିଟି ଦୁଇଟି କାରଣରୁ ଭ୍ରମାତ୍ମକ । ପ୍ରଥମଟି ହେଲା ଯେ ଆମର ପାଞ୍ଚଟି ଭୁଲ ଷଷ୍ଠ ଭୁଲକୁ ଯଥାର୍ଥ କରେନାହିଁ । ପରିବେଶ ପ୍ରଦୂଷଣ ଭଳି ଏକ ସଂକଟରୁ ଆମର ଗ୍ରହ ପୃଥିବୀକୁ ବଂଚାଇବାର ପ୍ରୟାସରେ ଧର୍ମ ଯୋଗ ଦେବା ବିଧେୟ । ତେଣୁ ସମସ୍ତେ ପ୍ରଦୂଷଣ କରୁଛନ୍ତି ତେଣୁ ଆମେ ମଧ୍ୟ କରିବା ଯୁକ୍ତିଟି ଯଥାର୍ଥ ନୁହେଁ । ପୁନଶ୍ଚ

ଶିଳ୍ପାୟନ ବନାମ ପ୍ରଦୂଷଣ ଏକ ତର୍କର ବିଷୟ । ଯଦିଓ ପ୍ରଦୂଷଣକାରୀ ଶିଳ୍ପସଂସ୍ଥା, କଳକାରଖାନା ଭବିଷ୍ୟତ ପାଇଁ ବିପଦ ସୃଷ୍ଟି କରନ୍ତି ସେମାନଙ୍କୁ ହଠାତ୍ ବନ୍ଦ କରିବା ଦ୍ୱାରା ହଜାର ହଜାର ଲୋକ ସଂଗେ ସଂଗେ ରୋଜଗାର ହରାଇବେ । ବିଶେଷ କରି ଶ୍ରମିକ ଶ୍ରେଣୀର ଲୋକମାନେ ଏବଂ ସେମାନଙ୍କ ପରିବାରର ଦୁର୍ଦ୍ଦଶା ବଢ଼ିଯିବ । ଏଥିପାଇଁ ଏକ ସୁଚିନ୍ତିତ ଶିଳ୍ପାୟନ ଯାହା ଦୀର୍ଘସ୍ଥାୟୀ ଅଭିବୃଦ୍ଧି (Sustainable Development) ର ସହାୟକ ହେବ ତାହା ଚିନ୍ତା କରାଯାଉ । ଏତଦ୍‌ବ୍ୟତୀତ ଆମେ ବ୍ୟବହାର କରୁଥିବା ବହୁ ଆବଶ୍ୟକୀୟ ପଦାର୍ଥ କଳକାରଖାନାରେ ନିର୍ମିତ ହୋଇଥାଏ । କାଗଜ କଳ, ଚିନିକଳ, ଲୁହା କାରଖାନା ମଧ୍ୟ ପରିବେଶକୁ ପ୍ରଦୂଷିତ କରୁଛି । ଏ ସବୁର ବ୍ୟବହାର ଆମେ ବନ୍ଦ କରିପାରିବା କି ? ଗାଡ଼ି, ମଟର ଯାନ ବାହାନର ଧୂଆଁ ପରିବେଶକୁ ନଷ୍ଟ କରୁଛି କିନ୍ତୁ ଆମେ ସେ ସବୁ ବନ୍ଦ କରି ପ୍ରାଚୀନ ଯୁଗକୁ ଫେରିପାରିବା କି ? ତେବେ ଏ କ୍ଷେତ୍ରରେ କିଛି ନିୟନ୍ତ୍ରଣର ଆବଶ୍ୟକତା ଅଛି । ପ୍ରଦୂଷଣକୁ ଏକ ସୀମା ଭିତରେ ରଖିବାର ଆବଶ୍ୟକତା ଅଛି । ତେଣୁ ଯେଉଁ ପ୍ରଦୂଷଣକୁ ବନ୍ଦକଲେ କୌଣସି କ୍ଷତିନାହିଁ ତାହାକୁ ପ୍ରଥମେ ବନ୍ଦ କରିବା ଉଚିତ୍ । ଉଦାହରଣ ସ୍ୱରୂପ ବିଶିଷ୍ଟ ବ୍ୟକ୍ତିମାନେ ବ୍ୟକ୍ତିଗତ ଗାଡ଼ି ବ୍ୟବହାର କରିବା ଅପେକ୍ଷା ସର୍ବସାଧାରଣ ଯାତ୍ରା, ଗମନାଗମନ ପାଇଁ ଉଦ୍ଦିଷ୍ଟ ଗାଡ଼ିକୁ ବ୍ୟବହାର କରିବା ଆବଶ୍ୟକ । ସାଧାରଣ ଲୋକଙ୍କ ଆବଶ୍ୟକ ବ୍ୟବହାର ପାଇଁ ଅଧିକ ଆରାମଦାୟକ ଗାଡିର ପ୍ରଚଳନକୁ ଉନ୍ନତ ଏବଂ ସୁସଂଗଠିତ ଭାବେ ପରିଚାଳନା କରିବା ଅଧିକ ପ୍ରୟୋଜନ । ଗୋଟିଏ କର୍ମକ୍ଷେତ୍ରକୁ ପଚାଶଜଣ ବ୍ୟକ୍ତି ପଚାଶଟି କାରରେ ଆସିବା ଅପେକ୍ଷା ଗୋଟିଏ କିମ୍ବା ଦୁଇଟି ଆରାମଦାୟକ ବସ୍‌ରେ ଆସିବା ଦ୍ୱାରା ଟ୍ରାଫିକ୍ ଜାମକୁ ଏବଂ ପ୍ରଦୂଷଣ ଉଭୟକୁ କିଛି ମାତ୍ରାରେ ନିୟନ୍ତ୍ରଣ କରାଯାଇପାରେ ।

ମୋଟ ଉପରେ କହିଲେ· ଅଜ୍ଞତା, କୁସଂସ୍କାର ଓ ଧାର୍ମିକ ଭାବପ୍ରବଣତା ଯୋଗୁଁ ଆମର ପରିବେଶ ଦ୍ରୁତ ଗତିରେ ପ୍ରଦୂଷିତ ହୋଇ ଚାଲିଛି । ଆମର କୁସଂସ୍କାର ଅନେକ ପାରିବାରିକ ଓ ସାମାଜିକ ସମସ୍ୟା ସୃଷ୍ଟି କରୁଥିଲେ ମଧ୍ୟ ତାହା ଯେତେ ଭୟାନକ ନୁହେଁ, ତା ଅପେକ୍ଷା ପରିବେଶ ପ୍ରଦୂଷଣ ଅଧିକ ଭୟଙ୍କର ମନେ ହୁଏ । ଅବିଚାରିତ ଭାବରେ ପରଂପରା, ଧାର୍ମିକ ବିଶ୍ୱାସ ଆଳରେ ଆମେ ଯଦି ପରିବେଶକୁ ନଷ୍ଟ କରିଚାଲିବା, ତେବେ ତାର କୁପରିଣାମ ଆମକୁ ବା ଆମର ପର ପିଢ଼ିର ଲୋକମାନଙ୍କୁ ଭୋଗ କରିବାକୁ ହେବ । ନାନା ଦୂରାରୋଗ୍ୟ ବ୍ୟାଧିରେ ସେମାନେ ଆକ୍ରାନ୍ତ ହେବେ ଓ ମଣିଷର ସଭ୍ୟତା ସଂକଟର ସମ୍ମୁଖୀନ ହେବ । ସୁତରାଂ ଭାବପ୍ରବଣତାକୁ ତ୍ୟାଗକରି ଆମେ ବିଚାରଶୀଳ ହେବାଦ୍ୱାରା ଆମର ପରିବେଶ ଓ ଜୀବଜଗତ ସୁରକ୍ଷିତ ରହିପାରିବ ।

ପରିଶେଷରେ ଏତିକି ମାତ୍ର କୁହାଯାଇ ପାରେ ଯେ ଏକ ଶାନ୍ତିପୂର୍ଣ୍ଣ ଓ ଉନ୍ନତ ସମାଜର କଳ୍ପନା କଲାବେଳେ ଏହା ଏକ ସଭ୍ୟ, ସଂସ୍କୃତ, ସୁସ୍ଥ ଏବଂ ଉତ୍ତରଦାୟୀ ଦୃଷ୍ଟିଭଙ୍ଗୀକୁ ହିଁ ବୁଝାଏ । ଏହିପରି ଏକ ସମାଜ ପାଇଁ ମାନବିକ ମୂଲ୍ୟବୋଧ, ବିଚାରଶୀଳତା ଓ ପରିବେଶ ସଚେତନାର ପ୍ରତିଷ୍ଠା ଜରୁରୀ ବୋଧହୁଏ । ଏହା ଅଜ୍ଞାନ ଓ କୁସଂସ୍କାର ରହିତ ସମାଜ ଦ୍ୱାରା ସମ୍ଭବ । ମଣିଷ ଚାହିଁଲେ ତାର ସଂସାର ଓ ସମାଜକୁ ସୁନ୍ଦର କରିପାରିବ ନତୁବା ତାର ଅଜ୍ଞତା ଓ କୁସଂସ୍କାର ସଂସାରରେ ଅକଥନୀୟ ଦୁଃଖ ଓ ଦୁର୍ଦ୍ଦଶା ସୃଷ୍ଟି କରିବ । ଆମେ କେଉଁ ପୃଥିବୀ ଓ ପରିବେଶ ଚାହୁଁ, ଏ ଦାୟିତ୍ୱ ଆମ ଉପରେ ନିର୍ଭର କରେ ।



# ଅନ୍ଧବିଶ୍ୱାସ ଓ ଅନୈତିକତା

*ଅଧ୍ୟାପକ ବି. ରାମଚନ୍ଦ୍ର*

ଏହା ଏକ ସାଧାରଣ କଥା ଯେ ଭାରତରେ ଭାଗ୍ୟ, ଭଗବାନ, ସ୍ୱର୍ଗ-ନର୍କ, ପୁନର୍ଜନ୍ମ ଆଦି ଅନ୍ଧବିଶ୍ୱାସ ସହ ରାଜନୈତିକ ନେତାମାନେ ହାତ ମିଳାଇଛନ୍ତି । ଏଥିସହିତ ମଧ୍ୟ ବ୍ୟବସାୟୀ ଗୋଷ୍ଠୀର ଲୋକେ ସେମାନଙ୍କ ଫାଇଦା ପାଇଁ ନାନାଦି ଅନ୍ଧବିଶ୍ୱାସକୁ ଓ ତତ୍‌ଜନିତ ପର୍ବପର୍ବାଣିକୁ ମହାନ୍ ସଂସ୍କୃତି ନାଁରେ ଫେଣେଇ ଚାଲିଛନ୍ତି । ସାହିତ୍ୟିକ ବର୍ଗ ପୂଜା ସଂଖ୍ୟାରେ ନାନା କୁସଂସ୍କାରପୂର୍ଣ୍ଣ ଲେଖା ଛାପି ନିଜ ନିଜର ଅନୈତିକ ଉଚ୍ଚତାକୁ ବଢ଼ାଇ ଚାଲିଛନ୍ତି । ସଂକ୍ଷେପରେ କହିବାକୁ ହେବ: 'ସ୍ୱର୍ଗ-ନର୍କ' ମାର୍କା 'ଅନ୍ଧବିଶ୍ୱାସ' ସହ 'ବ୍ୟବସାୟ' ଓ 'ରାଜନୀତି'ର ଅନୈତିକ ସମ୍ବନ୍ଧରୁ ନୈତିକତାର ଚରମ ଅଧୋଗତି ଭାରତରେ ଘଟିଛି ।

ନୈତିକାର ମାନ ଭାରତରେ ଏତେ ନିମ୍ନକୁ କାହିଁକି ଖସିଛି ? ଏ ପ୍ରଶ୍ନ ଉପରେ କୌଣସି ଦଳର ନେତାମାନଙ୍କର ଯୁକ୍ତି ତର୍କ ନାହିଁ । ଏ ବିଷୟରେ ସାର୍ଥକ ଆଲୋଚନା କୌଣସି ସମ୍ବାଦପତ୍ରରେ, କୌଣସି ଟିଭି ଚ୍ୟାନେଲରେ ହେଉନାହିଁ । କାରଣ ବ୍ୟାବସାୟିକ କ୍ଷତି ତଦ୍ୱାରା ଘଟିବ । ବଡ଼ ବଡ଼ ସୁନା ଦୋକାନୀଙ୍କଠାରୁ ବିଜ୍ଞାପନ ମିଳିବ ନାହିଁ । ରାଜନୈତିକ ନେତାମାନେ ଚୁପ୍‌ଚାପ୍ ରହି ଅନ୍ଧବିଶ୍ୱାସ ସପକ୍ଷରେ ସଂସ୍କୃତିକୁ ଏକ ଢ଼ାଲ କରି ବିବୃତି ଦିଅନ୍ତି ଓ ଦେବାଦେବୀ ପୀଠକୁ ଯାଇ ପୂଜା ଅର୍ଚ୍ଚନା କରନ୍ତି । ତଥା-କଥିତ ପବିତ୍ର ନଦୀ, ନାଳ ପୋଖରୀରେ ଲକ୍ଷ ଲକ୍ଷ ଭକ୍ତଙ୍କ ସାମ୍ନାରେ 'ପାପ-ନାଶିନୀ' ବୁଡ଼ ପକାନ୍ତି । ଏହାକୁ ଏକ ରାଜନୈତିକ ବିନିଯୋଗ ରୂପେ ସେମାନେ ବିବେଚନା କରନ୍ତି । ପ୍ରତ୍ୟେକ ରାଜନୈତିକ ଦଳ ଏ ବିଷୟରେ ଆଗରେ ରହିବାକୁ ଚେଷ୍ଟା କରନ୍ତି । ମନ୍ଦ ଉଦ୍ଦେଶ୍ୟରଖି ପ୍ରତିଯୋଗିତା କରନ୍ତି ।

ଆମ ଦେଶରେ ନୈତିକତା ଓ ମାନବିକତାର ସ୍ତର ଏତେ ତଳକୁ କାହିଁକି ଯାଇଛି ତାହାର ଏକ ଚିତ୍ରାଂଶ ନିମ୍ନରେ ଦିଆଯାଉଛି:-

୧. "ଉତ୍କଟ ଦାରିଦ୍ର୍ୟ" କଳାହାଣ୍ଡି- ବଲାଙ୍ଗିର-କୋରାପୁଟରେ ଥିଲା ବୋଲି ସେଥିପାଇଁ ବହୁ ଦିନରୁ କେବିକେ ଯୋଜନା ତିଆରି ହୋଇଛି । କୋଟି କୋଟି ଟଙ୍କା ଏ ଦିଗରେ ଖର୍ଚ୍ଚ କରାଯାଇଛି ବୋଲି ବିବରଣୀ କହୁଛି । ମାତ୍ର ପ୍ରକୃତ ଚିତ୍ର ଅନ୍ୟ ପ୍ରକାରର । କଳାହାଣ୍ଡିର କାଳିମା ଶୀଷକ ଯେଉଁ ସଚିତ୍ର ବିବରଣୀ ଦୈନିକ ସମାଜର ରବିବାର ପୃଷ୍ଠା ଜୁନ୍-୫, ୨୦୧୬ରେ ପ୍ରକାଶ ପାଇଛି ତାହା ବେଶ୍ ସୂଚାଇ ଦେଉଛି ଯେ କଳାହାଣ୍ଡିର ରାଜନେତାମାନେ ନୈତିକତା ଦୃଷ୍ଟିରୁ କେତେ ତଳକୁ ଚାଲିଯାଇଛନ୍ତି । ଖାଇବାକୁ ନାହିଁ । ପେଟ ପୋଷିବା ଲକ୍ଷ୍ୟରେ କଳାହାଣ୍ଡିର ଗରିବ ଲୋକେ ଗୋଆ, କେରଳ, ଆନ୍ଧ୍ରପ୍ରେଦେଶ, ତ୍ରିପୁରା ଆଦି ରାଜ୍ୟକୁ ଏବଂ ବାଙ୍ଗାଲୋର, ଚେନାଇ, ବମ୍ବେ ଆଦି ସହରକୁ ପଳାଇ ଯାଉଛନ୍ତି । ଠିକାଦାରଙ୍କ ଦ୍ୱାରା ସେମାନେ ନିର୍ଯ୍ୟାତିତ ହେଉଛନ୍ତି । ରୋଗାକ୍ରାନ୍ତ ହେବା ପରେ ଉପଯୁକ୍ତ ଚିକିତ୍ସାରୁ ସେମାନେ ବଞ୍ଚିତ ହେଉଛନ୍ତି । ହିସାବ ଅନୁଯାୟୀ ନିକଟ ଅତୀତରେ ୩୪ ଜଣ ଦାଦନ ଶ୍ରମିକ ପ୍ରାଣ ହରାଇଛନ୍ତି । ସମାଜ ଖବର କାଗଜର ବିବରଣୀରେ ଯେଉଁ ମର୍ମସ୍ପର୍ଶୀ କଥା ଉଲ୍ଲେଖ ଅଛି ତାହା ହେଲା : 'ଗରିବ ମଣିଷର ଭୋକ ଚିର ସହଚର । ଏହି ଭୋକ ତାକୁ ହାତ ଧରି ଟାଣି ନେଇଯାଏ ମୃତ୍ୟୁର ଦୁଆରକୁ । ପେଟର ଭୋକ ମେଣ୍ଟାଇବାକୁ ଖୋଜେ ମୁଠାଏ ଭାତ । କାମ ନ ମିଳିଲେ ଗରିବର ଚୁଲି ଅଜଳା ହୋଇ ରହିଯାଏ । ମୂଲ ନ ଲାଗିଲେ ଖାଡ଼ା ଉପାସ ରହିବା ହିଁ ସାର । କଳାହାଣ୍ଡି ଜିଲ୍ଲାରେ କାମର ଅଭାବ ଯୋଗୁଁ ଏଠାକାର ଶ୍ରମିକମାନେ ବାହାର ରାଜ୍ୟକୁ ଚାଲି ଯାଉଛନ୍ତି । ସେଠାରେ ଠିକାଦାରଙ୍କ ନିର୍ଯ୍ୟାତନା ଓ ସ୍ୱଳ୍ପ ପାରିଶ୍ରମିକ ସେମାନଙ୍କୁ ନିରାଶ କରିଥାଏ । ରୋଗରେ ପଡିଲେ ମଧ୍ୟ ସେମାନଙ୍କୁ ଦେଖିବାକୁ କେହି ନାହିଁ । ଗତ କିଛି ବର୍ଷ ହେଲା କଳାହାଣ୍ଡିର ଅନେକ ଶ୍ରମିକ କାମ ଅନ୍ୱେଷଣରେ ଯାଇ ମୃତ୍ୟୁବରଣ କରିଛନ୍ତି । ଏହାକୁ କଳାହାଣ୍ଡିର କାଳିମା କୁହାଯିବନି ତ ଆଉ କ'ଣ ?'

୨. ଅନ୍ଧାରରୁ ଆଲୋକକୁ, ଅନୈତିକତାରୁ ନୈତିକତାକୁ ଯିବା ପାଇଁ ଶିକ୍ଷାର ସର୍ବାଧିକ ଭୂମିକା ରହିଛି ବୋଲି କୁହାଯାଏ । ମାତ୍ର ଶିକ୍ଷା କ୍ଷେତ୍ରରେ ନୈତିକତା ଅଛି କି ? 'ଅନ୍ଧବିଶ୍ୱାସ-ବ୍ୟବସାୟ-ରାଜନୀତି'ର ମଧୁଚନ୍ଦ୍ରିକା ହେତୁ ଶିକ୍ଷା କ୍ଷେତ୍ରରେ ନୈତିକତା ନାହିଁ । ଏହାର ନଗ୍ନ ରୂପ ଭାରତର ଭିନ୍ନ ଭିନ୍ନ ରାଜ୍ୟର ରହିଛି । ଏହା ସବୁଠାରୁ ଉତ୍କଟ ସ୍ତରରେ ପହଞ୍ଚିଛି ବିହାର ରାଜ୍ୟରେ, ଯେଉଁ ରାଜ୍ୟରୁ ଦିନେ ଉଚ୍ଚତର ଶିକ୍ଷା ପାଇବା ପାଇଁ ପରାଧୀନ ଭାରତରୁ ଯୁକ୍ତରାଷ୍ଟ୍ର ଆମେରିକାକୁ ଯାଇଥିଲେ ଜୟପ୍ରକାଶ ନାରାୟଣ । ସ୍ୱାଧୀନ ଭାରତରେ

ଏବେ ସେହି ରାଜ୍ୟରେ ହେଉଛି କ'ଣ ? ବିହାର ରାଜ୍ୟରେ ହେଉଥିବା ପରୀକ୍ଷା ତାର ମର୍ଯ୍ୟାଦା ହରାଇଛି । ଗଣମାଧମ ଦ୍ୱାରା କଥାଟି ସଂପୂର୍ଣ୍ଣ ଧରାପଡିଛି । ଦ୍ୱାଦଶ ଶ୍ରେଣୀ ପରୀକ୍ଷାରେ ଟପର ହୋଇଥିବା ଛାତ୍ରଛାତ୍ରୀମାନଙ୍କୁ ସାନି ପରୀକ୍ଷା ଦେବାକୁ ପଡ଼ିଛି । ବିହାର ସ୍କୁଲ୍ ଏକ୍‌ଜାମିନେସନ୍ ବୋର୍ଡର ଦ୍ୱାଦଶ ଶ୍ରେଣୀ ପରୀକ୍ଷାରେ ବିଜ୍ଞାନ ଟପର ହାଜିପୁରର ସୌରଭ କୁମାର ସାନି ପରୀକ୍ଷାରେ ଫେଲ୍ ହୋଇଛନ୍ତି । ଏହି ପରୀକ୍ଷାରେ ସମସ୍ତ ନୀତି ନିୟମ ଓ ନୈତିକତାକୁ ଜଳାଞ୍ଜଳି ଦିଆଯାଇଛି । କଳା ଓ ବିଜ୍ଞାନ ପରୀକ୍ଷାରେ ଦୁର୍ନୀତି ସୀମାତୀତ ସ୍ତରକୁ ଯାଇଛି । 'ଅଯୋଗ୍ୟ' ଛାତ୍ରଛାତ୍ରୀଙ୍କୁ କାରସାଦି କରି ଟପର କରାଯାଇଛି । ରୁବି ରାୟ ନାମ୍ନୀ ଛାତ୍ରୀଙ୍କର ପଲ୍‌ଟିକାଲ୍ ସାଇନ୍ସ ସବ୍‌ଜେକ୍ଟ ଉପରେ ସାମାନ୍ୟତମ ଜ୍ଞାନ ନାହିଁ । ଗଣମାଧମ ପକ୍ଷରୁ ପଚରା ଯାଇଥିବା ଏକ ପ୍ରଶ୍ନର ଉତ୍ତରରେ ସେ କହିଥିଲେ ପଲ୍‌ଟିକାଲ୍ ସାଇନ୍ସରେ କୁକିଂ ବିଷୟ ପଢ଼ାଯାଏ । ପଲ୍‌ଟିକାଲ୍ ଓ୍ୱାର୍ଡକୁ ଏହି ମେଧାବିନୀ ଛାତ୍ରୀ ପୋଡ଼ିକାଲ ବୋଲି ଉଚ୍ଚାରଣ କରିଥିଲେ । ସେ ୫୦୦ ମାର୍କରୁ ୪୪୪ ରଖି ଟପର ହୋଇଛନ୍ତି । ସାନି ପରୀକ୍ଷା ଦେବାକୁ କୁହାଯିବାରୁ ସେ ଅସୁସ୍ଥତାର ଆଳ ଦେଖାଇ ହସ୍‌ପିଟାଲରେ ଭର୍ତ୍ତି ହୋଇଛନ୍ତି । ଯେଉଁ ୧୩ ଜଣ ଛାତ୍ରଛାତ୍ରୀ ଟପର ହିସାବରେ ସାନି ପରୀକ୍ଷା ଦେଇଥିଲେ ସେମାନେ ସମସ୍ତେ ଫେଲ ହୋଇଛନ୍ତି । (ସମାଜ : ୫.୬.୨୦୧୬) ।

ବିହାର ରାଜ୍ୟର ଭି.ଏନ୍. ରାୟ କଲେଜରେ ନାହିଁ ନଥିବା ଅନୈତିକ ଅସାଧୁ କାର୍ଯ୍ୟ ବର୍ଷ ବର୍ଷ ଧରି ହୋଇ ଆସୁଛି । ଗତ ବର୍ଷ ଏହି କଲେଜରେ ପରୀକ୍ଷା ଦେଇଥିବା ଛାତ୍ରଛାତ୍ରୀଙ୍କ ମଧ୍ୟରୁ, ୧୦୦୭ ଜଣ ପ୍ରଥମ ଶ୍ରେଣୀରେ ପାଶ୍ କରିଥିଲେ । ସେମାନଙ୍କ ମଧ୍ୟରୁ ୨୨୨ ଜଣ ପରୀକ୍ଷାର୍ଥୀ ସମାନ ମାର୍କ ରଖିଥିଲେ ।

ଭାରତର ଶିକ୍ଷାନୁଷ୍ଠାନ ମାନଙ୍କରେ ପରୀକ୍ଷା ପରିଚାଳନା ଦାୟିତ୍ୱରେ ଥିବା କିଛି ଶିକ୍ଷକ-ଶିକ୍ଷୟିତ୍ରୀ, ଅଧ୍ୟାପକ-ଅଧ୍ୟାପିକା ଆଦିଙ୍କର ନୈତିକତା ବୋଲି କିଛି ନାହିଁ ତାହା ଏଥିରୁ ସ୍ପଷ୍ଟ ପ୍ରମାଣିତ । ହିନ୍ଦୀ ମାଧ୍ୟମରେ ପାଠପଢ଼ା ଠିକ୍ ଢ଼ଙ୍ଗରେ ହେଉନାହିଁ । ସେଥିପାଇଁ ଏ ଦୁର୍ଦ୍ଦଶା ସେଠାରେ ଘଟିଛି । ସିବିଏସ୍‌ଇ ଷ୍ଟାଣ୍ଡାର୍ଡର ପାଠ ପଢ଼ା ଇଂରାଜୀ ମାଧ୍ୟମରେ ପ୍ରଥମ ଶ୍ରେଣୀରୁ କରାଗଲେ ନୈତିକତାର ମାନ ବିହାର ରାଜ୍ୟରେ ତଥା ଅନ୍ୟାନ୍ୟ ରାଜ୍ୟରେ ଉନ୍ନତ ସ୍ତରକୁ ଆସିପାରିବ ।

୩. ଓଡିଶା ରାଜ୍ୟରେ ଖାଦ୍ୟ ଓ ବସ୍ତ୍ର ଦରିଦ୍ର ଜନତାଙ୍କୁ ଠିକ୍ ଭାବରେ ଦେଇହେଉ ନାହିଁ । ତଥାପି ଏଠାରେ ରାଜନେତାମାନେ ସେଥିପ୍ରତି ଧ୍ୟାନ ନଦେଇ ନିଜ ନିଜ ନିର୍ବାଚନ ମଣ୍ଡଳୀରେ ଲକ୍ଷ ଲକ୍ଷ ଟଙ୍କା ବ୍ୟୟରେ ମନ୍ଦିର ବସାଇ ଚାଲିଛନ୍ତି । ଲଜ୍ଜାର ବିଷୟ ଏହି ଯେ ଦଳିତ ସଂପ୍ରଦାୟରୁ ଆସିଥିବା ସମାଜବାଦୀ ବା ବାମପନ୍ଥୀ ପୃଷ୍ଠଭୂମିରେ ଛିଡା ହୋଇଥିବା

କେତେକ ନେତା ଦଳିତ ମାନଙ୍କର ଦୁଃଖ ଦୁର୍ଦ୍ଦଶାକୁ ପାଶୋରି ଦେଇଛନ୍ତି । ଭୁବନେଶ୍ୱର ନିକଟବର୍ତ୍ତୀ ଜୟଦେବ ନିର୍ବାଚନ ମଣ୍ଡଳୀର ଜଣେ ବିଶିଷ୍ଟ ନେତା ୩୫ ଲକ୍ଷ ଟଙ୍କାରେ ନିର୍ମାଣ କରାଯାଉଥିବା ରାଧାକୃଷ୍ଣ ମନ୍ଦିରର ଶିଳାନ୍ୟାସ କରିଛନ୍ତି ଶିଶୁ ଅନନ୍ତଙ୍କ ପୀଠରେ, ଗତ ୨୯.୫.୨୦୧୬ ତାରିଖରେ । ସେ ତାଙ୍କ ବକ୍ତବ୍ୟରେ କହିଛନ୍ତି: 'ଜୟଦେବ ନିର୍ବାଚନ ମଣ୍ଡଳୀର ସଂସ୍କୃତି ଓ ପରମ୍ପରାକୁ ବଜାଏ ରଖିବାର ଏହା ସହାୟକ ହେବ' । (ପ୍ରମେୟ:୩୦.୫.୨୦୧୬) ।

୪. ଅନ୍ଧବିଶ୍ୱାସ-ବ୍ୟବସାୟ-ରାଜନୀତିର ମୂଳୋତ୍ପାଟନ ପାଇଁ ଦଳିତ ନେତାମାନେ ବି ଚେଷ୍ଟାକରନ୍ତି ନାହିଁ । ବରଂ ନିକଟବର୍ତ୍ତୀ କେନ୍ଦ୍ରାପଡ଼ା ଜିଲ୍ଲାର କେରଡ଼ଗଡ଼ରେ ଥିବା ଜଗନ୍ନାଥ ମନ୍ଦିରକୁ କିପରି ଦଳିତମାନେ ପଶିବେ ଏବଂ ସେଠାରେ ଥିବା 'ଅସତ୍ୟ ଭଗବାନ'ଙ୍କୁ ପୂଜା କରିବେ ଏବଂ ସେହି ମନ୍ଦିରରେ ନିୟୋଜିତ ଜାତିବାଦୀ ବ୍ରାହ୍ମଣ ପୂଜକଙ୍କ ପାଦ ତଳେ ମୁଣ୍ଡିଆ ମାରିବେ – ଏପରି ଏକ ହୀନ କାର୍ଯ୍ୟକୁ ଦଳିତ ନେତାମାନେ ବି ଗୁରୁତ୍ୱ ଦେଇଛନ୍ତି । ଅନ୍ଧବିଶ୍ୱାସ-ଆଧାରିତ ରାଜନୀତିକୁ ସେମାନେ ବି ଗ୍ରହଣ କରୁଛନ୍ତି । ଦଳିତ 'ଦଳିତତ୍ୱ' ଯେପରି ସବୁକାଳକୁ ରହିବ ସେହିପରି ରାସ୍ତାରେ ନେତାମାନେ କାର୍ଯ୍ୟରତ ରହିବା ବାସ୍ତବିକ୍ ନିନ୍ଦନୀୟ । 'ପୂଜା କରେ କୁଜା' ର ଅର୍ଥ ଏହି ନେତାମାନେ ଠିକ୍ ବୁଝିଛନ୍ତି ।

୫. ଦଳିତ ଘରେ ମୁଠାଏ ଭାତ ଖାଇଥିବା କାରଣରୁ ଉଚ୍ଚ ଜାତିରେ ଜନ୍ମଲାଭ କରିଥିବା ଲକ୍ଷ୍ମଣ ବଗର୍ତ୍ତୀଙ୍କୁ ତାଙ୍କ ଘର ଲୋକେ ତାଙ୍କୁ ଘରୁ ତଡିଦେଇଥିଲେ । ୩୦ ବର୍ଷ କାଳ ସେ ଭିକମାଗି ଚଳିଲେ । ଡାକ୍ତରଖାନାରେ ମଲେ । ତାଙ୍କର 'ମାରା' ମୃତ ଶରୀରକୁ (ଶବକୁ) ଘର ଲୋକେ, ଏପରି କି ଗ୍ରାମ ଲୋକେ ଛୁଇଁଲେ ନାହିଁ : ଦାହ କରିବାକୁ ନେଲେ ନାହିଁ । ଏହା ହିଁ ଦର୍ଶାଇ ଦେଉଛି ନୈତିକତା ଓ ମାନବିକତାର ସ୍ତର କେତେ ନିମ୍ନରେ ଅଛି । ଏହି ଘଟଣାଟି ଘଟିଥିଲା ୨.୪.୨୦୧୫ରେ । ମାତ୍ର ଏହି ଦୁଃଖଦ ଘଟଣା ଉପରେ ଓଡିଶା କିମ୍ବା ଭାରତର କୌଣସି ରାଜନେତା ପଦଟିଏ ହେଲେ କହିଲେ ନାହିଁ । ତାହାର କାରଣ ଏ ବିଷୟରେ ରାଜନେତାମାନେ ମୁହଁ ଖୋଲିଲେ ଅନ୍ଧବିଶ୍ୱାସ-ବ୍ୟବସାୟ-ରାଜନୀତି ମଧ୍ୟରେ ଯେଉଁ ଅନୈତିକ ସନ୍ଧି ସ୍ଥାପିତ ହୋଇଛି ତାହା କାଳେ ହଲଚଲ ହୋଇଯିବ ।

୬. 'ସବା କା ସାଥ୍, ସବକା ବିକାଶ' କଥା ନେତାମାନେ କହୁଛନ୍ତି । କିନ୍ତୁ କେହି ଅନ୍ଧବିଶ୍ୱାସ ହଟୁ ବୋଲି ଚାହାଁନ୍ତି ନାହିଁ । ସୂର୍ଯ୍ୟ ନମସ୍କାର କରନ୍ତୁ ଓ ଓଁ ଶବ୍ଦ ଉଚ୍ଚାରଣ କରନ୍ତୁ । ଏହା ଦ୍ୱାରା ସବୁକିଛି ହଟିଯିବ ବୋଲି ଅଜବ କଥାରେ କେତେକ ବିଶ୍ୱାସ କରନ୍ତି । ଅନ୍ଧବିଶ୍ୱାସ ବିରୁଦ୍ଧରେ ଝାଡୁମାରିବା ପାଇଁ ନେତାମାନଙ୍କର ଶକ୍ତି ନାହିଁ । ରାଶିଫଳ ବିରୁଦ୍ଧରେ ମଧ୍ୟ ଏମାନେ ପଦଟିଏ କହନ୍ତି ନାହିଁ ।

୭. ଅନ୍ଧବିଶାସ ସହିତ ବ୍ୟବସାୟୀ ଲୋକଙ୍କ ସଂପର୍କ ଭାରି ନିବିଡ଼ । ସୁନା ବ୍ୟବସାୟୀମାନେ ସୁନ୍ଦରୀ ତରୁଣୀଙ୍କ ଦେହରେ ସୁନାଦି ଅଳଙ୍କାର ଭରି ଦେଇ ବଡ଼ ଆକର୍ଷଣୀୟ ବିଜ୍ଞାପନ ଖବର କାଗଜର ପ୍ରଥମ ପୃଷ୍ଠାରେ ଦିଅନ୍ତି । ଅମୁକ ଦିନରେ 'ସୁନା କିଣନ୍ତୁ ସୌଭାଗ୍ୟବତୀ ବନନ୍ତୁ' ।

୮. ବାବାମାନେ ଯେ କେତେ ଚରିତ୍ରହୀନ, କେତେ ସଂପତ୍ତିପ୍ରିୟ ତାର ଭୁରିଭୁରି ପ୍ରମାଣ ଆଶାରାମ ବାପୁ, ସୁରବାବା, ସାରଥି ବାବା ଆଦିଙ୍କ ଗିରଫଦାରୀରୁ ଜଣାପଡିଛି । ଏମାନଙ୍କ ହାତରେ ଅସଂଖ୍ୟ ଭକ୍ତ ଥିବାରୁ ଏମାନଙ୍କୁ ରାଜନୈତିକ ପୃଷ୍ଠପୋଷକତା ମିଳିଯାଏ । ସେହିପରି ବଡ଼ ବ୍ୟବସାୟୀମାନେ ରାଜନୈତିକ ଦଳକୁ ବିପୁଳ ପରିମାଣର ଅର୍ଥ ଡୋନେସନ୍ ଆକାରରେ ଦିଅନ୍ତି । ତେଣୁ ନେତା, ବାବା ଓ ବ୍ୟବସାୟୀମାନେ ଗୋଟିଏ ତୁଠରେ ପାଣି ପିଅନ୍ତି । ଅନ୍ଧବିଶ୍ୱାସକୁ ନାହିଁ ନଥିବା ପ୍ରେମ ଏମାନେ କରନ୍ତି ।

୯. ଆଉ ଏକ ଶ୍ରେଣୀର ଲୋକେ ଏଥିରେ ଅଛନ୍ତି । ଯେଉଁମାନଙ୍କୁ ଗୁଣ୍ଡା ଶ୍ରେଣୀୟ କହିଲେ ଭୁଲ୍ ହେବ ନାହିଁ । ଏକର ଏକର ସରକାରୀ ଜମିକୁ ଏମାନେ ମାଡ଼ିବସନ୍ତି । ମନ୍ଦିର ବସାନ୍ତି । ଚୋରା ବ୍ୟବସାୟ ଚଳାନ୍ତି । ଖଣି ଖଦାନରୁ ଚୋରି କରନ୍ତି । ଏମାନେ ଏମ୍‌ଏଲ୍‌ଏ, ଏମ୍‌ପି ହୁଅନ୍ତି । ବିଜୟ ମାଲିଆଙ୍କ ଭଳି ଲୋକେ ରାଜ୍ୟ ସଭାର ସଦସ୍ୟ ହୁଅନ୍ତି । ନୈତିକତାର ସ୍ତର ଅତ୍ୟନ୍ତ ନିମ୍ନମାନରେ ଥିବାରୁ ଏହା ସବୁ ଘଟି ଚାଲିଛି । ଭାରତୀୟ ନିର୍ବାଚନ ପଦ୍ଧତି ମଧ୍ୟ ଏଥିପାଇଁ ବହୁମାତ୍ରାରେ ଦାୟୀ ।

୧୦. ସ୍ୱର୍ଗ-ନର୍କ ନାଁରେ ଥିବା ଅନ୍ଧବିଶ୍ୱାସକୁ ନିଜ ନିଜ ଫାଇଦାରେ ଲଗାଇଥିବା ସମସ୍ତ ବାବାମାନେ ଅନ୍ଧବିଶ୍ୱାସ ସହିତ ଛନ୍ଦି ହୋଇଥିବା ରାଜନେତା ଓ ବ୍ୟବସାୟୀମାନଙ୍କୁ ନିଜ ନିଜ ହାତମୁଠାରେ ରଖିଛନ୍ତି । ଦୀନ-ଦରିଦ୍ରଙ୍କୁ ସେମାନେ ହିଁ ବେଶି ଶୋଷଣ କରୁଛନ୍ତି । ସମାଜର ବାସ୍ତବ ସମସ୍ୟାଠାରୁ ଲୋକଙ୍କର ଦୃଷ୍ଟିଭଙ୍ଗୀକୁ ଦୂରେଇ ନେବା ପାଇଁ ସେମାନେ ନାନା ପାରଲୌକିକ ସ୍ୱପ୍ନ ଯଥା ସ୍ୱର୍ଗ, ଈଶ୍ୱରପ୍ରାପ୍ତି, ମୁକ୍ତି, ଦୈବୀକୃପା ଭଳି କଥା କହିଥାନ୍ତି ।

**ପ୍ରତିକାର:**

ଅନ୍ଧବିଶ୍ୱାସ, ବ୍ୟବସାୟ ଓ ରାଜନୀତି ମଧ୍ୟରେ କୁସଂପର୍କ ରହିଛି ତାହାର ପକ୍ଷ ଛେଦନ କରାଯାଇ ପାରିବ କିପରି ? ଲୋକେ ବିଜ୍ଞାନର ରାସ୍ତାରେ ଚାଲିବେ କିପରି ?

୧. ଉନ୍ନତମାନର ପ୍ରାର୍ଥନାବିହୀନ ଶିକ୍ଷା ବ୍ୟବସ୍ଥାର ସାର୍ବଜନୀନ ପ୍ରବର୍ତ୍ତନ । ମାନବବାଦୀ, ନିରୀଶ୍ୱରବାଦୀ ଜୀବନ ଦର୍ଶନର ଉଚ୍ଚ ମହତ୍ତ୍ୱର ବ୍ୟାପକ ପ୍ରଚାର ଓ ପ୍ରସାର ନିହାତି ଦରକାର ।

୨. ଗୁଣାତ୍ମକ ଉଚ୍ଚମାନର ଶିକ୍ଷା ପାଇଁ ଇଂରାଜୀ ଭାଷାକୁ ପ୍ରାଧାନ୍ୟ ଦିଆଯିବା ଦରକାର,

ଶିକ୍ଷାରେ ସମତା ସାରା ଦେଶରେ ରହିବା ଉଚିତ୍ । ଶିକ୍ଷାର ମାନ ଉନ୍ନତ ହେଲେ ସମାଜର ଚିତ୍ର ବଦଳି ପାରିବ ।

୩. ପୁରୋହିତବିହୀନ ଜାତି-ଜାତକ-ଯୌତୁକଶୂନ୍ୟ ବିବାହ ନୀତିକୁ ରାଷ୍ଟ୍ରୀୟ ମାନ୍ୟତା ଦିଆଯିବା ଆବଶ୍ୟକ । ପ୍ରତି ଗ୍ରାମ ପଞ୍ଚାୟତରେ "ଫ୍ରି ରେଜିଷ୍ଟ୍ରସନ୍ ଅଫ୍ ମ୍ୟାରେଜ୍ ଅଫିସ୍" ଖୋଲିବା ଏବଂ ଏପରି ଅଫିସ୍ ସହରର ପ୍ରତି ୱାର୍ଡରେ ବସାଇବା ଆବଶ୍ୟକ । ଜାତିପ୍ରଥାର ମୂଳୋତ୍ପାଟନ ପାଇଁ ପ୍ରେମ ବିବାହକୁ ପ୍ରୋତ୍ସାହନ ଦିଆଯିବା ଦରକାର ।

୪. ଏକ- ସନ୍ତାନ ପରିବାର ନୀତିକୁ ରାଷ୍ଟ୍ରୀୟ ମାନ୍ୟତା ଦେବା ଏବଂ ସାରା ଦେଶରେ ଲାଗୁ କରାଇବା । ଲୋକସଂଖ୍ୟା କମିଲେ ଦାରିଦ୍ର୍ୟ ହଟିବ ଏବଂ ଦାଦନ ଶ୍ରମିକ ପ୍ରଥା ଦୂର ହେବ । ଦାରିଦ୍ର୍ୟ ହଟିଲେ ବେଶ୍ୟାବୃତ୍ତି, ଶିଶୁ ଶ୍ରମିକପ୍ରଥା ଦୂରହେବ ।

୫. ଅନରକିଲିଂକୁ ବ୍ୟାନ୍ କରିବା । ଏଥିରେ ସଂପୃକ୍ତ ପିତାମାତା ଓ ଆତ୍ମୀୟ ସ୍ୱଜନଙ୍କୁ ଆଜୀବନ କାରାଦଣ୍ଡରେ ଦଣ୍ଡିତ କରିବା । ବିବାହ କରିବା, ସହବାସୀୟ ସୁଖ ପାଇବା, ପିତା-ମାତା ହେବାର ଗୌରବ ଅର୍ଜିବା, ମା' ହେବାର, ବାପା ହେବାର ଆନନ୍ଦ ଅନୁଭବ ପ୍ରତ୍ୟେକ ଯୁବକ-ଯୁବତୀଙ୍କ ପାଇଁ ରହିବା ଉଚିତ୍ । ସାମନ୍ତବାଦ, ଜାତିବାଦ ଦୂର ହେଲେ ଦେଶରେ ଗଣତନ୍ତ୍ର ସୁଦୃଢ଼ ହୋଇପାରିବ । ।

୬. ମନ୍ଦିର, ମସ୍‌ଜିଦ୍, ଗୁରୁଦ୍ୱାର ଆଦି ଦିଅଁ ଦେବତାଙ୍କ ହାତରେ ଥିବା ସମସ୍ତ ଭୂସମ୍ପଦକୁ ଭୂମିହୀନଙ୍କ ମଧ୍ୟରେ ବଣ୍ଟନ କରିବା । ପୂଜାସ୍ଥଳର ସଂପତ୍ତିକୁ ଜନହିତକର କାର୍ଯ୍ୟରେ ନିୟୋଜିତ କରିବା ଆବଶ୍ୟକ ।

୭. ବିଚାରପତି, ମନ୍ତ୍ରୀ, ଏମ୍‌ଏଲ୍‌ଏ, ଏମ୍‌ପି, ପ୍ରଧାନମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ରାଷ୍ଟ୍ରପତି ଆଦି କ୍ଷମତାସୀନ ବ୍ୟକ୍ତିମାନେ ନିଜ ପଦପଦବୀର ଅମର୍ଯ୍ୟାଦାକରି ପୂଜାସ୍ଥଳୀକୁ ଯିବା ଠିକ୍ ନୁହେଁ । ସେମାନଙ୍କର ବିଶ୍ୱାସ ବ୍ୟକ୍ତିଗତ ସ୍ତରରେ ସୀମାବଦ୍ଧ ରହିବା ଦରକାର । ଧର୍ମନିରପେକ୍ଷତା ସବୁସ୍ତରରେ ପ୍ରତିଫଳିତ ହେବା ଆବଶ୍ୟକ ।

୮. ଆଦର୍ଶ ପାରିବାରିକ ଜୀବନ ଉପରେ ଗୁରୁତ୍ୱ ଆରୋପ କରିବା । ପାରିବାରିକ ଜୀବନ ଉନ୍ନତ, ଶୃଙ୍ଖଳିତ ହେବା ପାଇଁ ଶିକ୍ଷା, କର୍ମସଂସ୍ଥାନ ଓ ପାରିବାରିକ ଉତ୍ତରଦାୟିତ୍ୱ ବୋଧକୁ ପ୍ରାଧାନ୍ୟ ଦିଆଯିବା ଉଚିତ ।

୯. ଦେଶର ନିର୍ବାଚନ ପଦ୍ଧତିକୁ ଦୁର୍ନୀତିମୁକ୍ତ କରିବାକୁ ହେଲେ ଆନୁପାତିକ ପ୍ରତିନିଧିତ୍ୱ ବ୍ୟବସ୍ଥାର ପ୍ରଚଳନ ହେବା ଯଥାର୍ଥ ହେବ । ସମାଜର ନୀତିବାଦୀ, ଚିନ୍ତାଶୀଳ

ଲୋକମାନେ ଯେପରି ରାଜନୈତିକ ବ୍ୟବସ୍ଥାରେ ପ୍ରାଧାନ୍ୟ ପାଇବେ ସେ ପାଇଁ ଚିନ୍ତା ପ୍ରକଟ ପାଇବା ଆବଶ୍ୟକ ।

୧୦. ବିଧାନ ପରିଷଦ ଓ ରାଜ୍ୟସଭାକୁ ସଂପୂର୍ଣ୍ଣ ଉଚ୍ଛେଦ କରିବା । ପରୋକ୍ଷ ନିର୍ବାଚନ ଦ୍ୱାରା ଅନୈତିକତା ବଢ଼ିଥାଏ ଏବଂ ଅତ୍ୟନ୍ତ ଭ୍ରଷ୍ଟାଚାରୀମାନେ ତଦ୍ୱାରା ଲୋକପ୍ରତିନିଧି ହୋଇଯାନ୍ତି । ରାଜନୀତି ସ୍ତରରୁ ଭ୍ରଷ୍ଟାଚାର ଦୂର କରିବାକୁ ଜାତୀୟ ସ୍ତରରେ ବିତର୍କର ଆବଶ୍ୟକତା ରହିଛି । ତାହେଲେ ଦେଶରୁ ଦାରିଦ୍ର୍ୟ, ଆତଙ୍କବାଦ, ଦୁର୍ନୀତି ଲୋପ ପାଇପାରିବ । ଏକ ସମତାଭିତ୍ତିକ ସମାଜ ପ୍ରତିଷ୍ଠା ଆମର ଲକ୍ଷ୍ୟ ହେବା ଦରକାର ।

ଏହି ଦଶଦଫା କାର୍ଯ୍ୟସୂଚୀ ଅନୁଯାୟୀ ଆଗେଇଲେ ଦେଶରୁ ସମସ୍ତ ଅନ୍ଧବିଶ୍ୱାସ, କୁସଂସ୍କାର, ସାମାଜିକ ଭେଦଭାବ, ଅସତ୍ୟ ଭାବନା, ସ୍ୱର୍ଗ-ନର୍କ ବିଶ୍ୱାସ ଲୋପ ପାଇବ । କୌଣସି ବୃଦ୍ଧ ବ୍ୟକ୍ତିଙ୍କୁ ସରକାରୀ ଖର୍ଚ୍ଚରେ ତୀର୍ଥସ୍ଥାନ ବୁଲିଯିବାକୁ ପଡିବ ନାହିଁ । ସ୍ୱର୍ଗ-ନର୍କ ନଥିଲା ବେଳେ ଦେବପୀଠ ଲୋକେ ଯିବେ କାହିଁକି । ସମସ୍ତଙ୍କ ପାଇଁ ଉନ୍ନତ ସ୍ୱାସ୍ଥ୍ୟ ସେବା, ପିଲାମାନଙ୍କ ପାଇଁ ଗୁଣାତ୍ମକ ଶିକ୍ଷା ଦିଗରେ ଅର୍ଥ ବିନିଯୋଗ ହେବା ଦରକାର । ସଂସ୍କୃତି ବିଭାଗର ଅର୍ଥ ଧର୍ମକାର୍ଯ୍ୟରେ ବ୍ୟୟିତ ନହୋଇ ଜନମଙ୍ଗଳକାରୀ ଲକ୍ଷ୍ୟରେ ଖର୍ଚ୍ଚ ହେବା ଯଥାର୍ଥ । ଲୋକମାନଙ୍କ ଭିତରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବିକତାର ଭାବଧାରାର ପ୍ରସାର ପାଇଁ ପ୍ରୟାସ ହେବା ଆବଶ୍ୟକ । ତାହା ହିଁ ନାଗରିକ-କର୍ତ୍ତବ୍ୟ ବୋଲି ସମ୍ବିଧାନରେ ଉଲ୍ଲେଖ ରହିଛି । ମନ୍ଦିର, ମସଜିଦ୍, ପୂଜାସ୍ଥାନ ନିର୍ମାଣ କରି ଶକ୍ତି, ସମୟ ଓ ଅର୍ଥ ବ୍ୟୟ କରିବା ପରିବର୍ତ୍ତେ ସାମାଜିକ ଶୃଂଖଳା, ନାଗରିକ କର୍ତ୍ତବ୍ୟବୋଧର ବିକାଶକୁ ଧ୍ୟାନ ଦିଆଗଲେ ଜୀବନର ଗୁଣାତ୍ମକମାନ ବୃଦ୍ଧି ପାଇବ । ତାହାହେଲେ ଆମ ସମାଜ ଓ ଦେଶର ଚିତ୍ର ବଦଳିଯାଇ ପାରିବ । ଏଥିପାଇଁ ରାଜନୈତିକ ଇଚ୍ଛାଶକ୍ତି ଗୁରୁତ୍ୱପୂର୍ଣ୍ଣ ମନେହୁଏ ।



# ସୃଷ୍ଟିଶୀଳତାର ଉତ୍ସ ସନ୍ଧାନେ

*ଡକ୍ଟର ଦେବକାନ୍ତ ମିଶ୍ର*

ବୁଦ୍ଧିମାନ୍ ମନୁଷ୍ୟ ଅମୃତର ସନ୍ତାନ । ପ୍ରାଣୀ ଜଗତରେ ସେ ଏକ ସ୍ୱତନ୍ତ୍ର ସ୍ଥାନର-ଅଧିକାରୀ । ଜୈବିକ ବିବର୍ତ୍ତନର ଏକ କ୍ରାନ୍ତିକାରୀ ପର୍ଯ୍ୟାୟରେ ଧରାପୃଷ୍ଠରେ ଏହି ଅନନ୍ୟ ସାଧାରଣ ଜୀବଟିର ଆବିର୍ଭାବ ଘଟିଛି । ମୌଳିକ ଚିନ୍ତା ଏହାର ଅନନ୍ୟତାର ନିଦର୍ଶନ । ସୃଜନଶୀଳତାରୂପୀ ଅନବଦ୍ୟ ବିଭାବ ଜରିଆରେ ସେ ପ୍ରାକୃତିକ କ୍ରିୟାଶୀଳତାର ରହସ୍ୟ ଭେଦ କରିବାକୁ ପ୍ରୟାସୀ ହୋଇଛି । ଚାରୁକଳା, ସଙ୍ଗୀତ, ସାହିତ୍ୟ, ସ୍ଥାପତ୍ୟ, ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ଅବଲମ୍ବନରେ ସେ ନିଜ ସୃଷ୍ଟିଶୀଳତାର ପରିପ୍ରକାଶ ଘଟାଉଛି ଏବଂ ଏଥିପାଇଁ ସଭ୍ୟତା ଓ ସଂସ୍କୃତି ପରବର୍ତ୍ତନଶୀଳ ରୂପ ଧାରଣ କରିଛି । ମାତ୍ର ଏହି ସୃଷ୍ଟିଶୀଳତାର ଉତ୍ସ କେଉଁଠି ? ଜଣେ କେହି ନିଜ ଚାହିଦା ମୁତାବକ ଯେକୌଣସି ମୁହୂର୍ତ୍ତରେ ସୃଷ୍ଟିଶୀଳତାର ସ୍ଫୁରଣ ଘଟାଇବା ପୂର୍ବକ ନବ ନବ ଚେତନାର ଉନ୍ମେଷ ଘଟାଇ ପାରିବେ କି ? ସାମାଜିକ, ରାଜନୈତିକ ଓ ବୌଦ୍ଧିକ ପରିବେଶରେ ଆନୁଷଙ୍ଗିକ ପରିବର୍ତ୍ତନ ଘଟାଇବା ଦ୍ୱାରା ସୃଷ୍ଟିଶୀଳତାର ଚରମ ତଥା ତ୍ୱରାନ୍ୱିତ ପରିପ୍ରକାଶ ଘଟିପାରିବ କି ? ସୃଷ୍ଟିଶୀଳତା ରୂପୀ ବିଭାବଟିର ପରିମାଣାତ୍ମକ ମାପ ସମ୍ଭବ କି ? ବୈଜ୍ଞାନିକ ପଦ୍ଧତି ଅବଲମ୍ବନରେ ଏହାର ଉତ୍ସଟିର ସନ୍ଧାନ ମିଳିବ କି ? ଏପରି ପ୍ରଶ୍ନ ବରାବର ଆମ ମନରେ ଆଲୋଡନ ସୃଷ୍ଟି କରୁଛି । କୌତୂହଳୀ ମନୁଷ୍ୟ ଏହି ବିଚିତ୍ର ସମସ୍ୟାଟିର ସମାଧାନ ପାଇଁ ବହୁବିଧ ଗବେଷଣାରେ ମନନିବେଶ କରିଛି । ବିଶେଷତଃ, କମ୍ପ୍ୟୁଟରକୁ କୃତ୍ରିମ ବୁଦ୍ଧି ବଳରେ ବଳୀୟାନ୍ କରାଯିବା ଦିଗରେ ବର୍ତ୍ତମାନ ଅଗ୍ରାଧିକାରଭିତ୍ତିକ ଗବେଷଣା ପରିଚାଳିତ ହେଉଥିବା ଅବସରରେ ଏପରି ପ୍ରଶ୍ନ ଗୁଡିକର ତାତ୍ପର୍ଯ୍ୟ ସ୍ପଷ୍ଟ ଭାବରେ ଉପଲବ୍ଧ ହେଉଛି ।

ବିଂଶ ଶତାବ୍ଦୀର ଅନ୍ୟତମ ଶ୍ରେଷ୍ଠ ପଦାର୍ଥବିଜ୍ଞାନୀ ହାଇଜେନ୍‌ବର୍ଗଙ୍କ ମତାନୁଯାୟୀ ସମଧର୍ମୀ ବୈଜ୍ଞାନିକମାନଙ୍କ ସହିତ ଭାବ ବିନିମୟ କରିବା ବେଳେ କିମ୍ବା କୌଣସି ମନୋରମ ସ୍ଥାନର ପ୍ରାକୃତିକ ଦୃଶ୍ୟ ଉପଭୋଗ କରୁଥିବା ଅବସରରେ, ବନ୍ଧୁମାନଙ୍କ ସହିତ କଥୋପକଥନ ଚଳାଉଥିବା ବେଳେ ସ୍ୱତଃସ୍ଫୁର୍ତ୍ତ ଭାବରେ ଜଣଙ୍କର ସୁଗ୍ରାହୀ ତଥା ସମ୍ବେଦନଶୀଳ ମାନସପଟରେ ମୌଳିକ ଚିନ୍ତାଧାରାର ଜାଗରଣ ସମ୍ଭବ ହୁଏ । କବିଗୁରୁ ରବୀନ୍ଦ୍ରନାଥଙ୍କ ମତାନୁଯାୟୀ ଦିବ୍ୟ ଚେତନାର ଜାଗରଣ ପାଇଁ କୌଣସି ନିର୍ଦ୍ଦିଷ୍ଟ ସମୟ ନାହିଁ । ନିଜ ଅନ୍ତର୍ନିହିତ ପ୍ରତିଭାର ସଦୁପଯୋଗ ଉଦ୍ଦେଶ୍ୟରେ ସାଧନାରତ ଜୀବନ ବିତାଇବା ଅବସରରେ କୌଣସି ନା କୌଣସି ମୁହୂର୍ତ୍ତରେ ଜଣଙ୍କ ମାନସପଟରେ ନବ ଚେତନାର ଉନ୍ମେଷ ଘଟିପାରେ । ସ୍ୱନାମଧନ୍ୟ ଚିତ୍ରକର ପିକାସୋଙ୍କ ମତାନୁଯାୟୀ .ସେ କେବେହେଲେ ପୂର୍ବରୁ କୌଣସି ମୌଳିକ ଧାରଣାର ପରିପ୍ରକାଶ ଦିଗରେ ସଚେତନ ହୋଇ ଚିତ୍ର ଅଙ୍କନ କରନ୍ତି ନାହିଁ । ମୌଳିକତା ଅଜାଣତ ଭାବରେ ଶିଳ୍ପୀଙ୍କ ସୃଷ୍ଟିରେ ପ୍ରତିଭାତ ହୁଏ । ଆନ୍ତଃରାଷ୍ଟ୍ରୀୟ ଖ୍ୟାତିସମ୍ପନ୍ନ ବୈଜ୍ଞାନିକ ଏନ୍‌ରିକୋ ଫର୍ମି ଗୋଟିଏ ତତ୍ତ୍ୱର ସତ୍ୟାପନ କରିବା ଉଦ୍ଦେଶ୍ୟରେ ନିଜ ଅବରୋଧ ଉପରେ ନିର୍ଭର କରନ୍ତି । ପ୍ରକୃତିର କ୍ରିୟାଶୀଳତାର ସୌନ୍ଦର୍ଯ୍ୟକୁ ସେ ଉପଲବ୍ଧି କରିପାରନ୍ତି । ଗୋଟିଏ ନୂତନ ତତ୍ତ୍ୱ ସମ୍ବନ୍ଧରେ ମତବ୍ୟକ୍ତ କରିବାବେଳେ ସେ ସାଧାରଣତଃ କହନ୍ତି, "ଏହି ତତ୍ତ୍ୱଟି କେତେ ସୁନ୍ଦର !" ଅଥବା "ଏହା କେତେ କଦର୍ଯ୍ୟ ଜଣାପଡୁଛି !!" ପ୍ରବୀଣ ବୈଜ୍ଞାନିକ ଡିରାକ୍ ମଧ୍ୟ ଏବଂବିଧ ମାର୍ଗରେ ମୌଳିକତାର ମାନ ନିର୍ଦ୍ଧାରଣ କରନ୍ତି । ରୋଜାଲିନ୍ ତୁରେକ୍ କନ୍‌ସର୍ଟ ପିଆନିଷ୍ଟ୍ ଭାବରେ ସୁଖ୍ୟାତି ଅର୍ଜନ କରିଛନ୍ତି । ମାତ୍ର ସତର ବର୍ଷ ବୟସରେ ପଦାର୍ପଣ କରିଥିବାବେଳେ ସେ ଏକଦା ବ୍ୟାଚ୍‌ଙ୍କ ସଙ୍ଗୀତ ଶୁଣିବାର ସୁଯୋଗ ପାଇଲେ । ସଙ୍ଗୀତ ଶୁଣିବାବେଳେ ସେ ଆତ୍ମହରା ହୋଇଗଲେ । ନିଜ ଅସ୍ତିତ୍ୱକୁ ସେ ସମ୍ପୂର୍ଣ୍ଣ ଭାବରେ ଭୁଲିଗଲେ । ସେତେବେଳେ ତାଙ୍କ ଭାବ-ରାଜ୍ୟରେ ଯେଉଁ ପ୍ରକାର ଆଲୋଡନ ସୃଷ୍ଟି ହୋଇଥିଲା, ତାହାକୁ ସେ ମନେରଖି ପାରିଲେ ନାହିଁ । ମାତ୍ର ତାଙ୍କର ମନେଅଛି ଯେ ଏତ-ଦ୍ୱାରା ହଠାତ୍ ସେ ବ୍ୟାଚ୍‌ଙ୍କ ସଙ୍ଗୀତର ଗଠନାତ୍ମକ ପରିପାଟୀ ସମ୍ବନ୍ଧରେ ଏକ ବିଚିତ୍ର ଅନ୍ତଃଦୃଷ୍ଟିର ଅଧିକାରିଣୀ ହେଲେ । ଏହି ଦିବ୍ୟ ଅନ୍ତଃଦୃଷ୍ଟି ବଳରେ ସେ ଏହାକୁ ଭିନ୍ନ ପ୍ରକାରେ ପ୍ରକାଶ କରିବାକୁ ସମର୍ଥ ହେଲେ ।

ମୌଳିକତା କ'ଣ ? ସୃଷ୍ଟିଶୀଳତାର ମୂଲ୍ୟାୟନ କିପରି ହୁଏ ? ଆମେ ବୁଝିବାର କଥା ଯେ କୌଣସି ପୁରୁଣା ବିଷୟକୁ ବା ଧାରଣାକୁ ପୁନର୍ବିନ୍ୟାସ ଅବଲମ୍ବନରେ ନୂଆ ରୂପ ଦେବା ମୌଳିକତାର ନିଦର୍ଶନ ନୁହେଁ । କିମ୍ବା କାର୍ ନମ୍ବର ବା ଫୋନ୍ ନମ୍ବର ଭଳି ପୁରୁଣା କଥାକୁ ଯଥାସମୟରେ ମନେପକାଇବା ଓ ତାହାର ଉପଯୋଗ କରିବା ସୃଷ୍ଟିଶୀଳତାର ପରିଚାୟକ ନୁହେଁ । ନବୀକରଣ କ୍ଷମତା (ଇନ୍ନୋଭେଶନ୍)ର ସ୍ୱାତନ୍ତ୍ର୍ୟ ଓ ବୈଶିଷ୍ଟ୍ୟକୁ

ଉପଲବ୍ଧି କରାଯାଏ । ଏହା ମନୁଷ୍ୟର ଚେତନାର ଉତ୍ତରଣ ଘଟାଇପାରେ କିମ୍ବା ତାହାର ଜୀବନଯାପନ ପଦ୍ଧତିରେ ଅଭୂତପୂର୍ବ ପରିବର୍ତ୍ତନ ଘଟାଇପାରେ । ନିଜ ପାରିପାର୍ଶ୍ୱିକ ସମସ୍ୟାଗୁଡ଼ିକର ସମାଧାନ ପାଇଁ ମନୁଷ୍ୟ ବୁଦ୍ଧି ଖଟାଏ । ସୃଷ୍ଟିଶୀଳ ପ୍ରତିଭା-ସମ୍ପନ୍ନ ତଥା ଇନ୍ନୋଭେଶନ୍ ପ୍ରବଣ ବ୍ୟକ୍ତିମାନେ ସ୍ଥାପତ୍ୟ, ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା, କଳା ଓ ସଙ୍ଗୀତ କ୍ଷେତ୍ରରେ ନୂଆ ନୂଆ ତତ୍ତ୍ୱ, ଧାରଣା ଓ କୌଶଳଗୁଡ଼ିକୁ ଉଦ୍ଭାବନ କରି ଯୁଗ ପ୍ରବର୍ତ୍ତନ ଭୂମିକାରେ ଅବତୀର୍ଣ୍ଣ ହୁଅନ୍ତି । ୧୯୭୬ ମସିହାରେ ଯୁକ୍ତରାଷ୍ଟ୍ର ଆମେରିକାରେ ଦ୍ୱି ଶତବାର୍ଷିକୀ ସ୍ୱାଧୀନତା ବର୍ଷ ମହା ସମାରୋହରେ ପାଳିତ ହେଲା । ସୁପ୍ରସିଦ୍ଧ 'ଲାଇଫ୍' ପତ୍ରିକାର ସମ୍ପାଦନାମଣ୍ଡଳୀ ଦୁଇଶତ ବର୍ଷ ମଧ୍ୟରେ ଏହି ରାଷ୍ଟ୍ରକୁ ବିଜ୍ଞାନୋନ୍ନତ ତଥା ଶିଳ୍ପୋନ୍ନତ କରାଇବା ପାଇଁ ଉଦ୍ଦିଷ୍ଟ ବାରଟି ସ୍ମରଣୀୟ ତଥା ଯୁଗାନ୍ତକାରୀ ଉଦ୍ଭାବନ ସମ୍ପର୍କରେ ସୂଚାଇଥିଲେ, ଯଥା- ଏଲ୍. ହ୍ୱିଟ୍‌ନେ ଓ ମାସ୍ ପ୍ରଡକ୍‌ସନ୍ ପଦ୍ଧତି, ଡକ୍ଟର ଉଇଲିଅମ୍ ମର୍ଟନ ଓ ଶଲ୍ୟ ଚିକିତ୍ସା କ୍ଷେତ୍ରରେ ନିଶ୍ଚେତକ ଦ୍ରବ୍ୟର ପ୍ରୟୋଗ, ସାଇରସ୍ ମ୍ୟାକ୍‌କୋରମିକ୍ ଓ ଟ୍ରାକ୍ଟର, ଆଲେକ୍‌ଜାଣ୍ଡର, ଗ୍ରାହାମ୍ ବେଲ୍ ଓ ଟେଲିଫୋନ୍, ଟମାସ୍ ଆଲ୍‌ଭା ଏଡିସନ୍ ଓ ବିଜୁଳିବତୀ, ଜର୍ଜ ଇଷ୍ଟମାନ୍ ଓ ବାକ୍‌ସ କାମେରା, ରାଇଟ୍ ଭ୍ରାତାଯୁଗଳ ଓ ବିମାନ ଚଳାଚଳ, ହେନେରି ଫୋର୍ଡ ଓ ଆସେମ୍ବ୍ଲିଲାଇନ୍ ପଦ୍ଧତି, ହୋଓାର୍ଡ ଆଇକେନ୍ ଓ କମ୍ପ୍ୟୁଟର ଯୁଗର ଅୟମାରମ୍ଭ, ଡୁପଂଟ କମ୍ପାନୀର ବିଶେଷଜ୍ଞମଣ୍ଡଳୀ ଓ ନାଇଲନ୍ ବସ୍ତ୍ର, ଜୋନାସ ସଲ୍‌କ ଓ ପୋଲିଓ ପ୍ରତିଷେଧକ ଟୀକା ଏବଂ ମହିଳାମାନଙ୍କ ସୁବିଧା ପାଇଁ ପାକଶାଳାର କର୍ମନିପୁଣ ଯନ୍ତ୍ରଗୁଡ଼ିକର ପ୍ରତିଷ୍ଠା । ଏହି ଯୁଗାନ୍ତକାରୀ ଉଦ୍ଭାବନଗୁଡ଼ିକ ସହ ସଂପୃକ୍ତ ସବୁ ଉଦ୍ଭାବକ ଆନୁଷ୍ଠାନିକ ଶିକ୍ଷା ଓ ଗବେଷଣା ଅବଲମ୍ବନରେ ଏପରି କୃତିତ୍ୱ ପ୍ରଦର୍ଶନ କରିନାହାଁନ୍ତି । ଏମାନେ ପାରିପାର୍ଶ୍ୱିକ ସମସ୍ୟାଗୁଡ଼ିକର ସମାଧାନ ପାଇଁ ସ୍ୱତଃସ୍ଫୂର୍ତ୍ତ ଭାବରେ ବୁଦ୍ଧି ଖଟାଇଛନ୍ତି ଏବଂ ନିଜ ନିଜ ପ୍ରତିଭାର ବିଚକ୍ଷଣ-ଉପଯୋଗ ଘଟାଇବା ପୂର୍ବକ ସଭ୍ୟତା ଓ ସଂସ୍କୃତିର କ୍ରମବିକାଶ ପଥରେ ନିଜ ନିଜ ପ୍ରତିଭାର ସ୍ୱାକ୍ଷରକୁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରାଇଛନ୍ତି ।

ବୁଦ୍ଧି (ଇଣ୍ଟେଲିଜେନ୍‌ସ) ବା ବିଶେଷଜ୍ଞସୁଲଭ ଜ୍ଞାନ ମଧ୍ୟ ସୃଷ୍ଟିଶୀଳତାର ପରିଚାୟକ ନୁହେଁ । ଯେଉଁମାନେ କେବଳ ନିଜ ବୁଦ୍ଧି, ମାନସିକ ପ୍ରସ୍ତୁତି, ଅନ୍ତଃଦୃଷ୍ଟି, ଅବବୋଧ ଓ କଳ୍ପନାପ୍ରବଣତା ବଳରେ ଅଜଣା ଅଶୁଣା ରାଜ୍ୟରେ ମନୋନିବେଶ କରିପାରନ୍ତି ଏବଂ ସ୍ଥିତାବସ୍ଥାରେ ଯୁଗାନ୍ତକାରୀ ରୂପାନ୍ତର ଘଟାଇ ପାରନ୍ତି, ସେମାନେ ହିଁ କୁଶଳୀ ସ୍ରଷ୍ଟା । ଆମେ ଜାଣୁ ଯେ ପ୍ରତ୍ୟେକ ମନୁଷ୍ୟ କୌଣସି ନା କୌଣସି ଅନ୍ତର୍ନିହିତ ସୃଷ୍ଟିଶୀଳ ପ୍ରତିଭାର ଅଧିକାରୀ ହୋଇଛି । ସୃଷ୍ଟିଶୀଳତାର ପରିପ୍ରକାଶ ପାଇଁ କ'ଣ କୌଣସି ଅନୁକୂଳ ପରିବେଶର ଆବଶ୍ୟକତା ରହିଛି ? ଆନୁଷ୍ଠାନିକ ଶିକ୍ଷା ଅବଲମ୍ବନରେ ମାନବ ସମ୍ବଳର ବିକାଶ ଘଟାଯିବା ଅବସରରେ

ସୃଷ୍ଟିଶୀଳତାର ଅଭିବ୍ୟକ୍ତି ପାଇଁ ତାଲିମ୍ ଦିଆଯାଇ ପାରିବ କି ? ଏଥିପାଇଁ କୌଣସି ବିଜ୍ଞାନସମ୍ମତ ପନ୍ଥାର ଆଶ୍ରୟ ନିଆଯାଇ ପାରିବ କି ? ଏପରି ପ୍ରଶ୍ନର ସଠିକ ଉତ୍ତର ମିଳିବା ସମ୍ଭବ ହୋଇ ନ ଥିଲେ ମଧ୍ୟ ଓ୍ୱାସିଙ୍ଗ୍‌ଟନ୍‌ସ୍ଥିତ ଐତିହାସିକ ସ୍ମିଥ୍‌ସୋନିଆନ୍ ଇନ୍‌ଷ୍ଟିଚ୍ୟୁସନ୍ କର୍ତ୍ତୃପକ୍ଷ ନିକଟ ଅତୀତରେ ଗୋଟିଏ ଆନ୍ତଃରାଷ୍ଟ୍ରୀୟ ଆଲୋଚନାଚକ୍ରର ଆୟୋଜନ କରିଥିଲେ । ଏଥିରେ ବହୁ ସୃଜନଶୀଳ କଳାକାର ଶିଳ୍ପୀ, ସାହିତ୍ୟିକ ଓ ବୈଜ୍ଞାନିକ ଯୋଗ ଦେଇ ସୃଷ୍ଟିଶୀଳତାର ଉତ୍ସ ସନ୍ଧାନ ଦିଗରେ ଆଲୋଚନା ଚଳାଇଥିଲେ । ଏହି ଆଲୋଚନା ଚକ୍ରରୁ କୌଣସି ନିଷ୍ପତ୍ତିମୂଳକ ସିଦ୍ଧାନ୍ତ ଅବଶ୍ୟ ମିଳିଲା ନାହିଁ , ମାତ୍ର ଆଲୋଚକମାନେ ଓଜସ୍ୱିନୀ ପ୍ରତିଭାଧର ବ୍ୟକ୍ତିମାନଙ୍କ ଠାରେ ନିମ୍ନଲିଖିତ ଷଡବିଧ ଗୁଣକୁ ଚିହ୍ନଟ କରିପାରିଲେ ।

ମହାମତି ଚିନ୍ତାନାୟକମାନେ ସ୍ୱଭାବତଃ ସୌନ୍ଦର୍ଯ୍ୟାନୁରାଗୀ । ପ୍ରକୃତିର ଅନୁପମ ରୂପ ଲାବଣ୍ୟ ଓ ବୈଚିତ୍ର୍ୟମୟ ଛନ୍ଦବଦ୍ଧ କ୍ରିୟାଶୀଳତାକୁ ସେମାନେ ଏକ ପ୍ରହେଳିକା ଭାବରେ ବିଚାର କରନ୍ତି । ଏହାର ଅନ୍ତର୍ନିହିତ ଶୃଙ୍ଖଳା ସମ୍ବନ୍ଧରେ ଜାଣିବା ପାଇଁ ସେମାନଙ୍କ ମନରେ ଭାବାବେଗ ସୃଷ୍ଟି ହୁଏ । ଗୁପ୍ତ ସତ୍ୟର ଉନ୍ମୋଚନ ପାଇଁ ସେମାନେ ନିଜ ସୃଷ୍ଟିଶୀଳ ପ୍ରତିଭାର ସଦୁପଯୋଗ କରନ୍ତି । ମହାମତି ଆଇନଷ୍ଟାଇନଙ୍କ କର୍ମାଭିମୁଖ୍ୟ କେବଳ ସୌନ୍ଦର୍ଯ୍ୟବୋଧ ପର୍ଯ୍ୟବସିତ ହୋଇଥିଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ପ୍ରଚ୍ଛନ୍ନ ଚଳନରାଶିଗୁଡିକର (ହିଡ୍‌ନ ଭାରିଏବ୍‌ଲସ) ସନ୍ଧାନ ବଳରେ ମନୁଷ୍ୟର ଚେତନାର କ୍ରମଉତ୍ତରଣ ଘଟୁଥିବା ସମ୍ପର୍କରେ ସେ ନିର୍ଭୀକ ମତବ୍ୟକ୍ତ କରୁଥିଲେ ।

ପ୍ରତିଭାଧର ବ୍ୟକ୍ତିମାନେ କେତେକାଂଶରେ 'ନୈର୍ବ୍ୟକ୍ତିକତା' (ଅବ୍‌ଜେକ୍‌ଟିଭିଟି)ର ଅନୁରାଗୀ ହୁଅନ୍ତି । ଏତଦ୍ୱାରା ସେମାନେ ଆତ୍ମ-ପ୍ରତାରଣା ତଥା ଅନ୍ଧବିଶ୍ୱାସ କବଳରୁ ମୁକ୍ତ ହୋଇପାରନ୍ତି । ସ୍ୱନାମଧନ୍ୟ ରସାୟନବିତ୍ ଲିନସ୍ ପାଉଲିଙ୍ଗ୍ ରାସାୟନିକ ବନ୍ଧନ ଗୁଡ଼ିକ ସମ୍ପର୍କରେ ପଥପ୍ରଦର୍ଶନକାରୀ ସ୍ପଷ୍ଟୀକରଣ ଯୋଗାଇ ଦେଇ ନୋବେଲ୍ ପୁରସ୍କାର ବିଜେତାର ଗୌରବ ଅର୍ଜନ କରିଥିଲେ । ପରବର୍ତ୍ତୀକାଳରେ ଅବଶ୍ୟ ଶାନ୍ତି ପ୍ରତିଷ୍ଠା ପାଇଁ ପୁନର୍ବାର ନୋବେଲ୍ ପୁରସ୍କାର ବିଜୟୀ ହୋଇଥିଲେ । ସେ ଏକଦା ତାଙ୍କର ଜଣେ ପ୍ରିୟ ଛାତ୍ରଙ୍କୁ ପରାମର୍ଶ ଦେବା ଉଦ୍ଦେଶ୍ୟରେ କହିଥିଲେ ଯେ ଅନେକଗୁଡିଏ ଧାରଣା ମଧ୍ୟରୁ ନିଜେ ପରଖି କେତେକ ମନ୍ଦ ଧାରଣାକୁ ପ୍ରତ୍ୟାଖ୍ୟାନ କରିଦେବା ହିଁ ବିଜ୍ଞତାର ପରିଚାୟକ । ସ୍ୱନାମଧନ୍ୟ ଶିଳ୍ପୀ ଜର୍ଜ ଶିଗଲ୍ ଏହି ମନ୍ତବ୍ୟକୁ ପ୍ରକାରାନ୍ତରେ ସୂଚାଇଛନ୍ତି । ତାଙ୍କ ମତାନୁଯାୟୀ ତୁମେ ଅତି ମାତ୍ରାରେ ମୌଳିକତା ପ୍ରଦର୍ଶନ କରିବାକୁ ଚାହିଁଲେ ଲୋକେ ତୁମକୁ ପାଗଳ ବୋଲି କହିବେ । କୌଣସି ନା କୌଣସି ପରମ୍ପରା ସହିତ ଯୋଗସୂତ୍ର ରକ୍ଷାକରିବା ଦ୍ୱାରା ହିଁ ପ୍ରତିଭାର ଯଥାର୍ଥ ପରିପ୍ରକାଶ ହୋଇପାରେ ।

ସମସ୍ୟାଗୁଡ଼ିକର ସମାଧାନ ଯେପରି ପ୍ରତିଭାବାନ୍ ବ୍ୟକ୍ତିମାନଙ୍କୁ ନିଜ ନିଜ ସୃଜନଶୀଳତାର ସଦୁପଯୋଗ କରିବାକୁ ଉଦ୍‌ବୁଦ୍ଧ କରିପାରେ, ଠିକ୍ ସମସ୍ୟାଗୁଡ଼ିକର ଅନ୍ୱେଷଣ ମଧ୍ୟ ସେମାନଙ୍କୁ କର୍ମପାଗଳ କରିଦିଏ । ପାରିପାର୍ଶ୍ୱିକ ପରିସ୍ଥିତିକୁ ଅନୁଧ୍ୟାନ କରି ସେମାନେ ସମସ୍ୟାଗୁଡ଼ିକୁ ଠିକଣା ଭାବରେ ଚିହ୍ନଟ କରନ୍ତି ଏବଂ ସେମାନଙ୍କର ସମାଧାନ ପାଇଁ ବୁଦ୍ଧି ଖଟାନ୍ତି । ହେନେରି ଫୋର୍ଡ , ଟମାସ ଏଡିସନ ଓ ଆଲେକ୍‌ଜାଣ୍ଡର ଗ୍ରାହାମ୍ ବେଲ୍‌ଙ୍କ ଯଶବହୁଳ ତଥା କର୍ମମୟ ଜୀବନ ଏହି ମନ୍ତବ୍ୟର ଗୋଟିଏ ଗୋଟିଏ ପ୍ରକୃଷ୍ଟ ନିଦର୍ଶନ ।

ପ୍ରତିଭାବାନ୍ ବ୍ୟକ୍ତିମାନେ ଅସାଧାରଣ ଅନୁମାନଗୁଡ଼ିକର ବା ଉପକଳ୍ପଗୁଡ଼ିକର ସତ୍ୟତା ପ୍ରତିପାଦନ କରିବାକୁ ଯତ୍ନବାନ୍ ହୁଅନ୍ତି । ସାଧାରଣ ମନୁଷ୍ୟ ଏପରି ଆହ୍ୱାନଗୁଡ଼ିକର ମୁକାବିଲା କରିବାକୁ  ସମର୍ଥ ହୁଏନାହିଁ । ତା' ମନରେ ଏପରି କଳ୍ପନାର ଉଦ୍ରେକ ଘଟେନାହିଁ । ବିଜ୍ଞାନ, କଳା ଓ ସ୍ଥାପତ୍ୟ କ୍ଷେତ୍ରରେ ଏ ପ୍ରକାର ଦୃଷ୍ଟାନ୍ତ ବିରଳ ନୁହେଁ । ଇସ୍‌ଲାମ ଇତିହାସରେ ସ୍ଥାପତ୍ୟ ବିଦ୍ୟା ନିପୁଣ ସିନାନ୍ ଏକ ସ୍ୱତନ୍ତ୍ର ମର୍ଯ୍ୟାଦାର ଅଧିକାରୀ ହୋଇଛନ୍ତି । ସୁଲତାନମାନଙ୍କ ବୈଭବ ଓ ମର୍ଯ୍ୟାଦା ସହ ସଙ୍ଗତି ରକ୍ଷା କରିପାରିବା ଭଳି ପ୍ରାସାଦ ନିର୍ମାଣ ବ୍ୟାପାରରେ ସେ ଅଭୂତପୂର୍ବ ପାରଙ୍ଗମତା ପ୍ରଦର୍ଶନ କରିଥିଲେ । ଓଟୋମାନ ପ୍ରାସାଦଗୁଡ଼ିକୁ ନିର୍ମାଣ କରିବା ପାଇଁ  ଓ ସୁବୃହତ୍ ଡୋମ ବା  ଗହ୍ୱରଗୁଡ଼ିକୁ ସନ୍ତୁଳିତ ଭାବରେ ନିର୍ମାଣ କରିବା ପାଇଁ ସେ ସାହାସର ସହିତ ସ୍ୱପରିକଳ୍ପିତ ନିର୍ମାଣ -ପଦ୍ଧତିର ସଦୁପଯୋଗ କରିଥିଲେ । କୋଠାବାଡ଼ି ନିର୍ମାଣ ପାଇଁ ବ୍ୟବହୃତ ବସ୍ତୁ ଓ ନକ୍‌ସା ପ୍ରଣୟନ ବ୍ୟାପାରରେ ତାଙ୍କ ନିଜସ୍ୱ ଅବଦାନ ଅନ୍ୟମାନଙ୍କଠାରୁ ଭିନ୍ନ ଧରଣର ହୋଇଥିଲା । ଏତଦ୍ୱାରା ସ୍ଥାପତ୍ୟ ବିଦ୍ୟା କ୍ଷେତ୍ରରେ ସେ ଜଣେ ଯୁଗପ୍ରବର୍ତ୍ତକ ଭୂମିକାରେ ଅବତୀର୍ଣ୍ଣ ହୋଇପାରିଲେ ।

ମୌଳିକ ଚିନ୍ତାନାୟକମାନେ ସେମାନଙ୍କ ମାନସପଟରେ ଆଲୋଡ଼ନ ସୃଷ୍ଟି କରିଥିବା ନବଚେତନାର ସ୍ଫୁରଣକୁ ଯଥାବିଧି ଅଭିବ୍ୟକ୍ତ କରିବା ପାଇଁ ଆପ୍ରାଣ ଉଦ୍ୟମ ଚଳାନ୍ତି । ନିଜ ନିଜ ମେଧାର ଚରମ  ଉପଯୋଗ ଘଟାଇବାକୁ ଏବଂ ଆବଶ୍ୟକ ସ୍ଥଳେ ସୁଦୀର୍ଘକାଳ ବ୍ୟାପୀ ଗବେଷଣା ଚଳାଇବାକୁ ସେମାନେ ଜୀବନର ବ୍ରତ ରୂପେ ଆଦରି ନିଅନ୍ତି । ଲିନସ୍ ପଲିଙ୍ଗ୍ ଏହି ଘଟଣାକୁ ଉପଲକ୍ଷ୍ୟ କରି ସୂଚାଇଛନ୍ତି ଯେ କେବଳ ଗୋଟିଏ ଅଭିନବ ଧାରଣାର ଜାଗରଣ ଘଟିବା ଦ୍ୱାରା ମାନସିକ ସନ୍ତୋଷ ମିଳେନାହିଁ କିମ୍ବା ଏତଦ୍ୱାରା ଜ୍ଞାନ-ରାଜ୍ୟର ସମୃଦ୍ଧି ଘଟେ ନାହିଁ । ଧାରଣାଟିର ଯଥାର୍ଥ ସତ୍ୟାପନ  ଓ ଉପସ୍ଥାପନା ପାଇଁ ଯତ୍ନବାନ୍ ହେବାଦ୍ୱାରା ହିଁ ଜ୍ଞାନ ଜଗତର ଆଶାନୁରୂପ ସମୃଦ୍ଧି ସାଧିତ ହୁଏ ।

ଏକ ଅନ୍ତର୍ନିହିତ ଆବେଗ ସୃଷ୍ଟିଶୀଳ ପ୍ରତିଭାସମ୍ପନ୍ନ ବ୍ୟକ୍ତିମାନଙ୍କୁ କର୍ମ ପାଗଳ କରେ । ସେମାନଙ୍କ ମୁଣ୍ଡ ଉପରେ ଗୋଟିଏ ବୋଝ ଲଦିଦିଏ । ଏହି ବୋଝ ଖଲାସ ନହେବା

ପର୍ଯ୍ୟନ୍ତ ସେମାନେ ବାତୁଳପ୍ରାୟ କର୍ମପ୍ରବଣ ହୁଅନ୍ତି । କୌଣସି ଫଳଲାଭ ବା ଯଶପ୍ରାପ୍ତିର ଆଶା ସେମାନଙ୍କ କଳ୍ପନାକୁ ମଧ୍ୟ ସ୍ପର୍ଶ କରିନଥାଏ । କର୍ମଣ୍ୟେ-ବାଧିକାରସ୍ତେ ମା ଫଳେଷୁ କଦାଚନ- ଗୀତାର ଆପ୍ତବାକ୍ୟଟି ସେମାନଙ୍କ ଜୀବନ ଦର୍ଶନରେ ପ୍ରତିଫଳିତ ହୁଏ ।

ସ୍ମିଥ୍ ସୋନିଆନ୍ ଇନ୍‌ଷ୍ଟିଚ୍ୟୁସନ୍‌ଠାରେ ଆୟୋଜିତ ଆଲୋଚନାଚକ୍ରର ସୁଖ୍ୟାତ ଆଲୋଚକମାନେ ପ୍ରତିଭାଧର ବ୍ୟକ୍ତିମାନଙ୍କଠାରେ ସାଧାରଣ ଭାବରେ ଏହି ଛ' ପ୍ରକାର ଗୁଣ ପ୍ରତିଭାତ ହେଉଥିବା ସମ୍ପର୍କରେ ଏକମତ ହୋଇଥିଲେ ହେଁ ପ୍ରତିଭାର ପରିପ୍ରକାଶ ପାଇଁ ଏଗୁଡିକୁହିଁ କେବଳ ଆବଶ୍ୟକୀୟ ବିଭାବ ଭାବରେ ବିଚାର କରିବାକୁ ଉଚିତ ମଣି ନଥିଲେ । ସେମାନେ ସୂଚାଇଥିଲେ ଯେ ସବୁ ଧର୍ମ, କଳା ଓ ବିଜ୍ଞାନ ଗୋଟିଏ ବୃକ୍ଷର ଶାଖାପ୍ରଶାଖା ପରି । ଯୋଗଜନ୍ମା ବୈଜ୍ଞାନିକ ଆଇନଷ୍ଟାଇନ୍ ଏକଦା ମତବ୍ୟକ୍ତ କରିଥିଲେ ଯେ ରାଜନୀତି ମଧ୍ୟ ପଥପ୍ରଦର୍ଶନକାରୀ ନେତୃତ୍ୱ ପ୍ରଦାନ ପାଇଁ ମନୁଷ୍ୟର ସୃଜନଶୀଳତା ଉପରେ ନିର୍ଭରଶୀଳ ହୋଇଛି । ୧୯୮୦ ମସିହାରେ ଆର୍ଥର ସ୍ଲେସିଞ୍ଜର ଆଇନଷ୍ଟାଇନ୍‌ଙ୍କ ମନ୍ତବ୍ୟକୁ ଆହୁରି ସ୍ପଷ୍ଟ ଭାବରେ ବୁଝାଇ ଦେଇଛନ୍ତି । ତାଙ୍କ ମତାନୁଯାୟୀ କଳାକାର ଓ ବୈଜ୍ଞାନିକ ସାଲିସ୍ କରିବାକୁ ଚାହାନ୍ତି ନାହିଁ । ସେମାନେ ସ୍ୱପରିକଳ୍ପିତ ଧାରଣାର ସତ୍ୟତା ପ୍ରତିପାଦନ କରିବା ପାଇଁ ଯତ୍‌ପରୋନାସ୍ତି ଉଦ୍ୟମ ଚଳାନ୍ତି ଏବଂ ସ୍ଥଳବିଶେଷରେ ସେମାନଙ୍କ ମନ୍ତବ୍ୟର ଯଥାର୍ଥତା ପ୍ରତିପାଦିତ ହୋଇପାରିବା ସମ୍ପର୍କରେ ଦୃଢ଼ ମତ ପୋଷଣ କରନ୍ତି । ମାତ୍ର ରାଷ୍ଟ୍ରନୀତିଜ୍ଞମାନେ ଫଳପ୍ରାପ୍ତି ଓ ଯଶପ୍ରାପ୍ତି ଉଦ୍ଦେଶ୍ୟରେ ଅତିଶୀଘ୍ର ଜନସାଧାରଣଙ୍କ ସମ୍ମତି ଲୋଡନ୍ତି ।

ଉଲ୍ଲିଖିତ ଆଲୋଚନାରୁ ସ୍ପଷ୍ଟ ଭାବରେ ଉପଲବ୍ଧ ହେଉଛି ଯେ ଜଣଙ୍କ ସୃଷ୍ଟିଶୀଳ ପ୍ରତିଭାର ପରିପ୍ରକାଶ ପାଇଁ ତାଙ୍କୁ କୌଣସି ସୁନିର୍ଦ୍ଦିଷ୍ଟ ମାର୍ଗରେ ତାଲିମ୍ ଦେବା ସମ୍ଭବ ନୁହେଁ । କାରଣ ସୃଷ୍ଟିଶୀଳତାର ଉତ୍ସକୁ ଚିହ୍ନଟ କରିବା ଅଦ୍ୟାବଧି ସମ୍ଭବ ହୋଇନାହିଁ । ମାତ୍ର ଏହା ସ୍ପଷ୍ଟ ଭାବରେ ଉପଲବ୍ଧ ହେଉଛି ଯେ ଜ୍ଞାନଲିପ୍‌ସାର ଜାଗରଣ ପାଇଁ ଓ କୌତୂହଳପ୍ରବଣତାର ଉଦ୍ରେକ ପାଇଁ ଆନୁଷଙ୍ଗିକ ବ୍ୟବସ୍ଥା କାର୍ଯ୍ୟକାରୀ ହେବା ଉଚିତ । କୌଣସି ଗୋଟିଏ ସମସ୍ୟାକୁ ଠାବ କରିବା ପାଇଁ ଓ ତାହାର ପ୍ରତିକାର ଦିଗରେ ନିଜସ୍ୱ ଉଦ୍ୟମ ଚଳାଇବା ଯେଉଁ ଆତ୍ମପ୍ରତ୍ୟୟ ତଥା ମନନଶୀଳତା ଆବଶ୍ୟକ, ତାହାର ଯଥାର୍ଥ ବିକାଶ ଓ ପରିପ୍ରକାଶ ପାଇଁ ବାଲ୍ୟକାଳରୁ ଛାତ୍ରଛାତ୍ରୀମାନଙ୍କୁ ସମୁଚିତ ସୁବିଧା ଓ ସୁଯୋଗ ଯୋଗାଇଦେବା ବାଞ୍ଛନୀୟ । ପ୍ରଶ୍ନ ପଚାରିବା ପାଇଁ, ସମସ୍ୟାଗୁଡିକୁ ଠାବ କରିବା ପାଇଁ ପିଲାମାନଙ୍କୁ ଉତ୍ସାହିତ କରାଯିବା ଦ୍ୱାରା ତଥା ସେମାନଙ୍କ ନିଜସ୍ୱ ଉଦ୍ୟମ ବଳରେ ପ୍ରଶ୍ନଗୁଡିକର ଉତ୍ତର ବା ସମସ୍ୟାଗୁଡିକର ସମାଧାନ ପାଇଁ ସେମାନଙ୍କୁ ଆନୁଷଙ୍ଗିକ ପରିବେଶ ଯୋଗାଇଦେବା ଦ୍ୱାରା ସୃଷ୍ଟିଶୀଳ ପ୍ରତିଭାର ସୁସଂଯତ ବିକାଶ ଓ ପରିପ୍ରକାଶର ପଥ ସୁଗମ ହୋଇଯିବ । ଶିକ୍ଷାଦାନ ପାଇଁ ଉଦ୍ଦିଷ୍ଟ ପ୍ରତ୍ୟେକ ବିଭାଗରେ

(ଯଥା: କଳା, ସାହିତ୍ୟ,ବିଜ୍ଞାନ, ଇତିହାସ ପ୍ରଭୃତି) ଏବଂବିଧ ବ୍ୟବସ୍ଥାକୁ ପାଠ୍ୟକ୍ରମର ଅନ୍ତର୍ଭୁକ୍ତ କରାଯିବା ସମ୍ଭବ ହେଲେ ଶିକ୍ଷାବଳରେ ମନୁଷ୍ୟର ଚେତନାର ଉତ୍ତରଣ ଘଟିପାରିବ ତଥା ତାହାରି ଭବିଷ୍ୟତ ଉଜ୍ଜ୍ୱଳମୟ ହୋଇପାରିବ । ଆମ ଦେଶର ନୂତନ ଶିକ୍ଷାନୀତିରେ ନୀତିଗତ ବା ଆଦର୍ଶଗତ ଦୃଷ୍ଟିକୋଣରୁ ଏଥିପ୍ରତି ଅଗ୍ରାଧିକାର ଆରୋପିତ ହୋଇଛି । ଆଉ କାଳବିଳମ୍ବ ନକରି ଶିକ୍ଷାବିତ୍‌ମାନେ ତଥା ପ୍ରବୀଣ ଶିକ୍ଷକମାନେ ଏ ଦିଗରେ ସୁଚିନ୍ତିତ ପଦକ୍ଷେପଗୁଡ଼ିକୁ ଯଥାବିଧି କାର୍ଯ୍ୟକାରୀ କରାଇ ପାରିଲେ ଶିକ୍ଷାର ଉତ୍କର୍ଷ ଜନଜୀବନରେ ପ୍ରତିଫଳିତ ହୋଇପାରିବ । ମନୁଷ୍ୟରୂପୀ ପ୍ରାଣୀର ଅନନ୍ୟସାଧାରଣ ଗୁଣଟିକୁ ସଦୁପଯୋଗ କରାଯିବା ଦ୍ୱାରା ସଭ୍ୟତା ଓ ସଂସ୍କୃତି ଶୁଭଙ୍କର ମାର୍ଗରେ ପରିବର୍ତ୍ତନଶୀଳ ରୂପ ଧାରଣ କରିବ ।



# ବିବର୍ତ୍ତନ ଓ ଭାବବାଦ

*ଶ୍ରୀ ବିନୋଦ*

ବିଜ୍ଞାନ ଯେତେ ଅଗ୍ରସର ହେଉଛି ଜୀବଜଗତର ସବୁଠାରୁ ଶ୍ରେଷ୍ଠ ଜୀବ ଭାବେ ପରିଗଣିତ ମଣିଷର ଅଧୋପତନ ସେତେ ଅଧିକ ବେଗଗାମୀ ହେଉଛି । ବିଜ୍ଞାନର ବସ୍ତୁବାଦୀ ମୂଲ୍ୟବୋଧ ବିରୋଧରେ ମଣିଷ ଭାବବାଦୀ ଚିନ୍ତାଧାରାର ଏକ ପ୍ରତିରୋଧକ ସୃଷ୍ଟି କରୁଛି । ଦେବାଦେବୀ, ଭାଗ୍ୟବାଦ, ଅତୀନ୍ଦ୍ରିୟବାଦ ଉପରେ ମଣିଷ ଅଧିକ ନିର୍ଭରଶୀଳ ହେଉଛି । ଏହା ପରୋକ୍ଷ ଭାବେ ସମାଜ, ସାହିତ୍ୟ, ଅର୍ଥନୀତି ଉପରେ ପ୍ରଭାବ ପକାଇବା ସହ ଆଗତ ଭବିଷ୍ୟତର ଅନ୍ଧକାର ମଧ୍ୟରେ ମଣିଷ ନିଜର ସତ୍ତା ହରାଇବସୁଛି । ନିଜର ଐତିହାସିକ-ବିବର୍ତ୍ତାନିକ ପ୍ରକ୍ରିୟାକୁ ଏକ ଅଜଣା ଅସ୍ତିତ୍ୱହୀନ ଶକ୍ତି ନିକଟରେ ଆତ୍ମସମର୍ପଣ କରୁଛି । ଏହି ଧାରା ଆଜି ସର୍ବତ୍ର ବିରାଜମାନ କରୁଛି ।

ନିଜର ଅସ୍ତିତ୍ୱଜନିତ ବୈଜ୍ଞାନିକ ମତବାଦର ସତ୍ୟତାକୁ ଅନୁସନ୍ଧାନ କରିବା ପାଇଁ ସାଧାରଣତଃ ମଣିଷ ଚାହେଁନି । ଯେଉଁ ବୈଜ୍ଞାନିକ ସତ୍ୟତାର ଧାରା ଆଜି ସର୍ବବ୍ୟାପୀ ହୋଇଛି ତାହାକୁ ମଧ୍ୟ ମନୁଷ୍ୟ ଗ୍ରହଣ କରିବାକୁ ପ୍ରସ୍ତୁତ ହେଉନି । ଫଳ ଏହା ହେଉଛି ଯେ, ମାନସିକଗତ ପରିକଳ୍ପନାର ଅନ୍ଧଧାରା ମଧ୍ୟରେ ବୈଜ୍ଞାନିକ ମତବାଦ ବିରୋଧରେ ମଣିଷ ଏକ ଅଘୋଷିତ ଯୁଦ୍ଧ ତିଆରି କରୁଛି । ଯାଗଯଜ୍ଞ, ହୋମ, ପୂଜାପାଠ, ତନ୍ତ୍ରାଦି ଉପରେ ବିଶେଷ ଭରସା ରଖି ଆଗାମୀ ପିଢ଼ି ପାଇଁ ବୌଦ୍ଧିକ ଅନ୍ଧଧାରାର ଏକ ବୋଝ ତିଆରି କରୁଛି । ମଣିଷର ଏହି ଅନ୍ଧଧାରାକୁ ନେଇ ଏକ ବିଶାଳ ସାମ୍ରାଜ୍ୟ ପରିଚାଳିତ ହେଉଛି ଯାହା

କୋଟି କୋଟି ଲୋକଙ୍କୁ ଅନ୍ଧମାନସିକତା ଦିଗରେ ପରିଚାଳିତ କରୁଛି ଏବଂ ବୈଜ୍ଞାନିକ ସତ୍ୟତା ବିରୋଧରେ ମଣିଷର କୃଚ୍ଛ ସଂଗ୍ରାମ ପରିବ୍ୟାପ୍ତ ହେବାରେ ଲାଗିଛି ।

ବିବର୍ତ୍ତନ ଏକ ବିଜ୍ଞାନ । ଏହାକୁ କେବଳ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀରେ ହିଁ ସମୀକ୍ଷା କରାଯାଇପାରେ । ବିବର୍ତ୍ତନ ସମସ୍ତ ଭାବଗତ ମାନସିକତାକୁ ଖଣ୍ଡନ କରେ ଏବଂ ପ୍ରାକୃତିକ ଚୟନ ପ୍ରକ୍ରିୟାକୁ ଆଧାର କରି ଜୀବ ବିଜ୍ଞାନକୁ ସମାହିତ କରିଥାଏ । କୋଟି କୋଟି ବର୍ଷର ବିବର୍ତ୍ତାନିକ ଧାରାକୁ ଭାବବାଦୀମାନେ ସାଧାରଣତଃ ଗୋଟିଏ ଦୁଇଟି ପଦରେ ଶେଷ କରିଦେଇଥାନ୍ତି– ତାହା ହେଲା ଏ ସୃଷ୍ଟି ଭଗବାନଙ୍କର । ତାଙ୍କ ଇଚ୍ଛାନୁସାରେ ସବୁ ଘଟେ । ଏହା ଛଡ଼ା ସେମାନଙ୍କ ନିକଟରେ ବିବର୍ତ୍ତନକୁ ସମୀକ୍ଷା କରିବା ପାଇଁ ଆଉ କୌଣସି ବିଷୟବସ୍ତୁ ବିଶେଷତଃ ନଥାଏ । ମାତ୍ର ବିବର୍ତ୍ତନର ବୈଜ୍ଞାନିକ ସମୀକ୍ଷା ପାଇଁ କୋଟି କୋଟି ପୃଷ୍ଠାର ଅନୁଧ୍ୟାନ ଆବଶ୍ୟକ ହୋଇଥାଏ । ବୈଜ୍ଞାନିକ ବିଶ୍ଳେଷଣ କରିବାକୁ ପଡିଥାଏ । ବିଶ୍ୱର ୫୦ ହଜାର ପ୍ରକାରରୁ ଅଧିକ ପ୍ରାଣୀ ଓ ୪୫ ହଜାରରୁ ଅଧିକ ପ୍ରକାର ବୃକ୍ଷ ସମ୍ପଦ ଉପରେ ଗଭୀର ନିରୀକ୍ଷଣ ଆବଶ୍ୟକ ହୋଇଥାଏ । ପ୍ରାକୃତିକ ଚୟନ ପ୍ରକ୍ରିୟା ଏତେ ଜଟିଳ ଯେ, ମଣିଷ ପାଇଁ ତାହା ଏକ ଜଟିଳ ଜାଲ ସୃଷ୍ଟି କରିଥାଏ । ସରଳ ବିଶ୍ୱାସ ମଧ୍ୟରେ ଏହାର ସମୀକ୍ଷା କରାଯାଇ ପାରେନା । ଏଥିପାଇଁ ବୈଜ୍ଞାନିକ ଚେତନାର ଶୁଦ୍ଧି ଲୋଡ଼ା ହୋଇଥାଏ ।

ବିବର୍ତ୍ତନର ଅନ୍ୟ ଏକ ଅର୍ଥ ହେଉଛି ବିକାଶ । ପ୍ରତ୍ୟେକ ଜିନିଷ ସୃଷ୍ଟି ମୂଳରେ ବିବର୍ତ୍ତନର ଭୂମିକା ରହିଥାଏ । ସିଧାସଳଖ କୌଣସି ଗୋଟିଏ ବିକାଶ ହାସଲ ହୋଇପାରି ନଥାଏ । ଏଥିପାଇଁ ବାହ୍ୟ ଭୂମିକା ଯେତିକି ଦାୟୀ ପ୍ରାକୃତିକ ଚୟନ ପ୍ରକ୍ରିୟା ମଧ୍ୟ ସେତିକି ଦାୟୀ । ମଣିଷ ଆଜିର ଏହି ସ୍ତରକୁ ପହଞ୍ଚିବା ପାଇଁ ଲକ୍ଷଲକ୍ଷ ବର୍ଷ ଲାଗିଛି । ଏହା ବି କହି ହେବନି ଯେ, ଆଉ କିଛି ହଜାର ବର୍ଷ ପରେ ମଣିଷର କେଉଁ ଧରଣର ପରିବର୍ତ୍ତନ ହେବ । ୫୦୦ କୋଟିରୁ ଅଧିକ ବର୍ଷର ପୃଥିବୀ ସମ୍ପର୍କରେ ଆମେ ମାତ୍ର ୧ ପ୍ରତିଶତ ଜାଣୁ । ଏହାର ସୂକ୍ଷ୍ମାତି ସୂକ୍ଷ୍ମ ଚୟନ ପ୍ରକ୍ରିୟା ଏତେ ଜଟିଳ ଯେ, ସାଧାରଣ ମାନସିକତା ମଧ୍ୟରେ ଏହା ହୃଦ୍‌ବୋଧ କରିବା ଏକାନ୍ତ ଅସମ୍ଭବ ।

ମନୁଷ୍ୟ ନାମକ ଉକ୍ତ ଜୀବକୁ ଏହି ସ୍ତରକୁ ଆଣିବା ପାଇଁ ପ୍ରକୃତି ଯେତିକି ସହାୟ ହୋଇଛି ଅନ୍ୟ ଜୀବ ପାଇଁ ବି ସେତିକି ସହାୟ ହୋଇଛି । ମାତ୍ର ଦୁଃଖର କଥା ସାଧାରଣ ଜୀବ ତୁଳନାରେ ମଣିଷର ଏକମାତ୍ର ବୁଦ୍ଧି ଯୋଗୁ ମଣିଷ ଅନ୍ୟ ଜୀବମାନଙ୍କଠାରୁ ସମ୍ପୂର୍ଣ୍ଣ ଅଲଗା ହୋଇପାରିଛି । କୁକୁର ଯେଉଁ ସ୍ୱତନ୍ତ୍ରଗୁଣ ବିବର୍ତ୍ତାନିକ ପ୍ରକ୍ରିୟାରେ ହାସଲ କରିଛି ତାହା ହେଲା ଅଦ୍ଭୁତ ଘ୍ରାଣ ଶକ୍ତି । ବାଦୁଡ଼ି ଯେଉଁ ଗୁଣ ହାସଲ କରିଛି ତାହା ହେଲା ରାତିରେ ସୁପରସୋନିକ ଭାବେ ଆଗ ଜିନିଷ ସମ୍ପର୍କରେ ଜାଣିପାରିବାର କ୍ଷମତା । ଚିଲ ଯେଉଁ ଗୁଣ ହାସଲ କରିଛି ତାହା ହେଲା ଅତି ଉଚ୍ଚରୁ କ୍ଷୁଦ୍ର ଜିନିଷକୁ ଦେଖିପାରିବାର କ୍ଷମତା । ସାପର

ବିଶେଷତ୍ୱ ହେଲା ତା'ର ବିଷ । ବାୟା ଚଢ଼େଇ ଗୁଣଗତ ଅଧିକାରୀ ଭାବେ ହାସଲ କରିଛି ଜଟିଳ ବସା ତିଆରି କରିବାର କୌଶଳ । ଏପରି ପ୍ରତ୍ୟେକ ଜୀବର କିଛି ନା କିଛି ସ୍ୱାତନ୍ତ୍ର୍ୟ ରହିଛି । ମାତ୍ର ମଣିଷ ଯେଉଁ ଅଦ୍ଭୁତ ଗୁଣଟି ହାସଲ କରିଛି ତାହା ହେଲା ସୀମାହୀନ ବୁଦ୍ଧି ଓ ରୂପାନ୍ତରର କ୍ଷମତା । ଅନ୍ୟ କୌଣସି ଜୀବ ପ୍ରକୃତି ବିରୋଧରେ ଲଢ଼େଇ କରିବାର କ୍ଷମତା ହାସଲ କରିନାହାନ୍ତି, କେବଳ ମଣିଷକୁ ଛାଡି । ଅନ୍ୟ ସମସ୍ତ ଜୀବ ପ୍ରକୃତିର ଦାସ ହୋଇଥିବା ବେଳେ କେବଳ ମଣିଷ ହିଁ ପ୍ରକୃତିକୁ ନିଜର ଦାସ ବନାଇ ପାରିବାରେ ସକ୍ଷମ ହୋଇପାରିଛି । ଏଥିପାଇଁ ସେ ସମଗ୍ର ଜୀବଜଗତଠାରୁ ଉର୍ଦ୍ଧ୍ୱରେ । ବିବର୍ତ୍ତନର ଜନକ ସାଧାରଣତଃ ମହାନ ବିଜ୍ଞାନୀ ଚାର୍ଲସ ଡାରଉଇନଙ୍କୁ କୁହାଯାଏ । ୧୮୫୯ରେ ତାଙ୍କ ପ୍ରକାଶିତ ପୁସ୍ତକ "ଅରିଜିନ ଅଫ ସ୍ପେସିସ" ସମଗ୍ର ବିଶ୍ୱରେ ଚହଳ ପକାଇଥିଲା । ପୃଥିବୀର ଅର୍ଦ୍ଧାଧିକ ଅଞ୍ଚଳ ସମୁଦ୍ର ପଥରେ ପରିଭ୍ରମଣ କରି ଯେଉଁ ପୁସ୍ତକ ରଚନା କରିଥିଲେ ତାହା କୋଟି କୋଟି ବର୍ଷର ବିବର୍ତ୍ତାନିକ ପ୍ରକ୍ରିୟା ସମ୍ପର୍କରେ ମହାର୍ଘ ପଥପ୍ରଦର୍ଶନ କରିଥିଲା । ବୋଧ ହୁଏ ଏହି ପୁସ୍ତକର ପାଠକ ହିଁ ସମଗ୍ର ବିଶ୍ୱରେ ସର୍ବାଧିକ ବୋଲି କୁହାଯାଏ । ତେବେ ଡାରଉଇନ ଯେଉଁ ଥିଓରି ଉପସ୍ଥାପିତ କରି ବିବର୍ତ୍ତନର ଗତିଧାରାକୁ ସମୀକ୍ଷା କରିଥିଲେ, ତାହା ଅନ୍ୟ କୌଣସି ବ୍ୟକ୍ତି କରିପାରି ନାହାନ୍ତି । ଖ୍ରୀ.ପୂ ୬୦୦ରେ ଗ୍ରୀକ ଦାର୍ଶନିକ ଆନାକ୍ସିମାଣ୍ଡର ପ୍ରଥମେ ବିବର୍ତ୍ତନ ସମ୍ପର୍କରେ ମୁହଁ ଖୋଲିଥିଲେ ବୋଲି ଜଣାଯାଏ । ସେ ଦର୍ଶାଇଥିଲେ ଯେ, ମୀନରୁ ହିଁ ମଣିଷ ସୃଷ୍ଟି । କୋଟି କୋଟି ବର୍ଷର ବିବର୍ତ୍ତନ ପରେ ମାଛରୁ ମଣିଷ ସୃଷ୍ଟି ହୋଇଥିଲା ବୋଲି ସେ ଦର୍ଶାଇଥିବା ବେଳେ ଖ୍ରୀ.ପୂ ୫୦୦ରେ ଗ୍ରୀକ୍ ଦାର୍ଶନିକ ଜେନୋଫେନ୍ସ ଦର୍ଶାଇଥିଲେ ଯେ, ଜୀବଜଗତର ବିବର୍ତ୍ତାନିକ ଇତିହାସ ରହିଛି ଏବଂ ଜୀବାଶ୍ମରୁ ମିଳୁଥିବା ନମୁନା ଏହାର ପ୍ରମାଣ । ସେ ଯଦିଓ ବିବର୍ତ୍ତନର ଜଟିଳ ପ୍ରକ୍ରିୟା ସମ୍ପର୍କରେ ବିଶେଷ ଜ୍ଞାନ ହାସଲ କରିପାରି ନଥିଲେ ତଥାପି ଦୀର୍ଘ ୨୫୦୦ ବର୍ଷ ପୂର୍ବେ ତାଙ୍କ ଜ୍ଞାନ ତାଙ୍କୁ ଡାରଉଇନବାଦୀଙ୍କ ଆଲୋଚନାର ପରିସରକୁ ଆଣିବାରେ ସହାୟକ ହୋଇଛି । ସେହିପରି ଖ୍ରୀ.ପୂ. ୫୦୦ରେ ଏମ୍ପେଡ଼ୋକ୍ଲିସ ଦର୍ଶାଇଥିଲେ ଯେ, ପ୍ରାଣୀମାନଙ୍କ ପରି ଉଦ୍ଭିଦମାନେ ବି ସୃଷ୍ଟି ହୋଇଛନ୍ତି ଏବଂ ଉଦ୍ଭିଦମାନଙ୍କ ବିବର୍ତ୍ତନ ରହିଛି । ସେ ଦର୍ଶାଇଥିଲେ ଯେ, ପ୍ରଥମେ ମନୁଷ୍ୟ ନାମକ ଜୀବର ଅଙ୍ଗ ପ୍ରତ୍ୟଙ୍ଗ ସୁସଜ୍ଜିତ ନଥିଲା । ପରେ ପରେ ସରଭାଇଭାଲ ଅଫ୍ ଦି ଫିଟେଷ୍ଟ (ସବୁଠାରୁ ଯିଏ ଯୋଗ୍ୟ ସେ ହିଁ ବଞ୍ଚିବ) ନୀତିରେ ଚୟନ ପ୍ରକ୍ରିୟା ଜାରି ରହି ମଣିଷ ବା ଅନ୍ୟାନ୍ୟ ଜୀବଜନ୍ତୁ ଆଧୁନିକ ସ୍ତରକୁ ଆସିଥିଲେ । ବିବର୍ତ୍ତନର ବୈଜ୍ଞାନିକ ଇତିହାସ ପାଇଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଥିଲା ଖ୍ରୀ.ପୂ ୪ର୍ଥ ଶତାବ୍ଦୀ । ଗ୍ରୀକ୍ ଦାର୍ଶନିକ ଆରିଷ୍ଟୋଟେଲ ଜୀବ ବିଜ୍ଞାନ ସମ୍ପର୍କରେ ଅନେକ ସତ୍ୟ ଉପସ୍ଥାପନା କରିବା ସହ ସାମୁଦ୍ରିକ ଜୀବବିଜ୍ଞାନ, ଶାରୀରିକ ଗଠନ, କୀଟମାନଙ୍କ ମେଟାମର୍ଫୋସିସ, ଭ୍ରୂଣ ବିଜ୍ଞାନ ଆଦି ସମ୍ପର୍କରେ ବହୁ ମତ ଦେଇଥିଲେ ।

ବାସ୍ତବିକ ଆରିଷ୍ଟୋଟଲ ଥିଲେ ବିବର୍ତ୍ତନ ବିଜ୍ଞାନର ଅନ୍ୟତମ ଜନକ । ସେ ଜୀବଜଗତକୁ ତିନି ଭାଗରେ ବିଭକ୍ତ କରିଥିଲେ । ତାହା ହେଲା ଉଦ୍ଭିଦ, ଉଦ୍ଭିଦ-ପ୍ରାଣୀ (ଉଦାହରଣ ସ୍ପଞ୍ଜ, ସମୁଦ୍ର ଆନେମୋନ) ଓ ପ୍ରାଣୀ । ସେ ବିବର୍ତ୍ତନର ଧାରା ଅନୁସାହେର ଏକ 'ଫାମିଲି ଟ୍ରି' ଉପସ୍ଥାପନା କରିଥିଲେ । ତେବେ ଏଥିରେ ସେ ପ୍ରାଗୈତିହାସିକ ଜୀବଗୁଡ଼ିକର ଉପସ୍ଥାପନା କରି ନଥିବା ବେଳେ ବିବର୍ତ୍ତନର ବୈଜ୍ଞାନିକ ବିଶ୍ଳେଷଣ କରିବାକୁ ସକ୍ଷମ ହୋଇ ନଥିଲେ । ତେବେ ଆରିଷ୍ଟୋଟଲଙ୍କ କେତେକ ତତ୍ତ୍ୱକୁ ସଂଶୋଧିତ କରିଥିଲେ ଚେଭାଲିର ଡି ଲାମାର୍କ, ୧୮୦୯ରେ । ଶେଷରେ ଡାରଉଇନଙ୍କ ମତବାଦ ଥିଲା ସମ୍ପୂର୍ଣ୍ଣ ବୈଜ୍ଞାନିକ ଧାରା ଆଧାରିତ ଏବଂ ଏହା ସମସ୍ତ ଅସମାହିତ ପ୍ରଶ୍ନର ସମାଧାନ କରିପାରିଥିଲା । ଅରିଜିନ ଅଫ ସ୍ପେସିସ ଥିଲା ସମଗ୍ର ବିଶ୍ୱର ପ୍ରାଣୀବିଜ୍ଞାନୀ, ବିବର୍ତ୍ତନ ଅନୁଧାନକାରୀ, ଉଦ୍ଭିଦ ବିଜ୍ଞାନୀ ପାଇଁ ଏକ ପଥପ୍ରଦର୍ଶକ ପୁସ୍ତକ ।

ବିବର୍ତ୍ତନ ପ୍ରକ୍ରିୟାର ଅଣୁଜୀବଙ୍କଠାରୁ ଆରମ୍ଭ କରି ମଣିଷ ଯାଏ କୋଟି କୋଟି ବର୍ଷ ବିତାଇଛନ୍ତି । କେତେକ ପ୍ରାଣୀ ବା ଅଣୁଜୀବ ବା ବୃକ୍ଷ କୋଟି କୋଟି ବର୍ଷ ପରେ ବି ରୂପ ଓ ଗୁଣ କ୍ଷେତ୍ରରେ ଅପରିବର୍ତ୍ତିତ ରହିଥିବା ବେଳେ ମଣିଷ କ୍ଷେତ୍ରରେ ଏହାର ବ୍ୟତିକ୍ରମ ଦେଖାଯାଇଛି । ମଣିଷ ହେଉଛି ପ୍ରକୃତିର ବିବର୍ତ୍ତାନିକ ପ୍ରକ୍ରିୟାର ସବୁଠାରୁ ଉପାଦେୟ ଉତ୍ପାଦ ବା ପ୍ରଡକ୍ଟ । ମଣିଷ ପରି କୌଣସି ଜୀବର ଏତେ ଦ୍ରୁତ- ଗୁଣାତ୍ମକ ଓ ଶାରୀରିକ ବିକାଶ ସମ୍ଭବ ହୋଇପାରିନାହିଁ । ପୁଣି ମଣିଷ ଯେପରି ନିଜର ଆଗ ଦୁଇଗୋଡକୁ ପାଦକୁ କାଢ଼ି ଏହାକୁ ହାତ ଭାବେ ବ୍ୟବହାର କରିବାର ଶିଖିଲା ସେବେଠାରୁ ହିଁ ମଣିଷ ସାମ୍ପ୍ରତିକ ଜୀବଜଗତଠାରୁ ଅଲଗା ହେବାରେ ଲାଗିଲା । ବିବର୍ତ୍ତାନିକ ପ୍ରକ୍ରିୟାରେ ମଣିଷ ହେଉଛି ସବୁଠାରୁ ସୁନ୍ଦର ଉତ୍ପାଦ । ମଣିଷ ଅନ୍ୟ ଜୀବଜନ୍ତୁଙ୍କ ଠାରୁ ଅଲଗା ହେଲା କିପରି ? ଅନ୍ୟ ପ୍ରାଣୀମାନେ ଯେତେ ବୃହତ ହେଲେ ବି ସେମାନେ ପ୍ରଥମତଃ ପ୍ରକୃତିର ଦାସ ହୋଇଛନ୍ତି, ଦ୍ୱିତୀୟତଃ ସେମାନଙ୍କର ମନ, ବୁଦ୍ଧି, ଚିନ୍ତା ଆଦି କିଛି ନାହିଁ । ହୁଏତ କିଛି କୌଶଳ ସେମାନଙ୍କ ନିକଟରେ ରହିଛି ମାତ୍ର ତାହା ସେମାନଙ୍କୁ ସୀମିତ ସ୍ଥାନରେ ରଖିଛି । ଭୋକ ହେଲେ ଜୀବଜନ୍ତୁଙ୍କୁ ମାରି ବା ଘାସ ପତ୍ର ଖାଇ ବଞ୍ଚିବା ବ୍ୟତୀତ ସେମାନଙ୍କ ଧାରଣା ଆଉ କିଛି ନଥାଏ । ମାତ୍ର ମଣିଷ କ୍ଷେତ୍ରରେ ତାହାର ଠିକ୍ ଓଲଟା । କ'ଣ ଖାଇବାକୁ ହେବ, କ'ଣ ପିନ୍ଧିବାକୁ ହେବ, କ'ଣ ପିଇବାକୁ ହେବ ତାହା ମଣିଷର ମନ, ଜ୍ଞାନ,ବୁଦ୍ଧି, ଅଭିଜ୍ଞତା ଆଦି ଉପରେ ନିର୍ଭର କରେ । ଆଉ ଏକ ବିଶେଷତ୍ୱ ହେଲା ମନୁଷ୍ୟ ପ୍ରଶ୍ନ କରେ ଓ ଉତ୍ତର ତିଆରି କରେ । ସେ ନିଜ ସମ୍ପର୍କରେ ଜାଣିବାକୁ ଚାହେଁ, ପ୍ରକୃତିକୁ ସମୀକ୍ଷା କରିଥାଏ ଓ ବସ୍ତୁଗତ ଦୁନିଆ ସମ୍ପର୍କରେ ଜ୍ଞାନ ହାସଲ କରିବାକୁ ଚାହେଁ । ମନୁଷ୍ୟର ମନ ବିବର୍ତ୍ତନର ସବୁଠାରୁ ଶ୍ରେଷ୍ଠ ଫଳ ହୋଇଥିବା ବେଳେ ସମଗ୍ର ବିକାଶ ପ୍ରକ୍ରିୟାରେ ମନର ଏହି ଊର୍ଦ୍ଧ୍ୱମୁଖୀ ଗତି ହିଁ

ମନୁଷ୍ୟକୁ ଶ୍ରେଷ୍ଠ ଜୀବରେ ପରିଣତ କରିପାରିଛି । ଏଥିରେ କୌଣସି 'ଭଗବାନ', 'ବିଶ୍ୱନିୟନ୍ତା', 'ବ୍ରହ୍ମା' ଆଦିଙ୍କ କୌଣସି ଭୂମିକା ନାହିଁ । ଏହି ମନ ଯୋଗୁଁ ହିଁ ମଣିଷ ବାହ୍ୟିକ ପରିବେଶ, ପ୍ରାକୃତିକ ପ୍ରଭାବ ସମୂହ ନିକଟରେ ନିୟନ୍ତ୍ରିତ ହେବା ବଦଳରେ ସେଗୁଡ଼ିକୁ ନିୟନ୍ତ୍ରଣ କରିବାକୁ ଚାହେଁ ।

ମନ ଓ ମସ୍ତିଷ୍କର କାର୍ଯ୍ୟକାରିତା ମଧ୍ୟରେ ଗଭୀର ସମ୍ପର୍କ ଥିବା ଦୃଷ୍ଟିରୁ ବିବର୍ତ୍ତନ ପ୍ରକ୍ରିୟାରେ ମଣିଷର ବିକାଶ ସହ ମସ୍ତିଷ୍କର ବିକାଶ ଘଟିଆସିଛି । ପକ୍ଷୀର ସ୍ୱାତନ୍ତ୍ର୍ୟ ହେଲା ତାହାର ପକ୍ଷ, ହାତୀର ସ୍ୱାତନ୍ତ୍ର୍ୟ ହେଲା ତାହାର ଶୁଣ୍ଢ, ବୃହତ ଦନ୍ତ, ଘୋଡାର ସ୍ୱାତନ୍ତ୍ର୍ୟ ହେଲା ତାହାର ଗୋଡ଼, ସାପର ସ୍ୱାତନ୍ତ୍ର୍ୟ ହେଲା ତାହାର ଫଣା । ସେହିପରି ମଣିଷ ଯେଉଁ ଜିନିଷଟି ବିବର୍ତ୍ତନରୁ ସଫଳ ଭାବେ ହାସଲ କରିଛି ତାହା ହେଲା ମସ୍ତିଷ୍କ । ମାତ୍ର ବିଭିନ୍ନ ଭାବବାଦୀମାନଙ୍କ ଜରିଆରେ ମଣିଷ ନିକଟରେ ଆତ୍ମାକୁ ଯୋଡ଼ି ଦିଆଯାଇଛି । ବିଜ୍ଞାନ ଓ ଆତ୍ମା ପରସ୍ପରର ବିପରୀତ । ଯାହାକୁ ବସ୍ତୁଗତ ଚିହ୍ନଟ କରାଯାଇପାରେ, ଯାହାକୁ ବୈଜ୍ଞାନିକ ଯନ୍ତ୍ରପାତିରେ ମପାଯାଇପାରେ, ଯାହାକୁ ଅନୁଧ୍ୟାନ କରାଯାଇ ସ୍ଥିତି ସମ୍ପର୍କରେ ବୈଜ୍ଞାନିକ ପ୍ରମାଣସିଦ୍ଧ ମତ ଉପସ୍ଥାପନ କରାଯାଇପାରେ ତାହାର ସ୍ଥିତି ଅଛିବୋଲି କହିବାକୁ ହେବ । ମାତ୍ର ଆତ୍ମା ଉପରୋକ୍ତ ସମସ୍ତ ସର୍ତ୍ତାବଳୀକୁ ପୂରଣ କରିବାରେ ବିଫଳ ହୋଇଥିବା ହେତୁ ଆତ୍ମା ବୋଲି କିଛି ଗୋଟାଏ ଅଛି ବୋଲି କହିବା ବୋକାମୀ । ଏହାକୁ ନା ଦେଖିହୁଏ, ନା ଛୁଇଁ ହୁଏ, ନା ମନସ୍ତାତ୍ତ୍ୱିକ ସମୀକ୍ଷା କରାଯାଇପାରେ । ଏଥିପାଇଁ ଆତ୍ମାକୁ ବିଜ୍ଞାନ ନାମକ ଏକ ବିଷୟରୁ ବାଦ୍ ରଖାଯାଏ ।

ବାନରାକୃତି ପ୍ରାଣୀରୁ ମନୁଷ୍ୟ ସୃଷ୍ଟିର ଜଟିଳ ପ୍ରକ୍ରିୟା ମଧ୍ୟରେ ଅନେକ ଗଠନମୂଳକ କାରଣ ପ୍ରମୁଖ ଭୂମିକା ଗ୍ରହଣ କରିଥାଏ । ଆଗଗୋଡ଼ ଦୁଇଟିକୁ ପାଦ ଭାବେ ବ୍ୟବହାର ନକରି ହାତ ଭାବେ ବ୍ୟବହାର କରିବା ଯୋଗୁଁ ମନୁଷ୍ୟ ଗଛ ଛାଡ଼ି ତଳକୁ ଆସିଲା ଏବଂ ଜିନିଷ ତିଆରି କଲା । ସେହିପରି ସ୍ତନ୍ୟପାୟୀ ନରବାନାରାଦିଙ୍କ ଦୃଷ୍ଟିଶକ୍ତିର ଗଠନ ଶୈଳୀ ଥିଲା ଚମତ୍କାର । ଏହାର ଦୁଇଟିଯାକ ଆଖି ପାର୍ଶ୍ୱାଭିମୁଖୀ ବଦଳରେ ସମ୍ମୁଖାଭିମୁଖୀ (ଷ୍ଟେରିଓସ୍କୋପିକ) ଥିଲା । ଫଳରେ ତାହା ଏକ ସଠିକ ମାପ କରିବାରେ ମଣିଷକୁ ସକ୍ଷମ କରାଇଥିଲା ଏବଂ ବିଭିନ୍ନ ସାମଗ୍ରୀକୁ ନିଜ ଆବଶ୍ୟକତା ଅନୁସାରେ ତିଆରି କରିବାର ସୁଯୋଗ ପ୍ରଦାନ କରିଥିଲା ।

ବିବର୍ତ୍ତନ ବିଜ୍ଞାନ ପ୍ରମାଣ ଦିଏ ଯେ, ୩୬ ନିୟୁତ ବର୍ଷ ତଳେ ସୃଷ୍ଟି ହୋଇଥିଲେ ଓଲିଗୋପିଥାକସ ସାଭାଗି ଓ ପ୍ରପ୍ଲିଓପିଥାକସ ନାମକ ଦୁଇ ବର୍ଗର ପ୍ରାଣୀ । ଓଲିଗୋପିଥାକସ ସାଭାଗି କ୍ରମଶଃ କୌଣସି କାରଣରୁ ନିଶ୍ଚିହ୍ନ ହୋଇଯାଇଥିଲେ । ପ୍ରପ୍ଲିଓପିଥାକସଙ୍କଠାରୁ ସୃଷ୍ଟି ହୋଇଥିଲେ ଏଜିପ୍ଟୋପିଥାକସ ଜେକ୍ସିସ । ସେମାନଙ୍କଠାରୁ ସୃଷ୍ଟି ହୋଇଥିଲେ ଡ୍ରାୟୋପିଥାକସ,

ଡ୍ରାୟୋପିଥାକସ ଆଫ୍ରିକାନସ ଓ ଡ୍ରାୟୋପିଥାକସ ମେଜର । ଡ୍ରାୟୋପିଥାକସଙ୍କଠାରୁ ରାମାପିଥାକସ ପଞ୍ଜାବିକସ, ତାଙ୍କଠାରୁ ଅଷ୍ଟ୍ରାଲୋପିଥାକସ ଆଫ୍ରିକାନସ, ତାଙ୍କଠାରୁ ହୋମୋ ଇରେକ୍ଟସ ସୃଷ୍ଟି ହୋଇଥିଲେ । ଶେଷରେ ହୋମୋ ସାପିଏନସ ବା ଆଧୁନିକ ମଣିଷର ପୂର୍ବଜ ସୃଷ୍ଟି ହୋଇଥିଲେ । ତେଣେ ଅପରପକ୍ଷେ ଡ୍ରାୟୋପିଥାକସ ଆଫ୍ରିକାନସଙ୍କଠାରୁ ପାନ୍ ନାମକ ଜୀବ ଓ ଡ୍ରାୟୋପିଥାକସ ମେଜରଠାରୁ ଗରିଲା ସୃଷ୍ଟି ହୋଇଥିଲେ । ବିବର୍ତ୍ତନର ଜଟିଳ ପ୍ରକ୍ରିୟା ମଧ୍ୟରେ କେବଳ ହୋମୋସାପିଏନମାନେ ହିଁ ପରବର୍ତ୍ତୀ ସମୟରେ ଗଛଛାଡ଼ି ତଳକୁ ଆସିଥିଲେ ଏବଂ ଆଗପାଦକୁ ହାତ ଭାବେ ବ୍ୟବହାର କରିବା ସହ ଜିନିଷ ତିଆରି କରିବା ଶିଖିଥିଲେ । ପଟାସିୟମ-ଆର୍ଗନ ଡେଟିଂ ପ୍ରକ୍ରିୟାରେ ଉକ୍ତ ଜୀବମାନଙ୍କର ସମୟକାଳକୁ ଉଲ୍ଲେଖ କରାଯାଇଛି । ପ୍ରାୟ ୨୦ ଲକ୍ଷ ବର୍ଷ ତଳର ପିଥାକାନ୍ଥାପସ ଇରେକ୍ଟସ ଦେଖାଦେଇଥିଲେ । ଆଜକୁ ୭୦ ହଜାର ବର୍ଷ ତଳେ ୟୁରୋପରେ ନିଅନଡର୍ଟାଲ ମନୁଷ୍ୟ ବାସ କରୁଥିବା ବେଳେ ୩୦ ହଜାର ବର୍ଷ ପୂର୍ବେ ସେମାନଙ୍କ ଅସ୍ତିତ୍ୱ ବିଲୁପ୍ତି ହୋଇଥିଲା । ସେମାନଙ୍କ ବିଲୁପ୍ତ ପୂର୍ବରୁ ହୋମୋସାପିଏନ ସୃଷ୍ଟି ହୋଇଥିଲେ । ଆଜକୁ ୧୦ ହଜାର ବର୍ଷ ପୂର୍ବେ ହୋମୋ ସାପିଏ ନମାନେ ଅଷ୍ଟ୍ରେଲିଆ ଓ ଆମେରିକାରେ ପ୍ରଭୁତ୍ୱ ବିସ୍ତାର କରିଥିଲେ । ହୋମୋସାପିଏନମାନଙ୍କର ମସ୍ତିଷ୍କର ଆକାର ଥିଲା ବୃହତ ଏବଂ ଏହାର ଆକାର ଥିଲା ୧୩୫୦ ଘନସେମି । ଏହି ବୃହତ୍ ଆକାର ବିଶିଷ୍ଟ ମସ୍ତିଷ୍କ ଯୋଗୁ ମଣିଷର କପାଳ ଆଗକୁ ଉଠି ରହିଥିଲା । ସେହିପରି ସେମାନଙ୍କ ଆଉ ଏକ ବିଶିଷ୍ଟ ବିଶେଷତ୍ୱ ଥିଲା, ତାହା ହେଉଛି ଅସ୍ଥିଗତ ଭାବେ ଏକ ବିରାଟ ପରିବର୍ତ୍ତନ । ନିତମ୍ବ ନିକଟରେ ଥିବା ପେଲଭିକ ଗାର୍ଡଲ ଉପରକୁ ଉଠି ରହିଥିବା ବେଳେ ଇଲିୟମ ଅସ୍ଥି ଏପରି ବିସ୍ତାରିତ ହୋଇଛି ଯେ, ତାହା ଏକ ବେସିନ ଆକାର ସୃଷ୍ଟି କରିଛି । ଫଳରେ ମଣିଷ ଚାଲିବା ବେଳେ ସମ୍ପୂର୍ଣ୍ଣ ସିଧା ହୋଇ ଚାଲିବାରେ ଏହା ସାହାଯ୍ୟ କରିଥିଲା । କିନ୍ତୁ ଗରିଲା କ୍ଷେତ୍ରରେ ଏହା ଘଟି ନଥିଲା ।

ବହୁ ବୈଜ୍ଞାନିକ ଅନୁଶୀଳନ, କାର୍ବନ ଡେଟିଂ ଆଦି ପରେ ସମଗ୍ର ମାନବ ସମାଜର ଉଦ୍‌ଭାବନକୁ କ୍ରମାନ୍ୱୟରେ ପ୍ରକାଶ କରାଯାଇଛି । ଏଥିରେ କୌଣସି ଦ୍ୱିମତ ନାହିଁ ଯେ, ମଣିଷକୁ ସିଧାସଳଖ କୌଣସି ସୁପରନାଚୁରାଲ ଶକ୍ତି ବା ଭଗବାନ ବା ବ୍ରହ୍ମା-ବିଷ୍ଣୁ-ମହେଶ୍ୱର ନିମିଷେକେ ମଧ୍ୟରେ ଗଢ଼ି ନଥିଲେ । ଆଧୁନିକ ମଣିଷର ଇତିହାସ ମାତ୍ର ୨୦ ହଜାର ବର୍ଷ । କୋଟି କୋଟି ବର୍ଷର ବିବର୍ତ୍ତନକୁ ଏପରି ସାହଜିକ ଢ଼ଙ୍ଗରେ ଏଡାଇଦେବା ହେଉଛି ଭଣ୍ଡାମୀର ଏକ ନମୁନା । ପ୍ରାୟ ସମସ୍ତ ଧର୍ମ ବିବର୍ତ୍ତନକୁ ଖଣ୍ଡନ କରନ୍ତି ଏବଂ ଭଗବାନଙ୍କ ଦ୍ୱାରା ସୃଷ୍ଟି ସମ୍ଭବ ହୋଇଛି ବୋଲି ଦାବି କରନ୍ତି । କୁହାଯାଇପାରେ ଯେ, ଯେତେପ୍ରକାର ଅନ୍ଧକାର ଚିନ୍ତାଧାରା, ମନସ୍ତାତ୍ତ୍ୱିକ ଗୋଲାମୀ, ଭାବବାଦୀ ଚିନ୍ତାଧାରା, କୁସଂସ୍କାର ଆଦି ସମସ୍ତ ଧର୍ମଗ୍ରନ୍ଥରେ ହିଁ ସାଇତା ହୋଇଛି । ସମସ୍ତ ଧର୍ମଗ୍ରନ୍ଥ ସାମାଜିକ ବିପ୍ଳବ, ଅନ୍ୟାୟ ଓ ଭେଦଭାବ

ବିରୋଧରେ ଲଢ଼େଇ, ସାମାଜିକ ସମତା ଆଦିର ସତ୍ୟତାକୁ ଗତିପଥରୁ ବିଚ୍ୟୁତ କରିଥାଏ । ଏହା ନିର୍ଦ୍ଦିଷ୍ଟ ରକ୍ଷଣଶୀଳ ଗୋଷ୍ଠୀର ରକ୍ଷାକବଚ ହୋଇଥାଏ । ପ୍ରାଚୀନ ଧର୍ମଗ୍ରନ୍ଥ ଗୁଡିକରେ କୁସଂସ୍କାର ଆଚ୍ଛନ୍ନ ହୋଇଥାଏ ।

ଖ୍ରୀଷ୍ଟଧର୍ମ ଏହାର ସୃଷ୍ଟିକାଳରୁ ବିବର୍ତ୍ତନକୁ ଖଣ୍ଡନ କରିଆସୁଥିବା ସତ୍ତ୍ୱେ ୧୯୯୬ ଅକ୍ଟୋବର ୨୫ରେ ବିଭିନ୍ନ ଖବରକାଗଜରେ ପ୍ରକାଶ ପାଇଥିଲା ପୋପ ଜନ ପଲ୍ ଦ୍ୱିତୀୟ ବିବର୍ତ୍ତନର ତତ୍ତ୍ୱକୁ ସ୍ୱୀକାର କରିଛନ୍ତି । ରୋମର ପଣ୍ଟିଫିକାଲ ଆକାଡେମୀ ଅଫ୍ ସାଇନ୍ସର ଏକ କାର୍ଯ୍ୟକ୍ରମରେ ଭାଷଣ ଦେଇ ପୋପ କହିଥିଲେ ଯେ, ବିବର୍ତ୍ତନ ହିଁ ମଣିଷ ଓ ଜୀବଜଗତର ସୃଷ୍ଟିର କାରଣ ଏବଂ ଏହାର ମୂଳରେ ରହିଛି ପ୍ରାକୃତିକ ଚୟନ (ନାଚୁରାଲ ସିଲେକ୍ସନ) ଓ ଉତ୍ତରାଧିକାରୀଗତ ଉପଯୋଗିତା (ହେରିଡିଟାରୀ ଆଡେପ୍ଟେସନ) । ମଣିଷ ଆଦିମାନବରୁ ସୃଷ୍ଟି ହୋଇଛି ବୋଲି ସେ ଦର୍ଶାଇଥିଲେ । ବାସ୍ତବରେ ପୋପଙ୍କ ଏହି ବିବୃତ୍ତି ଶହଶହ ବର୍ଷ ତଳର ଅନ୍ଧବିଶ୍ୱାସ ଉପରେ କୁଠାରଘାତ କରିଥିଲା ଏବଂ ପ୍ରଥମ ଥର ପାଇଁ ଖ୍ରୀଷ୍ଟ ଧର୍ମର ସର୍ବୋଚ୍ଚଗୁରୁ ଏହା ସ୍ୱୀକାର କରିଥିଲେ । ଏହାକୁ ନେଇ ସେତେବେଳେ ଅନେକ ତୁମ୍ଭିତୋଫାନ ହୋଇଥିଲା । ସେ ଯାହେଉ ଶହଶହ ବର୍ଷ ପରେ ପୋପଙ୍କ ଏହି ବିବୃତ୍ତି ବିବର୍ତ୍ତନବାଦୀଙ୍କ ପାଇଁ ଏକ ଖୁସିର ଖବର ଥିଲା । ତେବେ ବିଭିନ୍ନ ମହଲରୁ ଚାପ ପରେ ସେ ନିଜର ମତ ପରିବର୍ତ୍ତନ କରିଥିଲେ । ପରବର୍ତ୍ତୀ କାଳରେ ସେ କହିଥିଲେ ଯେ, ମଣିଷର ଆତ୍ମା ହେଉଛି ଭଗବାନଙ୍କ ସୃଷ୍ଟି ଏବଂ ଏହା ବିବର୍ତ୍ତାନିକ ପ୍ରକ୍ରିୟାର ଅଂଶବିଶେଷ ନୁହେଁ । ଯଦିଓ ସେ ଚାପରେ ପଡି ଏହା ଦର୍ଶାଇଥିଲେ ତଥାପି ତାଙ୍କ ନିକଟରେ ଯେ ବିବର୍ତ୍ତନ ସଂକ୍ରାନ୍ତ ବୈଜ୍ଞାନିକ ମୂଲ୍ୟବୋଧ ରହିଛି ଏହା ପ୍ରମାଣସିଦ୍ଧ ହୋଇଛି ।

ଗ୍ରୀକ୍‌ମାନେ ଭାବନ୍ତି ଆଟଲାସ ପ୍ରଥମେ ଆକାଶକୁ ଟେକି ଧରି ରହିବା ପରେ ପୃଥିବୀକୁ ଟେକି ଧରିଥିଲେ । ହିନ୍ଦୁମାନେ ବିଶ୍ୱାସ କରନ୍ତି ଚାରୋଟି ବୃହତ ହସ୍ତୀ ପୃଥିବୀକୁ ଟେକି ଧରି ରହିଛନ୍ତି । ଅନେକ ଖ୍ରୀଷ୍ଟିଆନ ବିଶ୍ୱାସ କରନ୍ତି ପୃଥିବୀ ଗୋଲାକାର ନୁହେଁ, ସମତଳ । ଏପରି ଅନେକ । ଏହି ଭ୍ରାନ୍ତ ଧାରଣା ଆଜି ଯାଏ ବି ରହିଆସିଛି । ପ୍ରସିଦ୍ଧ ଇଟାଲୀୟ ବୈଜ୍ଞାନିକ ଗାଲିଲିଓ ଯେତେବେଳେ କହିଲେ ସୂର୍ଯ୍ୟ ଚାରିପଟେ ପୃଥିବୀ ଘୂରୁଛି ସେତେବେଳେ ବାଇବେଲ ଅଶୁଦ୍ଧ ହୋଇଯାଇଥିଲା ଯେପରି । ସମଗ୍ର ପୋପ ଅନୁଗତ ତାଙ୍କ ବିରୋଧରେ ଗଲେ । ଏପରିକି ଯଦି ସେ ତାଙ୍କ ମତ ପରିବର୍ତ୍ତନ କରିବେ ନାହିଁ ତାଙ୍କୁ ହତ୍ୟା କରାଯିବ ବୋଲି ଘୋଷଣା କରାଯାଇଥିଲା । ସେହିପରି ରୋମାନ ଚର୍ଚ୍ଚ କୋପରନିକସଙ୍କୁ ବିରୋଧ କରିଥିଲେ । ବିବର୍ତ୍ତନକୁ ଗ୍ରହଣ କରିବାକୁ ଅନେକ ପଛାନ୍ତି । ଏହାର କାରଣ ହେଉଛି ଶହଶହ ବର୍ଷ ଧରି ରହିଆସିଥିବା ଅନ୍ଧଚିନ୍ତାଧାରାର ଦାସତ୍ୱ ପ୍ରଭାବ । ମଣିଷ ସମାଜର ବୃହତ୍ ଭାଗ ସର୍ବଦା ବିଜ୍ଞାନର ସୁଫଳ ଉପଭୋଗ କରୁଥିଲେ ମଧ୍ୟ ସେମାନେ

ବିଜ୍ଞାନକୁ ଗ୍ରହଣ କରିବା ବଦଳରେ ଅନ୍ଧବିଶ୍ୱାସ ଓ ଆଧାରହୀନ ମତବାଦକୁ ହିଁ ଗ୍ରହଣ କରିବାକୁ ଭଲ ପାଆନ୍ତି ।

ପିଲାଟିଏ ଜନ୍ମ ହୋଇ ସେ କିଶୋରାବସ୍ଥାରେ ପହଞ୍ଚିବା ମାତ୍ରେ ତା'ର ମାନସିକ ସ୍ୱାଧୀନତାକୁ ନଷ୍ଟ କରିଦିଆଯାଏ । ପଥର ବା କାଠ ପ୍ରତିମାକୁ ପ୍ରଣାମ କରିବା, ଠାକୁର ସେବା କରିବା, ମନ୍ଦିରଯିବା, ଭାବବାଦୀ ଭକ୍ତି ସଂଗୀତରେ ଉଦ୍‌ବୁଦ୍ଧ କରିବା ପ୍ରକ୍ରିୟା ଆଦି ଦେଖାଯାଇଥାଏ । ଫଳରେ ପିଲାଟିର ସ୍ୱାଧୀନ ଚିନ୍ତାଧାରା ଧ୍ୱଂସ ହୋଇଯାଏ ଏବଂ ବାହ୍ୟ ସାମାଜିକ ପ୍ରଭାବ କ୍ରମେ ସେ ସେହି ଅଫିମଜାତ ଭାବବାଦୀ ମାନସିକତାର ବଶବର୍ତ୍ତୀ ହୋଇଯାଇଥାଏ । ଏପରିକି ଅତୀନ୍ଦ୍ରିୟଗତ ଭକ୍ତିସଂଗୀତ ପ୍ରଭାବରେ ସେ ସମ୍ପୂର୍ଣ୍ଣ ଭାବେ ନିଜର ଭବିଷ୍ୟତକୁ ତଥାକଥିତ ଭାଗ୍ୟ/ଭଗବାନଙ୍କ ଉପରେ ଛାଡି ଦେଇଥାଏ । ଲୋକମାନଙ୍କ ବୈଜ୍ଞାନିକ ଚିନ୍ତାଧାରାର ଅଭାବ ସୁଯୋଗକୁ ନେଇ ବାବା ମାତାଗଣ ସେମାନଙ୍କ ଶୋଷଣର ସାମ୍ରାଜ୍ୟ ବିସ୍ତାର କରିଥାନ୍ତି । କେଉଁ ବାବାମାନେ କୋଟି କୋଟି ଟଙ୍କାର ମାଲିକ ହୋଇଥାନ୍ତି ତ ଅନ୍ୟ କେଉଁମାନେ ପ୍ରତାରକ ବା ସେକ୍ସବାବାରେ ପରିଣତ ହୋଇଥାନ୍ତି । ବିବର୍ତ୍ତନର ସତ୍ୟତାକୁ ମଣିଷ ସମାଜ ଗ୍ରହଣ ନ କରିବା ଯାଏ ସମାଜରେ ଅନ୍ଧବିଶ୍ୱାସ, କୁସଂସ୍କାର, ଭାବବାଦୀ ଦାସତ୍ୱ, ଜାତି-ବର୍ଣ୍ଣ ବିବାଦ ଲାଗି ରହିବ ।



# ଧାର୍ମିକ ବିଶ୍ୱାସ ଓ ବିଜ୍ଞାନ

*ଡକ୍ଟର ଶିବପ୍ରସାଦ ଅଧିକାରୀ*

ଏହି ଲେଖାରେ ଧାର୍ମିକ ବିଶ୍ୱାସ ଓ ବୈଜ୍ଞାନିକ ଭାବନା ଉପରେ ଆଲୋଚନା କରିବାକୁ ଲକ୍ଷ୍ୟ ରଖାଯାଇଛି । ଯେଉଁ ଯୁଗରେ ବିଜ୍ଞାନର ବିକାଶ ହୋଇନଥିଲା, ସେହି ଯୁଗରେ ଧାର୍ମିକ ବିଶ୍ୱାସ ସମାଜରେ ପ୍ରଚଳିତ ଥିଲା । ବିଜ୍ଞାନର ଯୁଗ ଆସିବା ପରେ ଧର୍ମ ପ୍ରତି ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆସିଲା । ଏଠାରେ ଏହି ଦୁଇଟି ପ୍ରସଙ୍ଗରେ ଅବତାରଣା କରାଯାଇଛି ।

(୧)

ମୁଁ ଦକ୍ଷିଣ ଓଡିଶାର ଏକ ନିପଟ ପଲ୍ଲୀରେ ଜନ୍ମଗ୍ରହଣ କରି ସେହି ପରିବେଶରେ ବଢ଼ିଛି । ତେଣୁ ଗାଁରେ ପ୍ରଚଳିତ ବିଭିନ୍ନ ଧାର୍ମିକ ବିଶ୍ୱାସ ମୋ ମନରେ ବସା ବାନ୍ଧିଯାଇଥିଲା କହିଲେ ଚଳେ । କିନ୍ତୁ ପଶ୍ଚିମ ଜର୍ମାନୀର ଏକ ସ୍କୁଲର ଅନୁଭୂତି ମୋର ଏହି ଧର୍ମବିଶ୍ୱାସ ଉପରେ ପ୍ରଶ୍ନଚିହ୍ନ ଲଗାଇ ଦେଲା । ଆଜି ତ ପୂର୍ବଜର୍ମାନୀ ଓ ପଶ୍ଚିମ ଜର୍ମାନୀ ବୋଲି କୌଣସି ଦେଶ ନାହିଁ, ବର୍ଲିନ ପ୍ରାଚୀରର ପତନ ପରେ ବର୍ତ୍ତମାନ ପରିଚିତ କେବଳ ଗୋଟିଏ ଦେଶ-ଜର୍ମାନୀ । ୧୯୮୨ ମସିହାର କଥା । ମୁଁ ସେତେବେଳେ ଦକ୍ଷିଣ ଜର୍ମାନୀର ଆଲପସ ପର୍ବତମାଳାର ପାଦଦେଶରେ ଅବସ୍ଥିତ ଏକ ସୁନ୍ଦର ସହର ଫ୍ରାଇବର୍ଗରେ ଗବେଷଣାରତ ଥିଲାବେଳେ ଜଣେ ଜର୍ମାନ ବନ୍ଧୁ, ଯେ କି ବିଶ୍ୱପ୍ରସିଦ୍ଧ ବୈଜ୍ଞାନିକ ଆଲବର୍ଟ ଆଇନଷ୍ଟାଇନଙ୍କ ଅଣନାତିଙ୍କ ସହ ସହଯୋଗୀ ଗବେଷକ ଥିଲେ, ତାଙ୍କ ସ୍ତ୍ରୀ ଏକ ସ୍କୁଲରେ ନବମ ଓ ଦଶମ ଶ୍ରେଣୀ ପିଲାଙ୍କୁ ପଢ଼ାଉଥାନ୍ତି । ସେ ପଢ଼ାଉଥିବା ବିଷୟ ମଧ୍ୟରୁ ଏକ ବିଷୟବସ୍ତୁ ଥିଲା ପୂର୍ବ ଏସିଆ ମହାଦେଶ ତଥା ଭାରତର ସଭ୍ୟତା, ଧର୍ମ ଓ ଜାତିର ଶ୍ରେଣୀ ବିଭାଗ । ଶିକ୍ଷୟିତ୍ରୀ ଭାବରେ ଯେତେ ବହି ଏହି ବିଷୟରେ ସେ ପଢୁଥିଲେ ମଧ୍ୟ ସେ ଦୁଇଟି ବିଷୟ ବୁଝିପାରୁ ନଥାନ୍ତି । ଯଥା-ଭାରତରେ ପ୍ରଚଳିତ ଅଛୁଆଁ ଜାତି କ'ଣ ଓ ଜଣେ ମଣିଷର ଛାଇ ଅନ୍ୟଜଣଙ୍କ

ଉପରେ ପଡିଲେ ସେ ଗାଧୋଇଯାଆନ୍ତି କାହିଁକି ? ଏହି ଜାତି ଓ ବର୍ଣ୍ଣର ବର୍ଗୀକରଣ କ'ଣ ଏବଂ ଏହା କେଉଁ ସିଦ୍ଧାନ୍ତ ଉପରେ ଆଧାରିତ । ମୁଁ ମୋର ତତ୍କାଳୀନ ଧାର୍ମିକ ବିଶ୍ୱାସକୁ ଆଧାର କରି ଯେତେ ପାରିଲି ପ୍ରଚଳିତ ଭାରତୀୟ ପ୍ରଥା ତାଙ୍କୁ ବୁଝାଇଲି । କିନ୍ତୁ ସେ ସ୍କୁଲପିଲାଙ୍କୁ କୌଣସିମତେ ସଠିକ ଭାବରେ ଏହାକୁ ଉପସ୍ଥାପିତ କରିପାରିଲେ ନାହିଁ । ଶେଷରେ ଆମେ ଠିକ କଲୁ ଦିନେ ସେ ସ୍କୁଲକୁ ଯାଇ ପିଲାଙ୍କୁ ଏହି ବିଷୟରେ ତାଙ୍କର ପାଠ୍ୟକ୍ରମ ଅନୁସାରେ ଶିକ୍ଷା ପ୍ରଦାନ କରିବି ।

ସେହି ସ୍କୁଲରେ ମୋର ଅନୁଭୂତି ଏକ ଅଭୁଲା ସ୍ମୃତି । ନିର୍ଦ୍ଦିଷ୍ଟ ଦିନର ୧୦ଟା ବେଳେ ମୁଁ ଓ ମୋର ଶିକ୍ଷୟିତ୍ରୀ ବନ୍ଧୁ ତାଙ୍କ ସ୍କୁଲରେ ପହଞ୍ଚିଲୁ । ସ୍କୁଲର ଫାଟକରେ ରସାୟନ ବିଜ୍ଞାନ କ୍ଲାସର ପିଲାମାନେ କୁମ୍ଭିବାଣ ଭଳି କିଛି ତଆରି କରି ରଖିଥିଲେ ଓ ସେଥିରେ ଅଗ୍ନି ସଂଯୋଗ କରି ସ୍ୱାଗତ ଜଣାଇଲେ । ତାପରେ କ୍ଲାସ, ଗୋଟିଏ ସୁନ୍ଦର ଶ୍ରେଣୀଗୃହ । ପ୍ରାୟ ୪୦ ଜଣ ପିଲା ବସିଲା ପରି ଚୌକି ଓ ବେଞ୍ଚ ପଡିଛି । ଶ୍ରେଣୀଗୃହ ପୁରା ଭର୍ତ୍ତି । କିଛି ଶିକ୍ଷକ ବି ଥିଲେ । ମୋତେ ସିଧା ଯାଇ ଶିକ୍ଷକ ଭଳି ପଢ଼ାଇବା ଆରମ୍ଭ କରିବାକୁ କୁହାଗଲା । ମୋତେ ଜର୍ମାନ ଭାଷା ଜଣାଥାଏ । ତେଣୁ ମୁଁ ଜର୍ମାନ ଓ ଇଂରାଜୀ ଭାଷା ମିଶାଇ ମୋର ବକ୍ତବ୍ୟ ଆରମ୍ଭ କଲି । ଭାରତରେ ସଭ୍ୟତା କେମିତି ଆରମ୍ଭ ହେଲା, ମେସୋପଟାମିଆ, ଆର୍ଯ୍ୟସଭ୍ୟତା, ଦ୍ରାବିଡ଼ ସଭ୍ୟତା କଣ, ପୁରାଣ ବର୍ଣ୍ଣିତ ଜାତି ପ୍ରଥାର ଆରମ୍ଭ, ସମୟ ସହିତ ତାର ପରିବର୍ତ୍ତନ । ସମସାମୟିକ ବେଳର ଗାଁ ଓ ସହରରେ ଜାତିପ୍ରଥାର ପ୍ରାବଲ୍ୟ ଇତ୍ୟାଦି ବିଷୟରେ ମୋର ଯାହା ପୁସ୍ତକଗତ ଜ୍ଞାନ ଓ ବ୍ୟାବହାରିକ ଜ୍ଞାନ ଥିଲା ସେସବୁ ବୁଝାଇବାରେ ଲାଗିଲି । ମୋ ଆଗରେ ୩୦ ରୁ ୪୦ ଜଣ ୧୩ ରୁ ୧୫ ବର୍ଷ ବୟସର ପିଲା । ତଥାପି ମୋର ହୃଦବୋଧ ହେଉଥାଏ ସତେ ଯେପରି ସେମାନେ ବୁଝିପାରୁନଥାନ୍ତି ଓ ମନରେ ଅସୁମାରି ପ୍ରଶ୍ନର ଉତ୍ତର ଖୋଜୁଥାନ୍ତି । ପ୍ରାୟ ଏକ ଘଣ୍ଟା ଧରି ମୋର ଭାଷଣ ପରେ ପ୍ରଶ୍ନୋତ୍ତର ଆରମ୍ଭ ହେଲା ।

ହଠାତ୍ ଗୋଟିଏ ଚଉଦ ପନ୍ଦର ବର୍ଷର ଝିଅ ନିଜ ବ୍ୟାଗରୁ ଗୋଟିଏ ଫଟୋ ବାହାର କରି ମୋତେ ଦେଖାଇଲା । ତାହାହେଉଛି ଦେବୀ ଦୁର୍ଗାଙ୍କ ଫଟୋ । ସେ ପଚାରିଲା ଆମେ ଶୁଣିଛୁ ଏ ହେଉଛନ୍ତି ଆପଣଙ୍କର ଧର୍ମର ଜଣେ ଦେବୀ ( Goddess) ଙ୍କ ଫଟୋ । ମୁଁ କହିଲି ହଁ । ତା'ପର ପ୍ରଶ୍ନ ଜଣେ ମଣିଷ (Homo Sapiens) ଙ୍କ ୧୦ଟି ହାତ ଏବଂ ସେ ବାଘ ଉପରେ ବସି ଚଳପ୍ରଚଳ କରିବା ସମ୍ଭବ କି ? ଏବଂ ଗୋଟିଏ ମଣିଷ ଜାତୀୟ ପ୍ରାଣୀର କେବଳ ଦୁଇଟି ହାତ ରହିବା କଥା । ଯଦି ଏହାର ଦୁଇଟିରୁ ଅଧିକ ହାତ ଥାଏ ତାହା ମଣିଷ ପ୍ରଜାତି ନା ଆଉ କଅଣ ? ଏବଂ ଗୁଣ ସୂତ୍ରକୁ (Gene) କୁ ବଦଳାଇ ଏଭଳି ମଣିଷ ପ୍ରସ୍ତୁତ କରିହେବ କି ? ମୁଁ ଜଣେ ବୈଜ୍ଞାନିକ ବୋଲି ନିଜକୁ ଭାରି ଜାଣିବାର ମନେକରୁଥିଲି ।

କିନ୍ତୁ ଏହି ପ୍ରଶ୍ନ ମୋର ବୁଦ୍ଧି ହଜାଇ ଦେଲା । ପ୍ରକୃତିସ୍ଥ ହୋଇ ଉତ୍ତର ଦେଲି । ମଣିଷ ପଜାତି ବା ସ୍ପେସିଜ ର ଦୁଇରୁ ଅଧିକ ହାତ ରହିବା ସମ୍ଭବ ନୁହେଁ ଓ ଗୁଣସୂତ୍ରକୁ ବଦଳାଇ ଏମିତି ପ୍ରାଣୀ ପ୍ରସ୍ତୁତ କରିବା ବି ଅସମ୍ଭବ । ଜରୁରୀ ମଧ୍ୟ ନୁହେଁ । ନିଜ ଧର୍ମକୁ ଓ ନିଜ ଦେଶର ପ୍ରଚଳିତ ବଡିମାକୁ ବଞ୍ଚାଇବାକୁ ଯାଇ କହିଲି ଏହା ହେଉଛି ଏକ କାଳ୍ପନିକ ଦେବୀ, ଯୁଦ୍ଧକୁ ଗଲାବେଳେ ଏହି କଳ୍ପନା ପ୍ରସୂତ ଦେବୀ ଯାହାର ଦଶଟି ହାତ, ପ୍ରତି ହାତରେ ଗୋଟିଏ ଗୋଟିଏ ଶାଣିତ ଅସ୍ତ୍ର ଦେଖିଲେ ଯେ କୌଣସି ଯୋଦ୍ଧା ଭିତରେ ଶକ୍ତିର ପ୍ରକଟ ହୁଏ ଓ ସେ ଭଲ ଭାବରେ ଯୁଦ୍ଧ କରିପାରିବା ନିମିତ୍ତ ଏହି ଦେବୀଙ୍କୁ ଆରାଧନା କରନ୍ତି । ଧରନ୍ତୁ ଯିଶୁଖ୍ରୀଷ୍ଟ, ଯେକି କଣ୍ଟାବିଦ୍ଧ ଓ ରକ୍ତାକ୍ତ । ତାଙ୍କୁ ଆରାଧନା କରି ଯୁଦ୍ଧକୁ ଗଲେ ଯୋଦ୍ଧାମାନେ ବି ଶକ୍ତିକ୍ଷରଣ କରିବା ସମ୍ଭାବନା ଅଛି । ତେଣୁ ଏହି କାଳ୍ପନିକ ଦେବୀଙ୍କୁ ଆରାଧନା କରିବା ଯଥାର୍ଥ । ସମସ୍ତେ ବାହାବା କଲେ । ଆମ ଦେଶର ଏହା ଚିନ୍ତାଧାରା ଭାବି ଖୁସିହେଲେ । କିନ୍ତୁ ମୋ ମନରେ ଏହା ଅନେକ ପ୍ରଶ୍ନ ସୃଷ୍ଟି କରିଥିଲା । ସେଠାରେ ମୁଁ ଯାହା ଉତ୍ତର ଦେଲି ତାର ସତ୍ୟତା କିଛି ମଧ୍ୟ ମୁଁ ପାଇଲି ନାହିଁ ।

ସେହିଭଳି ଆଉ ଏକ ଛାତ୍ର ଗୋଟିଏ ଗଣେଶଙ୍କ ଫଟୋ ଧରି ଆସିଥାଏ । ଠିକ୍ ସେମିତି ପ୍ରଶ୍ନ । ଗୋଟିଏ ମଣିଷର ବେକ ହାତୀ ବେକ ତୁଳନାରେ ଅତି ସରୁ, ତେଣୁ ଏମିତି ଦୁଇ ଭିନ୍ନ ପରିଧିର ବେକକୁ କେମିତି ସଂଯୋଗ କରିହେବ ? ପୁନଶ୍ଚ ମଣିଷ ଓ ହାତୀ ଦୁଇଟି ଅଲଗା ଅଲଗା ଜୀବ । ଏମିତି ଯୋଡି ଗଛର କଲମି କଲାଭଳି କେମିତି ମଣିଷ ଓ ହାତୀ ମିଶା ନୂତନ ମଣିଷ ସୃଷ୍ଟିକରିହେବ ? ଏଥିପାଇଁ ମୋତେ କୌଣସି ଉତ୍ତର ମିଳିଲା ନାହିଁ । କିନ୍ତୁ ଏକ ଶିକ୍ଷା ମିଳିଲା । ମୋ ଦେଶର ଓ ଏକ ଉନ୍ନତ ଦେଶର ଛାତ୍ରଛାତ୍ରୀଙ୍କ ଶିକ୍ଷାବ୍ୟବସ୍ଥାରେ ପ୍ରଭେଦକୁ ହୃଦୟଙ୍ଗମ କରିପାରିଲି । ମୋର ଏତେ ଦିନର ଶିକ୍ଷକତାର ଜୀବନ ଭିତରେ ଆଜିଯାଏଁ ସ୍ନାତକୋତ୍ତର ସ୍ତରରେ ମଧ୍ୟ କୌଣସି ଛାତ୍ରଛାତ୍ରୀ ନିଜ ଜିଜ୍ଞାସାକୁ ଚରିତାର୍ଥ କରିବା ପାଇଁ ପ୍ରସ୍ତୁତ ହୋଇ ଆସି ଶ୍ରେଣୀଗୃହରେ ପ୍ରଶ୍ନ ପଚାରିନାହାନ୍ତି । ଯେମିତି ଜଣେ ଭାରତୀୟ କ୍ଲାସ ନେବେ ଶୁଣି ଭାରତୀୟ ଦେବାଦେବୀଙ୍କ ଫଟୋ ନେଇ ଆସି ମୋତେ ପ୍ରଶ୍ନ ପଚରାଯାଇଥିଲା ତାଛଡା ଜଣେ ଜୀବବିଜ୍ଞାନୀ ହୋଇମଧ୍ୟ ଏମିତି ପ୍ରଶ୍ନ ମୋ ମନରେ କେବେ ଉଦ୍ରେକ ହୋଇ ନଥିଲା ଓ ଯାହାକି ଛୋଟ ବେଳୁ ଶୁଣିଆସିଛି ମୂର୍ଖଭଳି ତାହାକୁ ହିଁ ଅନୁସରଣ କରୁଥିଲି । ଏହି ସ୍କୁଲର ପିଲାମାନେ ମୋତେ ଶିକ୍ଷାଦେଲେ ଜଣେ ବୈଜ୍ଞାନିକର ବିଜ୍ଞାନଗତ କାରଣ ନଥାଇ କୌଣସି କଥାକୁ ମୂର୍ଖଭଳି ମାନିବା ଭୁଲ ।

ଜର୍ମାନୀରୁ ଫେରି ଉତ୍କଳ ବିଶ୍ୱବିଦ୍ୟାଳୟରେ ଶିକ୍ଷକ ଭାବରେ ଯୋଗଦେଲାପରେ ଦେଖିଲି ଉଦ୍ଭିଦ ବିଜ୍ଞାନ ବିଭାଗର ଗୋଟିଏ ଶ୍ରେଣୀଗୃହରେ ଏକ ତିନିଧାଡି ପଙ୍କ୍ତି ଲେଖାଯାଇ ତାକୁ ବନ୍ଧାଇ କାନ୍ଥରେ ଟଙ୍ଗା ହୋଇଥିଲା । ଆଶ୍ଚର୍ଯ୍ୟ ହେଲି ଆମ ଦେଶରେ ସ୍ନାତକୋତ୍ତର

ଛାତ୍ର ଛାତ୍ରୀଙ୍କ ପାଇଁ ତାହା କି ଉତ୍କୃଷ୍ଟ ଲେଖା ସତେ; ଲେଖାକୁ ଏଠାରେ ଉଦ୍ଧୃତ କରୁଅଛି ।

Never believe anything on hearsay
Never follow blindly traditions handed over by
priests through generations.
Analyse, argue, and what you are convinced
as truth, follow it and live accordingly.

ଗୌତମ ବୁଦ୍ଧ

ଏହାର ଅର୍ଥ-କୌଣସି କଥା ଶୁଣିକରି ବିଶ୍ୱାସ କରନାହିଁ । ପୂଜକଗୋଷ୍ଠୀ ପିଢ଼ି ପରେ ପିଢ଼ି ଯେଉଁ ବିଶ୍ୱାସ ଦେଇଛନ୍ତି, ତାହାକୁ ପରଂପରା କହି ମୂର୍ଖଙ୍କ ପରି ଅନୁସରଣ କରନାହିଁ । ବିଶ୍ଳେଷଣ କର, ଯୁକ୍ତିସଂଗତ କାରଣ ବାହାରକର ଓ ଯାହା ସତ୍ୟ ବୋଲି ହୃଦବୋଧ ହେଉଛି, ତାହାକୁ ହିଁ ଗ୍ରହଣ କର ଓ ତାହାରି ଆଧାରରେ ଜୀବନ ନିର୍ବାହ କର । ଏହାର ଅର୍ଥ ଗୌତମ ବୁଦ୍ଧ ହେତୁବାଦୀ ଥିଲେ । ସେ କେବେ କୌଣସି ବିଶ୍ୱାସକୁ ମୂର୍ଖ ଭଳି ଅନୁସରଣ କରିବାକୁ କହିନଥିଲେ ଓ ପ୍ରତ୍ୟେକ ମଣିଷର ଚିନ୍ତା ଓ ବିଶ୍ୱାସକୁ ଉଚିତ ସମ୍ମାନ ଦେଉଥିଲେ । ତାଙ୍କର ଶିଷ୍ୟମାନେ ଯେଉଁମାନେ ବୌଦ୍ଧଧର୍ମ ପ୍ରଚାର କଲେ ସେମାନେ ବୋଧହୁଏ ଏହି ଉନ୍ନତ ଚିନ୍ତାଧାରାକୁ ଉପଯୁକ୍ତ ସ୍ଥାନଦେଇ ନାହାନ୍ତି । ଏହା ମୋର ହୃଦ୍‌ବୋଧ କାହିଁକି ହେଲା ତାହାର ଅନେକ ଅନୁଭୂତି ଅଛି । ମୁଁ ଜାପାନରେ ୧୯୯୧ ଠାରୁ ୧୯୯୨ ମସିହା ଯାଏଁ ଗବେଷଣା ରତଥିଲି । ସେତେବେଳେ ମୋର ପୁତ୍ର ସେଠାରେ ପ୍ରଥମ ଶ୍ରେଣୀରେ ପଢୁଥିଲା ଓ ତାର ଅନେକ ସହପାଠୀଙ୍କ ମଧ୍ୟରୁ ଜଣେ ପ୍ରମୁଖ ବୌଦ୍ଧଧର୍ମର ପୂଜକଙ୍କ ପୁତ୍ରଥିଲେ । ତେଣୁ ସେମାନଙ୍କର ଆମ ସହିତ ବନ୍ଧୁତା ଥିଲା ଓ ତାଙ୍କ ସହିତ ଜାପାନସ୍ଥିତ ଅନେକ ପ୍ରସିଦ୍ଧ ବୌଦ୍ଧ ମନ୍ଦିର ପରିଦର୍ଶନର ସୁଯୋଗ ମିଳିଲା । ସେଠାରେ ଅନେକ ମନ୍ଦିରରେ ବହୁହାତ ବିଶିଷ୍ଟ ବୁଦ୍ଧମୂର୍ତ୍ତି ଦେଖିବାକୁ ପାଇଲି । କିଓଟୋ ସ୍ଥିତ "Sanjen Sanjendo" ନାମକ ଏକ ମନ୍ଦିରରେ ଏକ ହଜାର ବୁଦ୍ଧମୂର୍ତ୍ତି ଅଛି ଓ ପ୍ରତ୍ୟେକ ମୂର୍ତ୍ତିର ୧୦ ଟିରୁ ୨୦ଟି ହାତ । ତାଙ୍କ ପାର୍ଶ୍ୱଦେବାଦେବୀ ମଧ୍ୟ ଅଛନ୍ତି ଏବଂ ଏମାନଙ୍କର ନାମ ହିନ୍ଦୁ ଦେବାଦେବୀଙ୍କ ନାମ ସହ ସମାନ । ଗୋଟାଏ ସୁନ୍ଦର କଥା- ଅନେକ ଜାପାନୀ ବୁଦ୍ଧ ଧର୍ମ କ'ଣ, ତ୍ରିପିଟକ କଣ, ବୁଦ୍ଧ କେଉଁ ଦେଶର ଲୋକ ଏବଂ ତାଙ୍କର ନାମ ଯେ ଗୌତମ ଇତ୍ୟାଦି ଜାଣିନାହାଁନ୍ତି । ବୁଦ୍ଧ ମନ୍ଦିରକୁ ଯାଆନ୍ତି ଛୁଆକୁ ବର୍ଷେ ହେଲା ପରେ ଆଶୀର୍ବାଦ ପାଇଁ ଓ ମଲାପରେ ଶ୍ମଶାନରେ ପୋତିବା ପାଇଁ । କହିବା ବାହୁଲ୍ୟ ସେମାନେ ହିନ୍ଦୁଙ୍କ ଭଳି ଶବଦାହ କରନ୍ତି କିନ୍ତୁ ବୁଦ୍ଧମନ୍ଦିର ପରିସର ଭିତରେ । ତେଣୁ ଜାପାନୀମାନେ ମଧ୍ୟ ଧର୍ମକୁ ଅହେତୁକଭାବେ ପାଳନ କରନ୍ତି । କିନ୍ତୁ ଆମଠାରୁ ଅଲଗା । ସେ ଦେଶ ସମୃଦ୍ଧିଶାଳୀ ହେଲାପରେ କର୍ମରେ ନିପୁଣତାକୁ ମାପକାଠି

କରି ସେମାନେ ବଢ଼ିଚାଲିଛନ୍ତି । ନୂତନ ମନ୍ଦିର ଗଢ଼ାହେଉନାହିଁ । ଥିବା ମନ୍ଦିର ତକ ଶୂନଶାନ୍ । କାଁ ଭାଁ ଜଣେ ଦୁଇଜଣ ବୃଦ୍ଧ ବା ବୃଦ୍ଧା ମନ୍ଦିରରେ ଦେଖାଯାଆନ୍ତି । ବାହାଘର ବେଳେ ବରକନ୍ୟା ବୁଦ୍ଧ ମନ୍ଦିରକୁ ବିଧିରକ୍ଷା ପାଇଁ କିମୋନୋ ପିନ୍ଧି ଗଲାପରେ, କୌଣସି ଏକ ଆଭିଜାତ୍ୟ ପୂର୍ଣ୍ଣ ହୋଟେଲରେ ଖ୍ରୀଷ୍ଟ ଧର୍ମରେ ବାହାହେଲା ପରି ପୋଷାକ ପିନ୍ଧି ଅତିଥିଙ୍କୁ ଅଭ୍ୟର୍ଥନା କରିଥାନ୍ତି । ଏହା କେବଳ ଆମେରିକାକୁ ଅନୁସରଣ କରି କରିଥାନ୍ତି । ଆଜିକାଲି କିମୋନୋର ଦାମ ଅତିବେଶୀ ହେତୁ, ଏଗୁଡ଼ିକୁ ନିର୍ଦ୍ଦିଷ୍ଟ ଦୋକାନରୁ ବାହାଘର ପାଇଁ ଭଡାରେ ଆଣିଥାନ୍ତି । ବିଧିରକ୍ଷା ପାଇଁ ମାତ୍ର । ତେଣୁ ଏଥିରୁ ଜଣାପଡେ ଯେଉଁମାନେ ବେଶୀ ପରିଶ୍ରମୀ, ସେମାନଙ୍କର ସମୟ ଦେବାଦେବୀ ଆରାଧନା କରି ଅଯଥା ଅପଚୟ ହୁଏନାହିଁ ଓ ସେମାନେ ସଚ୍ଚୋଟ ଓ ସତ୍ୟନିଷ୍ଠ ଭାବେ କାର୍ଯ୍ୟ ସମ୍ପାଦନ କରି ଦେଶର ଉନ୍ନତି କରିଥାନ୍ତି । ଆମେ କିନ୍ତୁ ବୌଦ୍ଧଧର୍ମର ସାରକୁ ଗ୍ରହଣ ନକରି, ବୁଦ୍ଧଙ୍କୁ ଦଶଅବତାର ମଧ୍ୟରୁ ଏକ ଅବତାରର ସ୍ଥାନ ଦେଇ ସେହି ଧର୍ମରେ ମଧ୍ୟ ଅହେତୁକବାଦୀ ଚିନ୍ତାଧାରା ପ୍ରବେଶ କରାଇବାରେ ସକ୍ଷମ ହୋଇଅଛୁ ।

ଏହି ସବୁ ଅନୁଭୂତିଯୋଗୁଁ ଜଣେ ଜୀବବିଜ୍ଞାନୀ ଭାବରେ ଅନେକ ପ୍ରଶ୍ନ ମୋ ମନରେ ସ୍ୱତଃପ୍ରବୃତ୍ତଭାବେ ସ୍ଥାନ ପାଇଛି ଓ ତାହାର ଉତ୍ତର ଖୋଜୁ ଖୋଜୁ ଆମର ଅନେକ ପ୍ରଚଳିତ ଅଦ୍ଭୁତ ବିଶ୍ୱାସରେ ଯେ, କୌଣସି ବିଜ୍ଞାନଗତ କାରଣ ନାହିଁ ତାହା ହୃଦବୋଧ ହେବାରେ ଲାଗିଛି । ଏଗୁଡ଼ିକ ହେଲା-

୧. ଆମର ଅନେକ ଦେବାଦେବୀଙ୍କ ଦେହର ରଂଗ ନୀଳ । କିଛି ପୋଥି ଓ ପୁରାଣରେ ଏହା ମେଘ ବର୍ଣ୍ଣ ବୋଲି ଲେଖାଯାଇଛି । କିନ୍ତୁ ମଣିଷର ରଂଗ କେବେବି ନୀଳ ନୁହେଁ । ଏହା କେବଳ କଳା ଓ ଗୋରା ଏବଂ କଳା-ଗୋରା ମିଶ୍ରିତ କେତେକ ରଂଗ । ସେ ୟୁରୋପୀୟ ବା ଆଫ୍ରିକା ବା ଜାପାନର କିମ୍ବା ଭାରତୀୟ ହୁଅନ୍ତୁ । ମଣିଷ ଦେହର ଗଠନ ତିନି ପ୍ରକାରର । ନିଗ୍ରୋ, କକେସିଆନ କିମ୍ବା ମଙ୍ଗୋଲୀୟ । କିନ୍ତୁ କୌଣସି ମଣିଷ ଜାତୀୟ ପ୍ରାଣୀ ନୀଳ ନୁହେଁ । ତେଣୁ ଆମର କିଛି ଦେବଦେବୀଙ୍କ ଦେହ ନୀଳ ରଂଗର ପରିକଳ୍ପନା କରିବା ଅଦ୍ଭୁତ ନୁହେଁ କି ? ଧରନ୍ତୁ ଜଣେ ଦେବତାଙ୍କ ରଂଗ ନୀଳ । ତାହେଲେ ତାଙ୍କର କୌଣସି ଛୁଆଙ୍କ ରଂଗ ନୀଳରଂଗ କେମତି ନୁହନ୍ତି ତାହା ଆଶ୍ଚର୍ଯ୍ୟ ଓ ବିଜ୍ଞାନ ସମ୍ମତ ନୁହେଁ ।

୨. ଜୀବ ବିଜ୍ଞାନର ଏକ ବିଶେଷ ବିଷୟ ହେଲା ଲୁପ୍ତ ବା ଲୁପ୍ତପ୍ରାୟ ପ୍ରାଣୀମାନଙ୍କ ବିଷୟ ବା Paleology । ଏଥିରେ ପୃଥିବୀର ଉତ୍ପତ୍ତି, ଉତ୍ପତ୍ତି ପର ଅବସ୍ଥା, ପ୍ରଥମ ଜୀବନ୍ତ ଜୀବର ଆବର୍ତ୍ତନ, ଜୀବର କ୍ରମବିକାଶ ସହ ମଣିଷ ଜାତୀୟ ପ୍ରାଣୀର ଓ ଶେଷରେ ମଣିଷ ସୃଷ୍ଟିର ତଥ୍ୟ ସମ୍ମିଳିତ । ଏଥିରୁ ଆମେ ଜାଣିଛୁ ପୃଥିବୀ ସୃଷ୍ଟିପରେ ଉତ୍ତପ୍ତ ପିଣ୍ଡ ଭଳି ଘୂର୍ଣ୍ଣାୟମାନ ହୋଇ ଆଜକୁ ପ୍ରାୟ ପାଞ୍ଚହଜାର ଲକ୍ଷବର୍ଷ ତଳେ ପ୍ରଥମ ଜୀବର ସୃଷ୍ଟି ହୋଇଥିଲା ଓ ମଣିଷ

ଜାତୀୟ ପ୍ରାଣୀ ତିନିଶହ ହଜାର ବର୍ଷତଳେ ଦେଖାଗଲା । ଏହା ତେଜସ୍କ୍ରୀୟ ଅଙ୍ଗାରର ଗୁଣକୁ ପରୀକ୍ଷାକରି ଜଣାଯାଇଛି ଏବଂ ଏହା ପରୀକ୍ଷାସ୍ୱୀକୃତ । ଆଜକୁ ପ୍ରାୟ ଚଉଦଶହ ଲକ୍ଷ ବର୍ଷତଳେ ଏକ ପ୍ରକାଣ୍ଡ ଭୂସ୍ଖଳନ ହେବା ହେତୁ ପୃଥିବୀର ତତ୍କାଳୀନ ଭୂଖଣ୍ଡ ଗୁଡିକ ଖଣ୍ଡ ଖଣ୍ଡ ହୋଇ ସମୁଦ୍ରରେ ଭାସିଭାସି ପୁନଃସଂଯୋଗ ହୋଇ ନୂତନ ସମୀକରଣ ହେଲା ଓ ଆଜିର ବିଭିନ୍ନ ମହାଦେଶ ଓ ମହାସମୁଦ୍ର ଗୁଡ଼ିକ ଏହା ପରର ସୃଷ୍ଟି । ଭାରତର ଗଣ୍ଡୱାନା ଭୂଖଣ୍ଡ ଭିତରେ ଓଡିଶା ଅବସ୍ଥିତ । ଆଫ୍ରିକାଠାରୁ ବାହାରିଆସି ୟୁରେସିଆ ଭୂଖଣ୍ଡରେ ଧକ୍କା ହେବାରୁ ତତ୍କାଳୀନ ଟିଥିସ ନାମକ ସମୁଦ୍ର ଗର୍ଭରୁ ଆଜିର ସର୍ବୋଚ୍ଚ ହିମାଳୟ ପର୍ବତମାଳାର ସୃଷ୍ଟି । ଏହି ଭୂସ୍ଖଳନ ଏତେ ତୀବ୍ର ଥିଲା ଯେ ସେ ସମୟର ଡାଇନୋସର ଜାତୀୟ ପ୍ରକାଣ୍ଡ ଜୀବ ଓ ଅତି ବିଶାଳ ନଗ୍ନବିଜୀ ଉଦ୍ଭିଦ ସମୂହ ସମୂଳେ ଧ୍ୱଂସ ପାଇଯାଇଥିଲା । ଏହା ବିଜ୍ଞାନଗତ ଅନୁଶୀଳନରୁ ପ୍ରମାଣିତ ଓ ସ୍ୱୀକୃତ । ଏହାପରେ ମଣିଷ (Homo Sapiens) ଉତ୍ପତ୍ତିପରେ କ୍ରମବିକାଶ ଘଟି ଆଜକୁ ପ୍ରାୟ ପଚାଶ ହଜାର ବର୍ଷ ତଳେ ମଣିଷ ଭଳି ଦେଖାଯାଉଥିବା ପୁରାତନ ମଣିଷ ପୃଥିବୀପୃଷ୍ଠରେ ବିଚରଣ କଲେ । ଏହି ମଣିଷର ପୂର୍ବପୁରୁଷ ଅଗ୍ନିର ବ୍ୟବହାର ଶିଖିଥିଲା ପ୍ରାୟ ଏକ ଶହ ତିରିଶ ହଜାର ବର୍ଷ ପୂର୍ବେ । ତାପରେ ପରେ ଲଜ୍ଜା ନିବାରଣ ପାଇଁ ବକଳ ଓ ପତ୍ର ପରିଧାନ କରିବା ଶିଖିଲା । ଆଧୁନିକ ମଣିଷ ଯାଯାବର ଜୀବନ ପରିତ୍ୟାଗ କରି ଗୋଷ୍ଠୀଗତ ଜୀବନ ଯାପନ ପ୍ରଣାଳୀ ଆଦରିନେଲା ଏବଂ ଗ୍ରାମ ଗଠିତ ହେଲା ଆଜକୁ ପ୍ରାୟ ଦଶହଜାର ବର୍ଷତଳେ ଏବଂ ଏହାପରେ ପରେ ଚାଷ କାର୍ଯ୍ୟର ଆରମ୍ଭ ହେଲା । ମଣିଷ ଏକ ସ୍ଥାନରେ ଗୋଷ୍ଠୀଗତ ଜୀବନ ଧାରଣ କରିବାପରେ ଚିନ୍ତାର କ୍ରମ ବିକାଶ ଘଟି ବିଭିନ୍ନ କାଳ୍ପନିକ ଧର୍ମ, ଦେବାଦେବୀ ଇତ୍ୟାଦି ସୃଷ୍ଟିକରି ସମାଜକୁ ଏକ ନିୟମ ଜରିଆରେ ଧରି ରଖିବାର ଚେଷ୍ଟାକଲା  ଏହି ସମୟରେ ଆଜକୁ ପ୍ରାୟ ସାତରୁ ଛଅ ହଜାର ବର୍ଷ ପୂର୍ବେ । ଏହି ତଥ୍ୟ ସବୁ ବିଭିନ୍ନ ସଭ୍ୟତାର୍ ଧ୍ୱଂସାବଶେଷରୁ ପ୍ରାପ୍ତ ପଦାର୍ଥର ଅନୁଶୀଳନରୁ ଜ୍ଞାତ ହୋଇଅଛି । ଏହି ଅତି ପୁରାତନ ସଭ୍ୟତା ଯେଉଁଠାର ପ୍ରଥମ ଆଧୁନିକ ମଣିଷର ଜୀବନ ଚର୍ଯ୍ୟା ଉପରେ ପ୍ରମାଣ ମିଳେ ସେଗୁଡ଼ିକ ହେଲା ସୁମାରିଆନ (୩୫୦୦ ଠାରୁ ୧୯୫୦ ଖ୍ରୀ.ପୂ.) ଇଜିପସିଆନ(୩୦୫୦ ଠାରୁ ୩୦ ଖ୍ରୀ.ପୂ.), ସିନ୍ଧୁ ସଭ୍ୟତା (୨୪୦୦ ଠାରୁ ୧୫୦୦ ଖ୍ରୀ.ପୂ.), ଚୀନ ସଭ୍ୟତା (୫୦୦୦ ଠାରୁ ୮୦୦ ଖ୍ରୀ.ପୂ.), ବେବିଲୋନିଆନ (୧୭୯୦ ଠାରୁ ୫୪୦ ଖ୍ରୀ.ପୂ.), ଓ ମାୟା ସଭ୍ୟତା (୧୨୦୦ ଠାରୁ ୫୦ଖ୍ରୀ.ପୂ.) ଇତ୍ୟାଦି । (ଖ୍ରୀ.ପୂ. ଯୀଶୁଖ୍ରୀଷ୍ଟଙ୍କ ପୂର୍ବରୁ) । ତେଣୁ ଏହି ଅଙ୍କରେ ୨୦୧୬ ଯୋଡ଼ିଦେଲେ ଯେତିକି ବର୍ଷ ଆସିବ ମଣିଷର ଗୋଷ୍ଠୀଗତ ଜୀବନଧାରଣ ଓ ଧର୍ମର ଆବିର୍ଭାବ ସେତିକି ବର୍ଷ । ବୈଜ୍ଞାନିକ ତଥା ଚିନ୍ତାଶୀଳ ବ୍ୟକ୍ତିମାନେ ଏସବୁ ଜାଣି ମଧ୍ୟ ଅନେକ ଅଦ୍ଭୁତ ଚିନ୍ତାଧାରାରେ ବିଶ୍ୱାସ କରନ୍ତି ।

୩. ଖ୍ରୀଷ୍ଟ ଧର୍ମମତରେ ଭଗବାନ ପୃଥିବୀର ସମସ୍ତ ସୃଷ୍ଟିକୁ ୭ ଦିନ ଭିତରେ ସମାପ୍ତ କରିଥିଲେ ଏବଂ ଷଷ୍ଠଦିନର ସଂଧ୍ୟା ସମୟରେ ଆଦମ ଓ ଇଭ ନାମକ ଦୁଇଟି ମଣିଷ ସୃଷ୍ଟିକଲେ । ଏହି ଦୁଇ ଲଂଗଳା ଜୀବଙ୍କୁ କୌଣସି ଏକ କାଳ୍ପନିକ ଫଳ ଖାଇବା ବାରଣ ଥିଲା । ସେମାନେ ଭଗବାନଙ୍କ ନିର୍ଦ୍ଦେଶ ନମାନି ନିଷେଧ ବୃକ୍ଷର ଫଳ ଖାଇବା ଫଳରେ ଅନ୍ୟ ମଣିଷ ଓ ସେମାନଙ୍କ ମଧ୍ୟରେ ଲୋଭ, ଭୟ, ମୈଥୁନ ଇତ୍ୟାଦି ସୃଷ୍ଟି ହେଲା । ଏମିତି ଅନେକ ଦେବ ଓ ଦେବୀଙ୍କର ସୃଷ୍ଟି ହିନ୍ଦୁଧର୍ମରେ ମଧ୍ୟ ବର୍ଣ୍ଣିତ । କିନ୍ତୁ ବିଜ୍ଞାନ ତଥ୍ୟରୁ ଆମେ ଆଜି ଏହି ସିଦ୍ଧାନ୍ତରେ ଉପନୀତ ଯେ କୌଣସି ଜୀବ ପ୍ରଥମରୁ ଥିବା ଅନ୍ୟକୌଣସି ଜୀବଠାରୁ ହିଁ ସମ୍ଭବ ହୋଇପାରେ । ଅତି କ୍ଷୁଦ୍ରାତିକ୍ଷୁଦ୍ର ବ୍ୟାକ୍ଟେରିଆ ବା କୀଟପତଙ୍ଗ ମଧ୍ୟ କୌଣସି ଜୀବଠାରୁ ହିଁ ସୃଷ୍ଟି ହୋଇପାରେ । ମ୍ୟାଜିକ୍ ଦ୍ୱାରା ବା ହଠାତ୍ କୌଣସି ଏକ ଜୀବର ସୃଷ୍ଟି ବିଜ୍ଞାନ ସମ୍ମତ ନୁହେଁ ।

୪. ଆମେ ଭାରତୀୟମାନେ ପିଲାବେଲୁ ଶାସ୍ତ୍ରରେ ପଢୁ, ଶୁଣୁ ଓ ବିଶ୍ୱାସ ମଧ୍ୟ କରୁ ଯେ ସୃଷ୍ଟିର କାଳ ଏକ ହଜାର ଚତୁର୍ଯ୍ୟୁଗୀ ଅଟେ ଏବଂ ଗୋଟିଏ ଯୁଗ ତେୟାଳିଶ ଲକ୍ଷ କୋଡିଏ ହଜାର ବର୍ଷ ଅଟେ । ତା ଅର୍ଥ ସୃଷ୍ଟିକାଳ ଚାରିଶହ ତେତିଶକୋଟି ବର୍ଷ । ଏବଂ ପ୍ରତ୍ୟେକ ଚତୁର୍ଯ୍ୟୁଗୀ ଭିତରେ ଚାରିଗୋଟି ଯୁଗ କ୍ରମାଗତ ଭାବେ ଭୋଗ ହୋଇଚାଲିଛି । ଏଭିତରୁ ସତ୍ୟଯୁଗର ଅବଧି ସତରଲକ୍ଷ ପଚିଶ ହଜାର ବର୍ଷ, ତ୍ରେତୟା ବାରଲକ୍ଷ ଛୟାନବେ ହଜାରବର୍ଷ, ଦ୍ୱାପର ଆଠ ଲକ୍ଷ ପଞ୍ଚଷଠୀ ହଜାର ବର୍ଷ ଓ କଳି ଚାରିଲକ୍ଷ ବତିଶ ହଜାର ବର୍ଷ । ଏହି ଅଙ୍କର ହିସାବକୁ ଦେଖିଲେ ଏହାର ବିଜ୍ଞାନଗତ ଯୁକ୍ତିଯୁକ୍ତତା ଉପରେ ଅନାୟାସରେ ପ୍ରଶ୍ନଆସେ । ଏହି ହିସାବ କରାଗଲା କିପରି ? ମଣିଷ ଯଦି କେବଳ ପଚାଶ ହଜାର ବର୍ଷତଳେ ପୃଥିବୀରେ ଦେଖାଗଲା ଓ କେବଳ ସାତରୁ ଛଅ ହଜାର ବର୍ଷତଳେ ଗୋଷ୍ଠୀଗତ ଜୀବନ ଧାରଣ ଆରମ୍ଭକଲା ଏବଂ ସତ୍ୟ, ତ୍ରେତୟା ଓ ଦ୍ୱାପର ଯୁଗରେ ପୁରାଣ ବର୍ଣ୍ଣିତ ଏତେବର୍ଷ ତଳେ ମଣିଷ ଆସିଲା କୁଆଡୁ ? ଇତ୍ୟାଦି ।

ଏହି ସଂଖ୍ୟାଗୁଡିକ ସହିତ ଆମର ପ୍ରଚଳିତ ପୁରାଣ ରାମାୟଣ, ମହାଭାରତ ତଥା ଇତିହାସ ତଥ୍ୟ ସମ୍ବଳିତ ବୁଦ୍ଧ, ମହାବୀର, ଯୀଶୁଖ୍ରୀଷ୍ଟ ଇତ୍ୟାଦିଙ୍କ ଜନ୍ମ ଓ ସେମାନଙ୍କ ପ୍ରଚଳିତ ଧର୍ମର ବିଷୟକୁ ବିଶ୍ଳେଷଣ କଲେ ଏକ କିମ୍ଭୁତ କିମାକାର ତଥ୍ୟ ମିଳେ । ଯଥା ରାମାୟଣ ଯଦି ତ୍ରେତୟା ଯୁଗର ବିଷୟବସ୍ତୁ ଓ ମହାଭାରତ ଦ୍ୱାପର ଯୁଗର ଏବଂ ଏହି ଦୁଇ ଯୁଗର ସମୟର ବ୍ୟବଧାନ ଅତିକମ୍‌ରେ ପ୍ରାୟ ପାଞ୍ଚ ଲକ୍ଷ ବର୍ଷ ହେବ । ଏହା ସମ୍ଭବ କି ? ରାମାୟଣ ଓ ମହାଭାରତରେ ବର୍ଣ୍ଣିତ ବିଷୟବସ୍ତୁ ଓ ଚରିତ୍ରମାନଙ୍କର ବାସସ୍ଥାନ ଓ କର୍ମସ୍ଥାନ ଇତ୍ୟାଦି ପର୍ଯ୍ୟାଲୋଚନା କଲେ ଭାରତରେ ଅବସ୍ଥିତ ଅନେକ ନଦନଦୀ, ଗ୍ରାମ, ସହର ଇତ୍ୟାଦିର ସଠିକ ଭାବେ ମେଳ ଖାଇଯାଏ । ପ୍ରତ୍ନତାତ୍ତ୍ୱିକ ବିଶ୍ଳେଷଣରୁ ଦିଲ୍ଲୀ ସ୍ଥିତ ହସ୍ତିନା,

ଦ୍ୱାରକା ସ୍ଥିତ ଦ୍ୱାରକାର ଟାପୁର ସନ୍ଧାନ ମିଳୁଛି । ପୌରାଣିକ ଓ ଐତିହାସିକ ନଗରୀ ଅଯୋଧ୍ୟା, ବାରଣାସୀ, ଉଜ୍ଜୟିନୀ, ଆଲ୍ଲାହାବାଦ, ଗାନ୍ଧାର, କରୁକ୍ଷେତ୍ର ଇତ୍ୟାଦି ଆଜିବି ଜୀବନ୍ତ । କିନ୍ତୁ ଭାରତ ସମେତ ଯେତେ ସଭ୍ୟତାର ଅବଧି ଆଜି ସେହି ପୁରାତନ ଧ୍ୱଂସ ସ୍ତୁପରୁ ପ୍ରାପ୍ତ ବସ୍ତୁର ଅନୁଶୀଳନରୁ ଜଣାଯାଇଛି ଏସବୁ ସଭ୍ୟତା କେବଳ ଚାରିହଜାରରୁ ପାଞ୍ଚହଜାର ବର୍ଷଭିତରେ ସୀମିତ । ତେଣୁ ଏହି ପାଞ୍ଚହଜାର ବର୍ଷ ଭିତରେ ହିଁ ରାମ, ରାବଣ, ଭୀଷ୍ମ, ଦୁର୍ଯ୍ୟୋଧନ, କୃଷ୍ଣ, ଅର୍ଜ୍ଜୁନ ଇତ୍ୟାଦି ବ୍ୟକ୍ତିମାନେ ଜନ୍ମଲାଭ କରିଛନ୍ତି ଓ ଇହଲୀଳା ସମ୍ବରଣ କରିଛନ୍ତି । ସେମାନେ ନିଶ୍ଚିତ ଭାବେ ବିଶିଷ୍ଟ ବ୍ୟକ୍ତି ଥିଲେ ଓ ତତ୍କାଳୀନ ସମାଜରେ ଏକ ଉଚ୍ଚସ୍ତରୀୟ ଓ ପ୍ରତିପତ୍ତିଶାଳୀ ବ୍ୟକ୍ତିଥିଲେ । କିନ୍ତୁ ସେମାନେ ଯେ ଭଗବାନଙ୍କ ଅବତାର, ଅଲୌକିକ କାର୍ଯ୍ୟ କରିବାରେ ସକ୍ଷମ ଥିଲେ, କେତେକ ସେମାନଙ୍କ ଭିତରୁ କୌଣସି ନାରୀର ଗର୍ଭରୁ ଜନ୍ମଲାଭ ନକରି ସ୍ୱତଃ ପ୍ରବୃତ୍ତ ଭାବେ ଜନ୍ମହେଉଥିଲେ କିମ୍ବା କାହାର ଆଶୀର୍ବାଦରୁ ସୃଷ୍ଟି ହେଉଥିଲେ, ଏହା ସମ୍ଭବ ନୁହେଁ ଓ ବିଜ୍ଞାନରେ ଏହାର କୌଣସି ଉତ୍ତର ନାହିଁ । ତାଛଡା ଏହିସବୁ ସମସାମୟିକ ସମୟର ପ୍ରତିଷ୍ଠିତ ବ୍ୟକ୍ତିମାନେ ଖ୍ରୀଷ୍ଟପୂର୍ବ ୫୦୦୦ ଠାରୁ ଖ୍ରୀଷ୍ଟପୂର୍ବ ୫୦୦ ବର୍ଷ ମଧ୍ୟରେ ହୁଏତ ପୃଥିବୀ ପୃଷ୍ଠରେ ଚଳପ୍ରଚଳ କରୁଥିଲେ । କାରଣ ଖ୍ରୀଷ୍ଟପୂର୍ବ ୬୦୦ ପରେ ଜନ୍ମଲାଭ କରିଥିବା ଗୌତମବୁଦ୍ଧ, ମହାବୀର ଜୈନ ଓ ଯୀଶୁଙ୍କ ବିଷୟରେ ଇତିହାସ ରଚିତ ଏବଂ ସେସବୁର ପ୍ରମାଣ ଅଛି । ତେଣୁ ତ୍ରେତୟା ଓ ଦ୍ୱାପର ଯୁଗକୁ ଯଦି ରାମାୟଣ ଓ ମହାଭରତ ବିଷୟର ସମୟ ବୋଲି ଯଥାକ୍ରମରେ ଧରାଯାଏ ତେବେ ଏହି ଦୁଇ ଭିତରେ ପାଞ୍ଚଲକ୍ଷ ବର୍ଷର ବ୍ୟବଧାନ ଆସିଲା କିପରି ?

ଏତଦ୍‌ବ୍ୟତୀତ ରାମାୟଣ ଓ ମହାଭାରତକୁ ସେଥିରେ ବର୍ଣ୍ଣିତ ସ୍ଥାନର ନାମ ଓ ସାମାଜିକ ଚଳଣିକୁ ବିଶ୍ଳେଷଣ କଲେ ଏକ ବିଚିତ୍ର ଚିତ୍ର ଆସେ, ମଣିଷର ସଭ୍ୟତାର କ୍ରମ ବିକାଶକୁ ବିଶ୍ଳେଷଣ କଲେ ଜଣାଯାଏ ପ୍ରଥମେ ସେ ଯାଯାବର ଜୀବନ ଯାପନ କରୁଥିଲା, ପରିବାର ନଥିଲା, ଯେ କୌଣସି ପୁରୁଷର ଯେକୌଣସି ସ୍ତ୍ରୀ ସହ ଯୌନ ସଂପର୍କ ଥିଲା । କିନ୍ତୁ ପରେ ଯାଯାବର ଜୀବନରେ ନିରାପତ୍ତା ନଥିବାରୁ ପ୍ରଥମେ ସ୍ତ୍ରୀ ମଣିଷଟି ସ୍ଥାୟୀଭାବେ ରହିବାକୁ ଚାହିଁଲା ଓ ତା ସହ ଅନେକ ପୁରୁଷ ରହିଲେ । ଏହା ହେଲା ବହୁପତିତ୍ୱ ପ୍ରଥା (Polyandry) ଯାହାକି ପୁରାତନ ମଣିଷର ନାରୀ-ପୁରୁଷ ସଂପର୍କ । ପରେ ପରେ ବଳଶାଳୀ ପୁରୁଷ ଉପଭୋଗ ପାଇଁ ବହୁତ ନାରୀଙ୍କୁ ନିଜପାଖେ ରଖି ନିଜର ପୁରୁଷ ପଣିଆ ଜାହିର କଲା । ଏହାକୁ ବହୁପତ୍ନୀତ୍ୱ ପ୍ରଥା Polygamy କୁହାଯାଏ । ଅନେକ ରାଜା ମହାରାଜାମାନେ ଆଜିଯାଏଁ ଏହି ବହୁପତ୍ନୀତ୍ୱ ପ୍ରଥା Ploygamy କୁ ଆଦରିଥିଲେ । କିନ୍ତୁ ସମାଜରେ ଆଦର୍ଶଗତଭାବେ ସାମାଜିକ ଭାରସାମ୍ୟ ରକ୍ଷା ପାଇଁ Monogamy ବା ଏକ ପୁରୁଷ ସହ ଏକ ସ୍ତ୍ରୀର ବିବାହ ବନ୍ଧନର ପରମ୍ପରା ସୃଷ୍ଟିହେଲା । ମହାଭାରତରେ ମୁଖ୍ୟ ସ୍ତ୍ରୀ ଭୂମିକାରେ ଥିବା ଦ୍ରୌପଦୀ

ଜଣେ ବହୁପତିଥିବା ମହିଳା ଅଟନ୍ତି । ବହୁପତିତ୍ୱ ବ୍ୟବସ୍ଥା ଏକ ପତ୍ନୀ-ପତି ବ୍ୟବସ୍ଥା ଅପେକ୍ଷା ପୁରାତନ ହେତୁ ମହାଭାରତର ଚରିତ୍ର ରାମାୟଣର ଚରିତ୍ରଙ୍କ ଅପେକ୍ଷା ପୁରାତନ ନୁହେଁ କି ? ରାମାୟଣରେ ବହୁପତ୍ନୀର ବର୍ଣ୍ଣନା ଥିଲେ ମଧ୍ୟ ବହୁପତିର ବର୍ଣ୍ଣନା ନାହିଁ । ଏହା ସପକ୍ଷରେ ଅନ୍ୟ ଏକ ଯୁକ୍ତିର ଅବତାରଣା ମଧ୍ୟ କରାଯାଇପାରେ । ଯଥା-ମହାଭାରତରେ ଅନେକ ରାଜ୍ୟର ବର୍ଣ୍ଣନା ଅଛି । ଏହି ସବୁରାଜ୍ୟ ଆଫଗାନିସ୍ଥାନର ଗାନ୍ଧାରଠାରୁ ଆରମ୍ଭ କରି ପଶ୍ଚିମରେ ଗୁଜରାଟ ସ୍ଥିତ ଦ୍ୱାରକା, ଉତ୍ତରପୂର୍ବର ମଣିପୁର, ପୂର୍ବର ବଙ୍ଗ ଓ ମଧ୍ୟଦେଶ ବା ଓଡ଼ିଶା ଓ ଦକ୍ଷିଣରେ ମଧ୍ୟପ୍ରଦେଶ ସ୍ଥିତ ବିନ୍ଧ୍ୟ ପର୍ବତ ମାଳା ପର୍ଯ୍ୟନ୍ତ ବିସ୍ତୃତ । କୃଷ୍ଣା, କାବେରୀ ଓ ଶ୍ରୀଲଙ୍କାର ଲେଶମାତ୍ର ଆଭାସ ଏହି ଗ୍ରନ୍ଥରେ ନାହିଁ । ସବୁ କିଛି ବର୍ଣ୍ଣନା ଗଂଗା ଓ ଯମୁନା ଉପତ୍ୟକାରେ ପ୍ରାୟ ସୀମିତ ଓ ଏହି ଅଞ୍ଚଳର ରାଜା ମହାରାଜା ମାନଙ୍କର ନିଜ ନିଜର ସୀମା ବଢ଼ାଇବାର ଯୁଦ୍ଧର କାହାଣୀ, ଯାହା ସିନ୍ଧୁ ସଭ୍ୟତାର ପ୍ରଥମ ହୋଇଥିବା ସମ୍ଭବ ଅଟେ । କିନ୍ତୁ ରାମାୟଣରେ ଅଯୋଧ୍ୟା ଠାରୁ ଆରମ୍ଭ କରି ଦଣ୍ଡକାରଣ୍ୟ, କର୍ଣ୍ଣାଟକର କିସ୍କିନ୍ଧ୍ୟା, ରାମଶ୍ୱରମ, ଶ୍ରୀଲଙ୍କା, ସେତୁବନ୍ଧ ଇତ୍ୟାଦିର ବର୍ଣ୍ଣନା ଅଛି । ତେଣୁ ରାମାୟଣରେ ଭାରତର ଭୂଗୋଳର ବର୍ଣ୍ଣନା ମହାଭାର ଅପେକ୍ଷା ବିସ୍ତୃତ ନୁହେଁ କି ? ଏହି ଦୃଷ୍ଟିରୁ ରାମାୟଣ ମହାଭାରତ ପରର କାହାଣୀ ଭାବେ ପ୍ରତୀୟମାନ ହୁଏ ନାହିଁକି ? ରାମଚନ୍ଦ୍ରଙ୍କ ସୈନ୍ୟସାମନ୍ତଙ୍କୁ ମାଙ୍କଡ଼, ଭାଲୁ ଇତ୍ୟାଦି ଭାବେ ଚିତ୍ରଣ କରିବା ଓ ସେମାନଙ୍କ ସହ ରାକ୍ଷାସ ମାନଙ୍କ ଯୁଦ୍ଧ ନିଶ୍ଚିତ ଭାବେ କାଳ୍ପନିକ, କାରଣ ମାଙ୍କଡ ଓ ଭାଲୁ ଜାତୀୟ ପ୍ରାଣୀମାନେ ମଣିଷ ସହ କଥାହେବେ କିପରି ଓ ଦୁଇପାଦରେ ଚାଲିବେ କିପରି ? ବୋଧହୁଏ ସମସାମୟିକ ସମୟରେ ଦକ୍ଷିଣ ଭାରତରେ ବିଭିନ୍ନ ପ୍ରକାରର ମଣିଷ ଗୋଷ୍ଠୀର ଚେହେରା ଓ ଆଚାର ବ୍ୟବହାରକୁ ନେଇ ଏହି ଭାଲୁ, ମାଙ୍କଡ଼ ଓ ରାକ୍ଷସର ପରିକଳ୍ପନା ମଣିଷକୃତ ଅଟେ । ଏସବୁ ତର୍କର ବିଷୟ । ଏହି ବିଷୟରେ ଆମର କୌଣସି ବିଜ୍ଞାନଭିତ୍ତିକ ପ୍ରମାଣ ନାହିଁ । ଚଉଦଲକ୍ଷ ବର୍ଷ ତଳର ଡାଇନୋସର ଓ ନଗ୍ନବୀଜ ଜାତୀୟ ବୃକ୍ଷର ଧ୍ୱଂସାବଶେଷରୁ ଲୁପ୍ତ ଏହି ଉଦ୍ଭିଦ ଓ ପ୍ରାଣୀମାନଙ୍କର ବୟସ ଆମେ କଳନା କରିବାରେ ସକ୍ଷମ । ମହେଞ୍ଜୋଦାରୋ, ମିଶର ଆଦି ସଭ୍ୟତା ବିଷୟରେ ମଧ୍ୟ ବିଶେଷ ଜ୍ଞାନ ଅନୁଶୀଳନରୁ ଜାଣିବାରେ ସମର୍ଥ । କିନ୍ତୁ ମହାଭାରତ ଓ ରାମାୟଣ ବର୍ଣ୍ଣିତ ସ୍ଥାନ, କାଳ, ପାତ୍ରମାନଙ୍କ ବିଷୟରେ କାହିଁକି ନୁହେଁ ? ତେଣୁ ଧର୍ମଶାସ୍ତ୍ରରେ ବର୍ଣ୍ଣିତ ବିଭିନ୍ନ ଯୁଗର ଅବଧି, ଚରିତ୍ରମାନଙ୍କର କାଳ ଇତ୍ୟାଦିର ପ୍ରମାଣ ନାହିଁ । ଏହିସବୁ ପୁରୁଣା ଅଟେ । ଅତି ସୁନ୍ଦର, ଚମତ୍କାର, ସୁପାଠ୍ୟ ଓ ସମସାମୟିକ ଉତ୍ତମ ଚରିତ୍ରମାନଙ୍କର କଥା ଆକାରରେ ଅବତାରଣା ମାତ୍ର ଓ ଏଥିରେ ଲେଖାଥିବା ଦେବ, ଦେବୀ ଓ ଅନେକ ଅଲୌକିକ କାର୍ଯ୍ୟ କପୋଳକଳ୍ପିତ ହିଁ ହୋଇପାରେ ।

ଥରେ ଭାରତରେ ପ୍ରଚାରିତ ଓ ପ୍ରସାରିତ 'ଓସୋ' ବିଶ୍ୱାସ ବା ଧର୍ମରେ ଅନୁପ୍ରାଣିତ ଏକ ବ୍ୟକ୍ତିଙ୍କୁ କଥା ଛଳରେ ପଚାରିଲି ଆପଣ 'ଶ୍ରୀ ରଜନୀଶ'ଙ୍କୁ 'ଭଗବାନ ରଜନୀଶ' କାହିଁକି କହନ୍ତି ? ସେ ମୋତେ ଓଲଟା ପ୍ରଶ୍ନକଲେ ଆପଣ ଶ୍ରୀ ରାମଚନ୍ଦ୍ର ଓ ଶ୍ରୀକୃଷ୍ଣଙ୍କୁ ଭଗବାନ କାହିଁକି କହନ୍ତି ? ମୁଁ କହିଲି ସେମାନେ ବିଶିଷ୍ଟ ବ୍ୟକ୍ତି ଥିଲେ ଓ ତାଙ୍କ କାର୍ଯ୍ୟରେ ପ୍ରଭାବିତ ହୋଇ ସମାଜ ତାଙ୍କୁ ଉଚ୍ଚ ଆସନ ଦେଇ ଭଗବାନ ବୋଲି ଅଭିହିତ କରିଥିଲା । ସେ କହିଲେ ତେଣୁ ଆଜି ସେମାନଙ୍କୁ ଲୋକେ ଭଗବାନ ବୋଲି ଧରିନେଇଛନ୍ତି । ଆଜି ରଜନୀଶଙ୍କୁ ସମାଜ ଭଗବାନ ବୋଲି ନମାନିଲେ କ'ଣ ହେଲା । ଯଦି ଆମେ ଭଗବାନ ରଜନୀଶ ବୋଲି କହୁ, ଲେଖୁ ଓ ପ୍ରଚାର କରୁ ହୁଏତ କିଛି ବର୍ଷର ଅବଧିପରେ ଆଗାମୀ ପିଢ଼ି ତାଙ୍କୁ ମଧ ଭଗବାନ ବୋଲି ମାନିବ ଓ ବିଶ୍ୱାସ କରିବ ।

ଏହି ଲେଖାରେ ଯାହାସବୁ ତର୍କ ଅବତାରଣା କରାଯାଇଛି ତାହା ମୋର ନିଜସ୍ୱ ଚିନ୍ତା ପ୍ରସୂତ ଅଟେ । ଜର୍ମାନୀର ଏକ ସ୍କୁଲରେ ଆଜକୁ ବହୁ ବର୍ଷ ତଳେ ଏକ ଛୋଟ ଝିଅର ପ୍ରଶ୍ନ ମନରେ ଯେଉଁ ଆନ୍ଦୋଳନ ସୃଷ୍ଟି କରିଥିଲା ସେହି ପ୍ରଶ୍ନର ଉତ୍ତର ଖୋଜୁ ଖୋଜୁ ନିଜକୁ ନିଜ ତର୍କରେ ସାମିଲ କରି ପାଇଥିବା ଚର୍ଚ୍ଚାର ଏହା ଅବତାରଣା ମାତ୍ର । ଆପଣ ବି ଚିନ୍ତା କରନ୍ତୁ, ପ୍ରତ୍ୟେକ ପ୍ରଶ୍ନ ନିଜକୁ ନିଜେ ପଚାରନ୍ତୁ, ଉତ୍ତର ଖୋଜନ୍ତୁ, ପାଉଥିବା ଉତ୍ତର ଭୁଲ୍ କି ଠିକ୍ ନିଜେ ନିର୍ଣ୍ଣୟ କରନ୍ତୁ ଓ ଯାହା ଠିକ୍ ହୃଦୟଂଗମ ହେଲା ତାହାକୁ ଦୃଢ଼ତାର ସହ ଉପସ୍ଥାପନା କରନ୍ତୁ ଓ ସାମାଜିକ ଚିନ୍ତାର ବିକାଶ ପାଇଁ ସଜାଗ ରହନ୍ତୁ ।

(୨)

ଧାର୍ମିକ ବିଶ୍ୱାସ ଓ ବିଜ୍ଞାନ ଉପରେ ନିମ୍ନରେ ପ୍ରଦତ୍ତ ବିଷୟବସ୍ତୁ ତର୍କ ଉପରେ ପର୍ଯ୍ୟବସିତ ନୁହେଁ ବରଂ ବିଜ୍ଞାନର ନୂତନ ତଥ୍ୟର ଆବିଷ୍କାର ଓ ଉଦ୍‌ଭାବନ ହେତୁ ଧର୍ମ ଓ କୁସଂସ୍କାରର କଳାବାଦ୍‌ଲ ମଣିଷର ଜୀବନ ଚର୍ଯ୍ୟାରୁ କିପରି ଆସ୍ତେ ଆସ୍ତେ ଅପସରି ଯାଉଛି ସେହି ତଥ୍ୟ ଉପରେ ଆଧାରିତ । ମଣିଷ ଆଜକୁ ସାତହଜାରରୁ ଦଶହଜାର ବର୍ଷ ପୂର୍ବେ ଗୋଷ୍ଠୀଗତ ଜୀବନ ଆରମ୍ଭ କରିବା ଦିନଠୁଁ ସେମାନଙ୍କର ସମସ୍ତ ଶକ୍ତି ଖାଦ୍ୟ, ବସ୍ତ୍ର ଓ ବାସଗୃହର ଚାହିଦା ମେଣ୍ଟାଇବାରେ ବିନିଯୋଗ ଥିଲା । ଖାଦ୍ୟ ପାଇଁ ବିଭିନ୍ନ ପ୍ରକାରର ଖାଦ୍ୟ ଉପଯୋଗୀ ଶସ୍ୟ ଓ ତାହାର ଚାଷ ପ୍ରଣାଳୀ ଉଦ୍‌ଭାବନ କରିବାରେ ଲାଗିଲା । ବସ୍ତ୍ର ପାଇଁ ସୂତା ଓ ରେଶମ ଇତ୍ୟାଦି ବୃକ୍ଷ ଓ କୀଟରୁ ଆଦାୟ କରି ତା'ର ଉତ୍କର୍ଷ ପାଇଁ ଗବେଷଣା ଜାରି ରଖିଲା । କାଠ ଓ ବାଉଁଶର ବାସଗୃହକୁ ଉନ୍ନତତର କରି ଓ ଚୂନପଥର ଇଟା ବ୍ୟବହାରରେ ବହୁତଳ ପ୍ରାସାଦ ନିର୍ମାଣ କଲା । ଅସ୍ତ୍ରଶସ୍ତ୍ର ପାଇଁ ବିଭିନ୍ନ ପ୍ରକାରର ଧାତବ ପଦାର୍ଥ ବ୍ୟବହାର କରି ଉନ୍ନତ ସରଞ୍ଜାମ ନିର୍ମାଣ କଲା ଏବଂ ଦେହକୁ ସୁସ୍ଥସବଳ ରଖିବା

ପାଇଁ ବିଭିନ୍ନ ପ୍ରକାର ଗଛର ଚେରମୂଳ, ବକଳ, ପତ୍ର ଇତ୍ୟାଦିର ରାସାୟନିକ ଗୁଣ ପରୀକ୍ଷା କରି ଔଷଧ ଭାବେ ବ୍ୟବହାର କଲା । କିନ୍ତୁ ଅନେକ ରୋଗ ଯଥା ହଇଜା, ବସନ୍ତ, କୁଷ୍ଠ, ପ୍ଲେଗ, ମ୍ୟାଲେରିଆ ଇତ୍ୟାଦି ଜୀବାଣୁ ବା ଭୂତାଣୁ ଜନିତ ରୋଗର କାରଣ ଜାଣିପାରିଲା ନାହିଁ । ତେଣୁ ଭାବିଲା ଏସବୁ ଅଭିଶାପରୁ ସୃଷ୍ଟି ବା ଭୂତ, ପ୍ରେତ, ଦେବ, ଦେବୀ ଇତ୍ୟାଦିଙ୍କ କୋପର ପ୍ରଭାବ । ତେଣୁ ଏହିଭଳି ରୋଗରୁ ରକ୍ଷା ପାଇବାର ଉପାୟ ଜଣାନଥିବା ହେତୁ ପୂଜା, ବ୍ରତ, ଉପବାସ, ବଳି ଇତ୍ୟାଦି ଦେବଦେବୀଙ୍କ ଶାନ୍ତିପାଇଁ ବ୍ୟବସ୍ଥା କଲା ଏବଂ ସାରା ପୃଥିବୀରେ ସବୁ ସଭ୍ୟତାରେ ଏହା ପ୍ରାୟ ବିଗତ ଶହେ, ଦୁଇଶହ ବର୍ଷ ପର୍ଯ୍ୟନ୍ତ ପ୍ରଚଳିତ ଥିଲା ।

ଏହି ବିଷୟରେ ଏକ ସୁନ୍ଦର ଉଦାହରଣ ମନେପଡ଼େ । ଷୋଡ଼ଶ ଅଣସ୍ତରୀ ମସିହାରେ ଇଂଲଣ୍ଡର ଇୟାମ ନାମକ ଏକ ଗ୍ରାମରେ ପ୍ଲେଗ ବ୍ୟାପିଲା । ସେତେବେଳେ ଲୋକଙ୍କର ଧାରଣା ଥିଲା କୌଣସି ଦୁଷ୍ଟ ଶକ୍ତିର ରାଗ ବା କୋପରୁ ପ୍ଲେଗ ହୁଏ । ପ୍ଲେଗ ଏକ ଜୀବାଣୁ ଜନିତ ରୋଗ ଏବଂ ଏହା ମୂଷାଙ୍କ ଦ୍ୱାରା ବ୍ୟାପେ ବୋଲି ସେ ସମୟରେ ଜଣା ନଥିଲା । ପ୍ଲେଗ ଗୋଟିଏ ଡିଆଁ ରୋଗ, ତେଣୁ ଗାଁର ଧନୀବ୍ୟକ୍ତିମାନେ ବଞ୍ଚିବା ପାଇଁ ଗାଁ ଛାଡି ଚାଲିଯିବାକୁ ମନସ୍ଥ କଲେ । ଗାଁର ମୁଖିଆ ସମସ୍ତଙ୍କୁ ନେହୁରା ହୋଇ ଗାଁ ଛାଡି ନଯିବାକୁ ଅନୁରୋଧ କଲେ । କାରଣ ଏହାଦ୍ୱାରା ପ୍ଲେଗ ଅଧିକ ଅଞ୍ଚଳରେ ବ୍ୟାପିଯିବ । ଶେଷରେ ସମସ୍ତେ ଗାଁ ଛାଡି ନଯିବାକୁ ଠିକ୍ କଲେ ଓ ଗାଁ ଚାରିକାନ୍ଥ ଭିତରେ ରହିଲେ । ପ୍ରତିଦିନ କିଛି କିଛି ଲୋକ ମରିଯାଉଥାନ୍ତି । ଶେଷରେ ୩୫୯ ଲୋକଙ୍କ ଭିତରୁ କେବଳ ୧୦୮ ଜଣ ବଞ୍ଚିଲେ । ଏହା ଏକ ବିରାଟ ଆତ୍ମବଳି ଦାନ କାରଣ ଏହାଦ୍ୱାରା ଇଂଲଣ୍ଡର ଅନ୍ୟ ସ୍ଥାନକୁ ପ୍ଲେଗ ବ୍ୟାପିଲା ନାହିଁ । ନଚେତ୍ ହଜାର ହଜାର ଲୋକ ମୃତ୍ୟୁମୁଖରେ ପଡିଥାନ୍ତେ । ଏହି ବଳିଦାନକୁ ଉଚିତ ସମ୍ମାନ ଦେଇ ଇଂରେଜମାନେ ଏକ ରାଇମ୍ ବା କବିତା ଲେଖିଥିଲେ ଏହା ଆଜି ପର୍ଯ୍ୟନ୍ତ ବିଭିନ୍ନ ନର୍ସରୀ ସ୍କୁଲରେ ଆବୃତ୍ତି କରାଯାଉଛି ।

Ring-a-ring-a Roses
Pocket full of poison
Achoo! Achoo!
Ah we all fell down.

ଏହାର ଅର୍ଥ ପ୍ଲେଗ୍ ହେଲେ ଛାତି ଓ କାଖରେ ଗୋଲାପ ଫୁଲ ଭଳି ଗୋଲ ଗୋଲ ଚିହ୍ନ ହୁଏ । ଯେହେତୁ ଏହା ଦୁଷ୍ଟ ଆତ୍ମାଦ୍ୱାରା ହେଉଛି ବୋଲି ଧାରଣା ଥିଲା ସେହି ଦୁଷ୍ଟାତ୍ମାକୁ ତୁଷ୍ଟି କରିବା ପାଇଁ ଗୋଲାପ ଫୁଲର ତୋଡା ଉପହାର ଦିଆଯାଏ । ପ୍ଲେଗ୍ ରୋଗରେ ବହୁତ ଛିଙ୍କ ହୁଏ ଏବଂ ଶେଷରେ ରୋଗୀ ମୃତ୍ୟୁ ମୁଖରେ ପଡିଥାଏ । ଏଥିରୁ ସ୍ପଷ୍ଟ ଯେ

ଇଂଲଣ୍ଡରେ ମଧ୍ୟ ଆଜକୁ ୩୦୦ ବର୍ଷ ତଳେ କିଛି ରୋଗ ପ୍ରେତାତ୍ମା, ଦୁଷ୍ଟାତ୍ମା, ଦେବଦେବୀଙ୍କ ଦୋଷଯୋଗୁଁ ହୁଏ ବୋଲି ବିଶ୍ୱାସ ଥିଲା । ଅତି ଦୁଃଖର ବିଷୟ ଆମ ଦେଶରେ ଆଜିଯାଏଁ ଲୋକଙ୍କୁ ଭୂତ ଓ ଡାହାଣୀ ଲାଗୁଛି । ଦେବୀଙ୍କ ଶାନ୍ତି ପାଇଁ ବଳି ଦିଆଯାଉଛି । ଖଟବିଦ୍ୟା, ନଖ-ବିଦ୍ୟା, ଦର୍ପଣ ବିଦ୍ୟାର ପ୍ରାବଲ୍ୟ ଏବେ ବି ରହିଛି । ଗାଁ ଗହଳିର ପାର୍ବଣ ମାନଙ୍କରେ ଦେବୀ ମଣିଷର ଶରୀରରେ ପ୍ରବେଶ କରୁଅଛି । ଏମିତି ବହୁତ ତତ୍କାଳୀନ ଅସାଧ ରୋଗ ଜୀବାଣୁ ବା ଭୂତାଣୁ ଜନିତ । ସପ୍ତଦଶ ଶତାବ୍ଦୀର ଶେଷଭାଗ ଯାଏଁ ଏହିସବୁ ରୋଗର କାରଣ ଜଣାଯାଇ ନଥିବା ହେତୁ ଲୋକେ ପୂଜକ ଓ ଗୁଣିଆଙ୍କ ଉପରେ ରୋଗ ଉପଶମ ପାଇଁ ନିର୍ଭରଶୀଳ ଥିଲେ । ସତରଶ ଷାଠିଏ ମସିହାରେ ହଲାଣ୍ଡର ଲିଭଏନ୍‌ହୁକ୍ ନିଜ ଉଦ୍ଭାବିତ ପ୍ରଥମ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଛୋଟ ଛୋଟ ଜୀବାଣୁ ଯାହା ଖାଲି ଆଖିରେ ଦେଖାଯାଉ ନ ଥିଲା ତାହାକୁ ପ୍ରଥମେ ଦେଖାଇ ଏକ ନୂତନ ଜୀବଜଗତର କଳ୍ପନା କଲେ । ତଥାପି ଦୁଇଶହ ବର୍ଷଧରି ଏହି ବିଷୟରେ ତଥ୍ୟ ସଂଗୃହୀତ ହୋଇପାରିଲା ନାହିଁ । ଅଠରଶହ ଷାଠିଏ ପରଠାରୁ ଫରାସୀ ବୈଜ୍ଞାନିକ ଲୁଇପାଶ୍ଚରଙ୍କ ଯୋଗୁଁ ଏହି ଛୋଟ ଛୋଟ ଜୀବଙ୍କ ରୋଗ କରିବା, ସେମାନଙ୍କର ରୋଗ ପ୍ରତିରୋଧ ଶକ୍ତି ଓ ଉପକାରିତା ବିଷୟରେ ଅନେକ ନୂତନ ତଥ୍ୟ ଉଦ୍‌ଭାବିତ ହେଲା । ସେ ପ୍ରଥମେ ପ୍ରମାଣ କରି ଦେଖାଇଲେ ଯେ ଅତି କ୍ଷୁଦ୍ରାତି କ୍ଷୁଦ୍ର ଜୀବ ମଧ୍ୟ ସେହିଭଳି ଜୀବଠାରୁ ହିଁ ସୃଷ୍ଟି ହୋଇପାରିବ । ଏବଂ ଦୁଧକୁ କିଛି ନିର୍ଦ୍ଦିଷ୍ଟ ସମୟ ଗରମ କଲେ ସେଥିରେ ଥିବା ଜୀବାଣୁ ନଷ୍ଟ କରାଯାଇ ପାରିବ । ଏହା ପାଶ୍ଚରାଇଜେସନ (Pasteurisation) ପ୍ରକ୍ରିୟା ଏବଂ ଏହା ଠିକ୍ ସେହିଭଳି ଆଜିଯାଏଁ ସାରା ପୃଥିବୀରେ ପ୍ରଚଳିତ । ଏହାଛଡା ସେ ବସନ୍ତ ଓ ଜଳାତଙ୍କ ଭଳି ରୋଗରୁ ରକ୍ଷାପାଇଁ ପ୍ରତିରୋଧ ଶକ୍ତି ସେହି ଜୀବାଣୁ ଟିକା ଆକାରରେ ଦେଇ ମଣିଷ ଦେହରେ ସୃଷ୍ଟି କରିପାରିଲେ । ଅନ୍ୟଜଣେ ସେହି ସମୟର ବିଶିଷ୍ଟ ବୈଜ୍ଞାନିକ ରବର୍ଟ କୋଚ୍ ପ୍ରମାଣ କଲେ ଯେ, ପ୍ରାୟ ପ୍ରତ୍ୟେକ ରୋଗ ପଛରେ ଏକ ଜୀବାଣୁ ରହିଛି । ଏବଂ ଏହି ଜୀବାଣୁକୁ ନିପାତ କଲେ ଆରୋଗ୍ୟ ଲାଭ କରିହେବ । ପରେ ପରେ ଆଲେକ୍‌ଜାଣ୍ଡାର ଫ୍ଲେମିଙ୍ଗ ନାମକ ଜଣେ ବୈଜ୍ଞାନିକ ଜୀବାଣୁ ବିନାଶକାରୀ ପେନିସିଲିନ୍ ଉଦ୍ଭାବନ କଲେ ଏବଂ ଏହା ଆଜିଯାଏଁ ଏକ ଅବ୍ୟର୍ଥ ଔଷଧ ରୂପେ ବ୍ୟବହୃତ ହେଉଛି । ଏହାପରେ ଭୂତାଣୁ ଆବିଷ୍କୃତ ହେଲା ଓ ସେମାନେ ଅନେକ ଉଦ୍ଭିଦ, ପ୍ରାଣୀ ତଥା ବୀଜାଣୁକୁ ସଂକ୍ରମଣ ଯେ କରିଥାନ୍ତି ଏହା ଜଣାଗଲା । କ୍ୟାନସର୍ ଓ ଏଡ୍‌ସ ଭଳି ଦୂରାରୋଗ୍ୟ ମଧ୍ୟ ଏହି ଭୂତାଣୁ ଜନିତ ଅଟେ । ଏହିଭଳି ରୋଗର ଉପଶମ ପାଇଁ ନୂଆ ନୂଆ ଔଷଧ ଓ ଟୀକା ପ୍ରସ୍ତୁତ ହୋଇଛି ଓ ଉଦ୍‌ଭାବନ ଜାରି ରହିଛି । ଗଣସୂତ୍ର ଜୈବପ୍ରଯୁକ୍ତିକୁ ଆଧାର କରି ଇ. କୋଲି (E. Coli) ନାମକ ଏକ ଜୀବାଣୁରୁ ମଣିଷ ଦେହରେ ଥିବା ଇନ୍‌ସୁଲିନ୍ ପ୍ରସ୍ତୁତକରି ବହୁମୂତ୍ର ରୋଗକୁ ଆୟତ୍ତାଧୀନ କରାଯାଇ ପାରିଛି ।

ହେପା ଟାଇଟିସ୍-ବି ଟିକା ପ୍ରସ୍ତୁତ କରାଯାଇ ବ୍ୟବହୃତ ହେଉଅଛି । କିଛି ବର୍ଷ ପୂର୍ବେ କୁଷ୍ଠ ରୋଗାକ୍ରାନ୍ତ ହେଲେ ରୋଗୀକୁ ଅଭିଶାପଗ୍ରସ୍ତ କୁହାଯାଇ ଘରୁ ବାହାର କରିଦଆଯାଉଥିଲା । ଆଜି କିନ୍ତୁ କୁଷ୍ଠର କାରଣ ଜୀବାଣୁକୁ ମାରିବା ପାଇଁ ଔଷଧ ଉପଲବ୍ଧ । ବସନ୍ତ ହେଲେ ଲୋକେ ଗାଁ ଠାକୁରାଣୀଙ୍କଠାରେ ପଣାପାଣି ଓ କୁକୁଡା ବଳି ଦେବାଛଡା ଅନ୍ୟ କିଛି ଆୟତ୍ତ ନଥିଲା । ଲୋକେ ଶୀତଳାଦେବୀଙ୍କ ପୂଜାର୍ଚ୍ଚନା କରୁଥିଲେ । ଆଜି ଶୀତଳା ଦେବୀଙ୍କ ଦ୍ୱାର ଶୂନ୍ୟ । ଆଗକାଳର ରଥଯାତ୍ରା ଭଳି  ବଡ଼ ବଡ଼ ପର୍ବରେ ହଇଜା ରୋଗ ଆତଙ୍କ ଖେଳାଇ ଦେଉଥିଲା । ଆଜି ହଇଜା ରୋଗକୁ ଆୟତ୍ତ କରାଯାଇ ପାରିଛି, ଇତ୍ୟାଦି । ଆଜି ଯାହାର ଟଙ୍କା ଅଛି ସେ ଉନ୍ନତ ଡାକ୍ତରଖାନା ବା ବିଦେଶ ଚିକିତ୍ସା ପାଇଁ ଯାଉଛନ୍ତି । କୃତ୍ରିମ ହୃତପିଣ୍ଡ ଯୋଡାଯାଇ ବହୁଦିନ ଯାଏଁ ମଣିଷକୁ ବଞ୍ଚାଇ ରଖାଯାଇ ପାରୁଛି । କିନ୍ତୁ ଯାହାର ଟଙ୍କା ନାହିଁ ସେ ଯାଏ ଗୁଣିଆ ପାଖକୁ ବା ଗାଁ ଠାକୁରାଣୀ ପାଖକୁ, ପଣା ପାଣି ଓ  ବଳି ଦେବାକୁ । ଯେଉଁମାନେ ବିଜ୍ଞାନର ଉଦ୍ଭାବନର ସ୍ୱାଦ ଚାଖିଛନ୍ତି ସେମାନେ ପ୍ରଚଳିତ ଧର୍ମପ୍ରଥାକୁ ପାଳନ କରୁନାହାନ୍ତି କାହିଁକି ? ସେମାନେ ଜାଣନ୍ତି ଯେ ଧର୍ମରେ ପାଳିତ ପ୍ରଥାଗୁଡିକ ଅନ୍ଧବିଶ୍ୱାସରେ ଭରପୂର ଓ ତାହାକୁ ଅନୁସରଣ କଲେ ମୃତ୍ୟୁମୁଖରେ ପଡିବା ସୁନିଶ୍ଚିତ ।

ବର୍ତ୍ତମାନ ଆମେ ଡାଇଉଇନ୍‌ଙ୍କ ବିବର୍ତ୍ତନ ବାଦକୁ ଗ୍ରହଣ କରିଛୁ । ଆମେ ଜାଣିଛୁ ଏହି ପୃଥିବୀର ସମସ୍ତ ପଦାର୍ଥ ଓ ଜୀବଜନ୍ତୁ ଭଗବାନଙ୍କ ଦ୍ୱାରା ସାତଦିନ ଭିତରେ ସୃଷ୍ଟି ନୁହେଁ । ଭାରତ ବର୍ଷରେ ପ୍ରଚଳିତ ଜାତିପ୍ରଥାର ଚାରିବର୍ଣ୍ଣର ମଣିଷ ଭଗବାନଙ୍କ ମୁଖ, ଛାତି, ଜଙ୍ଘ ଓ ପାଦରୁ ସୃଷ୍ଟି ନୁହଁ । ନିଜନିଜ ମା'ର ଗର୍ଭରୁ ହିଁ ସମସ୍ତେ ଜନ୍ମିତ । ଆମେ ବର୍ତ୍ତମାନ 'ଡଲି' ଭଳି ମେଣ୍ଢାକୁ ଏକ ଭ୍ରୂଣରୁ ପ୍ରସ୍ତୁତ କରିପାରିଛୁ । ବିଭିନ୍ନ ପ୍ରକାର ବୃକ୍ଷ, ତନ୍ତୁକୋଷରୁ ବଢ଼ାଇପାରୁ, ବନ୍ଧ୍ୟା ସ୍ତ୍ରୀର ଗର୍ଭରୁ ମଧ୍ୟ କୃତ୍ରିମ ପ୍ରଜନନ ମାଧ୍ୟମରେ ଭ୍ରୂଣରୁ ନିଜ ଛୁଆ ଜନ୍ମ କରାଇ ପାରୁ, ଜୀବାଣୁରୁ ଇନ୍‌ସୁଲିନ୍ ପ୍ରସ୍ତୁତ କରିପାରୁ ଓ ଗୁଣସୂତ୍ର ପ୍ରଯୁକ୍ତିବିଦ୍ୟା ମାଧ୍ୟମରେ ନୂତନ କିସମର ଜୀବ ସୃଷ୍ଟି କରିପାରୁ । ଏଥିରୁ ସ୍ପଷ୍ଟ ବିଜ୍ଞାନ ମାଧ୍ୟମରେ ନୂତନ ଜୀବର ସୃଷ୍ଟି ସମ୍ଭବ ଏବଂ ତାହା କେବଳ ଯେ ଭଗବାନଙ୍କ ଦ୍ୱାରା ହିଁ ସୃଷ୍ଟି ହୋଇପାରେ ଏହା କେବଳ ଧର୍ମ ମାଧ୍ୟମରେ କୁହାଯାଉଥିବା ଏକ ଭିତ୍ତିହୀନ ଧାରଣା ମାତ୍ର ଓ ଏଥିରେ କିଛି ସତ୍ୟତା ନାହିଁ । ଏହା ସାରା ପୃଥିବୀରେ ବର୍ତ୍ତମାନ ସ୍ୱୀକୃତ କାହିଁକି ? କାରଣ ବିଜ୍ଞାନର ଉଦ୍‌ଭାବନ ଫଳରେ ପ୍ରଚଳିତ କୁସଂସ୍କାରଗୁଡିକ ଲୋପ ପାଇବାକୁ ବସିଲାଣି ଏବଂ ଏଗୁଡିକ ବର୍ତ୍ତମାନ ସମାଜରେ ଆଉ ସ୍ୱୀକୃତ ନୁହଁ ।

ସୁସ୍ଥ ଜୀବନଯାପନ ପାଇଁ ଔଷଧର ବ୍ୟବହାର ଭଳି ଆଜିର ଜୀବନଚର୍ଯ୍ୟାରେ ବିଜୁଳି ଶକ୍ତି, ଟେଲିଫୋନ୍, ଟେଲିଭିଜନ, ବାଇକ୍, କାର, ବସ, ଟ୍ରେନ, ଏରୋପ୍ଲେନ୍,

ମୋବାଇଲ, ସାଟେଲାଇଟର ବ୍ୟବହାର ଏତେ ବେଶୀ ଯେ ଏହାଛଡ଼ା କ୍ଷୁଦ୍ରାଦି କ୍ଷୁଦ୍ର ଗାଁ ଗଣ୍ଡାରେ ବି ଜୀବନଧାରଣ ଅସମ୍ଭବ ଜଣାପଡ଼େ । ଏସବୁର ବର୍ଣ୍ଣନା ଧର୍ମଶାସ୍ତ୍ର ମାନଙ୍କରେ ନାହିଁ । କାରଣ ଏହି ଗ୍ରନ୍ଥମାନଙ୍କର ଲେଖାଯିବା ସମୟରେ ବିଜ୍ଞାନର ଏତେସବୁ ଉଦ୍ଭାବନ ହୋଇନଥିଲା । ତେଣୁ ଆମେ ଯଦି ଧର୍ମକୁ ଆବୋରି ଧରି ଓ ଲିଖିତ ଧର୍ମଗ୍ରନ୍ଥକୁ ଅନୁସରଣ କରି ଜୀବନଯାପନ କରିବା ତାହେଲେ, ଏହିସବୁ ଉଦ୍ଭାବିତ ପଦାର୍ଥକୁ ଆମେ ବ୍ୟବହାର କରିବା ଅନୁଚିତ । ବରଂ ମୁଣ୍ଡର ଅଧାଲଣ୍ଡା ହୋଇ, ଚୁଟି ରଖି ପ୍ରଚଳିତ କର୍ମକାଣ୍ଡକୁ ଅକ୍ଷରେ ଅକ୍ଷରେ ପାଳନ କରି, ଗାଁର ମୁଖିଆ ତଥା ପୁରୋହିତଙ୍କ ଆଦେଶ ମାନି କୌଣସି ସରକାରୀ ବା ବେସରକାରୀ ଚାକିରୀ ନକରି, ନିଜ ପରିବାରର କୌଳିକ ପ୍ରଥା ଓ ବୃତ୍ତିକୁ ଆଦରିଲେ, ସାତ ସମୁଦ୍ରପାରି ହୋଇ ବିଦେଶ ନଯାଇ, ବିଲାତିଆଳୁ, ଟମାଟୋ, ଫୁଲକୋବି, ବନ୍ଧାକୋବି ଇତ୍ୟାଦି ନଖାଇ (ଏହିସବୁ ବିଦେଶରୁ ଆନୀତ ଓ ସେଥିଯୋଗୁଁ ମନ୍ଦିରରେ ଏସବୁ ରନ୍ଧାଯାଏ ନାହିଁ, କେବଳ ଦେଶୀଆଳୁ, କନ୍ଦମୂଳ, କଖାରୁ ଓ ବିଭିନ୍ନ ଶାଗ ହିଁ ନିଜ ଦେଶର ବୋଲି ରନ୍ଧାଯାଏ) ଜୀବନ ଧାରଣ କରିବା ଉଚିତ । ନତୁବା ନୂତନ ବିଜ୍ଞାନର ଆବିଷ୍କାର ଏବଂ ଉଦ୍ଭାବନର ସାମଗ୍ରୀକୁ ବ୍ୟବହାର କରି, ବିଜ୍ଞାନ ଚିନ୍ତାଧାରାରେ ଅନୁପ୍ରାଣିତ ହୋଇ, ସ୍ୱାସ୍ଥ୍ୟ ପାଇଁ ନୂତନ ଔଷଧମାନ ସେବନ କରି, ଅନେକ ଦେଶ ବୁଲି ବା ପଢ଼ି, ଅନେକ ଲୋକଙ୍କ ସହ ଭାବର ଆଦାନ ପ୍ରଦାନ କରି, ପୃଥିବୀକୁ ଜାଣି ନିଜ ଜୀବନଚର୍ଯ୍ୟାକୁ ଉନ୍ନତ ମାର୍ଗଦେଇ ଜୀବନ ଧାରଣ କରିବା ବିଧେୟ । ଧର୍ମ ଓ ବିଜ୍ଞାନକୁ ପରସ୍ପରର ପରିପୂରକ ନଭାବି, ବିଜ୍ଞାନର ଉଦ୍ଭାବନକୁ ଆଧାର କରି, ଧର୍ମଚର୍ଯ୍ୟାର ମାର୍ଗ ବଦଳାଇ ସମାଜକୁ କୁସଂସ୍କାର ମୁକ୍ତ କରିବା ଆଜିର ଏକ ଆହ୍ୱାନ ।



# ଜୀବଜଗତ ତଥା ମନୁଷ୍ୟର ସୃଷ୍ଟି

*ଶ୍ରୀ ଗଗନ ବିହାରୀ ଧଳ*

ଜୀବ ଜଗତର ସୃଷ୍ଟି ସହିତ ପୃଥିବୀ ସମେତ ବିଶ୍ୱଜଗତର ସୃଷ୍ଟି ଘନିଷ୍ଠ ଭାବେ ଜଡିତ । ତେଣୁ ଏ ସମ୍ପର୍କରେ ଆଲୋଚନା ପୂର୍ବରୁ ଜ୍ୟୋତିର୍ବିଜ୍ଞାନ ତଥା ମହାକାଶ ବିଜ୍ଞାନର ବିକାଶ ସମ୍ବନ୍ଧରେ ଏକ ସଂକ୍ଷିପ୍ତ ଆଲୋଚନା ଆବଶ୍ୟକ ।

ସଭ୍ୟତାର ଆରମ୍ଭରୁ ମନୁଷ୍ୟ ମହାକାଶରେ ସୂର୍ଯ୍ୟ, ଚନ୍ଦ୍ର, ତାରା ଓ ଗ୍ରହ ଆଦିଙ୍କୁ ଦେଖି, ଏସବୁର ସୃଷ୍ଟି ଓ ପ୍ରକୃତି ସଂପର୍କରେ ସ୍ୱାଭାବିକ ଭାବେ ତାର ମନରେ ଅନୁସନ୍ଧିତ୍ସା ଜାଗ୍ରତ ହୋଇଛି । ପୁରାତନ ରଚନାରୁ ଯାହା କିଛି ତଥ୍ୟ ମିଳେ ସେଥିରୁ ଜଣାଯାଏ ଯେ ଗ୍ରୀସ୍ ଦେଶରେ ପ୍ରାଚୀନ କାଳରେ ଏ ସମ୍ବନ୍ଧରେ ବ୍ୟାପକ ଆଲୋଚନା ହୋଇଥିଲା । ଅବଶ୍ୟ ପୁରାତନ ଭାରତରେ ବେଦାଙ୍ଗ ଜ୍ୟୋତିଷ ନାମକ ଏକ ରଚନା ଥିବାର ପ୍ରମାଣ ମଧ୍ୟ ମିଳେ । ଗ୍ରୀସ୍‌ର ବିଶିଷ୍ଟ ଦାର୍ଶନିକ ଆରିଷ୍ଟୋଟଲ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ତାଙ୍କର ଏକ ପ୍ରସିଦ୍ଧ ପୁସ୍ତକ 'ସ୍ୱର୍ଗ' ସଂପର୍କରେ ପୃଥିବୀର ଆକାର ଗୋଲ ବୋଲି ଉଲ୍ଲେଖ କରିଥିଲେ । ଏହାପୂର୍ବରୁ ପୃଥିବୀର ଆକାର ଚେପଟା ବୋଲି ବିଶ୍ୱାସ କରାଯାଉଥିଲା । ଆରିଷ୍ଟୋଟଲଙ୍କ ତତ୍ତ୍ୱର ମୁଖ୍ୟ କାରଣ ହେଲା ସେତେବେଳକୁ ଗ୍ରୀକ୍‌ମାନେ ମଧ୍ୟପ୍ରାଚ୍ୟ ଓ ଏସିଆର ବିଭିନ୍ନ ଦେଶକୁ ଯାତାୟତ କରୁଥିଲେ । ସେମାନେ ଲକ୍ଷ୍ୟ କରିଥିଲେ ଯେ ଧ୍ରୁବତାରାର ଅବସ୍ଥିତି ତାଙ୍କ ଦେଶର ଆକାଶରେ ଯେଉଁ ସ୍ଥାନରେ ଥିଲା, ମିଶର ଦେଶରେ ତାହା ଅନେକ ତଳେ ଦେଖାଯାଉଛି । ତା' ଛଡା ସମୁଦ୍ର ଯାତ୍ରା ସମୟରେ ମଧ୍ୟ ସେମାନେ ଲକ୍ଷ୍ୟ କରୁଥିଲେ ଦିଗ୍‌ବଳୟ କ୍ରମଶଃ ଘୁଞ୍ଚି ଘୁଞ୍ଚି ଯାଉଛି । ଏହି ତଥ୍ୟ ଭିତ୍ତିରେ ସେ ମନେକଲେ ଯେ, ପୃଥିବୀର ଆକାର ଗୋଲ ନ ହେଲେ ଏଭଳି ହେବା ସମ୍ଭବ ନୁହେଁ । ପରବର୍ତ୍ତୀ କାଳରେ ଅର୍ଥାତ୍ ଦ୍ୱିତୀୟ ଶତାବ୍ଦୀରେ ଏହାକୁ ଭିତ୍ତିକରି ଟୋଲେମି ଏକ ସଂପୂର୍ଣ୍ଣ ଜ୍ୟୋତିର୍ବିଜ୍ଞାନର ତତ୍ତ୍ୱ ସୃଷ୍ଟି କଲେ, ଯେଉଁଥିରେ କି

ପୃଥିବୀକୁ ବିଶ୍ୱର କେନ୍ଦ୍ର ଓ ସୂର୍ଯ୍ୟ, ଚନ୍ଦ୍ର ପୃଥିବୀର ଦୁଇପଟରେ ରହିଗଲେ, ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟପରାଗ ହେଉଥିବା କଥା ତାଙ୍କ ରଚନାରେ ମଧ୍ୟ ବର୍ଣ୍ଣନା କରିଛନ୍ତି । ଏହିଭଳି ଭାବରେ ଏକ କାମଚଳା ଜ୍ୟୋତିର୍ବିଜ୍ଞାନ ସେ ସୃଷ୍ଟି କରିଥିଲେ, ଯାହାକୁ ତତ୍‌କାଳୀନ ଖ୍ରୀଷ୍ଟିୟାନ ଧର୍ମଗୁରୁମାନେ ଶାସ୍ତ୍ର ସମ୍ମତ ବୋଲି ମଧ୍ୟ ଘୋଷଣା କରିଥିଲେ । ଭାରତୀୟ ଜ୍ୟୋତିଷ ଶାସ୍ତ୍ର ଏହି ପୃଥିବୀକୈନ୍ଦ୍ରିକ ବିଶ୍ୱାସ ଭିତ୍ତିରେ ମଧ୍ୟ ରଚିତ ହୋଇଛି ।

ପ୍ରାୟ ଷୋଡ଼ଶ ଶତାବ୍ଦୀରେ ପୋଲାଣ୍ଡର ଜଣେ ଧର୍ମଯାଜକ ନିକୋଲାସ୍ କୋପରନିକସ୍ ପ୍ରଥମେ ମହାକାଶର ଏକ ମଡେଲ ପ୍ରକାଶ କଲେ, ଯେଉଁଥିରେ ସେ ଦର୍ଶାଇଥିଲେ ଯେ ସୂର୍ଯ୍ୟଙ୍କ ଚାରିପଟେ ପୃଥିବୀ ଓ ଅନ୍ୟ ଗ୍ରହମାନେ ପ୍ରଦକ୍ଷିଣ କରୁଛନ୍ତି । କିନ୍ତୁ, ବରିଷ୍ଠ ଧର୍ମଗୁରୁମାନଙ୍କ ଭୟରେ ଏହାକୁ ତାଙ୍କ ନିଜ ନାମରେ ପ୍ରକାଶ ନକରି ଛଦ୍ମନାମରେ ପ୍ରକାଶ କରିଥିଲେ । ତାଙ୍କ ମୃତ୍ୟୁର ପ୍ରାୟ ଶହେବର୍ଷ ପରେ ଜର୍ମାନର ଜ୍ୟୋତିର୍ବିଜ୍ଞାନୀ ଜୋହାନେସ୍ କେପ୍‌ଲର୍ ତ‌ଥା ଇଟାଲିର ପ୍ରସିଦ୍ଧ ବୈଜ୍ଞାନିକ ଗ୍ୟାଲିଲିଓ, କୋପରନିକସ୍‌ଙ୍କର ଏହି ତତ୍ତ୍ୱକୁ ବାସ୍ତବ ରୂପ ଦେଇଥିଲେ । ସେଥିପାଇଁ ତାଙ୍କୁ ଅବଶ୍ୟ ଖ୍ରୀଷ୍ଟିଆନ ଧର୍ମଗୁରୁଙ୍କ ଠାରୁ ବହୁ ନିର୍ଯ୍ୟାତନା ଭୋଗିବାକୁ ହୋଇଥିଲା । ଭାରତରେ ଗୁପ୍ତ ଯୁଗର ଜଣେ ଜ୍ୟୋତିର୍ବିଜ୍ଞାନୀ ଆର୍ଯ୍ୟଭଟ୍ଟ, 'ଚଳା ପୃଥ୍ୱୀ', ସ୍ଥିରାଭାତି' ବୋଲି ବର୍ଣ୍ଣନା କରିଥିବା କଥା କେତେକ ପୁରାତନ ରଚନାରେ ଅଛି । କିନ୍ତୁ, ଏ ସମ୍ପର୍କରେ କୌଣସି ବିଶେଷ ତଥ୍ୟ ବା ତାଙ୍କର ଗାଣିତିକ ତତ୍ତ୍ୱର ବିଶେଷ ଚର୍ଚ୍ଚା ହୋଇଥିବାର ପ୍ରମାଣ ମିଳେନାହିଁ । ଗ୍ରୀସ୍‌ର ଅନ୍ୟତମ ଜ୍ୟୋତିର୍ବିତ୍ ଆରିଷ୍ଟାରଚସ୍ ପ୍ରାୟ ତାଙ୍କର ସମସାମୟିକ ଥିଲେ ଓ ସେ ମଧ୍ୟ ଏହି କଥା କହିଥିଲେ, କିନ୍ତୁ ତାଙ୍କର ବକ୍ତବ୍ୟକୁ ସେ ସମୟରେ କେହି ବିଶ୍ୱାସ କରିନଥିଲେ ।

କେପ୍‌ଲର ଓ ଗ୍ୟାଲିଲିଓଙ୍କ ତତ୍ତ୍ୱର ଆବିଷ୍କାର ପରେ ନିଉଟନ୍‌ଙ୍କର ମାଧ୍ୟାକର୍ଷଣ ଶକ୍ତିର ଆବିଷ୍କାର, ମୋଟାମୋଟି ପୃଥିବୀ ଓ ଅନ୍ୟ ପାଞ୍ଚଟି ଗ୍ରହ (ସେତେବେଳେ କେବଳ ବୁଧ, ଶୁକ୍ର, ମଙ୍ଗଳ, ବୃହସ୍ପତି ଓ ଶନି ଦୃଶ୍ୟମାନ ହେଉଥିଲେ) ସୂର୍ଯ୍ୟଙ୍କ ଚାରିପଟେ ଏକ ବିଶେଷ ଧରଣର ବୃତ୍ତାକାର କକ୍ଷରେ ଘୂର୍ଣ୍ଣାୟମାନ ହେଉଥିବାର ତଥ୍ୟ ପାଶ୍ଚାତ୍ୟ ଜଗତରେ ମହାଜାଗତିକ ବିଜ୍ଞାନରେ ଏକପ୍ରକାର ବିପ୍ଳବ ଆଣିଥିଲା ।

ବିଶ୍ୱବ୍ରହ୍ମାଣ୍ଡ ତଥା ପୃଥିବୀ କିପରି ସୃଷ୍ଟି ହୋଇଛି ତା'ର ବିଜ୍ଞାନ ସମ୍ମତ ଉତ୍ତର କେବଳ ବିଂଶ ଶତାବ୍ଦୀରେ ହିଁ ମିଳିପାରିଛି । ଶକ୍ତିଶାଳୀ ଦୂରବିକ୍ଷଣ ଯନ୍ତ୍ରର ଉଦ୍‌ଭାବନ ପରେ ଯାଇ, ବହୁ ମହାଜାଗତିକ ଘଟଣା ପ୍ରତ୍ୟକ୍ଷ ଭାବରେ ଦେଖିବା ସମ୍ଭବ ହେଲା । ପ୍ରକୃତ ଅର୍ଥରେ ଶକ୍ତିଶାଳୀ ଦୂରବୀକ୍ଷଣ ଯନ୍ତ୍ର ପ୍ରଥମେ ଉଦ୍‌ଭାବନ କରିଥିଲେ ଆମେରିକାର ବୈଜ୍ଞାନିକ ଏଡ୍‌ୱିନ୍ ହବ୍‌ଲ୍ । ୧୯୨୯ ଖ୍ରୀଷ୍ଟାବ୍ଦରେ ସେ ଏହି ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଦେଖିଲେ, ଆକାଶରେ ତାରକାମାନେ କ୍ରମଶଃ ଦୂରକୁ ଚାଲିଯାଉଛନ୍ତି ଏବଂ ବିଶ୍ୱଜଗତ ପ୍ରସାରିତ ହେବାରେ ଲାଗିଛି । ତାଙ୍କର ଏହି ତଥ୍ୟ,

ବିଶ୍ୱଜଗତର ସୃଷ୍ଟି ଏକ ମହା ବିସ୍ଫୋରଣରୁ ହୋଇଥିବାର ଏକ ପ୍ରାରମ୍ଭିକ ପ୍ରମାଣ ଦେଇଥିଲା । ହବ୍‌ଲ୍‌ଙ୍କର ଏହି ଆବିଷ୍କାର ଉପରେ ମନ୍ତବ୍ୟ ଦେଇ ଆଜିର ଜଣେ ପ୍ରଖ୍ୟାତ ମହାକାଶ ବିଜ୍ଞାନୀ ଷ୍ଟିଫେନ୍ ହକିଂ କହିଛନ୍ତି, "ଏହି ମହାବିସ୍ଫୋରଣଠାରୁ ହିଁ ସମୟର ଆରମ୍ଭ ହୋଇଛି" ।

ଏହି ସମୟରେ ପୃଥିବୀ ପ୍ରସିଦ୍ଧ ପଦାର୍ଥ ବିଜ୍ଞାନୀ ଆଲବର୍ଟ ଆଇନଷ୍ଟାଇନ୍‌ଙ୍କର ସାଧାରଣ ଆପେକ୍ଷିକ ତତ୍ତ୍ୱ ପ୍ରକାଶ ପାଇସାରିଥିଲା । କିନ୍ତୁ ଏହି ତତ୍ତ୍ୱ ଭିତ୍ତିରେ ବିଶ୍ୱଜଗତର ସଦା ସଂପ୍ରସାରଣ ପ୍ରକ୍ରିୟାକୁ ବ୍ୟାଖ୍ୟା କରିବା ଓ ତା'ର ଗାଣିତିକ ସମାଧାନ ବାହାର କରିବା ଖୁବ୍ ଜଟିଳ ଥିବାରୁ ସୋଭିଏତ୍ ରୁଷିଆର ବୈଜ୍ଞାନିକ ଆଲେକ୍‌ଜାଣ୍ଡାର ଫ୍ରିଡ଼୍‌ମାନ୍ ୧ ୯ ୨ ୨ ମସିହାରେ, ମହାଜଗତର ଏହି ଅନବରତ ସଂପ୍ରସାରଣର ଏକ ସୂତ୍ର ଆବିଷ୍କାର କରିଥିଲେ । କିନ୍ତୁ, ସେତେବେଳେ ସୋଭିଏତ୍ ରୁଷିଆ ରାଜନୈତିକ କାରଣରୁ ଅନ୍ୟ ପାଶ୍ଚାତ୍ୟ ଦେଶମାନଙ୍କଠାରୁ ବାସନ୍ଦ ହୋଇଥିବାରୁ, ଫ୍ରିଡ଼୍‌ମାନଙ୍କର ମହାକାଶ ବିଜ୍ଞାନର ଅଗ୍ରଗତି ପାଇଁ ଏହି ବିଶେଷ ଅବଦାନଟି ବହୁବର୍ଷ ପର୍ଯ୍ୟନ୍ତ ଲୋକଲୋଚନକୁ ଆସିପାରିନଥିଲା । ସବୁ ବୈଜ୍ଞାନିକମାନେ ଉପରୋକ୍ତ ବିଗ୍‌ବ୍ୟାଙ୍ଗ ତତ୍ତ୍ୱରେ ଏକମତ ହେବା ପାଇଁ ଅନେକ ବର୍ଷ ବିତିଯାଇଥିଲା । ବହୁ ପ୍ରଶ୍ନ ଉତ୍‌ଥାପନ ହୋଇଥିଲା ଏବଂ କେତେକ ପ୍ରଶ୍ନର ସମାଧାନ ମଧ୍ୟ ହୋଇଥିଲା । ହବ୍‌ଲ୍‌ଙ୍କର ଯୁଗାନ୍ତକାରୀ ଉଦ୍‌ଭାବନର ଅବ୍ୟବହିତ ପରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ସଂଗଠିତ ହେବାରୁ ମହାକାଶ ବିଜ୍ଞାନର ଗବେଷଣା ବାଧାପ୍ରାପ୍ତ ହୋଇ, ନୂଆ ନୂଆ ଅସ୍ତ୍ରଶସ୍ତ୍ର ଉଦ୍‌ଭାବନ ପାଇଁ, ବିଶେଷକରି ଆଣବିକ ବୋମା ପ୍ରସ୍ତୁତ ନିମିତ୍ତ ବେଶି ଅର୍ଥ ଓ ସମୟ ବିନିଯୋଗ କରାଯାଇଥିଲା । ଶେଷରେ ବ୍ରିଟିଶ ବୈଜ୍ଞାନିକ ରୋଜର ପେନ୍‌ରୋଜ୍ ୧ ୯ ୬୫ ମସିହାରେ ଏକ ବିଶେଷ ତଥ୍ୟଦ୍ୱାରା ବିଗ୍ ବ୍ୟାଙ୍ଗ୍ ହିଁ ବିଶ୍ୱଜଗତ ସୃଷ୍ଟିର ଏକମାତ୍ର ଆଧାର ବୋଲି ପ୍ରମାଣ କରିବା ପରେ, ଏହା ଆଜି ବିଜ୍ଞାନ ଜଗତରେ ସର୍ବସମ୍ମତ ଭାବେ ଗ୍ରହଣ କରାଯାଇଛି ।

ହବ୍‌ଲ୍‌ଙ୍କ ପରେ ଆହୁରି ଶକ୍ତିଶାଳୀ ଦୂରବୀକ୍ଷଣ ଯନ୍ତ୍ର ରେଡିଓ ଟେଲିସ୍‌କୋପର ଉଦ୍ଭାବନ ହୋଇଛି । ଏହାଦ୍ୱାରା ବିଶ୍ୱଜଗତର ବହୁ ରହସ୍ୟ ଉନ୍ମୋଚିତ ହେବାରେ ଲାଗିଛି । ଭୂପୃଷ୍ଠରୁ ମହାକାଶକୁ କୃତ୍ରିମ ଉପଗ୍ରହ ପ୍ରେରଣ କରିବାର ପ୍ରଯୁକ୍ତି ବିଦ୍ୟାର ଉଦ୍‌ଭାବନ ହେବାପରେ, ଏହି ଶକ୍ତିଶାଳୀ ଦୂରବୀକ୍ଷଣ ଯନ୍ତ୍ର ଓ ଶକ୍ତିଶାଳୀ କ୍ୟାମେରା ସେହି ଉପଗ୍ରହରେ ସଂଯୋଗ କରାଯାଇ, ଏହା ମହାକାଶରେ ପ୍ରଦକ୍ଷିଣ କରି ବହୁ ମହାଜାଗତିକ ଘଟଣାର ପ୍ରତ୍ୟକ୍ଷ ପ୍ରମାଣ ଭୂପୃଷ୍ଠକୁ ପ୍ରେରଣ କରୁଛି । ତିରିଶ ବର୍ଷ ପୂର୍ବେ ଏହିଭଳି ଏକ ଉପଗ୍ରହ ଭୟେଜର-୧ ମହାକାଶ ଗବେଷଣା ଉଦ୍ଦେଶ୍ୟରେ ପଠାଯାଇଥିଲା । ସେତେବେଳେ ଆଶା କରାଯାଇଥିଲା, ଏହି ଉପଗ୍ରହଟି ପ୍ରାୟ ପାଞ୍ଚ ବର୍ଷ ପରେ ନଷ୍ଟ ହୋଇଯିବ । କିନ୍ତୁ ତାହା ଏପର୍ଯ୍ୟନ୍ତ ସଂପୂର୍ଣ୍ଣ କାର୍ଯ୍ୟକ୍ଷମ ଅଛି ଓ ମହାକାଶରେ ଘଟୁଥିବା ବହୁ ଘଟଣାର ତଥ୍ୟ ଭୂପୃଷ୍ଠକୁ

ପ୍ରେରଣ କରୁଛି । ତାହା ଏବେ ସୌରମଣ୍ଡଳର ସୀମା ଅତିକ୍ରମ କରି, ସୌରଜଗତର ନିକଟତମ ତଥା ପୃଥିବୀକୁ ସବୁଠାରୁ ଉଜ୍ଜ୍ୱଳ ଦେଖାଯାଉଥିବା ତାରକା ଲୁବ୍ଧକର ନିକଟ ଦେଇ ଗତି କରିବ ବୋଲି ଆଶା କରାଯାଉଛି । ଅନ୍ୟ ଏକ କୃତ୍ରିମ ଉପଗ୍ରହ 'ଏକ୍ସ୍‌ପ୍ଲୋରର' ରେ ଖଞ୍ଜା ଯାଇଥିବା ଶକ୍ତିଶାଳୀ ଦୂରବୀକ୍ଷଣ ଯନ୍ତ୍ର ଗୋଟିଏ ଅଲୌକିକ ଘଟଣାର ଚିତ୍ର ଭୂପୃଷ୍ଠରେ ଥିବା 'ନାସା' କେନ୍ଦ୍ରକୁ ପଠାଇଛି । ସେଥିରେ ଏକ ବୃହତ ତାରକା, ଯେକି ସୂର୍ଯ୍ୟଙ୍କଠାରୁ ପ୍ରାୟ ଚାରିଶହ ଗୁଣ ବଡ଼, ଯାହାର ନାମ ବୈଜ୍ଞାନିକମାନେ ଦେଇଛନ୍ତି ମିରା, ତାହାର ବିସ୍ଫୋରଣ ଘଟି ଏଭଳି ଏକ ମହାଜାଗତିକ ଦୃଶ୍ୟ ସୃଷ୍ଟି କରିଛି, ଯାହାକି ମନୁଷ୍ୟ କେବେ ଦେଖିବାର କଳ୍ପନା କରିନଥିଲା । ବିସ୍ଫୋରିତ ମିରା ବହୁ ପରିମାଣର ଗ୍ୟାସୀୟ ପଦାର୍ଥ ବିଚ୍ଛୁରିତ କରି ସେକେଣ୍ଡକୁ ୧୩୦ କିଲୋମିଟର ଗତିରେ ଘୂରିବୁଲୁଛି । ସେହି ବିଚ୍ଛୁରିତ ପଦାର୍ଥରୁ ପୃଥିବୀ ଭଳି ପ୍ରାୟ ତିନି ହଜାର ଗ୍ରହ ସୃଷ୍ଟି ହୋଇପାରିବ ବୋଲି ବୈଜ୍ଞାନିକମାନେ ମତ ଦେଉଛନ୍ତି । ସେହି ବିଚ୍ଛୁରିତ ଆବର୍ଜନା ମଧ୍ୟରେ ରହିଛି ଅମ୍ଳଜାନ, ଅଙ୍ଗାର ଓ ଯବକ୍ଷାରଜାନ । ଏହା ଦେଖି 'ନାସା'ର ଜଣେ ବୈଜ୍ଞାନିକ କହିଛନ୍ତି "ଏହି ତାରକା ମିରା, ନୂତନ ପୃଥିବୀ, ନୂତନ ଆଶା ଏବଂ ବୋଧହୁଏ ନୂତନ ଜୀବ ସୃଷ୍ଟିର ଆନନ୍ଦ ମନରେ ଆଣି ଦେଇଛି" ।

ଏହି ଅଧ୍ୟାୟର ଆରମ୍ଭରେ କୁହାଯାଇଛି ଯେ ଜୀବଜଗତର ସୃଷ୍ଟିର ମୂଳରେ, ବିଶ୍ୱଜଗତ ସୃଷ୍ଟିର ନିବିଡ଼ ସଂପର୍କ ଅଛି । ଆମେ ଆକାଶରେ ଯେଉଁ ତାରକା ସବୁ ଦେଖୁଛୁ ଓ ଯେଉଁ ତାରକାଟିକୁ ଆମେ ସୂର୍ଯ୍ୟ ବୋଲି କହୁଛୁ, ସେଇଥିରୁ ଆମର ପୃଥିବୀ ସମେତ ସୌରଜଗତର ଅନ୍ୟାନ୍ୟ ଗ୍ରହ, ଉପଗ୍ରହ ସୃଷ୍ଟି ହୋଇଛନ୍ତି । ସେହି ତାରକାରୁ ସୃଷ୍ଟି ହୋଇଛି ସବୁ ରାସାୟନିକ ପଦାର୍ଥ ଏବଂ ରାସାୟନିକ ପଦାର୍ଥ ହେଉଛି ସୃଷ୍ଟିର ମୌଳିକ ଆଧାର । ଏକଥା ଜୀବବିଜ୍ଞାନୀ ରିଚାର୍ଡ ଡକିନ୍‌ସ ତାଙ୍କ ପୁସ୍ତକରେ ପ୍ରାଞ୍ଜଳ ଭାବେ ବର୍ଣ୍ଣନା କରିଛନ୍ତି ।

ପୃଥିବୀପୃଷ୍ଠରେ ଜୀବ ସୃଷ୍ଟି ନିମିତ୍ତ, ରାସାୟନିକ ପଦାର୍ଥର ଉପସ୍ଥିତି ଏକାନ୍ତ ଆବଶ୍ୟକ, କିନ୍ତୁ ତାହା ଏକମାତ୍ର କାରଣ ନୁହେଁ । ତାହା ହୋଇଥିଲେ ସୌରଜଗତ ମଧ୍ୟରେ ଥିବା ଅନ୍ୟ ଗ୍ରହମାନଙ୍କରେ ମଧ୍ୟ ଜୀବର ସନ୍ଧାନ ମିଳିଥାଆନ୍ତା, କାରଣ ପୃଥିବୀ ଓ ସୌରଜଗତର ଅନ୍ୟାନ୍ୟ ଗ୍ରହମାନେ ପ୍ରାୟ ଗୋଟିଏ ମୂଳ ଉପାଦାନରୁ ସୃଷ୍ଟି ହୋଇଛନ୍ତି ବୋଲି ପୂର୍ବରୁ ଉଲ୍ଲେଖ କରାଯାଇଛ । ପୃଥିବୀର ନିକଟ ତଥା ଅନେକ ସାମଞ୍ଜସ୍ୟ ବହନ କରୁଥିବା ମଙ୍ଗଳ ଗ୍ରହ ପୃଷ୍ଠରେ ଦୁଇଟି ମହାକାଶଯାନ ଦୀର୍ଘଦିନରୁ ସର୍ବେକ୍ଷଣ ଓ ଅନୁଧ୍ୟାନ କରି ମଧ୍ୟ କୌଣସି ଜୀବନର ସନ୍ଧାନ ପାଇପାରି ନାହାନ୍ତି । ଅନ୍ୟ ଗ୍ରହମାନଙ୍କରେ ଜୀବ ସୃଷ୍ଟିର ପ୍ରଶ୍ନ ଉଠୁନାହିଁ, ତା'ହେଲେ ସୌରଜଗତର ଆଠଟି ଗ୍ରହ ମଧ୍ୟରୁ (ପ୍ଲୁଟୋକୁ ନିକଟରେ ଆନ୍ତର୍ଜାତିକ ଜ୍ୟୋତିର୍ବିଜ୍ଞାନୀ ସଂସ୍ଥା ତା'ର କ୍ଷୁଦ୍ରକାୟତା ଯୋଗୁଁ ଗ୍ରହ ତାଲିକାରୁ ବାଦ ଦେଇଛନ୍ତି), କେବଳ ପୃଥିବୀ ପୃଷ୍ଠରେ ଜୀବସୃଷ୍ଟି କାହିଁକି ଓ କିପରି ହେଲା ?

ସୌରମଣ୍ଡଳରେ ପୃଥିବୀ ଏକ ଅନନ୍ୟ ସ୍ଥାନରେ ଅବସ୍ଥିତ, ଯାହାକି ଜୀବସୃଷ୍ଟି ପାଇଁ ଅନୁକୂଳ । ହଜାର ହଜାର କୋଟି ବର୍ଷ ଅତିବାହିତ ହେବା ପରେ, ସୌରଜଗତ ଯେତେବେଳେ ଆପେକ୍ଷିକ ଭାବେ ସ୍ଥିର ଅବସ୍ଥାକୁ ଆସିଛି, ସୂର୍ଯ୍ୟଙ୍କ ଚତୁଃପାର୍ଶ୍ୱରେ ପ୍ରଦକ୍ଷିଣ କରୁଥିବା ଗ୍ରହମାନଙ୍କ ମଧ୍ୟରୁ କେବଳ ପୃଥିବୀ ଏକ ଏଭଳି ଦୂରତାରେ ପ୍ରଦକ୍ଷିଣ କରୁଛି, ଯାହାକି ସୂର୍ଯ୍ୟଙ୍କ ଠାରୁ ଏତେ ଦୂରରେ ନାହିଁ, ଯାହାଦ୍ୱାରାକି ସମସ୍ତ ବସ୍ତୁ କେବଳ ହିମଖଣ୍ଡରେ ରୂପାନ୍ତରିତ ହୋଇଯିବ ଏବଂ ଏହା ମଧ୍ୟ ବୁଧ ଓ ଶୁକ୍ର ଭଳି ଏତେ ନିକଟରେ ଅବସ୍ଥିତ ନୁହେଁ, ଯାହାଦ୍ୱାରା ସମସ୍ତ ବସ୍ତୁ କେବଳ ବାଷ୍ପୀୟିତ ଅବସ୍ଥାରେ ରହିଯିବ । ତେଣୁ ସୌରମଣ୍ଡଳରେ ପୃଥିବୀର ଆପେକ୍ଷିକ ସ୍ଥିତି ହେଲା ପ୍ରଥମ କାରଣ, ଯାହାଦ୍ୱାରା ଏଠାରେ ଏକ ନିର୍ଦ୍ଦିଷ୍ଟ ସମୟରେ ଜୀବ ସୃଷ୍ଟି ପାଇଁ ଏକ ଅନୁକୂଳ ପରିସ୍ଥିତି ଆସିପାରିଲା । ଦ୍ୱିତୀୟ କାରଣ ହେଲା, ଏହି ବିଶେଷ ସ୍ଥିତି ଯୋଗୁଁ ଏଠାରେ ଜଳ ସୃଷ୍ଟି ସମ୍ଭବ ହୋଇପାରିଲା । ଜଳ ବ୍ୟତୀତ ଜୀବସୃଷ୍ଟି ସମ୍ଭବ ନୁହେଁ, ତେଣୁ ବର୍ତ୍ତମାନ ବୈଜ୍ଞାନିକମାନେ ବିଶ୍ୱଜଗତର ଅନ୍ୟ ସ୍ଥାନରେ ଜୀବ ସୃଷ୍ଟିର ସନ୍ଧାନ କରିବା ନିମିତ୍ତ ପ୍ରଥମେ ଜଳର ସନ୍ଧାନ କରୁଛନ୍ତି । ତୃତୀୟ କାରଣ ହେଲା ପୃଥିବୀର କକ୍ଷ, ଯଦିଓ ଗାଣିତିକ ଦୃଷ୍ଟିରୁ ଏହାକୁ ଏଲିପ୍‌ଟିକ୍ କକ୍ଷ ବୋଲି କୁହାଯାଉଛି, ଏହା ବୃତ୍ତଠାରୁ ବିଶେଷ ତଫାତ୍ ନୁହେଁ । ତେଣୁ ବର୍ଷଯାକ ଯେଉଁ ଋତୁ ପରିବର୍ତ୍ତନ ହେଉଛି, ତାହା ଏତେ ବେଶୀ ମାତ୍ରାରେ ପରିବର୍ତ୍ତନ ହେଉନାହିଁ ବା ଚରମ ପରିସ୍ଥିତି ସୃଷ୍ଟି କରୁନାହିଁ  ଯାହାକି ଭୂପୃଷ୍ଠର ଜୀବର ଜୀବନକୁ ବିପଦଶଙ୍କୁଳ କରିବ । ସୌଭାଗ୍ୟବଶତଃ ସୌରମଣ୍ଡଳରେ ଥିବା ଗ୍ରହାଣୁପୁଞ୍ଜ ତଥା ସୁପରନୋଭା ବିସ୍ଫୋରଣର ସମସ୍ତ ଆବର୍ଜନା, ମଙ୍ଗଳ ଓ ବୃହସ୍ପତି ଗ୍ରହ ମଧ୍ୟରେ ରହିଯାଇଛି । ସୌରଜଗତର ବୃହତ୍ତମ ଗ୍ରହ ବୃହସ୍ପତି ତା'ର ପ୍ରବଳ ମାଧ୍ୟାକର୍ଷଣ ଶକ୍ତିଦ୍ୱାରା ସେସବୁକୁ ଆକର୍ଷିତ କରି ରଖିଛି, ଯାହାଫଳରେ ତାହା ପୃଥିବୀ ପୃଷ୍ଠରେ ଆଘାତ ସୃଷ୍ଟି କରିପାରୁନାହାନ୍ତି । ଏହା ସତ୍ତ୍ୱେ, କେତେକ ବୈଜ୍ଞାନିକଙ୍କ ମତରେ ଲକ୍ଷ ଲକ୍ଷ ବର୍ଷ ପୂର୍ବରୁ ଗୋଟିଏ ଗ୍ରହାଣୁ ପୃଥିବୀ ପୃଷ୍ଠକୁ ଆଘାତ କରିଥିଲା, ଯାହାଫଳରେ ବହୁ ପରିମାଣର ଧୂଳିକଣା ପୃଥିବୀ ବାୟୁମଣ୍ଡଳକୁ ବହୁବର୍ଷ ଧରି ଆଚ୍ଛାଦିଦ କରି ରଖିଲା । ଏହାଫଳରେ ସୂର୍ଯ୍ୟକିରଣ ଭୂପୃଷ୍ଠରେ ଆଦୌ ପଡ଼ିଲା ନାହିଁ । ବୋଧହୁଏ ତାହା ଥିଲା ପୃଥିବୀ ପୃଷ୍ଠର ପ୍ରଥମ ହୀମଯୁଗ । ଏହି ସମୟରେ ଡାଇନାସର ଭଳି ବୃହତ ପ୍ରାଣୀ, ଯାହାର ସୃଷ୍ଟି ପ୍ରାୟ ଦଶକୋଟି ବର୍ଷ ପୂର୍ବରୁ ହୋଇଥିଲା, ତାହା ପୃଥିବୀରୁ ସଂପୂର୍ଣ୍ଣ ବିଲୋପ ହୋଇଗଲା । ମାତ୍ର ଶହେ ବର୍ଷ ପୂର୍ବେ ୧୯୦୮ ମସିହାରେ ସାଇବେରିଆର ଜଙ୍ଗଲ ମଧ୍ୟରେ ଗୋଟିଏ କ୍ଷୁଦ୍ର ଗ୍ରହାଣୁ ଆଘାତ କରିଥିଲା ଯାହାକି ଦୁଇହଜାର ବର୍ଗ କିଲୋମିଟର ଅଞ୍ଚଳକୁ ଧ୍ୱଂସ କରି ଦେଇଥିଲା ଏବଂ ତାହାର ଶକ୍ତି ଥିଲା ହିରୋସିମାରେ ଆମେରିକା ନିକ୍ଷେପ କରିଥିବା ପରମାଣୁ ବୋମାର ହଜାରଗୁଣ । ତା' ହେଲେ ପୃଥିବୀ ଯଦି ମଙ୍ଗଳ ବା

ବୃହସ୍ପତି ଗ୍ରହଭଳି ଗ୍ରହାଣୁପୁଞ୍ଜ ଅଞ୍ଚଳ ପାଖାପାଖି ଥାଆନ୍ତା, ତା'ହେଲେ ପୃଥିବୀ ପୃଷ୍ଠରେ ଜୀବ ସୃଷ୍ଟି ହେବା ବା ବଞ୍ଚି ରହିବା ସମ୍ଭବପର ହୋଇନଥାନ୍ତା । ଜୀବ ସୃଷ୍ଟି ଓ ତା'ର ବାସୋପଯୋଗୀ ହେବାର ଅନ୍ୟ କାରଣ ହେଲା, ପୃଥିବୀର ମାତ୍ର ଗୋଟିଏ ଅପେକ୍ଷାକୃତ ବୃହତ୍ ଉପଗ୍ରହ ଚନ୍ଦ୍ର ଥିବା ଯୋଗୁଁ ଏହାର ଅକ୍ଷରେ ସ୍ଥିରତା ସୃଷ୍ଟି ହୋଇଛି, ଯାହାକି ପ୍ରାୟ ସ୍ଥାୟୀ ଭାବେ ଏକ ନିର୍ଦ୍ଦିଷ୍ଟ କୋଣ (୨୩ ୧/୨°) ତୀର୍ଯ୍ୟକ ଭାବରେ ନିଜସ୍ୱ ଅକ୍ଷରେ ଘୂର୍ଣ୍ଣୟମାନ ଅବସ୍ଥାରେ ରହିପାରୁଛି, ଫଳରେ ପୃଥିବୀର ବିଭିନ୍ନ ଅଞ୍ଚଳ - ମେରୁଠାରୁ ବିଷୁବ ମଣ୍ଡଳ ପର୍ଯ୍ୟନ୍ତ - ଜଳବାୟୁରେ ଆପେକ୍ଷିକ ସ୍ଥାୟୀତ୍ୱ ରକ୍ଷା ହେଉଛି, ଯାହାକି ଜୀବନଧାରଣ ନିମିତ୍ତ ଅତ୍ୟନ୍ତ ଅନୁକୂଳ । ଏଗୁଡ଼ିକ ହେଲା ପୃଥିବୀର ବିଶେଷସ୍ଥିତି ଓ ପରିବେଶ ଜନିତ ଅନୁକୂଳ ଅବସ୍ଥା ଯାହାକି ଜୀବ ସୃଷ୍ଟିର ମୁଖ୍ୟ କାରଣ ।

ବର୍ତ୍ତମାନ ଅନୁଧ୍ୟାନ କରିବା, ସୁପରନୋଭା ବିସ୍ଫୋରଣ ଦ୍ୱାରା ପୃଥିବୀ ସୃଷ୍ଟି ହୋଇ, ପରେ ଉତ୍ତପ୍ତ ଅବସ୍ଥାରୁ ଶୀତଳ ଅବସ୍ଥାକୁ ଆସି, ରାସାୟନିକ ପ୍ରକ୍ରିୟାରେ ମୁଖ୍ୟତଃ ଉଦ୍‌ଯାନ, ଯାହାକି ସମସ୍ତ ତାରକାମାନଙ୍କର ମୁଖ୍ୟ ବସ୍ତୁ - ତାହାର ଉପସ୍ଥିତିରେ ଇଲ୍‌ମେନାଇଟ୍ ଓ ସିଲିକା ଆଦି ଶିଳାଖଣ୍ଡରୁ ଅମ୍ଳଜାନର ରାସାୟନିକ ସଂଯୋଗ ହେଲା । ତାହା ଦ୍ୱାରା ଜଳର ସୃଷ୍ଟି ହେବା ପରେ ମଧ୍ୟ, ସଂପୂର୍ଣ୍ଣ ନିର୍ଜୀବ ପଦାର୍ଥରୁ ପ୍ରଥମେ ଜୀବସୃଷ୍ଟି କ'ଣ ସମ୍ଭବ ? ଏ ପ୍ରଶ୍ନର ଉତ୍ତର ଆଜିର ବିଜ୍ଞାନ ସକାରାତ୍ମକ ଭାବେ ଦେଇସାରିଛି ।

ବର୍ଷାଦିନେ ବନ୍ଦ ଡବା ମଧ୍ୟରେ ଥିବା ସୁଜି ବା ଡାଲିରେ ପୋକ ହେଉଥିବା ପ୍ରତ୍ୟେକ ଲୋକ ଜାଣନ୍ତି । ବନ୍ଦ ଡବା ମଧ୍ୟକୁ ବାହାରୁ ପୋକ ପ୍ରବେଶ କରିବା ସମ୍ଭବ ନୁହେଁ । ତେଣୁ, ସେମାନେ ସେହି ଡବା ମଧ୍ୟରେ ଜନ୍ମ ନେଇଥାଆନ୍ତି । ତା'ହେଲେ ସୁଜି ବା ଡାଲି ଭଳି ନିର୍ଜିବ ବସ୍ତୁରୁ ଜୀବ ସୃଷ୍ଟି ହେବା ସାଧାରଣ ଲୋକ ବହୁତ ଦିନରୁ ଦେଖିଆସୁଛନ୍ତି । ଏହା ପାଇଁ ବଡ ବଡ଼ ବୈଜ୍ଞାନିକମାନେ ଏତେ ଗବେଷଣା ତଥା ପରୀକ୍ଷା ନିରୀକ୍ଷା କରିବା କ'ଣ ଦରକାର ? ଏ ପ୍ରସଙ୍ଗଟା ଏତେ ସହଜ ନୁହେଁ । ଯେ କୌଣସି ଜୀବ ସୃଷ୍ଟିର ମୂଳ ବସ୍ତୁ ହେଲା ପ୍ରୋଟିନ୍, ଯାହାକି ଏକ ବୃହତ ଜୈବିକ ଅଣୁ । ଉପରୋକ୍ତ ସୁଜି ବା ଡାଲି ହେଉଛି ପ୍ରୋଟିନ୍ ଯୁକ୍ତ, କାରଣ ଏହା ଉଦ୍ଭିଦରୁ ସୃଷ୍ଟି ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ବିଂଶ ଶତାବ୍ଦୀର ମଧ୍ୟ ଭାଗରେ ଅଣୁ ଜୀବବିଜ୍ଞାନର ବିକାଶ ହେବାପରେ ଜୀବଜଗତ ସୃଷ୍ଟିରେ ପ୍ରୋଟିନ ଅଣୁର ଭୂମିକା ସମ୍ବନ୍ଧରେ ବିଶେଷ ତତ୍ତ୍ୱ ଆବିଷ୍କାର ହୋଇଛି । କିନ୍ତୁ, ଅନେକ ବର୍ଷ ପୂର୍ବରୁ, ଊନବିଂଶ ଶତାବ୍ଦୀରେ ଫ୍ରେଡେରିକ ଏଞ୍ଜେଲ୍‌ସ ନିଜେ ଜଣେ ପେଷାଦାର ବୈଜ୍ଞାନିକ ନହୋଇ ମଧ୍ୟ ଲେଖିଥିଲେ, "ଜୀବନ ହେଉଛି ଏହି ପ୍ରୋଟିନ୍ ଅଣୁ ସମୂହର ଏକ ବିଶେଷସ୍ଥିତି, ଯାହାକି ତା'ର ପ୍ରାକୃତିକ ପରିବେଶରୁ ଖାଦ୍ୟ ଗ୍ରହଣ କରି ପରିପାଚନ ପ୍ରକ୍ରିୟା ଜରିଆରେ ନିଜର ତଥା ତା'ର ବଂଶର ବୃଦ୍ଧି

କରିଥାଏ । ଏହି ପରିପାଚନ ପ୍ରକ୍ରିୟା ଜରିଆରେ ନିଜର ତଥା ତା'ର ବଂଶର ବୃଦ୍ଧି କରିଥାଏ । ଏହି ପରିପାଚନ କ୍ରିୟା ଖୁବ୍ କ୍ଷୀଣ ଭାବରେ ହେଲେ ବି, ଅନେକ ଅଜୈବ ବସ୍ତୁରେ ମଧ୍ୟ ଘଟିଥାଏ" ।

କିନ୍ତୁ ଗୋଟିଏ ପ୍ରଶ୍ନ ଉଠୁଛି, ଏହି ପ୍ରୋଟିନ୍ ନାମକ ଜୈବ ବସ୍ତୁଟି କିପରି ସୃଷ୍ଟି ହେଲା ? ସବୁ ଜୀବବିଜ୍ଞାନୀ ସ୍ୱୀକାର କରିଛନ୍ତି ଯେ ସମସ୍ତ ଜୀବ ସୃଷ୍ଟିର ମୂଳ ଆଧାର ହେଉଛି ପ୍ରୋଟିନ୍ । ପ୍ରୋଟିନ୍‌ର ମୁଖ୍ୟ ମୌଳିକ ପଦାର୍ଥ ହେଲା ଅଙ୍ଗାର ବା କାର୍ବନ । ପୂର୍ବରୁ ଉଲ୍ଲେଖ କରାଯାଇଛି ଯେ ନିକଟରେ ଏକ ତାରକା ବିସ୍ଫୋରଣ ଦ୍ୱାରା ବିଚ୍ଛୁରିତ ପଦାର୍ଥ ମଧ୍ୟରେ ଅଙ୍ଗାର ବା କାର୍ବନ୍‌ର ଉପସ୍ଥିତିର ପ୍ରମାଣ ବୈଜ୍ଞାନିକମାନେ ପାଇଛନ୍ତି । ତା'ଛଡା ସମସ୍ତ ମହାଜାଗତିକ ବସ୍ତୁରେ ମୁଖ୍ୟ ଅଂଶ ହେଉଛି ଉଦ୍‌ଜାନ । ଏହା ସମସ୍ତେ ଜାଣନ୍ତି ଉଦ୍‌ଜାନ ହେଉଛି ସବୁଠାରୁ ସରଳତମ ମୌଳିକ ବସ୍ତୁ, ଯାହାର ପରମାଣୁରେ ମାତ୍ର ଗୋଟିଏ ପ୍ରୋଟନ୍ ଓ ଗୋଟିଏ ଇଲେକ୍‌ଟ୍ରନ୍ ଅଛି । ଦୁନିଆର ସମସ୍ତ ମୌଳିକ ବସ୍ତୁ (ପ୍ରାୟ ଏକ ଶହ ମୌଳିକ ବସ୍ତୁ ଏବେ ସୁଦ୍ଧା ଆବିଷ୍କୃତ), ବିଭିନ୍ନ ସଂଖ୍ୟକ ଏହି କ୍ଷୁଦ୍ର କଣିକାର ସମାହାରରେ ସୃଷ୍ଟ । ଅନ୍ୟ ଏକ କ୍ଷୁଦ୍ର କଣିକା ନିଉଟନ୍ ଯଦିଓ କେତେକ ବସ୍ତୁର ପରମାଣୁରେ ଅବସ୍ଥିତ, ରାସାୟନିକ ପ୍ରକ୍ରିୟାରେ ଏହାର ଭୂମିକା ଗୁରୁତ୍ୱପୂର୍ଣ୍ଣ ନୁହେଁ । ଏହି କ୍ଷୁଦ୍ର କଣିକାଗୁଡିକର ସଂଖ୍ୟାର ପରିବର୍ତ୍ତନଦ୍ୱାରା ଗୋଟିଏ ମୌଳିକ ବସ୍ତୁକୁ ଅନ୍ୟ ଏକ ବସ୍ତୁରେ ପରିବର୍ତ୍ତନ କରିବା ବିଜ୍ଞାନଗାରରେ ସମ୍ଭବ ହୋଇପାରୁଛି । ତେଣୁ, ଯୁକ୍ତି ପାଇଁ ଯଦି ଧରି ନିଆଯାଏ ଯେ ପୃଥିବୀ ଗ୍ୟାସୀୟ ଅବସ୍ଥାରେ ଥିବାବେଳେ ଏଥିରେ ଅଙ୍ଗାର ଅଣୁ ନଥିଲା, ତଥାପି ପରବର୍ତ୍ତୀ ସମୟରେ ରାସାୟନିକ ପ୍ରକ୍ରିୟାରେ ଏହାର ସୃଷ୍ଟି ହୋଇପାରିବା ସମ୍ଭାବନାକୁ ଅସ୍ୱୀକାର କରାଯାଇପାରିବ ନାହିଁ ।

ଜର୍ମାନର ଜଣେ ବିଶିଷ୍ଟ ବୈଜ୍ଞାନିକ ମିଲର୍ ୧୯୫୨ ମସିହାରେ ପରୀକ୍ଷାଗାରରେ ଅଜୈବ (inorganic) ବସ୍ତୁରୁ ଜୈବ (organic) ବସ୍ତୁ ପ୍ରସ୍ତୁତ କରି ଦେଖାଇ ସାରିଛନ୍ତି । ନିକଟରେ ଏକ ପ୍ରମୁଖ ଇଂରାଜୀ ସମ୍ବାଦପତ୍ର ଟାଇମ୍‌ସ ଅଫ୍ ଇଣ୍ଡିଆରେ ଏକ ପ୍ରକାଶିତ ପ୍ରବନ୍ଧରେ ଉଲ୍ଲେଖ ଥିଲା, "ପୃଥିବୀର କେତେକ ବୈଜ୍ଞାନିକ ସଂପୂର୍ଣ୍ଣ କୃତ୍ରିମ ଜୀବ ସୃଷ୍ଟି କରିବାର ଯେଉଁ ପ୍ରଚେଷ୍ଟା କରି ଆସୁଥିଲେ, ତାହା ଖୁବ୍‌ଶୀଘ୍ର ଫଳପ୍ରଦ ହେବାକୁ ଯାଉଛି । ଏହି ସମ୍ବାଦ ପ୍ରକାଶର ଅଳ୍ପଦିନ ମଧ୍ୟରେ ଆମେରିକାର ଜଣେ ପ୍ରସିଦ୍ଧ ଜୀବବିଜ୍ଞାନୀ କ୍ରେଗ୍ ଭେଣ୍ଟର୍ ଯେ କି ମନୁଷ୍ୟର ଗୁଣସୂତ୍ର (Human Genome) ଆବିଷ୍କାର କରିଥିଲେ, ସେ ଘୋଷଣା କଲେ ଯେ, ନୋବେଲ ପୁରସ୍କାର ବିଜେତା ବୈଜ୍ଞାନିକ ହାମିଲ୍‌ଟନ୍ ସ୍ମିଥ୍‌ଙ୍କ ନେତୃତ୍ୱରେ କୋଡିଏ ଜଣ ବିଶିଷ୍ଟ ବୈଜ୍ଞାନିକ ଏକ ଗୁଣସୂତ୍ର (Chromosome) ସୃଷ୍ଟି କରିପାରିଛନ୍ତି । ଅନ୍ୟ ସମ୍ବାଦରେ, ଜଣେ ଜର୍ମାନ ବୈଜ୍ଞାନିକ ଗ୍ରେଗ୍‌ରେ ମରଫିଲ୍ ତାଙ୍କର ଏକ ଗବେଷଣାର ଫଳାଫଳ ପ୍ରକାଶ କରି ଲେଖିଛନ୍ତି "ବିଦ୍ୟୁତ୍ ଚାର୍ଯ ହୋଇଥିବା ଧୂଳିକଣା,

ନିଜକୁ ଡିଏନ୍‌ଏ ସଦୃଶ ସଂଗଠିତ କରି ସଜୀବ ଭଳି ବ୍ୟବହାର କରୁଛି ଏହା ସବୁ ହେଲା ବିଜ୍ଞାନଗାରରେ କୃତ୍ରିମ ଜୀବ ସୃଷ୍ଟିର ସଫଳ କାହାଣୀ, ଯାହାକି ପ୍ରମାଣ କରୁଛି ପୃଥିବୀ ପୃଷ୍ଠରେ ଜୀବ ସୃଷ୍ଟି ନିମିତ୍ତ କୌଣସି ଐଶ୍ୱରିକ ଶକ୍ତିର ଆବଶ୍ୟକତା ନାହିଁ ।

କୌଣସି ବିଜ୍ଞାନାଗାର ନୁହେଁ, ଭୂପୃଷ୍ଠରେ ଅତି ପ୍ରାଚୀନ କାଳରେ କୌଣସି ଯନ୍ତ୍ରପାତିର ବିନା ସହାୟତାରେ ସ୍ୱତଃସ୍ଫୂର୍ତ୍ତ ଭାବରେ କିପରି ଜୀବ ସୃଷ୍ଟି ହୋଇପାରିଥାଏ ତାହାର ଏକ ବିଶ୍ୱାସ ଯୋଗ୍ୟ ତତ୍ତ୍ୱ ପ୍ରକାଶ କରିଛନ୍ତି, ଭାରତର ଜଣେ ଲୋକପ୍ରିୟ ବିଜ୍ଞାନ ଲେଖକ, ଯେ କି ତାଙ୍କର ଏହି ଅମୂଲ୍ୟ ଅବଦାନ ପାଇଁ ଜାତିସଂଘ ଦ୍ୱାରା ପ୍ରଦତ୍ତ କଳିଙ୍ଗ ପୁରସ୍କାର ପାଇଛନ୍ତି । ସେ ବ୍ୟକ୍ତି ଜଣକ ହେଲେ ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ବୈଜ୍ଞାନିକ ଡକ୍ଟର ଜଗଜିତ୍ ସିଂ । ସେ ଆଇନ୍‌ଷ୍ଟାଇନ୍‌ଙ୍କ ପରବର୍ତ୍ତୀ ସମୟରେ ବିଜ୍ଞାନ ଜଗତରେ ଏକ ପ୍ରକାର ଆଲୋଡନ ସୃଷ୍ଟି କରିଥିବା 'କ୍ୱାଣ୍ଟମ୍ ମେକାନିକ୍‌ସ' ନିୟମର ଆଧାରରେ ପ୍ରକାଶ କରିବାକୁ ଯାଇ କହିଛନ୍ତି, "କ୍ୱାଣ୍ଟମ୍ ତତ୍ତ୍ୱ ଏହା ସୂଚନା ଦିଏ ଯେ , ପୂର୍ଣ୍ଣଶୂନ୍ୟ ଉତ୍ତାପ (-୨୭୩° ସେ.) ବ୍ୟତୀତ, ଅନ୍ୟ ସବୁ ଅବସ୍ଥାରେ, ଅତି କ୍ଷୁଦ୍ରକଣା ମନ୍ଥର ଭାବରେ ପରିବର୍ତ୍ତିତ ହୋଇ, କ୍ରମଶଃ ସେହି ପରିବର୍ତ୍ତନ ଏକତ୍ରିତ ହୋଇ ବୃହତ୍ତର ପରିବର୍ତ୍ତନ ଆଣିଥାଏ ଏବଂ ଏହା ସୃଷ୍ଟିର ଗଠନକୁ ପରିବର୍ତ୍ତନ କରିବା ଅନିବାର୍ଯ୍ୟ । ଡକ୍ଟର ସିଂ ତାଙ୍କର ଏକ ଲୋକପ୍ରିୟ ପୁସ୍ତକ 'ଜେନେଟିକ୍‌ସ ଟୁଡେ' ରେ ଉଲ୍ଲେଖ କରିଛନ୍ତି ଯେ, "ଗୋଟିଏ ସର୍ବନିମ୍ନସ୍ତରଠାରୁ ଅଧିକ ପରିବର୍ତ୍ତନ ଘଟିଲେ, ସେହି ପରିବର୍ତ୍ତନ ଖାଲି ସ୍ଥାୟୀ ହେବ, ତାହା ନୁହେଁ, ଏହାର ଉତ୍ତୋରତ୍ତର ବୃଦ୍ଧି ଘଟିଚାଲିବ । ସେହି ନିୟମରେ ଆଜି କ୍ଷୁଦ୍ର ପ୍ରୋଟିନ୍ ଅଣୁଠାରୁ ମନୁଷ୍ୟ ପର୍ଯ୍ୟନ୍ତ ସବୁଠି ବିବର୍ତ୍ତନର ଦୃଶ୍ୟ ପ୍ରତୀୟମାନ ହୁଏ । ପ୍ରକୃତରେ କହିବାକୁ ଗଲେ, ଡାରଓ୍ୱିନଙ୍କର ବିବର୍ତ୍ତନ ଓ ପ୍ରାକୃତିକ ଉଦ୍‌ବରଣ ବା ତତ୍ତ୍ୱର, ଏହି ନିୟମ ହିଁ ମୂଳ କାରଣ ।

ଜୀବ ସୃଷ୍ଟିର ପ୍ରଥମାବସ୍ଥା ହେଉଛି, ପ୍ରୋଟୋଜା ଭଳି ଏକ କୋଷୀ ଜୀବର ସୃଷ୍ଟି ଏବଂ ତାହା ଭୂପୃଷ୍ଠରେ ଏହି ଏକକୋଷୀ ଜୀବ ସୃଷ୍ଟିର ପ୍ରାୟ ତିରିଶ କୋଟି ବର୍ଷ ବିତିଗଲା ପରେ ତା'ଠାରୁ ସାମାନ୍ୟ ଅଧିକ ଜଟିଳ ବହୁକୋଷୀ ଜୀବ ଟ୍ରାଇଲୋ ବାଇଟ୍‌ସର ଜନ୍ମ । ବର୍ତ୍ତମାନ ପୃଥିବୀର କେତେକ ସ୍ଥାନରୁ ଏହି ଜୀବର ଜୀବାଶ୍ମ ମିଳିଛି, ଯାହାର ପରୀକ୍ଷା କରି ବୈଜ୍ଞାନିକମାନେ ଅନୁମାନ କରୁଛନ୍ତି, ଏହି ଜୀବ ପ୍ରାୟ ପଚାଶ କୋଟି ବର୍ଷ ପୂର୍ବେ ଭୂପୃଷ୍ଠରେ ସୃଷ୍ଟି ହୋଇଥିଲା । ଚିକାଗୋ ବିଶ୍ୱବିଦ୍ୟାଳୟର କେତେଜଣ ଜୀବବିଜ୍ଞାନୀ ମିଳିତ ଗବେଷଣା ଦ୍ୱାରା, ଏକ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ, ଟ୍ରାଇଲୋବାଇଟ୍ ସୃଷ୍ଟି ପରଠାରୁ ଅନ୍ୟାନ୍ୟ ଜୀବସୃଷ୍ଟିର ଯୁଗକୁ, ଯାହା ସାଧାରଣତଃ 'କ୍ରାମ୍ବ୍ରିୟାନ' ଯୁଗ ରୂପେ ପରିଚିତ, ସେହି ଯୁଗରେ ହିଁ ଅଧିକାଂଶ ପ୍ରକାର ଜୀବମାନଙ୍କର ସୃଷ୍ଟି ହୋଇଛି । ଏହି ସମୟରେ ପ୍ରଥମ କରି ବହୁ ପ୍ରକାର ମେରୁଦଣ୍ଡୀ ପ୍ରାଣୀମାନଙ୍କର ଜନ୍ମ ହୋଇଛି ।

ଏପରିକି ପୃଥିବୀର ପଥମ ମେରୁଦଣ୍ଡୀ ପ୍ରାଣୀ ମାଛର ସୃଷ୍ଟି ହୋଇଛି । ସେତେବେଳେ ପ୍ରାୟ ସବୁ ଜୀବଙ୍କର ସୃଷ୍ଟି ଜଳ ମଧ୍ୟରେ ହିଁ ହୋଇଥିଲା । ଭୂପୃଷ୍ଠରେ ସ୍ଥଳଭାଗରେ କେବଳ କେତେକ ବୃକ୍ଷଲତାର ସୃଷ୍ଟି ହୋଇଥିଲା ।

ଏଠାରେ ଗୋଟିଏ ମୂଳ ତତ୍ତ୍ୱ ମନେ ରଖିବା ଦରକାରଯେ, ଏକକୋଷୀ ବ୍ୟାକ୍‌ଟେରିଆଠାରୁ ବହୁତ ଜଟିଳ ପ୍ରକ୍ରିୟାରେ ସୃଷ୍ଟି ହେଇଥିବା ମନୁଷ୍ୟ ପର୍ଯ୍ୟନ୍ତ, ସବୁ ଗୋଟିଏ ଜୈବିକ ନିୟମରେ ପରଚାଳିତ । ଜୀବର ମୂଳବସ୍ତୁ ଡିଏନ୍‌ଏର ଗଠନ ରହସ୍ୟ ଆବିଷ୍କାର ପାଇଁ ନୋବେଲ ପୁରସ୍କାର ପାଇଥିବା ବିଶିଷ୍ଟ ଜୀବ ବିଜ୍ଞନୀ ଫ୍ରାନ୍‌ସିସ୍ କ୍ରିକ୍ ତାଙ୍କର ଏକ ପ୍ରସିଦ୍ଧ ପୁସ୍ତକ ଆଷ୍ଟୋନିସିଂ ହାଇପୋଥେସିସ୍ -ଏ ସାଇଣ୍ଟିଫିକ୍ ସର୍ଚ୍ଚଫର ଦି ସୋଲ୍'ରେ ଉଲ୍ଲେଖ କରିଛନ୍ତି, "ଏକକୋଷୀ ବ୍ୟାକ୍‌ଟେରିଆ ଠାରୁ ମନୁଷ୍ୟ ପର୍ଯ୍ୟନ୍ତ ସମସ୍ତେ ଜୈବରସାୟନର ଗେଟିଏ ନିୟମରେ ପରିଚାଳିତ । ତେଣୁ ପୃଥିବୀ ପୃଷ୍ଠରେ ବହୁ ପ୍ରାଣୀ ଉଦ୍ଭିଦ ପ୍ରତିନିୟତ ବିବର୍ତ୍ତନର ନିୟମରେ ପରିବର୍ତ୍ତିତ ହେଉଛନ୍ତି । ଡକ୍ଟର ଜଗଜିତ୍ ସିଂ ତାଙ୍କର " ଜେନେଟିକ୍‌ସ୍ ଟୁଡେ" ପୁସ୍ତକରେ ଏହି ନିୟମର ଏକ ବିସ୍ତାରିତ ଆଲୋଚନା କରିବାକୁ ଯାଇ ଲେଖିଛନ୍ତି, "ଯେହେତୁ ସମଗ୍ର ଜୀବଜଗତର ସବୁ ପ୍ରୋଟିନ୍ ଅଣୁ ଗୋଟିଏ ପ୍ରକାର ଆମିନୋଏସିଡ୍ (ଏଲ୍-ଜାତୀୟ) ଦ୍ୱାରା ପ୍ରସ୍ତୁତ ହୋଇଛି ଏବଂ ପ୍ରତ୍ୟେକ ଜୀବର ମୂଳବସ୍ତୁ ହେଲା ପ୍ରୋଟିନ୍, ଆଉ ସମସ୍ତ ଅନୁବଂଶିକ ସୂତ୍ର ମଧ୍ୟ ଗୋଟିଏ ଧାରାରେ ପରିଚାଳିତ ହେଉଛି, ତେଣୁ ପୃଥିବୀର ସମଗ୍ର ଜୀବଜଗତରେ ଏକ ପ୍ରକାର ଜୈବ ରାସାୟନିକ ନିୟମ ଦେଖିବାକୁ ମିଳେ ।

ଗୋଟିଏ ସୂତ୍ରରେ ସମସ୍ତ ଜୀବଜଗତ ପରିଚାଳିତ ହେଉଥିବାବେଳେ, ଆଜି ପୃଥିବୀ ପୃଷ୍ଠରେ ଆନୁମାନିକ ତିରିଶରୁ ଚାଳିଶ କୋଟି ପ୍ରକାରର ଜୀବ(Species) ଖାଲି ଅଛନ୍ତି ତାହା ନୁହେଁ, ପ୍ରତ୍ୟେକ ପ୍ରଜାତିର ଜୀବଙ୍କର, ବିଭିନ୍ନ ବ୍ୟକ୍ତି ବା ସଭ୍ୟ ମଧ୍ୟ ପରସ୍ପରଠାରୁ ଅନେକାଂଶରେ ପୃଥକ୍, ଯାହାକି ମନୁଷ୍ୟ ଭଳି ଏକ ଜଟିଳ ଜୀବ କ୍ଷେତ୍ରରେ ଏହା ସ୍ପଷ୍ଟ ଦେଖିବାକୁ ମିଳେ । ପୃଥିବୀ ପୃଷ୍ଠରେ ଆଜି ବାସ କରୁଥିବା ପ୍ରାୟ ସାତଶହ କୋଟି ମନୁଷ୍ୟ, କେହି କାହା ସହିତ ସଂପୂର୍ଣ୍ଣ ରୂପେ ସମାନ ନୁହଁନ୍ତି । ଆଜିର ଆନୁବଂଶିକ ବିଜ୍ଞାନ (Genetics), ଏସବୁର କାରଣ ଓ ଏହାର ନିୟମ ଗୁଡିକୁ ସଂପୂର୍ଣ୍ଣ ରୂପେ ଉନ୍ମୋଚିତ କରିସାରିଛି । ଏ ସବୁର ସବିଶେଷ ଆଲୋଚନା କରିବାର ଅବକାଶ ଏଠାରେ ନାହିଁ ।

ପ୍ରାୟ ଶହେ କୋଟି ବର୍ଷ ପୂର୍ବେ ଭୂପୃଷ୍ଠରେ ଏକକୋଷୀ ଜୀବର ସୃଷ୍ଟି ହୋଇଥିଲା ବୋଲି ଅନେକ ବୈଜ୍ଞାନିକ ମତପୋଷଣ କରନ୍ତି । ଏକକୋଷୀ ଜୀବ ପ୍ରୋଟୋଜାଠାରୁ ମନୁଷ୍ୟ ପର୍ଯ୍ୟନ୍ତ ସୃଷ୍ଟି ହୋଇଥିବା ବିଭିନ୍ନ ପ୍ରଜାତିର ଜୀବଙ୍କ ମଧ୍ୟରୁ ବହୁ ପ୍ରକାରର ଜୀବ ଭୂପୃଷ୍ଠରୁ ସଂପୂର୍ଣ୍ଣ ଲୋପ ପାଇଯାଇଛନ୍ତି । ଅନେକ ନୂତନ ଜୀବର ସୃଷ୍ଟି ମଧ୍ୟ ହୋଇଛି ।

ଆଜିର ମନୁଷ୍ୟ ଯେଉଁ ଅବସ୍ଥାରେ ଅଛି ସେହି ଅବସ୍ଥାରେ ପ୍ରଥମରୁ ହିଁ ହଠାତ୍ ସୃଷ୍ଟି ହୋଇଥିଲା, ତା' ନୁହେଁ । ଏହ ମଧ ବହୁ ବିବର୍ତ୍ତନ ମଧ ଦେଇ ଗତି କରିଛି । ଏହା କାହାରି ମନଗଢ଼ା କଥା ନୁହେଁ । ଏସବୁର ପ୍ରତ୍ୟକ୍ଷ ପ୍ରମାଣ ବହୁ ଜୀବାଶ୍ମ ଆବିଷ୍କାର ଦ୍ୱାରା ସମ୍ଭବ ହୋଇଛି । ଜୀବଜଗତ ସମେତ ମନୁଷ୍ୟର ଏହି ବିବର୍ତ୍ତନର ତତ୍ତ୍ୱ ପ୍ରଥମ କରି ଚାର୍ଲସ ଡାରଓ୍ୱିନ୍ ଉନବିଂଶ ଶତାବ୍ଦୀର ମଧ୍ୟଭାଗରେ, ତାଙ୍କ ଯୁଗାନ୍ତକାରୀ ରଚନା ଓରିଜିନ୍ ଅଫ୍ ସ୍ପେସିସ୍ ଦ୍ୱାରା ପ୍ରମାଣିତ କରିଛନ୍ତି । ଏହି ବିବର୍ତ୍ତନ ଧାରାରେ ଆଧୁନିକ ମନୁଷ୍ୟ କିପରି ଏକ ଏପ୍ (Ape)ରୁ ହୋମିନିଡ୍ ଓ ତା'ପରେ ହୋମୋ ସାପିଏନ୍ ରେ - ଯାହାର ଅର୍ଥ ହେଉଛି ବୁଦ୍ଧିମାନ ମନୁଷ୍ୟ ପରିଣତ ହୋଇଛି, ତାହାର ସବିଶେଷ ଆଲୋଚନା ବିଭିନ୍ନ ବୈଜ୍ଞାନିକ ପ୍ରମାଣ ଆଧାରରେ ସେ କରିଯାଇଛନ୍ତି । ଡାରଓ୍ୱିନ୍‌ଙ୍କର ଏହି ବିବର୍ତ୍ତନବାଦର ତତ୍ତ୍ୱ ଆଜି ପୃଥିବୀର ସବୁ ଶିକ୍ଷିତ ବ୍ୟକ୍ତି ପ୍ରାୟ ଅଳ୍ପ ବହୁତ ଜାଣନ୍ତି ।

ଯେ କୌଣସି ବୈଜ୍ଞାନିକ ଆବିଷ୍କାର ଯେତେବେଳେ ପୂର୍ବରୁ ପ୍ରଚଳିତ ଧର୍ମୀୟ ବିଶ୍ୱାସ ବିରୁଦ୍ଧରେ ଯାଏ ସେତେବେଳେ ସବୁ ଧର୍ମଗୁରୁ ତଥା ସେମାନଙ୍କଦ୍ୱାରା ପ୍ରଭାବିତ ହୋଇଥିବା ଅଧିକାଂଶ ମନୁଷ୍ୟ ଏହିସବୁ ବୈଜ୍ଞାନିକ ଆବିଷ୍କାରକୁ ବିରୋଧ କରିଥାଆନ୍ତି । ଡାରଓ୍ୱିନଙ୍କ ଏହି ତତ୍ତ୍ୱକୁ ମଧ ପାଶ୍ଚାତ୍ୟ ଦେଶର ଖ୍ରୀଷ୍ଟିୟାନ ଧର୍ମଗୁରୁମାନେ ପ୍ରବଳ ବିରୋଧ କରିଥିଲେ, କାରଣ, ଏହି ତତ୍ତ୍ୱ ଜୀବ ସୃଷ୍ଟି ତଥା ମନୁଷ୍ୟ ସୃଷ୍ଟିରେ ଈଶ୍ୱରଙ୍କ ଭୂମିକାକୁ ସଂପୂର୍ଣ୍ଣ ଅନାବଶ୍ୟକ ବୋଲି ପ୍ରମାଣ କରିଥିଲା । ଡାରଓ୍ୱିନଙ୍କ ଏହି ଆବିଷ୍କାରର ଦେଢ଼ଶହ ବର୍ଷ ପରେ ଯେତେବେଳେ ପାଶ୍ଚାତ୍ୟ ଦେଶ ଗୁଡିକର ବହୁ ଶିକ୍ଷିତ ବ୍ୟକ୍ତି, ଏହି ତତ୍ତ୍ୱକୁ ସତ୍ୟ ବୋଲି ଗ୍ରହଣ କରିନେଲେ, ଏବଂ ଏହି ତତ୍ତ୍ୱ ଭିତ୍ତିରେ ଆହୁରି ଅନେକ ନୂଆ ନୂଆ ତଥ୍ୟ ଆବିଷ୍କୃତ ହେଲା, ବିବର୍ତ୍ତନବାଦ ପ୍ରାୟତଃ ଜୀବବିକାଶ ତଥା ମନୁଷ୍ୟ ବିକାଶର ସର୍ବସମ୍ମତ ତତ୍ତ୍ୱ ରୂପେ ଗୃହୀତ ହେଲା, ସେତେବେଳେ ନିଜର ଧର୍ମୀୟ ପତିଆରା ରକ୍ଷା କରିବା ପାଇଁ, ଖ୍ରୀଷ୍ଟିୟାନମାନଙ୍କର ସର୍ବଶ୍ରେଷ୍ଠ ଧର୍ମଗୁରୁ, ବର୍ତ୍ତମାନର ପୋପ୍ ବେନେଡିକ୍ଟ ତାଙ୍କର ଅନିଚ୍ଛା ସତ୍ତ୍ୱେ ନିକଟରେ ଏହି ତତ୍ତ୍ୱକୁ ଗ୍ରହଣ କରିଥିବାର ଏକ ସମ୍ବାଦ ପ୍ରକାଶିତ ହୋଇଥିଲା ।

ଡାରଓ୍ୱିନଙ୍କର ଏହି ବିବର୍ତ୍ତନବାଦର ତତ୍ତ୍ୱ ଏବଂ ଏହା ଭିତରେ ପ୍ରାକୃତିକ ନିର୍ବାଚନ କିଭଳି ଆଜିର ଜୀବଜଗତ ତଥା ମନୁଷ୍ୟକୁ ସୃଷ୍ଟି ଓ ବିକାଶ ପଥରେ ନେଇ ଆସିଛି, ଏସବୁ ବିଷୟ ପ୍ରାୟ ଆଜି ବିଦ୍ୟାଳୟ ସ୍ତରର ବିଜ୍ଞାନ ପାଠ୍ୟ ପୁସ୍ତକରେ ସ୍ଥାନ ପାଇଛି । ତେଣୁ ଏ ସବୁର ପୁନରାବୃତ୍ତି ନକରି, ଆମର ମୁଖ୍ୟ ଆଲୋଚ୍ୟ ବିଷୟ- ଧର୍ମ ଓ ଈଶ୍ୱରଙ୍କ ସମ୍ବନ୍ଧରେ ଭ୍ରାନ୍ତ ବିଶ୍ୱାସ- ପ୍ରମାଣ ପାଇଁ ଯେତିକି ଆବଶ୍ୟକ, କେବଳ ସେତିକିରେ ଏ ଆଲୋଚନା ସୀମିତ ରଖାଯାଇଛି ।

ପ୍ରତ୍ୟେକ ଜୀବର ମୁଖ୍ୟ ପ୍ରାକୃତିକ ପ୍ରବୃତ୍ତି ହେଲା ବଂଶବୃଦ୍ଧି ବା ଏହି ବଂଶବୃଦ୍ଧି ମଧ୍ୟ ଦେଇ ପିତାମାତାଙ୍କର ଆନୁବଂଶିକ ଗୁଣଗୁଡ଼ିକ ପରବର୍ତ୍ତୀ ବଂଶଧରମାନଙ୍କର ଶରୀରକୁ ଯାଇଥାଏ । ତା’ ଅର୍ଥ ନୁହେଁ, ପିତାମାତାଙ୍କର କାର୍ବନ କପି ସନ୍ତାନମାନେ ହେବେ । ଏହି ବଂଶ ବୃଦ୍ଧି ପ୍ରକ୍ରିୟାରେ ଅନେକ ଆନୁବଂଶିକ ଗୁଣ ସମୟ ତଥା ପରିବେଶ ଜନିତ ପରିବର୍ତ୍ତନ ଦ୍ୱାରା ପରବର୍ତ୍ତୀ ବଂଶଧରମାନଙ୍କର ଜିନ୍‌ରେ କିଛିଟା ପରିବର୍ତ୍ତନ ମଧ୍ୟ ହୋଇଥାଏ, ଯାହାକୁ କୁହାଯାଏ ନବୋଦ୍ଭବନ ବା ମ୍ୟୁଟେସନ । ଏହି ମ୍ୟୁଟେସନ୍ ଦ୍ୱାରା ଗୋଟିଏ ପ୍ରକାର ଜୀବର ବଂଶ ମଧ୍ୟରେ ସାମାନ୍ୟ ପରିବର୍ତ୍ତନ ପରିଲକ୍ଷିତ ହୋଇଥାଏ । ଯାହାକୁ ବିଜ୍ଞାନର ଭାଷାରେ କୁହାଯାଏ ଜେନୋଟାଇପ୍‌ର ପରିବର୍ତ୍ତନ ଫେନୋଟାଇପ୍‌ରେ ପ୍ରତିଫଳିତ ହୋଇଥାଏ । କେତେକ ସମୟରେ ଏହି ନୂତନ ଫେନୋଟାଇପ୍ ଜୀବ ପରିବେଶ ସହିତ ଖାପଖୁଆଇ ଚଳି ନପାରିଲେ, ତାହା କ୍ରମଶଃ ଲୋପ ପାଇଯାଏ । ଯଦି ସେହି ନୂତନ ଧାରାକୁ ବହନ କରିଥିବା ଜୀବ, ତା’ର ପୂର୍ବ ବଂଶଜଠାରୁ ପରିବେଶ ସହ ଅଧିକ ଖାପଖୁଆଇ ପାରିଲା ଓ ପରିବେଶ ତା’ ପାଇଁ ଅନୁକୂଳ ହୋଇପାରିଲା, ସେହି ନବୋଦ୍ଭବ ଜୀବ ବଂଶଟି ଏକ ସ୍ୱତନ୍ତ୍ର ଧାରାରେ ଗତିକରେ ଓ କାଳକ୍ରମେ ତା’ର ପୂର୍ବବଂଶଠାରୁ ଗୁଣାତ୍ମକ ଭାବେ ପୃଥକ୍ ହୋଇ, ଏକ ସ୍ୱତନ୍ତ୍ର ପ୍ରଜାତି ଭାବରେ ପରିଚିତ ହୁଏ । ଏହି ନିୟମରେ ପ୍ରାୟ କୋଡ଼ିଏ ଲକ୍ଷ ବର୍ଷ ପୂର୍ବରୁ ମନୁଷ୍ୟ ଓ ପୃଥିବୀରେ ବର୍ତ୍ତମାନ ଜୀବିତ ଥିବା ତା’ର ନିକଟତମ ବିରାଦର ସିମ୍ପାଞ୍ଜିର ବିବର୍ତ୍ତନର ଧାରା ପୃଥକ ଭାବରେ ଚାଲିଆସିଛି । ଅନ୍ୟାନ୍ୟ ଏପ୍ ଯଥା ଗରିଲା ଓ ଓରାଂଗୁଟାନ୍ ଆଦି ପ୍ରାଣୀମାନେ, ଏକଦା ମନୁଷ୍ୟର ପୂର୍ବଜ ପ୍ରଜାତିରୁ ସୃଷ୍ଟି ବୋଲି ବହୁ ନୃତତ୍ତ୍ୱବିତ୍ କୁହନ୍ତି । କିନ୍ତୁ ସିମ୍ପାଞ୍ଜୀ ମନୁଷ୍ୟର ନିକଟତମ କଜିନ୍ ବୋଲି ପ୍ରାୟ ସବୁ ଜୀବ ବିଜ୍ଞାନୀମାନେ ଏକମତ । ମନୁଷ୍ୟର ଅନ୍ୟତମ ନିକଟତର କଜିନ୍, ନିଅଣ୍ଡାରଥାଲ୍ ଯାହାକି ୟୁରୋପ ଓ ମଧ୍ୟ ଏସିଆ ଆଦି ଅଞ୍ଚଳରେ ବାସ କରୁଥିଲା, ତାହା ପ୍ରାୟ ତିରିଶ ହଜାର ବର୍ଷ ପୂର୍ବରୁ ବିଲୀନ ହୋଇଯାଇଛି । ଅନୁମାନ କରାଯାଏ ଗତ ହୀମ ଯୁଗରେ ହିଁ ତାର ବିଲୋପ ଘଟିଛି । ଏହି ଜୀବର ନିକଟତମ କଜିନ୍ ସିମ୍ପାଞ୍ଜୀର ମସ୍ତିଷ୍କ, ମନୁଷ୍ୟର ମସ୍ତିଷ୍କଠାରୁ ଆକାରରେ ଏକ ତୃତୀୟାଂଶ କିନ୍ତୁ ସ୍ନାୟୁକୋଷର ସଂଖ୍ୟା ଦୃଷ୍ଟିରୁ ବିଚାର କଲେ ଏକ ଦଶମାଂଶ, ସ୍ନାୟୁକୋଷର ପରସ୍ପର ଯୋଗାଯୋଗ ଗଠନ, ଯାହାକି ମନୁଷ୍ୟର ଜନ୍ମ ପରଠାରୁ ହୋଇଥାଏ, ଏହାକୁ ତୁଳନା କଲେ, ଗୋଟିଏ ଦୁଇବର୍ଷର ମନୁଷ୍ୟ ପିଲାଠାରୁ ଗୋଟିଏ ପ୍ରାପ୍ତ ବୟସ୍କ ସିମ୍ପାଞ୍ଜୀର ମସ୍ତିଷ୍କ ସର୍କିଟ୍ କମ୍ ବୋଲି, ନିକଟରେ ଆମେରିକାର କେତେକ ବୈଜ୍ଞାନିକ ପରୀକ୍ଷା ଦ୍ୱାରା ଜାଣିପାରିଛନ୍ତି ।

ମନୁଷ୍ୟ ଅତୀତରେ ବୃକ୍ଷରେ ବାସ କରୁଥିଲା । ବର୍ତ୍ତମାନ ସୁଦ୍ଧା ଭାରତର ଆଣ୍ଡାମାନ ଦ୍ୱୀପପୁଞ୍ଜର କେତେକ ଅଗମ୍ୟ ସ୍ଥାନରେ ଆଦିମ ମନୁଷ୍ୟ ବୃକ୍ଷରେ ବସବାସ କରୁଥିବାର

ଦେଖାଯାଏ । ନିକଟରେ ହୋଇଥିବା ଭୟଙ୍କର ସୁନାମିରେ, ଆଣ୍ଡାମାନ ଦ୍ୱୀପ ପୁଞ୍ଜରେ ଏଠାରୁ ଯାଇ ବସବାସ କରୁଥିବା ବହୁ ଲୋକ ସମୁଦ୍ର ଜୁଆରରେ ଭାସିଯାଇଥିବାବେଳେ, ବୃକ୍ଷରେ ବାସ କରୁଥିବା ଆଦିମ ଅଧିବାସୀମାନେ କେହି ମୃତାହତ ହୋଇନଥିବା କଥା ବହୁ ଉଦ୍ଧାରକାରୀ ଦଳ ବର୍ଣ୍ଣନା କରିଛନ୍ତି । ମନୁଷ୍ୟ ଯେତେବେଳେ ବୃକ୍ଷରୁ ଆସି ଭୂପୃଷ୍ଠରେ ବାସ କଲା, ଏବଂ କାର୍ଯ୍ୟ ମଧ୍ୟ ଦେଇ ତା'ର ହାତ ଦୁଇଟି ଚାଲିବାରେ ବ୍ୟବହାର ନକରି, ଅନ୍ୟାନ୍ୟ କାର୍ଯ୍ୟ ପାଇଁ ବ୍ୟବହାର କଲା, ତା'ର ବିବର୍ତ୍ତନର ଏକ ଗୁଣାତ୍ମକ ବିକାଶ ଘଟିଲା । ଏଥିରେ ମନୁଷ୍ୟ ହାତ ଅଙ୍ଗୁଳିଗୁଡିକର ଏକ ବିଶେଷ ଗଠନ ଯାହାଦ୍ୱାରା କି ତା'ର ବୃଦ୍ଧାଙ୍ଗୁଠି, ଅନ୍ୟ ଚାରିଗୋଟି ଅଙ୍ଗୁଠି ସହ ଏକ ସମକୋଣ ସୃଷ୍ଟି କରିଛି- ଏହା ବହୁତ ପଦାର୍ଥ ଧରିବାରେ ସାହାଯ୍ୟ କଲା, ଯାହାକି ମନୁଷ୍ୟ ବ୍ୟତୀତ, ତା'ର କୌଣସି ବିରାଦର ପ୍ରଜାତିମାନଙ୍କଠାରେ ଦେଖିବାକୁ ମିଳେନାହିଁ । ମନୁଷ୍ୟର ପରବର୍ତ୍ତୀ ବିବର୍ତ୍ତନରେ ଏହାର ପ୍ରଭାବ କିଭଳି ପଡିଲା ଓ ଏହା କିଭଳି ମନୁଷ୍ୟର ବଭିନ୍ନ ଅଙ୍ଗର ଗଠନକୁ ପ୍ରାକୃତିକ ନିର୍ବାଚନ ନିୟମରେ ପରିବର୍ତ୍ତନ କରିଥିଲା, ଏହାର ପୁଙ୍ଖାନୁପୁଙ୍ଖ ଆଲୋଚନା ଫ୍ରେଡେରିକ୍ ଏଙ୍ଗେଲ୍ସ ତାଙ୍କର ପ୍ରସିଦ୍ଧ ପ୍ରବନ୍ଧ "The Part Played by Labour in the Transition from Ape to Man" ରେ କରିଛନ୍ତି । ତାଙ୍କର ଆଲୋଚନାର ପୁନରାବୃତ୍ତି ଏଠାରେ ନକରି, ସେହି ପ୍ରବନ୍ଧର କେତେଗୁଡ଼ିଏ ଗୁରୁତ୍ୱପୂର୍ଣ୍ଣ ବାକ୍ୟକୁ ନିମ୍ନରେ ଉଦ୍ଧାର କରାଯାଇଛି । ଏଙ୍ଗେଲ୍ସଙ୍କର ବିଚାରବୋଧର ଭାବାର୍ଥ ହେଲା "ଆମର ପୂର୍ବଜ" ମାନେ ପ୍ରଥମେ ହାତର ପୃଥକ୍ ବ୍ୟବହାର ଶିଖିଥିଲେ, ଯାହାକି ତାଙ୍କୁ ହଜାର ହଜାର ବର୍ଷ ଲାଗିଥିଲା । ହାତର ଏହି ବ୍ୟବହାର ଯୋଗୁଁ ଯେତେବେଳେ ମନୁଷ୍ୟ ପଥର ଖଣ୍ଡକୁ ତୀକ୍ଷ୍ଣ କରି ଅସ୍ତ୍ରରୂପେ ବ୍ୟବହାର କରିପାରିଲା, ଏହା ଥିଲା ମନୁଷ୍ୟର ଏକ ଯୁଗାନ୍ତକାରୀ ସାଫଲ୍ୟ । ପରେ ହାତ ଦୁଇଟିର ବାରମ୍ବାର ବ୍ୟବହାର ଦ୍ୱାରା ତାହାର ଶକ୍ତି ବୃଦ୍ଧି ଘଟିଲା ଏବଂ ଧୀରେ ଧୀରେ ସେମାନେ ପ୍ରାକୃତିକ ପ୍ରତିବନ୍ଧକକୁ ଦୂରକରି, ମାନବ ପ୍ରଗତିର ନୂତନ ଦିଗନ୍ତ ଆବିଷ୍କାର କଲେ । ଏପରି ଏକ ସମୟ ଆସିଲା, ସେମାନେ ପରସ୍ପର ସହିତ ଭାବ ବିନିମୟର ଆବଶ୍ୟକତା ଅନୁଭବ କଲେ । ଆବଶ୍ୟକତା ହିଁ ସେମାନଙ୍କର ବାକ୍-ଇନ୍ଦ୍ରିୟର ଉନ୍ନତି ଘଟାଇଲା । ମନୁଷ୍ୟ ପରସ୍ପର ସହିତ ବାକ୍ୟାଳାପ କଲା । ହସ୍ତ ଦୁଇଟିର ସ୍ୱାତନ୍ତ୍ୟ ଯୋଗୁଁ ଶ୍ରମ ଏବଂ ପରେ ବାକ୍ ଶକ୍ତି ଓ ଭାଷାର ବିକାଶର ପ୍ରତିକ୍ରିୟା ସ୍ୱରୂପ ମନୁଷ୍ୟ ମସ୍ତିଷ୍କର ବିକାଶ ଘଟିଲା । ମସ୍ତିଷ୍କ ସହିତ ଜଡିତ ଜ୍ଞାନେନ୍ଦ୍ରିୟ ତଥା ଚେନତାର ବିକାଶ ମଧ୍ୟ ହେଲା, ଏହା ତାକୁ ଉତ୍ତରୋତ୍ତର ଉନ୍ନତି ପଥରେ ଆଗେଇ ନେଲା । ତା'ର ଖାଦ୍ୟରେ ମଧ୍ୟ ପରିବର୍ତ୍ତନ ଆସିଲା । ତା'ର ପୂର୍ବଜମାନଙ୍କ ଖାଦ୍ୟାଭ୍ୟାସ ଥିଲା ଉଦ୍ଭିଦଜାତ ପଦାର୍ଥ, କିନ୍ତୁ, ପରେ ସେ ଏହା ସହିତ ପଶୁ ପକ୍ଷୀ ଶିକାର କରି ମାଂସ ଭକ୍ଷଣ କଲା ଯାହା ଦ୍ୱାରା କି ତା'ର ଶରୀର ବହୁ ଉପଯୋଗୀ ଖାଦ୍ୟସାର ପାଇ, ତାର ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟର ଉନ୍ନତି

ହେଲା । ତା'ର ମୁଖ ଗହ୍ୱର ଓ ଦାନ୍ତ ଆଦିର ମଧ୍ୟ ବିବର୍ତ୍ତନ ଘଟିଲା । ମନୁଷ୍ୟ ଯେଉଁଭଳି ସବୁ ପ୍ରକାରର ଖାଦ୍ୟ ଖାଇବାକୁ ସକ୍ଷମ ହେଲା, ସେହିଭଳି ସବୁ ପ୍ରକାର ଜଳବାୟୁରେ ମଧ୍ୟ ବଞ୍ଚିପାରିବାର କ୍ଷମତା ଅର୍ଜନ କଲା । ସେ କ୍ରମଶଃ ଭୂପୃଷ୍ଠର ସମସ୍ତ ବାସୋପଯୋଗୀ ସ୍ଥାନରେ ବସବାସ କଲା । ପ୍ରଥମେ ମନୁଷ୍ୟ ଗୋଷ୍ଠୀବଦ୍ଧ ଭାବରେ ବାସ କଲା, ସେହି ଗୋଷ୍ଠୀ କାଳକ୍ରମେ ଜାତି ବା ଦେଶ ଓ ପରେ ରାଷ୍ଟ୍ରରୂପ ନେଲା । ଆଇନ ଓ ରାଜନୀତି ପ୍ରଭୃତିର ସୃଷ୍ଟି ହେଲା । ତା' ସହିତ ସୃଷ୍ଟି ହେଲା ମନୁଷ୍ୟ ମନରେ ମାନବିକ ପ୍ରକୃତିର ପ୍ରତିଫଳନ-ଯାହାକୁ ପରବର୍ତ୍ତୀ କାଳରେ ଧର୍ମର ଆଖ୍ୟା ଦିଆଗଲା" ।

ଏଙ୍ଗେଲ୍‌ସ ପ୍ରାୟ ଶହେ ତିରିଶ ବର୍ଷ ପୂର୍ବରୁ ଏହି ପ୍ରବନ୍ଧଟି ରଚନା କରିଥିଲେ । ଏହି ଦୀର୍ଘ ସମୟ ମଧ୍ୟରେ, ମନୁଷ୍ୟ ସୃଷ୍ଟି ସଂପର୍କିତ ବିଭିନ୍ନ ବିଜ୍ଞାନ, ଯଥା, ନୃତତ୍ତ୍ୱ ଓ ପ୍ରାଣୀବିଜ୍ଞାନ ଆଦିର ବହୁ ଅଗ୍ରଗତି ଘଟିଛି । ବହୁ ନୂଆ ତଥ୍ୟପ୍ରମାଣ ମଧ୍ୟ ଆବିଷ୍କୃତ ହୋଇଛି । ଉପରୋକ୍ତ ପ୍ରବନ୍ଧରେ ଗୋଟିଏ ସ୍ଥାନରେ ଏଙ୍ଗେଲ୍‌ସ ମନୁଷ୍ୟର ପ୍ରଥମ ସୃଷ୍ଟି ସଂପର୍କରେ ମନ୍ତବ୍ୟ ଦେଇ କହିଛନ୍ତି ଯେ, "ବୋଧହୁଏ ଏହି ପ୍ରଜାତି (Species) ର ସୃଷ୍ଟି ହୋଇଥିଲା ଏକ ଗ୍ରୀଷ୍ମ ମଣ୍ଡଳୀୟ ଭୂଖଣ୍ଡରେ, ଯାହାକି ଆଜି ଭାରତ ମହାସାଗର ଗର୍ଭରେ ଲୀନ ହୋଇଯାଇଛି ।" ବର୍ତ୍ତମାନ ସମସ୍ତ ବୈଜ୍ଞାନିକ ତଥ୍ୟକୁ ଆଧାର କରି ନୃତତ୍ତ୍ୱବିତ୍‌ମାନେ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ, ପ୍ରଥମ ମାନବ ସୃଷ୍ଟି ହୋଇଥିଲା ଆଫ୍ରିକା ମହାଦେଶର ପୂର୍ବଭାଗରେ, ଯେଉଁ ଅଞ୍ଚଳରେ ଆଜି ଏଥିଓପିଆ, ସୋମାଲିଆ ଓ କେନ୍ୟା ପ୍ରଭୃତି ଦେଶ ଅବସ୍ଥିତ । ଭୌଗୋଳିକ ଦୃଷ୍ଟିରୁ ଏଙ୍ଗେଲ୍‌ସ ଅନୁମାନ କରିଥିବା ସ୍ଥାନ ଓ ବର୍ତ୍ତମାନ ବୈଜ୍ଞାନିକମାନେ ତଥ୍ୟ, ପ୍ରମାଣ ଆଧାରରେ ଚିହ୍ନଟ କରିଥିବା ସ୍ଥାନ ମଧ୍ୟରେ ବିଶେଷ ତଫାତ୍ ନାହିଁ ।

ପୃଥିବୀପୃଷ୍ଠରେ ଜୀବ ସୃଷ୍ଟି ପରେ ବି ବହୁ ପ୍ରାକୃତିକ ପରିବର୍ତ୍ତନ ଘଟିଛି । ଚାରିଗୋଟି ହୀମ ଯୁଗ ଆସିଛି । ବୋଧହୁଏ ଶେଷ ହୀମ ଯୁଗ ବେଳକୁ ମନୁଷ୍ୟର ସୃଷ୍ଟି ହୋଇସାରିଥିଲା । ହୀମ ଯୁଗରେ ପୃଥିବୀର ବାୟୁମଣ୍ଡଳର ଉତ୍ତାପ ବହୁ ପରିମାଣରେ ହ୍ରାସ ପାଇ ଭୂପୃଷ୍ଠ ବରଫାବୃତ୍ତ ହୋଇଯାଏ, ବିଶେଷ କରି ଉତ୍ତରମେରୁ ଅଞ୍ଚଳରେ ବୃହତ୍ତର ବରଫ ସୃଷ୍ଟି ହୋଇ, ପ୍ରାୟ ସବୁ ପ୍ରାଣୀ ଓ ଉଦ୍ଭିଦକୁ ବରଫାଚ୍ଛାଦିତ କରି ରଖେ । ତାହା ଦୀର୍ଘ କାଳ ରହି ଜୀବାଶ୍ମରେ ପରିଣତ ହୋଇଯାଏ । ବହୁ ଯୁଗର ଏହି ଜୀବଜଗତର ଫସିଲରୁ ଆଜି ଖଣିଜ ତୈଳ ଓ କୋଇଲା ଇନ୍ଧନର ଆବିଷ୍କାର ହେଉଛି । ତା' ସହିତ ଅତୀତର ଜୈବ ଇତିହାସ ମଧ୍ୟ ଉନ୍ମୋଚିତ ହେଉଛି । ଉକ୍ତ ହୀମ ଯୁଗରେ ଯେତେବେଳେ ଉତ୍ତରମେରୁ ଅଞ୍ଚଳରେ ଗ୍ଲାସିୟର ସୃଷ୍ଟି ହୁଏ, ସ୍ୱାଭାବିକ ଭାବରେ ସମୁଦ୍ରର ଜଳପତ୍ତନ ହ୍ରାସ ପାଇଯାଏ । ଗତ ହୀମ

ଯୁଗରେ କେତେକ ସ୍ଥାନରେ ସମୁଦ୍ରର ଜଳସ୍ତର ପ୍ରାୟ ତିନିଶହ ଫୁଟ ପର୍ଯ୍ୟନ୍ତ ହ୍ରାସ ପାଇଯିବାରୁ ବହୁସ୍ଥାନରେ ସମୁଦ୍ର ଶୁଖିଯାଇ ଭୂଭାଗ ଦେଖାଦେଇଥିଲା । ବର୍ତ୍ତମାନ ପରିସ୍ଥିତି ଠିକ୍ ବିପରୀତ ହୋଇଛି । ଅତିରିକ୍ତ ଗ୍ରୀନ୍ ହାଉସ୍ ବାଷ୍ପର ପ୍ରଭାବରେ ପୃଥିବୀର ବାୟୁମଣ୍ଡଳ ଉତ୍ତପ୍ତ ହୋଇ ମେରୁ ଅଞ୍ଚଳର ଗ୍ଲାସିୟରସ୍ ସବୁ ତରଳି, ସମୁଦ୍ର ଜଳ ପତ୍ତନ ବୃଦ୍ଧି ପାଉଛି ଏବଂ ଏହା ଖାଲି ଉପକୂଳବର୍ତ୍ତୀ ଅଞ୍ଚଳ ପାଇଁ ନୁହେଁ, ସାରା ପୃଥିବୀର ଜନଜୀବନ ପ୍ରତି ବିପଦର ଆଶଙ୍କା ସୃଷ୍ଟି କରିଛି । ଗତ ହୀମ ଯୁଗରେ ସମୁଦ୍ର ଜଳ ପତ୍ତନର ହ୍ରାସ ଯୋଗୁଁ ପାରଶ୍ୟ ଉପସାଗର ଓ ଲୋହିତ ସାଗର ମଧ୍ୟରେ ଗମନାଗମନ କରିବା ସମ୍ଭବ ହୋଇଥିଲା । ଅନୁମାନ କରାଯାଏ, ପୂର୍ବ ଆଫ୍ରିକାରେ ସୃଷ୍ଟି ହୋଇଥିବା ମନୁଷ୍ୟ ପ୍ରଜାତିର ଗୋଟିଏ ଗୋଷ୍ଠୀ ଏହି ପଥରେ ପଶ୍ଚିମ ଏସିଆ ଦେଇ ମଧ୍ୟ ଏସିଆ ଓ ଅନ୍ୟ ଏକ ଅଂଶ ୟୁରୋପ ଅଞ୍ଚଳକୁ ଖାଦ୍ୟ ଓ ଉତ୍ତମ ବାସସ୍ଥାନର ଅନ୍ୱେଷଣରେ ଯାଇଥିଲା । ଏହିଭଳି ଭାବରେ ମନୁଷ୍ୟର ସଭ୍ୟତା ସାରା ପୃଥିବୀରେ ପରିବ୍ୟାପ୍ତ ହୋଇଛି । ପୃଥିବୀର ବିଭିନ୍ନ ଜଳବାୟୁ ଓ ଖାଦ୍ୟାଭାସ ମଧ୍ୟରେ ଦୀର୍ଘକାଳ ବସବାସ ପରେ ପ୍ରାକୃତିକ ନିୟମରେ ମଣିଷର ଆକୃତି , ବର୍ଣ ଇତ୍ୟାଦିର ବିଭିନ୍ନତା ପରିଲକ୍ଷିତ ହୁଏ । ମୁଖ୍ୟତଃ ଦୀର୍ଘଦିନ ଧରି ପରିବେଶ ପରିବର୍ତ୍ତନ ଯୋଗୁଁ ଏକ ନିର୍ଦ୍ଦିଷ୍ଟ ଜିନ୍‌ର ମ୍ୟୁଟେସନ ଘଟି ଏହି ଆପାତ ବିଭିନ୍ନତା ଦେଖାଦେଉଛି । ବୈଜ୍ଞାନିକମାନେ ଏହି ନିର୍ଦ୍ଦିଷ୍ଟ ଜିନ୍, ଯାହାକି ଚର୍ମ ଓ କେଶର ରଙ୍ଗ ପରିବର୍ତ୍ତନ କରିଥାଏ, ତାହାକୁ ଚିହ୍ନଟ କରିସାରିଲେଣି ଏବଂ ଏହି ଜିନ୍‌କୁ ସେମାନେ କୁହନ୍ତି ନିକଟ ଅତୀତରେ କେତେକ ବିଶିଷ୍ଟ ଜୀବ ବିଜ୍ଞାନୀ ପରୀକ୍ଷା ଦ୍ୱାରା ଦର୍ଶାଇଛନ୍ତି ଯେ ସବୁ କ୍ଷେତ୍ରରେ ଜିନ୍‌ର ମ୍ୟୁଟେସନ ନହୋଇ ଗୁଣସୂତ୍ରରେ ଜିନ୍ ପଦାର୍ଥ ଡିଏନ୍‌ଏର କେବଳ ସ୍ଥାନ ପରିବର୍ତ୍ତନ ଦ୍ୱାରା ଶରୀରର ଏଭଳି ପରିବର୍ତ୍ତନ ମଧ୍ୟ ଅନେକ କ୍ଷେତ୍ରରେ ହୋଇଛି । ଆପାତତଃ ଆଫ୍ରିକାର ନିଗ୍ରୋ, ପାଶ୍ଚାତ୍ୟ ଦେଶର ଗୋରାଲୋକ, ଚୀନ୍ ଓ ଜାପାନ ପ୍ରଭୃତି ଦେଶର ଲୋକମାନଙ୍କର ହଳଦିଆ ବର୍ଣ୍ଣ ଓ ଚେପଟା ମୁହଁ (ଯାହାକୁ ମଙ୍ଗୋଲ୍‌ଏଡ ବୋଲି କୁହାଯାଏ) ଏବଂ ଭାରତ, ପାକିସ୍ତାନ ଓ ସିଂହଳ ଆଦି ଦେଶର ମିଶାମିଶି ବର୍ଣ୍ଣର ମନୁଷ୍ୟ ଦେଖି ଅନେକ ଭାବନ୍ତି ଯେ ସେମାନଙ୍କର ମୂଳ ସୃଷ୍ଟି ପୃଥକ୍ ଭାବେ ହୋଇଛି । ଏହା ସତ୍ୟ ନୁହେଁ । ଜୀବ ବିଜ୍ଞାନର ଅଗ୍ରଗତି ଫଳରେ, ଆଜି ବିଜ୍ଞାନାଗାରରେ ବିଭିନ୍ନ ଅଞ୍ଚଳର ମନୁଷ୍ୟଙ୍କ ଆନୁବଂଶିକ ପରୀକ୍ଷା କରାଯାଇ ସମସ୍ତଙ୍କର ଗୋଟିଏ ପ୍ରକାରର ଗୁଣ ସୂତ୍ର ଥିବାର ଦେଖାଯାଇଛି । ଦୁନିଆଁର ସବୁ ମନୁଷ୍ୟ ଗୋଟିଏ ସ୍ଥାନରେ, ଗୋଟିଏ ପ୍ରକାରର ପୂର୍ବପୁରୁଷଙ୍କ ଠାରୁ ସୃଷ୍ଟି ହୋଇଥିଲେ ବି, ଆଜି ସେମାନେ ବହୁ ଭାବରେ ବିଭାଜିତ ହୋଇ, ପରସ୍ପରର ଶତ୍ରୁଭାବରେ ବିଦ୍ୟମାନ ହେବା ପଛରେ ଧର୍ମର ଭୂମିକା କିଛି କମ୍ ନୁହେଁ ।



# ମୁଁ କେଉଁଠୁ ଆସିଛି ?

*ଶ୍ରୀ ଗୌରାଙ୍ଗ ଚରଣ ଦାଶ*

ପ୍ରାଚୀନତମ ଗ୍ରନ୍ଥ ବେଦର ଶେଷ ଭାଗରେ କେତେକ ଦାର୍ଶନିକ ପ୍ରଶ୍ନର ଉତ୍‌ଥାପନ କରାଯାଇଛି; ଯଥା-ମୁଁ କିଏ ? ମୁଁ କେଉଁଠୁ ଆସିଛି ? ମୋର ଏଠାରେ କାର୍ଯ୍ୟ କ'ଣ ? ମୃତ୍ୟୁ ପରେ ମୁଁ କେଉଁଠିକି ଯିବି ? ଇତ୍ୟାଦି । ବେଦରେ ଏହାର ବିଧିବଦ୍ଧ ଉତ୍ତର ଦିଆଯାଇ ନାହିଁ । ଉପନିଷଦ ଯୁଗରେ କେତେକ ମୁନି ଋଷି ଏବଂ ଦାର୍ଶନିକ ଏହାର ଉତ୍ତର ଅନୁମାନ ଭିତ୍ତିରେ ଦେବାକୁ ପ୍ରୟାସ କରିଛନ୍ତି ।

ବେଦାନ୍ତ ମତରେ ଚେତନ ମନୁଷ୍ୟ ଆଗ ସୃଷ୍ଟି ହୋଇ ଅଚେତନ ବସ୍ତୁ ପରେ ସୃଷ୍ଟି ହୋଇଛି । ତୈତରୀୟ ଉପନିଷଦ ଅନୁସାରେ ପରମାତ୍ମାଙ୍କ ଠାରୁ ଆକାଶ-ବାୟୁ-ଅଗ୍ନି-ଆପ୍-ପୃଥିବୀ-ଔଷଧ-ଅନ୍ନ-ବୀର୍ଯ୍ୟ-ପୁରୁଷ କ୍ରମ ଅନୁସାରେ ସୃଷ୍ଟି ହୋଇଛନ୍ତି । ଭଗବତ୍ ଗୀତାର ବିଭୂତି ଯୋଗ ଶ୍ଳୋକ ନଂ ୬ରେ ଅଛି, ଈଶ୍ୱର ତାଙ୍କ ମନରୁ ସପ୍ତ ମହର୍ଷି ଓ ତା ପୂର୍ବରୁ ଆଉ ଚାରିଜଣ ଋଷି ଓ ମନୁଗଣ ସୃଷ୍ଟି କଲେ । ଏ ଜଗତରେ ଥିବା ସମସ୍ତ ଜୀବଙ୍କୁ ଏହି ଋଷିମାନେ ସୃଷ୍ଟି କଲେ । ମନୁଗଣ ମନୁଷ୍ୟ ସୃଷ୍ଟି କଲେ ।

ଖ୍ରୀଷ୍ଟିଆନ୍‌ମାନଙ୍କ ଧର୍ମ ଗ୍ରନ୍ଥ ଅନୁସାରେ ଖ୍ରୀ.ପୂ. ୪୦୦୪ ଅକ୍ଟୋବର ମାସ ୨୩ ତାରିଖ ଦିବା ୨ ଘଣ୍ଟା ୩୦ମିନିଟ୍ ସମୟରେ ଈଶ୍ୱର ଏ ବିଶ୍ୱକୁ ସୃଷ୍ଟି କରି ସାତ ଦିନ ମଧ୍ୟରେ ସମସ୍ତ ଜୀବ ଓ ମନୁଷ୍ୟମାନଙ୍କୁ ବର୍ତ୍ତମାନ ଆମେ ଦେଖୁଥିବା ରୂପରେ ସୃଷ୍ଟି କରିଛନ୍ତି ।

କ୍ରିକ୍ (Crick) ୧୯୮୨ ମସିହାରେ ତାଙ୍କ ପୁସ୍ତକ Life Itself, Its Origin and Nature ରେ ଲେଖିଛନ୍ତି ଯେ ପୃଥିବୀର ବୟସକୁ ବିଚାର କଲେ ଜଣା ପଡୁଛି ଯେ

ଏଠାରେ ଜୀବନ ସୃଷ୍ଟି ହୋଇଥିବା ସମ୍ଭବ ନୁହେଁ । ତେଣୁ ଜୀବଗଣ ମହାକାଶର ଆମ ଛାୟାପଥ (Milky way) ବା ଅନ୍ୟ କୌଣସି ଛାୟାପଥରୁ ପୃଥିବୀକୁ ପ୍ରେରିତ ହୋଇଛନ୍ତି ।

ଦାର୍ଶନିକ ଆରିଷ୍ଟୋଟଲ (ଖ୍ରୀ.ପୂ.୩୮୪-୩୨୨) ବିଶ୍ୱାସ କରୁଥିଲେ ଜୀବନ ହଠାତ୍ ସୃଷ୍ଟି ହୋଇଛି । ଆକାଶରୁ ପୋକ ଜାତୀୟ ଜୀବ ଏବଂ କାଦୁଅ, ପଙ୍କରୁ ଅନ୍ୟ ଜାତୀୟ ଜୀବମାନେ ସୃଷ୍ଟି ହୋଇଛନ୍ତି ।

ଗ୍ରୀକ୍ ଦାର୍ଶନିକ ଡିମୋକ୍ରିଟସ୍ (ଖ୍ରୀ.ପୂ. ୪୬୫-୩୭୨) ବୋଧହୁଏ ସର୍ବ ପ୍ରଥମେ ଜୀବନ ସୃଷ୍ଟି ସମ୍ବନ୍ଧରେ ବୈଜ୍ଞାନିକ ଭାଷା ବ୍ୟବହାର କରିଥିଲେ । ତାଙ୍କ ମତରେ ପାଣି, କାଦୁଅ ଏବଂ ନିଆଁର ଆକସ୍ମିକ ମିଳନରୁ ଜୀବନ ସୃଷ୍ଟି ହେଲା ।

୧୯୨୪ ମସିହାରେ ସୋଭିଏଟ୍ ବୈଜ୍ଞାନିକ ଓପାରିନ୍ (I. Oparin); ୧୯୨୮ ମସିହାରେ ବ୍ରିଟିଶ୍ ବୈଜ୍ଞାନିକ ହାଲଡେନ୍ (J.B.S. Haldane) ମତ ଦେଲେ ଯେ ସମୁଦ୍ର ପାଣି ଜୀବନ ସୃଷ୍ଟିକାରୀ ରସାୟନରେ ଏକ ଘୋଳ । ସମୁଦ୍ରରୁ ଜୀବନ ସୃଷ୍ଟି ହୋଇଛି । ସମୁଦ୍ର ଜଳରେ ଏବଂ ବାୟୁ ମଣ୍ଡଳରେ ଥିବା ଏମିନୋ ଏସିଡ୍, ନ୍ୟୁକ୍ଲିକ୍ ଏସିଡି, ପ୍ରୋଟିନ୍ ଇତ୍ୟାଦି ଜୀବନ ସୃଷ୍ଟିକାରୀ ପଦାର୍ଥମାନଙ୍କର ପ୍ରାଚୁର୍ଯ୍ୟ ଦେଖି ବୈଜ୍ଞାନିକମାନେ ଏହି ସିଦ୍ଧାନ୍ତରେ ପହଞ୍ଚିଛନ୍ତି । ଜୀବନ କିପରି ସୃଷ୍ଟି ହେଲା ଆମର ଆଲୋଚ୍ୟ ବିଷୟ ହୋଇ ନ ଥିବାରୁ ଏ ବିଷୟରେ ଆଲୋଚନାର ଆବଶ୍ୟକତା ନାହିଁ । କିନ୍ତୁ ଆମେ କେଉଁଠୁ ଆସିଛୁ ଜାଣିବା ପୂର୍ବରୁ ଜୀବନ କ'ଣ ଜାଣିବା ଉଚିତ୍ ।

ଆମେ ସ୍କୁଲ୍, କଲେଜ୍‌ରେ ପଢିଛନ୍ତି ଜୀବିତ ଖାଦ୍ୟ ଖାଏ, ମଳତ୍ୟାଗ କରେ, ନିଶ୍ୱାସ ନିଏ, ଚଲା ବୁଲାକରେ, ବଢେ, ବଂଶ ବୃଦ୍ଧିକରେ, ପରିବେଶ ଅନୁସାରେ ନିଜର ସ୍ୱଭାବ ବଦଳାଏ ଇତ୍ୟାଦି । ଏ ସବୁ ଜୀବନର ଗୁଣ, ଜୀବନ ନୁହେଁ, ଜୀବନ ନିର୍ଜୀବ୍ ବସ୍ତୁରୁ ସୃଷ୍ଟି । ସଂକ୍ଷେପରେ ଏତିକି କହିଲେ ଯଥେଷ୍ଟ ହେବ ଯେ ଯେଉଁ ପ୍ରୋଟିନ୍ ନିଜକୁ ନକଲ କରିପାରେ ସେହି ପ୍ରୋଟିନ୍ ହିଁ ଜୀବନ ସୃଷ୍ଟି କରିପାରେ । ଏହା କିପରି ହୁଏ ଆମର ଆଲୋଚ୍ୟ ବିଷୟ ନୁହେଁ । କିନ୍ତୁ ଏହି ନକଲ ହିଁ ଜୀବନର ମୂଳ ତତ୍ତ୍ୱ । ଏହା ମଧ୍ୟ ବିବର୍ତ୍ତନବାଦ ବା evolution ର ମୂଳ ତତ୍ତ୍ୱ । ଏହି ତତ୍ତ୍ୱକୁ ଭିତ୍ତି କରି ଆମେ କୀଟାଣୁ ସ୍ତରରୁ ମଣିଷ ସ୍ତରକୁ ବିକଶିତ ହୋଇଛେ ।

ବିବର୍ତ୍ତନବାଦ କ'ଣ ? ସଂକ୍ଷେପରେ କହିବାକୁ ଗଲେ ବିବର୍ତ୍ତନ ହେଉଛି ପରିବର୍ତ୍ତନ ସହ ଅବତରଣ (Evolution is descent with modification) ଅର୍ଥାତ୍ ବଂଶାନୁକ୍ରମେ ଶରୀର ଏବଂ ଚରିତ୍ରର ପରିବର୍ତ୍ତନ । ବୈଜ୍ଞାନିକମାନଙ୍କ ଭାଷାରେ ଏହା ଏପରି ଏକ ପ୍ରକ୍ରିୟା ଯାହା ଦ୍ୱାରା କୌଣସି ପ୍ରକାର ଜୀବର କ୍ରମ ପରିବର୍ତ୍ତନ ହୋଇ ଏକ

ନୂତନ ପ୍ରକାର ଜୀବ ସୃଷ୍ଟି ହୁଏ ଏବଂ ଏହି ପରବର୍ତ୍ତନ ଆଉ ପଛକୁ ଫେରି ପୂର୍ବ ପୁରୁଷଙ୍କ ରୂପ ଓ ଚରିତ୍ର ଧାରଣ କରେ ନାହିଁ । ଏହାକୁ (Law of Irreversibility of Evolution) ବା ଡୋଲଙ୍କ ସିଦ୍ଧାନ୍ତ (Dallo's Law) କୁହାଯାଏ ।

ଏହି ବିବର୍ତ୍ତନବାଦ ଚିନ୍ତାଧାରର ଜନକ ବୋଧହୁଏ ଫ୍ରାନ୍ସ ଦେଶୀୟ ପରିବେଶବିଦ୍ ଲାମାର୍କ । ସେ ପ୍ରଥମେ ଜୀବର ବିକାଶ ବିବର୍ତ୍ତନ ଯୋଗୁଁ ହୋଇଥିବା ସମ୍ଭବ ବୋଲି ମତ ଦେଲେ । ସେ ଯୁକ୍ତି କଲେ ଯେ ଜୀବ ପ୍ରକୃତି ସହ ଖାପ ଖୁଆଇ ନିଜକୁ ବଞ୍ଚାଇ ରଖିବା ପାଇଁ ମନସ୍ତାତ୍ତ୍ୱିକ ଭାବରେ ତାର ଗଠନ ଓ ପ୍ରକୃତିକୁ ବଦଳାଇବାକୁ ଚେଷ୍ଟା କରେ ଯାହାକି ତା'ର ସନ୍ତାନମାନଙ୍କୁ ସଂକ୍ରମିତ ହୁଏ । କିନ୍ତୁ ସେତେବେଳେ ଡି.ଏନ୍.ଏ (DNA) ଓ ଜିନ୍ ବିଷୟରେ ଜଣାନଥିବାରୁ ତାଙ୍କ ମତ ଆଦୃତ ହେଲା ନାହିଁ ।

ଊନବିଂଶ ଶତାବ୍ଦୀରେ ଇଂରେଜ ପ୍ରକୃତିବାଦୀ ଚାର୍ଲସ ଡାରଉଇନ୍ (୧୮୦୯-୧୮୮୨) ଏବଂ ଏ.ଆର୍. ଓ୍ୱାଲେସ (୧୮୨୩-୧୯୧୩) ପ୍ରାକୃତିକ ନିର୍ବାଚନ ତତ୍ତ୍ୱ (Theory of Natural Selection) ପ୍ରତିପାଦନ କରି ବିବର୍ତ୍ତନବାଦର ମୂଳଦୂଆ ପକାଇଲେ ।

ଡାରଉଇନ୍ କହିଲେ ଯେଉଁ ଜୀବ ପରିବେଶ ସହ ଖାପ ଖୁଆଇ ବଞ୍ଚି ରହିବା ପାଇଁ ଯୋଗ୍ୟ ସିଏ ହିଁ ବଞ୍ଚି ରହିବ ଅର୍ଥାତ୍ ଯୋଗ୍ୟତମ ଉଦ୍‌ବର୍ତ୍ତନ (Struggle for existence and Survival of the fittest) । ତାଙ୍କ ତତ୍ତ୍ୱର ସାରାଂଶ ହେଲା - (୧) ପ୍ରତ୍ୟେକ ଜୀବନ୍ତ ବସ୍ତୁ ପରିବର୍ତ୍ତନଶୀଳ । (୨) ସବୁ ପ୍ରକାର ପ୍ରାଣୀ ଜ୍ୟାମିତିକ ଅନୁପାତରେ ବୃଦ୍ଧି ହେବାକୁ ଚେଷ୍ଟା କରନ୍ତି । (୩) ସବୁ ଜାତୀୟ ପ୍ରାଣୀ ସେମାନଙ୍କ ସଂଖ୍ୟା ସମାନ ରଖିବାକୁ ଚେଷ୍ଟା କରନ୍ତି । (୪) ବିବର୍ତ୍ତନ ଧାରାରେ ଯେଉଁ ଜୀବ ଅଧିକ ଉନ୍ନତ ସେ ଅଧିକ ସନ୍ତାନ ପ୍ରକୃତିକୁ ଦାନ କରେ । ଯଦିଓ ସେ ସମୟରେ ଏହି ତତ୍ତ୍ୱ ଆଦୃତ ହେଲା ବହୁ ବୈଜ୍ଞାନିକ ଏହି ତତ୍ତ୍ୱ ସଂପୂର୍ଣ୍ଣ ଏବଂ ସବୁ ଶ୍ରେଣୀୟ ଜୀବନ୍ତ ବସ୍ତୁ ପାଇଁ ପ୍ରଯୁଜ୍ୟ ନୁହେଁ ବୋଲି ମତ ଦେଲେ ଏବଂ କାରଣମାନ ଦର୍ଶାଇଲେ । ଈଶ୍ୱରଙ୍କ ସୃଷ୍ଟିକୁ ଆହ୍ୱାନ କରିଥିବାରୁ ସେ ଚର୍ଚ୍ଚମାନଙ୍କର ଘୋର ବିରୋଧର ସମ୍ମୁଖୀନ ହେଲେ ।

ଊନବିଂଶ ଶତାବ୍ଦୀରେ ମେଣ୍ଡେଲ୍ (Johann Mendel 1822-1884) ତାଙ୍କର ଉତ୍ତରାଧିକାରୀ ନିୟମ (Law of inheritance) ପ୍ରତିପାଦନ କଲେ । ସେ ଦୁଇଟି ସିଦ୍ଧାନ୍ତ ଦେଲେ, ଯଥା-(୧) ଉତ୍ତରାଧିକାରୀ ସୂତ୍ରରେ ପିତାମାତା ଠାରୁ ଜିନ୍‌ର ସଂକ୍ରମଣ ବେଳେ ବିଚ୍ଛିନ୍ନକରଣ (Law of Segregation), (୨) ଦୁଇଟି ଚରିତ୍ରରୁ କୌଣସି ଗୋଟିଏ ସହ ଖାପ ଖାଇବା (Law of independent assortment) ।

ମେଣ୍ଡେଲ୍‌ଙ୍କ ଏହି ନିୟମର ଆବିଷ୍କାର ଡାରଉଇନ୍‌ଙ୍କ ତତ୍ତ୍ୱକୁ ବହୁ ସାହାଯ୍ୟ କଲା । ତଥାପି ଡାରଉଇନ୍‌ଙ୍କ ତତ୍ତ୍ୱ ବିବର୍ତ୍ତନ ପାଇଁ ସ୍ୱୟଂ ସଂପୂର୍ଣ୍ଣ ନୁହେଁ ବୋଲି ଅନୁଭବ କରାଗଲା । ତେଣୁ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ରୋନାଲ୍ଡ ଫିସର (Sir Ronald Fisher), ହାଲଡେନ, ସିଓ୍ୱାଲ ରାଇଟ୍, ମୋରଗାନ ହକ୍ସଲେ ଏବଂ ଅନ୍ୟ କେତେକ ବିଶିଷ୍ଟ ବୈଜ୍ଞାନିକ ଏବଂ ପରିବେଶବିତ୍‌ଙ୍କ ମିଳିତ ଚେଷ୍ଟାରେ ସିନ୍ଥେଟିକ୍ ଥିଓରୀ ପ୍ରତିପାଦନ କରାଗଲା । ଏହି ଥିଓରୀ ବା ତତ୍ତ୍ୱକୁ ବିବର୍ତ୍ତନବାଦର ଆଧୁନିକ ତତ୍ତ୍ୱ ବୋଲି ଗ୍ରହଣ କରାଯାଇଛି । ଏହି ଥିଓରୀରେ ଡାରଓ୍ୱିନଙ୍କ ପ୍ରାକୃତିକ ବଛାବଛି ତତ୍ତ୍ୱ, ମେଣ୍ଡେଲଙ୍କ ନିୟମ, ମ୍ୟୁଟେସନ, ଡ୍ରିଫ୍‌ଟ ଓ ମାଇଗ୍ରେସନ, (Drift and Migration) ଜୀବର କ୍ରମ ବିବର୍ତ୍ତନ ପାଇଁ ଦାୟୀ ବୋଲି କୁହାଯାଏ ।

ପ୍ରାକୃତିକ ବଛାବଛି ତତ୍ତ୍ୱ ଅନୁସାରେ ଜୀବ ପରିବେଶ ସହ ତାଳ ଦେଇ ବଞ୍ଚିବା ପାଇଁ ଧୀରେ ଧୀରେ ନିଜର ଜିନ୍‌କୁ ପରିବର୍ତ୍ତନ କରି ସବୁଠାରୁ ଉପଯୋଗୀ ରୂପ ଓ ଗୁଣର ଅଧିକାରୀ ହେବାକୁ ଚେଷ୍ଟା କରେ । ଯଦି ତାର କୌଣସି ରୂପ ବା ଗୁଣ ପରିବେଶ ସହ ଖାପ ଖାଇ ନପାରେ ବା ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୁଏ, ତାକୁ ବଦଳାଇବାକୁ ଚେଷ୍ଟା କରେ । ସଫଳ ଜୀବ ପରିବର୍ତ୍ତିତ ହୋଇ ନିଜର ବଂଶ ବୃଦ୍ଧି କରେ । ବିଫଳ ଜୀବ ଲୋପ ପାଇଯାଏ । ଏହି ପ୍ରକ୍ରିୟା ଧୀରେ ଧୀରେ ହୁଏ ।

ମ୍ୟୁଟେସନ୍ ପ୍ରକ୍ରିୟାରେ ଜୀବର ବିବର୍ତ୍ତନ ଖୁବ୍ ଶୀଘ୍ର ହୋଇଯାଏ । ଯେଉଁ ଅଞ୍ଚଳର କୌଣସି ଜାତୀୟ ଜୀବ ଅଳ୍ପ ସଂଖ୍ୟକ ଥାଆନ୍ତି ସେହି ଅଞ୍ଚଳରେ ମେଣ୍ଡେଲଙ୍କ ସୂତ୍ର ଅନୁସାରେ କୋଷ ବିଭାଜନ ସମୟରେ ଜିନ୍‌ର ନକଲରେ ଭୁଲ୍ ହୋଇ ଯିବାର ସଂଭାବନା ଅଧିକ । ଏହି ଭୁଲ୍ ଯୋଗୁଁ ନୂତନ ଜୀବନ ସୃଷ୍ଟି ହୋଇପାରେ କିମ୍ବା ଜୀବର ଦୈହିକ ବା ଚାରିତ୍ରିକ ପରିବର୍ତ୍ତନ ହୋଇପାରେ । ଦୁଇ ତିନି ପୁରୁଷ ମଧ୍ୟରେ କ୍ରୋମୋଜମ୍‌ରେ ପରିବର୍ତ୍ତନ ମଧ୍ୟ ହୋଇପାରେ । ବୈଜ୍ଞାନିକମାନେ ଅନୁମାନ କରନ୍ତି ଏହି ପ୍ରକ୍ରିୟା ଦ୍ୱାରା ବହୁ ଜାତି ଜୀବଙ୍କର ବିବର୍ତ୍ତନ ହୋଇଛି ।

କୌଣସି ଅଞ୍ଚଳରେ ଅଳ୍ପ ସଂଖ୍ୟକ ଜୀବ ଥିଲେ, ପରିବେଶ ଦ୍ୱାରା ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହେଲେ ଏବଂ ପ୍ରାକୃତିକ ବଛାବଛି ବା ମ୍ୟୁଟେସନ୍ ଦ୍ୱାରା ପରିବେଶ ଅନୁକୂଳ ବିବର୍ତ୍ତନ ସମ୍ଭବ ହୋଇନଥିଲେ, ଡ୍ରିଫ୍ଟ ପ୍ରକ୍ରିୟା ଦ୍ୱାରା ବିବର୍ତ୍ତନ ହେବାର ସମ୍ଭାବନା ଥାଏ । ଅଳ୍ପ ସଂଖ୍ୟକ ଜୀବ ନିଜର ବଂଶକୁ ରକ୍ଷା କରିବା ପାଇଁ କେତେକ ବଂଶ ଗୁଣ ପରିତ୍ୟାଗ କରନ୍ତି ଏବଂ ପରିବେଶ ଅନୁକୂଳ ଗୁଣ ଗ୍ରହଣ କରନ୍ତି । ଏହା ମନସ୍ତାତ୍ତ୍ୱିକ ସ୍ତରରେ ପ୍ରଭାବ ପକାଇ ସଂପୃକ୍ତ ଜିନ୍‌ର ପରିବର୍ତ୍ତନ କରାଏ । ଏହାକୁ ଡ୍ରିଫ୍ଟ ପ୍ରକ୍ରିୟା କୁହାଯାଏ ; କିନ୍ତୁ ଏହି ପ୍ରକ୍ରିୟା ଏତେ ବ୍ୟାପକ ନୁହଁ ବୋଲି ବୈଜ୍ଞାନିକମାନେ କୁହନ୍ତି ।

ଗୋଟିଏ ପ୍ରକାର ଜୀବ ଗୋଟିଏ ଅଞ୍ଚଳରୁ ଅନ୍ୟ ଅଞ୍ଚଳକୁ ସ୍ଥାନାନ୍ତର ହେଲେ ସେମାନେ ସେଠାରେ ସମଜାତୀୟ ଜୀବଙ୍କ ସହ ବସବାସ କରନ୍ତି । ମିଳାମିଶା କରନ୍ତି । କିନ୍ତୁ ଆଞ୍ଚଳିକ ଭିତ୍ତିରେ ସେମାନଙ୍କ ରୂପ ଓ ଗୁଣର ତଫାତ୍ ଥାଏ । ସ୍ଥାନାନ୍ତରିତ ଜୀବ ଆଞ୍ଚଳିକ ଜୀବର ଜୀବନ ଯାପନ ପ୍ରଣାଳୀ ଗ୍ରହଣ କରିନିଅନ୍ତି । ଯୌନ ସଂପର୍କ ରଖନ୍ତି । ଏହା ନୂତନ ପ୍ରକାର ଜୀବ ସୃଷ୍ଟିରେ ସାହାଯ୍ୟ କରେ ।

ଏହା ବ୍ୟତୀତ ତେଜସ୍କ୍ରିୟ ବିକିରଣ, ଏକ୍ସରେ, ବୃକ୍ଷଲତାର ଔଷଧୀୟ ଗୁଣ ଇତ୍ୟାଦି ଜିନ୍ ଉପରେ ପ୍ରଭାବ ପକାଇ ଜୀବ ବିକଶିତ ହୋଇପାରେ ବା ବିଲୁପ୍ତ ହୋଇପାରେ ।

ପ୍ରାକୃତିକ ବାତାବରଣ, ପାଣିପାଗ ଆଦି ବଦଳି ଗଲେ ଗୋଟିଏ ଜାତିର ପିତା, ମାତାଠାରୁ ନୂତନ ପ୍ରକାର ସନ୍ତାନ ଜନ୍ମ ହୋଇପାରନ୍ତି । ଏ ପ୍ରକାର ବିବର୍ତ୍ତନ ହଠାତ୍ ହୋଇଯାଏ ।

ଆମେ ଏହି ସବୁ ପ୍ରକ୍ରିୟାମାନଙ୍କ ମଧ୍ୟରୁ କୌଣସି ଗୋଟିଏ ବା ଏକାଧିକ ପ୍ରକ୍ରିୟା ଦ୍ୱାରା ପଚାଶ କୋଟି ବର୍ଷ ତଳୁ (ଭୂତତ୍ତ୍ୱ ଯୁଗ ଅନୁସାରେ ପେଲିଓଜୋଇକ୍ (Paleozoic) ଯୁଗର କାମ୍ବ୍ରିଆନ୍ ଉପଯୁଗ (cambrian) ବ୍ୟାକ୍ଟେରିୟମ ସ୍ତରରୁ ଧୀରେ ଧୀରେ ବିବର୍ତ୍ତିତ ହୋଇ ହୋଇ ବର୍ତ୍ତମାନର ମନୁଷ୍ୟ ଅବସ୍ଥା ପ୍ରାପ୍ତ ହୋଇଛନ୍ତି । (ଏଠାରେ ବିଭିନ୍ନ ଭୂତତ୍ତ୍ୱ ଯୁଗ, ଉପଯୁଗ ଓ ଅନୁଯୁଗ ଏବଂ ବିଭିନ୍ନ ସମୟରେ ସୃଷ୍ଟି ହୋଇଥିବା ଜୀବନମାନଙ୍କର ବିବରଣୀ ଦେବାର ଆବଶ୍ୟକତା ନାହିଁ) ।

ମୋଟ ଉପରେ ଏ ସଂସାରରେ ଜୀବନର ବିବର୍ତ୍ତନ ପ୍ରାୟ ଏକ ବୃକ୍ଷ ପରି । ଗଛଟିଏ ଟିକି ଅବସ୍ଥାରୁ ଶାଖା ପ୍ରଶାଖା ମେଲାଇ ଉପରକୁ ଉଠି ଉଠି ଯାଉଥାଏ । ଗୋଟିଏ ଶାଖାରୁ ଅନ୍ୟ ଗୋଟିଏ ଶାଖା ଉତ୍ପନ୍ନ ହୋଇ ଉପରକୁ ଉଠିଯାଏ ଏବଂ ମାତା ଶାଖାଟିକୁ ଛାଡିଯାଏ । ମାତା ଶାଖାଟି ପରିବେଶ ସହ ଖାପ ଖୁଆଇ ବଢିଥାଏ । ପରିବେଶ ସହ ଖାପ ଖୁଆଇ ନପାରିଲେ ମରିଯାଏ.।

ଏତେ ସବୁ ଉପକ୍ରମ ପରେ ଆମେ ବର୍ତ୍ତମାନ ଜାଣିବା ଆମେ କେଉଁଠୁ ଆସିଲେ ?

ପ୍ରତ୍ନତତ୍ତ୍ୱବିତ୍ ଏବଂ ଭୂତତ୍ତ୍ୱବିତ୍‌ମାନେ ଯାହା କୁହନ୍ତି ପ୍ରାୟ ପାଞ୍ଚ କୋଟି ବର୍ଷ ପୂର୍ବେ ମାଙ୍କଡ ଜାତୀୟ ଜୀବମାନଙ୍କର ଉଦ୍‌ଭବ ହେଲା । ଏମାନଙ୍କୁ ପ୍ରାଇମେଟିସ୍ (Primates) କୁହାଯାଏ ଅର୍ଥାତ୍ ଏମାନେ ମେରୁଦଣ୍ଡୀ, ସ୍ତନ୍ୟପାୟୀ ପ୍ରାଣୀ, ଛୁଆ ଜନ୍ମ କରନ୍ତି । ହାତ ଓ ପାଦରେ ନଖ ସହ ପାଞ୍ଚଟି ଆଙ୍ଗୁଠି ଥାଏ । ହାତରେ କୌଣସି ଜିନିଷକୁ ଶକ୍ତ ଭାବରେ ଧରି ପାରନ୍ତି । ଏମାନଙ୍କର ବଡ ମସ୍ତିଷ୍କ ଥାଏ । ସବୁ ପ୍ରକାରର ମାଙ୍କଡ, ଗିବନ୍, ଓରାଂଓଟାଂ, ଗରିଲା, ସିମ୍ପାଜି ଓ ମଣିଷ ଏହି ପ୍ରାଇମେଟ ଜାତୀୟ । ଏମାନଙ୍କ ସଂଖ୍ୟା ପ୍ରାୟ

୨୦୦ ପ୍ରକାରର । ଏହି ସମୟରେ ଆଫ୍ରିକା ମହାଦେଶ ଏବଂ ଆମେରିକା ମହାଦେଶ ଦ୍ୱୟ ପରସ୍ପର ଠାରୁ ବିଚ୍ଛିନ୍ନ ହୋଇଯିବାରୁ ଏହି ଭୂଖଣ୍ଡରେ ଉଦ୍‌ଭବ ହୋଇଥିବା ମାଙ୍କଡ ଜାତୀୟ ଜୀବମାନେ ଦୁଇ ଭାଗ ହୋଇଗଲେ । ଆମେରିକା ମହାଦେଶର ମାଙ୍କଡମାନେ ମଧ୍ୟ ଦୁଇଭାଗ ହୋଇଗଲେ । ଯେଉଁ ମାଙ୍କଡମାନେ ଆଫ୍ରିକାର ଅପେକ୍ଷାକୃତ ଉଷ୍ମ ଜଳବାୟୁ ଅଞ୍ଚଳରେ ରହୁଥିଲେ, ପ୍ରାୟ ଦୁଇ କୋଟି ବର୍ଷ ତଳେ ଏମାନଙ୍କ ମଧ୍ୟରୁ କିଛି ବିକଶିତ ହୋଇ ଏପ୍ (Ape) ବା ବଣ ମଣିଷ ସ୍ତରକୁ ଉନୀତ ହେଲେ । ଆଞ୍ଚଳିକ ଜଳବାୟୁ ଅନୁସାରେ ଓରାଂଓଟାଂ, ଗିବନ୍, ଗରିଲା ଏବଂ ସିମ୍ପାଞ୍ଜିମାନେ ସୃଷ୍ଟି ହେଲେ । ଏମାନେ ଗଛରେ ବାସ କରୁଥିଲେ ଏବଂ ଫଳମୂଳ ଭକ୍ଷଣ କରୁଥିଲେ । ଭୂତତ୍ତ୍ୱବିତ୍‌ମାନେ କୁହନ୍ତି ଯେ ଏହି ସମୟରେ ଆଫ୍ରିକାର ଜଳବାୟୁ ବଦଳି ବଦଳି ହିମ ପ୍ରବାହ ହୋଇଥିଲା । ଫଳରେ ବହୁ ଗଛ ପତ୍ର ନଷ୍ଟ ହୋଇଗଲା । ଏହି ଏପ୍‌ମାନଙ୍କ ମଧ୍ୟରୁ କେତେକ ଭୂମି ଉପରେ ରହିବାକୁ ଲାଗିଲେ ଏବଂ ଛୋଟ ଛୋଟ ଜୀବମାନଙ୍କର ମାଂସ ଭକ୍ଷଣ କଲେ । ମିଳିଥିବା ଜୀବାଂଶ (Fossil) ମାନଙ୍କର ଦାନ୍ତ ଗଠନରୁ ଏହା ଅନୁମାନ କରାଯାଏ । ଏହି ହିମ ପ୍ରବାହ ସମୟରେ ସମୁଦ୍ର ବରଫାବୃତ ଥିବାରୁ ଏମାନଙ୍କ ମଧ୍ୟରୁ କେତେକ ସୁଖ ଜଳବାୟୁ ଏବଂ ଖାଦ୍ୟ ଅନ୍ୱେଷଣରେ ଏସିଆ ମହାଦେଶକୁ ସ୍ଥାନାନ୍ତରିତ ହୋଇଥିବା ଅନୁମାନ । ଏମାନଙ୍କୁ ରାମପିଥାକସ୍ (Ramapithacs) କୁହାଯାଏ । ଜୀବ ବିଜ୍ଞାନୀମାନଙ୍କ ମତରେ ଏମାନେ ମନୁଷ୍ୟ ସ୍ତରକୁ ଉନ୍ନୀତ ହୋଇପାରିନାହାନ୍ତି ।

ପ୍ରାୟ ପାଞ୍ଚ ନିୟୁତ ବର୍ଷ ପୂର୍ବେ ଏହି ଆଫ୍ରିକାନ୍ ଏପ୍‌ମାନେ ଦୁଇ ଭାଗ ହୋଇଗଲେ । ଗୋଟିଏ ଭାଗ ଏପ୍ ସ୍ତରରେ ରହିଗଲେ ଏବଂ ଅନ୍ୟ ଭାଗଟି ମଣିଷ ସ୍ତରକୁ ବିକଶିତ ହୋଇଥିବା ଅନୁମାନ କରାଯାଏ ।

ସିମ୍ପାଞ୍ଜିମାନଙ୍କର ମାନବିକ ଗୁଣକୁ ଅନୁଧ୍ୟାନ କଲେ ଅନୁମାନ କରି ହେବ ଯେ ଏହି ଜାତୀୟ ଜୀବମାନେ ମାନବ ଅବସ୍ଥାକୁ ବିବର୍ତ୍ତିତ ହୋଇଛନ୍ତି । ଏମାନେ କିଛି ବାଟ କେବଳ ଦୁଇପାଦରେ ଚାଲିବାକୁ ସକ୍ଷମ । ମଣିଷ ପରି ପରସ୍ପରକୁ କୋଳାଗ୍ରତ କରନ୍ତି, ଆଲିଙ୍ଗନ କରନ୍ତି, ପିଠି ଥାପୁଡାନ୍ତି, ଚୁମ୍ବନ ଦିଅନ୍ତି, ଯୌନ ସଙ୍ଗୀ ନ ମିଳିଲେ ମନୁଷ୍ୟ ଭଳି ହସ୍ତ ମୈଥୁନ କରନ୍ତି । ଏମାନେ ହସନ୍ତି, ଖେଳନ୍ତି, ଭୟ, ଆନନ୍ଦ ବା ମାନସିକ ଆବେଗ, ଉତ୍ତେଜନା ତାଙ୍କ ମୁଖମଣ୍ଡଳରେ ଜଣାପଡେ । ଭାଷା କହି ନପାରିଲେ ମଧ୍ୟ ଭୟ, ଖେଳ, ହସ କୌତୁକ, ଯୌନ କ୍ରିୟା ଇତ୍ୟାଦିରେ ଭିନ୍ନ ଭିନ୍ନ ଶବ୍ଦ କରି ସାଙ୍ଗସାଥୀଙ୍କୁ ସଂକେତ ଦିଅନ୍ତି । ଶତ୍ରୁକୁ ଡରାଇବା ପାଇଁ ଗଛରୁ ଡାଳ ଭାଙ୍ଗି ବାଡି ତିଆରି କରି ଫିଙ୍ଗନ୍ତି ବା ପଥରକୁ ଛେଚି ଛୋଟ ଛୋଟ ଖଣ୍ଡ କରି ଫିଙ୍ଗନ୍ତି । ଏମାନଙ୍କର ମଧ୍ୟ ମନୁଷ୍ୟ ଭଳି ନୈତିକ ବ୍ୟବହାର (Moral behaviour) ଅଛି । ଦଳରେ ଥିବା ଦୁଇ ଅଣ୍ଡିରା ସିମ୍ପାଞ୍ଜି, ପରସ୍ପର ଯୁଦ୍ଧ କରି

ଯଦି ଶାନ୍ତ ନ ହୁଅନ୍ତି, ଦଳରେ ଥିବା ମାଇ ସିମ୍ପାଞ୍ଜିମାନେ ସଭା କରି ଅଣ୍ଡିରା ସିମ୍ପାଞ୍ଜିଙ୍କ ହାତରୁ ଧରିଥିବା ପଥର ବା ବାଡି ଛଡାଇ ନିଅନ୍ତି । ଦୁଇ ସିମ୍ପାଞ୍ଜିଙ୍କ ହାତରୁ ଧରିଥିବା ପଥର ବା ବାଡି ଛଡାଇ ନିଅନ୍ତି । ଦୁଇ ସିମ୍ପାଞ୍ଜି ଯୁଦ୍ଧ କରି ଯଦି ଜଣେ ହାରିଯାଏ, ଦଳରେ ଥିବା ଅନ୍ୟ ସିମ୍ପାଞ୍ଜିମାନେ ହାରିଥିବା ସିମ୍ପାଞ୍ଜିକୁ ସାନ୍ତ୍ୱନା ଦିଅନ୍ତି । ମଣିଷ ଏବଂ ସିମ୍ପାଞ୍ଜିଙ୍କ (DNA) ଭିତରେ କେବଳ ଶତକଡା ୧.୨ ଭାଗ ତଫାତ୍ ଅର୍ଥାତ୍ ୯୮% ରୁ ଅଧିକ ସାମଞ୍ଜସ୍ୟ ରହିଛି ।

ଏପ୍ ସ୍ତରରୁ ଆଧୁନିକ ମଣିଷ ସ୍ତରକୁ ଆସିବା ପାଇଁ ଏମାନଙ୍କୁ ପ୍ରାୟ ଚାରି ସ୍ତର ଦେଇ ଗତି କରିବାକୁ ପଡିଛି ବୋଲି ବିଭିନ୍ନ ସ୍ଥାନରୁ ଏ ପର୍ଯ୍ୟନ୍ତ ମିଳିଥିବା ଫସିଲ୍‌ମାନଙ୍କୁ ବିଶ୍ଳେଷଣ କରି ଜଣାପଡିଛି । ଏପ୍ ମାନଙ୍କର ଏହି କ୍ରମ ବିବର୍ତ୍ତନ ସ୍ତରମାନଙ୍କୁ ପୁରା ପ୍ରତ୍ନତତ୍ତ୍ୱବିତ୍ ଏବଂ ପୁରା ନୃତତ୍ତ୍ୱବିତ୍‌ମାନେ ନିମ୍ନଲିଖିତ ନାମ କରଣ କରିଛନ୍ତି । (୧) ଆର୍ଲି ହୋମାଇଣ୍ଡସ୍ (Early Hominds) ବା ମନୁଷ୍ୟ ସ୍ତରର ପୂର୍ବ ଅବସ୍ଥା । (୨) ହୋମୋ ହାବିଲସ୍ (Homo Habilis) ଏବଂ ହୋମୋ ଇରେକ୍ଟସ୍ (Homo Erectus) ବା ମନୁଷ୍ୟ ସ୍ତରର ପ୍ରଥମ ଅବସ୍ଥା, (୩) ହୋମୋ ସାପିଏନସ୍ (Homo Sapiens) ବା ମନୁଷ୍ୟ ସ୍ତରର ଶେଷ ଅବସ୍ଥା (୪) ହୋମୋ ସାପିଏନ୍‌ସ୍ ସାପିଏନ୍‌ସ୍ (Homo Sapiens Sapiens) ବା ମନୁଷ୍ୟ ସ୍ତରର ବର୍ତ୍ତମାନ ଅବସ୍ଥା ।

ମନୁଷ୍ୟ ସ୍ତରର ପୂର୍ବ ଅବସ୍ଥା ଜୀବମାନଙ୍କୁ ଏପ୍‌ମ୍ୟାନ୍ ବୋଲି ନାମିତ କରାଯାଇଛି । ଆଫ୍ରିକାର ବିଭିନ୍ନ ସ୍ଥାନରୁ ମିଳିଥିବା ଫସିଲ୍ ପଥରମାନଙ୍କୁ ଭୂତତ୍ତ୍ୱବିତ୍‌ମାନେ ପରୀକ୍ଷା କରି କହିଛନ୍ତି ଯେ ଏହି ଜାତୀୟ ପଶୁ ବର୍ତ୍ତମାନ ଠାରୁ ପ୍ରାୟ ୫ ନିୟୁତ ବର୍ଷରୁ ଏକ ନିୟୁତ ବର୍ଷ ମଧ୍ୟରେ ମହାଦେଶରେ ବିଚରଣ କରୁଥିଲେ । ପ୍ରଥମ ଅବସ୍ଥାରେ ଏମାନେ ନଇଁ ନଇଁ ଦୁଇ ପାଦରେ ଚାଲୁଥିଲେ କିନ୍ତୁ ପ୍ଲିଷ୍ଟୋସିନ୍ ପ୍ରସ୍ତର ସ୍ତରରୁ ମିଳିଥିବା ଫସିଲ୍ ମାନଙ୍କରୁ ଅନୁମାନ କରାଯାଏ ଯେ ଏମାନେ ସିଧା ହୋଇ ଚାଲି ପାରୁଥିଲେ । ଏପ୍ ମ୍ୟାନ୍‌ମାନଙ୍କର ଶେଷ ଅବସ୍ଥା ଜୀବନମାନଙ୍କୁ ଏ.ଆଫ୍ରିକାନସ୍ ନାମକରଣ କରାଯାଇଛି । ଏମାନଙ୍କର ମସ୍ତିଷ୍କର ଆକାର ପ୍ରାୟ ୪୫୦ ରୁ ୫୦୦ ଘନ ସେ.ମି. ମଧ୍ୟରେ ଥିଲା ।

ମଣିଷ ଯେ ମାଙ୍କଡ ସ୍ତରରୁ ବିବର୍ତ୍ତିତ ହୋଇ ଉଦ୍ଭବ ହୋଇଛି ଏହାର ଏକ ସୁଦୃଢ ପ୍ରମାଣ ୧୯୭୪ ମସିହାରେ ଇଥିଓପିଆରୁ ମିଳିଥିବା ଏକ ସ୍ତ୍ରୀ ଜୀବର କଙ୍କାଳ ପ୍ରମାଣ କରେ । ଏହି ଜୀବର ସଂପୂର୍ଣ୍ଣ କଙ୍କାଳର ପ୍ରାୟ ୪୦ ଭାଗ ଉଦ୍ଧାର କରାଯାଇଛି । ଏହାକୁ ଅଧ୍ୟୟନ କରି ପ୍ରତ୍ନତତ୍ତ୍ୱବିତ୍ ଏବଂ ଜୀବବିଜ୍ଞାନୀମାନେ ଆଉ ୪୦ ଭାଗ ନିର୍ମାଣ କରିବାକୁ ସମର୍ଥ ହୋଇଗଲେ । ଅର୍ଥାତ୍ ଏହି ଜୀବର ସଂପୂର୍ଣ୍ଣ କଙ୍କାଳର ପ୍ରାୟ ୮୦ ଭାଗ ବିଶ୍ଳେଷଣ ପାଇଁ ମିଳିଗଲା । ଏହି ଜୀବର ଉଚ୍ଚତା ପ୍ରାୟ ୩ଫୁଟ ୬ ଇଞ୍ଚ ଓ ଓଜନ ୨୭ କିଲୋଗ୍ରାମ୍

ଥିଲା । ଏହାର ଜୈବିକ ବୟସ ୨୮ ବର୍ଷରୁ ୩୦ ବର୍ଷ ମଧ୍ୟରେ ହେବ ବୋଲି ସ୍ଥିର କରାଯାଇଛି । ଏହାର ମସ୍ତିଷ୍କ ସିମ୍ପାଞ୍ଜି ଭଳି ଥିଲେ ମଧ୍ୟ ପେଲଭିକ୍ ଅସ୍ଥି (Pelvic Bone) ଅଛି । ପାଦର ଗଠନ ମଣିଷ ପରି । ଗୋଡ ଅସ୍ଥିରୁ ଜଣାପଡେ ଏ ଜୀବ ସିଧା ଚାଲି ପାରୁଥିବ । ଏହି କଙ୍କାଳ ମିଳିଥିବା ପଥରକୁ ପୋଟାସିୟମ-ଆରଗନ ପ୍ରଣାଳୀରେ ବିଶ୍ଳେଷଣ କରି ପଥରର ବୟସ ୩.୫ ନିୟୁତ ବର୍ଷ ପୂର୍ବର ବୋଲି ଭୂତତ୍ତ୍ୱବିତ୍‌ମାନେ ସ୍ଥିର କରିଛନ୍ତି । ଏଭଳି ନିଖୁଣ ଫସିଲ ଅନ୍ୟ କେଉଁଠୁ ମିଳିନାହିଁ । ଯେହେତୁ ବିବର୍ତ୍ତନ ପ୍ରକ୍ରିୟା ପଛକୁ ଫେରେ ନାହିଁ, ବୈଜ୍ଞାନିକମାନେ ପ୍ରାୟ ନିଶ୍ଚିତ ହୋଇଗଲେ ଯେ ମଣିଷର କ୍ରମ ବିକାଶ ମାଙ୍କଡମାନଙ୍କ ଠାରୁ ହୋଇଛି । ଏହି ଜୀବଟି ଏ. ଆଫ୍ରିକାନସ୍ ଜାତୀୟ ।

ଅନୁମାନ କରାଯାଏ ପୃଥିବୀର ବାତାବରଣ ଓ ଜଳବାୟୁର ପରିବର୍ତ୍ତନ ଯୋଗୁଁ ଏହି ଆଫ୍ରିକାନସ୍‌ମାନେ ପରିବେଶ ସହ ଖାପ ଖୁଆଇ ବଂଚି ରହିବା ପାଇଁ ହୋମୋ ହାବିଲସ୍ ସ୍ତରକୁ ବିକଶିତ ହେଲେ । ଏମାନେ ଖୋଲା ଘାସ ଜାଗା ମାନଙ୍କରେ ଡାଳ ପତ୍ରରେ ଛୋଟ ଛୋଟ କୁଡିଆ କରି କିମ୍ବା ଗୁମ୍ଫାମାନଙ୍କରେ ରହୁଥିଲେ । ଏମାନଙ୍କ ମସ୍ତିଷ୍କ ଆଫ୍ରିକାନସ୍‌ମାନଙ୍କ ଠାରୁ ପ୍ରାୟ ୨୦୦ ଘ.ନ ସେମି. ପର୍ଯ୍ୟନ୍ତ ବଡଥିଲା । ଏମାନେ ପଶୁ ହାଡ ଏବଂ ପଥରରୁ ନିକୃଷ୍ଟ ଧରଣର ଅସ୍ତ୍ର ତିଆରି କରି ଗୁମ୍ଫା ବା କୁଡିଆମାନଙ୍କରେ ସାଇତି ରଖୁଥିଲେ । ଏମାନଙ୍କ ଫସିଲ୍‌ମାନ କେବଳ ଆଫ୍ରିକାରୁ ମିଳିଛି ।

ଏମାନଙ୍କ ଠାରୁ ହୋମୋ ଇରେକ୍ଟସ୍‌ମାନେ ବିକଶିତ ହୋଇଥିବା ଅନୁମାନ । ହୋମୋ ଇରେକ୍ଟସ୍‌ମାନେ ୧.୬ ନିୟୁତ ବର୍ଷରୁ ୩ଲକ୍ଷ ବର୍ଷ ପୂର୍ବ ପର୍ଯ୍ୟନ୍ତ ଆଫ୍ରିକା, ଏସିଆ, ୟୁରୋପ ମହାଦେଶର ବିଭିନ୍ନ ଅଂଚଳରେ ବସବାସ କରୁଥିଲେ । ଭୂତତ୍ତ୍ୱବିତ୍‌ମାନଙ୍କ ମତରେ ଏହି ସମୟ ମଧ୍ୟରେ ଏକ ବ୍ୟାପକ ହିମ ପ୍ରବାହ ହୋଇ ସମୁଦ୍ରମାନଙ୍କର ଜଳ ପତନ ହ୍ରାସ ପାଇଛି ଏବଂ ଏସିଆ ଓ ୟୁରୋପକୁ ସ୍ଥଳପଥ ଉନ୍ମୁକ୍ତ ହୋଇଯାଇଛି । ହିମ ପ୍ରବାହରୁ ରକ୍ଷା ପାଇବା ପାଇଁ ଏମାନେ ଏହି ମହାଦେଶମାନଙ୍କୁ ସ୍ଥାନାନ୍ତରିତ ହୋଇଛନ୍ତି ଏବଂ ସେଠାକାର ଜଳବାୟୁ ଅନୁସାରେ ନିଜର ଜୀବନଯାପନ ପ୍ରଣାଳୀ ସୃଷ୍ଟି କରିଛନ୍ତି ।

ଏହି ଜୀବମାନଙ୍କ ଠାରୁ ମାନବ ସଭ୍ୟତାର ଅୟମାରମ୍ଭ କହିଲେ ଅତ୍ୟୁକ୍ତି ହେବ ନାହିଁ । ସବୁଠାରୁ ଉତ୍ସାହପ୍ରଦ ଆବିଷ୍କାର ହେଉଛି ଏମାନେ ନିଆଁର ନିୟନ୍ତ୍ରିତ ବ୍ୟବହାର ଜାଣିଥିଲେ ଏବଂ ପଶୁପକ୍ଷୀମାନଙ୍କୁ ନିଆଁରେ ପୋଡି ଖାଉଥିଲେ । ଏମାନେ ସଂଘବଦ୍ଧ ହୋଇ ରହୁଥିଲେ । ପଶୁ ହାଡରୁ ମୂନିଆଁ ଅସ୍ତ୍ର ତିଆରି କରିପାରୁଥିଲେ । ଏମାନେ ନିଜ ଜାତି ଜୀବମାନଙ୍କୁ ମାରି ଖାଉଥିବାର ଅସ୍ପଷ୍ଟ ପ୍ରମାଣ ମିଳିଛି । ଏମାନଙ୍କର ମସ୍ତିଷ୍କ ହୋମୋ ହାବିଲିସ୍‌ମାନଙ୍କଠାରୁ ବଡ ଓ ଅଧିକ ଗୋଲାକାର ଥିଲା । ପାଟିର ଆକାର ତାଙ୍କ ଠାରୁ

ଛୋଟିଆ ଥିଲା । ମୁଖ ମଣ୍ଡଳ ହାମିଲସ୍‌ମାନଙ୍କ ଭଳି ଏତେ ବାହାରି ନଥିଲା । ଏମାନଙ୍କ ହାରାହାରି ଉଚ୍ଚତା ପ୍ରାୟ ୫ଫୁଟ ଥିଲା । ଆମେରିକା ଏବଂ ଅଷ୍ଟ୍ରେଲିଆ ବ୍ୟତୀତ ପ୍ରାୟ ସବୁ ଜାଗାରୁ ଏମାନଙ୍କର ଫସିଲ୍‌ମାନେ ମିଳିଛି ।

ଏହି ହୋମୋ ଇରେକ୍ଟସ୍‌ମାନଙ୍କ ଠାରୁ ହୋମୋ ସାପିଏନସ୍ ବା ମନୁଷ୍ୟମାନେ ଉଦ୍‌ଭବ ହୋଇଛନ୍ତି । ଏମାନେ ପ୍ରାୟ ୪ଲକ୍ଷବର୍ଷ ପୂର୍ବରୁ ପୃଥିବୀ ପୃଷ୍ଠରେ ଦେଖାଦେଇ ୩୦ ହଜାର ବର୍ଷ ପୂର୍ବ ପର୍ଯ୍ୟନ୍ତ ବିଭିନ୍ନ ଅଂଚଳରେ ବସବାସ କରୁଥିଲେ । ଏମାନଙ୍କର ଏକ ଉପଜାତି ମଧ୍ୟ ୟୁରୋପ ଏବଂ ଦକ୍ଷିଣ ଏସିଆରେ ସମ ସାମୟିକ କାଳରେ ବସବାସ କରୁଥିଲେ । ଜର୍ମାନର ନିଏଣ୍ଡର ଉପତ୍ୟକାରୁ ପ୍ରଥମେ ଏହି ଉପଜାତିର ଫସିଲ୍ ମିଳିଥିବାରୁ ପ୍ରତ୍ନତତ୍ତ୍ୱବିତ୍‌ମାନେ ଏମାନଙ୍କ ନାମ ନିଏଣ୍ଡରଟାଲ ରଖିଛନ୍ତି । ନିଏଣ୍ଡରଟାଲମାନେ ସମସାମୟିକ ହୋମୋ ସାପିଏନସ୍ ଠାରୁ ଅଧିକ ଉଚ୍ଚା ଏବଂ ବଳଶାଳୀ ଥିବାର ଅନୁମାନ ଏବଂ ଏମାନଙ୍କ ମସ୍ତିଷ୍କ ଗୋଲ ଥାଇ ପଛ ପଟେ କିଛି ଅଂଶ ବାହାରିଥିଲା । ଏମାନଙ୍କର ହାରାହାରି ଉଚ୍ଚତା ୫ଫୁଟ ୬ଇଞ୍ଚ ପର୍ଯ୍ୟନ୍ତ ଥିଲା । ହୋମ ସାପିଏନସ୍ ଏବଂ ନିଏଣ୍ଡରଟାଲ୍ ଉଭୟ ହୋମୋ ଇରେକ୍ଟସଙ୍କ ଠାରୁ ଅଧିକ ବୁଦ୍ଧିଆ ଥିଲେ । ପଥର ଓ ପଶୁ ହାଡରେ ବିଭିନ୍ନ ପ୍ରକାର ମୁନିଆ ଅସ୍ତ୍ର ତିଆରି କରି ଗୁମ୍ଫା ଏବଂ କୁଡିଆମାନଙ୍କରେ ସାଇତି ରଖୁଥିଲେ । ଏମାନେ ଉଭୟ ଭୋଜିଥିଲେ । ପଶୁପକ୍ଷୀଙ୍କ ମାଂସ ପୋଡି ଖାଉଥିଲେ । ନିଆଁ ହୁଳା ବ୍ୟବହାର କରୁଥିଲେ । ଗୁମ୍ଫା କାନ୍ଥମାନଙ୍କରେ ଅସ୍ପଷ୍ଟ ରେଖା ଚିତ୍ରମାନ ଆଙ୍କି ପାରୁଥିଲେ । ଏମାନେ ମୃତକଙ୍କୁ ଗାତ ଖୋଳି କବର ଦେଉଥିଲେ । ଶବର ମୁଣ୍ଡ ଦକ୍ଷିଣ ଦିଗକୁ ରଖି ମୁଣ୍ଡ ତଳେ ପଥରର ତକିଆ ଦେଉଥିଲେ । କବର ଦେବା ସମୟରେ ଶବ ଉପରେ ଲୁହା କିମ୍ବା ମାଙ୍ଗାନିଜ୍ ପଥରରୁ ରଙ୍ଗ ତିଆରି କରି ମୃତକଙ୍କୁ ଖାଦ୍ୟ ଦାନ କରୁଥିଲେ । ଏଥିରୁ ଅନୁମାନ କରାଯାଏ ଏମାନଙ୍କର ଆତ୍ମାର ଅମରତ୍ୱ ଏବଂ ପୁନର୍ଜନ୍ମରେ ବିଶ୍ୱାସ ଥାଇପାରେ । ହୋମୋସାପିଏନସ୍ ମସ୍ତିଷ୍କର ହୋମୋଇରେକ୍ଟସମାନଙ୍କ ଠାରୁ ପ୍ରାୟ ଶତକଡା ୩୦ ଭାଗ ବଡ ଥିଲା, ଭାଷା କେନ୍ଦ୍ର ପୂର୍ଣ୍ଣ ବିକଶିତ ହୋଇ ନଥିଲେ ମଧ୍ୟ ବହୁ ଅଧିକ ବିକଶିତ ହୋଇଥିଲା । ଏମାନଙ୍କର ମୁଖମଣ୍ଡଳ ଆଧୁନିକ ମଣିଷ ଠାରୁ ବଡଥିଲା.।

ଏ ପର୍ଯ୍ୟନ୍ତ ମିଳିଥିବା ଫସିଲମାନଙ୍କୁ ବିଶ୍ଳେଷଣ କରି ଜଣାଯାଉଛି ଯେ ୟୁରୋପରେ ନିଏଣ୍ଡରଟାଲଙ୍କ ଉଦ୍‌ଭବ ବେଳକୁ ଆଫ୍ରିକା ଏବଂ ଏସିଆର କିଛି ଅଂଶରେ ଆଧୁନିକ ମଣିଷ ବା ହୋମୋ ସାପିଏନ୍‌ସ୍‌ମାନଙ୍କର ଉଭବ ହୋଇ ସାରିଥିଲା । ଆଜକୁ ପ୍ରାୟ ଏକ ଲକ୍ଷରୁ ଅଶୀହଜାର ବର୍ଷ ପୂର୍ବରୁ ପୃଥିବୀ ପୃଷ୍ଠରେ ଶେଷଥର ପାଇଁ ଖୁବ୍ ବଡ ଧରଣର ହିମ ପ୍ରବାହ ହୋଇ ବ୍ୟାପକ ଅଞ୍ଚଳ ବରଫାବୃତ ହୋଇଯାଇଥିଲା । ଏହି ସମୟରେ ସମୁଦ୍ର ଜଳ ପତ୍ତନ ପ୍ରାୟ ଶହେ ମିଟର ପର୍ଯ୍ୟନ୍ତ ତଳକୁ ଖସିଯାଇ ବିଭିନ୍ନ ଭୂଖଣ୍ଡକୁ ସ୍ଥଳପଥ ଉନ୍ମୁକ୍ତ

ହୋଇଯାଇଥିଲା । ଏହି ହୋମୋସାପିଏନସ୍‌ମାନେ ହିମ ପ୍ରବାହରୁ ରକ୍ଷା ପାଇବା ପାଇଁ ଆମେରିକା, ଅଷ୍ଟ୍ରେଲିଆ ସହ ପୃଥିବୀର ପ୍ରାୟ ସମସ୍ତ ସ୍ଥଳ ଭାଗକୁ ସ୍ଥାନାନ୍ତରିତ ହୋଇଗଲେ ଏବଂ ଆଞ୍ଚଳିକ ଜଳବାୟୁ ଅନୁସାରେ ନିଜକୁ ବିକଶିତ କରାଇଲେ । ୟୁରୋପ ଓ ଦକ୍ଷିଣ ଏସିଆରେ ନିଏଣ୍ଡରଟାଲ ଏବଂ ଏହି ଆଧୁନିକ ମଣିଷମାନେ ଏକ ସାଙ୍ଗରେ ବାସ କରୁଥିବାର ପ୍ରମାଣ ମିଳିଛି ।

ଏହି ମଣିଷମାନେ ସୃଷ୍ଟି ହେବା ବେଳକୁ ବର୍ତ୍ତମାନ ଆମେ ଦେଖୁଥିବା ମଣିଷ ପରି ଏତେ ସୁନ୍ଦର ନଥିଲେ । ଏମାନଙ୍କ ମୁଖମଣ୍ଡଳ ଯଦିଓ କପାଳ ସହ ଏକ ସମତଳକୁ ଚାଲି ଆସିଥିଲା, ନାକ ଛୋଟ ଥିଲା; ତଳ ପାଟି ଅପେକ୍ଷାକୃତ ଛୋଟ ଥିଲା । ଭାଷା କେନ୍ଦ୍ର ପୂର୍ଣ୍ଣ ବିକଶିତ ଥିବାରୁ ଅନୁମାନ କରାଯାଏ ଏମାନେ କଥା କହି ପାରୁଥିବେ । ଏମାନେ ପ୍ରଥମ ଅବସ୍ଥାରେ ହାତୀ ଦାନ୍ତ, ପଶୁ ହାଡ, ପଥର ଓ କାଠରେ ସୁନ୍ଦର ମୁନିଆଁ ଅସ୍ତ୍ର ତିଆରି କରିପାରୁଥିଲେ ଏବଂ ସଂଘବଦ୍ଧ ହୋଇ ଶିକାର କରୁଥିଲେ । ଧନୁ, ତୀର ଏବଂ ଭାଲ ଭଳି ଅସ୍ତ୍ର ତିଆରି କରି କୁଡିଆ କିମ୍ବା ଗୁମ୍ଫାମାନଙ୍କରେ ରହୁଥିଲେ । ଶୀତରୁ ରକ୍ଷ ପାଇବା ପାଇଁ ପଶୁ ଛାଲରେ ଟ୍ରାଉଜର, କୋଟ ଓ ଟୋପି ଇତ୍ୟାଦି ତିଆରି କରି ଜାଣିଥିଲେ । ମଣିଷ ଚିତ୍ରମାନଙ୍କରେ ପୁରୁଷ ଓ ସ୍ତ୍ରୀମାନଙ୍କର ଜନନ ଇନ୍ଦ୍ରିୟ, ସ୍ତ୍ରୀମାନଙ୍କର ନିତମ୍ବ, କୁଚ ଆଦିକୁ ବଡ ବଡ କରି ଅଙ୍କନ କରି ଅଲଗା ରଙ୍ଗ ଦେଉଥିଲେ । ହାତୀ ଦାନ୍ତରେ ମାଳି ତିଆରି କରି ପିନ୍ଧୁ ଥିବାର ପ୍ରମାଣ ମଧ୍ୟ ମିଳିଛି । ମୃତକମାନଙ୍କୁ କ୍ରିୟା କର୍ମସହ କବର ଦେଉଥିଲେ ଏବଂ ଶବର ମୁଣ୍ଡ ଦକ୍ଷିଣ ଦିଗକୁ ରଖି ପଥର ତକିଆ ଦେଉଥିଲେ । ଗୋଟେ ଗୋଟେ କବର ସ୍ଥାନରେ ୫/୬ ଜଣକୁ ଏକା ସଙ୍ଗରେ କବର ଦିଆଯାଇଥିବା ଫସିଲମାନ ମିଳିଛି ।

ପ୍ରାୟ ବାର ହଜାର ବର୍ଷ ପୂର୍ବରୁ ପୃଥିବୀର ପ୍ରାୟ ଅଧିକାଂଶ ଅଂଚଳରେ ଏମାନେ ବସବାସ ସ୍ଥାପନ କରି ସାରିଥିଲେ । ଏମାନେ ଖୁବ୍ ଶୀଘ୍ର ଏମାନଙ୍କର ଆକାର ପ୍ରକାର ବଦଳାଇ ପ୍ରାୟ ଦଶ ହଜାର ବର୍ଷ ପୂର୍ବରୁ ବର୍ତ୍ତମାନ ମଣିଷ ଚେହେରାକୁ ଆସି ଯାଇଥିଲେ । ବାର ହଜାରରୁ ଆଠ ହଜାର ବର୍ଷ ପୂର୍ବରୁ ଏମାନେ ପଶୁ ପାଳନ ଏବଂ ଚାଷ କାର୍ଯ୍ୟ ସମ୍ବନ୍ଧରେ କିଛି ଜ୍ଞାନ ଆହରଣ କରି ପାରିଥିଲେ ।

ବସ୍ତୁତଃ ଏହା ହିଁ ଆମ ସୃଷ୍ଟିର ଇତିହାସ । ଏହି ଇତିହାସର ସତ୍ୟତା କେତେ ? ବିଭିନ୍ନ ପ୍ରସ୍ତର ସ୍ତରରୁ ଯେଉଁ ସବୁ ଫସିଲ୍, ଗୁମ୍ଫା ବା ଖୋଦେଇ ସ୍ଥାନରୁ ଯେଉଁସବୁ ସନ୍ତକ ମିଳିଛି ସେ ସବୁ ପୃଥିବୀର ବିଭିନ୍ନ ସ୍ଥାନରେ ଗଚ୍ଛିତ ଅଛି । ତେଣୁ ଏହା ସତ୍ୟ । ଯେଉଁ ସବୁ ପ୍ରସ୍ତର ସ୍ତରମାନଙ୍କରୁ ଫସିଲମାନ ମିଳିଛି, ସେ ପ୍ରସ୍ତରମାନଙ୍କ ବୟସ ସାରା ପୃଥିବୀର ଭୂବିଜ୍ଞାନୀମାନଙ୍କ ଦ୍ୱାରା ସ୍ୱୀକୃତି ପ୍ରାପ୍ତ ଏବଂ ବହୁ ପରୀକ୍ଷିତ ହୋଇଥିବା ନିର୍ଦ୍ଧାରିତ ପ୍ରଣାଳୀରେ କରାଯାଇଛି । ତେଣୁ ଏହାକୁ ଅବିଶ୍ୱାସ କରିବାର କାରଣ ନାହିଁ । ଫସିଲ ବା ମିଳିଥିବା

ଆବର୍ଜନାମାନଙ୍କର ବିଶ୍ଳେଷଣ ସେହି ଶୃଙ୍ଖଳାରେ ଅଧ୍ୟୟନ କରିଥିବା ଶହ ଶହ ସର୍ବଶ୍ରେଷ୍ଠ ଜ୍ଞାନୀ ବ୍ୟକ୍ତିମାନଙ୍କ ଦ୍ୱାରା କରାଯାଇଛି । ତେଣୁ ବିଶ୍ଳେଷଣ ଆମ ସଂଦେହର ପରିସର ଭିତରକୁ ଆସିବା ଉଚିତ ନୁହେଁ । କେବଳ ଗୋଟିଏ ଆମ ସଂଦେହ ପରିସର ଭିତରକୁ ଆସୁଛି । ଯେଉଁ ଚାରୋଟି ବା ପାଂଚଟି ସ୍ତର ଦେଇ ଆଜି ଆମେ ଏ ଦେହ ବା ଜ୍ଞାନ ପ୍ରାପ୍ତ ହୋଇଛନ୍ତି ସେମାନଙ୍କର ଭିତରେ ପରସ୍ପର ସଂପର୍କ ଥିଲାକି ନାହିଁ ଏହା ନିଧାର୍ଯ୍ୟ ଭାବରେ କହିବା କଷ୍ଟକର ! ଯେହେତୁ ଏହି ଜୀବମାନଙ୍କର ବିଭିନ୍ନ ସ୍ତର ଭିତରେ ଗଠନ, ଆଚାର ବ୍ୟବହାର ଇତ୍ୟାଦିକୁ ଆଲୋଚନା କରି ସଂପୃକ୍ତ ଶୃଂଖଳାର ସର୍ବଶ୍ରେଷ୍ଠ ବିଜ୍ଞାନୀ ମାନେ ସ୍ଥିର କରିଛନ୍ତି ଏବଂ ଅନ୍ୟ କୌଣସି ଗ୍ରହଣ ଯୋଗ୍ୟ ତଥ୍ୟ ବର୍ତ୍ତମାନ ସୁଦ୍ଧା ଉପସ୍ଥାପିତ ହୋଇନାହିଁ, ଏହାକୁ ବିଶ୍ୱାସ କରିବା ବ୍ୟତୀତ ଗତ୍ୟାନ୍ତର ନାହିଁ । ଏହି ପରିପ୍ରେକ୍ଷୀରେ ବିଚାରକଲେ ଏହି ତଥ୍ୟ ହିଁ ସତ୍ୟ ବା ସତ୍ୟର ନିକଟତମ ।

ଆମର ପୂର୍ବ ପୁରୁଷମାନେ ଆମକୁ ଯେଉଁ ଜ୍ଞାନ ଦେଇଥିଲେ, ଈଶ୍ୱର ଗୋଟିଏ ଦିଗରେ ଆମକୁ ବର୍ତ୍ତମାନ ରୂପରେ ସୃଷ୍ଟି କରିଛନ୍ତି ବା ମନୁଷ୍ୟ ଶ୍ରେଷ୍ଠ ଜୀବ ବୋଲି ନିଜ ରୂପରେ ସୃଷ୍ଟି କରିଛନ୍ତି, ଏହା ସତ୍ୟର ଅପଳାପ ବ୍ୟତୀତ ଅନ୍ୟ କିଛି କହିବା କଷ୍ଟ । ମାଙ୍କଡ଼ ଅବସ୍ଥାରୁ ବର୍ତ୍ତମାନ ଅବସ୍ଥା ପାଇବା ପାଇଁ ଆମକୁ ପ୍ରାୟ ପାଞ୍ଚକୋଟି ବର୍ଷ ଲାଗିଛି । ଆମେ ପୃଥିବୀର ବାତାବରଣରେ ନିଜକୁ ବଞ୍ଚାଇ ରଖିବାକୁ ଚେଷ୍ଟା କରି କରି ଆଜି ଆମ ରୂପ ପାଇଛନ୍ତି । ନିଜ ଚେଷ୍ଟାରେ ଆମେ ଏ ରୂପ ଓ ଏ ସ୍ଥିତି ପାଇଛନ୍ତି । ଈଶ୍ୱର ଆମକୁ କୌଣସି ସାହାଯ୍ୟ କରିନାହାନ୍ତି । ଆମେ ଯେତେବେଳେ ହୋମୋହାବିଲସ୍ ସ୍ତରରୁ ହୋମୋ ଇରେକ୍ଟସ ସ୍ତରକୁ, ବିକଶିତ ହେଉଥିଲେ, ଆମ ଭାଇ ଏ. ରୋବଷ୍ଟସ୍ (A Robostus) ଆମଠାରୁ ଟିକିଏ ବୋକାଥିବାରୁ ଏ ପୃଥିବୀରୁ ନିଶ୍ଚିହ୍ନ ହୋଇଗଲେ । ଈଶ୍ୱର ତାଙ୍କୁ ସାହାଯ୍ୟ କଲେ ନାହିଁ । ଆମର ଏ ସୁନ୍ଦର ଓ ମନମୁଗ୍ଧକର ବର୍ତ୍ତମାନ ସ୍ଥିତିରେ ଈଶ୍ୱରଙ୍କ କୃପା ଭିକ୍ଷା କରି ତାଙ୍କ ସାହାଯ୍ୟକୁ ଅପେକ୍ଷା କରି ଆମର ଲାଭ କ'ଣ ହେବ ?

ଆମର ବର୍ତ୍ତମାନ ସ୍ଥିତି ଯେ ଆମ ବିବର୍ତ୍ତନର ଶେଷ ଅବସ୍ଥା, ଏପରି ଭାବିବା ମଧ୍ୟ ଅମୂଳକ ଏବଂ ପ୍ରକୃତି ନିୟମ ବିରୁଦ୍ଧ । ଦୀଘ ୫୦ କୋଟି ବର୍ଷ ଧରି ଯେଉଁ ପ୍ରକ୍ରିୟା ଦ୍ୱାରା ଆମେ ଆଜି ଏ ଅବସ୍ଥାରେ ପହଞ୍ଚିଛୁ, ତାହା ହଠାତ୍ ବନ୍ଦ ହୋଇଯିବ କେମିତି ? ମୋଟେ ଦଶହଜାର ବର୍ଷ ପୂର୍ବରୁ ଆମେ ଏ ରୂପ ପାଇଛୁ । ବର୍ତ୍ତମାନ ବି ମାନବ ମାନସିକ ସ୍ତରରେ ବହୁ ବିଶୃଙ୍ଖଳ । ମାନବ ଶରୀରରେ ରୋଗ ପ୍ରତିରୋଧକ ଶକ୍ତି ବହୁତ କମ୍ । ସ୍ତ୍ରୀ ଜାତି ସେମାନଙ୍କର ଜନନ ଇନ୍ଦ୍ରିୟ ସମସ୍ୟା, ଦୀର୍ଘ ଦିନ ଧରି ଗର୍ଭଧାରଣ ସମସ୍ୟା ଇତ୍ୟାଦି ପାଇଁ ମାନସିକ ଚାପର ସମ୍ମୁଖୀନ । ଏ ସବୁ ବିବର୍ତ୍ତନର ଆବଶ୍ୟକତା ଅଛି ।



# ବିଜ୍ଞାନ ବନାମ ଚମତ୍କାରିତା

*ଡକ୍ଟର ଶଶିକାନ୍ତ ଆଚାର୍ଯ୍ୟ*

ବିଜ୍ଞାନର ଆକ୍ଷରିକ ଅର୍ଥ ହେଉଛି ବିଶିଷ୍ଟ ଜ୍ଞାନ । ଅର୍ଥାତ୍ ଯେଉଁ ଜ୍ଞାନର ବିଶିଷ୍ଟତା ଅଛି ତାହା ହେଉଛି ବିଜ୍ଞାନ । ବିଜ୍ଞାନର ବିଶିଷ୍ଟତା ହେଉଛି ପ୍ରମାଣ । ଯେଉଁ ଜ୍ଞାନକୁ ପରୀକ୍ଷା ଦ୍ୱାରା ପ୍ରମାଣିତ କରିହୁଏ ସେହି ଜ୍ଞାନ ହେଉଛି ବିଜ୍ଞାନ । ବିଶ୍ୱ ବ୍ରହ୍ମାଣ୍ଡରେ ଯାହା କିଛି ଘଟୁଛି ସେହିସବୁ ଘଟଣା ପଛରେ କାରଣ ରହିଛି । ପ୍ରତ୍ୟେକ ଘଟଣାକୁ ସଠିକ୍ ଭାବରେ ଜାଣିବା କେବଳ ବିଜ୍ଞାନ ମାଧ୍ୟମରେ ସମ୍ଭବ । ବିଜ୍ଞାନର ପ୍ରଥମ କଥା ହେଉଛି ପ୍ରଶ୍ନ କରିବା । କାରଣ ବିଜ୍ଞାନ ସବୁ ଦାବିର ପ୍ରମାଣ ଚାହେଁ । କୌଣସି ଏକ ଦାବିକୁ ଯଦି ପ୍ରମାଣ ନ କରି ପାରିବ ତେବେ ସେ ଦାବିକୁ ବିଜ୍ଞାନ ଗ୍ରହଣ କରିବ ନାହିଁ । ଏକ ତର୍କଭିତ୍ତିକ ଓ ବିଶ୍ଳେଷଣାତ୍ମକ ଦୃଷ୍ଟିରେ ପ୍ରକୃତି ଓ ସମାଜକୁ ଦେଖିବା ହେଉଛି ବିଜ୍ଞାନ । ବିଜ୍ଞାନର ପରିପ୍ରକାଶ ହୁଏ ମଣିଷର କାମରେ । ଯେଉଁ ତତ୍ତ୍ୱ ପରୀକ୍ଷିତ ହୋଇପାରିବ ସେହି ତତ୍ତ୍ୱକୁ ବିଜ୍ଞାନସମ୍ମତ ତତ୍ତ୍ୱ ବୋଲି କୁହାଯାଏ । ଏଠାରେ ଗୋଟିଏ ଉଦାହରଣ ଦେଲେ କଥାଟି ଭଲ ଭାବରେ ବୁଝିହେବ ।

ଆମେ ବିଜ୍ଞାନରୁ ଜାଣିବାକୁ ପାଉଛୁ ଯେ ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ଅଛି । ଅର୍ଥାତ୍ ପ୍ରତ୍ୟେକ ଜିନିଷକୁ ପୃଥିବୀ ତା' ଆଡ଼କୁ ଟାଣିଆଣେ । ଆମେ ଯଦି ଉପରକୁ ପଥରଟିଏ ଫିଙ୍ଗିବା ତେବେ ତାହା ଆପେ ଆପେ ପୃଥିବୀର କେନ୍ଦ୍ର ଆଡକୁ ଟାଣି ହୋଇ ଆସିବ ଓ ପୃଥିବୀ ପୃଷ୍ଠରେ ପଡିବ । ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ପଥରଟିକୁ ଟାଣି ଆଣିପାରେ । ତୁମେ ଏହାକୁ ପରୀକ୍ଷା କରି ଦେଖାଇ ପାରିବ । ଏହି ଘଟଣାଟି ଭାରତ, ଇଂଲଣ୍ଡ, ଆମେରିକା ଓ ଜାପାନ ପ୍ରଭୃତି ଯେକୌଣସି ସ୍ଥାନରେ ଘଟିବ । ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ଅଛି ବୋଲି ଯେଉଁ ତତ୍ତ୍ୱଟି ନିଉଟନ୍ ଦେଇଛନ୍ତି ତାହାକୁ ଯେ କେହି ମଣିଷ ପରୀକ୍ଷା କରି ଦେଖାଇ

ପାରିବ । ତେଣୁ ସଂଜ୍ଞାନୁସାରେ ଏହ ଜ୍ଞାନଟି ହେଉଛି ବିଜ୍ଞାନ । ଏହିପରି ପ୍ରକୃତି ଓ ସମାଜରେ ଯାହା ସବୁ ଘଟୁଛି ତା'ର ସଠିକ୍ କାରଣ ଯୋଗାଇବା ହେଉଛି ବିଜ୍ଞାନର କାମ । ଯେଉଁମାନେ ଏହିପରି ବିଶିଷ୍ଟ ଜ୍ଞାନକୁ ଅର୍ଜନ କରିଥାନ୍ତି ସେମାନେ ହେଉଛନ୍ତି ବୈଜ୍ଞାନିକ । ବିଜ୍ଞାନ କୌଣସି ବ୍ୟକ୍ତିର ଖାମଖିଆଲି ମନ ଉପରେ ନିର୍ଭର କରେ ନାହିଁ । ଯେତେ ପ୍ରଭାବଶାଳୀ ବ୍ୟକ୍ତି ହେଉନା କାହିଁକି ବିଜ୍ଞାନ ସେପରି ବ୍ୟକ୍ତିର ତତ୍ତ୍ୱକୁ ଆଦୌ ଗ୍ରହଣ କରି ନଥାଏ । ବିଜ୍ଞାନ ହେଉଛି ମଣିଷର ଅମୂଲ୍ୟ ସମ୍ପଦ । ବିଜ୍ଞାନ ମଣିଷକୁ ଶକ୍ତିଶାଳୀ କରିଛି । ବିଜ୍ଞାନ ଯୋଗୁଁ ବିଭିନ୍ନ ସଭ୍ୟତା ପୃଥିବୀରେ ମୁଣ୍ଡଟେକି ପାରିଛି ।

ଅନ୍ଧବିଶ୍ୱାସ କ'ଣ ? :

ପ୍ରକୃତି ଓ ସମାଜରେ ଘଟୁଥିବା ଯେ କୌଣସି ଘଟଣାକୁ ଠିକ୍ ଭାବରେ ଅନୁସନ୍ଧାନ ନକରି ତା'ର କାରଣକୁ ଅନ୍ୟ କାହାଠାରୁ ଶୁଣି ମାନିନେବାଟା ହେଉଛି ଅନ୍ଧବିଶ୍ୱାସ । ଅନ୍ଧବିଶ୍ୱାସର ଗୋଟିଏ ଉଦାହରଣ ଦେଲେ ତାହା ଭଲ ଭାବରେ ବୁଝିହେବ ।

ଆମ ସମାଜରେ ଗରିବ ନିଃସହାୟ ମହିଳାଙ୍କୁ ଡାହାଣୀ ବୋଲି କହିଥାଆନ୍ତି । ଯେଉଁ ମହିଳାଙ୍କର ସ୍ୱାମୀ ଓ ପିଲାଛୁଆ ନଥିବେ ତାକୁ ଗୁଣିଆ ଡାହାଣୀ ବୋଲି କହିଥାଏ । ତା'ପରିବାର ଲୋକେ ରୋଗାଗ୍ରସ୍ତ ହୋଇ ମଲେ ମଧ୍ୟ ଡାହାଣୀ ସେମାନଙ୍କୁ ଖାଇଦେଲା ବୋଲି କୁହାଯାଏ । ଡାହାଣୀ ଦୃଷ୍ଟି ପଡିଲେ ରୋଗ ହୁଏ, ଡାହାଣୀ ରକ୍ତ ଶୋଷିନିଏ, ଏହିପରି ଅନେକ ଅବାନ୍ତର କଥା ଡାହାଣୀ ନାଆଁରେ କୁହାଯାଇଥାଏ ।

ଥରେ ଗୋଟିଏ ଗାଁ'ରେ ଗୋଟିଏ ନିଃସହାୟ ବୃଦ୍ଧା ଡାହାଣୀ ବୋଲି ପ୍ରଚାର ହୋଇଗଲା । ସେ କାଳେ ଅନ୍ୟ ପିଲାଙ୍କୁ ମାରିଦେବ ସେଥିପାଇଁ ଗାଁ'ର ଲୋକେ ଏକଜୁଟ ହୋଇ ବୁଢ଼ୀକୁ ଡାକିଲେ । ଗୋଟିଏ କରେଇରେ ତେଲକୁ ଫୁଟାଇଲେ ଏବଂ ଡାହାଣୀକୁ ହାତ ବୁଡାଇବାକୁ କହିଲେ । ମନ୍ତ୍ରଣ ହୋଇଥିବା ତତଲା ତେଲରେ ହାତ ବୁଡ଼ାଇଲେ ଯଦି ଫୋଟକା ନହେବ ତେବେ ସେ ଡାହାଣୀ ନୁହେଁ ବୋଲି ପ୍ରମାଣିତ ହେବ ବୋଲି ପ୍ରଚାର ହୋଇଥିଲା । ବୃଦ୍ଧା ଜଣକ ହାତ ବୁଡାଇବା ପରେ ହାତ ଫୋଟକା ହେଲା । ତେଣୁ ଲୋକମାନେ ତାକୁ ପିଟି ପିଟି ମାରିଦେଲେ । କାହାରି ମନରେ ଆସିଲା ନାହିଁ ଯେ ତତଲା ତେଲରେ ହାତ ବୁଡ଼ାଇଲେ ଯେକୌଣସି ଲୋକର ହାତ ଫୋଟକା ହେବ । ଏବେ ମଧ୍ୟ ଖବର କାଗଜରେ ଡାହାଣୀ ସନ୍ଦେହ କରି ମାରିବା ଖବର ଦେଖିବାକୁ ମିଳୁଛି । ଆମ ସମାଜରେ ଅନେକ ଅନ୍ଧବିଶ୍ୱାସ ରହିଛି । ସେହି ଅନ୍ଧବିଶ୍ୱାସ ଯୋଗୁଁ ଆମେ ବହୁତ ଦୁଃଖ ପାଉଛେ ।

ବର୍ତ୍ତମାନରେ ପ୍ରଶ୍ନ ଆସିବା ସ୍ୱାଭାବିକ ଯେ ମଣିଷ ସମାଜରେ ବିଜ୍ଞାନ ଓ ଅନ୍ଧବିଶ୍ୱାସ ଭଳି ପରସ୍ପର ବିରୋଧୀ ଚିନ୍ତାଧାରା ରହିଛି କିପରି ! ଏହି ପ୍ରଶ୍ନର ଉତ୍ତର ପାଇବାକୁ ହେଲେ ଆମକୁ କେତେକ ମୌଳିକ ତତ୍ତ୍ୱ ବୁଝିବା ଦରକାର ।

ଅଲୌକିକତା କ'ଣ ?:

ଯେଉଁ ଘଟଣା ପ୍ରକୃତିର ନିୟମକୁ ଉଲଂଘନ କରେ ସେହି ଘଟଣାକୁ ଆଲୌକିକ ଘଟଣା ବେଲି କୁହାଯାଏ । ଏହି ଘଟଣାକୁ ପ୍ରକୃତିର ନିୟମ ପ୍ରୟୋଗ କରି ବୁଝାଇ ହୁଏ ନାହିଁ । ମଣିଷ ଅଲୌକିକ ଘଟଣା ଘଟାଇପାରେ ନାହିଁ । କେବଳ ଈଶ୍ୱର ଅଲୌକିକ ଘଟଣା ଘଟାଇ ପାରନ୍ତି ବୋଲି ବିଶ୍ୱାସ କରାଯାଏ । ଯେଉଁ ବିଷୟକୁ ମଣିଷ ବୁଝାଇ ପାରେ ନାହିଁ ତାକୁ ଦୈବିକ ବା ଅଲୌକିକ ବୋଲି କୁହାଯାଏ । ଉଦାହରଣ ସ୍ୱରୂପ ଯୀଶୁଖ୍ରୀଷ୍ଟ ପାଣିକୁ ମଦ କରିଥିଲେ ବୋଲି ବାଇବେଲରେ ଲେଖା ଅଛି । ସେହିପରି ଶ୍ରୀକୃଷ୍ଣ କାଣି ଆଙ୍ଗୁଠିରେ ଗିରି ଗୋବର୍ଦ୍ଧନକୁ ଟେକି ଧରି ଗୋପପୁରବାସୀଙ୍କୁ ଆଶ୍ରୟ ଦେଇଥିବା କଥା ହିନ୍ଦୁ ପୁରାଣରେ ବର୍ଣ୍ଣନା କରାଯାଇଅଛି । ମୁସଲମାନମାନେ ଆଲ୍ଲାଙ୍କର ଅଲୌକିକ ଶକ୍ତି ଅଛି ବୋଲି ବିଶ୍ୱାସ କରନ୍ତି । ତେଣୁ ସବୁ ଧର୍ମରେ ଈଶ୍ୱରଙ୍କର ଗୁଣଗାନ୍ କରାଯାଇଅଛି ।

ଯେହେତୁ ଈଶ୍ୱରଙ୍କର ଅଲୌକିକ ଶକ୍ତି ଅଛି ବୋଲି ଜନସାଧାରଣ ବିଶ୍ୱାସ କରନ୍ତି, ସେହି ହେତୁ କେତେକ ଚାଲାଖ ମଣିଷ କେତେ ଗୁଡ଼ିଏ କୌଶଳ ଦେଖାଇ ତାଙ୍କର ଅଲୌକିକ ଶକ୍ତି ଅଛି ବୋଲି ଦାବି କରିଥାନ୍ତି । ସରଳ ଜନସାଧାରଣ ସେହି କୌଶଳ ଦେଖି ସହଜରେ ସେମାନଙ୍କର ଅଲୌକିକ ଶକ୍ତି ଅଛି ବୋଲି ବିଶ୍ୱାସ କରନ୍ତି । ଯେହେତୁ ଅଲୌକିକ ଶକ୍ତି ଈଶ୍ୱରଙ୍କର ଅଛି ତେଣୁ ଯେଉଁ ମଣିଷ ଅଲୌକିକ ଶକ୍ତି ଅଛି ବୋଲି କୌଶଳ ପ୍ରଦର୍ଶନ କରି ଦେଖାଇ ପାରିଲା ତାଙ୍କୁ ଈଶ୍ୱରଙ୍କର ଶକ୍ତି ମିଳିଛି ବୋଲି ଜନସାଧାରଣ ବିଶ୍ୱାସ କରିବା ସାଧାରଣ କଥା ।

ପୃଥିବୀର ସୃଷ୍ଟି:

ବୈଜ୍ଞାନିକ ମାନେ ପରୀକ୍ଷା କରି ଜାଣି ପାରିଛନ୍ତି ଯେ ପୃଥିବୀର ବୟସ ପ୍ରାୟ ୪୫୦ କୋଟି ବର୍ଷ । ପୃଥିବୀ କିପରି ସୃଷ୍ଟି ହେଲା ଏପର୍ଯ୍ୟନ୍ତ ସ୍ଥିର କରାଯାଇ ପାରିନାହିଁ । ବୈଜ୍ଞାନିକଙ୍କ ମହଲରେ ପ୍ରଧାନତଃ ୨ଟି ମତବାଦ ଦେଖିବାକୁ ମିଳେ । ଯଥା-(କ) ସଂକୋଚନ ମତବାଦ, (ଖ) ବିଭାଜନ ମତବାଦ ।

ବିଭାଜନ ମତବାଦ (ବା ବିଗ୍‌ବ୍ୟାଂଗ ସିଦ୍ଧାନ୍ତ)କୁ ପ୍ରମାଣ କରିବାକୁ ବୈଜ୍ଞାନିକମାନେ ଲାଗି ପଡ଼ିଛନ୍ତି । (ଲାର୍ଜହାଡେନ କଲିଡର) ପରୀକ୍ଷଣ ଦ୍ୱାରା ଏହି ମତବାଦ ପ୍ରମାଣିତ ହେବ ବୋଲି ବୈଜ୍ଞାନିକ ମାନେ କହୁଛନ୍ତି । ସ୍ୱିଜରଲାଣ୍ଡର ଗୋଟିଏ ବଡ଼ ସୁଡ଼ଙ୍ଗରେ ଏହି ପରୀକ୍ଷଣ ହୋଇଛି ।

ପୃଥିବୀର ବୟସ ତେଜସ୍କ୍ରିୟ ଶୀଳାମାନଙ୍କ ସାହାଯ୍ୟରେ ନିରୂପଣ କରାଯାଇଛି । ତେଣୁ ପୃଥିବୀର ବୟସ ସମ୍ବନ୍ଧରେ ଦ୍ୱିମତ ହେବାର କିଛି ନାହିଁ । ଧର୍ମ ପୁସ୍ତକ ମାନଙ୍କରେ

ପୃଥିବୀର ସୃଷ୍ଟି ଓ ବୟସ ସମ୍ବନ୍ଧରେ ଯେଉଁ ସବୁ କଥା ଲେଖାଯାଇଅଛି ସେଗୁଡ଼ିକ କଳ୍ପନା ପ୍ରସୂତ । ପରୀକ୍ଷଣ ଦ୍ୱାରା ପ୍ରମାଣିତ ନୁହେଁ । ତେଣୁ ଭିନ୍ନ ଭିନ୍ନ ଧର୍ମରେ ଭିନ୍ନ ଭିନ୍ନ ମତବାଦ ଦେଖିବାକୁ ମିଳିଥାଏ । ଏଗୁଡ଼ିକର ସତ୍ୟତା ଆଦୌ ନାହିଁ ।

ଜୀବଜଗତର ସୃଷ୍ଟି:

ପୃଥିବୀରେ ଘଟିଥିବା କେତେଗୁଡ଼ିଏ ମୁଖ୍ୟ ଘଟଣା ନିମ୍ନରେ ଦିଆଗଲା ।

ତାଲିକା

| ସମୟ (ବର୍ଷ ପୂର୍ବରୁ) | ଘଟଣା |
|---|---|
| ୩୮୦ କୋଟି ବର୍ଷ | ସରଳ ଜୀବକୋଷ |
| ୨୦୦ କୋଟି ବର୍ଷ | ଜଟିଳ ଜୀବକୋଷ |
| ୬୦ କୋଟି ବର୍ଷ | ସରଳ ଜୀବ |
| ୫୦ କୋଟି ବର୍ଷ | ମାଛ |
| ୪୮ କୋଟି ବର୍ଷ | ଗଛ |
| ୪୦ କୋଟି ବର୍ଷ | କୀଟ ପତଙ୍ଗ |
| ୨୦ କୋଟି ବର୍ଷ | ସ୍ତନ୍ୟପାୟୀ ପ୍ରାଣୀ |
| ୧୫ କୋଟି ବର୍ଷ | ଚଢ଼େଇ |
| ୧୨ ଲକ୍ଷ ବର୍ଷ | ମଣିଷପରି ପ୍ରାଣୀ |

ପୃଥିବୀ ସୃଷ୍ଟିପରେ ଜଳବାୟୁ ପରିବର୍ତ୍ତନ ସହିତ ଜୀବଜଗତର ପରିବର୍ତ୍ତନ (Evolution) ପ୍ରକ୍ରିୟାରେ ମଣିଷ ସୃଷ୍ଟି ହୋଇଛି । ମଣିଷ ପୂର୍ବରୁ ବୃକ୍ଷଲତା, ମାଛ, ସରୀସୃପ, ଚଢ଼େଇ ଓ ଅନ୍ୟ ପଶୁ ସବୁ ସୃଷ୍ଟି ହୋଇଛି ।

ପୃଥିବୀ ସୃଷ୍ଟି ହେବା ସମୟରୁ ସୂର୍ଯ୍ୟ ଚାରିପଟେ ଘୂରୁଛି । ଏହିପରି କୋଟି କୋଟି ବର୍ଷ ଘୂରିବା ଭିତରେ ପୃଥିବୀର ବାୟୁମଣ୍ଡଳରେ ମିଥେନ୍, ଆମୋନିଆ, ଉଦ୍‌ଜାନ ଏବଂ ଜଳୀୟବାଷ୍ପ ଦେଖାଦେଇଛି । ସେତେବେଳେ ବାୟୁମଣ୍ଡଳର ଉପରିଭାଗରେ ଓଜନ (Ozone) ସ୍ତର ନଥିବାରୁ ସୂର୍ଯ୍ୟଙ୍କ ଠାରୁ ଅତି ବାଇଗଣୀ ରଶ୍ମି (Ultra violet Ray) ପୃଥିବୀର ବାୟୁମଣ୍ଡଳ ଭେଦକରି ପୃଥିବୀ ପୃଷ୍ଠକୁ ଆସିଥିଲା । ବହୁ ସଂଖ୍ୟାରେ ଜୀବନ୍ତ ଆଗ୍ନେୟଗିରି ଥିଲା । ଏହି ସବୁ ପ୍ରକ୍ରିୟା ଯୋଗୁଁ ଶର୍କରା (Sugar) ଓ ଆମିନୋ ଅମ୍ଳ (Amino Acid) ପ୍ରଭୃତି ଯୌଗିକ ପଦାର୍ଥ ସୃଷ୍ଟି ହୋଇପାରିଲା । ପରୀକ୍ଷାଗାରରେ ମିଥେନ୍, ଆମୋନିଆ, ଉଦ୍‌ଜାନ ଓ ଜଳୀୟବାଷ୍ପର ମିଶ୍ରଣରେ ବିଦ୍ୟୁତ ସ୍ଫୁଲିଙ୍ଗ (Electric spark) ଘଟାଇ ଆମିନୋ ଅମ୍ଳ ସୃଷ୍ଟି କରାଯାଇ ପାରିଛି । ଅତି ବାଇଗଣୀ ରଶ୍ମି ପ୍ରଭାବରେ ମଧ

ଉପରୋକ୍ତ ବାଷ୍ପର ମିଶ୍ରଣରୁ ଆମିନୋ ଅମ୍ଳ ସୃଷ୍ଟି କରାଯାଇ ପାରିଛି । ତେଣୁ ସୂର୍ଯ୍ୟଙ୍କ ଠାରୁ ଆସୁଥିବା ଅତି ବାଇଗଣୀ ରଶ୍ମି ଦ୍ୱାରା ପୃଥିବୀ ପୃଷ୍ଠରେ ବହୁତ ପ୍ରକାର ଯୌଗିକ ପଦାର୍ଥ ସଂଶ୍ଳେଷିତ ହୋଇଥିଲା ବୋଲି ସିଦ୍ଧାନ୍ତ କରିବା ଯୁକ୍ତିଯୁକ୍ତ । ପୃଥିବୀ ପୃଷ୍ଠରେ ଶର୍କରା, ଆମିନୋ ଅମ୍ଳ, ଯବକ୍ଷାରଜାନ (Nitrogen) ଥିବା ବିଭିନ୍ନ ପଦାର୍ଥ ଓ ଅନ୍ୟାନ୍ୟ ସରଳ ଯୋଗିକ ପଦାର୍ଥର ସୃଷ୍ଟି ପରେ ଜୀବଜଗତର ସୃଷ୍ଟି ସମ୍ଭବ ହେଲା । ଏଗୁଡିକ ହେଲା ଜୀବ ସୃଷ୍ଟି ପାଇଁ ଦରକାର ପଡୁଥିବା ଅଜୈବ ସରଳ ପଦାର୍ଥ । ଅଜୈବ ସରଳ ପଦାର୍ଥର ବିଭିନ୍ନ ସଂଶ୍ଳେଷଣ (synthesis) ରୁ ଜୈବିକ ପଦାର୍ଥର ସୃଷ୍ଟି ହୋଇଛି ।

ଜୀବଜଗତର ପ୍ରଧାନ ଲକ୍ଷଣ ହେଉଛି ଜୈବିକ ପଦାର୍ଥର ଚକ୍ର (Cycle of Organic Matter); ଅର୍ଥାତ୍ ଜୈବିକ ପଦାର୍ଥରେ ଅନବରତ ସଂଶ୍ଳେଷଣ ଓ ବିଘଟନ (Synthesis and Degradation) ଚକ୍ରୀୟ ପଦ୍ଧତିରେ ଘଟିଥାଏ । ଅଜୈବିକ ପଦାର୍ଥର ସଂଶ୍ଳେଷଣରୁ ଜୈବିକ ପଦାର୍ଥ ଓ ଜୈବିକ ପଦାର୍ଥର ବିଘଟନରୁ ଅଜୈବିକ ପଦାର୍ଥର ସୃଷ୍ଟି ହେଉଛି ଚକ୍ରୀୟ ପଦ୍ଧତି । ଜନ୍ମ ଓ ମୃତ୍ୟୁ ହେଉଛି ଜୀବନର ପ୍ରଧାନ ଲକ୍ଷଣ । କେବଳ ଜନ୍ମ କିମ୍ବା କେବଳ ମୃତ୍ୟୁ ସମ୍ଭବ ନୁହେଁ ।

ଜୀବଜଗତର ସୃଷ୍ଟି ସମ୍ବନ୍ଧରେ ବୈଜ୍ଞାନିକମାନେ ଯେଉଁସବୁ ତଥ୍ୟମାନ ଉପସ୍ଥାପନ କରିଛନ୍ତି ସେଥିରୁ ପ୍ରମାଣିତ ହୋଇଛି ଯେ ପୃଥିବୀ ସୃଷ୍ଟି ହେବା ସମୟରେ କୌଣସି ଜୀବନର ସୃଷ୍ଟି ହୋଇ ନଥିଲା । ପରବର୍ତ୍ତୀ କାଳରେ ଏକକୋଷୀ ପ୍ରାଣୀର ସୃଷ୍ଟି ହେଲା । ତା'ପରେ ବହୁକୋଷୀ ପ୍ରାଣୀ ଓ ବିଭିନ୍ନ ଜୀବଜନ୍ତୁ ଓ ବୃକ୍ଷଲତାର ସୃଷ୍ଟି ହେଲା ।

ଧର୍ମ ଶାସ୍ତ୍ରମାନଙ୍କରେ ଯେଉଁସବୁ ତଥ୍ୟ ଦିଆଯାଇଛି ତାହା କେବଳ କଳ୍ପନା ପ୍ରସୂତ । ସବୁ ଧର୍ମରେ ଜୀବ ସୃଷ୍ଟିର କାରଣ ଏକା ନୁହେଁ । ଅତୀତ କାଳରେ ଯେତେବେଳେ ବିଜ୍ଞାନର ଉନ୍ନତି ଲାଭ ହୋଇନଥିଲା ସେତେବେଳେ ପ୍ରତ୍ୟେକ ଧର୍ମ ଅଲଗା ଅଲଗା କାରଣ ଦର୍ଶାଇଲେ । ଯେଉଁଠାରେ ଧର୍ମ ପ୍ରଚାର ହେଲା ସେଠାର ଜନସାଧାରଣ ପ୍ରଚାର ଅନୁସାରେ ଜୀବଜଗତ ସୃଷ୍ଟି ସମ୍ବନ୍ଧରେ ଧାରଣା କରିବାକୁ ବାଧ୍ ହେଲେ । ଧର୍ମର ଗୋଟିଏ ବିଶେଷତ୍ୱ ଈଶ୍ୱରଙ୍କ ନାମରେ ଲୋକଙ୍କ ମନରେ ଭୟ ସୃଷ୍ଟି କରିବା । ଧର୍ମଶାସ୍ତ୍ରରେ ଯାହା ଲେଖା ଅଛି ତାହା ଈଶ୍ୱର, ଗଡ୍ (God) କିମ୍ବା ଆଲ୍ଲାଙ୍କର ବାଣୀ ବୋଲି ପ୍ରଚାର ଯୋଗୁଁ ଜନସାଧାରଣ କଳ୍ପନାଟିକୁ ବାସ୍ତବ ବୋଲି ଧରି ନିଅନ୍ତି ।

ପାଠକମାନଙ୍କ ଅବଗତି ପାଇଁ ବୈଜ୍ଞାନିକମାନଙ୍କର ମତ ନିମ୍ନରେ ସଂକ୍ଷେପରେ ବର୍ଣ୍ଣନା କରାଯାଇଛି । ବୈଜ୍ଞାନିକମାନେ ଭୂଗର୍ଭରୁ ମିଳିଥିବା ଜୀବାଶ୍ମ ପରୀକ୍ଷା କରି ଦର୍ଶାଇଛନ୍ତି ଯେ ମଣିଷର ପରିବର୍ତ୍ତନ ବିଗତ ପ୍ରାୟ କୋଡ଼ିଏ ଲକ୍ଷ ବର୍ଷ ପୂର୍ବରୁ ଆରମ୍ଭ ହୋଇଛି ।

ଆମେ ପ୍ରତ୍ୟେକ କ୍ଷେତ୍ରରେ ଦେଖୁଛେ ଯେ ପ୍ରକୃତିରେ ଅନବରତ ପରିବର୍ତ୍ତନ ଲାଗି ରହିଛି । ପରିବର୍ତ୍ତନ ହେଉଛି ପ୍ରକୃତିର ନିୟମ । ତେଣୁ ମଣିଷର ପରିବର୍ତ୍ତନ ଘଟିବା ସ୍ୱାଭାବିକ । ଆମ ଜୀବନକାଳରେ ମଧ୍ୟ ଆମେ ସମାଜରେ ପରିବର୍ତ୍ତନ ଦେଖିବାକୁ ପାଉଛେ । ଟେକ୍ନୋଲୋଜିର ଉନ୍ନତି ଯୋଗୁଁ ଆମର ଜୀବନଯାତ୍ରା ପ୍ରଣାଳୀରେ ମଧ୍ୟ ପରିବର୍ତ୍ତନ ଘଟୁଛି । ଉଦାହରଣ ସ୍ୱରୂପ ପ୍ରାୟ ୩୦ / ୪୦ ବର୍ଷ ପୂର୍ବେ ମୋବାଇଲ୍ ଫୋନ୍ ନଥିଲା । ଏବେ ମୋବାଇଲ୍ ବ୍ୟବହାର ଘରେ ଘରେ ଦେଖିବାକୁ ମିଳୁଛି ।

ଶ୍ରମରୁ ମଣିଷ:

ଦୁଇଟି ହାତ ଥିବା ଯୋଗୁଁ ମଣିଷ ବହୁତ କାମ କରିପାରୁଛି । ହାତରେ କାମ କରିବା ଫଳରେ ମସ୍ତିଷ୍କର ବିକାଶ ଘଟେ । ବିଜ୍ଞାନ ଶିକ୍ଷାରେ ଛାତ୍ରଛାତ୍ରୀମାନଙ୍କୁ ବିଭିନ୍ନ ପରୀକ୍ଷା କରିବାକୁ ପଡିଥାଏ । ପରୀକ୍ଷା (Practical) ଯୋଗୁଁ ଛାତ୍ରଛାତ୍ରୀମାନେ ବିଜ୍ଞାନକୁ ଭଲ ଭାବରେ ବୁଝିପାରନ୍ତି । ମଣିଷ ତାର ହାତ ଯୋଗୁ ଉନ୍ନତ ଓ ଅନ୍ୟ ପ୍ରାଣୀମାନଙ୍କଠାରୁ ଶ୍ରେଷ୍ଠ ହୋଇପାରିଛି । ଶ୍ରମ ହିଁ ମଣିଷର ପ୍ରକୃତ ଧର୍ମ । ମଣିଷର ସଂଜ୍ଞା ଆମେ ବିଜ୍ଞାନ ଅନୁସାରେ ଦେଇପାରିବା । ତାହା ହେଉଛି "ଯେଉଁ ପ୍ରାଣୀ ହାତରେ କାମ କରେ ସେହି ପ୍ରାଣୀ ମଣିଷ ଅଟେ"କାରଣ ହାତରେ କାମ କରିବା ଯୋଗୁଁ ମଣିଷର ଉନ୍ନତି ହୋଇଛି ।

ସମାଜରୁ ଭାଷା:

ମଣିଷ ହେଉଛି ସାମାଜିକ ଜୀବ । ମଣିଷ ସମାଜରେ ବଢ଼େ, ସମାଜରେ ପାଠ ପଢ଼େ ଓ ଜୀବିକା ନିର୍ବାହ କରେ । ମଣିଷ ସମାଜରୁ ଭାଷା ଶିଖେ । ପ୍ରଥମେ ମା'ଠାରୁ ଶିଖେ । ତେଣୁ ମଣିଷ ପ୍ରଥମେ ଯେଉଁ ଭାଷା କହେ ତାହାକୁ ମାତୃଭାଷା କୁହାଯାଏ । କାରଣ ମା' ସନ୍ତାନକୁ ଲାଳନ ପାଳନ କଲାବେଳେ ପିଲା ସହିତ କଥା କହି ଚାଲିଥାଏ । ମା'ଠାରୁ ଶୁଣି ଶୁଣି ପିଲାଟି କହିବାକୁ ଆରମ୍ଭ କରେ । ଏହା ବ୍ୟତୀତ ପିଲାଟି ପରିବାରର ଅନ୍ୟମାନଙ୍କ ସହିତ ଖେଳିଲାବେଳେ ମଧ୍ୟ ବିଭିନ୍ନ କଥା ଶୁଣିଥାଏ । ସାଙ୍ଗ ପିଲାଙ୍କ ସହିତ ଖେଳିଲାବେଳେ ମଧ୍ୟ କିଛି ଶିଖିଥାଏ । ସ୍କୁଲ କଲେଜରେ ପଢ଼ିଲାବେଳେ ବିଭିନ୍ନ ଭାଷା ଶିଖିବାକୁ ପଡିଥାଏ । ଯଦି ଗୋଟିଏ ପିଲା ଜନ୍ମ ହେଲା ପରେ ତାକୁ ନିର୍ଜନ ସ୍ଥାନରେ ରଖିବା ଏବଂ କେବଳ ଖାଇବାକୁ ଦେବା ଓ କଥା ହେବା ନାହିଁ ତେବେ ପିଲାଟି ଆଦୌ କଥା କହିପାରିବ ନାହିଁ । ଭାଷା ସାହାଯ୍ୟରେ ମଣିଷ ନିଜ ମନର ଭାବ ପ୍ରକାଶ କରିପାରେ । ଗୋଟିଏ ଅଞ୍ଚଳରେ ଯେଉଁ ଭାଷା ପ୍ରଚଳିତ ଥାଏ ସେହି ଅଞ୍ଚଳର ଲୋକମାନେ ପ୍ରଚଳିତ ଭାଷା ମାଧ୍ୟମରେ ଭାବର ଆଦାନ ପ୍ରଦାନ କରନ୍ତି ଏବଂ ମିଳିମିଶି ବିଭିନ୍ନ କାର୍ଯ୍ୟ କରିପାରନ୍ତି । ଆଗ କାଳରେ ଯାନବାହାନର ସୁବିଧା ନଥିଲା । ତେଣୁ ଗୋଟିଏ ଅଞ୍ଚଳର ଲୋକ ଅନ୍ୟ ଅଞ୍ଚଳର ଲୋକ ସହିତ ମିଶି ପାରୁନଥିଲେ । ତେଣୁ ଗୋଟିଏ ଅଞ୍ଚଳର ଥିବା ଲୋକଙ୍କର ଯେଉଁ ଭାଷା ସୃଷ୍ଟି

ହୋଇଥିଲା ତାହା ଅନ୍ୟ  ଅଞ୍ଚଳର ଲୋକଙ୍କ ଭାଷା ଠାରୁ ଭିନ୍ନ ଥିଲା । ପୃଥିବୀ ପୃଷ୍ଠରେ ସେହି କାରଣରୁ ବହୁତ ପ୍ରକାର ଭାଷା ଦେଖିବାକୁ ମିଳେ । ଗୋଟିଏ ପ୍ରକାର ଭାବକୁ ଭିନ୍ନ ଭିନ୍ନ ଭାଷା ମାଧ୍ୟମରେ ପ୍ରକାଶ କରାଯାଇଥାଏ ।

**ଅଲୌକିକତା (Miracle)ର ସୃଷ୍ଟି :**

ମଣିଷ ଯେତେବେଳେ ଅଗ୍ନିର ବ୍ୟବହାର ଜାଣି ନଥିଲା ସେତେବେଳେ କଞ୍ଚା ଫଳମୂଳ ଓ ମାଛ ମାଂସ ଖାଉଥିଲା । ବଣ ଜଙ୍ଗଲରେ ଯାଯାବର ଜୀବନଯାପନ କରି ଶିକାର କରୁଥିଲା । ମଣିଷର ପ୍ରଥମ ହତିଆର ହେଉଛି ମୁନିଆ ପଥର । ମୁନିଆ ହାଡ଼ କିମ୍ବା ମୁନିଆ କାଠ ମଧ୍ୟ ବ୍ୟବହାର କରୁଥିଲା । ପ୍ରଥମେ ଗୁମ୍ଫା ଓ ପରେ ଗଛ ପତ୍ରରେ କୁଡିଆ କରି ରହିଲା । କାମ ମାଧ୍ୟମରେ ଯେତେବେଳେ ମଣିଷ ମସ୍ତିଷ୍କର ଉନ୍ନତି ଘଟିଲା, ସେତେବେଳେ ସେ ବିଭିନ୍ନ ଘଟଣାର କାରଣ ଜାଣିବାକୁ ଚେଷ୍ଟାକଲା । କିନ୍ତୁ ପ୍ରକୃତିର ପ୍ରଳୟଙ୍କରୀ ଶକ୍ତିକୁ ବୁଝିବାକୁ ତା'ର କ୍ଷମତା ନଥିଲା । ତଥାପି ସେ ଯୁକ୍ତିଯୁକ୍ତ କାରଣମାନ ଦେବାକୁ ଚେଷ୍ଟା କଲା । ଏତେ ଜୋରରେ ପବନ ବୋହୁଛି ତା'ର କାରଣ ଦେବାକୁ ଚେଷ୍ଟା କଲା । ସେ ନିଜେ ଫୁଙ୍କିବା ଦ୍ୱାରା କିଛି ପବନ ବାହାରୁଛି । ମଣିଷ ଫୁଙ୍କିଲେ ଆଦୌ ବାତ୍ୟା ହେବ ନାହିଁ । ତେଣୁ ସେ ଭାବିଲା ଯେ ମଣିଷ ଠାରୁ ବେଶି ଶକ୍ତିମାନ କୌଣସି ଜୀବ ଫୁଙ୍କିବା ଦ୍ୱାରା ବାତ୍ୟା ହେଉଛି । ସେହି ଶକ୍ତିମାନ ଜୀବର ନାଁ ହେଲା ପବନ ଦେବତା । ପାଣିକୁ ଛିଞ୍ଚିଲେ ବୁନ୍ଦା ବୁନ୍ଦା ହୋଇ ଚାରିଆଡ଼େ ପଡ଼େ । ବର୍ଷା ମଣିଷ କରିପାରିବ ନାହିଁ । ତେଣୁ ଆକାଶରେ ମଣିଷଠାରୁ ଅଧିକ ଶକ୍ତିଶାଳୀ କେହି ଦେବତା ବର୍ଷା କରାଉଛି । ସେହି ଦେବତାର ନାମ ଇନ୍ଦ୍ର ଦେଲା । ଏହିପରି ପ୍ରକୃତିର ଘଟଣା ମାନଙ୍କର କାରଣ ଦେବାକୁ ଯାଇ ଦେବତାମାନଙ୍କର କଳ୍ପନା କରାଯାଇଥିଲା ।

ରାତି ହେଲେ ଦେଖାଯାଏ ନାହିଁ । ଦିନବେଳେ ସୂର୍ଯ୍ୟକିରଣ ସବୁ ବସ୍ତୁ ଉପରେ ପଡୁଥିବା ଯୋଗୁଁ ଆଖି ପ୍ରତ୍ୟେକ ବସ୍ତୁ ଦେଖିପାରୁଛି । ବସ୍ତୁ ଉପରେ ପଡୁଥିବା ସୂର୍ଯ୍ୟକିରଣର ପ୍ରତିଫଳନ ଆମ ଆଖି ଗ୍ରହଣ କରିପାରୁଛି । ତେଣୁ ଆମେ ପ୍ରତ୍ୟେକ ବସ୍ତୁକୁ ଭଲ ଭାବରେ ଦେଖିପାରୁ । ରାତି ହେଲେ ଆମେ ପାଖରେ ଥିବା ଜିନିଷ ମଧ୍ୟ ଦେଖିପାରିବା ନାହିଁ । ଫଳରେ ମନରେ ଭୟ ହେବା ସ୍ୱାଭାବିକ । ରାତିରେ ଭୂତ ପ୍ରେତ ବାହାରନ୍ତି ବୋଲି ମଣିଷ କଳ୍ପନା କଲା । ଦେବତା କଳ୍ପନା ଭୂତପ୍ରେତର କଳ୍ପନାରୁ ଆରମ୍ଭ ହୋଇଥିଲା ।

ଏହି ସବୁ କଳ୍ପନା କେବେ ଆରମ୍ଭ ହେଲା ତାହା ସଠିକ୍ କହି ହେବ ନାହିଁ । କାରଣ ଅତୀତ କାଳରେ ଲିଖିତ ଭାଷା ନଥିଲା । ତେଣୁ ସେଗୁଡିକ କେହି ଲେଖି ଯାଇନାହାନ୍ତି । ଲିଖିତ ଭାଷା ସୃଷ୍ଟି ପୂର୍ବରୁ ଅଲୌକିକବାଦ ଅର୍ଥାତ୍ ଦେବୀ ଓ ଭୂତପ୍ରେତର ସୃଷ୍ଟି ହୋଇ ସାରିଥିଲା । ମଣିଷ ସମାଜରେ ବଂଶାନୁକ୍ରମେ ଏହା ଗଡିଚାଲିଲା । ବାପା ମାଙ୍କ ଠାରୁ ପିଲାମାନେ

ଶୁଣି ବିଶ୍ୱାସ କରି ନିଅନ୍ତି । କେହି କେବେ ପ୍ରକୃତ କାରଣ ବୁଝିବାକୁ ଚେଷ୍ଟା କରିନାହାନ୍ତି । ପ୍ରତ୍ୟେକ କପୋଳ କଳ୍ପିତ କଥାକୁ ମାନିନେବା ହେଉଛି ଅନ୍ଧବିଶ୍ୱାସ । ସମାଜରେ ଅନ୍ଧବିଶ୍ୱାସ ଓ ଅଲୌକିକ କାହାଣୀ ପୁରୁଷାନୁକ୍ରମେ ଗଡି ଆସୁଅଛି ।

ବିଜ୍ଞାନର ସୃଷ୍ଟି :

ମଣିଷ ଯେତେବେଳେ କାମ କରିବାକୁ ଆରମ୍ଭ କଲା ସେତେବେଳେ ପଥର ତିଆରି ହତିଆର ତିଆରି କରି ଶିକାର କଲା । ପଥର କଠିନ ବୋଲି ଜାଣିଲା ଏବଂ ଏହାକୁ ଶିକାର କରିବା କାମରେ ଲଗାଇଲା । ପ୍ରସ୍ତର ଯୁଗରେ ମଣିଷ ପଥର ହତିଆର ବ୍ୟବହାର କରିବାଟା ହେଲା ବିଜ୍ଞାନର ପ୍ରଥମ ପାହାଚ । ପ୍ରାୟ ଦଶ ଲକ୍ଷ ବର୍ଷ ପୂର୍ବରୁ ଆମ ପୂର୍ବ ପୁରୁଷ ରାମାପିଥେକସ୍ (Ramapithecus) ପଥର ବ୍ୟବହାର କରିଥିବା ତଥ୍ୟ ବୈଜ୍ଞାନିକମାନେ ଦେଇଛନ୍ତି । ନିଜକୁ ରକ୍ଷା କରିବା ପାଇଁ ଏବଂ ଖାଦ୍ୟ ସଂଗ୍ରହ କରିବା ପାଇଁ ପଥର ହତିଆର ବ୍ୟବହୃତ ହେଉଥିଲା । ଆବଶ୍ୟକତା ପଡିବାରୁ ମଣିଷ ପଥର ବ୍ୟବହାର କଲା । ଶୀତ ପରେ ବସନ୍ତ, ବସନ୍ତ ପରେ ଗ୍ରୀଷ୍ମ ଓ ଗ୍ରୀଷ୍ମ ପରେ ବର୍ଷା ଓ ଶୀତ ଋତୁ ଆସୁଥିବା ବିଷୟ ମଣିଷ ଲକ୍ଷ୍ୟ କରି ଜାଣିପାରିଲା । ଏହି ଜ୍ଞାନଟି ହଜାର ହଜାର ବର୍ଷର ଅଭିଜ୍ଞତାରୁ ମିଳିଥିବା ଜ୍ଞାନ । ଅଗ୍ନିର ବ୍ୟବହାର ମଣିଷର ଜୀବନରେ ବହୁତ ପରିବର୍ତ୍ତନ ଆଣିଦେଲା । ପଥର ସହିତ ପଥର ଘଷି ହେବାରୁ ଅଗ୍ନି ସ୍ଫୁଲିଙ୍ଗ ବାହାରୁଛି । ଏହି ଜ୍ଞାନଟି ମଣିଷକୁ ଆଗେଇବାରେ ବହୁତ ସାହାଯ୍ୟ କଲା । ରାତିରେ ଆଲୁଅ ପାଇଲା । ହିଂସ୍ର ଜନ୍ତୁଙ୍କୁ ଘଉଡାଇ ପାରିଲା । ମାଂସ ଶିଝାଇ ଖାଇବାରୁ ସ୍ୱାଦ ଜାଣିପାରିଲା । ଏବେ ମଧ୍ୟ ଏହିପରି ଚାଲିଛି । ବିଜ୍ଞାନ ଦ୍ୱାରା ମଣିଷ ବହୁତ ଉପକାର ପାଉଥିଲେ ମଧ୍ୟ ଅନ୍ଧବିଶ୍ୱାସ ଏବଂ ଅଲୌକିକତାକୁ ଛାଡି ପାରୁନାହିଁ ।

ମଣିଷ ସମାଜର ବିକାଶ :

ଥରେ ଗୋଟିଏ କଲେଜରେ ବିଜ୍ଞାନ ଆଲୋଚନା ହେଉଥିଲା । ଜଣେ ବୈଜ୍ଞାନିକ ପ୍ରବନ୍ଧ ପାଠବେଳେ କହିଲେ ଯେ ଅତୀତ କାଳରେ ଆମ ଦେଶରେ ପୁଷ୍ପକ ବିମାନ ଥିଲା । ରାବଣ ସେହି ବିମାନ ସାହାଯ୍ୟରେ ସୀତାଙ୍କୁ ଅପହରଣ କରି ନେଇଯାଇଥିଲେ । ମୁଁ ତାଙ୍କୁ ପ୍ରଶ୍ନ କରିଥିଲି ଯେ ଯଦି ପୁଷ୍ପକ ବିମାନ ଆମ ଦେଶରେ ଥିଲା ତା'ର ନମୂନା ଏବେ ଦେଖିବାକୁ ମିଳେ ନାହିଁ କାହିଁକି ? ତାଙ୍କର ଉତ୍ତର ଥିଲା ଆମ ଦେଶ ବିଦେଶୀ ଶାସନ ସମୟରେ ସବୁ ବିଜ୍ଞାନ ହରାଇଛି ଏବଂ ବିଦେଶୀମାନେ ଆମ ବିଜ୍ଞାନକୁ ନେଇ ଉନ୍ନତ ହୋଇଛନ୍ତି । ଏହା କେତେ ହାସ୍ୟାସ୍ପଦ କଥା ଆପଣମାନେ ବିଚାର କରନ୍ତୁ । ଏହା ଗୋଟିଏ ଅନ୍ଧବିଶ୍ୱାସ ନୁହେଁ କି ? ଜଣେ ବୈଜ୍ଞାନିକ ଯଦି ଏପରି ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇପାରନ୍ତି ତେବେ ତାଙ୍କଠାରୁ କ'ଣ ଶିକ୍ଷା ମିଳିବ ? ଯଦି ଆମ ଦେଶରେ ପୁଷ୍ପକ ବିମାନ ଥିଲା ତେବେ ଏବେ ମଧ୍ୟ ତାହା ଉନ୍ନତ ଅବସ୍ଥାରେ ଦେଖିବାକୁ ମିଳୁଥାନ୍ତା । ଅତୀତ କାଳରେ ରାମରାଜ୍ୟ

ଥିଲା ଓ ସମସ୍ତେ ସୁଖରେ ଥିଲେ । ଏହା ଏକ କଳ୍ପନା ମାତ୍ର । ଏଥିରେ ଆଦୌ ସତ୍ୟତା ନାହିଁ । ଆମେ ଏବେ ସମାଜର ବିକାଶ ଆଲୋଚନାରୁ ଦେଖିବାକୁ ପାଇବା ଯେ ମଣିଷ ସମାଜ ଆଗରୁ ଆଦୌ ଏବେ ଠାରୁ ଉନ୍ନତ ନଥିଲା । ପ୍ରାଗ୍ଐତିହାସିକ ମଣିଷର ବୁଲି ବୁଲି ଖାଦ୍ୟ ସଂଗ୍ରହ କରିବା କାମ ବହୁତ କଷ୍ଟକର ଥିଲା । ଶିକାର କରିବା ସହଜ କଥା ନୁହେଁ । ମଣିଷ ପଥର ହତିଆର ବ୍ୟବହାର କରି ପ୍ରାୟ ବହୁ ବର୍ଷ ପୂର୍ବରୁ ଶିକାର ଆରମ୍ଭ କରିଛି । ଥରେ ଥରେ ଆବଶ୍ୟକତା ଠାରୁ ଅଧିକ ଶିକାର କରିପାରୁଥିଲା । ଦିନେ ଦିନେ ଶିକାର ଆଦୌ ମିଳୁ ନଥିଲା । ଯେଉଁ ଦିନ ଅଧିକ ଶିକାର ମିଳିଲା ସେଦିନ ବଳକା ଶିକାରକୁ ନ ମାରି ବାନ୍ଧି ରଖିଥିଲା । ବାନ୍ଧି ରଖିଥିବା ହରିଣ କିଛି ଦିନ ପରେ ଛୁଆ ଦେଲା । ଶିକାର ନ ମିଳିବା ଦିନ ପୂର୍ବରୁ ବଳି ପଡ଼ିଥିବା ଶିକାରକୁ ବ୍ୟବହାର କରି କ୍ଷୁଧା ମେଣ୍ଟାଉଥିଲା । ଏହିପରି ହରିଣକୁ ରଖିବାର ସୁବିଧା ପାଇବାରୁ ପଶୁପାଳନର ସୂତ୍ରପାତ ହେଲା । ସୁଦୀର୍ଘ ଯାଯାବର ଜୀବନଯାପନ୍ ସମୟରେ ପଶୁପାଳନ ସହଜ ନଥିଲା । ତେଣୁ ସେ ଗୋଟାଏ ଗୋଟାଏ ଜାଗାରେ ବେଶିଦିନ ରହିଲା ଯାହା ଫଳରେ ପଶୁପାଳନ ସହଜ ହେଲା । ପଶୁପାଳନ ବିଜ୍ଞାନର ଏକ ଉନ୍ନତ ପାହାଚ । ଏବେ ମଧ୍ୟ ଅଷ୍ଟ୍ରେଲିଆ, ଆଫ୍ରିକା ଓ ଗ୍ରୀନ୍‌ଲ୍ୟାଣ୍ଡ ପ୍ରଭୃତି ସ୍ଥାନରେ ରାଷ୍ଟ୍ରର କେତେକ ମଣିଷ ଖାଦ୍ୟ ସଂଗ୍ରହକାରୀ ଶିକାରୀ ଅବସ୍ଥାରେ ଅଛନ୍ତି ।

ମଣିଷ ଯେତେବେଳେ ବୁଲୁଥିଲା ସେତେବେଳେ ଲକ୍ଷ୍ୟ କଲା ଯେ ଗଛରୁ ମଞ୍ଜି ପଡି ଗଜା ହେଉଛି । ଏହା ତାକୁ ମଞ୍ଜି ପୋତି ଶସ୍ୟ ପାଇବାର ପ୍ରେରଣା ଦେଲା । ଫଳରେ ଚାଷ କାମର ସୂତ୍ରପାତ ହେଲା । ଚାଷ କାର୍ଯ୍ୟ ପ୍ରାୟ ୧୦ ହଜାର ବର୍ଷ ପୂର୍ବରୁ ଆରମ୍ଭ ହୋଇଛି । ଚାଷ ଯୋଗୁଁ ମଣିଷ ସ୍ଥାୟୀ ବସବାସ କରିବାକୁ ଲାଗିଲା । ଯେଉଁଠାରେ ପାଣିର ସୁବିଧା ମିଳିଲା ଅର୍ଥାତ୍ ନଈକୂଳରେ ବସତି ସ୍ଥାପନର ସୂତ୍ରପାତ ହେଲା । ପଶୁପାଳନ ପରି ଚାଷକାମ ମଧ୍ୟ ବିଜ୍ଞାନର ଆଉ ଗୋଟିଏ ପାହାଚ ।

ପ୍ରଥମେ ଚାଷ କାମ ମହିଳାମାନେ କରୁଥିଲେ । ପଥର କୋଦାଳରେ ମାଟି ଆଡ଼େଇ ମଞ୍ଜି ପୋତି ଦେଉଥିଲେ । କିଛିଦିନ ପରେ ଗଜା ବାହାରୁଥିଲା । ତା'ପରେ ଗଛ ବଢ଼ି ଫଳ ଫଳୁଥିଲା । ମଞ୍ଜିରୁ ଗଛ ହେବାଟା ସେତେବେଳେ ଆଶ୍ଚର୍ଯ୍ୟ ଲାଗୁଥିଲା । ସେମାନେ ବିଶ୍ୱାସ କଲେ ଯେ ମଞ୍ଜିରୁ ଗଜା ବାହାରି ଗଛ ବଢ଼ିବା ଓ ଫଳ ଫଳିବା ହେଉଛି ଦୈବୀଶକ୍ତିର କାମ । ଶସ୍ୟର ମୃତ ଅବସ୍ଥାରୁ ଜୀବନ ପାଇବା ଏକ କୁହୁକ କାମ ଥିଲା ଭାବୁଥିଲେ । ମାଟିରୁ ଗଛ ବାହାରି ଫଳ ଫଳୁଥିବାରୁ ମା' ବସୁଧାକୁ ପ୍ରାର୍ଥନା କରିବାକୁ ଆରମ୍ଭ କଲେ । ଶସ୍ୟ ଅମଳ ବେଳେ ବିଭିନ୍ନ ଗୀତ ନାଚରେ ମାତୁଥିଲେ । ପୃଥିବୀର ବିଭିନ୍ନ ଅଞ୍ଚଳରେ ଏହିପରି ଭାବରେ ପ୍ରାର୍ଥନା ଓ ଗୀତ ନାଚର ଦୃଶ୍ୟମାନ ଦେଖିବାକୁ ମିଳେ । ଆମ ଦେଶରେ ମଧ୍ୟ ଏ ପର୍ଯ୍ୟନ୍ତ ପୁରାତନ ପ୍ରଥା ଚଳି ଆସୁଅଛି । ରଜ ସଂକ୍ରାନ୍ତି ବେଳେ ମା' ବସୁଧାକୁ କାଟିବ

ବୋଲି ହଳ କରାଯାଏ ନାହିଁ । ବସୁମାତା ପୂଜା କରାଯାଏ । ଶସ୍ୟ ଅମଳ ସମୟରେ ମାର୍ଗଶିର ମାସ ଗୁରୁବାର ଦିନ ଲକ୍ଷ୍ମୀପୂଜା କରାଯାଏ । ଏହିପରି ବର୍ଷ ସାରା ପର୍ବପର୍ବାଣି ଆମ ସମାଜରେ ରହିଛି । ତାହା ବହୁ ଆଗରୁ ଆରମ୍ଭ ହୋଇଛି । ଭଲ ଫସଲ ପାଇଁ ସୂର୍ଯ୍ୟ, ଚନ୍ଦ୍ର ଓ ପୃଥିବୀକୁ ପୂଜା କରାଯାଏ । ପଶୁପାଳନ ସମୟରେ ମଧ୍ୟ ଅନେକ ପୂଜାପଦ୍ଧତି ଆରମ୍ଭ ହୋଇଥିଲା । ବଳଦ ଓ ଗାଈ ପୂଜା ଆମ ଦେଶରେ ପ୍ରଚଳିତ ହୋଇଛି । କେତେକ ଦେବୀଙ୍କ ମୁଣ୍ଡ ପଶୁପରି ଓ ଦେହ ମଣିଷ ପରି କଳ୍ପନା କରାଯାଇଥିଲା ଏବଂ ସେମାନେ ପଶୁକୁ ଭଲରେ ରଖିବା ପାଇଁ ପୂଜା ପାଉଥିଲେ ।

ପ୍ରାଗ୍‌ଐତିହାସିକ ମଣିଷ ନିଆଁର ବ୍ୟବହାର ଜାଣିବା ପରେ କାଦୁଅରୁ ହାଣ୍ଡି ମାଠିଆ ତିଆରି କରିପାରିଲା । ଏହା ମଧ୍ୟ ବିଜ୍ଞାନ ପ୍ରଗତିର ଏକ ପାହାଚ । ନିଆଁକୁ ବ୍ୟବହାର କରି ତମ୍ବା ପଥରକୁ ତରଳାଇ ତମ୍ବା ତିଆରି କରିପାରିଲା । ସେତେବେଳେ ଅଗ୍ନିର ଏହି ଅଲୌକିକ ଶକ୍ତି ଯୋଗୁଁ ଅଗ୍ନି ଦେବତାର କଳ୍ପନା କରାଗଲା । ଅଗ୍ନିଦେବତା ଏପରି କରି ପାରୁଛନ୍ତି ବୋଲି ଅଗ୍ନିପୂଜା ଆରମ୍ଭ ହେଲା । ଅଗ୍ନିର ବ୍ୟବହାର ଜାଣିବା ପରେ ମଣିଷକୁ ଲୁହାପଥର, ତମ୍ବା ପଥର ପ୍ରଭୃତି ପଥରରୁ ଧାତୁ ପାଇବା ସମ୍ଭବ ହେଲା । ଧାତୁର ବିଭିନ୍ନ ଆବଶ୍ୟକୀୟ ଦ୍ରବ୍ୟ ତିଆରି ହୋଇପାରିଲା ।

ସମାଜରେ ଚାଷ କରିବା, ପଶୁ ପାଳନ କରିବା ଓ ବିଭିନ୍ନ ଧାତୁର ବ୍ୟବହାରରୁ ଜିନିଷ ତିଆରି କରିବା ଜଣେ ମଣିଷ ଦ୍ୱାରା ସମ୍ଭବ ହେଲା ନାହିଁ । ଫଳରେ ଶ୍ରମ ବିଭାଜନ ପ୍ରକ୍ରିୟା ଆରମ୍ଭ ହେବାକୁ ଲାଗିଲା । ଯେଉଁମାନେ ପଶୁପାଳନ କଲେ ସେମାନେ କୃଷି କରିପାରିଲେ ନାହିଁ । ଯେଉଁମାନେ ଧାତୁର ବ୍ୟବହାର କରି ବିଭିନ୍ନ ଜିନିଷ ଗଢ଼ିଲେ ସେମାନେ ଚାଷ କିମ୍ବା ପଶୁପାଳନ କରିପାରିଲେ ନାହିଁ । ଯେଉଁମାନେ ହାଣ୍ଡି ମାଠିଆ ଗଢ଼ିଲେ ସେମାନେ ଗୋଟାଏ ପ୍ରକାର କାରିଗର ହେଲେ । ଯେଉଁମାନେ ଧାତୁ ବ୍ୟବହାର କରି ଜିନିଷ ଗଢ଼ିଲେ ସେମାନେ ଆଉ ଗୋଟିଏ ପ୍ରକାରର କାରିଗର ହେଲେ । ଏହି ଶ୍ରମ ବିଭାଜନ ବଂଶାନୁକ୍ରମିକ ହେବାରୁ ଜାତିର ସୃଷ୍ଟି ହେଲା । ଇଉରୋପୀୟ ମାନେ ଯେତେବେଳେ ଅଷ୍ଟ୍ରେଲିଆରେ ପଶୁପାଳନ କଲେ ସେତେବେଳେ ଅଷ୍ଟ୍ରେଲିଆର ଆଦିମ ଅଧିବାସୀମାନେ ଶିକାରୀ ଥିଲେ । ଇଉରୋପୀୟମାନଙ୍କ ମେଣ୍ଢାକୁ ସେମାନେ ଶିକାର କରୁଥିଲେ । ଫଳରେ ଇଉରୋପୀୟମାନେ ସେମାନଙ୍କୁ ବନ୍ଧୁକରେ ହତ୍ୟା କରିବାକୁ ପଛାଉ ନଥିଲେ ।

ପୃଥିବୀର ଯେଉଁଠାରେ ସ୍ଥାନୀୟ ଜନବସତି ଆରମ୍ଭ ହେଲା ସେହି ସ୍ଥାନରେ ମହିଳାମାନଙ୍କର ପ୍ରାଧାନ୍ୟ ଥିଲା । ତେଣୁ ସମାଜରେ ଦେବୀପୂଜା ପ୍ରଥମେ ସୃଷ୍ଟି ହେବା ସ୍ୱାଭାବିକ । ପ୍ରତ୍ୟେକ ଘରକୁ ଓ ଗ୍ରାମକୁ ଦେବୀ ରକ୍ଷା କରିବେ ବୋଲି ଭାବିଲେ । ସମସ୍ତଙ୍କର ଧାରଣା ଯେ ଗ୍ରାମଦେବୀ ଗ୍ରାମକୁ ରକ୍ଷା କରନ୍ତି । ଏହି ଧାରଣା ଏ ପର୍ଯ୍ୟନ୍ତ ରହିଛି । ପ୍ରତ୍ୟେକ

ଗାଁ ମୁଣ୍ଡରେ ଗ୍ରାମଦେବୀ ଅଛନ୍ତି । ଇଉରୋପରେ ମଧ୍ୟ ପୂର୍ବକାଳରେ ପଥରରେ ନିର୍ମିତ ନାରୀ ମୂର୍ତ୍ତି ଦେଖିବାକୁ ମିଳୁଥିଲା । ଗ୍ରୀକ୍ ନଗରୀ ଏଥେନ୍ସରେ ଏଥେନା ଦେବୀ ପୂଜା ପାଉଥିଲେ । ଦେବୀଙ୍କ ହାତରେ ବର୍ଛା ଥିଲା । ହିନ୍ଦୁମାନଙ୍କର ମା' ଦୁର୍ଗା ହେଉଛନ୍ତି ମହା ପରାକ୍ରମୀ ଦେବୀ । ସ୍ୱୟଂ ରାମଚନ୍ଦ୍ର ତାଙ୍କୁ ପୂଜା କରୁଥିଲେ ବୋଲି ଲେଖାଅଛି । ଏହିପରି କାରଣମାନଙ୍କରୁ ସିଦ୍ଧାନ୍ତ ହୋଇଛି ଯେ ସଭ୍ୟତାର ଆରମ୍ଭରେ ମାତୃପ୍ରଧାନ ସମାଜ ପ୍ରତିଷ୍ଠା ହୋଇଥିଲା । ମହିଳାମାନଙ୍କ ପ୍ରାଧାନ୍ୟ ଥିଲା ପୁରୁଷ ଠାରୁ ଅଧିକ ।

ମା'ଠାରୁ ସନ୍ତାନ ଜନ୍ମଲାଭ କରନ୍ତି । ତେଣୁ ମା'କୁ ଶକ୍ତିର ଆଧାର ବୋଲି ଭାବିବା ସ୍ୱାଭାବିକ । ମହିଳାମାନେ ଚାଷ କାମ କରୁଥିଲେ ଏବଂ ପୁରୁଷମାନେ ପଶୁପାଳନ କରୁଥିଲେ । ପ୍ରଥମେ ମହିଳାମାନେ ମାଟି ହାଣି ଚାଷ କରୁଥିଲେ । ଯେତେବେଳେ ପଶୁପାଳନ ଅଧିକ ସଂଖ୍ୟାରେ ହେଲା ସେତେବେଳେ ପଶୁଙ୍କୁ ଚାଷ କାମରେ ଲଗାଯାଇ ପାରିଲା । ପଶୁ ଦ୍ୱାରା ହଳ କରିବା ସମ୍ଭବ ହେବାରୁ ମହିଳାମାନେ ଆଉ ହଳ କରିବା ଆବଶ୍ୟକ ନଥିଲା । ଏହିପରି ଭାବରେ ମହିଳାମାନଙ୍କ ଠାରୁ ଚାଷକାମ ପୁରୁଷମାନଙ୍କ ହାତକୁ ଗଲା । ମହିଳାମାନେ ଆଉ ଖାଦ୍ୟ ଉତ୍ପାଦନରେ ଭାଗ ନେଇପାରିଲେ ନାହିଁ । ତା' ପରେ ମହିଳାମାନଙ୍କ ସ୍ଥାନ ସମାଜରେ ତଳକୁ ଖସିଲା । କାରଣ ଯାହାର ଉତ୍ପାଦନ କ୍ଷମତା ଥାଏ ତା'ର ପ୍ରାଧାନ୍ୟ ସମାଜରେ ସ୍ୱୀକାର କରାଯାଏ । ମାତୃକୈନ୍ଦ୍ରିକ ସମାଜ ବଦଳି ପିତୃକୈନ୍ଦ୍ରିକ ସମାଜ ପ୍ରତିଷ୍ଠା ହେଲା । ଏବେ ମଧ୍ୟ ସ୍ଥାନେ ସ୍ଥାନେ ମାତୃକୈନ୍ଦ୍ରିକ ସମାଜ ଥିବାର ଦେଖାଯାଏ ।

ପୃଥିବୀରେ ଯେଉଁ ସ୍ଥାନରେ ସ୍ଥାୟୀ ବସତି ଆରମ୍ଭ ହୋଇଛି ସେହି ସ୍ଥାନରେ ସ୍ୱତନ୍ତ୍ର ସଭ୍ୟତା ସୃଷ୍ଟି ହୋଇଛି । ଗୋଟିଏ ଅଞ୍ଚଳରେ ବସବାସ କରୁଥିବା ଜନସାଧାରଣ ବହୁ ଦୂରରେ ଥିବା ଅନ୍ୟ ଗୋଟିଏ ସ୍ଥାନରେ ଗଢ଼ିଉଠିଥିବା ସଭ୍ୟତା ସହିତ ପରିଚିତ ନଥିଲେ । ଆଗ କାଳରେ ଯାନବାହାନର ସୁବିଧା ନଥିଲା । ତେଣୁ ଭାବର ଆଦାନ ପ୍ରଦାନ ସମ୍ଭବ ନଥିଲା । ପରେ ବିଭିନ୍ନ ଅଞ୍ଚଳରେ ବିଭିନ୍ନ ଭାଷାର ସୃଷ୍ଟି ହେଲା । ଭାଷା ହେଉଛି ଜନସାଧାରଣଙ୍କ ମଧ୍ୟରେ ଭାବର ଆଦାନ ପ୍ରଦାନର ମାଧ୍ୟମ । ତେଣୁ ଗୋଟିଏ ଅଞ୍ଚଳରେ ଚଳିବା ପାଇଁ ଯେଉଁ ଭାଷାର ସୃଷ୍ଟି ହେଲା ଅନ୍ୟ ଅଞ୍ଚଳର ଭାଷା ଠାରୁ ଭିନ୍ନ ହେଲା । ଆମ ଓଡ଼ିଆ ଭାଷା ଇଂରାଜୀ ଭାଷାଠାରୁ ସମ୍ପୂର୍ଣ୍ଣ ଭିନ୍ନ । କାରଣ ଓଡ଼ିଆ ଭାଷା ଓଡ଼ିଶାରେ ବାସ କରୁଥିବା ଲୋକମାନେ ସୃଷ୍ଟି କରିଛନ୍ତି । ଇଂଲଣ୍ଡରେ ବାସ କରୁଥିବା ଲୋକମାନେ ଇଂରେଜ ଭାଷା ସୃଷ୍ଟି କରିଛନ୍ତି । ସେହିପରି ଜର୍ମାନୀରେ ରହୁଥିବା ଲୋକମାନେ ଜର୍ମାନ ଭାଷା ସୃଷ୍ଟି କରିଛନ୍ତି ।

ମଣିଷ ପଶୁପାଳନ କରିବା ପୂର୍ବରୁ ଅର୍ଥାତ୍ ଖାଦ୍ୟ ଉତ୍ପାଦନ ଆରମ୍ଭ କରିବା ପୂର୍ବରୁ ସମାଜରେ କୌଣସି ଶ୍ରେଣୀ ନଥିଲା । ପୃଥିବୀପୃଷ୍ଠରେ ଭିନ୍ନ ଭିନ୍ନ ଅଞ୍ଚଳରେ ଲୋକମାନେ

ଶିକାରୀ ଜୀବନଯାପନ କରୁଥିଲେ । କୌଣସି ଅଞ୍ଚଳରେ ସମାଜରେ ଶ୍ରେଣୀ ବିଭାଜନ ହୋଇନଥିଲା । ସମସ୍ତେ ଏକ ପ୍ରକାରର ଥିଲେ । ପଶୁଟିଏ ଶିକାର କରି ଆଣି ସମସ୍ତେ ବାଣ୍ଟି ଖାଉଥିଲେ ।

ପଶୁପାଳନ ଓ କୃଷି କରିବା ସମୟରେ ଖାଦ୍ୟ ଉତ୍ପାଦନର ଯୁଗ ଆରମ୍ଭ ହେଲା । ଲୋକମାନେ ଗୁମ୍ଫାରେ ନ ରହି ତାଳପତ୍ରର ଘର ତିଆରି କରି ରହିଲେ । ଉତ୍ପାଦନ ବୃଦ୍ଧି ସହିତ ଶ୍ରେଣୀ ସମାଜର ସୃଷ୍ଟି ହେଲା । ପଶୁପାଳନ କରିବା ସମୟରେ ଦଳେ ଲୋକ ପଶୁମାନଙ୍କୁ ଗୋଟିଏ ଚାରଣ ଭୂମିରୁ ଆଉ ଗୋଟିଏ ଚାରଣ ଭୂମିକୁ ନେବାବେଳେ ଅନ୍ୟ ଦଳ ସହିତ ଭେଟ ହେଲେ ଦୁଇ ଦଳ ଭିତରେ ଯୁଦ୍ଧ ଲାଗୁଥିଲା । ଯେଉଁଦଳ ଜିତୁଥିଲା ସେହି ଦଳ ହାରିଯିବା ଦଳର ଲୋକଙ୍କୁ ମାରି ଦେଉଥିଲେ । ତା'ପରେ ଦେଖିଲେ ସେମାନଙ୍କୁ ନମାରି ପଶୁ ଚରାଇବାରେ ଲଗାଇଲେ ନିଜେ ଆରାମରେ ରହିବେ । ହାରି ଯାଇଥିବା ଲୋକମାନେ ଜିତିଥିବା ଦଳ ଲୋକଙ୍କର ପଶୁପାଳନ କଲେ । ତାଙ୍କୁ ଯାହା ଖାଇବାକୁ ଦିଆଗଲା ତାହା ଖାଇଲେ । ହାରି ଯାଇଥିବାରୁ ସେମାନେ ନିଜକୁ ଦୁର୍ବଳ ମନେକରି ଆଦେଶମାନି କାମ କରିବାକୁ ବାଧ୍ୟ ହେଲେ । ଏହିପରି ଦଳେ ଦାସ ସୃଷ୍ଟି ହେଲେ ଏବଂ ଯେଉଁମାନେ ଖଟାଇଲେ ସେମାନେ ହେଲେ ମୁନିବ ବା ମାଲିକ । ଦାସମାନଙ୍କର ପଶୁମାନଙ୍କ ଉପରେ କୌଣସି ଅଧିକାର ରହିଲା ନାହିଁ ।

ସେହିପରି କୃଷିରେ ମଧ୍ୟ ଦାସ ମାନଙ୍କୁ ଖଟାଇ ଉତ୍ପାଦନ କରାଗଲା । ଧୀରେ ଧୀରେ ବ୍ୟକ୍ତିଗତ ସମ୍ପତ୍ତିର ମାଲିକାନା ସୃଷ୍ଟିହେଲା । ଦଳେ ଲୋକ ଧନୀ ହେଲେ ଓ ଯେଉଁମାନେ ଖଟିଲେ ସେମାନେ ଗରିବ ରହିଲେ । ଗରିବମାନଙ୍କୁ ଧନୀମାନେ ଯାହା ନିର୍ଯ୍ୟାତନା ଦେଲେ ତାହା ସେମାନେ ସହି ନପାରି ପ୍ରତିବାଦ କରିବାକୁ ଆରମ୍ଭ କରିଥିବେ ନିଶ୍ଚୟ । ଏହି ସମୟରେ ଧନୀ ଲୋକମାନେ ଅର୍ଥାତ୍ ବସିକରି ଖାଇବା ଲୋକମାନେ ଦାସମାନଙ୍କୁ ଚୁପ୍ କରିବାକୁ ଉପାୟମାନ ଖୋଜିଲେ । ସେତିକିବେଳେ ଭାଗ୍ୟ ଓ ଦେବତା କଳ୍ପନା ବହୁତ ସାହାଯ୍ୟ କଲା । ଗରିବ ଲୋକମାନଙ୍କୁ ପରଜନ୍ମ ଓ ପୂର୍ବଜନ୍ମ କଥା କୁହାଗଲା । ଜୀବର ଜନ୍ମ ଥିବାରୁ ମୃତ୍ୟୁ ସୁନିଶ୍ଚିତ । ମଣିଷ ଶରୀରରେ ଆତ୍ମା ଅଛି ବୋଲି କଳ୍ପନା କରାଗଲା । ଆତ୍ମାର ମୃତ୍ୟୁ ନାହିଁ । ଏହା ଗୋଟିଏ ଶରୀରରୁ ବାହାରିଲେ ଅନ୍ୟ ଶରୀରରେ ପ୍ରବେଶ କରେ । ଯିଏ ଯେଉଁ କର୍ମ କରେ ତା'ର ଫଳ ତାକୁ ପରଜନ୍ମରେ ଭୋଗ କରିବାକୁ ପଡ଼େ ବୋଲି ବୁଝାଇ ଦିଆଗଲା । ଦାସମାନଙ୍କୁ ନିୟନ୍ତ୍ରଣ କରିବା ପାଇଁ କେତେଗୁଡିଏ ନିୟମ କରାଗଲା । ଏହା ଥିଲା ସମାଜର ନୀତି ନିୟମ । ସମାଜର ନୀତିନିୟମ ମାନି ଚଳିବାକୁ ସମସ୍ତେ ବାଧ୍ୟ । ତେଣୁ ଦାସମାନେ ମାଲିକମାନଙ୍କ କଥାକୁ ବିଶ୍ୱାସ କରି ଖଟି ଚାଲିଲେ । ଦାସ ସମାଜ ହେଲା ସମାଜରେ ଶ୍ରେଣୀ ସୃଷ୍ଟିର ଗୋଟିଏ ସୋପାନ ।

ସ୍ଥାୟୀ ଚାଷବାସ ସମୟରେ କେତେକ ଲୋକ ଜମି ଅକ୍ତିଆର କରିନେଲେ । ଦାସ ସାହାଯ୍ୟରେ ଚାଷ କରିପାରିଲେ । ଉତ୍ପାଦନର ସବୁ ଅଂଶ ନିଜେ ରଖିଲେ । ତେଣୁ ଦାସଙ୍କ ପରିଶ୍ରମର ଫଳ ସେମାନେ ଭୋଗିଲେ । ମାଲିକ ଦିନକୁ ଦିନ ଅଧିକ ଧନୀ ହେବାକୁ ଲାଗିଲେ । ସେ ସମୟରେ ଚାଷୀଙ୍କୁ ନିୟନ୍ତ୍ରଣ କରିବାକୁ  ମଧ୍ୟ ବହୁତ ଅନ୍ଧବିଶ୍ୱାସର ସୃଷ୍ଟି ହୋଇଥିଲା । ସେହି ସମାଜକୁ ସାମନ୍ତବାଦୀ ସମାଜବୋଲି କୁହାଯାଏ ।

ଯେତେବେଳେ ଯନ୍ତ୍ରପାତିର ଉଦ୍ଭାବନ ହେଲା ସେତେବେଳେ କଳକାରଖାନା ବସି ବିଭିନ୍ନ ଜିନିଷ ବହୁ ପରିମାଣରେ କମ୍ ସମୟରେ ଉତ୍ପାଦନ କରାଯାଇ ପାରିଲା । କାରଖାନାରେ ଯେଉଁମାନେ ଖଟିଲେ ସେମାନେ ହେଲେ ଶ୍ରମିକ ଏବଂ ଯିଏ କଳକାରଖାନା ବସାଇଲା ସେ ହେଲା ପୁଞ୍ଜିପତି । ଏହିପରି ପୁଞ୍ଜିପତିମାନେ କୋଟିପତି ହୋଇପାରିଲେ । ଶ୍ରମିକମାନଙ୍କ ଅସନ୍ତୁଷ୍ଟକୁ ଚପାଇବା ପାଇଁ ପୁଞ୍ଜିପତିମାନେ ବିଭିନ୍ନ ନୀତି ନିୟମ କରିଛନ୍ତି । ତାହା ଏବେ ମଧ୍ୟ ଚାଲିଛି ।

ଦାସ ସମାଜ, ସାମନ୍ତବାଦୀ ସମାଜ ଓ ପୁଞ୍ଜିବାଦୀ ସମାଜ ଗୁଡିକ ହେଉଛି ଶ୍ରେଣୀବିଭକ୍ତ ସମାଜ ।  ଏହି ସମାଜ ଗୁଡିକରେ ମଣିଷ ମଣିଷକୁ ଦୁଃଖ ଦେଇଛି । କିନ୍ତୁ ଦୁଃଖର କାରଣ ଭାଗ୍ୟ ବୋଲି ବୁଝାଇ ଦେଇ ନିଜେ ଆରାମରେ ରହୁଛି ।  ଖଟିଖିଆ ଲୋକ ବୁଝିପାରୁନାହାନ୍ତି । ପୂର୍ବକାଳରେ ଶୋଷଣ ପାଇଁ ଉଦ୍ଦିଷ୍ଟ ପ୍ରଥା ଗୁଡ଼ିକ କିପରି ଏବେ ମଧ୍ୟ ରହିଛି ସେ ବିଷୟରେ ଆମେ ଆଲୋଚନା କରିବା । ପ୍ରତ୍ୟେକ ଦେଶରେ ଶ୍ରେଣୀ ସମାଜ ରହିଛି । ଅର୍ଥାତ୍ ପ୍ରତ୍ୟେକ ଦେଶରେ ଦାସ, ପୁଞ୍ଜିପତି  ଓ ସାମନ୍ତ ଅଛନ୍ତି । ସେମାନଙ୍କ ସଂଖ୍ୟା ସବୁ ଦେଶରେ ସମାନ ନାହିଁ । ଯେଉଁ ଦେଶରେ ପୁଞ୍ଜିପତି ସଂଖ୍ୟା ଅଧିକ ସେ ଦେଶରେ ସମତା ନାହିଁ । ଯେଉଁ ଦେଶରେ ପୁଞ୍ଜିପତି ସଂଖ୍ୟା ଅଧିକ ସେ ଦେଶରେ ପୁଞ୍ଜିପତି ଶାସନ ଅଛି । ଯୁକ୍ତରାଷ୍ଟ୍ର ଆମେରିକାରେ ଅଧିକ ପୁଞ୍ଜିପତି ଥିବାରୁ ସେଠାରେ ପୁଞ୍ଜିପତି ଶାସନ ଚାଲୁଛି । ସେମାନେ ପୃଥିବୀରେ ସବୁଠାରୁ ଧନୀ ହୋଇଥିବାରୁ ସେମାନଙ୍କ ନୀତି ପୃଥିବୀର ଅନ୍ୟ ଦେଶ ଉପରେ ଲଦି ଦିଆଯାଇ ପାରୁଛି । ଅନେକଙ୍କର ଧାରଣା ଯେ ଯୁକ୍ତରାଷ୍ଟ୍ର ଆମେରିକା ଧନୀ ଦେଶ ହୋଇଥିବାରୁ ସେଠାରେ ଭିକାରି ନଥିବେ । ଏହା କିନ୍ତୁ ସଂପୂର୍ଣ୍ଣ ଭୁଲ ଧାରଣା । ଆମେ ନିଉଅର୍କ ସହରରେ ବୁଲିବା ବେଳେ ଭିକାରି ଦେଖିବାକୁ ପାଇଥିଲୁ । ତାଙ୍କ ଫଟୋ ଉଠାଇବାକୁ ଗଲାବେଳେ ସେମାନେ ମନାକଲେ । ଆମେ ନିଜ ଫଟୋ ଉଠାଇବା ବାହାନା କରି ସେମାନଙ୍କ ଫଟୋ ଆଣିପାରିଲୁ । ପୃଥିବୀର ଅଧିକାଂଶ ଦେଶରେ ଭିକାରି ଅଛନ୍ତି । ପୁଞ୍ଜିପତି ଅଛନ୍ତି । ଧନୀ ଓ ଗରିବ ଶ୍ରେଣୀ ଅଛି । ପୃଥିବୀର ସବୁ ଦେଶରେ ଅନ୍ଧବିଶ୍ୱାସର ପ୍ରଭାବ ରହିଛି ଯାହା ଫଳରେ ସାଧାରଣ ମଣିଷ ଦୁଃଖ ପାଉଛନ୍ତି । ଶ୍ରେଣୀ

ସମାଜ ରହିଛି ଏବଂ ଶ୍ରେଣୀ ସମାଜକୁ ସ୍ଥାୟୀ ରଖିବା ପାଇଁ ଅନ୍ଧବିଶ୍ୱାସ ସାହାଯ୍ୟ କରିଆସିଛି । ତେବେ ଦାରିଦ୍ର୍ୟ, କୁସଂସ୍କାର, ଶ୍ରେଣୀସମାଜ ଭାବନା କ୍ଷେତ୍ରରେ ପରିମାଣଗତ ପାର୍ଥକ୍ୟ ଦେଶମାନଙ୍କ ଭିତରେ ରହିଛି ।

ଅନ୍ଧବିଶ୍ୱାସ ରହିଛି କିପରି:

ପୁରାତନ କାଳରେ ଅଜ୍ଞତା ହେତୁ ମଣିଷ ସମାଜରେ ଅନ୍ଧବିଶ୍ୱାସ ସୃଷ୍ଟି ହୋଇଥିଲା ଏବଂ ସେଗୁଡ଼ିକ ମଣିଷ ଜୀବନକୁ ନିୟନ୍ତ୍ରଣ କରୁଥିଲା । ବର୍ତ୍ତମାନ ବିଜ୍ଞାନ ଯୋଗୁଁ ପ୍ରତ୍ୟେକ ଦେଶ ଆଗେଇ ପାରିଥିଲେ ମଧ୍ୟ ଅନ୍ଧବିଶ୍ୱାସ ତା'ର ଚେର ମଜଭୂତ ରଖିଛି । ଶ୍ରେଣୀ ସମାଜକୁ ଦୃଢ଼ କରିବାକୁ ଅନ୍ଧବିଶ୍ୱାସ ସାହାଯ୍ୟ କରିଛି । ଯେପରି ଦାସମାନଙ୍କୁ ମାଲିକମାନେ ବୁଝାଇ ପାରୁଥିଲେ ଯେ ସେମାନେ ପୂର୍ବଜନ୍ମର କର୍ମଫଳ ଯୋଗୁଁ ଏ ଜନ୍ମରେ ଦାସ ହୋଇଛନ୍ତି । ଦାସ ହେବାକୁ ତାଙ୍କ ଭାଗ୍ୟରେ ଅଛି । ଏ ଜନ୍ମରେ ଭଲ କର୍ମ କଲେ ଆସନ୍ତା ଜନ୍ମକୁ ସୁଖରେ ଚଳିବେ । ଦାସମାନଙ୍କୁ ଆସନ୍ତା ଜନ୍ମର ସୁଖ ସ୍ୱପ୍ନ ଦେଖାଇ ଖଟାଇବାରେ ଅନ୍ଧବିଶ୍ୱାସ ସାହାଯ୍ୟ କରିଛି । କାରଣ ଦାସମାନେ ଏହି କଥାକୁ ମାନିନେଲେ ବର୍ତ୍ତମାନ ଜନ୍ମରେ ସମସ୍ତ ପ୍ରକାର ଦୁଃଖ କଷ୍ଟ ସହିନିଅନ୍ତି ଏବଂ ଭାଗ୍ୟକୁ ଆଦରି ରହନ୍ତି ।

ଦେବତା ଓ ଈଶ୍ୱରଙ୍କ ସୃଷ୍ଟି ପରେ ଏହି ଅନ୍ଧବିଶ୍ୱାସଟି ଧନୀ ଶ୍ରେଣୀ ଅର୍ଥାତ୍ ବସିଖିଆ ଶ୍ରେଣୀଙ୍କୁ ବହୁତ ସାହାଯ୍ୟ କରିଛି । କାରଣ ପ୍ରତ୍ୟେକ ଶୋଷଣ ନିୟମକୁ ଈଶ୍ୱର ମାର୍କା ଛାପା ଦିଆଯାଇପାରିଛି । ଧର୍ମ ପୁସ୍ତକମାନଙ୍କରେ ଯେଉଁ ନିୟମ ମାନ ଅଛି ତାହା ଈଶ୍ୱରଙ୍କ ବାଣୀ ବୋଲି ସବୁ ଧର୍ମରେ ଅଛି । ଏହା ସଂପୂର୍ଣ୍ଣ ମିଥ୍ୟା ଅଟେ । ଧର୍ମପୁସ୍ତକ ଗୁଡ଼ିକ ଅତୀତ କାଳରେ ମଣିଷ ତିଆରି କରିଛି । ମଣିଷ କରିଛି ବୋଲି କହିଲେ ଲୋକମାନେ ମାନିବେ ନାହିଁ । ତେଣୁ ଈଶ୍ୱରଙ୍କ ବାଣୀ କହିଲେ ସମସ୍ତେ ଡରରେ ମାନିବେ । ତାହାହିଁ ହେଉଥିଲା ଏବଂ ଏବେ ମଧ୍ୟ ହେଉଛି । ଉଦାହରଣ ସ୍ୱରୂପ ଠାକୁରାଣୀଙ୍କ ପାଖରେ ମଇଁଷି କିମ୍ବା ବୋଦା ବଳି ଦେବା ପ୍ରଥା ରହିଛି । ଏହା ପୁରାଣରେ ରହିଛି ଏବଂ ପୁରାଣ ଈଶ୍ୱରଙ୍କ ବାଣୀ ବୋଲି ପ୍ରଚାର ହୋଇଥିବାରୁ ଜନସାଧାରଣ ସେହି ଅନ୍ଧବିଶ୍ୱାସକୁ ସତ ବୋଲି ମାନି ନେଇ ବଳି ପକାନ୍ତି । ଠାକୁରାଣୀଙ୍କୁ ସନ୍ତୁଷ୍ଟ କରିଛନ୍ତି ବୋଲି ଭାବନ୍ତି ।

ଅଲୌକିକତା ହେଉଛି ଅନ୍ଧବିଶ୍ୱାସକୁ ଦୃଢ଼ୀଭୂତ କରିବା ପାଇଁ ଅମୋଘ ଅସ୍ତ୍ର । ପ୍ରତ୍ୟେକ ଧର୍ମରେ ଅଲୌକିକ କଥାମାନ ବର୍ଣ୍ଣନା କରାଯାଇଛି । ସରଳ ଜନସାଧାରଣ ସେଗୁଡ଼ିକ ସତ ବୋଲି ଭାବିଥାନ୍ତି ।

ଆମର କର୍ତ୍ତବ୍ୟ:

ମଣିଷ ଭିତରେ ସୃଜନଶୀଳ ଶକ୍ତି ଅଛି । ଏହି ସୃଜନଶୀଳ ଶକ୍ତିକୁ ସମାଜରେ ପ୍ରଚଳିତ ଥିବା ଅନ୍ଧବିଶ୍ୱାସ ଘୋଡାଇ ପକାଇଥାଏ ଏବଂ ବିକାଶ କରିବାକୁ ସୁଯୋଗ ଦେଇ

ନଥାଏ । ଆମ ଚଳଣିରେ ବହୁତ କୁ-ସଂସ୍କାର ରହିଛି ଏବଂ ଆମେ ସେଗୁଡ଼ିକ ପିଲାଦିନୁ ଗ୍ରହଣ କରି ନେଇଛେ । ଲକ୍ଷ୍ୟ କଲେ ଦେଖିବେ ଯେ ଆମର ଖାଦ୍ୟପେୟ, ପୋଷାକ, ପର୍ବପର୍ବାଣି, ବିବାହ, ବ୍ରତ, ଜନ୍ମ, ମୃତ୍ୟୁ, ରୋଗ, ଯାତ୍ରା, ଗର୍ଭଧାରଣ, ବ୍ୟବସାୟ, ବିଦ୍ୟା ଅଧ୍ୟୟନ ପରି ସମସ୍ତ କାର୍ଯ୍ୟ କଳାପରେ ଅନ୍ଧବିଶ୍ୱାସ ଓ କୁସଂସ୍କାର ଥିବା ଯୋଗୁଁ ବହୁ ଦୁଃଖ ଭୋଗ କରିବାକୁ ପଡିଥାଏ । ପରଂପରା ନାମରେ ମଧ ମଣିଷ ଦୁଃଖ କଷ୍ଟକୁ ସହିବାକୁ ବାଧ୍ୟ ହେଉଛି । ପ୍ରତ୍ୟେକ କାର୍ଯ୍ୟକୁ ଆମେ ଯଦି ମୁକ୍ତ ମନରେ ବିଚାର ପରିସରକୁ ଆଣି ବୈଜ୍ଞାନିକ ପଦ୍ଧତିରେ ବିଶ୍ଳେଷଣ କରିବା ତାହାହେଲେ ଆମେ ବହୁତ ସଫଳତା ହାସଲ କରିପାରିବା । ଉଦାହରଣ ସ୍ୱରୂପ ପାଠ ପଢ଼ା ସମୟରେ ଛାତ୍ର ଛାତ୍ରୀମାନେ ଯଦି ନିୟମିତ ବିଦ୍ୟାଳୟକୁ ଯାଇ ଶିକ୍ଷକଙ୍କ ଠାରୁ ଯେଉଁ ଶିକ୍ଷା ଅର୍ଜନ କରୁଛନ୍ତି ତାହାକୁ ହୃଦୟଙ୍ଗମ କରିପାରନ୍ତେ ଏବଂ କୌଣସି ବିଷୟ ବୁଝି ନ ପାରିଲେ ଶିକ୍ଷକଙ୍କୁ ପଚାରି ଭଲ ଭାବରେ ବୁଝିବାକୁ ଚେଷ୍ଟା କରନ୍ତେ ତେବେ ସରସ୍ୱତୀ ପୂଜା ଓ ଗଣେଶ ପୂଜାର ଆବଶ୍ୟକତା ପଡ଼ନ୍ତା ନାହିଁ । ଯେତେ ପୂଜା କଲେ ପାଠ ଆଦୌ ହେବ ନାହିଁ । ଜ୍ଞାନ ଅର୍ଜନ ପାଇଁ ଇନ୍ଦ୍ରିୟମାନଙ୍କର ସାହାଯ୍ୟ ନିହାତି ଦରକାର । ସେହିପରି ସବୁ ସ୍ତରରେ ମଣିଷର ପ୍ରୟାସ ଦ୍ୱାରା ପ୍ରଗତି ସମ୍ଭବ । କୌଣସି କଳ୍ପିତ ଦିଅଁ ଦେବତାର ଆରାଧନା ଦ୍ୱାରା ଏକ ଜାତିର ବିକାଶ ହେବ ନାହିଁ । ଜାତିର ବିକାଶ ହେବ ସଂଘବଦ୍ଧ ଉଦ୍ୟମ, ନିଷ୍ଠା ଓ କର୍ତ୍ତବ୍ୟ ଦ୍ୱାରା । ଏ କ୍ଷେତ୍ରରେ ବିଜ୍ଞାନର ମହତ୍ତ୍ୱ ଗୁରୁତ୍ୱପୂର୍ଣ୍ଣ ।



# ଚିକିତ୍ସା ବିଜ୍ଞାନର ଯୁଗାନ୍ତକାରୀ ସାଫଲ୍ୟ

*ଡକ୍ଟର ଗୋକୁଳାନନ୍ଦ ମହାପାତ୍ର*

ରୋଗ ସହିତ ମନୁଷ୍ୟ ଆଦିମକାଳରୁ ଯେ ଯୁଦ୍ଧ କରି ଆସିଅଛି, ଏହା କେହି ଅସ୍ୱୀକାର କରିବେ ନାହିଁ । ମନୁଷ୍ୟର ଜନ୍ମ ସଙ୍ଗେ ସଙ୍ଗେ ରୋଗ ମଧ୍ୟ ଜନ୍ମ ପାଇଛି । ଆଦିମାନବ ମଧ୍ୟ ରୋଗରୁ କଷ୍ଟ ପାଇ ଏଣେ ତେଣେ ଦୌଡାଦୌଡି କରୁଥିଲା କଷ୍ଟର ଲାଘବ ନିମିତ୍ତ । ଚିକିତ୍ସା ଅଭାବରୁ ସେ ମଶା ମାଛି ଭଳି ମରିଯାଉଥିଲା । ସଭ୍ୟ ହେଉ ବା ଅସଭ୍ୟ ହେଉ ରୋଗ କାହାରିକୁ ଛାଡି ନାହିଁ । ଗୋଟିଏ କଳ ବା ଇଞ୍ଜିନ୍ ରଖିଲେ ଯେପରି ସାମୟିକ ଏହାର ମରାମତି କରିବାକୁ ପଡ଼େ, ସେହିପରି ମନୁଷ୍ୟରୂପକ ଇଞ୍ଜିନ୍‌ର ରୋଗ ହେଲେ ଚିକିତ୍ସା କରିବା ଏକାନ୍ତ ପ୍ରୟୋଜନ ।

ଇଞ୍ଜିନ୍‌କୁ ମରାମତି କରିବାକୁ ହେଲେ ଯେପରି ଇଞ୍ଜିନ୍‌ର ବିଭିନ୍ନ ଅଂଶ ସମ୍ବନ୍ଧରେ ପରିଷ୍କାର ଧାରଣା ଥିବା ଦରକାର, ସେହିପରି ମନୁଷ୍ୟ ଶରୀରର କୌଣସି ରୋଗକୁ ଭଲ କରିବାକୁ ହେଲେ ଶରୀରର ବିଭିନ୍ନ ଅଂଶ ସମ୍ବନ୍ଧରେ ପରିଷ୍କାର ଧାରଣା ଥିବା ବାଞ୍ଛନୀୟ । ତା' ନ ହେଲେ ରୋଗର ପ୍ରକୃତ ଚିକିତ୍ସା ହୋଇପାରେ ନାହିଁ । ଶରୀର ସମ୍ବନ୍ଧରେ ବିଶେଷ ଧାରଣା ନ ଥିବା କେତେକ ଠକ ଚିକିତ୍ସକ ଗ୍ରାମମାନଙ୍କରେ ଚିକିତ୍ସା କରିବାର ଦେଖାଯାଉଅଛି । କିନ୍ତୁ ଅନେକ ସମୟରେ ସେମାନେ ରୋଗର ନିରାକରଣ ପରିବର୍ତ୍ତରେ ରୋଗର ବୃଦ୍ଧି ଘଟାଇଥାନ୍ତି ।

ରୋଗ ସମ୍ବନ୍ଧରେ ଆଉ ଗୋଟିଏ କଥା ଏଠାରେ ଉଲ୍ଲେଖ କରାଯାଇପାରେ । ବିଭିନ୍ନ ପ୍ରକାର ରୋଗର ଆକ୍ରମଣରୁ ରକ୍ଷା କରିବାପାଇଁ ଶରୀର ମଧ୍ୟରେ କେତେଗୁଡିଏ ଶରୀରରକ୍ଷକ ଅଛନ୍ତି । ମନୁଷ୍ୟ ସାମାନ୍ୟ ଭାବରେ କୌଣସି ରୋଗ ଦ୍ୱାରା ଆକ୍ରାନ୍ତ ହେଲେ

ଏହି ଶରୀରରକ୍ଷକଗୁଡ଼ିକ ଶରୀର ମଧ୍ୟରେ ଅଧିକ ପରିମାଣରେ ସୃଷ୍ଟି ହୋଇ ଶରୀରର ରକ୍ଷା କରନ୍ତି । ଏହି ହେତୁରୁ ଅଧିକାଂଶ ରୋଗ ଆପେ ଆପେ ଭଲ ହୋଇଯାଏ । କିନ୍ତୁ ଯେଉଁସବୁ କଠିନ ରୋଗକୁ ଶରୀରରକ୍ଷକମାନେ ପାରନ୍ତି ନାହିଁ, ସେ ସ୍ଥାନରେ ବିଭିନ୍ନ ଔଷଧ ବ୍ୟବହାର କରି ରୋଗରୁ ମୁକ୍ତିଲାଭ କରିବା କଥା ।

## ପ୍ରାଚୀନ ଯୁଗର ଚିକିତ୍ସା

ପ୍ରାଚୀନ ଯୁଗର ଲୋକମାନେ ମଣିଷର ଶରୀର ସମ୍ବନ୍ଧରେ ଆଜିକାଲିକା ଭଳି ବିଶେଷ କିଛି ନ ଜାଣି ମଧ୍ୟ ଅଭିଜ୍ଞତା ବଳରେ ବହୁ ରୋଗକୁ ଭଲ କରିପାରୁଥିଲେ । କେଉଁ ପତ୍ରର ରସ ଖାଇଲେ କିମ୍ବା କେଉଁ ଚେରମୂଳକୁ ବାଟି ଖାଇଲେ କେଉଁ ରୋଗ ଭଲ ହେବ, ତାହା ସେମାନେ ଅଭିଜ୍ଞତାରୁ ଜାଣିଥିଲେ । ବହୁବର୍ଷ ବ୍ୟବହୃତ ହେବାରୁ ସେହି ଅଭିଜ୍ଞତା ଏକ ଚିକିତ୍ସାରେ ପରିଣତ ହେଲା । କୌଣସି ରୋଗ ହେଲେ ତାକୁ ଚିକିତ୍ସା କରିବା ବିଶେଷ କିଛି କଷ୍ଟକର ହେଲା ନାହିଁ ଏହି ଅଭିଜ୍ଞତା ପ୍ରଭାବରୁ । ଏହିଭଳି ଭାବରେ ପୃଥିବୀର ପ୍ରତ୍ୟେକ ଦେଶର ଅଧିବାସୀମାନଙ୍କ ମଧ୍ୟରେ ସମ୍ଭବତଃ "ଦେଶୀ ଚିକିତ୍ସା" ଆରମ୍ଭ ହେଲା ।

ଏହି ଦେଶୀ ଚିକିତ୍ସା ଯେ କେବଳ ଭାରତବର୍ଷରେ ପ୍ରଚଳିତ ଥିଲା, ତା' ନୁହେଁ । ପୃଥିବୀର କି ଆର୍ଯ୍ୟ, କି ଅନାର୍ଯ୍ୟ, କି ଆଦିବାସୀ, କି ଅସଭ୍ୟ, କି ସଭ୍ୟ ସମସ୍ତଙ୍କ ମଧ୍ୟରେ ଅଳ୍ପ ବହୁତେ ଏହାର ପ୍ରଚଳନ ଥିଲା । ପ୍ରାକୃତିକ ଚେର, ମୂଳ, ବକଳା, ପତ୍ରକୁ ନେଇ ସେମାନେ ରୋଗର ଚିକିତ୍ସା କରୁଥିଲେ । କୁଇନାଇନ୍‌ର ଇତିହାସରୁ ଜଣାପଡ଼େ ଯେ ଅଶିକ୍ଷିତ ବ୍ରାଜିଲ ଦେଶରେ କମ୍ପଜ୍ୱରରେ ସିନ୍‌କୋନା ଗଛର ଛେଲି ବ୍ୟବହାର କରାଯାଉଥିଲା । ଏହି ଔଷଧ ପ୍ରୟୋଗରେ ସେ ଦେଶର କମ୍ପଜ୍ୱର ଭଲ ହେଉଥିଲା । ଏହି ଅଭିଜ୍ଞତାରୁ ପରେ ବୈଜ୍ଞାନିକମାନେ ଆବିଷ୍କାର କଲେ ମେଲେରିଆ ରୋଗ ସହିତ କୁଇନାଇନ୍‌ର ସମ୍ବନ୍ଧ ଓ ମେଲେରିଆ କମ୍ପଜ୍ୱରର ଅନ୍ୟ ନାମ ବୋଲି ଜଣାପଡ଼ିଲା ।

ପ୍ରକୃତିଜାତ ପଦାର୍ଥମାନଙ୍କ ସାହାଯ୍ୟରେ ରୋଗ ଚିକିତ୍ସା କେଉଁ ଦେଶରେ ଯେ ନଥିଲା ତାହା କହିହେବ ନାହିଁ । ଭାରତରେ ଏହି 'ଦେଶୀ ଚିକିତ୍ସା' ଧୀରେ ଧୀରେ ପ୍ରସାରଲାଭ କରି ଆୟୁର୍ବେଦର ମୂଳଦୁଆ ସ୍ଥାପନ କଲା ।

ଆୟୁର୍ବେଦ ଓ କବିରାଜି ଚିକିତ୍ସାର ଉତ୍ପତ୍ତି

ଆୟୁର୍ବେଦ ବା କବିରାଜି ବହୁ ଅଭିଜ୍ଞତାମୂଳକ ଜ୍ଞାନ ଉପରେ ପ୍ରତିଷ୍ଠିତ । ଏହି ଆୟୁର୍ବେଦ ଶାସ୍ତ୍ରରେ ମଧ୍ୟ ମନୁଷ୍ୟର ଶରୀରତତ୍ତ୍ୱ ଓ ଅସ୍ତ୍ରୋପଚାର ସମ୍ବନ୍ଧୀୟ ବହୁ ଗବେଷଣା ଓ ଆବିଷ୍କାର ଦେଖିବାକୁ ମିଳେ । ବୈଦିକ ଯୁଗରେ ଓ ପରେ ପରେ ଆମର ଆୟୁର୍ବେଦ ଭେଷଜ ଚିକିତ୍ସା, ଶରୀରତତ୍ତ୍ୱ ଓ ଅସ୍ତ୍ରୋପଚାର ପ୍ରଭୃତିରେ ଶୀର୍ଷ ସ୍ଥାନକୁ ଉଠିଥିଲା । ଅବଶ୍ୟ

ଏହା ସ୍ୱୀକାର କରାଯାଇପାରେ ଯେ ଏହା ଆଧୁନିକ ଚିକିତ୍ସାବିଜ୍ଞାନ ପରି ଏତେ ଉନ୍ନତ ନଥିଲା । କିନ୍ତୁ ପରେ ପରେ ବିଭିନ୍ନ କାରଣ ବଶତଃ ଏହି କବିରାଜି ଚିକିତ୍ସାର ପତନ ଘଟିଲା ଓ କବିରାଜିରେ ନାନା ପ୍ରକାର କୁସଂସ୍କାର ଓ ଅଜ୍ଞତା ଭର୍ତ୍ତି ହୋଇଗଲା ।

## ଆଧୁନିକ ଚିକିତ୍ସାବିଜ୍ଞାନର ଉତ୍ପତ୍ତି

ଡାକ୍ତରୀ ଚିକିତ୍ସାର ଆରମ୍ଭ – ଏହା ପରେ ପରେ ଅନ୍ୟାନ୍ୟ ବିଜ୍ଞାନ ସଙ୍ଗେ ସଙ୍ଗେ ଇଉରୋପ ମହାଦେଶରେ ଆଧୁନିକ ଚିକିତ୍ସା ବିଜ୍ଞାନର ଭିତ୍ତି ସ୍ଥାପିତ ହେଲା । ବର୍ଷ ବର୍ଷ ଧରି ଚିକିତ୍ସା ବିଜ୍ଞାନରେ ସେହି ଦେଶରେ ଗବେଷଣା ଚାଲିଲା । ଏହି ସମୟର ବୈଜ୍ଞାନିକମାନେ ଉପଲବ୍ଧି କଲେ ଯେ ଶରୀର ସମ୍ବନ୍ଧରେ ଠିକ୍ ଜ୍ଞାନ ଅର୍ଜନ ନ କଲେ ଚିକିତ୍ସା ବିଜ୍ଞାନର ପ୍ରକୃତ ଉନ୍ନତି ସାଧିତ ହୋଇପାରିବ ନାହିଁ । ତେଣୁ ସେ ସମୟରେ ଶରୀରତତ୍ତ୍ୱ ନେଇ ତୀବ୍ରବେଗରେ ଗବେଷଣା ଆଗେଇ ଚାଲିଲା । ଚିକିତ୍ସାବିତ୍‌ମାନେ ମୃତ ଶରୀରକୁ କାଟି ଶରୀରରେ ବିଭିନ୍ନ ଅଂଶର ସମାବେଶ କିପରି ଓ କେଉଁଠି ତାହା ପରିଷ୍କାର ଭାବରେ ଜାଣିବାକୁ ଚେଷ୍ଟା କଲେ । ଶରୀରରେ କିପରି ରକ୍ତ ସଞ୍ଚାଳନ ହୁଏ, ଖାଦ୍ୟ କିପରି ହଜମ ହୁଏ, ଖାଦ୍ୟରୁ ମନୁଷ୍ୟ କିପରି ଶକ୍ତି ପାଏ ଇତ୍ୟାଦି ବହୁ ଜଟିଳ ବିଷୟର ସମାଧାନ ଏହି ସମୟରେ ହେଲା । ଏହି ସମୟରେ ବୈଜ୍ଞାନିକ ହାର୍‌ଭେ, ପାଭ୍‌ଲୋଭ୍ ଆଦିଙ୍କ ଦାନ ଏ ଦିଗରେ ଅତୁଳନୀୟ ।

ଏହିସବୁ ଗବେଷଣା ଓ ଆବିଷ୍କାର ପରେ ମଣିଷ ବିଜ୍ଞାନର ଏକ ଅଙ୍ଗ ଭାବରେ ସୃଷ୍ଟି ଲାଭ କଲା ଶରୀରତତ୍ତ୍ୱ ବିଜ୍ଞାନ । ବିଜ୍ଞାନର ଏହି ନୂତନ ଶାଖାର ସୃଷ୍ଟି ସଙ୍ଗେ ସଙ୍ଗେ ରୋଗର କାରଣ- ରୋଗ କାହିଁକି ହୁଏ, ରୋଗ କିପରି ହୁଏ, ରୋଗ ନ ହେବ କିପରି ଏଭଳି ଭିନ୍ନ ଭିନ୍ନ ବିଷୟରେ ନାନା ଆବିଷ୍କାର କରାଗଲା ।

ଏହି ସମୟରେ ଆବିଷ୍କୃତ ହେଲା ଯେ, ଅଧିକାଂଶ ରୋଗର କାରଣ ହେଉଛି ବୀଜାଣୁ, ଜୀବାଣୁ ଓ ଭୂତାଣୁ । ପ୍ରଥମଟି ଉଦ୍ଭିଦ ଜାତୀୟ ଓ ଦ୍ୱିତୀୟଟି ପ୍ରାଣିଜାତୀୟ । ଉଭୟଙ୍କର ଜୀବନ ଅଛି ଓ ଉଭୟଯାକ ଏତେ କ୍ଷୁଦ୍ର ଯେ, ଶକ୍ତିଶାଳୀ ଅଣୁବୀକ୍ଷଣ ଯନ୍ତ୍ରବିନା ଦେଖାଯାନ୍ତି ନାହିଁ । ଭୂତାଣୁମାନେ ଆହୁରି କ୍ଷୁଦ୍ର ହୋଇଥିବାରୁ ସେମାନଙ୍କୁ ଇଲେକ୍ଟ୍ରନ୍ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଦେଖି ଚିହ୍ନି ହୁଏ । କୀଟ ପତଙ୍ଗମାନଙ୍କୁ ଯେପରି ବିଭିନ୍ନ ରାସାୟନିକ ପଦାର୍ଥ ଦ୍ୱାରା ମାରି ଦିଆଯାଏ, ସେହିଭଳି ଏହି ସୂକ୍ଷ୍ମାତିସୂକ୍ଷ୍ମ ଜୀବମାନଙ୍କୁ ମଧ୍ୟ ବିଭିନ୍ନ ରାସାୟନିକ ପଦାର୍ଥ ସାହାଯ୍ୟରେ ମାରି ଦିଆଯାଇପାରେ । ଏହି ଜୀବାଣୁମାନଙ୍କ ଦ୍ୱାରା କୌଣସି ରୋଗ ଯେତେବେଳେ ଆରମ୍ଭ ହୁଏ, ସେମାନେ ଶରୀର ମଧ୍ୟରେ ପ୍ରବେଶ କରି ଶରୀରର ଅଂଶକୁ ନଷ୍ଟ କରିବାଦ୍ୱାରା ଶରୀରର କେତେକ ସ୍ଥାନକୁ ଦଖଲ କରି ବସନ୍ତି । ବିଭିନ୍ନ ରାସାୟନିକ

ପଦାର୍ଥ ଦ୍ୱାରା ସେମାନଙ୍କୁ ବିନାଶ ନ କଲେ, ସେମାନଙ୍କ ଦାଉରୁ ତ୍ରାହି ମିଳେ ନାହିଁ । ଏହି ରୋଗ ଉତ୍ପାଦନକାରୀମାନଙ୍କ ପ୍ରଭାବରୁ ମଣିଷ ଶେଷରେ ମୃତ୍ୟୁମୁଖରେ ପଡେ । ଭୂତାଣୁମାନେ ବୀଜାଣୁ, ଜୀବାଣୁ ଭଳି ନାନା ରୋଗ ସୃଷ୍ଟି କରନ୍ତି । ସେମାନଙ୍କର ଜୀବନ ନାହିଁ ସତ, ହେଲେ ବଂଶ ବିସ୍ତାର କରିପାରନ୍ତି ବୀଜାଣୁମାନଙ୍କ ଭଳି ।

ଏହି ରୋଗଜ ଜୀବାଣୁମାନଙ୍କୁ ଶରୀର ଭିତରେ ମାରିବାକୁ ହେଲେ ଏପରି ରାସାୟନିକ ପଦାର୍ଥ ବ୍ୟବହାର କରିବାକୁ ପଡିବ, ଯା'ଦ୍ୱାରା ଜୀବାଣୁମାନେ ମରିଯିବେ, ଅଥଚ ରୋଗୀ ଶରୀରର କୌଣସି କ୍ଷତି ହେବ ନାହିଁ । ଏଭଳି ରାସାୟନିକ ପଦାର୍ଥକୁ ସାଧାରଣତଃ ଔଷଧ ବୋଲାଯାଏ । ଶରୀର ଉପରେ ଏହି ଔଷଧର ବିଷକ୍ରିୟା ଯେତେ କମ୍ ହୁଏ, ସେତେ ଭଲ । ଏହି ଔଷଧ ଦୁଇଗୋଟି ଉପାୟରେ ଆହରଣ କରାଯାଏ, ଯଥା– ପ୍ରାକୃତିକ ବା କୃତ୍ରିମ ଉପାୟରେ ।

ପ୍ରାକୃତିକ ଉପାୟରେ ଔଷଧ ଆହରଣ କରିବାକୁ ହେଲେ ବିଭିନ୍ନ ଗଛ ପତ୍ର, ପ୍ରାଣୀମାନେ ହିଁ ପ୍ରଧାନ ଉତ୍ସ । ପୁରାଣକାଳରେ ରୋଗ ନିବାରଣ ପାଇଁ ଏହି ପ୍ରକୃତିଜାତ ଔଷଧ ହିଁ ଥିଲା ଏକମାତ୍ର ସମ୍ବଳ । ଚୀନ୍, ଭାରତଠାରୁ ଆରମ୍ଭ କରି ପାରସ୍ୟ, ମିଶର ଓ ଇଉରୋପରେ ଏହି ଗଛ, ପତ୍ରରୁ ବାହାର କରାଯାଇଥିବା ଔଷଧର ପ୍ରଚଳନ ଥିଲା ଅତି ବେଶୀ । ସିନକୋନ ଗଛଠାରୁ ଆରମ୍ଭ କରି ନିମ୍ବ, ତୁଳସୀ, ପାତାଳ ଗରୁଡ଼, ଡାଳିମ୍ବ, ସଦାବିହାରୀ ଆଦି ବହୁ ଗଛରୁ ଖୁବ୍ ଦରକାରୀ ବହୁ ଔଷଧ ତିଆରି ହୋଇପାରୁଛି ।

କିନ୍ତୁ ଆଜିକାଲି ରସାୟନ ବିଜ୍ଞାନର ଅଗ୍ରଗତି ହେତୁ ପ୍ରାକୃତିକ ବସ୍ତୁ ସାହାଯ୍ୟରେ ରୋଗ ନିରାକରଣ ଦିନକୁଦିନ କମିଯାଉଛି, ତା' ସ୍ଥାନରେ ବିଭିନ୍ନ ରାସାୟନିକ ପଦାର୍ଥ ଦ୍ୱାରା ରୋଗ ଚିକିତ୍ସା ବଢ଼ି ଚାଲିଛି । ଏହି କୃତ୍ରିମ ରାସାୟନିକ ପଦାର୍ଥ ସାହାଯ୍ୟରେ ଯେଉଁ ଚିକିତ୍ସା ଚାଲିଛି ତାହା ରସାୟନୀ ଚିକିତ୍ସା ନାମରେ ପରିଚିତ ଓ ଏହି ଚିକିତ୍ସା ଦ୍ୱାରା ଆଜିକାଲି ପ୍ରାୟ ସବୁ ରୋଗକୁ ଭଲ କରି ହେଉଅଛି । ଏହି ଚିକିତ୍ସାର ଜନକ ହେଉଛନ୍ତି ଜର୍ମାନ୍ ବୈଜ୍ଞାନିକ ପଲ୍ ଏର୍‌ଲିଖ୍ ।

ବିଭିନ୍ନ ପ୍ରକାର ରୋଗ ଆକ୍ରମଣରୁ ଶରୀରକୁ ରକ୍ଷା କରିବାପାଇଁ ବୈଜ୍ଞାନିକମାନେ ଯେଉଁସବୁ ରାସାୟନିକ ଔଷଧର ଆବିଷ୍କାର କରିଅଛନ୍ତି, ତହିଁର ଏକ ସମ୍ପୂର୍ଣ୍ଣ ତାଲିକା ଦେବା ଅତୀବ କଷ୍ଟକର । ଏହିସବୁ ଔଷଧର ସଂଖ୍ୟା ଆଜିକାଲି ଏତେ ବଢ଼ିଚାଲିଛି ଯେ, ତା'ର କଳନା ନାହିଁ । ଯେକୌଣସି ଔଷଧ ଦୋକାନକୁ ଗଲେ ଏଭଳି ଶହ ଶହ ଔଷଧ ନଜରରେ ପଡେ । ଏହି ରାସାୟନିକ ପଦାର୍ଥ ସାହାଯ୍ୟରେ ମେଲେରିଆ, ଟାଇଫଏଡ୍, ଗନୋରିଆ, ନିମୋନିଆ, ସିଫିଲିସ୍, ବାତଜ୍ୱର, କଳାଜ୍ୱର, ପୀତଜ୍ୱର, ଆମାଶୟ, କୁଷ୍ଠ, ଯକ୍ଷ୍ମା ପ୍ରଭୃତି ଶହ ଶହ ପ୍ରକାର ରୋଗକୁ ଭଲ କରିବା ସମ୍ଭବପର ହୋଇଛି ।

କୁଇନାଇନ୍, ମେପାକ୍ରିନ୍, ପ୍ଲାସ୍‌ମୋକୁଇନ୍, ପ୍ୟାଲୁଡ୍ରିନ୍, କ୍ଲୋରୋକୁଇନ୍ ଆଦି ସାହାଯ୍ୟରେ ବିଭିନ୍ନ ପ୍ରକାର ମେଲେରିଆ ରୋଗ, କ୍ଲୋରୋମାଇସିଟିନ୍ ସାହାଯ୍ୟରେ ଟାଏଫଏଡ୍, ପେନିସିଲିନ୍ ସାହାଯ୍ୟରେ ଗନୋରିଆ, ପେନିସିଲିନ୍, ସଲ୍‌ଫାପିରିଡ଼ିନ୍ ଓ ଅନ୍ୟାନ୍ୟ ଗନ୍ଧଯୁକ୍ତ ଔଷଧ ସାହାଯ୍ୟରେ ନିମୋନିଆ, ସାଲ୍‌ଭାର୍‌ସନ୍, ନିଓସାଲ୍‌ଭାର୍‌ସନ୍ ଓ ପେନିସିଲିନ ସାହାଯ୍ୟରେ ସିଫିଲିସ୍ ବା ଉପଦଂଶ, ଆର୍‌ସେନିକ୍ ଓ ଏଣ୍ଟିମନିଯୁକ୍ତ ଔଷଧ ଓ କାର୍‌ମେନିନ୍ ସାହାଯ୍ୟରେ ବାତଜ୍ୱର, କଳାଜ୍ୱର, ପୀତଜ୍ୱର, ସଲ୍‌ଫାଗୁଆଡିନ୍, ଥେଲିଲ୍ ସଲ୍‌ଫାଥାୟାଜଲ, ଏଣ୍ଟେରୋଭାୟୋଫର୍ମ ସାହାଯ୍ୟରେ ବିଭିନ୍ନ ପ୍ରକାର ଆମାଶୟ; ଚାଲମୁଗ୍ରା ହିଡ୍‌ନୋକାର୍ପାସ ତେଲ ଓ ବିଭିନ୍ନ ପ୍ରକାର ସଲ୍‌ଫୋନ୍ ଔଷଧଦ୍ୱାରା କୁଷ୍ଠ, ଷ୍ଟ୍ରେପ୍ଟୋମାଇସିନ୍, ପି.ଏ.ଏସ୍. ଆଇସୋନିଅଟ୍, ଟିବିଅନ୍ ପ୍ରଭୃତି ଦ୍ୱାରା ଯକ୍ଷ୍ମା ପ୍ରଭୃତି ରୋଗକୁ ଖୁବ୍ ଦକ୍ଷତାର ସହିତ ଭଲ କରିବା ସମ୍ଭବପର ହୋଇଛି । ଆଜିକାଲି ବଜାରରେ ସଲ୍‌ଫୋନାମାଇଡ୍, ସଲ୍‌ଫଥାୟାଜଲ୍, ସଲ୍‌ଫା ପିରିଡିନ୍, ସଲ୍‌ଫାଗୁଆନିଡିନ୍ ପ୍ରଭୃତି ଗନ୍ଧକଯୁକ୍ତ ଔଷଧ ଓ ପେନିସିଲିନ୍ ଆଦି ଏଣ୍ଟିବାୟୋଟିକ୍ସ ଔଷଧ ଏତେ ଭର୍ତ୍ତି ହୋଇଗଲାଣି ଯେ, ଔଷଧ କହିଲେ ମୋଟାମୋଟି ସେହିଗୁଡ଼ିକୁ ହିଁ ବୁଝାଉଛି । କର୍କଟ ରୋଗ ପାଇଁ ମଧ୍ୟ ସେମିତି ବହୁ ଔଷଧ ବାହାରିଲାଣି ।

**କୀଟନାଶକର ବ୍ୟବହାର**

ମେଲେରିଆ ପ୍ରଭୃତି ରୋଗକୁ କରାୟତ୍ତ କରିବା ପାଇଁ ଆହୁରି ବିଭିନ୍ନ ଉପାୟ ଆବିଷ୍କାର କରାଯାଇଛି । ମେଲେରିଆ ରୋଗର ପ୍ରଧାନ ବାହକ ମଶାମାନଙ୍କୁ ସମୂଳେ ବିନାଶ କରିବା ପାଇଁ ପାଇରୋଥ୍ରୋମ୍, ଡି.ଡି.ଟି., ଗାମାକ୍‌ସେନ, ଡାଏଲଡ୍ରିନ୍ ପ୍ରଭୃତି ନାନା ଉତ୍କଟ ମଶାନାଶକ ଆବିଷ୍କୃତ ହୋଇଛି । ଏହିସବୁ ପଦାର୍ଥ ସାହାଯ୍ୟରେ ଖାଲି ମେଲେରିଆ ରୋଗବାହୀ ମଶା କାହିଁକି ବାତଜ୍ୱରବାହୀ ମଶାମାନଙ୍କୁ ମଧ୍ୟ ସମୂଳେ ବିନାଶ କରାଯାଇପାରିଛି । ମଶାର ବିନାଶ ହେଲେ ମେଲେରିଆ ଜ୍ୱର ବ୍ୟତୀତ ବାତଜ୍ୱର, କଳାଜ୍ୱର, ପୀତଜ୍ୱର ପ୍ରଭୃତି ରୋଗର ପ୍ରାଦୁର୍ଭାବ ବହୁମାତ୍ରାରେ କମିଯାଏ । ମାଳୟ ଦ୍ୱୀପପୁଞ୍ଜ ଓ ଆମେରିକା ଅଧିକୃତ ପ୍ରଶାନ୍ତ ମହାସାଗରୀୟ ଦ୍ୱୀପପୁଞ୍ଜରେ ଆଗରୁ ଏତେ ମଶା ହେଉଥିଲେ ଯେ ସେ ଦେଶରେ ଜନବସତି ତ ଦୂରର କଥା, ପଶୁପକ୍ଷୀମାନେ ମଧ୍ୟ ସେମାନଙ୍କ ପ୍ରାଦୁର୍ଭାବରୁ ସେଠାରେ ରହିପାରୁ ନ ଥିଲେ । ଆମେରିକା ଓ ବ୍ରିଟିଶ୍ ସରକାର ବିଭିନ୍ନ ମଶାନାଶକ ସାହାଯ୍ୟରେ ଏହି ମଶାମାନଙ୍କୁ ସେହି ଦ୍ୱୀପପୁଞ୍ଜରୁ ବିନାଶ କରି ସେଠାରେ ସୁନ୍ଦର ସୁନ୍ଦର ନଗର ଓ ଜନବସତି ପ୍ରତିଷ୍ଠା କରିପାରିଛନ୍ତି ।

ଡି.ଡି.ଟି. ର ଆବିଷ୍କାର ଫଳରେ ଖାଲି ମଶାମାନଙ୍କୁ କାହିଁକି କଲେରା, ଟାଇଫଏଡ୍, ପ୍ରଭୃତି ବିଭିନ୍ନ ରୋଗର ବାହକ ମାଛିମାନଙ୍କୁ ସମୂଳେ ବିନାଶ କରବା ମଧ୍ୟ ସମ୍ଭବପର

ହୋଇଅଛି, ଫଳରେ ସେସବୁଙ୍କୁ କରାୟତ୍ତ କରିବା ଆଜିକାଲି ସହଜ ସାଧ୍ୟ ହୋଇଛି । ମଶାମାନଙ୍କୁ ଘଉଡାଇ ଦେବାପାଇଁ ଆଜିକାଲି ଗୁଡ୍‌ନାଇଟ୍ ଭଳି ଯେଉଁ ମଶାଧୂପ ବାହାରିଛି ତାହା ମଶାଦାଉରୁ ରକ୍ଷା ପାଇବା ପାଇଁ ଏକ ବିହିତ ବ୍ୟବସ୍ଥା । ଏଥିରେ ମଶାନାଶକ ଏଲିଥ୍ରିନ ଥିବାରୁ ଏହାର ଧୂଆଁରେ ମଶାମାନେ ରହି ପାରନ୍ତିନି ।

## ଏଣ୍ଟିବାୟୋଟିକ୍ସର ଆବିଷ୍କାର

ଏଣ୍ଟିବାୟୋଟିକ୍ସ ହେଉଛି ଚିକିତ୍ସା ବିଜ୍ଞାନରେ ଏକ ଯୁଗାନ୍ତକାରୀ ଆବିଷ୍କାର । ଏହାର ଆବିଷ୍କାର ଫଳରେ ବହୁ ରୋଗ ଆମର କରାୟତ ହୋଇପାରିଛି । ବହୁ ରୋଗରେ ମୃତ୍ୟୁହାର ଢେର କମିଯାଇଛି । ଏହିସବୁ ଔଷଧ ଭିତରେ ପେନିସିଲିନ୍, ଷ୍ଟ୍ରେପ୍ଟୋମାଇସିନ୍ ଆଦିର ଲୋକପ୍ରିୟତା ଖୁବ୍ ଅଧିକ । ଆଲେକ୍‌ଜାଣ୍ଡର ଫ୍ଲେମିଙ୍ଗ୍, ହାୱାର୍ଡ ଫ୍ଲୋରେ ଓ ବୋରିସ୍ ଚେନ୍‌ଙ୍କ ଯୋଗୁଁ ପେନିସିଲିନ ମଣିଷ ବ୍ୟବହାରକୁ ଆସିପାରିଲା । ଯେଉଁ ସବୁ ରୋଗରୁ ଆଗରୁ ହଜାର ହଜାର ରୋଗୀ ମରୁଥିଲେ, ବର୍ତ୍ତମାନ ପେନିସିଲିନ୍ ଯୋଗୁଁ ସେସବୁ ରୋଗରେ ମୃତ୍ୟୁହାର ଢେର୍ କମ୍ । ଷ୍ଟ୍ରେପ୍ଟୋମାଇସିନ୍ ହେଉଛି ଯକ୍ଷ୍ମାରୋଗର ଏକ ଅବ୍ୟର୍ଥ ଔଷଧ । ଏହାକୁ ୱାକ୍‌ସମେନ୍ ଆବିଷ୍କାର କରି ଅମର ହୋଇ ଯାଇଛନ୍ତି । କ୍ଲୋରୋମାଇସିଟିନ୍ ସେହିଭଳି ଟାଇଫଏଡ୍ ରୋଗର ଅବ୍ୟର୍ଥ ଔଷଧ । ଏହି ରୋଗରେ ଆଗରୁ ଢେର୍ ଲୋକ ମରୁଥିଲେ । ଆଜିକାଲି ଆଉ ସେତେ ମରୁ ନାହାନ୍ତି । ପ୍ରାୟ ସବୁ ପ୍ରକାର ରୋଗକୁ ଭଲ କରିପାରୁଥିବା ଭିନ୍ନ ଭିନ୍ନ ପ୍ରକାର ଏଣ୍ଟିବାୟୋଟିକ୍ସ ଆଜିକାଲି ବାହାରିଲାଣି । ଏହା ଫଳରେ ରୋଗରୁ ମୃତ୍ୟୁହାର ଢ଼େର୍ କମିଯାଇଛି ।

## ରୋଗଭୟର ହ୍ରାସ

ଏହି ସବୁ ଆବିଷ୍କାର ଫଳରେ ବିଭିନ୍ନ ରୋଗ ପ୍ରତି ଲୋକମାନଙ୍କର ଆଗରୁ ଯେଉଁ ଭୟ ଥିଲା, ତାହା ଦିନକୁ ଦିନ କମିଯାଉଛି । ଉପଦଂଶ, ମେହ, ପ୍ରମେହ ଆଦି ରୋଗକୁ ଲୋକମାନେ ଆଗରୁ ଭାରି ଭୟ କରୁଥିଲେ, ଆଜିକାଲି ତା' ପ୍ରାୟ ନାହିଁ କହିଲେ ଚଳେ । ନିମୋନିୟା, ଯକ୍ଷ୍ମା ପ୍ରଭୃତି ରୋଗରେ ଆଗରୁ ଯେଉଁ ମୃତ୍ୟୁ-ସଂଖ୍ୟା ଥିଲା, ଏଣ୍ଟିବାୟୋଟକ୍ସ ଜାତୀୟ ଔଷଧ ଦ୍ୱାରା ତାହା ବହୁ ପରିମାଣରେ କମିଯାଇଛି । ଆଜିକାଲି ଏହି ଏଣ୍ଟିବାୟୋଟିକ୍ସ ଶ୍ରେଣୀରେ ପେନିସିଲିନ୍‌ଠାରୁ ଆରମ୍ଭ କରି ପଲିପୋରିନ୍ ପର୍ଯ୍ୟନ୍ତ ପ୍ରାୟ ୫୨ ଗୋଟି ଔଷଧ ବ୍ୟବହୃତ ହେଲାଣି । ଏହି ଜାତୀୟ ଔଷଧର ଭବିଷ୍ୟତ ଉଜ୍ଜ୍ୱଳ ବୋଲି ବୈଜ୍ଞାନିକମାନେ କହନ୍ତି । କାରଣ ଏ ଦିଗରେ ଯେପରି ଗବେଷଣା ଚାଲିଛି, ସେଥିରୁ ଅନୁମିତ ହୁଏ ଯେ ଆଉ ଅଳ୍ପଦିନ ମଧ୍ୟରେ ଦୁଃସାଧ୍ୟ ରୋଗକୁ ଏହି ଜାତୀୟ ଔଷଧ ଦ୍ୱାରା ଆୟତ୍ତ କରିବା ସମ୍ଭବପର ହେବ । ବୈଜ୍ଞାନିକ ଗବେଷଣା ଫଳରେ ବର୍ତ୍ତମାନ ଦୁଃସାଧ୍ୟ ଏଡ୍‌ସ୍ ରୋଗ ଯେ ଦିନେ କରାୟତ ହେବ ଏଥିରେ ସନ୍ଦେହ ନାହିଁ ।

## ଅସ୍ତ୍ରଚିକିତ୍ସା

ଚିକିତ୍ସା ବିଜ୍ଞାନର ଆଉ ଏକ ଚମତ୍କାର ଶାଖା ହେଉଛି ଅସ୍ତ୍ରଚିକିତ୍ସା । ଏହି ଅସ୍ତ୍ରଚିକିତ୍ସା ସାହାଯ୍ୟରେ ମଧ୍ୟ ଶରୀରର ବିଭିନ୍ନ ରୋଗକୁ ଦୂର କରିହୁଏ । ଶରୀରର କୌଣସି ଅଙ୍ଗରେ ରୋଗ ଦେଖାଦେଲା କ୍ଷଣି ଅସ୍ତ୍ରୋପଚାର ସାହାଯ୍ୟରେ ସେହି ରୋଗକୁ ସେଠାରୁ ଦୂର କରିବା ସମ୍ଭବପର ହୋଇଛି । ଏପେଣ୍ଡିସାଇଟିସ୍, ହାର୍ନିଆ, କୋଷବୃଦ୍ଧି ପ୍ରଭୃତି ବିଭିନ୍ନ ରୋଗକୁ ଅସ୍ତ୍ରୋପଚାର ଦ୍ୱାରା ଭଲ କରିବା ସମ୍ଭବପର । ଅସ୍ତ୍ରୋପଚାର ସାହାଯ୍ୟରେ ପେଟ, ଅନ୍ତ୍ର, ଚକ୍ଷୁ, ଦେହର ବିଭିନ୍ନ ରୋଗ ଦୂର କରିବା ସହଜ ସାଧ୍ୟ ହୋଇଛି । ପ୍ଲାଷ୍ଟିକ୍ ଅସ୍ତ୍ରୋପଚାର ସାହାଯ୍ୟରେ ଅସୁନ୍ଦର ମଣିଷଙ୍କୁ ସୁନ୍ଦର କରି ହେଉଛି ।

## ସଂଜ୍ଞାପହାରକର ବ୍ୟବହାର

ଆଧୁନିକ ଯୁଗରେ ଅସ୍ତ୍ରୋପଚାର କରିବାକୁ ହେଲେ ରୋଗୀକୁ ସର୍ବପ୍ରଥମେ ଅଚେତ କରିବାକୁ ପଡ଼େ । ଅଚେତ ନ କଲେ ବଡ଼ ବଡ଼ ଅସ୍ତ୍ରଚିକିତ୍ସା କରିହୁଏ ନାହିଁ । ଚିକିତ୍ସା ବିଜ୍ଞାନରର ଅନ୍ୟତମ ଶ୍ରେଷ୍ଠ ବିଜୟ ହେଉଛି ରୋଗୀକୁ ବିନା ଯନ୍ତ୍ରଣାରେ ଅଚେତ କରିବା ପାଇଁ ନାନା ଔଷଧର ଆବିଷ୍କାର । ଇଥର, ନାଇଟ୍ରିକ୍ ଅକ୍ସାଇଡ୍ ଅମ୍ଳଜାନ, କ୍ଲୋରୋଫର୍ମ ପ୍ରଭୃତି ବିଭିନ୍ନ ପ୍ରକାର ସଂଜ୍ଞାପହାରକର ଆବିଷ୍କାର ଓ ବ୍ୟବହାର ଫଳରେ ଅସ୍ତ୍ରୋପଚାର ଜନିତ ଯନ୍ତ୍ରଣାକୁ ପୂରାଭାବରେ ଦୂର କରିବା ସମ୍ଭବ ହୋଇଛି । ଏହି ସଂଜ୍ଞାପହାରକର ବ୍ୟବହାର ପୂର୍ବରୁ ରୋଗୀମାନଙ୍କୁ ଅଚେତ କରିବା ପାଇଁ ଯେଉଁସବୁ ଦୁଃଖଦାୟକ ଉପାୟ ଅବଲମ୍ବନ କରାଯାଉଥିଲା ତାହା ଶୁଣିଲେ ଆଶ୍ଚର୍ଯ୍ୟ ହେବାକୁ ପଡେ ।

## ଅଚେତ କରିବା ପାଇଁ ପୁରାକାଳର ବ୍ୟବସ୍ଥା

ରୋଗୀକୁ ଅଚେତ ନ କଲେ କେତେକ ସାଂଘାତିକ ଅସ୍ତ୍ରଚିକିତ୍ସା କରିହୁଏ ନାହିଁ ବୋଲି ପୁରାକାଳରେ ଚିକିତ୍ସକମାନେ ରୋଗୀକୁ ତା'ର ଅଜ୍ଞାତସାରରେ, ତା' ମସ୍ତକ ଉପରେ ପ୍ରହାର କରି ତାକୁ ଅଚେତ କରୁଥିଲେ । ଯେଉଁ ରୋଗୀ ନିଜ କଷ୍ଟର ନିରାକରଣ ନିମିତ୍ତ ଚିକିତ୍ସକ ପାଖକୁ  ଯାଇଥାଏ, ସେ ଯଦି ତତ୍‌ପରିବର୍ତ୍ତରେ ନିଜ କଷ୍ଟ ଉପରେ ଚିକିତ୍ସାଠାରୁ ଆହୁରି ଅଧିକ କଷ୍ଟ ପାଏ, ତେବେ ରୋଗୀର ଅବସ୍ଥା ଯେ କ'ଣ ହେଉଥିବ, ତାହା ସହଜରେ ଅନୁମେୟ ।

କେତେକ ସ୍ଥାନରେ ସମ୍ମୋହନ ମନ୍ତ୍ରମଳରେ ରୋଗୀକୁ ଅଚେତ କରାଇ ଅସ୍ତ୍ରଚିକିତ୍ସା କରାଯାଉଥିଲା । ଏହି ଉପାୟଟି କଷ୍ଟଦାୟକ ନ ହେଲେ ମଧ୍ୟ ସବୁ ଚିକିତ୍ସକ ତା' କରିପାରୁ ନଥିଲେ । କିନ୍ତୁ କ୍ଲୋରୋଫର୍ମର ଆବିଷ୍କାର ଫଳରେ ସେହି ପୂର୍ବ ଭୀଷଣତା ଚିରଦିନ ପାଇଁ

ଲୋପ ପାଇଲା ଓ ଚିକିତ୍ସକମାନେ ରୋଗୀମାନଙ୍କୁ ଅଚେତ କରିବା ପାଇଁ ନାନା ଶକ୍ତିଶାଳୀ ଓ ନିରାପଦ ସଂଜ୍ଞାପହାରକ ଆବିଷ୍କୃତ ହେଲାଣି । ସେ ସବୁର ଆବିଷ୍କାର ଅସ୍ତ୍ରୋପଚାରକୁ ଯଥେଷ୍ଟ ଆଗେଇ ନେଇଛି ।

## ସ୍ଥାନୀୟ ଅଚେତକ

ଅସ୍ତ୍ରୋପଚାରର ଯନ୍ତ୍ରଣା ଦୂରୀକରଣ ପାଇଁ ଆଉ ଏକ ଉପାୟ ଆଜିକାଲି ଆବିଷ୍କୃତ ହୋଇଅଛି । ସାଧାରଣ ସଂଜ୍ଞାପହାରକ ପରିବର୍ତ୍ତରେ ସ୍ଥାନୀୟ ଅଚେତକ ବ୍ୟବହାର କରାଯାଇ ଅସ୍ତ୍ରଚିକିତ୍ସାକୁ କଷ୍ଟଶୂନ୍ୟ ଓ ଯନ୍ତ୍ରଣାବିହୀନ କରାଯାଇ ପାରୁଅଛି । ଏହି ସ୍ଥାନୀୟ ଅଚେତକର ବ୍ୟବହାରରେ ରୋଗୀକୁ ଅଚେତ ନ କରି ଅସ୍ତ୍ରୋପଚାର ହେବା ସ୍ଥାନଟିକୁ ଚେତନାରହିତ କରିଦିଆଯାଏ । ଏଥିନିମିତ୍ତ ସେହି ସ୍ଥାନଟିରେ ଏହି ସ୍ଥାନୀୟ ଅଚେତକର ସାହାଯ୍ୟରେ ରୋଗୀର ସଂଜ୍ଞାଥିବା ଅବସ୍ଥାରେ ଏପରିକି ସେ ଅନାଇ ଥାଉଁ ଥାଉଁ ତା'ର ରୋଗଗ୍ରସ୍ତ ଅଂଶ ଉପରେ ଅସ୍ତ୍ରଚିକିତ୍ସା କରାଯାଇପାରେ । ଆଜିକାଲି ଏହି ପଦ୍ଧତିରେ ଚକ୍ଷୁ ଅସ୍ତ୍ରୋପଚାର, ଦାନ୍ତରୋଗ ଚିକିତ୍ସା ଆଦି କରାଯାଇ ପାରୁଛି ।

## ବୀଜାଣୁନାଶକ ଓ ବିଶୋଧକର ଉପଯୋଗ

କୌଣସି ସ୍ଥାନରେ ଅସ୍ତ୍ରୋପଚାର ପରେ ଏହି କ୍ଷତ ସ୍ଥାନକୁ ନାନା ପ୍ରକାର ବିଶୋଧକ ବା ବୀଜାଣୁନାଶକ  ଔଷଧ ଦେଇ ପଟି ବାନ୍ଧିଦେବାକୁ ପଡ଼େ କାରଣ ତା' ନ କଲେ ବାହାରର ପୂୟକାରୀ ବୀଜାଣୁମାନେ କ୍ଷତ ସ୍ଥାନରେ ପଶି ସେହି ସ୍ଥାନଟିକୁ ପଚାଇ ଦିଅନ୍ତି । ଫଳରେ ସେହି ସ୍ଥାନକୁ ଭଲ କରିବା କଷ୍ଟକର ହୋଇପଡେ । ପୁରାକାଳରେ ଚିକିତ୍ସକମାନେ ସର୍ବଦା ଏହି ଅସୁବିଧାର ସମ୍ମୁଖୀନ ହେଉଥିବାରୁ ନାନା ଅପମୃତ୍ୟୁ ଓ ଅକାଳମୃତ୍ୟୁ ଆଦି ରୋଗୀମାନଙ୍କ ଭିତରେ ଦେଖା ଦେଉଥିଲା । କିନ୍ତୁ ପରେ ପରେ ଲିଷ୍ଟର ପ୍ରଭୃତି ମନୀଷୀମାନଙ୍କର ଆବିର୍ଭାବ ଓ ଗବେଷଣା ଫଳରେ ଏହି ଅସୁବିଧା ଦୂର ହେଲା । ଆୟୋଡୋଫର୍ମ ପ୍ରଭୃତି କେତେକ ରାସାୟନିକ ବୀଜାଣୁନାଶକ ଆବିଷ୍କୃତ ହେବାରୁ କ୍ଷତ ସ୍ଥାନକୁ କିୟତ୍ ପରିମାଣରେ ରକ୍ଷା କରିବା ସମ୍ଭବପର ହେଲା । କିନ୍ତୁ ପରେ ପରେ ସଲ୍‌ଫୋନାମାଇଡ୍, ପେନ୍‌ସିଲିନ୍ ପ୍ରଭୃତି ବହୁ ଔଷଧର ପ୍ରଚଳନ ହେବାରୁ ଅସ୍ତ୍ରୋପଚାରଜନିତ କ୍ଷତକୁ ସର୍ବତୋଭାବରେ ରକ୍ଷା କରିବା ସହଜସାଧ୍ୟ ହେଲା । ଅସ୍ତ୍ରୋପଚାର ପରେ ଏହି ସବୁ ଔଷଧକୁ କ୍ଷତ ସ୍ଥାନରେ ଲଗାଇ ପଟି ବାନ୍ଧିଦେଲେ ସେଗୁଡିକ ଆଉ ପଚିଯାଏ ନାହିଁ । ଏଥି ସଙ୍ଗେ ସଙ୍ଗେ କ୍ଷତସ୍ଥାନ ନ ପଚିବା ପାଇଁ ସଲ୍‌ଫାଥାୟାଜଲ, ପେନିସିଲିନ୍ ପ୍ରଭୃତି କେତେକ ଔଷଧ ଦେଲେ କ୍ଷତସ୍ଥାନ ପଚିବାର ଆଉ ଭୟ ନଥାଏ । ଆଜିକାଲି ସେସବୁ ପାଇଁ ଏତେ ଦକ୍ଷତା ସଂପନ୍ନ ଔଷଧ ବାହାରିଲାଣି, ଯାହା ଫଳରେ ସେସବୁ ପୂରାପୂରି ଦୂରୀଭୂତ ହେଲାଣି ।

ଖାଲି ସେତିକି ନୁହେଁ, ଅସ୍ତ୍ରୋପଚାର ସ୍ଥାନରେ ପୂଜ ନ ହେବା ପାଇଁ ଅସ୍ତ୍ରୋପଚାର ସ୍ଥାନ, ଅସ୍ତ୍ରୋପଚାର ଯନ୍ତ୍ରପାତି, ପଟି ବନ୍ଧାହେବା ତୂଳା, କନା ଆଦିକୁ ଜୀବାଣୁଶୂନ୍ୟ କରି ନିଆଯାଏ । ଏଥିପାଇଁ କେତେ ପ୍ରକାର ବିଶୋଧକ ଓ ଷ୍ଟେରିଲାଇଜର୍ ପ୍ରଭୃତି ଯନ୍ତ୍ରପାତି ବ୍ୟବହୃତ ହୁଏ । ଏହିସବୁ ବ୍ୟବସ୍ଥା ଫଳରେ ଆଜିକାଲି ଅସ୍ତ୍ରୋପଚାରର ସଫଳତା ଓ କଷ୍ଟଲାଘବ ଆଗ ଅପେକ୍ଷା ବହୁ ପରିମାଣରେ ବଢ଼ି ଯାଇଅଛି । ଅସ୍ତ୍ରୋପଚାର ଓ ତଦାନୁଷଙ୍ଗିକ ବିଭିନ୍ନ ଉନ୍ନତି ଫଳରେ ହୃଦ୍‌ଯନ୍ତ୍ର, ଫୁସ୍‌ଫୁସ୍, ଯକୃତ୍‌ର ବିଭିନ୍ନ ଅଂଶ, ଜରାୟୁ, ଡିମ୍ବକୋଷ, ଚକ୍ଷୁ ପ୍ରଭୃତି ଶରୀରର ଅତି ସୂକ୍ଷ୍ମ ଓ ଗୁରୁତ୍ୱପୂର୍ଣ୍ଣ ଅଂଶମାନଙ୍କରେ ଖୁବ୍ ଦକ୍ଷତାର ସହିତ ଅସ୍ତ୍ରୋପଚାର କରି ଚିକିତ୍ସକମାନେ ଯେଉଁ ଅଭୂତପୂର୍ବ ପରାକାଷ୍ଠା ଦେଖାଇଛନ୍ତି, ତାହା ଇତିହାସରେ ଚିରଦିନ ପାଇଁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଥିବ ।

**ଅସ୍ତ୍ରୋପଚାରରେ ନାହିଁ ନ ଥିବା ସଫଳତା**

ଅନେକ ସମୟରେ ନାନା କାରଣବଶତଃ ଆମ ଶରୀରର ବହୁ ଅଙ୍ଗ ନଷ୍ଟ ହୋଇଯାଏ । ଦୁର୍ଘଟଣା ଯୋଗୁଁ କେତେକ ଲୋକଙ୍କ ହୃତ୍‌ପିଣ୍ଡ ନଷ୍ଟ ହୋଇଯାଏ । କେତେପ୍ରକାର ରୋଗ ଓ ଅବହେଳା ଯୋଗୁଁ ଆମ ବୃକକ ଖରାପ ହୋଇଯାଏ । ଏହି ଅଙ୍ଗ ଖରାପ ହୋଇଗଲେ ବା ନଷ୍ଟ ହୋଇଗଲେ ମୃତ୍ୟୁ ଅନିବାର୍ଯ୍ୟ । ଆଜିକାଲି ସଦ୍ୟ ମୃତ ଲୋକଠାରୁ ସୁସ୍ଥ ହୃତ୍‌ପିଣ୍ଡ ଆଣି ହୃତ୍‌ପିଣ୍ଡ ନଷ୍ଟ ହୋଇଥିବା ଲୋକଠାରେ ପରିରୋପଣ କରି ସେଭଳି ସାଙ୍ଘାତିକ ରୋଗୀକୁ ଜୀବନଦାନ କରିହେଉଛି । ସେହିଭଳି ବୃକ୍କ ନଷ୍ଟ ହୋଇଥିଲେ ନିଜ ଜାଆଁଳା ଭାଇ, ଭଉଣୀ ବା ନିକଟ ସମ୍ପର୍କୀୟ ଲୋକଙ୍କଠାରୁ ଗୋଟିଏ ବୃକ୍କ ଆଣି ପରିରୋପଣ କରି ରୋଗ ଭଲ କରି ହେଉଛି । ବିଜ୍ଞାନରେ ଏହି ନୂତନ ଧରଣର ପରିରୋପଣ ଅସ୍ତ୍ରୋପଚାର ଜଗତରେ ନୂତନ ଯୁଗର ଆରମ୍ଭ କରିଛି ।

ସେହିଭଳି ଡିମ୍ବକୋଷ ନଥିବା ବନ୍ଧ୍ୟା ନାରୀକୁ ଅସ୍ତ୍ରୋପଚାର ଦ୍ୱାରା ତା'ର ଶରୀର ମଧ୍ୟରେ ଅନ୍ୟ ଡିମ୍ବକୋଷ ଲଗାଇ ବନ୍ଧ୍ୟାଦୋଷ ଦୂର କରିବା କମ୍ ବଡ଼ ଆଶ୍ଚର୍ଯ୍ୟର କଥା ନୁହେଁ । ସଦ୍ୟ ମୃତ ଲୋକ ଦେହରୁ ହାଡ଼ କାଟି ଆଣି ଲଗାଇ ଛୋଟା, ଲେଙ୍ଗଡ଼ାଙ୍କୁ ଭଲ କରି ହେଉଅଛି । ଅନ୍ଧ, ଛୋଟା, ଲେଙ୍ଗଡ଼ାମାନଙ୍କୁ ଭଲ କରିବାପାଇଁ ଇଉରୋପ, ଆମେରିକା, ରୁଷିଆ ପ୍ରଭୃତି ଦେଶରେ ଚକ୍ଷୁଭଣ୍ଡାର, ଅସ୍ଥି ଭଣ୍ଡାର, ଏପରିକି ଧମନୀ ଭଣ୍ଡାରମାନ ସ୍ଥାପନ କରାଯାଇଅଛି ।

ଅସ୍ତ୍ରୋପଚାର ଓ ଭେଷଜ ବିଜ୍ଞାନରେ ଆଜିକାଲି ବୈଜ୍ଞାନିକମାନେ ଯେଉଁ ପରାକାଷ୍ଠା ଦେଖାଇଛନ୍ତି, ସେପରି କୃତିତ୍ୱ କେବେ ଆଗରୁ ଦେଖାଯାଇନଥିଲା । ଗଳ୍ପାକାରରେ ହିନ୍ଦୁ ପୁରାଣମାନଙ୍କରେ ଐଶ୍ୱରିକ ଶକ୍ତି ସମ୍ବନ୍ଧରେ ଯେଉଁ ସବୁ କାଳ୍ପନିକ କଥା ଶୁଣିବାକୁ ମିଳେ, ଆଧୁନିକ ବିଜ୍ଞାନ ଆଜି ତାକୁ କେତେକାଂଶରେ କାର୍ଯ୍ୟରେ ପରିଣତ କରାଇ ସାରା ଜଗତକୁ

ଚକିତ କରିଅଛି । ସମ୍ପୂର୍ଣ୍ଣ ଅନ୍ଧଲୋକର ଚକ୍ଷୁକୁ ଅସ୍ତ୍ରୋପଚାର କରି ତା' ସ୍ଥାନରେ ନୂତନ ଚକ୍ଷୁ ଲଗାଇ ତାକୁ ଚକ୍ଷୁଦାନ କରିବା କମ୍ ଆଶ୍ଚର୍ଯ୍ୟର କଥା ନୁହେଁ । ଇଉରୋପ ଓ ଆମେରିକାର ବିଭିନ୍ନ ଡାକ୍ତରଖାନାମାନଙ୍କରେ ଏଥିନିମିତ୍ତ ସତେଜ ଚକ୍ଷୁ ଖୁବ୍ ସାବଧାନତା ସହକାରେ ଗଚ୍ଛିତ ହୋଇ ରଖାଯାଇଥାଏ ।

ରକ୍ତଭଣ୍ଡାରମାନଙ୍କୁ ରକ୍ତଦାନ କଲାଭଳି ଲୋକମାନେ ମରିଯିବା ପୂର୍ବରୁ ସେମାନଙ୍କର ଚକ୍ଷୁ ଏହି ଚକ୍ଷୁଭଣ୍ଡାରକୁ ଦାନ କରି କାଗଜରେ ଲେଖିଦେଇ ଯାଇଥାନ୍ତି । ସେମାନେ ମରିଗଲା ପରେ ସଙ୍ଗେ ସଙ୍ଗେ ସେମାନଙ୍କ ଆଖି ଖୋଳି ନିଆଯାଇ ଚକ୍ଷୁଭଣ୍ଡାରରେ ଗଚ୍ଛିତ ରଖାଯାଏ । ଗୋଟିଏ ଆଖି ଚକ୍ଷୁଭଣ୍ଡାରରେ ତିନି ଚାରିଦିନରୁ ବେଶି ରହିପାରେ ନାହିଁ । ଏହି ସମୟ ଭିତରେ ଚକ୍ଷୁକୁ ବ୍ୟବହାର କରିବା କଥା । ଏହି ଚକ୍ଷୁ ଖୋଳା ହେବା ସଙ୍ଗେ ସଙ୍ଗେ ସେଗୁଡ଼ିକୁ ଉଡାଜାହାଜ ଯୋଗେ ନିଆଯାଇ ଅପରେସନ୍ ଟେବ୍‌ଲରେ ଶୋଇଥିବା ଅନ୍ଧ ଲୋକଠାରେ ପହଞ୍ଚାଇ ଦିଆଯାଏ । ତା'ପରେ ଅସ୍ତ୍ର ଚିକିତ୍ସକମାନେ ଅନ୍ଧ ଚକ୍ଷୁକୁ କାଟି ଏହି ଚକ୍ଷୁ ବ୍ୟବହାର କରି ଅନ୍ଧଲୋକର ଦୃଷ୍ଟିଶକ୍ତି ଫେରାଇ ଆଣିଥାନ୍ତି ।

ବୃଦ୍ଧଲୋକର ବିଭିନ୍ନ ଜୀର୍ଣ୍ଣଶୀର୍ଣ୍ଣ ଗଣ୍ଠିକୁ ଅସ୍ତ୍ରୋପଚାର ଦ୍ୱାରା ବାହାର କରି ନୂତନ ଗଣ୍ଠି ଲଗାଇ ବୃଦ୍ଧଲୋକକୁ ଯୌବନ ପ୍ରଦାନ କରିବା କିଛି ବିଚିତ୍ର ନୁହେଁ । କୌଣସି କାରଣ ବଶତଃ ଜଣେ ଲୋକ ଶରୀରରେ ଯଦି ରକ୍ତ କମ୍ ହୋଇଯାଏ ତେବେ ତା'ର ବଞ୍ଚିବା ବଡ କଷ୍ଟକର ହୋଇପଡେ । ତେଣୁ ସେପରି ଅବସ୍ଥାରେ ତା'ର ଶରୀରକୁ ଗଚ୍ଛିତ ରକ୍ତଭଣ୍ଡାରରୁ ରକ୍ତ ଯୋଗାଇ ମୃତ୍ୟୁମୁଖରୁ ରକ୍ଷା କରାଯାଏ । କେତେକ ସାଂଘାତିକ ରୋଗରେ ଏହିଭଳି ବାହାରୁ ରକ୍ତ ଯୋଗାଇବା ଦରକାର ପଡ଼େ । ରକ୍ତ ନ ଯୋଗାଇଲେ ରୋଗୀ ବଞ୍ଚିପାରେ ନାହିଁ । ତେଣୁ ସେ ପରିସ୍ଥିତିରେ ଆଗରୁ ସୁସ୍ଥସବଳ ଲୋକମାନଙ୍କଠାରୁ ଦାନସ୍ୱରୂପ ନିଆଯାଇଥିବା ରକ୍ତକୁ ରକ୍ତଭଣ୍ଡାରରୁ ଯୋଗାଇ ରୋଗୀକୁ ବଞ୍ଚାଇ ହୁଏ ।

ଲୋକମାନଙ୍କୁ ବିଭିନ୍ନ ପ୍ରକାର ପଦ୍ଧତି ଦ୍ୱାରା ଔଷଧ ଯୋଗାଇ ସେମାନଙ୍କର ଆୟୁଷ ବଢ଼ାଇବା ସମ୍ବନ୍ଧରେ ରୁଷିଆ ଦେଶରେ ଯାହା ଆବିଷ୍କୃତ ହୋଇଅଛି, ତା' ସେ ଦେଶର ବୈଜ୍ଞାନିକମାନଙ୍କର କମ୍ ବଡ଼ କୃତିତ୍ୱର ନିଦର୍ଶନ ଦେଖାଉ ନାହିଁ । ସେଥିପାଇଁ ଅଧିକ ବୟସ ଥିବା ଲୋକ ରୁଷିଆରେ ଦେଖାଯାନ୍ତି । ହୃଦ୍‌ଯନ୍ତ୍ର କ୍ରିୟା ହଠାତ୍ ବନ୍ଦ ହୋଇଯିବା ଦ୍ୱାରା ଲୋକର ଯଦି ମୃତ୍ୟୁ ହୁଏ, ସେହି ହୃଦ୍‌ଯନ୍ତ୍ରକୁ ପୁନର୍ବାର କାର୍ଯ୍ୟକାରୀ କରାଇ ମୃତଲୋକକୁ ବଞ୍ଚାଇଦେବା କିଛି ଅସମ୍ଭବ କଥା ନୁହେଁ । ଅବଶ୍ୟ ଏହି କାର୍ଯ୍ୟଟି ମୃତ୍ୟୁର ଠିକ୍ ପରେ ପରେ କରାଯାଇପାରେ । ମୃତ୍ୟୁ ପରେ ଶରୀର ପଚିବାକୁ ଆରମ୍ଭ କଲେ, ଏହା ଆଉ କାର୍ଯ୍ୟକାରୀ ହୁଏ ନାହିଁ । ପୁରାଣରେ ଆମ୍ଭେମାନେ ଶୁଣି ଆସିଥିଲୁ ଯେ ଭଗବାନଙ୍କର ଏଭଳି କେତେକ ଐଶୀଶକ୍ତି ଥିଲା ଓ ସେଗୁଡିକ ସେ କରିପାରୁଥିଲେ । ଭଗବାନଙ୍କର ସେହି କଳ୍ପନାପ୍ରସୂତ

ଅଦ୍ଭୁତ ଶକ୍ତିକୁ ଆଜି ମନୁଷ୍ୟ ହାସଲ କରିବାକୁ ବସିଛି । ଏ କଥା ଶୁଣିଲେ ଆଶ୍ଚର୍ଯ୍ୟ ନ ହୋଇ ରହିହୁଏ ନାହିଁ ।

### ଚିକିତ୍ସା ଜଗତକୁ ଏକ୍ସରେ ବା ର[illegible]ନରଶ୍ମିର ଦାନ

ଆଗରୁ ଦୁର୍ଘଟଣା ଯୋଗୁଁ ହାଡ଼ କି ଗଣ୍ଠି ଭାଙ୍ଗିଯାଉଥିଲେ ଚିକିତ୍ସା କରିବା ସମ୍ଭବ ହେଉ ନଥିଲା । ଶରୀରର ଠିକ୍ କେଉଁ ଅଂଶରେ ଏହା ଭାଙ୍ଗିଯାଇଛି ଜାଣି ନ ପାରିବାରୁ ଯଥୋଚିତ ଚିକିତ୍ସା ହୋଇପାରୁ ନଥିଲା । ଆଜିକାଲି ଏକ୍ସ-ରେ ଯନ୍ତ୍ରର ଉଦ୍ଭାବନ ଫଳରେ ସେହି ଅସୁବିଧା ଦୂର ହୋଇଛି । ଶରୀରର କୌଣସି ସ୍ଥାନରେ ହାଡ଼ ଭାଙ୍ଗିଗଲେ ଆମେ ଏହି ଏକ୍ସ-ରେ ସାହାଯ୍ୟରେ ଭଙ୍ଗା ସ୍ଥାନ ଓ ଭାଙ୍ଗିବା ରୀତି ଜାଣିପାରୁଛୁଁ । ତେଣୁ ସଙ୍ଗେ ସଙ୍ଗେ ପ୍ଲାଷ୍ଟର ବା ଅସ୍ତ୍ରୋପଚାର କରି ଅଳ୍ପ କେଇଦିନ ଭିତରେ ରୋଗୀକୁ ଭଲ କରି ହେଉଛି । ଏହି ଏକ୍ସ-ରେ ଦ୍ୱାରା କ୍ଷୁଦ୍ରାନ୍ତର ଘା, ଗ୍ରହଣୀର କ୍ଷତ, ଫୁସ୍‌ଫୁସ୍‌ରେ ଯକ୍ଷ୍ମା, ଶରୀରର କେତେକ ସ୍ଥାନରେ କର୍କଟ ରୋଗ ଜାଣିବା ସମ୍ଭବ ହୋଇଛି । କେଟ୍ ସ୍କେନର ସାହାଯ୍ୟରେ ମସ୍ତିଷ୍କ ସମେତ ସାରା ଶରୀରକୁ ସ୍କେନିଂ କରି ମଣିଷର କେଉଁ ଅଙ୍ଗରେ କି ରୋଗ ହୋଇଛି ଜାଣି ହେଉଛି । ତା'ଛଡା ନବାବିଷ୍କୃତ ନିଉକ୍ଲିଅର ସ୍କେନର ଯନ୍ତ୍ର ସାହାଯ୍ୟରେ ଶରୀର ଅଭ୍ୟନ୍ତରର ରୋଗ, ଦକ୍ଷତା ଆଦି ଜାଣି ସେଗୁଡିକର ବିହିତ ଚିକିତ୍ସା କରି ହେଉଛି । ତେଜସ୍କ୍ରିୟ ପଦାର୍ଥକୁ ବ୍ୟବହାର କରି ରଶ୍ମି ଚିକିତ୍ସା ବଳରେ ବହୁ ପ୍ରକାର ସାଂଘାତିକ କର୍କଟ ରୋଗରୁ ଭଲ ହେବା ସମ୍ଭବ ହୋଇଛି । ତୀକ୍ଷ୍ଣ ରଞ୍ଜନରଶ୍ମି ମଧ୍ୟ କର୍କଟ ରୋଗ ଦୂରୀକରଣରେ ବ୍ୟବହୃତ ହେଉଛି ।

### ରୋଗ ଚିକିତ୍ସାରେ ଲେଜର ରଶ୍ମିର ଉପକାରିତା

ଲେଜର ରଶ୍ମି ଏକ ମାରାତ୍ମକ ରଶ୍ମି ହେଲେହେଁ ଆମେ ଏହା ସାହାଯ୍ୟରେ ନାନା କାର୍ଯ୍ୟ ସୁଚାରୁରୂପେ ସମ୍ପାଦନ କରିପାରୁଁ । ଆଜିକାଲି ଲେଜର ରଶ୍ମି ସାହାଯ୍ୟରେ ଚକ୍ଷୁର ଗ୍ଲୁକୋମା ରୋଗ, କର୍ଣ୍ଣିଆ ଡିଟାଚ୍‌ମେଣ୍ଟ ଆଦି ରୋଗ ଭଲ ହୋଇଯାଏ । ଲେଜର ରଶ୍ମି ସାହାଯ୍ୟରେ ଅସ୍ତ୍ରୋପଚାର କଲେ ରକ୍ତ ନଷ୍ଟ ହୁଏନି । ବିନା ରକ୍ତସ୍ରାବରେ କେତେକ ଗୁରୁତ୍ୱପୂର୍ଣ୍ଣ ଅସ୍ତ୍ରୋପଚାର ସୁଚାରୁରୂପେ କରିହୁଏ ।

### ଜୀବନ ସମ୍ବନ୍ଧରେ ଧାରଣା

ଜୀବନ ସମ୍ବନ୍ଧରେ ଲୋକମାନଙ୍କର ଆଦିମକାଳରୁ ନାନା ଅଦ୍ଭୁତ ପ୍ରକାର ଧାରଣା ଥିଲା । କେତେକ କହନ୍ତି ମନୁଷ୍ୟ ଶରୀର ମଧ୍ୟରେ ଜୀବନବାୟୁ ନାମକ ଏକ ପ୍ରକାର ଅବାସ୍ତବ ଶକ୍ତି ବା ଆତ୍ମା ଅଛି । ଏହି ଅବାସ୍ତବ ଶକ୍ତିଟି ଯେତେଦିନ ପର୍ଯ୍ୟନ୍ତ ଲୋକମାନଙ୍କ ଶରୀର ମଧ୍ୟରେ ଥାଏ ସେତେଦିନ ପର୍ଯ୍ୟନ୍ତ ଲୋକ ବଞ୍ଚିଥାଏ । ଲୋକ ମରିବା ସଙ୍ଗେ ସଙ୍ଗେ ଏହି ଅବାସ୍ତବ ଶକ୍ତିଟି ଶରୀର ମଧ୍ୟରୁ ବାହାରିଯାଇ ପୃଥିବୀକୁ ନବାଗତ ଗୋଟିଏ ପ୍ରାଣୀର ଶରୀରରେ ପଶେ । ଏହିଭଳି ଭାବରେ ମୃତ୍ୟୁହେଲେ ସେହି ଅବାସ୍ତବ ଶକ୍ତିର କେବଳ

ଘଟାନ୍ତର ହୁଏ, ମୃତ୍ୟୁଦ୍ୱାରା ତାହାର ବିନାଶ ଘଟେ ନାହିଁ । ଏହିଭଳି ବହୁ ଅର୍ଦ୍ଧ ଦାର୍ଶନିକ ମତବାଦ ଅନେକଙ୍କ ମଧ୍ୟରେ ଦେଖିବାକୁ ମିଳେ ।

କିନ୍ତୁ ବୈଜ୍ଞାନିକମାନେ ଶରୀର ସମ୍ବନ୍ଧରେ ତନ୍ନ ତନ୍ନ ପରୀକ୍ଷା କରି ଏହି ମତ କେତେକାଂଶରେ ପ୍ରମାଦଯୁକ୍ତ ବୋଲି କହନ୍ତି । ଶରୀର ମଧ୍ୟରେ ଆତ୍ମା ବୋଲି କୌଣସି ପଦାର୍ଥ ଅଛି ବୋଲି ବୈଜ୍ଞାନିକମାନେ ବିଶ୍ୱାସ କରନ୍ତିନି । ମନୁଷ୍ୟ ମରିବା ଅର୍ଥ ନୁହେଁ, ଶରୀର ମଧ୍ୟରୁ ଏହି ଆତ୍ମା ଚାଲିଯିବା । ଶରୀର ମଧ୍ୟରେ ହୃଦ୍‌ଯନ୍ତ୍ର କ୍ରିୟା ଓ ରକ୍ତ ସଞ୍ଚାଳନ ବନ୍ଦ ହୋଇଗଲେ ମନୁଷ୍ୟର ମୃତ୍ୟୁ ଘଟେ । ମୃତ୍ୟୁ ସଙ୍ଗେ ସଙ୍ଗେ ମସ୍ତିଷ୍କ ନଷ୍ଟ ହୋଇଯାଏ । ମସ୍ତିଷ୍କ ଓ ହୃଦ୍‌ଯନ୍ତ୍ରର କ୍ରିୟା ସହିତ ମନୁଷ୍ୟ ଜୀବନ ଜଡିତ । ଆମେ ହୃଦଯନ୍ତ୍ର କ୍ରିୟାକୁ ବନ୍ଦ କରିଦେଲେ ମଣିଷ ମରିଯାଏ । ଏହି ମରିବାର ଦଶମିନିଟ୍ ଭିତରେ ଯଦି ପୁଣି ହୃଦ୍‌ଯନ୍ତ୍ରକୁ ଚଳାଇ ଦିଆଯାଏ, ତେବେ ମଣିଷ ବଞ୍ଚିଉଠେ । ବହୁ ଲୋକଙ୍କ ହୃଦ୍‌ଯନ୍ତ୍ର ହଠାତ୍ କିଛି ଦୁଃସମ୍ବାଦ ପାଇ ବନ୍ଦ ହୋଇଯାଏ । ଫଳରେ ସେ ଲୋକ ମରିଯାଏ । ଆମେ ଯଦି ଦଶମିନିଟ୍ ମଧ୍ୟରେ କୃତ୍ରିମ ଉପାୟରେ ତା' ହୃଦ୍‌ଯନ୍ତ୍ରକୁ ଚଳାଇପାରୁ, ତେବେ ସେ ମଣିଷ ପୁଣି ବଞ୍ଚିଉଠେ । ମରିଗଲା ପରେ ଯଦି ପ୍ରାଣବାୟୁ ବା ଆତ୍ମା ବାହାରି ଯାଉଥାନ୍ତା, ତେବେ ସେ ପୁଣି ବଞ୍ଚିପାରନ୍ତା କିପରି ? ଆଜିକାଲି ବହୁ ଅସ୍ତ୍ରୋପଚାରରେ ହୃଦ୍‌ଯନ୍ତ୍ରକୁ ବନ୍ଦ କରିଦେଇ କୃତ୍ରିମ ହୃଦ୍‌ଯନ୍ତ୍ର ସାହାଯ୍ୟରେ ମଣିଷକୁ ବଞ୍ଚାଇ ରଖାଯାଇପାରୁଛି । ମଣିଷର ବଞ୍ଚିରହିବା ଏକ ସାଧାରଣ ଜୈବିକ ପ୍ରକ୍ରିୟା । ଏହି ପ୍ରକ୍ରିୟା ବନ୍ଦ ହୋଇଗଲେ ମଣିଷ ମରେ । ବୃଦ୍ଧାବସ୍ଥାରେ ବହୁ ଲୋକ ସ୍ୱାଭାବିକ ରୀତିରେ ମରନ୍ତି । କାରଣ ସେମାନଙ୍କ ଶରୀରର କୌଣସି ଏକ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ଅକାମୀ ହୋଇପଡିଲେ ସେମାନେ ମରିଯାନ୍ତି । ପ୍ରାଣବାୟୁ ବା ଜୀବନବାୟୁ ବୋଲି କୌଣସି ପଦାର୍ଥ ମନୁଷ୍ୟର ଶରୀରରେ ନାହିଁ, ଅଧିକାଂଶ ବୈଜ୍ଞାନିକ ମତ ଦିଅନ୍ତି । ଜୀବନ ସମ୍ବନ୍ଧରେ ଏହି ଯୁଗାନ୍ତକାରୀ ଧାରଣା, ଆମ ସାଧାରଣ ଜ୍ଞାନର ପରିସର ଯଥେଷ୍ଟ ବଢ଼ାଇଦେଇଛି ।

## ପ୍ରତିଷେଧକର ବ୍ୟବହାର

ପୁରାକାଳରେ କୌଣସି ସ୍ଥାନରେ ମହାମାରୀ ଦେଖାଦେଉଥିଲେ, ଅଳ୍ପ କେଇଦିନ ଭିତରେ ସେଠାରେ ହଜାର ହଜାର ଲୋକ ମରିଯାଉଥିଲେ । ସେ ସମୟରେ ମହାମାରୀ ଏକ ଆତଙ୍କ ଭାବରେ ଲୋକମାନଙ୍କଠାରେ ପରିଗଣିତ ହେଉଥିଲା । ଇତିହାସର ଆରମ୍ଭରୁ ଦେଖିଆସିଲେ ବିଭିନ୍ନ ଦେଶରେ ଶହ ଶହ ମହାମାରୀ ଭିନ୍ନ ଭିନ୍ନ ସମୟରେ ଦେଖାଦେଇ କେତେ ରାଜ୍ୟକୁ ଯେ ଛାରଖାର କରିଦେଇଛି, ତା'ର ଇୟତ୍ତା ନାହିଁ । ଏହିସବୁ ମହାମାରୀ ମଧ୍ୟରେ ପ୍ଲେଗ୍, କଲେରା, ବସନ୍ତ, ଟାଇଫଏଡ୍, ଇନ୍‌ଫ୍ଲୁଏଞ୍ଜା ମହାମାରୀ ଆଦି ପ୍ରଧାନ । ଏଗୁଡିକ ଯେଉଁଠାରେ ଆରମ୍ଭ ହୁଏ, ସେଠାରେ ଏହା ଅତିଶୀଘ୍ର ବ୍ୟାପିଯାଇ ଅସଂଖ୍ୟ ଲୋକଙ୍କୁ ମୃତ୍ୟୁମୁଖକୁ ଟାଣିନିଏ ।

ମହାମାରୀର କାରଣ, ବ୍ୟାପିବାର ପଥ, ମହାମାରୀର ପ୍ରତିଷେଧକ ଆଦି ସେ ଯୁଗରେ ଅଜଣା ଥିବାରୁ ମହାମାରୀକୁ ପ୍ରତିରୋଧ କରିବା ଅସମ୍ଭବ ଥିଲା । କିନ୍ତୁ ଆଜିକାଲି ବିଜ୍ଞାନର ଉନ୍ନତି ଫଳରେ ସାଧାରଣ ସ୍ୱାସ୍ଥ୍ୟ ବିଜ୍ଞାନର ଅଗ୍ରଗତି ହେତୁ ସେସବୁ ମହାମାରୀର କାରଣ ଆଦି ଏବେ ପରିଷ୍କାର ଭାବରେ ଜଣାପଡି ଯାଇଅଛି । ବିଭିନ୍ନ ପ୍ରକାର ମହାମାରୀକୁ କରାୟତ କରିବା ପାଇଁ ଟିକା, ଇଞ୍ଜେକ୍ସନ୍ ଆଦି ନାନା ପ୍ରତିଷେଧକ ବ୍ୟବସ୍ଥା ଆବିଷ୍କୃତ ହୋଇଅଛି । ମଶା, ମାଛି, ମୂଷାମାନେ ଏହି ମହାମାରୀ ବ୍ୟାପିବାରେ ସାହାଯ୍ୟ କରନ୍ତି ବୋଲି ସେମାନଙ୍କୁ ବିନାଶ କରି ମହାମାରୀକୁ ବନ୍ଦ କରିବା ସମ୍ଭବପର ହୋଇଛି । ସ୍ଥାନୀୟ ପରିଷ୍କାର ପରିଚ୍ଛନ୍ନତା ଓ ସ୍ୱାସ୍ଥ୍ୟକର ପରିସ୍ଥିତି ମହାମାରୀ ବ୍ୟାପିବାର ପ୍ରଧାନ ଅନ୍ତରାୟ ବୋଲି ଜଣାପଡିବାରୁ ମହାମାରୀର ପୂର୍ବଭଳି ଉପଦ୍ରବ ଆଜିକାଲି ପ୍ରାୟ ନାହିଁ ।

ଅଷ୍ଟାଦଶ ଶତାବ୍ଦୀରେ ଯେଉଁ ପ୍ଲେଗ୍ ମଡକ ଇଂଲଣ୍ଡରେ ପଡିଥିଲା, ତା'ର ଲୋମହର୍ଷଣକାରୀ ଉତ୍ପାତ ଅନେକ ଇତିହାସରେ ପଢ଼ିଥିବେ । ଏଥିରେ ପରିଷ୍କାର ପରିଚ୍ଛନ୍ନତା, ପ୍ରତିଷେଧକ ଆଦି ଉପରେ ଅଧିକ ଜୋର୍ ଦିଆଯିବା ଓ ଗ୍ରାମ ଗ୍ରାମ ଭିତରେ ମିଳାମିଶାକୁ ବନ୍ଦ କରିବା ଫଳରେ ମଡ଼କକୁ ବେଶି ବ୍ୟାପିବାକୁ ଦିଆଯାଇ ନଥିଲା । ସେହିଭଳି ୧୯୧୮ ମସିହାରେ ଇଂଲଣ୍ଡରେ ଯେଉଁ ଇନ୍‌ଫ୍ଲୁଏଞ୍ଜା ମଡକ ବ୍ୟାପିଥିଲା, ତାକୁ ମଧ ବୈଜ୍ଞାନିକ ସୁବ୍ୟବସ୍ଥା ଫଳରେ ପ୍ରତିରୋଧ କରାଯାଇପାରିଥିଲା । ୧୯୫୦-୫୧ ସାଲରେ କଟକରେ ଯେଉଁ ବସନ୍ତ ମଡ଼କ, ରନ୍ତଲେଇ ଓ ଅନୁଗୁଳରେ ଯେଉଁ ହଇଜା ମଡ଼କ ପଡ଼ିଥିଲା, ସେଥିରେ ବୈଜ୍ଞାନିକ ପଦ୍ଧତି ଅନୁସାରଣ କରାଯାଇ ନଥିଲେ, ଅବସ୍ଥା ଯେ ଆହୁରି ସାଂଘାତିକ ହୋଇଥାନ୍ତା, ଏଥିରେ ସନ୍ଦେହ ନାହିଁ ।

ରଥଯାତ୍ରା ସମୟରେ ପୁରୀରେ ପ୍ରତିବର୍ଷ ହଇଜା ମହାମାରୀ ହୋଇ ଆସୁଥିଲା, କିନ୍ତୁ ବିଗତ କେତେବର୍ଷ ଧରି ସାଧାରଣ ସ୍ୱାସ୍ଥ୍ୟ ବିଭାଗର ସୁବ୍ୟବସ୍ଥା ଫଳରେ ଏହି ମହାମାରୀ ଆଉ ସେଠାରେ ଦେଖା ଦେଉନାହିଁ । ଏହିସବୁ ଦୃଷ୍ଟାନ୍ତରୁ ସ୍ପଷ୍ଟ ଜଣାଯାଏ ଯେ, ବିଭିନ୍ନ ମହାମାରୀକୁ ଆଜିକାଲି ଦକ୍ଷତାର ସହିତ ପ୍ରତିରୋଧ କରିବା ସମ୍ଭବପର ହୋଇଛି । ପୂର୍ବଭଳି ମହାମାରୀର ଆତଙ୍କରେ ଆଉ ଭୀତତ୍ରସ୍ତ ହେବାକୁ ପଡୁ ନାହିଁ । ଇଉରୋପ, ଆମେରିକା, ରୁଷିଆ ପ୍ରଭୃତି ଦେଶରେ ବିଜ୍ଞାନର ପ୍ରୟୋଗ କରାଯାଇ ବହୁ ମହାମାରୀକୁ ସେ ଦେଶମାନଙ୍କରୁ ଚିରଦିନ ପାଇଁ ବିଦାୟ କରି ଦିଆଯାଇଛି । ବସନ୍ତ ମହାମାରୀ ବର୍ତ୍ତମାନ ସାରା ପୃଥିବୀରୁ ଲୋପ ପାଇଗଲାଣି ।

**ମହାମାରୀ ସମ୍ବନ୍ଧରେ ଆମର ଅନ୍ଧବିଶ୍ୱାସ**

ଏଠାରେ ପ୍ରକାଶ ଥାଉକି ଆମ ଦେଶରେ ଏହି ବସନ୍ତ, ହଇଜା ଆଦି ମହାମାରୀକୁ ଠାକୁରାଣୀଙ୍କ ଆବିର୍ଭାବ ବୋଲି ଲୋକେ କହନ୍ତି । ଠାକୁରାଣୀଙ୍କୁ ସନ୍ତୁଷ୍ଟ କରି ମହାମାରୀକୁ

ବନ୍ଦ କରିବା ପାଇଁ ଗାଁ ବରଗଛ ମୂଳ ଠାକୁରାଣୀ ପାଖରେ ପୂଜା, ଅର୍ଘ୍ୟ, ମାଜଣା କାଳିଶି ଆଦି କେତେ କ'ଣ କରାହୁଏ । ଏସବୁ ଫଳରେ ରୋଗ କମିବା ପରିବର୍ତ୍ତେ ଅନେକ ସମୟରେ ବଢ଼ିବାକୁ ଲାଗେ ଓ ବହୁ ଲୋକ ମୃତ୍ୟୁବରଣ କରନ୍ତି ।

ପ୍ରକୃତ ସତ୍ୟ ଦୃଷ୍ଟିରୁ ଦେଖିଲେ, ଠାକୁରାଣୀ ପୂଜାକରି କୌଣସି ମହାମାରୀକୁ ବନ୍ଦ କରିବା ସମ୍ଭବପର ନୁହେଁ । ଏହା କେବଳ ଆମ ଅନ୍ଧବିଶ୍ୱାସ ଓ କୁସଂସ୍କାରର ପରିଚୟ ଛଡା ଆଉ କିଛି ନୁହେଁ । ମହାମାରୀକୁ ପ୍ରତିରୋଧ କରିବା ପାଇଁ ବୈଜ୍ଞାନିକ ଉପାୟ ହେଉଛି ପରିଷ୍କାର ପରିଚ୍ଛନ୍ନତା, ଟିକା, ଇଞ୍ଜେକ୍ସନ୍ ପ୍ରଭୃତି ପ୍ରତିଷେଧକ ଗ୍ରହଣ, କୂଅ, ପୋଖରୀ, ରାସ୍ତାଘାଟ, ଘରଦ୍ୱାର ପ୍ରଭୃତିରେ ବିଶୋଧକ ଦ୍ରବ୍ୟ ପ୍ରୟୋଗ ଓ ମହାମାରୀ ଲାଗିଥିବା ସ୍ଥାନ ସହିତ ସାଧାରଣ ମିଳାମିଶାର ହ୍ରାସ ଓ ସାଧାରଣ ସ୍ୱାସ୍ଥ୍ୟବିଜ୍ଞାନ ଅନୁସାରେ ଚଳାଚଳ, ଏ ଦିଗରେ ଅନେକ ପରିମାଣରେ ସାହାଯ୍ୟକାରୀ ହୁଏ । ଏତକ କରିପାରିଲେ ଯେକୌଣସି ମହାମାରୀକୁ ଦୂର କରିବା ସମ୍ଭବ ।

## ସାଧାରଣ ସ୍ୱାସ୍ଥ୍ୟ ବିଜ୍ଞାନ

ଚିକିତ୍ସା ବିଜ୍ଞାନର ଏକ ପ୍ରଧାନ ଶାଖା ହେଉଛି ସାଧାରଣ ସ୍ୱାସ୍ଥ୍ୟ ବିଜ୍ଞାନ । ଏହି ସ୍ୱାସ୍ଥ୍ୟ ବିଜ୍ଞାନ ଅନୁଯାୟୀ ଚଳିଲେ ରୋଗ ତ ଦୂରର କଥା, ଅକାଳବାର୍ଦ୍ଧକ୍ୟ, ଅକାଳ ମୃତ୍ୟୁ ଆଦି ପାଖ ଛୁଇଁପାରନ୍ତି ନାହିଁ । ଆମ ଦେଶରେ ରୋଗର ପ୍ରାଦୁର୍ଭାବ ଏତେ ବେଶୀ, ଏହାର ଆଂଶିକ କାରଣ ହେଉଛି ସ୍ୱାସ୍ଥ୍ୟ ବିଜ୍ଞାନ ପ୍ରତି ସର୍ବସାଧାରଣଙ୍କର ଅଜ୍ଞତା ଓ ଅବହେଳା । ଆମ ଦେଶର ଜନସାଧାରଣଙ୍କ ଉପରେ ଶିକ୍ଷାର ଉପଯୁକ୍ତ ପ୍ରଭାବ ପଡି ନ ଥିବାରୁ ଲୋକେ ସାଧାରଣ ସ୍ୱାସ୍ଥ୍ୟ ବିଜ୍ଞାନ କ'ଣ ଜାଣନ୍ତି ନାହିଁ । ସ୍ୱାସ୍ଥ୍ୟରକ୍ଷା କଅଣ, ଏହାର ପ୍ରଭାବ ମନୁଷ୍ୟ ଶରୀର ଉପରେ କିପରି, ସାଧାରଣ ସ୍ୱାସ୍ଥ୍ୟର ଅବହେଳା କଲେ କିପରି ବିଭିନ୍ନ ରୋଗ ଓ ମହାମାରୀ ଦେଖାଦିଏ, ତାହା ସେମାନେ ଜାଣିବାକୁ ମଧ୍ୟ ଚେଷ୍ଟା କରନ୍ତି ନାହିଁ । ପୁରୁଷାନୁକ୍ରମିକ ରକ୍ଷଣଶୀଳ ଭାବରେ ଚଳିବା ହେଲା ସେମାନଙ୍କର ବଦଭ୍ୟାସ ।

ସେମାନଙ୍କ ଗୃହର ଗଠନ ପ୍ରଣାଳୀ ନିହାତି ରକ୍ଷଣଶୀଳ ଧରଣର । ସେଥିମଧ୍ୟରେ ବାୟୁ ଭଲ ଭାବରେ ଯା ଆସ କରିପାରେ ନାହିଁ କି ଘର ଭିତରେ ଯଥେଷ୍ଟ ଆଲୋକ ପଶିପାରେ ନାହିଁ । ସେମାନେ ଗ୍ରାମମାନଙ୍କରେ ଯେଉଁ ଜଳ ପିଇବା ପାଇଁ ବ୍ୟବହାର କରନ୍ତି, ତାହା ଅନେକ ସ୍ଥାନରେ ଏକ ଅପରିଷ୍କୃତ ପୁଷ୍କରଣୀରୁ ଅଣାଯାଇଥାଏ, ଫଳରେ ନାନାଦି ସଂକ୍ରାମକ ରୋଗ ଏହି ଜଳଦେଇ ଲୋକମାନଙ୍କ ଭିତରେ ବ୍ୟାପିଥାଏ । ଗୋଟିଏ ପାଖରେ ଗାଧୋଇବା, ଗାଈଗୋରୁଙ୍କୁ ଗାଧୋଇଦେବା, ଝାଡ଼ା ଆସି ପାଣି ସାରିବା, ଲୁଗା କାଚିବା ଓ ଅନ୍ୟ ପାଖରୁ ସେହି ଜଳକୁ ପିଇବା ଫଳରେ ନାନା ରୋଗ ହୁଏ । ଘର ପଛଆଡ଼େ ପଚା ପାଣିଥିବା ଗଡ଼ିଆ, ଘର ନିକଟରେ ବଣଜଙ୍ଗଲ, ବାଉଁଶବୁଦା, ଘର ଆଗରେ ଗୋରୁଗୁହାଳ ଓ ପାଇଖାନା, ପଦାରେ ମଳମୂତ୍ର ତ୍ୟାଗ ଆଦି ଗର୍ହିତ କାମ ସେମାନେ ଅଜ୍ଞତା ହେତୁ କରିଥାନ୍ତି ।

ଆମ ଦେଶର ଲୋକେ ସ୍ୱାସ୍ଥ୍ୟ ବିଜ୍ଞାନକୁ ଯେପରି ଅବହେଳା କରିଥାନ୍ତି, ସେହିପରି ଅନ୍ୟ କୌଣସି ସଭ୍ୟ ଦେଶରେ ଲୋକେ ପ୍ରାୟ କରନ୍ତି ନାହିଁ । ଏହି ଦୋଷରେ ଆମ ଦେଶର କି ଶିକ୍ଷିତ କି ଅଶିକ୍ଷିତ ପ୍ରତ୍ୟେକ ଜଡିତ । ସାଧାରଣ ସ୍ୱାସ୍ଥ୍ୟ ବିଜ୍ଞାନର ନିୟମ ପ୍ରତି ଆମ୍ଭେମାନେ ଅଧିକ ଦୃଷ୍ଟି ନ ଦେଲେ ଆମ୍ଭମାନଙ୍କ ସ୍ୱାସ୍ଥ୍ୟ ଭଲ ରହିବ ନାହିଁ । ଆମ୍ଭେମାନେ ନାନା ରୋଗରେ ଆକ୍ରାନ୍ତ ହୋଇ କଷ୍ଟ ପାଇବୁ । ନିୟମିତ ସ୍ନାନ, ଆହାର, ଶୟନ ଓ ବ୍ୟାୟାମ ସୁସ୍ଥ ଶରୀରର ଯେ ପ୍ରଧାନ ସହାୟକ, ଏକଥା ଭୁଲିଯିବା ଉଚିତ ନୁହେଁ । ସ୍ୱାସ୍ଥ୍ୟ ବିଜ୍ଞାନର ନିୟମଗୁଡିକୁ ଭୁଲିଗଲେ ଆମର ସାଧାରଣ ସ୍ୱାସ୍ଥ୍ୟ ଭଲ ରହିବା ଅସମ୍ଭବ । ଅବଶ୍ୟ ଆମ ଦେଶରେ ଖାଦ୍ୟାଭାବ ସ୍ୱାସ୍ଥ୍ୟ ଉନ୍ନତିର ଏକ ପ୍ରଧାନ ଅନ୍ତରାୟ । କିନ୍ତୁ ତାହା ଅଳ୍ପ କେଇଦିନ ଭିତରେ ଦୂର ହୋଇଯିବାର ଆଶା ।

ପାଶ୍ଚାତ୍ୟ ଦେଶମାନଙ୍କରେ ଏହି ସାଧାରଣ ସ୍ୱାସ୍ଥ୍ୟ ଉପରେ ଏତେ ଜୋର୍ ଦିଆଯାଏ ଯେ, ଶୁଣିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ଜଣେ ଲୋକ ତା' ନିଜ ସ୍ୱାସ୍ଥ୍ୟ ପ୍ରତି ଅବହେଳା ପ୍ରଦର୍ଶନ କରିପାରେ, କିନ୍ତୁ ସେ କଦାପି ସାଧାରଣ ଜନସ୍ୱାସ୍ଥ୍ୟ ପ୍ରତି ଅବହେଳା ଦେଖାଇବ ନାହିଁ । ଜନସ୍ୱାସ୍ଥ୍ୟ ପ୍ରତି ଅବହେଳା ପ୍ରଦର୍ଶନ କରିବାକୁ ସେ ଦେଶର ଲୋକେ ଏକ ମହାପାପ ବୋଲି ଭାବନ୍ତି । ଆମ ଦେଶର ଲୋକମାନଙ୍କର ସେଭଳି ମନୋବୃତ୍ତି ନ ହେଲେ ଦେଶର ସାଧାରଣ ସ୍ୱାସ୍ଥ୍ୟ ଉନ୍ନତି କରିବା ଅସମ୍ଭବ ।

'ସେସବୁ ଉନ୍ନତ ଦେଶର ଗ୍ରାମ, ସହରଗୁଡିକର ଗୃହଗୁଡିକ ଏପରି ବୈଜ୍ଞାନିକ ପ୍ରଣାଳୀରେ ଗଠିତ ଯେ ସେଥିରେ ଆଲୋକ, ପବନ ଅବାଧରେ ଗତି କରିପାରେ । ବଡ଼ ବଡ଼ ସହରମାନଙ୍କରେ ବିଭିନ୍ନ ଗୃହଗୁଡିକୁ ଶୁଦ୍ଧଜଳ ପାଇପ୍ ସାହାଯ୍ୟରେ ଯୋଗାଇ ଦିଆଯାଏ । ଗୃହର ମଳମୂତ୍ର ଆଦିକୁ ଭୂମିତଳ ନାଳଦ୍ୱାରା ସହର ବାହାରକୁ ଏପରି ଭାବରେ କାଢ଼ି ନିଆଯାଏ , ଯା'ଦ୍ୱାରା ସହରର ବାୟୁ ମୋଟେ ଦୂଷିତ ହୁଏନାହିଁ । ଏହିସବୁ ବ୍ୟବସ୍ଥା ଫଳରେ ସେ ଦେଶମାନଙ୍କରେ ସାଧାରଣ ରୋଗ ତଥା ରୋଗୀ ସଂଖ୍ୟା ଆଶାତୀତ ଭାବରେ କମିଯାଇଛି । ଆମ ଦେଶଭଳି ସେ ଦେଶର ଲୋକମାନଙ୍କର ବିଭିନ୍ନ ରୋଗରୁ ଅକାଳ ବାର୍ଦ୍ଧକ୍ୟ କିମ୍ବା ରୋଗଜନିତ ଅକାଳ ମୃତ୍ୟୁ ହୁଏ ନାହିଁ । ବିଜ୍ଞାନକୁ ଅନୁସରଣ କରି ଚାଲିଲେ, ଆମ ଦେଶରେ ମଧ୍ୟ ସେହି ଅବସ୍ଥା ଯେ ହେବ, ଏଥିରେ ସନ୍ଦେହ ନାହିଁ ।

ଏହିଭଳି ଭାବରେ ଭେଷଜ ଓ ଚିକିତ୍ସା ବିଜ୍ଞାନ ରୋଗ, ମୃତ୍ୟୁ, ବାର୍ଦ୍ଧକ୍ୟ, ଦୁର୍ବଳତା ବିରୋଧରେ ତୁମୁଳ ସଂଗ୍ରାମ କରି କେତେକାଂଶରେ ବିଜୟୀ ହୋଇପାରିଛି । ଏହିସବୁ କୃତକାର୍ଯ୍ୟତା ଓ ଉନ୍ନତି ଫଳରେ ଜୀବନ ଅପେକ୍ଷାକୃତ ସୁଖମୟ ଓ ସ୍ୱାସ୍ଥ୍ୟମୟ ହୋଇପାରିଛି । ମାନବ ସେବାରେ ଚିକିତ୍ସା ବଜ୍ଞାନର ସ୍ଥାନ ଅନ୍ୟାନ୍ୟ ଶାଖାମାନଙ୍କ ତୁଳନାରେ କେତେ ଉଚ୍ଚରେ, ତାହା ଏଥିରୁ ସହଜରେ ଅନୁମେୟ ।



# ମୃତ ଶରୀରର ଅମୃତଗାଥା

*ଶ୍ରୀ ଦେବେନ୍ଦ୍ର ସୁତାର*

ମଣିଷର ବୃକକ୍ (କିଡନୀ), ହୃତ୍‌ପିଣ୍ଡ (ହାର୍ଟ), ଯକୃତ (ଲିଭର) ଫୁସ୍-ଫୁସ୍ (ଲଙ୍ଗସ) ଇତ୍ୟାଦି ଯଦି ଅଚଳ ହୋଇଯାଏ ତେବେ ମଣିଷ ମୃତ୍ୟୁ ମୁଖରେ ପଡିବା ନିଶ୍ଚିତ । ପୂର୍ବରୁ ଏପରି ରୋଗୀଙ୍କୁ କେବଳ ଚିକିତ୍ସା ମାଧ୍ୟମରେ ଖୁବ୍ କମଦିନ ବଞ୍ଚାଇବାକୁ ଚେଷ୍ଟା କରାଯାଉଥିଲା । କିନ୍ତୁ ଚିକିତ୍ସା ବିଜ୍ଞାନର ବିକାଶ ଫଳରେ ଏବଂ ଆଧୁନିକ ଚିକିତ୍ସା ପ୍ରଣାଳୀ ଦ୍ୱାରା ଏବେ ରୋଗୀକୁ କେବଳ ଉପଶମ କରିବା ବଦଳରେ ଖରାପ ହୋଇଥିବା ଅଙ୍ଗ ପ୍ରତ୍ୟଙ୍ଗ କାଢ଼ି ସେ ସ୍ଥାନରେ ଭଲ ସୁସ୍ଥ ଅଙ୍ଗଟିଏ ପ୍ରତିରୋପଣ କରିଦେଲେ ଲୋକଟି ସଂପୂର୍ଣ୍ଣ ଆରୋଗ୍ୟ ହେବା ସମ୍ଭବ ହେଉଛି ।

ଆମ ଦେଶରେ ପ୍ରାୟ ତିରିଶ ଲକ୍ଷ ଦୃଷ୍ଟିହୀନ ଲୋକ ସେମାନଙ୍କର କର୍ନିଆ ଖରାପ ଯୋଗୁ ବାହାର ଦୁନିଆଁ ଦେଖିପାରନ୍ତି ନାହିଁ । ଜଟିଳ ଦେଖିବା ପ୍ରକ୍ରିୟାର ସବୁ ଅଙ୍ଗଗୁଡିକ ଠିକ୍‌ଥିବା ସତ୍ତ୍ୱେ, କେବଳ ମାତ୍ର କର୍ନିଆ ଖରାପ ଯୋଗୁଁ ଏହି ଅସଂଖ୍ୟ ଲୋକ ଦେଖିନପାରି ଦୟନୀୟ ଜୀବନ ବିତାଉଛନ୍ତି । ପ୍ରତିବର୍ଷ କର୍ନିଆ ଖରାପ ଯୋଗୁଁ ପ୍ରାୟ କୋଡିଏ ହଜାର ଦୃଷ୍ଟିହୀନ ଲୋକ ଏହି ସଂଖ୍ୟାରେ ପୁନଃ ସାମିଲ ହେଉଛନ୍ତି । କେବଳ କର୍ନିଆ ବଦଳ କରିଦେଲେ ସେମାନେ ଦୃଷ୍ଟିଶକ୍ତି ଫେରିପାଆନ୍ତେ । ୧୯୩୦ ମସିହାଠାରୁ ଇଂଲଣ୍ଡରୁ ଆରମ୍ଭ ହୋଇଥିବା କର୍ନିଆ ପ୍ରତିରୋପଣ ଆଜି ଅନେକ ସଫଳତା ପାଇଛି । କିନ୍ତୁ କର୍ନିଆ ଜୀବିତ ଅବସ୍ଥାରେ କେହି ଦାନ କରିବାକୁ ଚାହିଁବେ ନାହିଁ । ତେଣୁ ମୃତ୍ୟୁ ପରେ ଆମେ ଯଦି ଶରୀର ଦାନ କରନ୍ତି ତେବେ ସେଥିରୁ କର୍ନିଆ ସଂଗ୍ରହ କରାଯାଇ ଦୃଷ୍ଟିହୀନ ମାନଙ୍କୁ ଦୃଷ୍ଟିଦାନ କରାଯାଇ ପାରିବ ।

ସେହିପରି ମଣିଷ ହୃତ୍‌ପିଣ୍ଡର ଯଦି କୌଣସି ଅସୁସ୍ଥତା ଦେଖାଯାଏ ଏବଂ ତାହା ଅପରେସନ ପରେ ମଧ୍ୟ ସ୍ୱାଭାବିକ କାମ କରେ ନାହିଁ, ସେତେବେଳେ ହୃତ୍‌ପିଣ୍ଡ ପ୍ରତିରୋପଣ ହିଁ ଏକମାତ୍ର ବିକଳ୍ପ । ହାର୍ଟର ଭାଲଭ୍‌ରେ କୌଣସି ରୋଗ, ହୃଦଯନ୍ତ୍ରରେ କୌଣସି ଶୀରାଶକ୍ତ ହୋଇଯିବା ପରି ଅସୁସ୍ଥତା, ଜନ୍ମରୁ ହାର୍ଟର କୌଣସି ତ୍ରୁଟି ରହିଗଲେ ହାର୍ଟ ପ୍ରତିରୋପଣ କରାଯିବା ବ୍ୟତୀତ ଅନ୍ୟ ଉପାୟ ନାହିଁ । ୧୯୬୭ ମସିହାରେ ଦକ୍ଷିଣ ଆଫ୍ରିକାରେ କେପ୍‌ଟାଉନର ଡାକ୍ତର କ୍ରିଷ୍ଟିୟାନ ବାର୍ନାର୍ଡ କରିଥିବା ପ୍ରଥମ ହୃତପିଣ୍ଡ ପ୍ରତିରୋପଣ ପଦ୍ଧତି ଆଜି ଅନେକ ଉନ୍ନତ ହୋଇଛି । ପ୍ରତିରୋପଣର ସାଫଲ୍ୟ ହାର ପ୍ରାୟ ନବେ ପ୍ରତିଶତ । ସେହିପରି ହାର୍ଟର 'ଭାଲଭ' ଏକ କ୍ଷୁଦ୍ର ଅଙ୍ଗ ହୋଇଥିଲେ ମଧ୍ୟ ଏହା ଅତ୍ୟନ୍ତ ଦରକାରୀ । ଷ୍ଟେମସେଲ୍‌ରୁ ତିଆରି କୃତ୍ରିମ ଭାଲ୍‌ଭଠାରୁ ମୃତଶରୀରରୁ ସଂଗୃହୀତ ଭାଲ୍‌ଭର ମୂଲ୍ୟ ଅପେକ୍ଷାକୃତ କମ୍ ଏବଂ ଏହାକୁ ବ୍ୟବହାର କରିବା ଅଧିକ ଫଳପ୍ରଦ ।

ମଣିଷର ଲିଭର ବା ଯକୃତ ମଧ୍ୟ ଅତି ଆବଶ୍ୟକୀୟ ଅଙ୍ଗ । ସିରୋସିସ୍ ଅଫ ଲିଭର ବା ଫାଲ୍‌ମିନାଣ୍ଟ ହେପାଟିକ୍ ଫେଲିଓର ରୋଗରେ ଯେଉଁମାନେ ଆକ୍ରାନ୍ତ ସେମାନଙ୍କର ଲିଭର ବଦଳେଇବା ଦରକାର ପଡେ । ଏବେ ପ୍ରତିରୋପଣ ପାଇଁ ଜୀବନ୍ତ ବ୍ୟକ୍ତିଙ୍କ ଲିଭରର ଦୁଇଟି ଅଂଶରୁ ଗୋଟିଏ କାଟିନେଇ ପ୍ରତିରୋପଣ କରାଯାଉଛି । ତେବେ ଏ କ୍ଷେତ୍ରରେ କୌଣସି ଜଟିଳତାକୁ ନପଶି ମୃତ ଶରୀରରୁ ଲିଭର ସଂଗ୍ରହ କରି ପ୍ରତିରୋପଣ କରିବା ଏକମାତ୍ର କାମ୍ୟ ହେବା ଉଚିତ ।

କୌଣସି ବ୍ୟକ୍ତିର କିଡ୍‌ନୀ ଖରାପ ହେଲେ ଶରୀରରେ ରକ୍ତ ପରିଷ୍କାର ହୋଇପାରେ ନାହିଁ । ଫଳରେ ମୃତ୍ୟୁ ଅବଶ୍ୟମ୍ଭାବୀ ହୋଇପଡେ । ସେ କ୍ଷେତ୍ରରେ କିଡ୍‌ନୀ ପ୍ରତିରୋପଣ କରିବାକୁ ପଡିଥାଏ । ଏଥିପାଇଁ ବାଧ୍ୟ ହୋଇ କୌଣସି ସଂପର୍କୀୟଙ୍କୁ କିଡ୍‌ନୀ ଦାନ କରିବାକୁ ହୁଏ । ଏ କ୍ଷେତ୍ରରେ ଦାତା ଉଚ୍ଚ ରକ୍ତଚାପ ସହ ଅନ୍ୟାନ୍ୟ ରୋଗରେ ଆକ୍ରାନ୍ତ ହେବାର ସମ୍ଭାବନା ରହିଛି । ତେଣୁ ମୃତ ଶରୀରରୁ କିଡନୀ ସଂଗ୍ରହ କରାଯାଇ ପାରିବ । ବର୍ତ୍ତମାନ ୮୦ରୁ ୯୦ ପ୍ରତିଶତ କିଡନୀ ପ୍ରତିରୋପଣର ସଫଳତା ମିଳୁଛି । ଆଜିର ଦିନରେ ଭାରତବର୍ଷରେ ପ୍ରାୟ ୯୦ ହଜାର ରୋଗୀଙ୍କର ଡାୟଲିସିସ୍ ଚାଲିଛି । ସେମାନଙ୍କ ମଧ୍ୟରୁ ୭ ରୁ ୮ ହଜାର ରୋଗୀଙ୍କ ଆତ୍ମୀୟମାନଙ୍କ ଠାରୁ କିଡ୍‌ନୀ ସଂଗ୍ରହ କରି ପ୍ରତିରୋପଣ କରାଯାଇ ପାରୁଛି । କିନ୍ତୁ ଅନ୍ୟ ରୋଗୀଙ୍କର କ'ଣ ହେବ ସେଥିପାଇଁ ଆମେ କ'ଣ ଚନ୍ତା କରିବା ନାହିଁ ! ଦାରିଦ୍ର୍ୟର ସୁଯୋଗ ନେଇ କିଛି କିଡନୀ ମାଫିଆ ଗରିବ ଲୋକଙ୍କ ପାଖରୁ କିଡନୀ ସଂଗ୍ରହ କରି ବହୁ ଅଧିକ ମୂଲ୍ୟରେ ବିକ୍ରି କରନ୍ତି । ବିନା ପଇସାରେ ମୃତ ଶରୀରରୁ ଅଙ୍ଗଦାନ ସୁବିଧା ହେଲେ ଯେଉଁମାନଙ୍କର କିଡ୍‌ନୀ ପ୍ରତିରୋପଣ ଆବଶ୍ୟକ ସେମାନଙ୍କୁ ସହଜରେ କିଡ୍‌ନୀ ଉପଲବ୍ଧ ହୋଇପାରନ୍ତା ।

ଏହାବାଦ୍ ଫୁସ୍‌ଫୁସ୍, ପ୍ୟାନକ୍ରିୟାସ, କାନପର୍ଦ୍ଦା, କାନର ହାଡ, ଅସ୍ଥିମଜ୍ଜା, ତ୍ୱକ୍ ଆଦି ଶରୀରର ସମସ୍ତ ଅଙ୍ଗ ପ୍ରତିରୋପଣ କରାଯିବା ଆଜି ସମ୍ଭବ ହୋଇପାରିଛି । ବ୍ରେନ୍‌ଡେଡ୍ ପରେ ମୃତଶରୀରରୁ କେବଳ ଏହି ଅଙ୍ଗଗୁଡ଼ିକ ହିଁ ସହଜରେ ଉପଲବ୍ଧ ।

କେବଳ ଅଙ୍ଗପ୍ରତ୍ୟଙ୍ଗ ପ୍ରତିରୋପଣ ପାଇଁ ମୃତ୍ୟୁପରେ ଶରୀରଦାନର ଆବଶ୍ୟକତା ରହିଛି ତାହା ନୁହେଁ । ଆନାଟୋମୀ ବା ଶରୀରର ଅଙ୍ଗ ସଂସ୍ଥାନ ବୁଝିବା ପାଇଁ ଚିକିତ୍ସା ବିଦ୍ୟାର ଛାତ୍ର ଛାତ୍ରୀ ମାନଙ୍କୁ ଶବ ବ୍ୟବଚ୍ଛେଦ କରିବାକୁ ପଡିଥାଏ । ଚିକିତ୍ସା ବିଦ୍ୟାର ପ୍ରତ୍ୟେକ ଛାତ୍ର ଛାତ୍ରୀଙ୍କୁ ଅନ୍ତତଃପକ୍ଷେ ଦଶଟି ପ୍ୟାଥଲୋଜିକାଲ ପୋଷ୍ଟମର୍ଟମ କରି କେଉଁ ବ୍ୟକ୍ତିର କେଉଁ କାରଣରୁ ମୃତ୍ୟୁ ହୋଇଛି, ନୂଆ ନୂଆ ରୋଗ, ତା'ର ପ୍ରତିରୋଧ କିପରି କରିହେବ ଇତ୍ୟାଦି ଅନେକ ବିଷୟରେ ବିସ୍ତୃତ ଶିକ୍ଷା ମିଳିଥାଏ । ମୃତ ଶରୀରର ମସ୍ତିଷ୍କକୁ ବ୍ୟବଚ୍ଛେଦ କରି ନିରୋ ଆନାଟୋମୀର ମଧ୍ୟ ଗବେଷଣା କରାଯାଇ ପାରିବ । ମରଶରୀରର ପ୍ରତିଟି ଅଙ୍ଗକୁ ପୃଥକ୍ କଲାପରେ କେବଳ କଙ୍କାଳ ହିଁ ରହିଥାଏ । ଏହା ମଧ୍ୟ ଅସ୍ଥିବିଦ୍ୟା ଶିକ୍ଷା କ୍ଷେତ୍ରରେ ଲାଗିଥାଏ ।

ଅଙ୍ଗପ୍ରତ୍ୟଙ୍ଗ ପ୍ରତିରୋପଣ ପାଇଁ ହେଉ କିମ୍ବା ମେଡିକାଲ ଛାତ୍ରଛାତ୍ରୀଙ୍କ ଶିକ୍ଷା ଓ ଗବେଷଣା ପାଇଁ ହେଉ ମୃତ୍ୟୁପରେ ଶବଟିଏ ମିଳିବା ଅସମ୍ଭବ ମନେହେଉଛି । ମୃତବ୍ୟକ୍ତିର ଶବକୁ ପରିବାରର ଲୋକେ ଧାର୍ମିକ କର୍ତ୍ତବ୍ୟ ଭାବି ପୋଡି ଦେଉଛନ୍ତି ବା ପୋତି ଦେଉଛନ୍ତି । ଯାହାକିଛି ବିନା ଦାବିଦାର ଶବ ମିଳୁଛି ତାକୁ ମଧ୍ୟ ସ୍ୱେଚ୍ଛାସେବୀ ସଂସ୍ଥାମାନେ ସରକାରଙ୍କ ଶବପିଛା ବାରଶହ ଟଙ୍କା ଅନୁଦାନ ହାସଲ କରିବା ପାଇଁ ମେଡିକାଲର କର୍ମଚାରୀଙ୍କୁ ହାତଗୁଞ୍ଜା ଦେଇ ଶବନେଇ ପୋତି ଦେଉଛନ୍ତି ବା ପୋଡି ଦେଉଛନ୍ତି । ଫଳରେ ମେଡିକାଲ ଛାତ୍ରଛାତ୍ରୀଙ୍କୁ କେବଳ ଥିଓରୀ ପଢ଼ି କାମ ଚଳେଇ ନେବାକୁ ହେଉଛି । ଆମ ଦେଶରେ ବର୍ଷକୁ ପ୍ରାୟ ପାଞ୍ଚଲକ୍ଷ ରୋଗୀ ଅଙ୍ଗ ପ୍ରତିରୋପଣ ପ୍ରତୀକ୍ଷାରେ ମୃତ୍ୟୁବରଣ କରୁଥିବାବେଳେ ରାସ୍ତା ଦୁର୍ଘଟଣାରେ ୧୫ ଲକ୍ଷ ମୃତ୍ୟୁବରଣ କରନ୍ତି । ଆଜିବି ମୃତ୍ୟୁପରେ ଶରୀର ଦାନ କରିବା ପାଇଁ ଆମ ଦେଶର ଅଧିକାଂଶ ପ୍ରଦେଶରେ ମାନସିକତା ସୃଷ୍ଟି କରାଯାଇ ପାରିନାହିଁ । ଓଡିଶାରେ ମଧ୍ୟ କୌଣସି ବ୍ୟକ୍ତି ସ୍ୱଇଚ୍ଛାରେ ମୃତ୍ୟୁପରେ ଶରୀର ଦାନ କରିବାକୁ ଇଚ୍ଛା କରୁଥିଲେ ମଧ୍ୟ ଦାନ କରିବାର କୌଣସି ଆଇନଗତ ବ୍ୟବସ୍ଥା ୨୦୧୨ ମସିହା ପର୍ଯ୍ୟନ୍ତ ନଥିଲା । କିନ୍ତୁ ପ୍ରାୟ ଦୁଇଶହ ବିଶିଷ୍ଟ ବ୍ୟକ୍ତି ମୃତ୍ୟୁପରେ ଶରୀର ଦାନ କରିବାକୁ ଆମ ନିକଟରେ ଇଚ୍ଛାପତ୍ର ସ୍ୱାକ୍ଷର କରିଥିଲେ । ଏହି ପରିପ୍ରେକ୍ଷୀରେ "ଓଡିଶା ଆନାଟୋମୀ ଆକ୍ଟ-୧୯୭୫" କୁ ସଂଶୋଧନ କରି ସ୍ୱେଚ୍ଛାକୃତ ଭାବେ ମୃତ୍ୟୁପରେ ଶରୀର ଦାନ କରିବାକୁ ଇଚ୍ଛୁକ ବ୍ୟକ୍ତିଙ୍କୁ ସୁଯୋଗ ଦେବାକୁ ଓଡିଶା ଉଚ୍ଚ ନ୍ୟାୟାଳୟରେ ଏକ ଜନସ୍ୱାର୍ଥ ମାମଲା ଦାୟର ହୋଇଥିଲା ।

ଓଡିଶା ଉଚ୍ଚନ୍ୟାୟାଳୟର ଏକ ଖଣ୍ଡପୀଠ ଏହାର ବିଚାର କରି "ଓଡିଶା ଆନାଟୋମୀ ଆକ୍ଟ-୧୯୭୫" କୁ ସଂଶୋଧନ କରି ସ୍ୱେଚ୍ଛାକୃତ ଭାବେ ମୃତ୍ୟୁପରେ ଶରୀରଦାନ ପାଇଁ ଆଇନ କରିବାକୁ ରାଜ୍ୟ ସରକାରଙ୍କୁ ନିର୍ଦ୍ଦେଶ ଦେଇଥିଲେ । ରାଜ୍ୟ ସରକାର ଉଚ୍ଚନ୍ୟାୟାଳୟର ନିର୍ଦ୍ଦେଶକୁ ସମ୍ମାନ ଜଣାଇ ଓଡିଶା ଆନାଟୋମୀ ଆକ୍ଟ-୧୯୭୫ କୁ ସଂଶୋଧନ କରି ମୃତ୍ୟୁ ପରେ ଶରୀରଦାନ କରିବାକୁ ଇଚ୍ଛା ପ୍ରକାଶ କରୁଥିବା ବ୍ୟକ୍ତି ଏବେ ଏହାର ସୁଯୋଗ ନେଇପାରିବେ । ଏଥିପାଇଁ ଏକ ଇଚ୍ଛାପତ୍ର ସ୍ୱାକ୍ଷର କରିବାକୁ ପଡିବ । ଆଇନ ହେବା ପରେ କଟକ, ବ୍ରହ୍ମପୁର ଏବଂ ସମ୍ବଲପୁର ସରକାରୀ ମେଡିକାଲ କଲେଜକୁ କିଛି ମୃତ ଶରୀର ଦାନ କରାଯାଇଛି । ପାଞ୍ଚଶହରୁ ଉର୍ଦ୍ଧ୍ୱ ବିଶିଷ୍ଟ ବ୍ୟକ୍ତି ମୃତ୍ୟୁପରେ ଶରୀର ଦାନ କରିବାକୁ ଇଚ୍ଛାପତ୍ରରେ ସ୍ୱାକ୍ଷର କରିଛନ୍ତି ।

ଆମ ଦେଶରେ ପ୍ରାୟ ୨୫,୦୦୦ ଅଙ୍ଗ ପ୍ରତିରୋପଣ ପ୍ରତିବର୍ଷ ହେଉଛି । କିନ୍ତୁ ଅଙ୍ଗ ପ୍ରତିରୋପଣ ପାଇଁ ଅଙ୍ଗପ୍ରତ୍ୟଙ୍ଗ ନ ମିଳିବା ଯୋଗୁଁ ହଜାର ହଜାର ଲୋକ ମୃତ୍ୟୁ ମୁଖରେ ପଡୁଛନ୍ତି । ମୃତ୍ୟୁପରେ ଶରୀର ଦାନ ଦ୍ୱାରା ଅନେକ ଅମୂଲ୍ୟ ଜୀବନ ବଞ୍ଚାଯାଇ ପାରନ୍ତା । ତେବେ ଏ ଅମୂଲ୍ୟ ସଂପଦକୁ କ'ଣ ଆମେ ପୋଡି ପାଉଁଶ କରି ଚାଲିଥିବା ! ମାନବ ସମାଜର କଲ୍ୟାଣ ନିମନ୍ତେ ଚିକିତ୍ସା ବିଜ୍ଞାନର ପ୍ରଗତି ପାଇଁ, ଧର୍ମୀୟ କର୍ମକାଣ୍ଡର ଗଣ୍ଡି ଭିତରୁ ମୁକ୍ତ ହୋଇ ସ୍ୱେଚ୍ଛାକୃତ ଭାବେ ମୃତ୍ୟୁପରେ ଶରୀର ଦାନ କରିବାକୁ ଆମେ କ'ଣ ଚିନ୍ତା କରିବା ନାହିଁ !



# ମାନସିକ ପ୍ରକ୍ରିୟା ଓ କର୍ମ

*ଡକ୍ଟର ରାଧାନାଥ ରଥ*

କୋଟି କୋଟି ବର୍ଷ ତଳେ ଏହି ପୃଥିବୀର ଉତ୍ପତ୍ତି ହୋଇଥିଲେହେଁ ତା'ର ବହୁ କୋଟି ବର୍ଷ ପରେ ହିଁ ଏଠାରେ ପ୍ରାଣୀଜଗତ ସମ୍ଭବ ହେଲା । ତା'ର ବହୁ ନିୟୁତ ବର୍ଷ ପରେ ପୃଥିବୀରେ ବାନର ଜାତୀୟ ଉନ୍ନତ ଧରଣର ପଶୁ ଶ୍ରେଣୀ ଦେଖାଦେଲା । ମାତ୍ର ସାମାନ୍ୟ କେତେ ଲକ୍ଷ ବର୍ଷ ପୂର୍ବେ ମନୁଷ୍ୟ ଜାତୀୟ ଜୀବ ଆଗ ଦୁଇହାତ ଉପରକୁ ଟେକି ପଛଗୋଡରେ ଚାଲିବାକୁ ଆରମ୍ଭ କଲା । ମାଟି ପଥର ଗୁହା ଭିତରେ ବସବାସ କରି ଶିଖିଲା । ଫଳମୂଳ ସଂଗ୍ରହ କରି ଜୀବନ ଧାରଣ କଲା । କାଳକ୍ରମେ ସେ ଚାଷବାସ କରି ଶିଖିଲା, ଗାଁ ଗଣ୍ଡା ବସାଇଲା ଏବଂ ତା ସହିତ କ୍ରମବର୍ଦ୍ଧିଷ୍ଣୁ ସାମାଜିକ ପରିବେଶ ସୃଷ୍ଟି ହେଲା । ଏହିପରି ଭାବରେ ପ୍ରାକୃତିକ ପରିବେଶ ସହିତ ପ୍ରତିଯୋଜନ ପ୍ରକ୍ରିୟା ମାଧ୍ୟମରେ ତା'ର ମସ୍ତିଷ୍କର କ୍ରମବିକାଶ ହେଲା । ବର୍ତ୍ତମାନ ତା'ର ବିକଶିତ ବୁଦ୍ଧି ଓ ମାଂସପେଶୀୟ କୁଶଳୀ ବ୍ୟବହାର ଯୋଗୁ ସେ ଅଭୂତପୂର୍ବ ବୈଜ୍ଞାନିକ ଯୁଗରେ ଆସି ପହଞ୍ଚିପାରିଛି; କିନ୍ତୁ ଫଳମୂଳ ସଂଗ୍ରହ ସମୟରୁ ନିଜର ଖାଦ୍ୟଦ୍ରବ୍ୟ ଉତ୍ପାଦନ କରିବା ପର୍ଯ୍ୟନ୍ତ ମନୁଷ୍ୟକୁ ବହୁ ଲକ୍ଷ ବର୍ଷ ଲାଗି ଯାଇଛି । ତା ତୁଳନାରେ କମ୍ ସମୟ ଭିତରେ ସେ କଳ୍ପନାତୀତ ଭାବରେ ବୌଦ୍ଧିକ ଓ ସାମାଜିକ ଉନ୍ନତି ଦୃଷ୍ଟିରୁ ଶ୍ରେଷ୍ଠ ସୋପାନରେ ଆସି ପହଞ୍ଚିଛି ।

ପରିବର୍ତ୍ତନଶୀଳ ପରିବେଶ ସହିତ ପ୍ରତିଯୋଜନ କ୍ରିୟା-ପ୍ରକ୍ରିୟା ମାଧ୍ୟମରେ ତାର ବିବର୍ତ୍ତନଶୀଳ ମସ୍ତିଷ୍କର ସ୍ନାୟୁ ବିନ୍ୟାସ ଜଟିଳରୁ ଜଟିଳତର ହୋଇ ଚାଲିଛି । ବିବର୍ତ୍ତନ

ପ୍ରକ୍ରିୟାର ମୂଳତତ୍ତ୍ୱ ହେଲା ଯେ ଜୀବଜନ୍ତୁର ପରବର୍ତ୍ତୀ ସମୟର ଜଟିଳ କ୍ରିୟା-ପ୍ରତିକ୍ରିୟା ତାର ପୂର୍ବବର୍ତ୍ତୀ ସରଳ ଯାନ୍ତ୍ରିକ ବିନ୍ୟାସରୁ ଉତ୍ତରୋତ୍ତର ଉନ୍ନତି ହୋଇ ଚାଲେ । ସେହି ଅନୁସାରେ ମନୁଷ୍ୟର ବର୍ତ୍ତମାନ ଅବସ୍ଥାର ଜଟିଳ ମାନସିକତା ଅତୀତର ସରଳ ଜୈବିକ ସଂସ୍ଥା ଭିତରୁ କ୍ରମ-ବିବର୍ତ୍ତନ ସୋପାନ ଦେଇ ଗଢ଼ି ଉଠିଛି ।

ଅତି ବୁଦ୍ଧିମାନ ଓ ମନ୍ଦ ବୁଦ୍ଧିସଂପନ୍ନ ଦୁଇ ଜଣଙ୍କୁ ତୁଳନା କଲେ ସେମାନଙ୍କର ମସ୍ତିଷ୍କର ତାନ୍ତବୀୟ ବିନ୍ୟାସରେ ବହୁ ତଫାତ ପରିଲକ୍ଷିତ ହୁଏ । ତାନ୍ତବୀୟ ଜଟିଳତା ଅନୁସାରେ ବୁଦ୍ଧିର ଗୁଣାତ୍ମକ ବିକାଶ ସମ୍ଭବ ହୋଇଥାଏ । ଫଳରେ ସେମାନଙ୍କର ବ୍ୟାବହାରିକ କ୍ଷେତ୍ରରେ ବହୁ ବ୍ୟତିକ୍ରମ ଦେଖାଦିଏ । ସେହିପରି ଜଣେ ପ୍ରଚଣ୍ଡ ବୁଦ୍ଧିମାନ ବ୍ୟକ୍ତିର କେତେକ ବିଶେଷ ଧରଣର ରୋଗ କିମ୍ବା ଆଘାତ ଫଳରେ ତାର ମସ୍ତିଷ୍କର ଯାନ୍ତ୍ରିକ ତଥା ରାସାୟନିକ ବିନ୍ୟାସ ବଦଳିଯାଏ । ତା ଫଳରେ ବୌଦ୍ଧିକ କାର୍ଯ୍ୟକ୍ରମରେ ବ୍ୟାଘାତ ଦେଖାଦେଇଥାଏ । ଏପରିକି ସେ ଛୋଟ ପିଲାଙ୍କ ପରି ବ୍ୟବହାର କରେ । ସେ ଆଗରୁ ଯାହା ଯାହା ଶିଖିଥିଲା, ତାହା ଲୋପ ପାଇଯାଏ । ଉଦାହରଣ ସ୍ୱରୂପ ମସ୍ତିଷ୍କର ଗୋଟିଏ ନିର୍ଦ୍ଦିଷ୍ଟ ଅଂଶ ନଷ୍ଟ ହୋଇଗଲେ ଜଣେ ବ୍ୟକ୍ତି ନିଜ ବାପାକୁ ଦେଖିପାରେ, କିନ୍ତୁ ତାକୁ ନିଜ ବାପ ବୋଲି ଚିହ୍ନିପାରେ ନାହିଁ । ସେହିପରି ଆଉ କୌଣସି ଅଂଶଟିଏ ବିକୃତ ହୋଇଗଲେ ତାର ଅତୀତର ସ୍ମୃତି ନଷ୍ଟ ହୋଇଯାଏ କିମ୍ବା କଥା କହିପାରେ ନାହିଁ । ଅଥଚ ବେଳେ ବେଳେ ବହୁ ବର୍ଷ ତଳେ ଶିଖିଥିବା କେତେକ ଗୀତ ବିନା ବାଧାରେ ଗାଇପାରେ । ଏହିପରି ଭାବରେ ବହୁ ଅଦ୍ଭୁତ ଧରଣ କାର୍ଯ୍ୟକଳାପ ନିର୍ଦ୍ଦିଷ୍ଟ ମସ୍ତିଷ୍କ କିମ୍ବା ଶରୀରର ଅନ୍ୟାନ୍ୟ ଅଂଶର କାର୍ଯ୍ୟଦକ୍ଷତା ଅଭାବରୁ ଦେଖାଦେଇଥାଏ ଏବଂ ମାନସିକ ପ୍ରକ୍ରିୟାଗତ ଜଟିଳତା ସଂପୂର୍ଣ୍ଣରୂପେ ଲୋପ ପାଇଯାଏ । ମନୁଷ୍ୟର ଆଶା, ଆକାଂକ୍ଷା, ଆଦର୍ଶ, ସ୍ୱପ୍ନ, ଆଧ୍ୟାତ୍ମିକତା ପ୍ରଭୃତି ସମସ୍ତ ମାନସିକତା ହେଉଛି ତାର ଦୈହିକ ସ୍ନାୟବିକ ଓ ରାସାୟନିକ ସଂଗଠିର ସମନ୍ୱିତ କ୍ରିୟା-ପ୍ରକ୍ରିୟା ବୋଲି ନିର୍ଧାର୍ଯ୍ୟ ଭାବରେ ପ୍ରମାଣିତ ହୋଇସାରିଛି । ଟେଲିଭିଜନ ବା ରେଡିଓ ବା କମ୍ପ୍ୟୁଟରର ଯାନ୍ତ୍ରିକ ସଂଘାତ ବ୍ୟାହତ ହେଲେ ତାଠାରେ ଯେପରି କୌଣସି ପ୍ରକ୍ରିୟା ସମ୍ଭବ ନୁହେଁ, ସେହିପରି ସବୁପ୍ରାଣୀ ଜଗତର ବିଭିନ୍ନ ଧରଣର କ୍ରିୟା-ପ୍ରକ୍ରିୟା ତାର ସମ ସଂଗଠିଗତ ଯାନ୍ତ୍ରିକ ସନ୍ତୁଳନ ଉପରେ ହିଁ ସଂପୂର୍ଣ୍ଣ ନିର୍ଭର କରିଥାଏ । ଏପରି ପରିସ୍ଥିତିରେ ମନୁଷ୍ୟ ମୃତ୍ୟୁ ପରେ ତାର ମସ୍ତିଷ୍କ ଓ ଶାରୀରିକ ଅଙ୍ଗପ୍ରତ୍ୟଙ୍ଗ ସମ୍ପୂର୍ଣ୍ଣ ନଷ୍ଟ ହୋଇଗଲା ପରେ ତାର ଅଶରୀରୀ ଆତ୍ମା ବିଭିନ୍ନ ରୂପରେ ଦେଖାଦେବା ବିଶ୍ୱାସ ସଂପୂର୍ଣ୍ଣରୂପେ ଭ୍ରାନ୍ତିମୂଳକ ବୋଲି ନିଃସନ୍ଦେହରେ କୁହାଯାଇ ପାରିବ ।

ମାନସିକତା ନାନାଭାବରେ ପାରିବାରିକ ଓ ସାମାଜିକ ପରିବେଶ ଉପରେ ନିର୍ଭର କରେ । ଦୁଇଜଣଙ୍କର ବୁଦ୍ଧି ସମାନ ହେଲେ ମଧ୍ୟ ସେମାନଙ୍କର ସାମଗ୍ରିକ କାର୍ଯ୍ୟକଳାପରେ

ବହୁତ ତଫାତ୍ ଦେଖାଦେଇଥାଏ । ସମାନ ବୁଦ୍ଧି ଥିବା ଦୁଇଜଣଙ୍କ ଭିତରୁ ଜଣେ ପ୍ରତିଭାସଂପନ୍ନ ବୈଜ୍ଞାନିକ ହୋଇପାରେ; ଆଉ ଜଣେ ଅତି ଦୁର୍ଦ୍ଧର୍ଷ ଡକାଏତ ହୋଇପାରେ । କେତେଗୁଡ଼ିଏ ପାରିବାରିକ ଓ ସାମାଜୀକରଣ ପକ୍ରିୟା ଏ ପ୍ରକାର ପାର୍ଥକ୍ୟ ଲାଗି ଦାୟୀ ହୋଇଥାଏ । ସୁଖ ଦୁଃଖ, ଚରିତ୍ରବତ୍ତା ପ୍ରଭୃତି ସମସ୍ତ ପ୍ରକାରର ବ୍ୟକ୍ତିଗତ ଗୁଣ ବିକାଶ ପ୍ରକ୍ରିୟାରେ କାର୍ଯ୍ୟକାରଣ ସଂପର୍କ ଏହିପରି ଭାବରେ ବିଶ୍ଳେଷଣ କରାଯାଇ ପାରେ । ଏଥିପାଇଁ ପୂର୍ବଜନ୍ମର ପାପପୁଣ୍ୟକୁ ଦାୟୀ କରାଯିବା ସଂପୂର୍ଣ୍ଣ ଅବୈଜ୍ଞାନିକ । ଯାହା ପ୍ରମାଣିତ କରିହେବ ନାହିଁ ଏବଂ ଯାହା ପ୍ରତିପାଦନୀୟ ମଧ୍ୟ ନୁହେଁ, ସେ କଥା ନେଇ ଯେତେ ବାଦାନୁବାଦ ହେଲେ ମଧ୍ୟ ତାହା ଯୁଗ ଯୁଗ ଧରି ଅମୀମାଂସିତ ହୋଇ ରହିଯାଏ । ପୂର୍ବଜନ୍ମ ନେଇ ଯେତେପ୍ରକାର ତଥ୍ୟ ପୃଥିବୀସାରା ଉପସ୍ଥାପିତ ହୋଇଛି, ତାର ଯଥାଯଥ ବୈଜ୍ଞାନିକ ବିଶ୍ଳେଷଣ ପରେ ସେସବୁ ଅବାସ୍ତବ ବୋଲି ପ୍ରମାଣିତ ହୋଇଛି । ମନୁଷ୍ୟର ଶରୀର ବିନା ଆତ୍ମା ବା ମନର କୌଣସି ବାସ୍ତବତା ଅସମ୍ଭବ ।

ମନୁଷ୍ୟ ପିଲାଟି ମା' ପେଟରେ ରହିବା ଦିନଠାରୁ ଏହିପରି କ୍ରମବର୍ଦ୍ଧିଷ୍ଣୁ ବିକାଶଧାରା ଦେଇ ଗତି କରିଥାଏ । ତା'ର ମସ୍ତିଷ୍କ ଅତି ସରଳ ଅବସ୍ଥାରୁ ଜଟିଳ ହୋଇ ବଢ଼ିଚାଲେ । ତେଣୁ ବିଭିନ୍ନ ସମୟରେ ତାର ମାନସିକତା ଅଲଗା ଅଲଗା ଭାବରେ ବଢ଼େ । ଯେଉଁ ବୌଦ୍ଧିକ କ୍ରିୟାକଳାପ ଅଳ୍ପ ବୟସରେ ସମ୍ଭବ ନୁହେଁ, ତାହା ବୟସ ବୃଦ୍ଧି ସହିତ ବିକଶିତ ହୁଏ । ବାହ୍ୟ ଜଗତର ଉଦ୍ଦୀପନା ତଥା ପ୍ରଭାବ ଅନୁସାରେ ତାର ମାନସିକତାର ଗୁଣାତ୍ମକ ପରିବର୍ତ୍ତନ ଘଟିଥାଏ । ଅନେକ ସମୟରେ ବୟସ ଅଧିକ ହେଲେ କେତେକଙ୍କଠାରେ ତାନ୍ତବୀୟ ଅବକ୍ଷୟ ସହିତ ମାନସିକ କାର୍ଯ୍ୟକ୍ଷମତା ମଧ୍ୟ କମିଯାଏ ।

ସଦ୍ୟଜାତ ଶିଶୁର କେତୋଟି ଶିରାପ୍ରଶିରାଗତ ସ୍ୱାଭାବିକ ଯାନ୍ତ୍ରିକ ପ୍ରତିକ୍ରିୟା ଯଥା ଚୁଚୁମି ଖାଇବା, ଢ଼ୋକିବା, ଜୀର୍ଣ୍ଣ କରିବା, କାନ୍ଦିବା ପ୍ରଭୃତି ସରଳ ଜୈବିକ କ୍ରିୟାକୁ ଛାଡ଼ିଦେଲେ ତାଠାରେ ଅନ୍ୟ କୌଣସି ପ୍ରକାରର ମାନସିକ ଜଟିଳତା ଦେଖାଦେଇ ନଥାଏ । କ୍ରମେ ତାଠାରେ ଜଟିଳ ସ୍ନାୟବିକ ପ୍ରକ୍ରିୟା ସମ୍ଭବ ହୁଏ । ସେ ଅନ୍ୟମାନଙ୍କଠାରୁ ଶିଖେ-ନିଜକୁ ଅନ୍ୟମାନଙ୍କଠାରୁ ଅଲଗାକରି ଦେଖେ, ତାଠାରେ ଅହଂଭାବ ଦେଖାଦିଏ । ସେ ସାରା ଜୀବନ ଜଟିଳରୁ ଜଟିଳତର ଅହଂକୈନ୍ଦ୍ରିକ କାର୍ଯ୍ୟ ମାଧ୍ୟମରେ ନିଜକୁ ସମାଜ ସହିତ ପ୍ରତିଯୋଜିତ କରିବାକୁ ଶିଖେ । ପାରିବାରିକ ଓ ଅନ୍ୟାନ୍ୟ ସାମାଜିକ ପରିସର ଭିତରଦେଇ ସବୁକଥା ଶିଖି ଶିଖି ଚାଲେ, ବିଭିନ୍ନ ସାମାଜିକୀକରଣ ପ୍ରକ୍ରିୟା ଯୋଗୁଁ ତାଠାରେ ନାନା ପ୍ରକାରର ଅଭିବ୍ୟକ୍ତି ତଥା ଚରିତ୍ରଗତ ବ୍ୟବହାର ଦେଖାଯାଇଥାଏ ।

ଜଣେ ବିଖ୍ୟାତ ମନୋବିଜ୍ଞାନୀ କହିଥିଲେ ଯେ ତାଙ୍କୁ କେତୋଟି ସଦ୍ୟଜାତ ଶିଶୁଙ୍କର ସଂପୂର୍ଣ୍ଣ ଦାୟିତ୍ୱ ଦେଇଦେଲେ ସେ ସେମାନଙ୍କୁ ଛଅଗୋଟି ବିଭିନ୍ନ ବ୍ୟକ୍ତିତ୍ୱରେ ପରିଣତ

କରିଦେଇପାରିବେ । ଜଣେ ମହାନ୍ ଦେଶପ୍ରେମୀ ହେବ ଓ ଆଉ ଜଣେ ଡକାଏତ ହେବ ଇତ୍ୟାଦି । ଏହା ସମ୍ପୂର୍ଣ୍ଣରୂପେ ଗ୍ରହଣୀୟ ନହେଲେ ମଧ୍ୟ ଏଥିରେ ବହୁ ପରିମାଣରେ ସତ୍ୟତା ରହିଛି । ସମସ୍ତ ପ୍ରକାର ଚାରିତ୍ରିକ ପରିବର୍ତ୍ତନ ଓ ପିଲାଙ୍କର ଉପଯୁକ୍ତ ଲାଳନପାଳନ ତଥା ଶିକ୍ଷଣ ପଦ୍ଧତି ଏହି ତଥ୍ୟ ଉପରେ ପର୍ଯ୍ୟବସିତ । ଅର୍ଥାତ୍ ବିଭିନ୍ନ ବୟସର ଓ ବିଭିନ୍ନ ସମାଜର ମନୁଷ୍ୟ ସେମାନଙ୍କର ଶାରୀରିକ ସଂଗଠନ ତଥା ସାମାଜିକ ଚଳଣୀ ମାଧ୍ୟମରେ ଗଢ଼ିଉଠେ । ତେଣୁ ଏ ପ୍ରକାର କ୍ରିୟା ପ୍ରକ୍ରିୟାଗତ ଫଳାଫଳର ଅସ୍ତିତ୍ୱ ତାର ମୃତ୍ୟୁ ପରେ କୌଣସିମତେ ସମ୍ଭବ ନୁହେଁ । ଯେପରି ଟେଲିଭିଜନ କିମ୍ବା କମ୍ପ୍ୟୁଟରର ଅବିନାଶୀ ଆତ୍ମା ନାହିଁ, ସେହିପରି ମନୁଷ୍ୟଠାରେ ମଧ୍ୟ ଗୋଟିଏ ଅବିନାଶୀ ଆତ୍ମାର କଳ୍ପନା କରିବା ନିଶ୍ଚିତ ଭାବରେ ନିରର୍ଥକ । ଏହାର ମଧ୍ୟ କୌଣସି ସଠିକ୍ ପ୍ରମାଣ ନାହିଁ । ଏହି ବିଶ୍ୱାସ କେବଳ ନିଜର ଇଚ୍ଛାପ୍ରଣୋଦିତ କାଳ୍ପନିକ ବିଶ୍ୱାସ । ଏହା ଗୋଟିଏ ଅପ୍ରମାଣିତ ଓ ଅପ୍ରତିପାଦନୀୟ ଭ୍ରାନ୍ତ ଧାରଣା ବୋଲି ଧରାଯାଇପାରେ ।

ତଥାପି ଏ ବିଷୟରେ ଏ ପ୍ରକାର ବଦ୍ଧମୂଳ ଧାରଣା କାହିଁକି ରହିଆସିଛି ? ସବୁ ଧର୍ମରେ ଅବିନାଶୀ ଆତ୍ମା କଥା ରହିଛି । ତାର ମୁଖ୍ୟ କାରଣ ହେଲା ଆମର ପ୍ରଚଣ୍ଡ ଅହମିକା । ଅହଂଭାବ ମନୁଷ୍ୟଠାରେ ଶୈଶବ କାଳରୁ ଏପରି ପ୍ରଚଣ୍ଡଭାବରେ ବଢ଼ି ବଢ଼ି ଚାଲେ ଯେ ତାର ମୃତ୍ୟୁ ପରେ ମଧ୍ୟ ଏହା ଆତ୍ମା ରୂପରେ ସ୍ୱର୍ଗ ନରକରେ ବିଚରଣ କରିବାର କଳ୍ପନା କରାଯାଏ । ଅହଂଭାବ ଅବଶ୍ୟ ମନୁଷ୍ୟଠାରେ ବହୁତ ଦରକାରୀ । ଅହଂ ଯୋଗୁ ସେ ନିଜକୁ ଜଗତରେ ପ୍ରତିଷ୍ଠିତ କରିପାରେ । ଅସାଧ୍ୟ ସାଧନ କରିବାରେ ସମର୍ଥ ହୁଏ- ଉପଭୋଗର ଚରମ ସାର୍ଥକତା ଲଭ କରେ । ତେଣୁ ହଠାତ୍ ଏତେ ବଡ଼ ମାନସିକ ଶକ୍ତି ଯାହା ତାକୁ ଏତେ ସାଫଲ୍ୟ ତଥା ସମ୍ମାନ ଯୋଗାଇ ପାରିଛି – ତାହା ମୃତ୍ୟୁ ପରେ ସମ୍ପୂର୍ଣ୍ଣରୂପେ ଲୋପ ପାଇଯିବ ମଶା, ମାଛି ପରି ସେ ସଂପୂର୍ଣ୍ଣ ରୂପେ ବିଲୀନ ହୋଇଯିବ-ଏହା ତାର ଅହଂ ପକ୍ଷରେ ଅତ୍ୟନ୍ତ ଦୁଃଖଦାୟକ ହୋଇପଡେ । ତେଣୁ ଅହଂ ନିଜକୁ ଅମର ରଖିବା ପାଇଁ କଳ୍ପିତ ସ୍ୱର୍ଗ ତିଆରି କରେ-ସେଠାରେ ଆହୁରି ବେଶି ଉପଭୋଗର ସ୍ୱପ୍ନ ଦେଖେ- ଏହି ସ୍ୱପ୍ନର ରଙ୍ଗ ଅନୁସାରେ ଧର୍ମର ସ୍ୱର୍ଗ ରଞ୍ଜିତ ହୁଏ । ସବୁ ଲୋକଙ୍କର ସ୍ୱପ୍ନ ସମାନ ନ ଥିବାରୁ ବିଭିନ୍ନ ଧର୍ମ ବିଭିନ୍ନ ପ୍ରକାରର ସ୍ୱର୍ଗ କଳ୍ପନା କରିଥାଆନ୍ତି । ଦୁଷ୍ଟ ଲୋକ ନରକ ଯନ୍ତ୍ରଣା ନ ପାଇଲେ ସୁଖଭୋଗ କରୁଥିବା ଲୋକର ଈର୍ଷା ହୁଏ । ତେଣୁ ସ୍ୱର୍ଗ କେବଳ ତାପରି ଲୋକଙ୍କ ପାଇଁ କଳ୍ପିତ ହୁଏ । ଅବଶ୍ୟ ସହଜରେ ଲୋକେ ନରକ ଯନ୍ତ୍ରଣା କଥା ଗ୍ରହଣ କରିପାରନ୍ତି ନାହିଁ । କାରଣ ଏହା ତାଙ୍କ ଅହଂ ପକ୍ଷରେ ନିହାତି ଅପ୍ରୀତିକର ସ୍ୱପ୍ନ । ତେଣୁ ଅନ୍ତତଃ ମଲାବେଳକୁ ବା ରୋଗଶଯ୍ୟାରେ ପଡି ରହିଥିଲାବେଳେ ଭଗବାନ ନାମ ନେଇ ସେ ସ୍ୱର୍ଗରେ ପହଞ୍ଚିବାର ସ୍ୱପ୍ନ ଦେଖେ । ଧର୍ମପରାୟଣ ଲୋକଙ୍କୁ ଏପ୍ରକାର ବିଶ୍ୱାସ ବହୁତ ଆଶାନ୍ୱିତ କରିରଖିଥାଏ । ଏହାକୁ

ଗୋଟିଏ ବହୁଜନ ସମର୍ଥିତ ଅମୂଳକ ମାୟା ହିସାବରେ ଗ୍ରହଣ କରାଯାଇପାରେ । ଏ ପୃଥିବୀରେ ମନୁଷ୍ୟର ବିକାଶ ହେବା ପୂର୍ବରୁ ଏହି ସ୍ୱର୍ଗ ଓ ଅବିନାଶୀ ଆତ୍ମାମାନେ ଥିଲେ କେଉଁଠି ? ପୃଥିବୀର ଧ୍ୱଂସ ପରେ ଏମାନଙ୍କର ଅବସ୍ଥା କ'ଣ ହେବ ? ଏ ପ୍ରକାର ଅହେତୁକ ବିଶ୍ୱାସକୁ ବଞ୍ଚାଇ ରଖିବା ପାଇଁ ବହୁ ତାତ୍ତ୍ୱିକ ଯୁକ୍ତି ମଧ୍ୟ ରହିଛି । ଅବଶ୍ୟ ବିଭିନ୍ନ ଧର୍ମ ବିଶ୍ୱାସୀଙ୍କ ଯୁକ୍ତି ଅଲଗା ଅଲଗା । ସେଥିପାଇଁ ବହୁ କଳ୍ପନା ଜଳ୍ପନା ତଥା ଦାର୍ଶନିକ ତତ୍ତ୍ୱ ଉପସ୍ଥାପିତ କରାହୋଇଛି । ଏସବୁ ବହୁ ଅର୍ଥହୀନ ଶବ୍ଦାଡମ୍ବରର ନିରର୍ଥକ ବୌଦ୍ଧିକ ବ୍ୟାୟାମ ମାତ୍ର । କିନ୍ତୁ ସତ୍ୟସନ୍ଧିତ୍ସୁ ମନୁଷ୍ୟକୁ ଏସବୁ ଅବାସ୍ତବ ଏବଂ ପରସ୍ପର ବିରୋଧୀ ଯୁକ୍ତି ସନ୍ତୁଷ୍ଟ କରି ପାରୁନାହିଁ ।

ମାନସିକତା ଶାରୀରିକ ଓ ପରିବେଶ ପ୍ରକ୍ରିୟାଗତ ଫଳ ହେଲେ ମଧ୍ୟ ଏହା ଶାରୀରିକ ବିନ୍ୟାସଠାରୁ ଅଧିକ ଶକ୍ତିଶାଳୀ ହୋଇଉଠେ । ଉଦାହାରଣ ସ୍ୱରୂପ, ବହୁ ପ୍ରକାରର ଯାନ୍ତ୍ରିକ ସଂଘାତର ପ୍ରକ୍ରିୟାଗତ ଫଳ ହେଲା ବିଦ୍ୟୁତ୍ ଶକ୍ତି । କିନ୍ତୁ ବିଦ୍ୟୁତ୍ ଶକ୍ତି ଉତ୍ପନ୍ନ ହେଲା ପରେ ତାର ଜନ୍ମଦାତା ଯାନ୍ତ୍ରିକ ସଂସ୍ଥାଠାରୁ ଅଧିକ ଶକ୍ତିଶାଳୀ ହୋଇଯାଏ । ଏପରିକି ଏହି ବିଦ୍ୟୁତ୍ ଶକ୍ତି ସାହାଯ୍ୟରେ ଯାନ୍ତ୍ରିକ ବିନ୍ୟାସକୁ ଧ୍ୱଂସ କରି ଦିଆଯାଇପାରେ । ଫଳରେ ବିଦ୍ୟୁତ୍ ଶକ୍ତି ମଧ୍ୟ ବିଲୀନ ହୁଏ । ସେହିପରି ମାନସିକତା ବହୁ ଶକ୍ତିଶାଳୀ- ଏହା ଶାରୀରିକ ସଂଘାତକୁ ନାନାଭାବରେ ପ୍ରଭାବିତ କରିପାରେ । ତେଣୁ ମାନସିକତା ବସ୍ତୁତାନ୍ତ୍ରିକ ସଂସ୍ଥାର ପ୍ରକ୍ରିୟାଗତ ଗୁଣ ହେଲା ପରେ ତାର ସୃଷ୍ଟିକାରୀ ପଟ୍ଟଭୂମିର ଧର୍ମଠାରୁ ଅଲଗା ହୋଇପଡେ । ଯେପରି ବିଭିନ୍ନ ପରିସ୍ଥିତିରେ ତରଳ ପାଣି ବରଫ କିମ୍ବା ବାମ୍ପ ହୋଇଯାଏ-ତାର ଗୁଣାତ୍ମକ ପରିବର୍ତ୍ତନ ହୋଇଯାଏ- ବରଫ ଓ ବାମ୍ପର ଗୁଣଠାରୁ ପାଣିର ଧର୍ମ ଅଲଗା । ସେହିପରି ମାନସିକତାର ଚରିତ୍ରଗତ ବୈଶିଷ୍ଟ୍ୟ ବସ୍ତୁତାନ୍ତ୍ରିକ ପଟ୍ଟଭୂମିଠାରୁ ଅଲଗା ହେବା ଅବଶ୍ୟମ୍ଭାବୀ, କିନ୍ତୁ ତାର ସ୍ୱତନ୍ତ୍ର ସ୍ଥିତି ଧାରଣା କେବଳ ଭ୍ରାନ୍ତିମୂଳକ ବିଶ୍ୱାସ ।

ମାନସିକତାର ଚାରିତ୍ରିକ ବ୍ୟବହାର ଅନୁସାରେ ଦେହରେ ବହୁ ପ୍ରକାରର ରୋଗ ହୁଏ ଏବଂ ପ୍ରବଳ ଇଚ୍ଛାଶକ୍ତିର ପ୍ରୟୋଗରେ ବହୁ ରୋଗର ଉପଶମ ମଧ୍ୟ ହୁଏ । ଏହି ଶକ୍ତିଶାଳୀ ମାନସିକତା ବହୁ ପ୍ରକାରର ଶାରୀରିକ ପରିବର୍ତ୍ତନ କରାଇପାରେ-ଏପରିକି ଅକାଳ ମୃତ୍ୟୁ ମଧ୍ୟ ଘଟାଇପାରେ । ତେଣୁ ପ୍ରକ୍ରିୟାଗତ ଶକ୍ତି ମୌଳିକ ଯାନ୍ତ୍ରିକ ସଂସ୍ଥାଠାରୁ ବହୁଭାବରେ ବଳୀୟାନ ହୋଇଥାଏ । ଏହା ଏପରି ପ୍ରଚଣ୍ଡ ଯେ ଏହା ପୃଥିବୀକୁ ମଧ୍ୟ ଧ୍ୱଂସ କରିଦେଇପାରେ- ତା ସହିତ ଅବଶ୍ୟ ତାର ଶରୀର ମଧ୍ୟ ସମ୍ପୂର୍ଣ୍ଣ ବିଲୋପ ହୋଇଯିବ । ତେଣୁ ତାରି ଭିତରୁ ମୁକ୍ତିଲାଭ କରି ସ୍ୱର୍ଗ କିମ୍ବା ବ୍ରହ୍ମପ୍ରାପ୍ତି-ସ୍ୱପ୍ନ ଅତ୍ୟନ୍ତ ଅବାସ୍ତବ । ତଥାପି ଏ ପ୍ରକାର ଛାୟା ଜଗତର ପ୍ରଚଣ୍ଡ ମାୟା ବହୁ ମନୁଷ୍ୟଙ୍କୁ ବିଶେଷତଃ ଧର୍ମପରାୟଣ ଲୋକଙ୍କୁ ଆଚ୍ଛନ୍ନ କରି ରଖିଥାଏ ।

ନାନା ପ୍ରକାରର ଶାରୀରିକ ପ୍ରତିଯୋଜନ ପ୍ରକ୍ରିୟା ତଥା ସବୁ ସୁନ୍ଦର, ସବୁ ମଙ୍ଗଳମୟ, ପୃଥିବୀର ସମସ୍ତଙ୍କ ଶାନ୍ତି କାମନା ପ୍ରଭୃତି ସକାରାତ୍ମକ ବିଶ୍ୱାସ ମାଧ୍ୟମରେ ମନକୁ ଆହୁରି ଶକ୍ତିଶାଳୀ କରାଯାଇ ପାରୁଛି । ସୁଷମ ଖାଦ୍ୟ ଓ ସନ୍ତୁଳିତ ଆଚାର ବ୍ୟବହାର ଦ୍ୱାରା ଶରୀରର ବିଭିନ୍ନ କାର୍ଯ୍ୟକଳାପକୁ ସୁନିୟନ୍ତ୍ରିତ କରିବା ଫଳରେ ଦେହକୁ ରୋଗମୁକ୍ତ ଓ ଦୀର୍ଘାୟୁ କରାଯାଇପାରୁଛି । ଏହି ପ୍ରଚଣ୍ଡ କାର୍ଯ୍ୟକାରୀ ଶକ୍ତି ସେହି ଶାରୀରିକ ସନ୍ତୁଳନ ଉପରେ ହିଁ ନିର୍ଭର କରୁଛି । ଏହା କାର୍ଯ୍ୟକାରଣ ସମ୍ପର୍କ ଆଧାରିତ ସତ୍ୟ ଉପରେ ପ୍ରତିଷ୍ଠିତ । ଏହାର ଅନ୍ୟଥା ବିଶ୍ୱଜଗତର ପ୍ରଚଳିତ ସର୍ବବ୍ୟାପୀ ଏହି ନିୟମର ବହିର୍ଭୂତ ବୋଲି ଧରାଯାଏ । ତାଛଡା ବିଶ୍ୱାସ ଗୋଟିଏ ମନସ୍ତାତ୍ତ୍ୱିକ ପ୍ରକ୍ରିୟା-ଏହା ଅହଂଭାବର ଆକାଂକ୍ଷିତ ଇଚ୍ଛା ପରିପୂରକ କାଳ୍ପନିକ ସ୍ୱପ୍ନ । ସ୍ୱପ୍ନର ବାସ୍ତବତା କଳ୍ପନା କେବଳ ଭ୍ରାନ୍ତିମୂଳକ ଆଶା ନିରାଶାର ଉତ୍‌କ୍ଷେପିତ ଛାଇ ଉପରେ ହିଁ ନିର୍ଭର କରେ ।

ଅନେକ ସମୟରେ ଗୋଟିଏ ଘଟଣାର ପୂର୍ବାପର କ୍ରିୟା ପ୍ରକ୍ରିୟା ସହିତ କାର୍ଯ୍ୟକାରଣ ସମ୍ପର୍କ ପ୍ରତିଷ୍ଠା କରିନପାରିଲେ ଆଉ ଗୋଟିଏ ଅଦୃଶ୍ୟ ଶକ୍ତିର କଳ୍ପନା କରାଯାଏ । ଏହା ଆମର ସହଜାତ ବିଚାର ପ୍ରବୃତ୍ତି । ଉଦାହରଣସ୍ୱରୂପ, ଦୁଇ ଭାଇ ଏକା ପରିବାରରେ ଲାଳିତପାଳିତ ହୋଇ ମଧ୍ୟ ସେମାନେ କ୍ରମେ ପରସ୍ପରଠାରୁ ସମ୍ପୂର୍ଣ୍ଣ ଅଲଗା ଚରିତ୍ରର ହୁଅନ୍ତି । କିମ୍ବା ଜଣେ ସୁସ୍ଥ ସବଳ ହେଲେ ଆଉ ଜଣେ ଚିର ରୁଗ୍‌ଣ ହୋଇ ରହେ । ଜଣକର ଜୀବନ ସୁଖ ଓ ପ୍ରାଚୁର୍ଯ୍ୟରେ ଭରା ତ ଆଉ ଜଣକର ଦୁଃଖର ସୀମା ନଥାଏ । ଏପରି ପରିସ୍ଥିତିରେ ଅନେକ ଏହା ପୂର୍ବ ଜନ୍ମର ପାପ ପୁଣ୍ୟର ଫଳଭୋଗ ବୋଲି ବୁଝିବାକୁ ଉଦ୍ୟମ କରନ୍ତି । କାରଣ ସେମାନେ ପ୍ରକୃତ କାରଣ ଖୋଜି ବାହାର କରିପାରନ୍ତି ନାହିଁ । ଯେପରି ଜଣକର ହଠାତ୍ ହଇଜା ବସନ୍ତ ହେଲେ ଲୋକେ ତାର ସଠିକ କାରଣ ନଜାଣିଲାଯାଏଁ ଅଶରୀରୀ ଦେବଦେବୀଙ୍କୁ ଏହାର କର୍ତ୍ତା ବା କର୍ତ୍ତ୍ରୀ ବୋଲି ଧରନିଅନ୍ତି, ସେହିପରି ଯେତେବେଳେ ଗୋଟିଏ ଘଟଣାର କାରଣ ଜାଣିହୁଏ ନାହିଁ, ମନୁଷ୍ୟ ତାର ଯୌକ୍ତିକ ବୋଧଶକ୍ତିକୁ ସନ୍ତୁଷ୍ଟ କରିବା ପାଇଁ ଯେକୌଣସି ଗୋଟିଏ ଅବାସ୍ତବ ଓ କାଳ୍ପନିକ କାରଣକୁ ଆଦରି ନିଏ, କିନ୍ତୁ ଯାହା ଏ ବିଶ୍ୱରେ ଘଟୁଛି ତାର ନିର୍ଦ୍ଦିଷ୍ଟ ପୂର୍ବାପର କାର୍ଯ୍ୟକାରଣ ରହିଛି । ଆମର ବୌଦ୍ଧିକ ଅସାମର୍ଥ୍ୟ ଯୋଗୁ ଆମେ ହଠାତ୍ ତାହା ଖୋଜି ବାହାର କରିପାରୁ ନଥିବା ଯୋଗୁ ଏହି ବହୁ କାଳ୍ପନିକ କାର୍ଯ୍ୟ କାରଣର ଦୁହାଇ ଦେଇ ଆମର ଅନୁସନ୍ଧିତ୍ସୁ ବିଚାର ପ୍ରବୃତ୍ତିକୁ ସାନ୍ତ୍ୱନା ଦେଇଥାଉ । ଏପରି ଘଟଣାଗୁଡିକର ବାସ୍ତବ କାର୍ଯ୍ୟକାରଣ ସମ୍ପର୍କ ନିର୍ଦ୍ଦିଷ୍ଟ ଭାବରେ ପ୍ରତିଷ୍ଠା ହେଲା ପରେ ଆମର ପୂର୍ବଧାରଣା ବଦଳିଯାଏ ଏବଂ ଯେଉଁମାନଙ୍କଠାରେ ଏହା ତଥାପି ବଳବତ୍ତର ଥାଏ, ତାକୁ ଅର୍ଥାତ୍ ଅନ୍ଧବିଶ୍ୱାସକୁ ସେମାନେ ସହଜରେ ଛାଡିପାରନ୍ତି ନାହିଁ । କ୍ରମେ ବିଜ୍ଞାନ ଯୁଗର ଅଗ୍ରଗତି ସହିତ ମନୁଷ୍ୟର ଜନଜନ୍ମାନ୍ତର ଫଳାଫଳ, ଭୂତ, ପ୍ରେତ, ଠାକୁର ଠାକୁରାଣୀ

ପ୍ରଭୃତି ଅବାସ୍ତବ ଓ କାଳ୍ପନିକ ଅନ୍ଧବିଶ୍ୱାସ କ୍ରମେ ଦୂରୀଭୂତ ହେବାରେ ଲାଗିଛି । ପୂର୍ବଜନ୍ମର କୌଣସି ବାସ୍ତବତା ନ ଥିଲାବେଳେ ପୂର୍ବଜନ୍ମର ପାପପୁଣ୍ୟ, ଫଳଭୋଗ ନିଶ୍ଚିତଭାବରେ ଗୋଟିଏ ଭ୍ରମାତ୍ମକ ବିଶ୍ୱାସରେ ପରିଣତ ହୋଇଯାଇଛି ।

ବର୍ତ୍ତମାନ ବିଜ୍ଞାନସମ୍ମତ ଉନ୍ନତ ଦୃଷ୍ଟିକୋଣ ଯୋଗୁ ମନୁଷ୍ୟ ମହାମାନବୀୟ ଭ୍ରାତୃଭାବରେ ଉଦ୍‌ବୁଦ୍ଧ ହୋଇ ଗୋଟିଏ ନୂତନ ବାସ୍ତବ ଜଗତ ଗଢ଼ିବାରେ ଲାଗିଛି ଯାହା କି ସବୁ ଧର୍ମର ମୌଳିକ ସ୍ୱପ୍ନ ଥିଲା । କିନ୍ତୁ ପ୍ରତ୍ୟେକ ଧର୍ମରେ ବହୁ କୁସଂସ୍କାର, ଅନ୍ଧବିଶ୍ୱାସ ତଥା ଅସହନଶୀଳଗତ ଘୃଣା ଭାବ ଯୋଗୁ ତାହା ବାସ୍ତବରେ ପରିଣତ ହୋଇପାରୁନଥିଲା । କିନ୍ତୁ ବର୍ତ୍ତମାନ ସାର୍ବଜନୀନ ମାନବୀୟ ଦୃଷ୍ଟିକୋଣର ସୂତ୍ରପାତ ହୋଇଛି । ମନୁଷ୍ୟ ହିଁ ଦେବତା- ଆମର ସମସ୍ତ ଉଦ୍ୟମ ଏହି ମନୁଷ୍ୟର ମଙ୍ଗଳ ଲାଗି ଉତ୍ସର୍ଗ କରିବାର ଅଭିଳାଷ ଦେଖାଦେଇଛି । ସ୍ୱର୍ଗର କଳ୍ପନା ମନୁଷ୍ୟ ଜୀବନକାଳରେ ଏହି ପୃଥିବୀରେ ରୂପାୟିତ କରିବାର ପ୍ରାରମ୍ଭିକ ସୂଚନା ଦେଖାଦେଇଛି ।

ଏହି ପୃଷ୍ଠଭୂମିରେ ଗୋଟିଏ କଥା ବିଚାର୍ଯ୍ୟ । ଆପଣା କଲା କର୍ମମାନ, ଆଗୁ ହୋଇବ ସାବଧାନ ସାଂପ୍ରତିକ ବିଚାରବୋଧରେ ଏହି କଥାଟି ବିଚାର୍ଯ୍ୟ । ଏହା ଗୋଟିଏ ମନସ୍ତାତ୍ତ୍ୱିକ ତତ୍ତ୍ୱ । ଏହାର ତାତ୍ପର୍ଯ୍ୟ ହେଉଛି ପ୍ରତ୍ୟେକ କାର୍ଯ୍ୟର ଫଳାଫଳ ରହିଛି । ଯେ କୌଣସି କାମ ଜଣେ କରେ ତାହା ଭିତରେ କାର୍ଯ୍ୟ କାରଣ ସଂପର୍କ ରହିବା ହେଉଛି ଗୋଟିଏ ଅନିବାର୍ଯ୍ୟ ସତ୍ୟ । ତେଣୁ ଜଣେ ଯାହା ଯାହା କରିଯାଏ ସେହି ଅନୁସାରେ ତାର ଚାରିତ୍ରିକ ସ୍ୱଭାବ ଗଢ଼ି ଉଠେ । ଅର୍ଥାତ୍ ଜଣଙ୍କର ଚରିତ୍ର ତାର ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ତିଆରି ହୋଇଚାଲିଥାଏ । ଏବଂ ସେହି ଚରିତ୍ର ଅନୁସାରେ ସେ କାମ କରୁଥାଏ । ତେଣୁ କୁହାଯାଏ ଯେ ଆମର ଚରିତ୍ର ହିଁ ଆମର ଭାଗ୍ୟ ଏବଂ ଏହା ଆମର ଭବିଷ୍ୟତକୁ ଗଢ଼ି ଗଢ଼ି ଚାଲିଥାଏ । ଭାଗ୍ୟ ଗୋଟିଏ କୌଣସି ଆକସ୍ମିକ ଘଟଣା ନୁହେଁ । ତୁମ ଭାଗ୍ୟର ତୁମେ ହିଁ ନିର୍ମାତା ଏବଂ ତାହା ତୁମର ଭବିଷ୍ୟତକୁ ନିର୍ଦ୍ଧାରିତ କରିଚାଲିଥାଏ । Character is destiny ଉକ୍ତିଟି ସେକ୍ସପିୟର ତାଙ୍କର ଚରିତ୍ରମାନଙ୍କଠାରେ ପ୍ରତିଫଳିତ କରିଥିଲେ ।

ଭାଗ୍ୟବାଦୀମାନେ ବିଶ୍ୱାସ କରନ୍ତି ଯେ ମନୁଷ୍ୟର ଭାଗ୍ୟ ଅନୁସାରେ ତାହାର ଜୀବନ ପ୍ରକ୍ରିୟା ନିୟନ୍ତ୍ରିତ ହୋଇଥାଏ । ଏହା ନିଜର ନିୟନ୍ତ୍ରଣର ବାହାରେ । ନାନା ପ୍ରକାରର ଐଶ୍ୱରିକ ଶକ୍ତିମାନେ ବ୍ୟକ୍ତି ବିଶେଷର ଫଳାଫଳକୁ ନିୟନ୍ତ୍ରଣ କରୁଥାଆନ୍ତି । ଏହା ଦୁର୍ବଳ ଲୋକଙ୍କୁ ଆଶ୍ୱାସନା ଦେଇପାରେ କିଂତୁ ପ୍ରକୃତରେ ଏହା ସତ୍ୟ ନୁହେଁ । ଜଣେ ଭାଗ୍ୟବାଦୀ କିଛି ପରିଶ୍ରମ କରିବ ନାହିଁ ଅପେକ୍ଷା କରିଥିବ ତାର ଭାଗ୍ୟକୁ । ଏପରି ଭାଗ୍ୟବାଦୀମାନେ ବେଶି ଅଦୃଷ୍ଟ ଦୈବୀ ଶକ୍ତିର ସାହାଯ୍ୟ ନେଇ ଥାଆନ୍ତି । ନାନା ଧରଣର ପୂଜାପୂଜି କରି

ଦେବତାଙ୍କୁ ଏବଂ ଦେବତାରୂପୀ ଗ୍ରହ ନକ୍ଷତ୍ରଙ୍କୁ ସନ୍ତୁଷ୍ଟ କରିବାକୁ ଚେଷ୍ଟା କରନ୍ତି । ସେମାନଙ୍କୁ ଲାଞ୍ଚ ଯାଚନ୍ତି-ତାହାହେଲେ ଯାଇ ସେମାନଙ୍କର ଭାଗ୍ୟରେ ଭଲ ଫଳ ଫଳିବ ବୋଲି ଏମାନଙ୍କର ଧାରଣା । ଏସବୁ ଦୁର୍ବଳ ଓ ଅଳସୁଆ ପ୍ରକୃତିର ଲୋକଙ୍କ ପାଇଁ ଏକମାତ୍ର ଆଶ୍ୱାସନା । ପାଠନପଢ଼ି, ଚଣ୍ଡୀକୁ ମାନସିକ କରି ପରୀକ୍ଷାରେ ଭଲ କରିବା ପରି ହାସ୍ୟାସ୍ପଦ ଘଟଣା ଆମ ଦେଶରେ ବହୁଳ ଭାବରେ ପ୍ରଚଳିତ । ଫଳରେ ଆମ ଦେଶରେ ଗରିବ ଅପାଠୁଆଙ୍କ ସଂଖ୍ୟା ବହୁତ ଅଧିକ ।

ଅବଶ୍ୟ ଦେଶର ସାମଗ୍ରିକ ଓ ଅର୍ଥନୈତିକ ପରିସ୍ଥିତିକୁ ଜଣେ ଲୋକ ପକ୍ଷରେ ବଦଳାଇବା ସଂଭବ ନୁହେଁ । କିଂତୁ ସେହି ପରିସ୍ଥିତିରେ ମଧ୍ୟ ଜଣେ ବହୁ ପରିଶ୍ରମ କରି ଯଦି ଉପରକୁ ଉଠିପାରେ ତାହା ତାର ଭାଗ୍ୟରେ ଥିଲା ବୋଲି କହନ୍ତି । କାରଣ ଠିକ୍ ସେହିପରି କାମ କରି ମଧ୍ୟ ଆଉ ଜଣେ ଉଠିପାରେ ନାହିଁ । ତେଣୁ ଭାଗ୍ୟ କଥା ସହଜରେ ବିଶ୍ୱାସ କରିହୁଏ । କିଂତୁ କୌଣସି କାମ ଘଟିବାକୁ ହେଲେ ତା ପଛରେ କେତେଗୁଡ଼ିଏ କାରଣ ରହିବା ହେଉଛି ପ୍ରାକୃତିକ ନିୟମ । ଯେପରି ବାୟୁମଣ୍ଡଳରେ କେତେଗୁଡ଼ିଏ କାରଣ ଯୋଗୁ ବର୍ଷା ହୁଏ । ସେହିପରି ସାମାଜିକ କ୍ଷେତ୍ରରେ ମଧ୍ୟ । ଦୁଇଜଣଙ୍କର କାର୍ଯ୍ୟକାରଣ ସଂପର୍କ ଏକାପରି ଦେଖାଯାଉଥିଲେ ମଧ୍ୟ ସେମାନଙ୍କ ମନସ୍ତାତ୍ତ୍ୱିକ ଭିତ୍ତିଭୂମି ଅଲଗା ଅଲଗା ଥାଇପାରେ । ବୌଦ୍ଧିକ ସାମର୍ଥ୍ୟରେ ତାରତମ୍ୟ ଥାଇପାରେ । ଏହି ତାରତମ୍ୟ ବଂଶଗତ ହୋଇପାରେ କିଂବା ପିଲାବେଳର ଶିକ୍ଷା ପ୍ରଣାଳୀର ପାର୍ଥକ୍ୟ ହେତୁ ମଧ୍ୟ ହୋଇଥାଏ । ତେଣୁ ପରିଶ୍ରମ ଏକାପରି ଦେଖାଯାଉଥିଲେ ମଧ୍ୟ କାର୍ଯ୍ୟ କାରଣ ସଂପର୍କ ଅଲଗା ହୋଇଥାଏ । ଏପରି କ୍ଷେତ୍ରରେ ଅନେକ କାର୍ଯ୍ୟ କାରଣ ସଂପର୍କ ବିଷୟରେ ଆମର ସ୍ପଷ୍ଟ ଧାରଣା ନଥିବାରୁ ଆମେ ତାହାକୁ ଭାଗ୍ୟଦୋଷ ବୋଲି କହିଥାଉ । ଉଦାହରଣ ସ୍ୱରୂପ ଆମ ଦେଶରେ ଦେଖାଯାଉଛି ଶିକ୍ଷିତ ଘରର ଅଧିକାଂଶ ପିଲା ଶିକ୍ଷା କ୍ଷେତ୍ରରେ ବହୁତ ଆଗେଇ ଯାଆନ୍ତି କିନ୍ତୁ ଗ୍ରାମାଞ୍ଚଳର ପିଲାଏ ପାରନ୍ତି ନାହିଁ । ଏହା କଅଣ ପ୍ରମାଣିତ କରେ ଯେ ଗ୍ରାମାଞ୍ଚଳର ପିଲାମାନଙ୍କର ଭାଗ୍ୟ ଖରାପ ? ଶିକ୍ଷା କ୍ଷେତ୍ରରେ ଭାରତରେ ସହର ସହର ଭିତରେ ତଫାତ ଦେଖାଯାଏ । ସେହିପରି ଉନ୍ନତ ଦେଶମାନଙ୍କ ସହିତ ଆମର ସାମାଜିକ ପରିସରକୁ ତୁଳନା କଲେ ସେମାନେ ବହୁ କ୍ଷେତ୍ରରେ ଅଗ୍ରଗତି ସହଜରେ କରିପାରୁଥିବା ବେଳେ ଆମ ଦେଶରେ ଏହା ସଂଭବ ହୋଇପାରୁନାହିଁ ।

ମୋଟାମୋଟି ଭାବରେ କେତେଗୁଡ଼ିଏ କାରଣ ଯୋଗୁ କେତେ ପ୍ରକାରର ଫଳାଫଳ ଘଟେ । ଏହା ଗୋଟିଏ ପ୍ରତିଷ୍ଠିତ ବୈଜ୍ଞାନିକ ନିୟମ । ତେଣୁ ପ୍ରତ୍ୟେକ ଲୋକର ସମସ୍ତ କାର୍ଯ୍ୟ କାରଣ ସଂପର୍କ ବିଷୟରେ ଅନୁଧ୍ୟାନ କରିପାରିଲେ ତାର ଫଳାଫଳ ଜାଣିବା ସଂଭବ ହେବ । କିଂତୁ ସାମାଜିକ ପରିସ୍ଥିତି ଏବଂ ବ୍ୟକ୍ତି ବିଶେଷର କ୍ରିୟା ଅନୁକ୍ରିୟା ଏତେ ଜଟିଳ

ଯେ ପ୍ରତ୍ୟେକ ବ୍ୟବହାରର କାର୍ଯ୍ୟକାରଣ ସଂପର୍କ ନିର୍ଦ୍ଧାରଣ କରିବା କଠିନ ହୋଇପଡ଼େ । ତେଣୁ ଭାଗ୍ୟବାଦ ଗଢ଼ିଉଠେ । ଉଦାହରଣ ସ୍ୱରୂପ ଜଣେ ପଣ୍ଡିତଙ୍କର ଦୁଇ ପୁଅଙ୍କ ଭିତରୁ ଜଣେ ବିଖ୍ୟାତ ପଣ୍ଡିତ ହେଲା- ଆଉ ଜଣେ ମାଟ୍ରିକ ମଧ୍ୟ ପାଶ୍ କରିପାରିଲା ନାହିଁ । ଆମେ କହୁ ଯେ ଜଣଙ୍କର ଭାଗ୍ୟ ବଡ଼ ଉଜ୍ଜ୍ୱଳ ଏବଂ ଆଉ ଜଣଙ୍କର ଭାଗ୍ୟରେ ପାଠ ନଥିଲା । କିଂତୁ ଏହା ପଛରେ ମଧ୍ୟ କାର୍ଯ୍ୟ କାରଣ ସଂପର୍କ ରହିଛି । ଦୁଇଜଣଙ୍କର ବୌଦ୍ଧିକ ସାମର୍ଥ୍ୟ ଏକାଥିଲେ ମଧ୍ୟ ଦୁଇଜଣଙ୍କର ପାରିବାରିକ ବ୍ୟବହାର ଏବଂ ସାମାଜିକ ବାତାବରଣ ଅଲଗା ହୋଇପାରେ । ସେହି ଘରେ ଦୁଇଜଣଙ୍କ ପ୍ରତି ଏକା ବ୍ୟବହାର ମା ବାପାଙ୍କର ନ ହୋଇ ପାରିଥାଏ । ଏ ବିଷୟରେ ବହୁତ ମନସ୍ତାତ୍ତ୍ୱିକ ଗବେଷଣା ପ୍ରମାଣ କରିଛି ଯେ ଏହି ବିଭିନ୍ନ ବ୍ୟାବହାରିକ ପ୍ରକ୍ରିୟାର ସାମୂହିକ ଫଳ ହେବ ଭିନ୍ନ ଭିନ୍ନ ପ୍ରକାରର- ଜଣେ ଭଲ ପଢ଼ିବ- ଆଉ ଜଣଙ୍କର ପଢ଼ିବା ପ୍ରତି ସ୍ପୃହା ହେବ ନାହିଁ । ତେଣୁ ମନସ୍ତତ୍ତ୍ୱବିତ୍‌ଙ୍କ ପରାମର୍ଶ ଅନୁସାରେ ଅନେକଙ୍କର ଭବିଷ୍ୟତକୁ ବଦଳାଇ ଦିଆଯାଇପାରୁଛି । ଉନ୍ନତ ଦେଶମାନଙ୍କରେ ଏ କ୍ଷେତ୍ରରେ ନାନା ଧରଣର ପରାମର୍ଶ କେନ୍ଦ୍ରମାନେ ଦେଖାଯାଏ । ତେଣୁ ଯେଉଁ କାମ ମାନ ଜଣେ କରିବାକୁ ଯାଉଛି ସେ ବିଷୟରେ ଆଗରୁ ସାବଧାନ ହେବା ଉଚିତ୍ । ଅର୍ଥାତ୍ ପ୍ରତ୍ୟେକ କାମର କ୍ରିୟା ପ୍ରକ୍ରିୟା ଗତ ଭବିଷ୍ୟତ ଫଳାଫଳ ପ୍ରତି ସାବଧାନ ହେବା ଉଚିତ୍ ।

ମନୁଷ୍ୟ ପିଲାଦିନରୁ ଯାହା କରେ, ଯାହା ଚିନ୍ତା କରେ, ଯେପରି ଭାବରେ ଅନୁକରଣ କରେ ସେହି ଅନୁସାରେ ତାର ବ୍ୟକ୍ତିତ୍ୱ ଗଢ଼ି ଉଠୁଥାଏ । ଭିନ୍ନ ଭିନ୍ନ ଧରଣର ବ୍ୟକ୍ତିତ୍ୱ ବିଭିନ୍ନ ସାମାଜିକ କ୍ରିୟା ପ୍ରକ୍ରିୟାର ସମନ୍ୱିତ ଫଳାଫଳ ମାତ୍ର । ଜଣେ ଧୀର ସ୍ଥିର ଚିନ୍ତାଶୀଳ ହୁଅନ୍ତିତ ଆଉ ଜଣେ ଠିକ୍ ତାର ବିପରୀତ । ଜଣେ ଅତ୍ୟଧିକ ଉଚ୍ଚାକାଙ୍‌କ୍ଷୀତ ଆଉ ଜଣେ ବେପରୁଆ-ଫୁଲା ଫାଙ୍କିଆ ଭାବରେ କାର୍ଯ୍ୟକରେ । ଫଳରେ ସେମାନଙ୍କର ଭବିଷ୍ୟତ ଅଲଗା ଅଲଗା ହୁଏ ।

ସେହିପରି ଜଣେ ଧନୀ ଘରେ ଜନ୍ମ ଓ ଆଉ ଜଣେ ଗରିବ ଘରେ । ଲୋକେ କହିବେ ଜଣେ ଭାଗ୍ୟବାନ, ଆଉ ଜଣେ ନୁହେଁ କାରଣ ଜଣଙ୍କର ରାଶି ନକ୍ଷତ୍ର ଉଚ୍ଚ ତ ଆଉ ଜଣଙ୍କର ନୀଚ । ଜଣଙ୍କୁ କୌଣସି ଗ୍ରହ ଭଲ ଆଖିରେ ଦେଖୁଥାଏ ତ ଆଉ ଜଣକୁ ଖରାପ ଆଖିରେ । ଏସବୁ କୁସଂସ୍କାରଗତ ଧାରଣା । କାରଣ, କାର୍ଯ୍ୟ କାରଣ ସଂପର୍କୀୟ ବିଶ୍ଳେଷଣ ପରେ ଏପରି ଧାରଣା ଭୁଲ ବୋଲି ପ୍ରମାଣିତ ହୁଏ । ଭାରତର ଅଧିକାଂଶ ଲୋକଙ୍କ ଉପରେ କଅଣ ରାଶି ନକ୍ଷତ୍ରମାନଙ୍କର କୁପ୍ରଭାବ ଏବଂ ଅନ୍ୟ ଉନ୍ନତ ଦେଶମାନଙ୍କରେ ଏମାନଙ୍କର ଶକ୍ତିଶାଳୀ ସମର୍ଥନ ରହିଛି ? ତେଣ୍ କର କପାଳ କୋଷ୍ଠୀ ଗଣନା ସଂପୂର୍ଣ୍ଣ ଭାବେ ଅବୈଜ୍ଞାନିକ । କାରଣ ଯାହାକୁ ଗ୍ରହ କୁହାଯାଏ ସେଥିଭିତରୁ ଚନ୍ଦ୍ର ଗ୍ରହ ନୁହେଁ । ଆହୁରି

ଅନେକ ନୂଆଗ୍ରହ ଉଦ୍‌ଘାଟିତ ହେଲାଣି । ସୂର୍ଯ୍ୟ ପୃଥିବୀର ଚାରି ପାଖେ ବୁଲୁନାହିଁ ଇତ୍ୟାଦି ବହୁ ନୂଆ ତଥ୍ୟର ଉଦ୍ଭାବନ ହେଲାଣି । ସେମାନଙ୍କର ପ୍ରଭାବ ବିଷୟରେ ବହୁ ତଥ୍ୟ ମଧ୍ୟ ଉଦ୍‌ଘାଟିତ ହେଲାଣି କିଂତୁ ବିଭିନ୍ନ ମନୁଷ୍ୟଙ୍କ ଦୈନନ୍ଦିନ କାର୍ଯ୍ୟକଳାପକୁ ଭିନ୍ନ ଭିନ୍ନ ଭାବରେ ନିୟନ୍ତ୍ରଣ କରୁଥିବାର କୌଣସି ପ୍ରମାଣ ମିଳୁନାହିଁ । ସବୁ ଆମର କର୍ମ ଅନୁସାରେ ଘଟୁଥାଏ ।

ଭାଗବତର ଏହି ଉକ୍ତି ବର୍ତ୍ତମାନର ବୈଜ୍ଞାନିକ ଯୁଗରେ ତାତ୍ପର୍ଯ୍ୟପୂର୍ଣ୍ଣ ବୋଲି ମନେହୁଏ । ତେଣୁ ଆମ ଭାଗ୍ୟ ଆମେ ଗଢୁ ନୀତି ହିଁ ଗ୍ରହଣଯୋଗ୍ୟ ବୋଲି ମନେହୁଏ ।

ଅବଶ୍ୟ ଅନେକ ଏପରି ଘଟଣା ଘଟେ ଯାହାର କାରଣ ନଥାଏ ବୋଲି ଆମର ମନେହୁଏ । ଉଦାହରଣ ସ୍ୱରୂପ ତୁମେ ଖୁବ୍ ସାବଧାନତାର ସହିତ ଗାଡ଼ି ଚଳାଉଛ କିଂତୁ ଆଉଜଣେ ତାର ଗାଡିକୁ ଆଣି ତୁମ ଗାଡି ସହିତ ଧକ୍କା ଦେଲା- ତୁମେ ସାଂଘାତିକ ଭାବରେ ଆଘାତ ପାଇଲ । ସେଥିପାଇଁ ତ ତୁମେ ଦାୟୀ ନୁହଁ । ଏ ଦୁର୍ଘଟଣା ଫଳରେ ତୁମର ଭବିଷ୍ୟତ ନଷ୍ଟ ହୋଇଗଲା- ଏପରି ପରିସ୍ଥିତିରେ ଭାଗ୍ୟ ଦୋଷ ଦେବା ସ୍ୱାଭାବିକ ହୋଇପଡ଼େ । କିଂତୁ ଏହି ଘଟଣା ଆକସ୍ମିକ ହେଲେ ମଧ୍ୟ କାର୍ଯ୍ୟ କାରଣ ସମନ୍ୱିତ ଫଳ ଯୋଗୁ ଦୁର୍ଘଟଣା ହେଲା- ତୁମେ ଦାୟୀ ନ ହୋଇପାର କିଂତୁ ପରିବେଶ ଏଥିପାଇଁ ଦାୟୀ । ଭାରତ ରାସ୍ତାରେ ପୃଥିବୀରେ ସବୁଠୁ ବେଶି ଦୁର୍ଘଟଣା ଘଟେ । ତାର କାରଣମାନ ରହିଛି- ତୁମେ ମଧ୍ୟ କିଛି ପରିମାଣରେ ଏଥିପାଇଁ ଦାୟୀ ।

ନାନା ପାରିପାର୍ଶ୍ୱିକ ପରିସ୍ଥିତି ଯୋଗୁ ତୁମର ଆଖି ଖରାପ ହେଲା-ଅତ୍ୟଧିକ ଶବ୍ଦ ପ୍ରଦୂଷଣ ଯୋଗୁ ତୁମେ କାଲହେଲ- ବାହାରେ ମଇଳା ଗଦା ଯୋଗୁ ତୁମେ ରୋଗଗ୍ରସ୍ତ ହେଲ । ଏହା ତୁମ ଭାଗ୍ୟରେ ଥିଲା ବୋଲି ଆଶ୍ୱାସନା ପାଇବାରେ କୌଣସି ଯୌକ୍ତିକତା ନାହିଁ । ପାରିପାର୍ଶ୍ୱିକ ଓ ସାମାଜିକ ପରିବେଶ ତୁମର ଭବିଷ୍ୟତକୁ କିଛି ପରିମାଣରେ ତିଆରି କରି ଚାଲିଥାଏ । ଉଦାହରଣ ସ୍ୱରୂପ ଭାରତରେ ଏବଂ ଓଡିଶାରେ ନାରୀମାନଙ୍କର ଭବିଷ୍ୟତ ସେତେ ଉଜ୍ଜ୍ୱଳ ହୋଇ ପାରୁନାହିଁ- ତାର କାରଣ ହେଉଛି ଏ ସଂକୀର୍ଣ୍ଣ ସାମାଜିକ ପରିବେଶ ଏବଂ ସାମନ୍ତବାଦୀ ପାରମ୍ପରିକ ରୀତିନୀତି । ଏଥିରୁ କିଛି ମହିଳା ମୁକ୍ତି ପାଇ ପାରୁଛନ୍ତି ସେମାନଙ୍କର ବଳିଷ୍ଠ ଉଦ୍ୟମ ବଳରେ । ଆଉ କେତେକ ପରିବେଶ ଦ୍ୱାରା ହିଁ ସଂପୂର୍ଣ୍ଣ ରୂପେ ନିୟନ୍ତ୍ରିତ ହେଉଛନ୍ତି । କିନ୍ତୁ ଏହାକୁ ଭାଗ୍ୟ ବୋଲି କହି ନିଶ୍ଚିନ୍ତ ହୋଇଯିବା ଅର୍ଥ ଜୀବନ ଜୀବନ ଧରି ଲୋକେ ସେହିପରି ରହିଯିବେ ।

ଆମ ଭାଗ୍ୟ ଆମେ ଗଢୁରେ ବିଶ୍ୱାସୀ ଲୋକ ନିଜର ପରିଶ୍ରମ, ସାହସ ବଳରେ ଏପରି ପରିବେଷ୍ଟନୀରୁ ମୁକ୍ତି ଲାଭ କରିପାରିବେ । ସେଥିଯୋଗୁ କଠିନ ପରିଶ୍ରମର ଆବଶ୍ୟକତା ରହିଛି । ଯୋଜନା ଅନୁସାରେ ଆମକୁ ଆସ୍ତେ ଆସ୍ତେ ଅଗ୍ରସର ହେବା ଦରକାର-

ଏଥିପାଇଁ ଆମ ସମାଜରେ ବ୍ୟକ୍ତିବିଶେଷଙ୍କୁ ବହୁ ପରିଶ୍ରମ କରିବାକୁ ପଡିପାରେ ତେଣୁ ନିଜ ଭାଗ୍ୟକୁ ଗଢ଼ିବାର କ୍ଷମତା ଆମମାନଙ୍କର ମଧ୍ୟ ରହିଛି ।

ଯେଉଁମାନେ ବିଭିନ୍ନ କ୍ଷେତ୍ରରେ ଉନ୍ନତି କରିଛନ୍ତି ସେମାନଙ୍କର କାର୍ଯ୍ୟ ପ୍ରଣାଳୀକୁ ଅନୁଧ୍ୟାନ କଲେ ଜଣାଯିବ ଯେ ସେମାନେ କିପରି ଭାବରେ ସଂଗଠିତ ଭାବରେ ଅଙ୍କ ଅଙ୍କ କରି ଆଗେଇ ଚାଲିଥାଆନ୍ତି । ଆମେ କେବଳ ମୋନଙ୍କର ଖ୍ୟାତିକୁ ଭାଗ୍ୟଫଳ ବୋଲି ଆଖ୍ୟାଦେଉ । ସେମାନଙ୍କର କାର୍ଯ୍ୟ ପ୍ରଣାଳୀ ବିଷୟରେ ଆମେ ଅନୁଧ୍ୟାନ ନକରି ଭାଗ୍ୟ କଥା କହିଦେଉ । ଜଣକୁ ଗୋଟିଏ ଅନୁନ୍ନତ ସମାଜରେ ତାର ଲକ୍ଷ୍ୟ ସାଧନ ଲାଗି ବହୁ ପରିଶ୍ରମ କରିବାକୁ ପଡିପାରେ । ଆଉ ଗୋଟିଏ ସମାଜରେ ବିନା ପରିଶ୍ରମରେ ଏହା ସାଧିତ ହୋଇପାରେ । ତେଣୁ ଏହା ଭାଗ୍ୟଫଳ ନୁହେଁ ।

ମନୁଷ୍ୟ  ଚରିତ୍ରକୁ ବିଶ୍ଳେଷଣ କରୁଥିବା ନାଟକ ଉପନ୍ୟାସ ମାନଙ୍କରେ ତାର ଚରିତ୍ର କିପରି ତାକୁ ଆଗେଇ ଆଗେଇ ନେଉଛି ତାହାର ବିଷଦ ବିବରଣୀ ବର୍ଣ୍ଣିତ ହୋଇଥାଏ । Characer is destiny ହେଉଛି ବଳିଷ୍ଠ ଲେଖକମାନଙ୍କର ମୌଳିକ ଦିଗଦର୍ଶନ । ଭାଗ୍ୟ ଉପରେ ଛାଡିଦେଲେ ଚରିତ୍ର ବିଶ୍ଳେଷଣ ଅଧୁରା ରହିଯାଏ । ଯେଉଁମାନେ କେବଳ ଦୁର୍ଘଟଣା ଉପରେ ନିର୍ଭର କରି ଚରିତ୍ର ବିଶ୍ଳେଷଣ କରିଥାଆନ୍ତି ସେମାନେ ଚରିତ୍ରର ଗଭୀରତା ବିଷୟରେ ଭଲ ଭାବରେ ଉପଲବ୍ଧି କରିପାରନ୍ତି ନାହିଁ ।

ଆପଣ କଲା କର୍ମମାନ ପରିପେକ୍ଷୀରେ ଆଉ ଗୋଟିଏ କଥା ଉଲ୍ଲେଖ କରାଯାଇପାରେ । "ଆପଣା ହସ୍ତେ  ଜିହ୍ୱା ଛେଦି-କେ ଅଛିତାର ପ୍ରତିବାଦୀ" କଥାଟି ମଧ୍ୟ ବହୁତ ତାତ୍ପର୍ଯ୍ୟପୂର୍ଣ୍ଣ । ତୁମେ ଯାହା ଯାହା କହୁଛ ସେହି ଅନୁସାରେ ତୁମର ଶତ୍ରୁ ମିତ୍ର ଗଢ଼ି ଉଠନ୍ତି । ଏପରି ସମନ୍ୱିତ କ୍ରିୟା ପ୍ରକ୍ରିୟା ଅନୁସାରେ ତୁମ ଚରିତ୍ର ଗଢ଼ିଉଠେ । ତେଣୁ କଅଣ କହିବ ସେ ବିଷୟରେ ସାବଧାନ ହେବା ଉଚିତ । କାରଣ ସେହି ଅନୁସାରେ ତୁମେ ତୁମର ଭାଗ୍ୟ କିଛି ପରିମାଣରେ ଗଢ଼ି ଗଢ଼ି ଚାଲିଛ । ତାହା କାର୍ଯ୍ୟକାରୀ ହେଉଛି ତୁମର କଲା କର୍ମମାନଙ୍କ ମାଧ୍ୟମରେ ।

ଅନେକ ଅଛନ୍ତି ନିଜର କଥା ବାର୍ତ୍ତାରେ ସେମାନଙ୍କର ନିୟନ୍ତ୍ରଣ ନଥାଏ । ଯାହା ମନକୁ ଆସେ ସେମାନେ ତାହା କହି ଦିଅନ୍ତି । ବିଶେଷତଃ ରାଗ ବେଳେ ନାନା କଥା ପାଟିରୁ ବାହାରିଯାଏ । ଯେଉଁମାନଙ୍କ ଉଦ୍ଦେଶ୍ୟରେ ଏହା କୁହାଯାଏ ସେମାନଙ୍କର ପ୍ରତିକ୍ରିୟା ବହୁ ସମୟଯାଏ ତୁମ ଚାରିପାଖେ ଗୋଟିଏ କୁଟିଳ ଆବର୍ତ୍ତ ସୃଷ୍ଟି କରି ଚାଲେ । ତାହାର ଶିକାର ତୁମେ ମଧ୍ୟ ହୋଇଯିବା ସ୍ୱାଭାବିକ । ଦିନ ଦିନ ଧରି ତୁମେ ଏହି ଦୁଷ୍ଚିନ୍ତାର ପାପଚକ୍ର ଭିତରେ ରହିଯାଅ । ଏହା ଯଦି ବାରମ୍ବାର ଘଟେ କ୍ରମେ ନାନା ପ୍ରକାରର ମାନସିକ ତଥା ଶାରୀରିକ ରୋଗର ମଧ୍ୟ ଶିକାର ହୋଇପଡିବ । ତେଣୁ  ଏପରି ବିକୃତି ପାଇଁ ତୁମେ ହିଁ ଦାୟୀ । କିଂତୁ

ନିଜକୁ ଦାୟୀ କରିବା ଗୋଟିଏ ଅପ୍ରୀତିକର କାମ ହୋଇ ଥିବାରୁ ଆମେ ସେହି ଗୋଟିଏ ଅନିର୍ଦ୍ଦିଷ୍ଟ ଭାଗ୍ୟ ଉପରେ ସବୁ ଲଦି ଦେଉ ।

ଆପଣ କଲାମାନ କର୍ମହିଁ ନିଜ ନିଜର ଭବିଷ୍ୟତ ନିର୍ଦ୍ଧାରଣ କରୁଥିବା ତତ୍ତ୍ୱରେ ବିଶ୍ୱାସୀ ମାନେ ନିଜର ପ୍ରତ୍ୟେକ କ୍ରିୟା ପ୍ରତିକ୍ରିୟା ବିଷୟରେ ସାବଧାନ ହୋଇପାରନ୍ତି । କଥାରେ ଅଛି ଯେ ରାଗିଲା ବେଳେ ପ୍ରଥମେ ଦଶଯାଏ ଗଣିବ- ତାହାହେଲେ ତୁମର ପ୍ରତିକ୍ରିୟାର ବେଗ ଓ ମାତ୍ରା ବହୁତ କମିଯିବ । ଏ ପ୍ରକାର ନିୟନ୍ତ୍ରଣ ହିଁ ତୁମର ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟକୁ ନିୟନ୍ତ୍ରଣ କରୁଥାଏ ।

ଆପଣା କଲା କର୍ମମାନର ଫଳାଫଳ ଗୋଟିଏ ଦେଶ ଏବଂ ଜାତି କ୍ଷେତ୍ରରେ ମଧ୍ୟ ପ୍ରତିଫଳିତ ହୋଇଥାଏ । ନିକଟରେ ଆମେରିକାରେ ସନ୍ତ୍ରାସବାଦୀଙ୍କର ଯେଉଁ ଭୟାବହ କାଣ୍ଡ ଘଟିଗଲା ତିନୋଟି ବିରାଟ ଅଟ୍ଟାଳିକା ଧୂଳିସାତ ହୋଇଗଲା ହଜାର ହଜାର ଲୋକ ପ୍ରାଣ ହରାଇଲେ-କୋଟି କୋଟି ଡଲାର ବ୍ୟବସାୟ କ୍ଷତିଗ୍ରସ୍ତ ହୋଇଗଲା, ଏସବୁ ଭୟଙ୍କର ଭାବରେ ଅମାନୁଷିକ ଘଟଣା । କିଂତୁ ଅତୀତରେ ଆମେରିକା ମଧ୍ୟ ଏପରି ଅମାନୁଷିକ ଆକ୍ରମଣ ଅନ୍ୟ ଦେଶରେ କରିଚାଲିଥିଲା- ଜାପାନରେ ଲକ୍ଷ ଲକ୍ଷ ଲୋକ ପରମାଣୁ ବୋମାରେ ଏହିପରିଭାବରେ ମରିଥିଲେ- ଯୁଦ୍ଧ ଶେଷ ହେବା ବେଳକୁ କେବଳ ନିଜର ପ୍ରଭାବକୁ ବିଶ୍ୱବ୍ୟାପୀ ପ୍ରତିଷ୍ଠା କରିବା ଲାଗି ତାହା ହୋଇଥିଲା ବୋଲି ପ୍ରମାଣିତ ହେଲା । ତାପରେ ବହୁ ଲୋକ ଆମେରିକା ବୋମାରେ ମରିଛନ୍ତି । ଆଫଗାନିସ୍ଥାନରେ ତାଲିବାନ ସରକାର ପ୍ରତିଷ୍ଠା କରିବାରେ ଆମେରିକା ଦାୟୀ । ସେମାନଙ୍କ ହାତରେ ଥିବା ସମସ୍ତ ଅସ୍ତ୍ର ଆମେରିକାର । ବର୍ତ୍ତମାନ ଆମେରିକା କରିଥିବା ଅତୀତ କର୍ମମାନଙ୍କର ଫଳାଫଳ ତାକୁ ଭୋଗିବାକୁ ପଡୁଛି ।

ସେହିପରି ଗୋଟିଏ ଦେଶରେ ଜାତିଗତ ବିଦ୍ରୋହ । ତାହା ପଛରେ ବିଭିନ୍ନ କ୍ରିୟା ପ୍ରକ୍ରିୟାର ଫଳାଫଳ କାମ କରୁଛି ।

ଆପଣ କଲାମାନ କର୍ମ ଭିତରେ ନିଜର ଭାବାବେଗ ସମୟର ପ୍ରତିକ୍ରିୟାମାନ ମଧ୍ୟ ଅନ୍ତର୍ଭୁକ୍ତ । ତେଣୁ ଏସବୁ ବିଷୟରେ ଆଗରୁ ସାବଧାନ ହେବା ଉଚିତ । ଏହା ଗୋଟିଏ ବିଶେଷ ମନସ୍ତାତ୍ତ୍ୱିକ ତତ୍ତ୍ୱ ।



# ମାନସିକ ବିକୃତି : କାରଣ ଓ ନିରାକରଣ

*ଡକ୍ଟର ଫକୀର ମୋହନ ସାହୁ*

ମାନସିକ ବିକୃତି (Psychological abnormality) ଆମର ଦୈନନ୍ଦିନ ଜୀବନର ଏକ ବହୁ ବ୍ୟବହୃତ ପରିଭାଷା । ରାସ୍ତାରେ ବିଚିତ୍ର ଅଙ୍ଗଭଙ୍ଗୀ ଦେଖାଉଥିବା ଲୋକଟିକୁ ଦେଖିଲେ, ସବୁବେଳେ ଅଟ୍ଟହାସ୍ୟ କରୁଥିବା ଲୋକ ସଂପର୍କରେ ଆସିଲେ, କିମ୍ବା ଅନବରତ କାନ୍ଦୁଥିବା ଲୋକର ବିଷାଦଭରା କଥା ଶୁଣିଲେ ଏସବୁ ଲୋକମାନେ ଭାରସାମ୍ୟ ହରାଇଥିବା ପରି ମନେହୁଏ । ଏହିସବୁ ଲୋକମାନେ "ପାଗଳ" କିମ୍ବା "ଆଡ଼ପାଗଳ" କିମ୍ବା ଏ ଲୋକମାନଙ୍କର ମୁଣ୍ଡ ଖରାପ କହି ଆମେ ଏପରି ଦୁରାବସ୍ଥାର ସୂଚନା ଦେଉ । ବେଳେବେଳେ ପରିମାର୍ଜିତ ଭାଷା ପ୍ରୟୋଗ କରି ମାନସିକ ବିକୃତି (Mental Disorder) ଅସ୍ୱାଭାବୀ ବ୍ୟବହାର (Abnormal Behaviour) ବୋଲି କହିଥାଉ ।

ପରିଭାଷା ଯାହା ହେଉନା କାହିଁକି ସୁସ୍ଥ ସମାଜ ଗଠନରେ ଯେ ମାନସିକ ବିକୃତିର ନିରାକରଣ ଦିଗରେ ବ୍ୟାପକ କାର୍ଯ୍ୟକ୍ରମର ଆବଶ୍ୟକତା ରହିଛି- ଏଥିରେ ସନ୍ଦେହ ନାହିଁ । ମାନସିକ ବିକୃତି କ'ଣ ? ଏପରି ସମସ୍ୟାର ସମ୍ମୁଖୀନ ହେଲେ କେଉଁ ବିଶେଷଜ୍ଞଙ୍କ ସହାୟତା ନେବାକୁ ପଡ଼ିବ ? ମାନସିକ ରୋଗ ଆଦୌ ନ ଦେଖାଯିବା ପାଇଁ ବ୍ୟକ୍ତି କ'ଣ କରିପାରିବ ? ମାନସିକ ବିକୃତିର ନିରାକରଣରେ ପରିବାରର କି ଭୂମିକା ରହିଛି ? ଏପରି ଅସୁସ୍ଥତାର ବିଲୋପ ପାଇଁ ସରକାର କ'ଣ କରିପାରିବେ ? ଆଧୁନିକ ଯୁଗରେ ଏ ସବୁର ଚିକିତ୍ସା ପାଇଁ କି ପ୍ରକାର ସୁବିଧା ସୁଯୋଗ ରହିଛି ? ଏହିପରି ବହୁପ୍ରଶ୍ନ ଆମ ମନରେ ଆଲୋଡ଼ନ ସୃଷ୍ଟିକରେ ।

### ସଂଜ୍ଞା ଓ ପ୍ରକାରତା

ସରଳ ଭାଷାରେ ମାନସିକ ବିକୃତିର ଏକ ବ୍ୟାବହାରିକ ସଂଜ୍ଞା ଦିଆଯାଇପାରେ । ବାହ୍ୟ ଉଦ୍ଦୀପକ (Stimulus) ତୁଳନାରେ ଅତିମାତ୍ରାର ବ୍ୟବହାର ପ୍ରକାଶ ପାଇଲେ ତାହାକୁ ବିକୃତିସମ୍ପନ୍ନ କୁହାଯିବ । ଗୋଟିଏ ଉଦାହରଣ ଦ୍ୱାରା ଏହାକୁ ସ୍ପଷ୍ଟ କରାଯାଇ ପାରେ । ମନେ କରାଯାଉ ରାସ୍ତାରେ ଗୋଟିଏ ବିରାଟ ଦୁର୍ଘଟଣା ଘଟିଛି ଏବଂ କିଛିଲୋକ ମୃତାହତ ହୋଇଛନ୍ତି । ଗୋଟିଏ ପଥିକ ଏପରି ଦୁଃଖଦ ଦୃଶ୍ୟ ଦେଖି ବିଷାଦଗ୍ରସ୍ତ ନହେବା ଅସ୍ୱାଭାବିକ । ମନୁଷ୍ୟ ହିସାବରେ ଆମର ସମ୍ବେଦନଶୀଳତା ରହିବା ଏକ ସ୍ୱାଭାବିକ ପ୍ରତ୍ୟାଶା । ସୁତରାଂ ଏପରି ଦୃଶ୍ୟ ଦେଖି ପଥିକଟି  କିଛି ସମୟଲାଗି ଅବସାଦ ଅନୁଭବ କଲେ ତାହାଙ୍କୁ ବିକୃତିଗ୍ରସ୍ତ କୁହାଯିବ ନାହିଁ । ମାତ୍ର ଏପରି ଦୃଶ୍ୟ ଦେଖି ସେ ଶୋକାକୁଳ ହୋଇ ରାସ୍ତାରେ ଗଡିଲେ, ଦୀର୍ଘଦିନ ଧରି ସ୍ନାନ ଓ ଖାଦ୍ୟଗ୍ରହଣ ନ କଲେ ଏବଂ ନିଜର ବ୍ୟକ୍ତିଗତ ସ୍ୱାସ୍ଥ୍ୟର ଯତ୍ନ ନ ନେଲେ ତାହାଙ୍କୁ ବିକୃତିସମ୍ପନ୍ନ କୁହାଯିବ ।

ମୋଟାମୋଟି ଭାବରେ ଉପର ସଂଜ୍ଞାଟି ବିକୃତିର ସୂଚକ ହେଲେ ମଧ୍ୟ ବିଜ୍ଞାନସମ୍ମତ ବିଚାର ଧାରାରେ ବିକୃତିର ସଂଜ୍ଞାକରଣରେ ଚାରୋଟି ଉପାଦାନକୁ ଗୁରୁତ୍ୱ ଦିଆଯାଇଛି । ପ୍ରଥମଟି ହେଉଛି ପରିସଂଖ୍ୟାନଗତ ମୁଷ୍ଟିମେୟତା । ଏପରି ଆଭିମୁଖ୍ୟ ଗ୍ରହଣ କରୁଥିବା ବିଶେଷଜ୍ଞମାନେ କୁହନ୍ତି ଯେ ଅସ୍ୱାଭାବୀ ବ୍ୟବହାର ଦର୍ଶାଉଥିବା ଲୋକମାନଙ୍କ ସଂଖ୍ୟା ଖୁବ୍ କମ୍ । ଗୋଟିଏ ଗୋଷ୍ଠୀ ବା ସମାଜରେ ବସବାସ କରୁଥିବା ଲୋକମାନଙ୍କ ସଂଖ୍ୟା ତୁଳନାରେ ମାନସିକ ବିକୃତି ଦର୍ଶାଉଥିବା ଲୋକଙ୍କ ସଂଖ୍ୟା ଖୁବ୍ କମ୍ । ଏପରି ସଂଜ୍ଞାକୁ ଭିତ୍ତିକରି ବିଶେଷଜ୍ଞମାନେ ବୌଦ୍ଧିକସ୍ତରରେ ଭିନ୍ନକ୍ଷମ ପିଲାଙ୍କ (ଯେଉଁମାନଙ୍କର ବୁଦ୍ଧିଅଂକ ରୁ କମ୍) ଚିହ୍ନଟ କରନ୍ତି । ଏଠାରେ ସୂଚନା ଦିଆଯାଇପାରେ ଯେ ବୁଦ୍ଧିଅଙ୍କ ୧୦୦ ଦର୍ଶାଇଥିବା ପିଲା କିମ୍ବା ବଡମାନେ ସେମାନଙ୍କ ସମାଜର ପୂରାପୂରି ସାଧାରଣ ପିଲା କିମ୍ବା ବ୍ୟକ୍ତିର ବ୍ୟବହାର ଦର୍ଶାନ୍ତି; ବୁଦ୍ଧିଅଙ୍କ ୭୦ ଦର୍ଶାଇବାର ଅର୍ଥ ହେଉଛି ଯେ ଦଶବର୍ଷର ପିଲାଟି ସାତବର୍ଷର ପିଲା ପରି ବ୍ୟବହାର ଦର୍ଶାଏ । ପରିସଂଖ୍ୟାନଗତ ସୂଚକଟି ଭିନ୍ନକ୍ଷମ ପିଲାର ଅସ୍ୱାଭାବୀ ବ୍ୟବହାର ଚିହ୍ନଟରେ ଉପଯୋଗୀ ହେଲେ ମଧ୍ୟ ଏହାକୁ ଭିତ୍ତି କରି ଅତି ଉଚ୍ଚଧରଣର ଖେଳକୁଦ ସାମର୍ଥ୍ୟ ଦେଖାଉଥିବା କିମ୍ବା ଅତି ଉଚ୍ଚମାତ୍ରାର ବୃଦ୍ଧିମତ୍ତା (୧୪୦ରୁ ଅଧିକ ବୁଦ୍ଧିଅଂକ) ଦର୍ଶାଉଥିବା ପିଲା କିମ୍ବା ବ୍ୟକ୍ତିବିଶେଷଙ୍କୁ ବିକୃତିସମ୍ପନ୍ନ କୁହାଯିବ ନାହିଁ ।

ବିକୃତିର ଦ୍ୱିତୀୟ ସଂଜ୍ଞାସୂଚକ ଉପାଦାନଟି ହେଉଛି ବ୍ୟକ୍ତିଗତ ଯନ୍ତ୍ରଣା ଓ ମାନସିକ ଚାପ ସୃଷ୍ଟିକଲେ ତାହା ଅସ୍ୱାଭାବୀ ବୋଲି ବିଚାର କରାଯାଏ । ବହୁ ମାନସିକ ବିକୃତି ପରିପ୍ରେକ୍ଷୀରେ ଏହା ପ୍ରଯୁଜ୍ୟ । ମାତ୍ରାଧିକ ଉଦ୍‌ବେଗ (Anxiety) ଓ ବିଷାଦ

(depression) ଅନୁଭବ କରୁଥିବା ବ୍ୟକ୍ତିବିଶେଷ ମାନସିକ ଯନ୍ତ୍ରଣାର ଅଧିକାରୀ । ମାତ୍ର ସମାଜ-ବିରୋଧୀ ବ୍ୟକ୍ତିତ୍ୱ-ବିକୃତି ଦର୍ଶାଉଥିବା ପିଲା ବା ବଡମାନେ ଆଇନଭଙ୍ଗ କରନ୍ତି ଏବଂ ଏମାନଙ୍କର ଅପରାଧବୋଧ ନଥାଏ । ସୁତରାଂ ଯନ୍ତ୍ରଣା ଅନୁଭବ ମଧ୍ୟ ନଥାଏ । ଏ ଦୃଷ୍ଟିରୁ ବ୍ୟକ୍ତିଗତ ଯନ୍ତ୍ରଣାକୁ ଏକ ନିର୍ଭରଯୋଗ୍ୟ ସୂଚକ ରୂପେ ଗ୍ରହଣ କରିବାରେ ବାଧା ରହିଛି ।

ତୃତୀୟତଃ ଅକ୍ଷମତା ବା ସାମର୍ଥ୍ୟହୀନତାକୁ (Disability) ମାନସିକ ବିକୃତିର ଭିତ୍ତିଭୂମି ରୂପେ ଗ୍ରହଣ କରିଛନ୍ତି । ଉଦାହରଣ ସ୍ୱରୂପ, ନିଶାଦ୍ରବ୍ୟଜନିତ ବିକୃତି ଫଳରେ ବ୍ୟକ୍ତିଗତ, ସାମାଜିକ ଓ ବୃତ୍ତିଗତ ସମସ୍ୟା ଉପୁଜିଥାଏ । ତା'ର କାର୍ଯ୍ୟଦକ୍ଷତା ହ୍ରାସ ପାଏ ଏବଂ ପାରିବାରିକ ଅଶାନ୍ତି ମଧ୍ୟ ବୃଦ୍ଧିପାଏ । ସେହିପରି ଅହେତୁକ ଭୟ ମଧ୍ୟ କେତେକ ଧରଣର ଅକ୍ଷମତା ଓ ଅସାମର୍ଥ୍ୟ ଗଠନ କରେ । ବ୍ୟୋମଜାନରେ ଦୂରସ୍ଥାନକୁ ଯିବା ପାଇଁ ଭୟ କରୁଥିବା ବ୍ୟକ୍ତି ହୁଏତ ଚାକିରି ହରାଏ କିମ୍ବା ପଦୋନ୍ନତି ହରାଏ । ଏଠାରେ ମଧ୍ୟ ଲକ୍ଷ୍ୟକରିବାର କଥା ଯେ ଏପରି ସଂଜ୍ଞା ସବୁପ୍ରକାର ବିକୃତିକୁ ପରିସରଭୁକ୍ତ କରିପାରି ନାହିଁ । ଉଦାହରଣ ସ୍ୱରୂପ, ଭିନ୍ନଲିଙ୍ଗୀ ପୋଷାକପତ୍ର ପିନ୍ଧି ଆମୋଦ ଅନୁଭବ କରୁଥିବା ବ୍ୟକ୍ତି ହୁଏତ ଗୋପନୀୟ ଭାବରେ ଏହା କରି ଯୌନସୁଖ ଅନୁଭବ କରେ କିନ୍ତୁ ତାର ଗତାନୁଗତିକ ପେସାଗତ ଓ ପାରିବାରିକ ଜୀବନକୁ ସେପରି କିଛି ସମସ୍ୟା ଉପୁଜି ନଥାଏ ।

ଚତୁର୍ଥତଃ କେତେକ ବିଶେଷଜ୍ଞଙ୍କ ମତରେ ସାମାଜିକ ସାଂସ୍କୃତିକ ମାନଦଣ୍ଡ (Norms) ହେଉଛି ମୂଳ ନିର୍ଦ୍ଧାରକ । ଏପରି ମାନଦଣ୍ଡର ବିରୁଦ୍ଧାଚରଣ କରୁଥିବା ମନୋବୃତ୍ତି ବ୍ୟକ୍ତିତ୍ୱ ଓ ବ୍ୟବହାରକୁ ବିକୃତି ସମ୍ପନ୍ନ କୁହାଯିବ । ଏ ସଂଜ୍ଞାର କେତୋଟି ଉପଯୋଗୀ ଦିଗ ରହିଛି । ଏହି ସଂଜ୍ଞା ଅନୁଯାୟୀ ସମାଜ-ବିରୋଧୀ ବ୍ୟକ୍ତିତ୍ୱ ଦର୍ଶାଉଥିବା ଲୋକମାନେ ବିକୃତି-ସମ୍ପନ୍ନ । ପୁଣି ଉନ୍ମତ୍ତ ବ୍ୟବହାର ଦର୍ଶାଉଥିବା ଲୋକମାନେ ମଧ୍ୟ ଅସ୍ୱାଭାବୀ । ସଂଜ୍ଞାର ଗୋଟିଏ ବଳିଷ୍ଠ ଦିଗ ହେଉଛି ସଂସ୍କୃତିଗତ ଆପେକ୍ଷିକତା (Cultural Relativism) । ଏକ ନିର୍ଦ୍ଦିଷ୍ଟ ବ୍ୟବହାର ଗୋଟିଏ ସମାଜ-ସଂସ୍କୃତିରେ ଗ୍ରହଣୀୟ ହେବା ସ୍ଥଳେ ଅନ୍ୟତ୍ର ବର୍ଜନୀୟ ହୋଇପାରେ । ସୁତରାଂ ସଂଜ୍ଞାରେ କିଛିମାତ୍ରାରେ ଆପେକ୍ଷିକତା ରହିବା ସ୍ୱାଭାବିକ । ସାମାଜିକ-ସାଂସ୍କୃତିକ ମାନଦଣ୍ଡ ପରିପ୍ରେକ୍ଷୀରେ ଅପରାଧୀ ଓ ଦେହଜୀବୀ ବ୍ୟକ୍ତିବିଶେଷଙ୍କ ବ୍ୟବହାର ସାମାଜିକ ମାନଦଣ୍ଡର ବହିର୍ଭୁକ୍ତ । କିନ୍ତୁ ଏମାନଙ୍କୁ ବିକୃତିସମ୍ପନ୍ନ କୁହାନଯାଇ ଅନ୍ୟପ୍ରକାରେ ବିଚାର କରାଯାଏ ।

ସ୍ଥୂଳତଃ ମାନସିକ ବିକୃତିର ସର୍ବସ୍ୱୀକୃତ ଏକମାତ୍ର ସଂଜ୍ଞା ନାହିଁ । କୌଣସି ବିକୃତିକୁ ଚିହ୍ନିଟ କରିବା ସମୟରେ ମନୋବିଜ୍ଞାନୀ ଓ ମନୋଚିକିତ୍ସକମାନେ ଏକାଧିକ ଉପାଦାନର

ବିଚାର କରିଛନ୍ତି । ଗୋଟିଏ ପ୍ରକାର ବିକୃତିରେ ମାନଦଣ୍ଡର ସ୍ଖଳନ ଅଧିକ ସୁସ୍ପଷ୍ଟ ହେବା ସ୍ଥଳେ ଅନ୍ୟ ବିକୃତିରେ ବ୍ୟକ୍ତିଯନ୍ତ୍ରଣାର ପରିପ୍ରକାଶ ଅଧିକ ଦୃଷ୍ଟିଗୋଚର ହୁଏ । ଏକ ସାମଗ୍ରିକ ଦୃଷ୍ଟିଭଙ୍ଗୀ ନେଇ ମାନସିକ ବିକୃତିର ସଂଜ୍ଞାକରଣ ଗ୍ରହଣ କରିବାକୁ ହେବ ଏବଂ ତଦନୁସାରେ ବିକୃତି ସମ୍ପନ୍ନ ବ୍ୟକ୍ତିଙ୍କୁ ଚିହ୍ନଟ କରିବାକୁ ହେବ ।

ମାନସିକ ବିକୃତିର ନିରାକରଣ ଓ ଚିକିତ୍ସାର ଆଲୋଚନା ପୂର୍ବରୁ ଏହାର ପ୍ରକାରତା ଓ ଶ୍ରେଣୀବିଭାଗ ସଂପର୍କରେ ସୂଚନା ଆବଶ୍ୟକ । ମାନସିକ ଚିକିତ୍ସାଳୟରେ ସାଧାରଣତଃ ତିନିପ୍ରକାର ସ୍ୱାସ୍ଥ୍ୟବିଶେଷଜ୍ଞ କାର୍ଯ୍ୟକରନ୍ତି । ପ୍ରଥମ ଧରଣର ବିଶେଷଜ୍ଞଙ୍କୁ ମନୋଚିକିତ୍ସକ କୁହାଯାଏ । ଏମାନେ ଚିକିତ୍ସାବିଜ୍ଞାନରେ ଡିଗ୍ରୀ (M.B.B.S) ହାସଲ କଲାପରେ ମାନସିକ ରୋଗ ସଂପର୍କରେ ବିଶେଷଜ୍ଞାନ (Specialization) ଆହରଣ କରିଥାନ୍ତି । ଅନ୍ୟତମ ବିଶେଷଜ୍ଞ ହେଉଛନ୍ତି ମାନସିକ ବିକୃତି ସଂପର୍କରେ ବିଶେଷଜ୍ଞାନ ହାସଲ କରିଥିବା ମନୋବିଜ୍ଞାନୀ (Clinical psychologist) । ମନୋଚିକିତ୍ସକମାନେ ଔଷଧପତ୍ର ଓ ଡାକ୍ତରୀ ଚିକିତ୍ସା ମାଧ୍ୟମରେ ସମସ୍ୟାର ସମାଧାନ କରିବା ସ୍ଥଳେ ମନୋବିଜ୍ଞାନୀମାନେ ବ୍ୟକ୍ତିର ତ୍ରୁଟିପୂର୍ଣ୍ଣ ଚିନ୍ତନଶୈଳୀ ଓ ବ୍ୟବହାରର ପରିବର୍ତ୍ତନ ପାଇଁ ଉଦ୍ୟମ କରନ୍ତି । ଏମାନଙ୍କ ସହିତ ମାନସିକ ସ୍ୱାସ୍ଥ୍ୟକେନ୍ଦ୍ରରେ କିଛି ସମାଜକର୍ମୀ (Social workers) ମଧ୍ୟ ଥାଆନ୍ତି । ବିକୃତି ସମ୍ପନ୍ନ ଲୋକର ସମସ୍ୟା କିଛିମାତ୍ରାରେ ସୁଧାରିବା ପରେ ଲୋକଟି ପରିବାର କିମ୍ବା ନିଜର ଗୋଷ୍ଠୀକୁ ଫେରିଯାଏ । ଫେରିବାପରେ ତା'ର ପୁନର୍ବସତି ତଦାରଖ କରିବା ପାଇଁ ଏବଂ ସାମୟିକ ପରାମର୍ଶ ଦେବା ପାଇଁ ଏପରି ସ୍ୱାସ୍ଥ୍ୟକର୍ମୀ କାର୍ଯ୍ୟକରନ୍ତି । ଲକ୍ଷ୍ୟ କରିବାର କଥା ଯେ ସ୍ୱାସ୍ଥ୍ୟସେବାର କାର୍ଯ୍ୟକ୍ରମ ଏକ ସାମୂହିକ ଉଦ୍ୟମ ଆବଶ୍ୟକ କରେ । ସମସ୍ୟାବିଜଡିତ ବିକୃତି ସମ୍ପନ୍ନ ବ୍ୟକ୍ତିଟି କେଉଁ ପର୍ଯ୍ୟାୟରେ ରହିଛି ତାହା ଉପରେ ନର୍ଭର କରି ମନୋଚିକିତ୍ସକ ଓ ମନୋବିଜ୍ଞାନୀଙ୍କ ଭୂମିକା ମୁଖ୍ୟ କିମ୍ବା ଗୌଣ ହୋଇଥାଏ ।

ମାନସିକ ବିକୃତିସବୁକୁ କିପରି ବର୍ଗୀକରଣ କରାଯିବ, ସେ ଦିଗରେ ବହୁ ପ୍ରୟାସ ହୋଇଛି । ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ (WHO) ୧୯୪୮ ମସିହାରେ ମାନସିକ ରୋଗ ସବୁକୁ ଏକ ର୍ବଗୀକରଣ କରିଥିଲା । ଏହି କାର୍ଯ୍ୟକ୍ରମରେ ଯୁକ୍ତରାଷ୍ଟ୍ର ଆମେରିକାର ମନୋଚିକିତ୍ସକମାନେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥିଲେ ମଧ୍ୟ ୧୯୫୨ ମସିହାରେ ଏମାନେ ନିଜର ଏକ ମାର୍ଗଦର୍ଶିକା ପୁସ୍ତକ (Diagnostic and Statistical Manual ବା DSM) ପ୍ରସ୍ତୁତ କଲେ । ବର୍ତ୍ତମାନ ଏହା ପଞ୍ଚମ ଥର ପାଇଁ ସଂଶୋଧିତ ଓ ପରିମାର୍ଜିତ ହୋଇଛି । ସମଗ୍ର ବିଶ୍ୱରେ ଅଧିକାଂଶ ମନୋଚିକିତ୍ସକ ଓ ମନୋବିଜ୍ଞାନୀ ଏହି ମାର୍ଗଦର୍ଶିକା ପୁସ୍ତକ (DSM-V) ଅନୁଯାୟୀ ମାନସିକ ବକୃତିର ଶ୍ରେଣୀବିଭାଗ କରନ୍ତି ।

ଏହାର ସବିଶେଷ ବର୍ଣ୍ଣନା ଜଟିଳ ହେଲେ ମଧ୍ୟ ଗୋଟିଏ ମୌଳିକ ଦିଗ ସ୍ପଷ୍ଟ କରାଯାଇପାରେ । ମାନସିକ ବିକୃତିକୁ ମୁଖ୍ୟତଃ ଦୁଇଟି ଭାଗରେ ବିଭକ୍ତ କରାଯାଇପାରେ : ପରିମାଣାତ୍ମକ ଓ ଗୁଣାତ୍ମକ ବିପର୍ଯ୍ୟୟ ।

ପରିମାଣାତ୍ମକ (Quantitative) ବିପର୍ଯ୍ୟୟକୁ ଆଡପାଗଳାମି (Neurosis) କୁହାଯାଏ ଏବଂ ଏପରି ବିକୃତି ଦେଖାଉଥିବା ଲୋକକୁ ଆଡପାଗଳ କୁହାଯାଏ । ଏହାକୁ ପରିମାଣାତ୍ମକ କହିବାର ତାତ୍ପର୍ଯ୍ୟ ହେଉଛି ଯେ ଏପରି ସମସ୍ୟା ଆମ ସମସ୍ତଙ୍କର ଥାଏ; କିନ୍ତୁ ବିକୃତିସମ୍ପନ୍ନ ଲୋକର ମାତ୍ରାଧିକ ପରିମାଣରେ ରହିଥାଏ । ଉଦାହରଣ ସ୍ୱରୂପ, ଉତ୍କଣ୍ଠା ବା ଉଦ୍‌ବେଗ ଆମ ସମସ୍ତଙ୍କର ରହିଛି । ଅଥଚ ଏହାର ପରିମାଣ ସୀମିତ ହୋଇଥିବାରୁ ଆମେ ଏହାର ମୁକାବିଲା କରି ସ୍ୱାଭାବିକ ଜୀବନଯାତ୍ରା ଅବ୍ୟାହତ ରଖୁଥାଉ । ଅନେକ ପକ୍ଷରେ ବିକୃତି ସମ୍ପନ୍ନ ବ୍ୟକ୍ତିର ଉଦ୍‌ବେଗ ଅଚଳ ଅବସ୍ଥା ସୃଷ୍ଟିକରେ । ଏପରି ବ୍ୟକ୍ତି ଭଲରୂପେ ଖାଇପାରେ ନାହିଁ କି ଶୋଇପାରେ ନାହିଁ । ଦୈନନ୍ଦିନ ଜୀବନ ବିପର୍ଯ୍ୟସ୍ତ ହୁଏ । ସେହିପରି ଭୟ ସମସ୍ତଙ୍କର ରହିଛି । ଅନ୍ଧାର ସ୍ଥାନ, ଉଚ୍ଚ ସ୍ଥାନ, ଜନଗହଳି ଓ ଏହିପରି ପରିବେଶ ପ୍ରତି ଭୟ ରହିବା ସ୍ୱାଭାବିକ । ମାତ୍ର ବିକୃତି ସମ୍ପନ୍ନ ଲୋକର ଅହେତୁକ ଭୟର (Phobia) ପରିମାଣ ମାତ୍ରାଧିକ । ଝିଟିପିଟି ଦେଖି ସାପ ପରି ଭୟ ପାଇ ପଳାଇବା ଏ ଧରଣର ଅହେତୁକ ଭୟ । ଉଦ୍‌ବେଗ ଓ ଅହେତୁକ ଭୟ ପରି ଅନ୍ୟ କେତେକ ପରିମାଣାତ୍ମକ ବିକୃତି ରହିଛି ।

ଅନ୍ୟ ଧରଣର ବିକୃତିଟି ହେଉଛି ଗୁଣାତ୍ମକ (Qualitative) । ବିକୃତିସମ୍ପନ୍ନ ଲୋକର ଭାବ, ଭାବନା ଓ ଆଚରଣରେ ଗୁଣାତ୍ମକ ତ୍ରୁଟିପୂର୍ଣ୍ଣ ଅବସ୍ଥା ପରିଦୃଷ୍ଟ ହୁଏ । ଏହାକୁ ବିକୃତି ବା ବିପର୍ଯ୍ୟୟ କୁହାଯାଏ ଏବଂ ଏପରି ଅସ୍ୱାଭାବିକତା ଦର୍ଶାଉଥିବା ଲୋକକୁ ପାଗଳ କୁହାଯାଏ । ଏହି ତାଲିକାରେ ବହୁ ମାନସିକ ରୋଗ ଅନ୍ତର୍ଭୁକ୍ତ । ତେବେ ଏଠାରେ ଗୋଟିଏ ରୋଗର ଉଦାହରଣ ଦିଆଯାଇପାରେ । ତାହା ହେଉଛି ଚିତ୍ତଭ୍ରଂଶୀ ବାତୁଳତା ବା ସ୍କିଜୋଫ୍ରେନିୟା (Schizophrenia) । ଏପରି ବାତୁଳତାର ଶରବ୍ୟ ହୋଇଥିବା ଲୋକମାନେ ନିଜ ପରିବେଶର ମୂଲ୍ୟାୟନ କରିପାରନ୍ତି ନାହିଁ । ହୁଏତ ସବୁବେଳେ ସନ୍ଦେହୀ ମନୋଭାବ ପୋଷଣ କରନ୍ତି । ଅନ୍ୟମାନେ ତାଙ୍କର ଅନିଷ୍ଟ ଚିନ୍ତାକରୁଛନ୍ତି କିମ୍ବା ମାରିଦେବା ପାଇଁ ଯୋଜନା କରୁଛନ୍ତି, ଏପରି ଦୁଶ୍ଚିନ୍ତା ତାଙ୍କୁ ଆବୋରି ବସେ । ଫଳତଃ ଭୀତି ମଧ୍ୟରେ ଜୀବନ ଯାପନ କରନ୍ତି; ସଂସର୍ଗହୀନ ଜୀବନ କାଟନ୍ତି । ବାସ୍ତବ ଜଗତ ବିଷୟରେ ପୂରାପୂରି ଭ୍ରାନ୍ତ ଧାରଣା ରହିଥାଏ । ଏହା ଏକ ବିଶେଷ ଧରଣର ବିକୃତି ।

## ବିକୃତିର କାରଣ ଓ ନିରାକରଣ

ମାନସିକ ବିକୃତିର ନିରାକରଣ ଆଲୋଚନା କରିବା ପରିପ୍ରେକ୍ଷୀରେ ଦୁଇଟି କଥା ମନେରଖିବାକୁ ହେବ । ପ୍ରଥମତଃ ଏହା ସର୍ବସ୍ୱୀକୃତଯେ ପ୍ରତିଟି ମାନସିକ ବିକୃତିର  କାରଣ ଓ ନିରାକରଣର

ସ୍ୱାତନ୍ତ୍ର୍ୟ ରହିଛି । ଶାରୀରିକ ରୋଗସବୁର କାରଣ ଓ ପ୍ରତିକାର ଭିନ୍ନ ହେଲାପରି ପ୍ରତିଟି ମାନସିକ ବିକୃତିର କାରଣ ଓ ନିରାକରଣ ପୃଥକ୍ ହୋଇଥାଏ । ଗୋଟିଏ ପ୍ରବନ୍ଧର କଳେବର ମଧ୍ୟରେ ପୃଥକ୍ ପୃଥକ୍ ଆଲୋଚନା ସମ୍ଭବ ନୁହେଁ । ସୁତରାଂ କେବଳ ସାମଗ୍ରିକ ଦୃଷ୍ଟିକୋଣରୁ କାରଣ ଓ ନିରାକରଣ ଆଲୋଚନା କରାଯାଉଛି ।

ଦ୍ୱିତୀୟତଃ କାରଣ ଓ ନିରାକରଣ ସ୍ୱଷ୍ଟ ଧାରଣା ପାଇଁ ସବୁପ୍ରକାର ମାନସିକ ରୋଗ ମଧ୍ୟରେ ଥିବା ପାର୍ଥକ୍ୟ ନ ଜାଣିଲେ ମଧ୍ୟ ପାଗଳାମି (Psychosis) ଓ ଆଉପାଗଳାମି (Neurosis) ମଧ୍ୟରେ ଥିବା ଭିନ୍ନତା (ଗୁଣାତ୍ମକ ବନାମ ପରିମାଣାତ୍ମକ) ବିଷୟରେ ସଚେତନ ରହିବାକୁ ହେବ । ମନେ ରଖିବାକୁ ହେବ ଯେ ଏ ଦୁଇପ୍ରକାର ଅସ୍ୱାଭାବୀ ବ୍ୟବହାରର ଉତ୍ପତ୍ତି ଓ ବିଲୋପ ପ୍ରକ୍ରିୟାରେ ଭିନ୍ନ ଭିନ୍ନ ଉପାଦାନ ସକ୍ରିୟ ରହିଥାଏ ।

କାରଣସବୁକୁ ଦୁଇଟି ପର୍ଯ୍ୟାୟରେ ଆଲୋଚନା କରାଯାଇପାରେ । ମାନସିକ ବିକୃତିର କେତେକ କାରଣ ପୂର୍ବବାହିତ (predisposing) ଅବସ୍ଥାରେ ରହିଥାଏ । ସମ୍ଭାବ୍ୟ ବିକୃତି ହିସାବରେ ଏହା ବ୍ୟକ୍ତି ମଧ୍ୟରେ ରହିଥାଏ । ବଂଶାନୁଗତ (hereditary) ଏ ଧରଣର ଏକ ସମ୍ଭାବ୍ୟ ଆଶଙ୍କା । ଅନ୍ୟଟି ହେଉଛି ପରିବେଶଗତ (precipitating) । ଖରାପ ବାତାବରଣ (ଯଥା : ପରିବେଶଗତ ମାନସିକ ଚାପ) ବ୍ୟକ୍ତିମଧ୍ୟରେ ଲୁଚିରହିଥିବା ସମ୍ଭାବ୍ୟ ମାନସିକ ରୋଗକୁ ସକ୍ରିୟ କରେ । ଏହା ଏକ ପ୍ରକାଶିତ ରୂପରେଖ ନିଏ । ମୋଟଉପରେ ଆଭ୍ୟନ୍ତରୀଣ ସମ୍ଭାବନା ଓ ବାର୍ଦ୍ଧକ୍ୟ ତ୍ରୁଟିପୂର୍ଣ୍ଣ ପରିବେଷ୍ଟନୀର ମିଳନ ହିଁ ବିକୃତିର ମୁଖ୍ୟ କାରଣ ।

ପୂର୍ବରୁ ସୂଚନା ଦିଆଯାଇଛି ଯେ ପ୍ରତିଟି ମାନସିକ ବିକୃତିର କାରଣ ଅନ୍ୟ ବିକୃତିଠାରୁ ପୃଥକ୍ । ତଥାପି ମୋଟାମୋଟି ଭାବରେ କାରଣ ଓ ନିରାକରଣର ଏକ ସ୍ଥୁଳ ରୂପରେଖ ଦିଆଯାଇପାରେ ।

ଜୀବତାତ୍ତ୍ୱିକ କାରଣ (Biological factors) : ମାନସିକ ବିକୃତିକୁ ଜୀବତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାର କଲେ କୁହାଯିବ ଯେ ଶରୀରର କେତେକ ଗଠନଗତ କିମ୍ବା କାର୍ଯ୍ୟଗତ ବିପର୍ଯ୍ୟୟ ମାନସିକ ବିକୃତିର କାରଣ ହୋଇପାରେ । ଜିନ୍ ସ୍ତରରେ କେତେକ ଅସ୍ୱାଭାବିକତା ଏହାର ଏକ ବଡ଼ ଉଦାହରଣ । ଗବେଷଣାରୁ ଦେଖାଯାଇଛି ଯେ ଜିନ୍ ସ୍ତରୀୟ ତ୍ରୁଟିବିଚ୍ୟୁତି ଫଳରେ ଚିତ୍ତଭ୍ରଂଶୀ ବାତୁଳତା , ବିଷାଦ ଓ ମାନସିକ ସ୍ୱଳ୍ପତାର ସମ୍ଭାବନା ବୃଦ୍ଧିପାଏ ।

ଜିନ୍‌ଗତ ତ୍ରୁଟିବିଚ୍ୟୁତିର ଏକ ମୁଖ୍ୟ ପରିପ୍ରକାଶ ହେଉଛି କ୍ରୋମ୍‌ଜୋମର ଗଠନ କିମ୍ବା ସଂଖ୍ୟାକୁ ଭିତ୍ତି କରି ସୃଷ୍ଟି ହେଉଥିବା ଅସ୍ୱାଭାବିକତା । ବାମନତ୍ୱ ବା ଡାଉନ ଲକ୍ଷଣ ଏ

ଧରଣର ଏକ ମାନସିକ ବିକୃତି । ମଣିଷ ଶରୀରର ପ୍ରତିଟି କୋଷର ୨୩ଟି ଯୁଗ୍ମ କ୍ରୋମଜୋମ୍ ରହିଥାଏ । ଏହି ୪୬ଟି କ୍ରୋମ୍‌ଜୋମ ମଧ୍ୟରୁ ୨୩ଟି ପିତା ଓ ୨୩ଟି ମାତାଙ୍କଠାରୁ ଆସିଥାଏ । ଏ ଏକ ସ୍ୱାଭାବିକ ଅବସ୍ଥା । ମାତ୍ର ଡାଉନ୍ ଲକ୍ଷଣ ଥିବା ପିଲାର ୨୧ ନମ୍ବର କ୍ରୋମ୍‌ଜୋମ୍‌ରେ ଦୁଇଟି କ୍ରୋମଜୋମ୍ ଯୁଗ୍ମ ଭାବରେ ନ ରହି ଗୋଟିଏ କ୍ରୋମଜୋମ୍ ଅଧିକା ରହିଥାଏ । ଏପରି ଏକ ବିଚ୍ୟୁତିରୁ ମସ୍ତିଷ୍କର କାର୍ଯ୍ୟକଳାପରେ କେତେକ ବିପର୍ଯ୍ୟୟ ସୃଷ୍ଟି ହୁଏ ।

ପ୍ରତିଟି ଜିନ୍ ମାନବୀୟ ଗୁଣର ବାହାକ । ପ୍ରାୟ ୬୦ ପ୍ରତିଶତ ମସ୍ତିଷ୍କର ନିର୍ଦ୍ଦିଷ୍ଟ କାର୍ଯ୍ୟ ସହିତ ସମ୍ପୃକ୍ତ । ବିଶେଷଜ୍ଞମାନେ କୁହନ୍ତି ଯେ ଜିନ୍‌ଗତ ତ୍ରୁଟିବିଚ୍ୟୁତି ଫଳରେ ପ୍ରାୟ ୪୦୦୦ ରୋଗର ଉଦ୍‌ଭବ ହେଉଛି । ଜିନ୍‌ବିଶେଷଜ୍ଞମାନେ ଜିନ୍‌ସବୁର ଏକ ମାନଚିତ୍ର ପ୍ରସ୍ତୁତ କରି କେଉଁ ଜିନ୍ କେଉଁ ରୋଗର କାରଣ ତାହା ନିର୍ଦ୍ଧାରଣ କରିବାର ପ୍ରୟାସ କରୁଛନ୍ତି । କିନ୍ତୁ ଏ ଦିଗରେ ପୂର୍ଣ୍ଣ ସଫଳତା ମିଳିନାହିଁ । ଅନ୍ୟ ଗୋଟିଏ ଦିଗ ହେଉଛି ଆଧୁନିକ ଜେନୋମ୍ (Genome) ଗବେଷଣା । ବ୍ୟକ୍ତିର ସମସ୍ତ ଜିନ୍‌ର ଏକ ପୂର୍ଣ୍ଣାଙ୍ଗ ମାନଚିତ୍ର ହେଉଛି ଜେନୋମ୍ । ସାଗର ମଧ୍ୟରେ ଜଳଯାତ୍ରା କରୁଥିବା କର୍ମଚାରୀମାନଙ୍କର ଦିଗଦର୍ଶନକାରୀ ଯୋଜନାବଦ୍ଧ ମାନଚିତ୍ରର ସମପର୍ଯ୍ୟାୟଭୁକ୍ତ । କହିବା ଅନାବଶ୍ୟକ ଯେ ଜେନୋମ୍ ଗବେଷଣା ସଫଳ ହେବାପରେ କେତେକ ରୋଗ ନୁହେଁ, କେଉଁ ଅକ୍ଷମତା କେଉଁ ଜିନ୍ ସହିତ ସମ୍ପୃକ୍ତ ଏବଂ କେଉଁ ସାମର୍ଥ୍ୟ କେଉଁ ଜିନ୍ ସହ ସଂଶ୍ଳିଷ୍ଟ, ତାହା ପରିଷ୍କାର ଜାଣିହେବ ।

ଅବଶ୍ୟ କୌଣସି ଜିନ୍ ଏକ ପୃଥକୀକୃତ ଦ୍ୱୀପ ପରି କାର୍ଯ୍ୟ କରିନଥାଏ । ଅନ୍ୟସବୁ ଜିନ୍‌ର କ୍ରିୟା , ପାରିପାର୍ଶ୍ୱିକ ଅବସ୍ଥା ଜିନ୍‌ର ପ୍ରଭାବକୁ ପରିବର୍ତ୍ତନ କରିପାରେ । ଏବେ ଅତ୍ୟାଧୁନିକ ପ୍ରକ୍ରିୟାରେ ଜିନ୍‌ଚିକିତ୍ସା ମାଧ୍ୟମରେ DNA ସଜ୍ଜୀକରଣକୁ ପରିବର୍ତ୍ତନ କରି କେତେକ ଆଚରଣଗତ ପରିବର୍ତ୍ତନ ଅଣାଯାଇପାରୁଛି । ଏପରି ସଂପରୀକ୍ଷଣ ସଫଳ ହେଲେ କେବଳ ମାନସିକ ବିକୃତିର ଜୀବତାତ୍ତ୍ୱିକ ଭିତ୍ତିଭୂମି ବୁଝିବା ସମ୍ଭବପର ହେବନାହିଁ, ଜିନ୍‌ଚିକିତ୍ସା ମାଧ୍ୟମରେ କେତେକ ମାନସିକ ରୋଗର ବିଲୋପକରଣ ମଧ୍ୟ ସମ୍ଭବ ହେବ ।

ବଂଶାନୁକୃତି (heredity) ମାଧ୍ୟମରେ ପୂର୍ବବଂଶୀୟ ବା ପିତାମାତାଙ୍କଠାରୁ ଆସିଥିବା ବିକୃତିର ପ୍ରମାଣ ପାଇଁ ସାଧାରଣତଃ ଯମଜ ଅନୁପାତର ଆଶ୍ରୟ ନିଆଯାଏ । ଦୁଇପ୍ରକାର ଯମଜ ଥାଆନ୍ତି: ସମରୂପୀ ଯମଜ ଓ ଭାତୃରୂପୀ ଯମଜ । ସମରୂପୀ ଯମଜ କ୍ଷେତ୍ରରେ ଗୋଟିଏ ଡିମ୍ବାଣୁରୁ ଦୁଇଟି ଭ୍ରୂଣଶିଶୁ ଗଠିତ ହୁଅନ୍ତି । ଅନ୍ୟ ପକ୍ଷର ଦୁଇଟି ଡିମ୍ବାଣୁରୁ ଦୁଇଟି ଭାତୃରୂପୀ ଯମଜ ଜନ୍ମ ନିଅନ୍ତି । ସୁତରାଂ ଜିନ୍ ଓ କ୍ରୋମଜୋମ୍‌ର ସମାନତା ସମରୂପୀ ଯମଜ କ୍ଷେତରେ (ଭାତୃରୂପୀ ଯମଜ ତୁଳନାରେ) ଅଧିକ ହୋଇଥାଏ ।

ବହୁ ମାନସିକ ରୋଗ କ୍ଷେତ୍ରରେ ଯମଜଙ୍କ ମଧ୍ୟରେ ବିକୃତିର ସାଦୃଶ୍ୟ ଦେଖାଯାଇଛି । ଉଦାହରଣ ସ୍ୱରୂପ ସମରୂପୀ ଯମଜମାନଙ୍କ କ୍ଷେତ୍ରରେ ଶୀଜୋଫ୍ରେନିୟାର

ସମ୍ଭାବ୍ୟ ପରିମାଣ ଖୁବ୍ ବେଶି । ଭାତୃରୂପେ ଯମଜ କ୍ଷେତ୍ରରେ ବିକୃତିର ସାମଞ୍ଜସ୍ୟ ଅପେକ୍ଷାକୃତ କମ୍ । ପୁଣି ଯମଜମାନଙ୍କ ମଧ୍ୟରୁ ଦୁହେଁ ପୁତ୍ର କିମ୍ବା ଦୁହେଁ କନ୍ୟା ନ ହୋଇ ଜଣେ ପୁତ୍ର ଓ ଅନ୍ୟ ଜଣେ କନ୍ୟା ହୋଇଥିଲେ, ବିକୃତି ସାଦୃଶ୍ୟ ଆହୁରି ବେଶି କମିଯାଏ । ଲକ୍ଷ୍ୟ କରିବାର କଥା ଯେ ସମରୂପୀ ଯମଜଙ୍କ ମଧ୍ୟରୁ ଜଣେ ବିକୃତି ଗ୍ରସ୍ତ ହେଲେ ଅନ୍ୟଜଣଙ୍କର ଉଚ୍ଚ ସମ୍ଭାବନା ବଂଶାନୁଗତିର ଭୂମିକାକୁ ସ୍ୱୀକୃତି ଦେଉଛି । ମାତ୍ର ଏପରି ସମ୍ଭାବନା ୧୦୦ ପ୍ରତିଶତ ହେଉ ନଥିବାରୁ ବଂଶାନୁଗତ ବ୍ୟତୀତ ପାରିପାର୍ଶ୍ୱିକ ଉପାଦାନର ଭୂମିକାକୁ ସମର୍ଥନ ମଧ୍ୟ କରାଯାଉଛି ।

ମାନସିକ ବିକୃତିର ପରିପ୍ରେକ୍ଷୀରେ ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ହେଉଛି ମସ୍ତିଷ୍କର ଗଠନ ଓ କାର୍ଯ୍ୟଜନିତ ତ୍ରୁଟିବିଚ୍ୟୁତି, ସୁସ୍ଥ ଶରୀରରେ ମସ୍ତିଷ୍କ ନିରାପଦରେ ଥାଏ । ଏହାର ଓଜନ ପ୍ରାୟ ଦେଢ଼ କିଲୋ । ଏଥିରେ ପ୍ରାୟ ୧୦୦ ବିଲିୟନ ସ୍ନାୟୁକୋଷ ଥାଆନ୍ତି । ପ୍ରାପ୍ତ ବୟସ୍କ ହେବା ପରେ ଓଜନ ଧୀରେ ଧୀରେ କମେ । କେତେକ ଅକ୍ଷମତା ପ୍ରକାଶ ପାଏ । ପୂର୍ବରୁ ବିଶ୍ୱାସ କରାଯାଉଥିଲା ଯେ ଗୋଟିଏ ବୟସର ସୀମାରେଖା ପରେ କ୍ଷୟ ହେଉଥିବା ସ୍ନାୟୁକୋଷ ଆଉ ନୂଆକରି ଗଠିତ ହୁଅନ୍ତି ନାହିଁ । ବର୍ତ୍ତମାନ ଏ ବିଶ୍ୱାସର ପରିବର୍ତ୍ତନ ଘଟିଛି । ବ୍ୟକ୍ତିଙ୍କର ଉନ୍ନତ ଜୀବନଶୈଳୀ ଓ ନିରବଚ୍ଛିନ୍ନ ବୁଦ୍ଧିଦୀପ୍ତ ସୃଜନଶୀଳ କାର୍ଯ୍ୟ ମସ୍ତିଷ୍କରେ ନୂତନ ସ୍ନାୟୁକୋଷ ଗଠନରେ ସହାୟକ ହୁଏ ।

କୌଣସି କାରଣରୁ ମସ୍ତିଷ୍କ ଆଘାତ ପ୍ରାପ୍ତ ହୋଇ କିଛି ଅଂଶ କ୍ଷତିଗ୍ରସ୍ତ ହେଲେ କେତେକ ସମସ୍ୟା ଉପୁଜିବା ସ୍ୱାଭାବିକ । କିନ୍ତୁ ବଡ଼ କଥା ହେଉଛି ମସ୍ତିଷ୍କର କାର୍ଯ୍ୟକଳାପକୁ ନିୟନ୍ତ୍ରଣ କରୁଥିବା ଜୀବରସ ବା ସ୍ନାୟୁ ସଞ୍ଚାରକ (Neurotransmitter) ଏଗୁଡ଼ିକର ସ୍ୱଳ୍ପତା କିମ୍ବା ବହୁଳତା ସମସ୍ୟା ସୃଷ୍ଟିକରେ । ଉଦାହରଣ ସ୍ୱରୂପ, ଡୋପାମାଇନ୍ କମିଗଲେ ପାରକିନସନସ୍ ରୋଗ ହୁଏ । ହାତ ଥରେ ଏବଂ ରୋଗୀର ମାଂସପେଶୀ ଗୁଡ଼ିକ ଟାଣ ହୋଇଯାଏ । ଏପରିକି ଚାଲିବା, କଥା କହିବା ଧୀର ହୋଇଯାଏ । ଆଉ ଗୋଟିଏ ସାଧାରଣ ରୋଗ ମାତ୍ରାଧିକ ସ୍ମରଣ ବିପର୍ଯ୍ୟୟ । ଏଥିରେ ଜୀବରସ Acetyl choline କମିଯାଏ । ଆଲ୍‌ଜେମର୍ ରୋଗର ଏକ ଲକ୍ଷଣ ରୂପେ ସ୍ମରଣ ବିପର୍ଯ୍ୟୟ ପ୍ରକାଶ ପାଇପାରେ । ଲୋକ ନିଜ ଲୋକଙ୍କୁ ଚିହ୍ନି ପାରେ ନାହିଁ । ଆଉ ଗୋଟିଏ ମୁଖ୍ୟ ଜୀବରସ ହେଉଛି ସେରୋଟୋନିନ (Serotonin) ଏହି ଜୀବରସର ସ୍ତରରେ ବିଚ୍ୟୁତି ଘଟିଲେ ବିଷାଦ (depression) ସୃଷ୍ଟି ହୁଏ । ନିୟନ୍ତ୍ରଣର ଅଭାବ ଘଟି ମାତ୍ରାଧିକ ଆକ୍ରମଣାତ୍ମକ ଭାବ ଓ ଉନ୍ମତ୍ତତା ପରିଦୃଷ୍ଟ ହୁଏ । ଏହା ସହଜରେ ଅନୁମେୟ ଯେ ଆଲୋଚିତ ମସ୍ତିଷ୍କଗତ ବିଚ୍ୟୁତି-ସୃଷ୍ଟ ବିକୃତିର ନିରାକରଣ ଓ ଚିକିତ୍ସା ପାଇଁ ଔଷଧ ଉପରେ ହିଁ ନିର୍ଭର କରିବାକୁ ହୁଏ ।

**ପରିବେଶଗତ ଓ ପାରିବାରିକ କାରଣ :** ଶରୀରଗତ ଓ ବଂଶାନୁଗତିର ପ୍ରଚ୍ଛନ୍ନ ସମ୍ଭାବ୍ୟ ପରିଣତି ପ୍ରକାଶିତ ରୂପ ନେଇପାରେ କିମ୍ବା ନନେଇ ମଧ୍ୟ ପାରେ । ବହୁକ୍ଷେତ୍ରରେ ପାରିପାର୍ଶ୍ୱିକ ଓ ପାରିବାରିକ ଦୁଃସ୍ଥିତ ମାନସିକ ବିକୃତି ପ୍ରକାଶ ପାଇବାର କାରଣ ହୁଏ ।

କେଉଁ ପ୍ରକାର ପାରିପାର୍ଶ୍ୱିକ ଦୁଃସ୍ଥିତ କେଉଁ ମାନସିକ ବିକୃତିର କାରଣ ହୁଏ, ତାହା ପୃଥକ୍ ପୃଥକ୍ ଭାବେ ଏଠାରେ ଆଲୋଚନା କରିବା ସମ୍ଭବ ନୁହେଁ । ତଥାପି ସାମଗ୍ରିକ ଭାବରେ କୁହାଯାଇପାରେ ଯେ ମାତ୍ରାଧିକ ମାନସିକ ଚାପ ଅଧିକାଂଶ ବିକୃତିର କାରଣ । ମାନସିକ ଚାପ ବୃଦ୍ଧିପାଇଲେ ବ୍ୟକ୍ତିର ସମନ୍ୱୟଶୀଳତା ଉପରେ ଅଧିକ ଚାପ ପଡେ । ଏପରି ସମୟରେ ଶରୀରରେ କେତେକ ହରମୋନ୍‌ର କ୍ଷରଣ ହୁଏ । ଏହିସବୁ କ୍ଷତିକାରକ ହରମୋନ (ଆଁଡ୍ରେନାଲିନ୍ ଓ କର୍ଟିସଲ) ଶରୀରର ରୋଗପ୍ରତିରୋଧ ଶକ୍ତି କମାଇଦିଏ ଏବଂ କେତେକ ଅସ୍ୱଭାବୀ ବ୍ୟବହାରର କାରଣ ହୁଏ ।

ନିରାକରଣ ପରିପ୍ରେକ୍ଷୀରେ ତିନିଟି ପଦକ୍ଷେପ ଗୁରୁତ୍ୱପୂର୍ଣ୍ଣ । ପ୍ରଥମଟିକୁ ପ୍ରାଥମିକ ପ୍ରତିଷେଧ କୁହାଯାଏ । ସମ୍ଭାବିତ ଦୁର୍ଗତିକୁ ଏଡାଇବା ପାଇଁ ପୂର୍ବରୁ ବିହିତ ପ୍ରତିବିଧାନ ଗ୍ରହଣ କରାଯାଏ । ଉଦାହରଣ ସ୍ୱରୂପ ଜରାୟୁରେ ଥିବା ଭ୍ରୂଣଶିଶୁ ପାଇଁ ସନ୍ତାନସମ୍ଭବା ନାରୀ ପକ୍ଷରେ ଧୂମପାନ କିମ୍ବା ନିଶାଦ୍ରବ୍ୟ ସେବନ କ୍ଷତିକାରକ ହୋଇଥିବାରୁ ଏଥିରୁ ଦୂରରେ ରହିବା ପାଇଁ ପରାମର୍ଶ ଦିଆଯାଏ । ସେହିପରି ଚିକିତ୍ସକମାନେ ସନ୍ତାନସମ୍ଭବା ନାରୀମାନଙ୍କ ପାଇଁ କୌଣସି କାରଣରୁ ଔଷଧପତ୍ର ଦେବା ବେଳେ ଯଥା ସମ୍ଭବ ସତର୍କତା ଅବଲମ୍ବନ କରନ୍ତି । ଔଷଧର କୁପ୍ରଭାବ ଯେପରି ଶିଶୁ ଓ ଜନନୀର ମାନସିକ ସ୍ୱାସ୍ଥ୍ୟକୁ ବିପର୍ଯ୍ୟସ୍ତ ନ କରେ, ସେଦିଗରେ ଦୃଷ୍ଟି ଦିଆଯାଏ ।

ପ୍ରାଥମିକ ପ୍ରତିଷେଧର ଅନ୍ୟ ଗୋଟିଏ ଦୃଷ୍ଟାନ୍ତ ହେଉଛି ପ୍ରାକବୈବାହିକ ଉପଦେଶକ । ଦୁଇଜଣ ଯୁବକ ଯୁବତୀ ବିବାହ ବନ୍ଧନରେ ଆବଦ୍ଧ ହେବା ପରେ ସେମାନଙ୍କ ବୈବାହିକ ଜୀବନର ଗୁଣାତ୍ମକ ଦିଗ ପିଲାର ମାନସିକ ସ୍ୱାସ୍ଥ୍ୟର ନିର୍ଦ୍ଧାରକ ରହିବ । ବୈବାହିକ ଜୀବନ ସୁଖଦ ଓ ଶାନ୍ତିପ୍ରଦ ହେଲେ ପିଲାର ମାନସିକତା ଭଲ ରହିବାର ସମ୍ଭାବନା ବେଶି । ଅନ୍ୟପକ୍ଷରେ ଏହା ସମସ୍ୟା-ବିଜଡିତ ହୋଇପଡିଲେ ପିଲାଉପରେ ମଧ୍ୟ କୁପ୍ରଭାବ ପଡିବ । ଏପରି ସତର୍କ ବାଣୀ ଓ ସମାଧାନର ମାର୍ଗ ପ୍ରାକ୍‌ବୈବାହିକ ଜୀବନରେ ପ୍ରତିଷେଧକ ରୂପେ କାମ କରିଥାଏ ।

ଦ୍ୱିତୀୟ ପ୍ରକାର ପ୍ରତିଷେଧ ବ୍ୟବସ୍ଥାକୁ ଗୌଣ ପ୍ରତିଷେଧକ ବ୍ୟବସ୍ଥା କୁହାଯାଏ, କେତେକ ଜନବସତିରେ କ୍ଷତି ଓ ମାନସିକ ବିପର୍ଯ୍ୟୟର ସମ୍ଭାବନା ଖୁବ୍ ବେଶୀ । କ୍ଷତିର

ସମ୍ଭାବନା ଥିବା କେତେକ ପରିବେଶକୁ ନିମ୍ନମତେ ଚିହ୍ନଟ କରାଯାଇପାରେ:

୧. ପରିବାରରେ ଓ ପରିପାର୍ଶ୍ୱରେ ଉତ୍କଟ ଦାରିଦ୍ର୍ୟ ।

୨. ଘରେ ପିଲାମାନଙ୍କର ସୁରକ୍ଷାର ଅଭାବ ।

୩. ପରିପାର୍ଶ୍ୱରେ ଅସାମାଜିକ ବାତାବରଣ ଓ ସମାଜ ବିରୋଧୀ ଲୋକଙ୍କର ପ୍ରାଦୁର୍ଭାବ ।

୪. ଉଚିତ ଓ ଭଲ ବ୍ୟବହାର ପାଇଁ ବିଦ୍ୟାଳୟରେ ପ୍ରୋତ୍ସାହନର ଅଭାବ ।

୫. ପାରସ୍ପରିକ ବିଦ୍ୱେଷ ଭାବ ।

ଏପରି ପ୍ରତିକୂଳ ପରିବେଶରେ ସବୁ ଶିଶୁ କିମ୍ବା କିଶୋର-କିଶୋରୀ ମାନସିକ ବିପର୍ଯ୍ୟୟ ଦର୍ଶାନ୍ତି ନାହିଁ । ପ୍ରାୟ ୩୦ ପ୍ରତିଶତ ପିଲା ନିଜକୁ କୁପ୍ରଭାବମୁକ୍ତ ରଖି ସାଧାରଣ ପିଲାଙ୍କ ତୁଳନାରେ ଅଧିକ ଅଗ୍ରଗାମୀ ହୋଇପାରନ୍ତି । ତଥାପି ବହୁ ପିଲାଙ୍କର କ୍ଷତିର ସୂଚନା ଥିବାରୁ ପ୍ରତିଷେଧକ ବ୍ୟବସ୍ଥାର ଆବଶ୍ୟକତା ରହିଛି । ଏ କ୍ଷେତ୍ରରେ ଆଦୌ ପୁଷ୍ଟିକର ଖାଦ୍ୟ ପାଉନଥିବା ଜନବସତିର ପିଲାମାନଙ୍କୁ ପୁଷ୍ଟିକର ଖାଦ୍ୟ ଦେବାକୁ ହେବ । ବୌଦ୍ଧିକ ଦୁର୍ବଳତା ଯୋଗୁଁ ସ୍କୁଲ ଛାଡି ଚାଲିନଯିବାର ସମ୍ଭାବନା ଥିବା ପିଲାମାନଙ୍କ ପାଇଁ ସ୍ୱତନ୍ତ୍ର ଶିକ୍ଷାବ୍ୟବସ୍ଥାର ଯୋଜନା କରି ସେମାନଙ୍କ ମନରେ ଆତ୍ମବିଶ୍ୱାସ ଗଠନ କରିବାକୁ ହେବ । ସୁତରାଂ ବିପର୍ଯ୍ୟୟର ସମ୍ଭାବନା ଥିବା ଜନବସତିରେ ଉପଯୁକ୍ତ ଥଇଥାନର ବ୍ୟବସ୍ଥା କରି ପ୍ରତିଷେଧକ ଅବସ୍ଥା ନିର୍ମାଣ କରିବାକୁ ହେବ ।

ପ୍ରାଥମିକ ପ୍ରତିଷେଧ ସମସ୍ୟା ଉପୁଜିବା ପୂର୍ବରୁ ଗ୍ରହଣ କରାଯାଏ ଏବଂ ଗୌଣ ପ୍ରତିଷେଧ ସମସ୍ୟାର ଅଧିକ ଆଶଙ୍କା ଥିବା ସ୍ଥାନରେ ପ୍ରୟୋଗ କରାଯାଏ । ମାତ୍ର ସମସ୍ୟାଟି ପ୍ରକାଶିତ ରୂପ ନେବା ପରେ ଚିକିତ୍ସା ବ୍ୟବସ୍ଥା (ତୃତୀୟ ପଦକ୍ଷେପ) ଗ୍ରହଣ କରାଯାଏ । ମନୋଚିକିତ୍ସକ, ମନୋବିଜ୍ଞାନୀ ଓ ସମାଜକର୍ମୀଙ୍କ ସହାୟତାରେ ରୋଗ ନିବାରଣ ବ୍ୟବସ୍ଥା କ୍ରିୟାଶୀଳ ହୁଏ । ଏପରି ଯୋଜନାର ସଂକ୍ଷିପ୍ତ ସୂଚନା ଦେବା ପୂର୍ବରୁ ପରିବାରର ଭୂମିକା ସଂପର୍କରେ ପଦେ ଦୁଇପଦ କୁହାଯାଇପାରେ ।

ପାରିବାରିକ ଭୂମିକା: ପରିବେଶର ଏକ ମୁଖ୍ୟ ଅଂଶ ହେଉଛି ପରିବାର । ଜିନ୍ ଓ ବଂଶାନୁଗତ ସୂତ୍ରରେ ପିତାମାତା ନିଜର ସନ୍ତାନସନ୍ତତିକୁ ଯେଉଁ ସବଳତା କିମ୍ବା ଦୁର୍ବଳତା ଦିଅନ୍ତି, ତାହା ପୂର୍ବରୁ ଆଲୋଚିତ ହୋଇଛି । ତେବେ ଜନ୍ମର ପରେ ପରେ ଶିଶୁର ମୂଳ ଶିକ୍ଷା ପରିବାରରେ ହିଁ ଘଟିଥାଏ । ସୁତରାଂ ପିତାମାତାଙ୍କର ପରିପାଳନଗତ ତ୍ରୁଟିବିଚ୍ୟୁତି ବହୁଭାବରେ ଶିଶୁର ବିକାଶକୁ ପ୍ରଭାବିତ କରେ, ସୌଭାଗ୍ୟର କଥା ଯେ ଏବେ ବହୁ ସ୍ୱୟଂସହାୟକ ଗୋଷ୍ଠୀ ଅନୁନ୍ନତ ଅଞ୍ଚଳରେ ଶିଶୁ ପରିପାଳନ ସଂପର୍କରେ ପିତାମାତାଙ୍କୁ ସଚେତନ କରିପାରୁଛନ୍ତି ।

ପିଲାର ବିକାଶ ସଂପର୍କରେ ପିତାମାତାଙ୍କର ତ୍ରୁଟିପୂର୍ଣ୍ଣ ବିଶ୍ୱାସ ଓ ବିକୃତ ପରିପାଳନ ଶୈଳୀ ମାନସିକ ଅସୁସ୍ଥତାର ଏକ ମୁଖ୍ୟ କାରଣ । ଏପରିକି ବହୁ ବିଶେଷଜ୍ଞ ମତବ୍ୟକ୍ତ କରନ୍ତି ଯେ ପିତାମାତାଙ୍କର ତ୍ରୁଟିପୂର୍ଣ୍ଣ ଜିନ୍ ପିଲାମନରେ ଯେତେ ବାତୁଳତା ବା ଶୀଜୋଫ୍ରେନୟା ସୃଷ୍ଟି କରିନଥାଏ ବାତୁଳ ପିତାମାତାଙ୍କର ତ୍ରୁଟିପୂର୍ଣ୍ଣ ଶିଶୁପାଳନ ଶୈଳୀ ଶିଶୁର ଅଧିକ କ୍ଷତି କରେ । ପିଲାମାନଙ୍କୁ ଚିତ୍ତଭ୍ରଂଶୀ ବାତୁଳତାର ଶରବ୍ୟ କରିପାରେ ।

ପ୍ରତିଟି ବିକୃତି ମୂଳରେ ନିର୍ଦ୍ଦିଷ୍ଟ ତ୍ରୁଟିପୂର୍ଣ୍ଣ ଶିଶୁପାଳନ ଶୈଳୀ ସଂଶ୍ଳିଷ୍ଟ ଥିଲେ ମଧ୍ୟ ଆଚରଣଗତ ବିପର୍ଯ୍ୟୟ କ୍ଷେତ୍ରରେ ପିତାମାତାଙ୍କର ନିମ୍ନଲିଖିତ ଦୋଷତ୍ରୁଟି ଲକ୍ଷ୍ୟ କରାଯାଇଛି ।

୧. ଅନୁଶାସନର ଅଭାବ : ପିଲାମାନେ କେଉଁଠି ଅଛନ୍ତି, କଣ କରୁଛନ୍ତି ଏବଂ କେଉଁମାନଙ୍କ ସହିତ ମିଶୁଛନ୍ତି ସେ ବିଷୟରେ ପିତାମାତାଙ୍କର ଧାରଣା ନଥାଏ ।

୨. ଆତ୍ମସଂଯମର ଅଭାବ: ପିତାମାତା ମାତ୍ରାଧିକ ରାଗନ୍ତି ଏବଂ ନିଜର ଭାବାବେଗରେ ସଂଯମ ରକ୍ଷା କରନ୍ତି ନାହିଁ ।

୩. ଅସଂଗତି : ପିତା ଗୋଟିଏ ପ୍ରକାର ମାନଦଣ୍ଡର ସୂଚନା ଦେବା ସ୍ଥଳେ ମାତା ବିପରୀତ ମାନଦଣ୍ଡର କଥା କୁହନ୍ତି । ଗୋଟିଏ ସମୟରେ ଗୋଟିଏ କଥା ଏବଂ ଭିନ୍ନ ସମୟରେ ବିପରୀତ କଥା କୁହାଯାଏ ।

୪. ଭର୍ତ୍ସନା: ପିତାମାତା ସନ୍ତାନସନ୍ତତିଙ୍କୁ ସ୍ନେହଶ୍ରଦ୍ଧା ନ ଦର୍ଶାଇ ଅଧିକାଂଶ ସମୟରେ ଭର୍ତ୍ସନା ଓ ଶାସ୍ତିବିଧାନ ବ୍ୟବସ୍ଥା କରନ୍ତି ।

ମୁଖ୍ୟତଃ ଶିଶୁର ଅବହେଳା ଓ ନିର୍ଯ୍ୟାତନା ମାନସିକ ବିକୃତିର ମୁଖ୍ୟ କାରଣ । ଦାମ୍ପତ୍ୟ ଜୀବନର ଅସଂଗତି ଓ ପତିପତ୍ନୀ ସ୍ତରରେ ପାରସ୍ପରିକ ନିର୍ଯ୍ୟାତନା ପରବର୍ତ୍ତୀ ବଂଶଧରମାନଙ୍କ ପାଇଁ ବିକୃତିର କାରଣ ହୁଏ । ପାରିବାରିକ ଜୀବନର ଦୁଃସ୍ଥିତିର ମୁଖ୍ୟ ଉପାଦାନସବୁ ନିମ୍ନ ସାରଣୀରେ ସୂଚିତ କରାଯାଇପାରେ ।

ବିକୃତି ସମ୍ଭାବିତ ପାରିବାରିକ ଉପାଦାନ ପିତାମାତାଙ୍କ ପୂର୍ବ-ଇତିହାସ

୧. ପିତା ବା ମାତାଙ୍କ ଜୀବନରେ ପୂର୍ବରୁ ଅବହେଳା କିମ୍ବା ନିର୍ଯ୍ୟାତନାର ଅନୁଭବ ।

୨. ପିତାମାତାଙ୍କଠାରୁ ସ୍ନେହ ଶ୍ରଦ୍ଧାର ଅଭାବ ।

୩ ଅପରିପକ୍ୱ ବୟସ କିମ୍ବା ମାନସିକତାରେ ବିବାହ

୪. ବିଶୃଙ୍ଖଳିତ ପାରିବାରିକ ଜୀବନ ।

ବର୍ତ୍ତମାନର ପାରିବାରିକ ଅବସ୍ଥା

୧. ସାମାଜିକ ସଂସର୍ଗର ଅଭାବ(ନିଃସଙ୍ଗତା)

୨. ମନୋମାଳିନ୍ୟର ମାତ୍ରାଧିକ୍ୟ ଅବସ୍ଥା

୩. ମାନସିକ ସଂଯମର ଅଭାବ ।

୪. ଶିକ୍ଷାଦୀକ୍ଷାର ଅଭାବ ।

୫. ଆର୍ôିକ ଅଭାବ ଅନାଟନ ।

୬. ତ୍ରୁଟିପୂର୍ଣ୍ଣ ଶିଶୁପାଳନ ଶୈଳୀ ।

୭. ପିଲାଙ୍କୁ ଅଯଥାରେ ବହୁଳ ପ୍ରଶଂସା ।

୮. ପିଲାଠାରୁ ଆକାଶଛୁଆଁ ପ୍ରତ୍ୟାଶା ।

୯. ଅନୁଶାସନ ପ୍ରୟୋଗ କରିବାର ଅକ୍ଷମତା

୧୦. ପିଲାମାନଙ୍କ ପ୍ରତି ସ୍ନେହ ଶ୍ରଦ୍ଧା ଓ ପ୍ରୋତ୍ସାହନର ଅଭାବ ।

୧୧. ଶିଶୁପାଳନ ସଂପର୍କରେ ପତିପତ୍ନୀ ମଧ୍ୟରେ ମତାନୈକ୍ୟ ।

ଉପର ଲିଖିତ କାରଣର ଅନୁଧ୍ୟାନ କଲେ ସମାଧାନର ମାର୍ଗ ବାହାରକରିବା ସହଜ ହେବ, ଏସବୁ ତ୍ରୁଟିବିଚ୍ୟୁତି ଦୂରକରି ପରିବାରରେ ଉନ୍ନତ ପରିବେଶ ଗଠନ କରିବାକୁ ହେବ । ସ୍ଥଳବିଶେଷରେ ପିତାମାତାଙ୍କୁ ପ୍ରଶିକ୍ଷଣ ଓ ଉପଦେଶନ ଦେବାକୁ ପଡିବ । ବିଦ୍ୟାଳୟ ଓ ଗୋଷ୍ଠୀରେ ମଧ୍ୟ ସମଧର୍ମୀ ବାତାବରଣ ଗଠନ କରିବାକୁ ହେବ ।

## ନିରାକରଣର ଶେଷକଥା

କାରଣ ଯାହାହେଉନା କାହିଁକି, ମାନସିକ ବିକୃତିର ବିଲୋପକରଣ ଏକ ସାମାଜିକ ଦାୟିତ୍ୱ । ପୂର୍ବ ଆଲୋଚନାରୁ ଏହା ସ୍ପଷ୍ଟ ଯେ କେତେକ ଜୀବଭିତ୍ତିକ କାରଣର ବିଲୋପ ପୂରାପୂରି ସମ୍ଭବ ନ ହେଲେ ମଧ୍ୟ ନିୟନ୍ତ୍ରଣ ଓ ପରିଚାଳନା ସମ୍ଭବପର । ଦ୍ୱିତୀୟ ସ୍ତରରେ ପ୍ରତିଷେଧକ ବ୍ୟବସ୍ଥାର ଉପଯୋଗ କରିବାକୁ ହେବ ।

ପ୍ରତିଷେଧ ବ୍ୟବସ୍ଥା ସତ୍ତ୍ୱେ ବିକୃତିର ସମସ୍ୟା ରହିଗଲେ ଚିକିତ୍ସା ଅପରିହାର୍ଯ୍ୟ । ମାନସିକ ବିକୃତିର ଚିକିତ୍ସା ଏକ ନିର୍ଦ୍ଦିଷ୍ଟ ପ୍ରଣାଳୀ ମଧ୍ୟରେ ସୀମିତ ନୁହେଁ । ବିକୃତିର ପ୍ରକାରତା ଓ ଜଟିଳତା ଦେଖି ନିର୍ଦ୍ଦିଷ୍ଟ ଚିକିତ୍ସା ପଦ୍ଧତି ପ୍ରୟୋଗ କରାଯାଏ । ସ୍ଥଳବିଶେଷରେ ଏକାଧିକ ପ୍ରଣାଳୀର ମିଶ୍ର ପ୍ରୟୋଗ କରାଯାଏ । ମନୋଚିକିତ୍ସକମାନେ ମୁଖ୍ୟତଃ ଔଷଧପତ୍ରର ବ୍ୟବହାର କରି ସମସ୍ୟାର ସମାଧାନ କରନ୍ତି । ମନୋବିଜ୍ଞାନୀମାନେ ଚାରି ପାଞ୍ଚୋଟି ପ୍ରଣାଳୀର ଆଶ୍ରୟ ନିଅନ୍ତି । ସିଗମଣ୍ଡ ଫ୍ରଏଡ୍‌ଙ୍କ ସମେତ କେତେକ କ୍ଲାସିକାଲ ଭାବୁକ ମନୁଷ୍ୟର ମାନସିକ ସମସ୍ୟା କ୍ଷେତ୍ରରେ ଅବରୁଦ୍ଧ ଭାବାବେଗକୁ ଦାୟୀ କରୁଥିଲେ । ସୁତରାଂ ଏପରି ପରମ୍ପରାରେ ବିଶ୍ୱାସ ରଖୁଥିବା ମନୋସମୀକ୍ଷକମାନେ ବିକୃତି ସମ୍ପନ୍ନ ବ୍ୟକ୍ତି ସହିତ ଖୋଲାଖୋଲି ଅନ୍ତରଙ୍ଗ ଭାବରେ କଥାବାର୍ତ୍ତା କରି ସମସ୍ୟା ଲାଘବ କରିବାର ପ୍ରୟାସ କରନ୍ତି । ବ୍ୟବହାରବାଦୀମାନେ ସମସ୍ୟା ମୂଳରେ ପରିସ୍ଥିତି, ପରିବେଶ ଓ ପ୍ରୋତ୍ସାହନକୁ ଗୁରୁତ୍ୱ ଦେଉଥିବାରୁ ସେମାନେ

ତ୍ରୁଟି ପୂର୍ଣ୍ଣ ପରିବେଷ୍ଟନୀ ସ୍ଥାନରେ ସ୍ୱାସ୍ଥ୍ୟକର ଆବାହାଓ୍ୱା ଗଠନ କରିବାର ପ୍ରୟାସ କରନ୍ତି । ଅନ୍ୟ କେତେକ ବିଶେଷଜ୍ଞ ତ୍ରୁଟିପୂର୍ଣ୍ଣ ଚିନ୍ତନ ଶୈଳୀକୁ ପ୍ରାଧାନ୍ୟ ଦିଅନ୍ତି । ସେମାନେ ବିଚାର କରନ୍ତି ଯେ ମାନସିକ ବିକୃତି ହେଉଛି ବିକୃତ ଚିନ୍ତନର ପରିଣତି । ତେଣୁ ଯୁକ୍ତି, ପ୍ରରୋଚନା ଓ ପ୍ରଶିକ୍ଷଣ ମାଧ୍ୟମରେ ସେମାନେ ବ୍ୟକ୍ତିର ଭ୍ରମାତ୍ମକ ଭାବନାକୁ ପରିବର୍ତ୍ତନ କରନ୍ତି । ଅନ୍ୟ କେତେକ ମାନବବାଦୀ ବିଶେଷଜ୍ଞ ସମସ୍ୟାଗ୍ରସ୍ତ ବ୍ୟକ୍ତିର ଲକ୍ଷ୍ୟ, ଅଭିରୁଚି ଓ ଜୀବନଶୈଳୀର ତ୍ରୁଟିବିଚ୍ୟୁତିକୁ ସଜାଡିବାର ଉଦ୍ୟମ କରନ୍ତି । ପୁଣି ଅନ୍ୟ କେତେକ ବିଶେଷଜ୍ଞ ବ୍ୟକ୍ତିର ନିଜସ୍ୱ ଚାହିଦା ଓ ଅଭାବବୋଧକୁ ଅନୁଶୀଳନ କରି ପ୍ରତିକାର ବ୍ୟବସ୍ଥା କରନ୍ତି ।

ପ୍ରତିଟି ପ୍ରଣାଳୀ ଚିକିତ୍ସକର ଏକ ମୁଖ୍ୟ ବିଶ୍ୱାସଧାରା ଉପରେ ପ୍ରତିଷ୍ଠିତ । କିନ୍ତୁ ସମ୍ପ୍ରତି ଦକ୍ଷ ଚିକିତ୍ସକମାନେ ଏକମାତ୍ର ପ୍ରଣାଳୀ ପ୍ରୟୋଗ ନକରି ଏକାଧିକ ପଦ୍ଧତିର ସଂଯୋଗ କରିଥାନ୍ତି । ବିଶେଷତଃ ଏବେ ବିଶ୍ୱର ଅଧିକାଂଶ ମାନସିକ ବିକୃତିର ଚିକିତ୍ସକ ବ୍ୟବହାର ଓ ଚିନ୍ତନ ପ୍ରକ୍ରିୟାର ତ୍ରୁଟି ସଜାଡିବା ପାଇଁ ମିଶ୍ରିତଭାବେ ବ୍ୟବହାର ଓ ଚିନ୍ତନ ପଦ୍ଧତି ପ୍ରୟୋଗ କରୁଛନ୍ତି ।

ଚିକିତ୍ସା ହେଉଛି ସମାଧାନର ଶେଷ ପର୍ଯ୍ୟାୟ । ସମଗ୍ର ସମାଜ ଓ ବିଶ୍ୱରୁ ମାନସିକ ବିକୃତିର ବିଲୋପକରଣ ଏକ ବହୁସ୍ତରୀୟ ବହୁକୈନ୍ଦ୍ରିକ ପ୍ରୟାସ । ବ୍ୟକ୍ତି, ପରିବାର, ଗୋଷ୍ଠୀ ଓ ବିଶ୍ୱସମାଜ ସାମୂହିକ ଭାବରେ ପ୍ରୟାସ କରିବା ପ୍ରୟୋଜନ । ପୁଣି ଔଷଧ, ବ୍ୟବହାର ପରିବର୍ତ୍ତନ, ଚିନ୍ତନ ପରିବର୍ତ୍ତନ ଓ ଭଲ ଲକ୍ଷ୍ୟର ସଂଯୋଜନା- ଏପରି ଏକ ବହୁସ୍ତରୀୟ ଉଦ୍ୟମ ଆବଶ୍ୟକ । ବହୁସ୍ତରୀୟ ବହୁକୈନ୍ଦ୍ରିକ ଯୋଜନା ମଧ୍ୟରେ ହିଁ ଆଶାବାଦର ଧ୍ୱନି ଶବ୍ଦାୟିତ ।



# ମୁକ୍ତମନର ପ୍ରଶ୍ନ ଓ କେତେକ ଅହେତୁକ ବିଶ୍ୱାସ

*ଡକ୍ଟର ବିଜୟାନନ୍ଦ କର*

ରବିବାର ସକାଳ ଆଠଟା ହେଲାଣି । ଗୋଲକବାବୁ ଡେରିରେ ଉଠି ନିତ୍ୟକର୍ମ ସାରି ଚା ଓ ଜଳଖିଆ ଖାଇ ବାହାରକୁ ଯିବାପାଇଁ ଆଗେଇଲେ । ଗଲାବେଳକୁ ସ୍ତ୍ରୀଙ୍କୁ ପଚାରିଲେ "ଦୀପା, କ'ଣ ବଜାରରୁ ଆସିବ କି ?"

ଦୀପା ରୋଷେଇ ଘରୁ ବାହାରି କହିଲେ "କ'ଣ କାଲି କଥା ମନେନାହିଁ ? ପୁଅର ଟନିକ୍ ପରା ସରିଆସିଲାଣି ।"

ଗୋଲକବାବୁଙ୍କର କାଲିକଥା ମନେପଡିଲା । "ହଁ, ତାକୁ ନିଶ୍ଚୟ ଆଣିବି ।"

ସେତେବେଳକୁ ତାଙ୍କର ଚଉଦ ବର୍ଷର ଭଲ ପଢୁଥିବା ମେଧାବୀ ପୁଅ, ଅଜୁ (ଭଲ ନାଁ ଅଜୟ) ବାପାଙ୍କ ପାଖକୁ ଆସିଯାଇଥିଲେ । ବାପା ଅଜୁଙ୍କୁ ଦେଖି ସ୍ନେହାଲିଙ୍ଗନ କଲେ ଓ ବାହାରିଲା ବେଳକୁ ୩/୪ ଜଣ ସାଇବାସିନ୍ଦା "ଆଜ୍ଞା, ନମସ୍କାର" କହି ପହଞ୍ଚିଲେ । ଗୋଲକବାବୁ ଘରୁ ବାହାରିଲା ବେଳକୁ ସେମାନଙ୍କୁ ଦେଖି ଟିକେ ବିବ୍ରତ ହେଲେ "ହଉ, କ'ଣ ହେଲା ?" ବୋଲି ପଚାରିଲେ । ସେମାନଙ୍କ ମଧ୍ୟରୁ ଜଣେ କହିଲେ "ଆଜ୍ଞା ଜାଣିଥିବେ ନିଶ୍ଚୟ; ବଙ୍ଗଳା ଦେଶରେ ଭୀଷଣ ଘୂର୍ଣ୍ଣିବାତ୍ୟା ଓ ପ୍ରଳୟଙ୍କାରୀ ବନ୍ୟା ହୋଇଛି । ଲୋକେ ସେଠାରେ ଅକଥନୀୟ ଦୁର୍ଦ୍ଦଶାରେ ପଡିଛନ୍ତି, ଅନେକ ମରିଛନ୍ତି, କଠୋର ଆଘାତ ପାଇଛନ୍ତି ଓ ବହୁଲୋକ ବେସାହାରା ହୋଇଛନ୍ତି । ଆମେ ସେମାନଙ୍କର ମଙ୍ଗଳ କାମନା କରି ଭଗବାନଙ୍କୁ ପ୍ରାର୍ଥନା କରିବା ଉଦ୍ଦେଶ୍ୟରେ ଏକ ଶାନ୍ତି ମହାଯଜ୍ଞ କରୁଛୁ । ଆପଣ ତ ବଡ଼ଲୋକ ଓ ଦୟାଳୁ । କିଛି ଏ ପାଇଁ ଆର୍ଥିକ ସାହାଯ୍ୟ କରନ୍ତୁ" ।

ଗୋଲକବାବୁ କିଛି  ପ୍ରତିକ୍ରିୟା ପ୍ରକାଶ କରିବା ଆଗରୁ ପୁଅ, ଅଜୁ କହିଲେ, "ଆରେ, ଏଭଳି ପ୍ରାକୃତିକ ବିପତ୍ତିବେଳେ ବିଭିନ୍ନ ଦେଶ, ବଡ଼ ବଡ଼ ସଂସ୍ଥା ତଥା ବଦାନ୍ୟଲୋକେ ଆର୍ଥିକ ଏବଂ ଅନ୍ୟାନ୍ୟ ଦରକାରୀ ସାହାଯ୍ୟ ଦେବାକୁ ଆଗେଇ ଆସିଛନ୍ତି । ଅର୍ଥ କିମ୍ବା ସେଭଳି କିଛି ଦାନ ନ ପଠାଇ, ଶାନ୍ତି ମହାଯଜ୍ଞ କରି ଅର୍ଥ ଅପଚୟ କଲେ, ସେମାନଙ୍କର କି ଉପକାର ହେବ ?" ସାହାଯ୍ୟ ପାଇଁ ଆସିଥିବା ଲୋକେ ଏକଥା ଶୁଣି କହିଲେ, "ତୁମେ ବାବୁ ପିଲାଲୋକ, ବୁଝିପାରିବନି । ଭଗବାନଙ୍କୁ ନିଜଛଡା ଅନ୍ୟ ପାଇଁ ଶାନ୍ତିଯଜ୍ଞ କରି ଧର୍ମକାର୍ଯ୍ୟ (ପୂଜା, ଆରାଧନା ଆଦି) କଲେ ନିଶ୍ଚୟ ସୁଫଳ ମିଳିବ ।

ଗୋଲକବାବୁ ଆଉ ବାଦାନୁବାଦକୁ ଆଗକୁ ନ ନେଇ ଏବଂ ସେହି ଲୋକମାନଙ୍କୁ ଶୀଘ୍ର ବିଦାୟ ଦେବାପାଇଁ ପକେଟରୁ ଶହେ ଟଙ୍କିଆ ନୋଟ୍‌ଟି ବାହାର କରି ସେମାନଙ୍କୁ ଦେଲେ । ସେମାନେ କହିଲେ, "ଆଜ୍ଞା, ଆପଣଙ୍କ ପରି ବଡ଼ ଓ ଦାନୀଙ୍କଠୁ କିଛି ବେଶୀ ଆଶା କରୁଛୁ" ଗୋଲକବାବୁ "ନା, ଆଉ ଅଧିକା ଦେଇପାରିବିନି" ବୋଲି କହିଲେ ।

ସେମାନଙ୍କ ମଧ୍ୟରୁ ଜଣେ ପୁଣି କହିଲେ "ଆଜ୍ଞା, ଅନ୍ତତଃ ଆଉ ଟଙ୍କାଟିଏ ଦିଅନ୍ତୁ । ଅଛିଣ୍ଡା ଅଙ୍କର ଅର୍ଥ ବା ଜିନିଷ ଦେବା ଶୁଭ" ।

ଅଜୁ ଏକଥା ଶୁଣି ହସିଲେ ଏବଂ କହିଲେ, "ସଂଖ୍ୟା ଯୋଡ଼/ବିଯୋଡର ଶୁଭ / ଅଶୁଭ ସହ କି ସମ୍ବନ୍ଧ ଅଛି ? ଏଗୁଡିକ କିପରି ବା କାହିଁକି ଏଭଳି ଭାବେ ସଂଯୋଜିତ ?"

"ଛୋଟବାବୁ, ତୁମେ ଏସବୁ ମୋଟେ ଜାଣିପାରୁନ । ବଡ଼ ହେଲେ ଜାଣିବ । ଏ ପ୍ରଥା ଆମ ସମାଜରେ ବହୁ ଆଗରୁ ଚଳିଆସୁଛି । ଗୁରୁଜନମାନେ ଆମ ଆଗରେ ଏସବୁ ନୀତିବାଣୀ ରଖିଦେଇଛନ୍ତି । ଏସବୁ ଧର୍ମର ଭିତିରି କଥା । ତୁମେ ବଡ଼ ହେଲେ ଜାଣିବ ।" ଗୋଲକବାବୁ ଆଉ ଡେରି ନକରି ପକେଟରୁ ଟଙ୍କାଟିଏ କାଢ଼ି ସେମାନଙ୍କୁ ଦେଲେ ଓ ବିଦାୟ କରିଦେଲେ । ତା'ପରେ ପୁଅକୁ କହିଲେ "ଅଜୁ, ତୁ ଯାହା କହିଲୁ, ଠିକ୍ କହିଲୁ । ବାସ୍ତବରେ ଟଙ୍କା, ପଇସା ଆଦିର ସାହାଯ୍ୟ ଏଭଳି ପରିସ୍ଥିତିରେ କାମରେ ଆସିବ; କିନ୍ତୁ ଏପରି ଲୋକମାନେ ଆମ ସମାଜରେ ଧର୍ମଭୀରୁତା ତଥା ଧର୍ମବିଶ୍ୱାସର ଫାଇଦା ଉଠାଇ ନିଜର ଅମାନବୀୟ ଉଦ୍ଦେଶ୍ୟକୁ ଆମ ଉପରେ ଲଦି ଦେଉଛନ୍ତି । ଚାନ୍ଦା ନଦେଲେ ଆମକୁ ଗାଳି ଦେବେ, ଆମ ନାଁରେ କୁତ୍ସାରଟନା କରିବେ, ଘରକୁ ଟେକା ପଥର ଫିଙ୍ଗିବେ ଏବଂ ସେହିପରି ଅନ୍ୟକିଛି କୁକର୍ମ ଲୁଚାଛପାରେ କରିବେ, ଏପରିକି ପୁଲିସ ଆଖିରେ ଧୂଳି ଦେଇ । ଆମେ ଏସବୁ ଅସଦାଚରଣକୁ ନ ମାନିବା ସତ୍ତ୍ୱେ, କଳି ତକରାଳ ଭିତରେ ନପଶି ସେମାନଙ୍କୁ ଭଲରେ ଭଲରେ ବିଦାୟ ଦେବାଟାରେ ତ୍ରାହି ।

"କିନ୍ତୁ ଏ'ତ ବଡ଼ ଅନ୍ୟାୟ, ପ୍ରତିକୂଳ ପରିସ୍ଥିତିରେ ଥିବା ଲୋକମାନଙ୍କୁ ସାହାଯ୍ୟ ନକରି ଧର୍ମ ନାଁରେ ଏଭଳି ନୀତିହୀନ ଶାନ୍ତିକାମୀ ଯଜ୍ଞାଦି କରି ଅର୍ଥର ବରବାଦ କରିବା

କ'ଣ ଠିକ୍ ? ମାନବୀୟ ଶ୍ରେୟ ପଦକ୍ଷେପକୁ ସାଧମତେ ସାକାର କରିବାରେ ହିଁ ବାସ୍ତବରେ ଯଥାଯୋଗ୍ୟ ଫଳ ମିଳିଥାଏ ଓ ତାହା ନୈତିକ ଦୃଷ୍ଟିରୁ ମଧ୍ୟ କରଣୀୟ । ତାହାରି ଆଳରେ ଅବିବେକୀ ଅନ୍ଧାନୁସରଣକୁ ସିଧାରେ ବା ବଙ୍କାରେ ସମର୍ଥନ କରିବା କ'ଣ ନ୍ୟାୟସଙ୍ଗତ ?"

ଅଜୁ କ୍ଷୋଭ ତଥା ଦୁଃଖର ସହ ଏଭଳି ଭାବ ପ୍ରକାଶ କଲେ ଏବଂ ପୁଣି କହିଲେ, "ଯାହା ଆଗରୁ ଚଳିଆସୁଛି, ସେ ରୀତିକୁ ଆଖିବୁଜା ମାନିନେବା ପାଇଁ କାହିଁକି ବାଧ କରାଯାଉଛି ? ଆଗେ ତ ଲୋକେ ପଡିଆ ବୁଦା ମୂଳକୁ ଝାଡା, ପରିସ୍ରା କରିବାକୁ ଯାଇ ସମଗ୍ର ବାତାବରଣ ଦୂଷିତ କରୁଥିଲେ, କିନ୍ତୁ ଏବେ ତ ପୁଣି ନିଜ ନିତ୍ୟକର୍ମ ପାଇଁ ପାଇଖାନା, ଗାଧୁଆଘର ଆଦିର ବ୍ୟବହାର କରୁଛନ୍ତି । ଅବଶ୍ୟ ସମସ୍ତେ ନ ହେଲେ ହେଁ, ଅନେକ ଏହି ପରିବର୍ତ୍ତନକୁ ଗ୍ରହଣ କରିଛନ୍ତି ।  ଯାହା ଆବଶ୍ୟକତାକୁ ଭଲଭାବେ ପୂରଣ କରି ପାରୁଛି, ତାକୁ ସାଧମତେ ଆପଣେଇବା ବୁଦ୍ଧିମତାର ପରିଚୟ । ପରମ୍ପରା, ରୀତି ନାମରେ ପରିବର୍ତ୍ତନକୁ ଗ୍ରହଣ ନକରି ବ୍ୟକ୍ତି ତଥା ଜାତି ସମୂହଭାବେ ନିଜ ନିଜର କେବଳ କ୍ଷତି କରୁଛନ୍ତି । ଅବଶ୍ୟ ଯେଉଁମାନେ ପୁରୁଣାକାଳିଆ ପ୍ରଥାକୁ ଜାବୋଡିଛନ୍ତି, ସେଥିରୁ ଅନେକ ନୂଆ ପଦ୍ଧତିକୁ ଅନୁସରଣ କରିବା ପାଇଁ ସଠିକ ସୁଯୋଗ ପାଉନାହାନ୍ତି କିମ୍ବା ସେ ସବୁକୁ ଆବୋରି ନେବାରେ ତାଙ୍କର ଆର୍ଥିକ ପରିବେଶ ତଥା ପାରିପାର୍ଶ୍ୱିକ ସ୍ୱଚ୍ଛଳତାର ଅଭାବ ଦେଖାଯାଇଥାଏ । କିନ୍ତୁ ତାହାବୋଲି ମଣିଷ କ'ଣ ହାତଗୋଡ ବାନ୍ଧି ଆକାଶକୁ ଚାହିଁ ଭକୁଆ ହୋଇ ବସିଯିବା ଠିକ୍ ହେବକି ? ଆଗକୁ ଯିବାକୁ ହେଲେ ଗୋଡ଼ ଚଳାଇବାକୁ ପଡ଼ିବ । 'ହୋଇନାହିଁ, ତେଣୁ ହେବନାହିଁ' - ଏଭଳି ଧାରଣା ଅବାସ୍ତବ, ଅହେତୁକ, ଅନୈତିକ ଏବଂ ଅଧାର୍ମିକ ମଧ୍ୟ" ।

ଏଥର ବିଚାରା ଅଜୁ ଚାରିଆଡ଼କୁ ଚାହିଁଲେ । ବାପା କେତେବେଳୁ ବାହାରକୁ ଚାଲିଗଲେଣି । ବୋଉ ରୋଷେଇଘର ଭିତରକୁ ଯାଇ ଜଳଖିଆ ସଜାଡିବାରେ ବୋଧେ ବ୍ୟସ୍ତ ଥିଲେ । ପରେ ବଡ଼ପାଟିରେ କହିଲେ, "ଆରେ ଅଜୁ, କେତେବେଳ ହେଲାଣି । ଜଳଖିଆ କରିବୁନି କି ?" "ହଁ ଯାଉଛି" କହି ଅଜୁ ଆଗେଇଲା ।

X X X X

ଅଜୁ ଏବେ ସ୍କୁଲରେ । ବିଜ୍ଞାନ ଶ୍ରେଣୀରେ ଶିକ୍ଷକ ଆସି ବିବର୍ତ୍ତନ କଥାଟି ବୁଝାଉଥାନ୍ତି । କିଭଳି ଡାରଉଇନ୍‌ଙ୍କ ବିବର୍ତ୍ତନ-ସିଦ୍ଧାନ୍ତ, ଐଶ୍ୱରୀୟ ଧର୍ମଶାସ୍ତ୍ରର ସୃଷ୍ଟିବାଦର ବିରୋଧୀ ଓ କାହିଁକି ତାହା ମୋଟାମୋଟି ବିଜ୍ଞାନସମ୍ମତ, ତାହା ଶିକ୍ଷକ ମହାଶୟ  ଉଦାହରଣ ସହ ପ୍ରାଞ୍ଜଳ କରୁଥିଲେ । ଅଜୁଙ୍କୁ ବିବର୍ତ୍ତନ -ସିଦ୍ଧାନ୍ତ ପ୍ରୋତ୍ସାହିତ କରିଥିଲା । ସେ କ୍ଲାସ ସରିଲା ପରେ "ନୈତିକ ମୂଲ୍ୟବୋଧ ଓ  ନଗରବିଜ୍ଞାନ" ବିଷୟକ ଏକ ଇଚ୍ଛାଧୀନ

ପାଠ୍ୟବିଷୟର ଶିକ୍ଷା ବ୍ୟବସ୍ଥା ସ୍କୁଲରେ ଥିଲା । ଅଜୁ ତାଙ୍କ ସାଥି କେତେଜଣ ସେ ବିଷୟ ପ୍ରତି ଆଗ୍ରହୀ ଥିବାରୁ, କ୍ଲାସରେ ବସି ଶିକ୍ଷକ ଆସିବାକୁ ଅପେକ୍ଷାରେ ଥିଲେ ।

ଶିକ୍ଷକ ପାଠ୍ୟବିଷୟରେ ଉପକ୍ରମ ଦେବା ଅବସରରେ ନୈତିକ ମୂଲ୍ୟବୋଧ ବିଷୟରେ ସଚେତନ ହୋଇ ଅନୁରୂପ କାର୍ଯ୍ୟ କରିବା ଉପରେ ଗୁରୁତ୍ୱ ଦେଇଥିଲେ । ନୈତିକତା କିପରି ଭାବେ ନାଗରିକ ଜୀବନଧାରା ସହିତ ନିବିଡ଼ ଭାବେ ଜଡିତ, ତାହା ବୁଝାଇବାକୁ ଚେଷ୍ଟା କରିଥିଲେ । ସେହି ପ୍ରସଙ୍ଗରେ ବେଦ, ବାଇବେଲ, କୋରାନ ଆଦି କେତେକ ଧର୍ମଶାସ୍ତ୍ରକୁ ଉଲ୍ଲେଖ କରି ସେଥିରେ ନୈତିକ ମୂଲ୍ୟବୋଧର ଉପଯୋଗିତା ସମ୍ବନ୍ଧରେ ସୂଚନା ଦେଇଥିଲେ । ସେ କହିଲେ, "ଧର୍ମ ହିଁ ନୈତିକ ମୂଲ୍ୟବୋଧର ଏକମାତ୍ର ଭିତ୍ତିଭୂମି । ସେଥିପାଇଁ କଥାରେ ଅଛି 'ଧର୍ମ ଏକା ସିନା ମହତ ପଣିଆ, ଆଉ ସବୁତକ ଅଢ଼େଇ ଦିନିଆ' । ସବୁ ଧର୍ମମାନଙ୍କରେ ମଣିଷକୁ ନୀତିବାନ ହେବାପାଇଁ ପ୍ରବର୍ତ୍ତାଯାଇଛି ।"

ସେତିକିବେଳେ ଅଜୁ ଠିଆହୋଇ ଶିକ୍ଷକଙ୍କୁ ପଚାରିଲେ, "ସାର୍, ଯଦି ସବୁ ଧର୍ମଗୁଡିକ ନୀତିବାନ ହୋଇ ଉତ୍ତମ ଜୀବନ ପାଇଁ ପରାମର୍ଶ ଦେଇଛନ୍ତି, ତେବେ ସେମାନଙ୍କ ଭିତରେ ଏତେ ବିଭେଦ କାହିଁକି ? ଧର୍ମ ଧର୍ମ ଭିତରେ କଳହ, ବିଦ୍ୱେଷ ହୋଇ ଖାଲି ଯେ ପରସ୍ପର ପରସ୍ପରର କଥା କଟାକଟି ହୋଇଛି, ତାହା ନୁହେଁ ବରଂ ଅନେକ ସ୍ଥଳରେ, ଯୁଗ ଯୁଗ ଧରି ସେମାନଙ୍କ ମଧ୍ୟରେ ଯୁଦ୍ଧ ଲାଗିରହିଛି । ଏହା କ'ଣ ନୈତିକତାର ସମର୍ଥନ ନା ବାସ୍ତବରେ ବିରୋଧୀ ?"

ସାର୍ ପ୍ରତିକ୍ରିୟା ପ୍ରକାଶ କଲେ । "ଅଜୟ, ତୁମେ ତ କ୍ଲାସରେ ପ୍ରଥମ ହୋଇ କୃତିତ୍ୱ ଲାଭ କରିଛ । ତୁମେ ତୁମର ବୟସ ତୁଳନାରେ ବେଶ୍ ମେଧାବାନ ଓ ଅନନ୍ୟ, ତଥାପି ତୁମେ ବର୍ତ୍ତମାନ ଯାହା କହିଲ, ତାହା ଏକପାଖିଆ ବିଚାର । ଧର୍ମମାନଙ୍କ ଭିତରେ ବିଭେଦ ସାଂପ୍ରଦାୟିକ ତିକ୍ତ ମନୋଭାବ ଯୋଗୁଁ ସଂଚାରିତ ହେଉଛି । ଧର୍ମଗୁଡିକରେ ତଥାକଥିତ ପୁରୋଧାମାନେ ନିଜ ନିଜର କୁଅଭିପ୍ରାୟକୁ ଚରିତାର୍ଥ କରିବା ହେତୁ ଏପରି ବିଦ୍ୱେଷ ଭାବର ସୃଷ୍ଟି ହୋଇଛି । ପ୍ରକୃତ ଧର୍ମ, ନୀତିକୁ କେବେହେଲେ ପରିହାର କରେନି ।"

ଅଜୁ ସାଙ୍ଗେ ସାଙ୍ଗେ ପଚାରିଲେ - " ତାହାହେଲେ କ'ଣ ବିଭିନ୍ନ ଧର୍ମ ସବୁ ବସ୍ତୁତଃ ଏକ ? ଯଦି ତାହା, ତେବେ ସେଗୁଡିକ ମଧ୍ୟରେ ଫରକ୍ ହୁଏତ କିଛି ନାହିଁ ବା ସେଗୁଡିକ ପ୍ରକୃତରେ ଧର୍ମ ନୁହଁନ୍ତି" ।

"ନା, ତାହା ନୁହେଁ, ସେଗୁଡିକ ମଧ୍ୟରେ ଦୃଷ୍ଟ ବିବିଧତାରେ ହିଁ ଏକ ପାରସ୍ପରିକ ବୁଝାମଣା ତଥା ଅନ୍ତର୍ନିହିତ ଐକ୍ୟ ଭାବର ସ୍ଥିତି ଉପରେ ଗୁରୁତ୍ୱ ଦିଆଯାଉଛି ।" ସାର୍ ସ୍ପଷ୍ଟୀକରଣ ଦେଲେ ।

"ତଥାପି ସାର୍, ନୈତିକ ମୂଲ୍ୟବୋଧର ସ୍ୱୀକାର ପୂର୍ବକ ବ୍ୟକ୍ତି ତଥା ସମାଜ ମଧ୍ୟରେ ଉତ୍ତମ ଜୀବନଯାପନ କ'ଣ ଧର୍ମ ବ୍ୟତିରେକ ଅସମ୍ଭବ? ଅନେକ କ୍ଷେତ୍ରରେ ଦେଖାଯାଇଛି ଯେ କୌଣସି ପ୍ରକାର ଧର୍ମ-ବିଶ୍ୱାସର ବଶବର୍ତ୍ତୀ ନହୋଇ କେତେକ ଲୋକ ବିବିଧ ମାନବୀୟ ମୂଲ୍ୟବୋଧକୁ ଯଥୋଚିତ ସମ୍ମାନ ଦେଇ ନୈତିକ ପନ୍ଥା ଦୃଢ଼ତାର ସହ ରୂପାୟିତ କରିପାରିଛନ୍ତି। ଧର୍ମବିଶ୍ୱାସ ଏବଂ ନୈତିକ ଆଚରଣ କ'ଣ ପୂରାପୂରି ଏକ ଓ ଅଭିନ୍ନ? ବରଂ ସେ ଦୁଇଟି ଅଲଗା ଅଲଗା ଭାବେ ଅନେକ କ୍ଷେତ୍ରରେ ପ୍ରକାଶିତ ହେଉନାହିଁକି? ଆଉ ମଧ୍ୟ, ସାର୍ ଆପଣ ଯେଉଁ ଧର୍ମ ଧର୍ମ ମଧ୍ୟରେ ପାରସ୍ପରିକ ବୁଝାମଣା କଥା କହିଲେ, ତାହା ଧର୍ମଗୁଡ଼ିକର ମୌଳିକ ନିୟମାବଳୀ ଯୋଗୁଁ ହୋଇପାରୁଛି କି? ତାହା ତ ବରଂ ଧର୍ମ-ବହିର୍ଭୂତ ମାନବର ପ୍ରାକୃତିକ ଆବଶ୍ୟକତା ଓ ଜୀବନ ଧାରଣ କ୍ଷେତ୍ରରେ ସହଯୋଗର ଅପରିହାର୍ଯ୍ୟତା ଯୋଗୁଁ ଲୋକମାନଙ୍କ ଭିତରେ ବୁଝାମଣା ସମ୍ଭବ ହେଉଛି।

ସାର୍ କହିଲେ – "ଥାଉ ଥାଉ, ଆଉ ବାଦାନୁବାଦ କରନାହିଁ। ଯାହା ଚଳିଆସୁଛି, ତାକୁ ମାନିନେବା ପାଇଁ ବରାବର ବିଜ୍ଞବ୍ୟକ୍ତିମାନେ କହିଛନ୍ତି। ଚଲା ବାଟରେ ନଯାଇ ଅମଡ଼ା ବାଟ ଧରିବାରେ କି ଲାଭ?"

କ୍ଲାସ ସରିଲାପରେ ଅନ୍ୟ ସାଙ୍ଗମାନେ ଅଜୟଙ୍କୁ ଘେରିଗଲେ ଓ କହିଲେ –

"ତୁ ଯାହା କହ ଅଜୟ, ସାର୍‌ଙ୍କ ମୁହଁ ଲାଲ ପଡିଗଲା। ତୋ କଥାକୁ ସିନା ମାନିଲେନି, କିନ୍ତୁ, ତୋ କଥା ତାଙ୍କୁ ଚିଆଁଭଳି ଲାଗିଲା। ନଗରବିଜ୍ଞାନ ନୀତି ଉପରେ ଅବଶ୍ୟ ତିଷ୍ଠି ରହିଛି। ମାନବୀୟ ମୂଲ୍ୟବୋଧ ତଥା ସଚେତନତା, ସାମାଜିକ ସ୍ତରରେ ଦରକାର କିନ୍ତୁ ତା' ସହିତ ଅହେତୁକ ବିଶ୍ୱାସକୁ ଯାବୋଡ଼ି ଧରି ରଖିବାର କାହିଁକି ଆବଶ୍ୟକତା ଅଛି ବୋଲି ମତ ଦିଆଯାଉଛି? ମନ୍ଦିରକୁ ନଯାଇ ଠାକୁରଙ୍କୁ ପୂଜା ନକରି, ବ୍ରତ, ଉପାସ ଆଦି ନକରି ଜଣେ କ'ଣ ଖେଳାଳି, କି ଭଲ ଶିକ୍ଷାବିତ୍, କି ଭଲ ଡାକ୍ତର ଆଦି ହୋଇପାରୁ ନାହାନ୍ତି କି? ସାର୍ କହୁଥିବା ମତଟି ଯୁକ୍ତିସଂଗତ ମନେ ହେଉନାହିଁ"।

x x x x

ସେଦିନ ସଂଧ୍ୟାରେ ଅଜୁ ଘରେ ପଢ଼ାଘରକୁ ଯିବା ପୂର୍ବରୁ ଦେଖିଲେ, ବୋଉ ଠାକୁରଘରେ ମୁଣ୍ଡିଆ ମାରୁଥିଲେ। 'କ୍ଷୀଣ ସ୍ୱରରେ କହୁଥିଲେ "ଠାକୁରେ ମୋ ପୁଅକୁ ସଦ୍‌ବୁଦ୍ଧି ଦିଅ। ସେ ଏଣୁ ତେଣୁ କ'ଣ ବକିଚାଲିଛି। ବାହାର ଲୋକେ, ସ୍କୁଲ ଶିକ୍ଷକ ଆଦି ସମସ୍ତଙ୍କ ସାଙ୍ଗରେ ଯୁକ୍ତି କରୁଛି। ଏଥିରେ ତା'ର ଅନେକ ଶତ୍ରୁ ପାଲଟୁଥିବେ। ତୁମେ ତାକୁ ସହାୟ ହୁଅ। ମୋ ପୁଅକୁ ଅବାଟରେ ନ ଯିବା ପାଇଁ ସୁବୁଦ୍ଧି ଦିଅ।"

ଅଜୁ ଏହା ଶୁ ଣି "ବୋଉ କ'ଣ କରୁଛୁ? କାହାକୁ କ'ଣ କହୁଛୁ?" ବୋଲି ପଚାରିଲେ।

"ତୁ ଦେଖୁନୁ, ମୁଁ ପରା ତୋ ପାଇଁ ଠାକୁରଙ୍କୁ ଡାକୁଛି" କହିଲେ ବୋଉ । "ବୋଉ, ମୁଁ ତ କେବଳ ତତେ ଦେଖୁଛି । ତୁ କେବଳ ଗୁଣୁଗୁଣୁ ହୋଇ କ'ଣ ଗୁଡାଏ କହିଚାଲିଛୁ । ପାଖରେ କେହି ନାହାନ୍ତି । ତୁ କାହାକୁ ଠାକୁର ବୋଲି କହୁଛୁ ? ସେ କିଏ ?

"ଆରେ ବୋକା, ଠାକୁର କ'ଣ ଖାଲି ଆଖିରେ ଦେଖାଯାଆନ୍ତି ? ସେ ତ ସବୁଠି ଅଛନ୍ତି । ଶୁଦ୍ଧ ପବିତ୍ର ମନରେ ନିଷ୍ଠାସହ ଡାକିଲେ ସେ ଭକ୍ତର କଥା ନିଶ୍ଚୟ ଶୁଣନ୍ତି । ତୁ ତ ସେସବୁ କେବେ କରୁନୁ । ତୁ କେମିତି ତେବେ ଜାଣିବୁ ?- ବୋଉ କହିଲେ ।

"ବୋଉ, ତତେ ମୁଁ ଜାଣେ । ବାପାଙ୍କୁ ଜାଣେ ଏବଂ ସେହିପରି ଅନ୍ୟମାନଙ୍କୁ ଦେଖୁଛି ବା ତାଙ୍କ ବିଷୟରେ ଶୁଣୁଛି ଏବଂ ସେମାନଙ୍କୁ ଦେଖାହେବାର ସମ୍ଭାବନା ଅଛି ଅଥବା ଅନ୍ୟ ପ୍ରକ୍ରିୟାରେ ସେମାନେ କିମ୍ବା ସେହିପରି ନ ଦେଖିଥିବା ଘଟଣାମାନ ମଧ୍ୟ ଜାଣିହେଉଛି । କିନ୍ତୁ ଯେ କେବେହେଲେ ଦୃଶ୍ୟ ବା ଅନ୍ୟଭାବେ ଜ୍ଞାତ ହେବାର ସମ୍ଭାବନା ମଧ୍ୟ ନାହିଁ, ତାହାଙ୍କୁ କେବଳ ଅନ୍ୟମାନେ ମାନିନେଇ ଆମ ନିକଟରେ ପ୍ରଚାର କରିଯାଇଛନ୍ତି ବୋଲି ଆମେ ତାଙ୍କୁ ମାନିବାକୁ ବାଧ୍ୟ- ଏକଥାଟା ମୁଁ ତ ମୋଟେ ବୁଝିପାରୁନି । ଯଦି ଠାକୁର ସବୁଠି ଅଛନ୍ତି, ତାଙ୍କୁ ପୁଣି ଗୋଟିଏ ନିର୍ଦ୍ଦିଷ୍ଟ ଜାଗାରେ କେମିତି ଦେଖିହେବ, କଥାଟା ପ୍ରକୃତରେ ଅବୋଧ ହୋଇରହୁଛି ।

ଟିକେପରେ, ଅଳୁ ପୁଣି ବୋଉଙ୍କୁ ପଚାରିଲେ । "ଆଚ୍ଛା ସତ କହିଲୁ, ତୁ କ'ଣ ଠାକୁରଙ୍କୁ ଦେଖିଛୁ ? ତୁ ତ ବରାବର ପ୍ରତିଦିନ ତାଙ୍କୁ ନିଷ୍ଠା ସହ ଡାକୁଛୁ ।"

"ନା, ମୁଁ ଠାକୁରଙ୍କୁ ଦେଖିନି, କିନ୍ତୁ, ମୁଁ ନ ଦେଖିଲେ କ'ଣ ହେଲା । ପୂର୍ବରୁ ମୁନି, ଋଷିମାନେ ଆଉ ବିଜ୍ଞ ସାଧୁ ସନ୍ଥମାନେ ଠାକୁରଙ୍କୁ ଅନୁଭବ କରିଛନ୍ତି । ତେଣୁ ମୋର ଏବଂ ଅନ୍ୟମାନଙ୍କର ଠାକୁର ଅଛନ୍ତି ବୋଲି ଦୃଢ଼ ବିଶ୍ୱାସ ଅଛି । କଥାରେ ଅଛି 'ବିଶ୍ୱାସେ ମିଳଇ ହରି, ତର୍କେ ବହୁଦୂର' । ତୁ ତ ଖାଲି ଯୁକ୍ତିତର୍କ କରୁଛୁ । ତତେ ମୁଁ ଏସବୁକଥା ବୁଝାଇ ପାରିବିନି । ବୋଉଙ୍କର ଏ ପ୍ରତିକ୍ରିୟାରେ ଅଳୁ ପୁଣି କହିଲେ, "ବୋଉ, ଠିକ୍ କଥା । ବିଶ୍ୱାସ କରିବା ଆଉ ଦେଖିବା ଅଲଗା ଅଲଗା କଥା । ଠାକୁରଙ୍କୁ ନଦେଖିଲେ ହେଁ ବିଶ୍ୱାସ କରିବାରେ କିଛି ଅସୁବିଧା ନାହିଁ ବୋଲି ଅନେକ ଧରିନେଇଛନ୍ତି । ତାଙ୍କର ବ୍ୟକ୍ତିଗତ ବିଶ୍ୱାସ ଠାକୁରଙ୍କ ପ୍ରତି ଅଛି, ତାହା ମୁଁ ଅସ୍ୱୀକାର କରୁନି । ମୁଁ ନିଜେ କିନ୍ତୁ ଠାକୁରଙ୍କୁ ବିଶ୍ୱାସ ବା ଅବିଶ୍ୱାସର କୌଣସି ଭିତ୍ତି ପାଉନି । ତାଙ୍କ ବିଷୟରେ ଯାହାକିଛି କୁହାଯାଉଛି ବା ଧର୍ମଶାସ୍ତ୍ରମାନଙ୍କରେ ବର୍ଣ୍ଣନା କରାଯାଇଛି, ମୁଁ କେବଳ ସେଗୁଡିକ ବୁଝି ନପାରି ପ୍ରଶ୍ନ କରୁଛି । ବୁଝିଲେ ସିନା ଯାହାକିଛି ବିଶ୍ୱାସ ବା ଅବିଶ୍ୱାସ କରିବି, ନବୁଝି, ଖାଲି ଶୁଣାକଥାକୁ ବିଶ୍ୱାସ ପୂର୍ବକ ମାନିନେବା କ'ଣ ଠିକ୍ ?"

ଅଜୁ ଦେଖିଲେ, ବୋଉ କେତେବେଳୁ ଚାଲିଗଲେଣି । ତା'ପରେ ସେ ନିଜ ପଢ଼ାଘରକୁ ଚାଲିଆସିଲେ । ପଢ଼ାଘରେ ଚୌକିରେ ବସି ଟେବୁଲରେ ଥିବା ବହିଖାତା ସଜାଡିବାରେ ସେ କିଛି ସମୟ ବ୍ୟସ୍ତ ରହିଲେ । କେଉଁଥିରେ ତାଙ୍କ ମନ ସ୍ଥିର ନଥିଲା । ବୋଧେ କିଛିଟା ମାନସିକ ଆଶ୍ୱସ୍ତି ସେ ପାଉଥିଲେ । ସେ ପୁଣି ଚିନ୍ତା କରିବାକୁ ଲାଗିଲେ ।

"ଚାନ୍ଦା ମାଗିବାକୁ ଆସିଥିବା ଲୋକେ, କ୍ଲାସରେ ପଢ଼ାଉଥିବା ସାର୍ ଏବଂ ଘରେ ବୋଉ କେହିତ ତା'ର ବୈରୀ ନୁହଁନ୍ତି । ବୋଉ ତ ପୁଅର କେବେ ଅମଙ୍ଗଳ ଚିନ୍ତା କରି ନପାରେ । କାହିଁକି ସେମାନଙ୍କ ବଦ୍ଧମୂଳ ଧାରଣା ବା ବିଶ୍ୱାସ ତା' ପକ୍ଷରେ ଗ୍ରହଣଯୋଗ୍ୟ ହେଉନି ! ସେମାନେ ଉଣା ଅଧିକେ ପାରମ୍ପରିକତା, ଗତାନୁଗତିକତା ସମ୍ବନ୍ଧରେ ପ୍ରଶ୍ନ ନ ଉଠାଇ ତାକୁ ମାନିନେବାରେ ସମସ୍ୟାର ସମାଧାନ ହୋଇଗଲା ବୋଲି ଧରି ନେଇଛନ୍ତି !

ଖାଲି ସେମାନେ କାହିଁକି, ସମାଜରେ ଅନେକ ଅଛ ବହୁତେ ଗତାନୁଗତିକତାକୁ ଆଖିବୁଜା ମାନିନେବାରେ ପଛାଉ  ନାହାନ୍ତି । ଠାକୁର ରଖିଲେ ପୂଜା କରିବାକୁ ପଡ଼ିବ । ପୂଜା କରିବାକୁ ଫୁଲ ଦରକାର । ଫୁଲ ନିଜ ଘରେ ନଥିଲେ, ଅନ୍ୟ ଘରୁ ଚୋରିକରି ଆଣିବାକୁ ହେବ, ସେଥିରେ ପାପ ଲାଗେନି । 'ନଅ, ଛ, ତେର ଯେବେ ଯିବ ଘର, ତେବେ ହେବ ଜର' ଏକଥାକୁ ମାନି ତେରଦିନ ଘରକୁ ନ ଫେରି ତା ଛଡା ଅନ୍ୟଦିନ ଘରକୁ ଫେରିବ- ଏମିତି କେତେ ରୀତି ରେଆଜ ଧର୍ମୀୟ ବୋଲି ଧରିନେଇ ତାକୁ ମାନିବାକୁ ପଡ଼ିବ । ସମାଜରେ ଚଳିବାକୁ ହେଲେ ଏସବୁ ନକଲେ ଏକଘରକିଆ ହୋଇ ଲାଞ୍ଛିତ ହେବାକୁ ପଡ଼ିବ । ଈଶ୍ୱର କିଏ ? ଏ ପ୍ରଶ୍ନ ପଚାରିବନି, ପ୍ରଶ୍ନ ପଚାରିଲେ ଅନ୍ୟମାନେ ତାକୁ ବିଦ୍ରୂପ କରିବେ, ଥଟ୍ଟା କରିବେ । କେହି କେହି ନାସ୍ତିକର ପାଗଳାମି ହୋଇଛି ବୋଲି କହିପାରନ୍ତି ।

ଅଜୁ କ'ଣ କରିବେ, ସ୍ଥିର କରି ପାରୁନଥିଲେ । ସମସ୍ତେ ଧରିନେଇଥିବା କଥାକୁ ଗ୍ରହଣ କରିନେବେ ନା ସେ ବିଷୟରେ ଅହରହ ପ୍ରଶ୍ନ ବା ଆଶଙ୍କା ପ୍ରକାଶ କରିବେ, ଅଜୁ ବୁଝିପାରୁ ନଥିଲେ ଓ ମାନସିକ ଦ୍ୱିଧା ଭିତରେ ଜଡ଼ିତ ହୋଇ ରହିଥିଲେ । ଏହି ପ୍ରକାରର ବିଶ୍ୱାସ ଓ ବଦ୍ଧମୂଳ ଧାରଣା ପ୍ରତି ବିବିଧ ପ୍ରଶ୍ନ କିଏ, କ'ଣ, କାହିଁକି, ତାଙ୍କ ମନରେ ବାରମ୍ବାର ଉପୁଜିଥିଲା । ଏସବୁ ପ୍ରଶ୍ନଗୁଡ଼ିକ କ'ଣ ନିରର୍ଥକ ? ମତାନ୍ଧତାରେ ଭରପୂର ହୋଇ ଅଧର୍ମର ପୃଷ୍ଟପୋଷକତା କରିବା ନା ମାନବୀୟ ନୈତିକ ମୂଲ୍ୟବୋଧଭିତ୍ତିକ ସାଧାରଣ ବିଜ୍ଞାନ ସମ୍ମତ ପ୍ରଶ୍ନଗୁଡ଼ିକ ଉତ୍ଥାପନ କରି ସେଗୁଡ଼ିକର ଯୌକ୍ତିକ ବିଶ୍ଳେଷଣ ନିମନ୍ତେ ଆଗେଇବା ?

X X X X

ଇତି ମଧ୍ୟରେ କେତେ ବର୍ଷ ବିତିଗଲାଣି । ଅଜୁ (ଅଜୟ) ବଡ଼ ହୋଇ ଶିକ୍ଷାଗତ ଯୋଗ୍ୟତା ହାସଲ କଲେଣି । ବର୍ତ୍ତମାନ ସେ ଡାକ୍ତର-ବିଦ୍ୟା ଅଧ୍ୟୟନ କରି ଏକ ସରକାରୀ

ମେଡିକାଲ୍ କଲେଜରେ ନିଯୁକ୍ତି ପାଇ ଉଭୟ ଶିକ୍ଷା ଓ ରୋଗୀ-ଚିକିତ୍ସାରେ ଲାଗି ପଡିଛନ୍ତି । ଏସବୁ ସତ୍ତ୍ୱେ ତାଙ୍କର ପିଲାଦିନରୁ ରହି ଆସିଥିବା ଜୀବନ-ଯାପନ ନେଇ କେତେକ ସାମାଜିକ ତଥା ବ୍ୟକ୍ତିଗତ ମୌଳିକ ପ୍ରଶ୍ନ ତାଙ୍କୁ ଅହରହ ବ୍ୟସ୍ତ କରୁଥିଲା । ସେଥିପାଇଁ ସେ ନିଜର ଡାକ୍ତରି-ବିଦ୍ୟାରେ ଅଧିକ ପଠନ ଓ ପ୍ରାୟୋଗିକ କାର୍ଯ୍ୟ-କଳାପ ବ୍ୟତୀତ ନିଜର ସ୍ୱାଭାବୋଚିତ ମୁକ୍ତ ମନର ପ୍ରଶ୍ନ ଗୁଡିକ ଉପରେ ଚିନ୍ତନ ଜାରି ରଖିଥିଲେ । ସେହି ସଂକ୍ରାନ୍ତରେ ସାମାଜିକ ପରିପ୍ରେକ୍ଷୀରେ ପ୍ରଚଳିତ ବିଭିନ୍ନ ଚାଲି-ଚଳଣ ଏବଂ ପ୍ରଥା କିପରି ଭାବେ ବ୍ୟକ୍ତି ତଥା ସମାଜର ହିତ ସାଧନ ବ୍ୟତିରେକେ ଅହେତୁମୂଳକ, ଅନ୍ଧାନୁସରଣରେ ମଜ୍ଜି ରହିଛି, ତାହାର ବହୁଳ ଉଦାହରଣ ଅଜୟଙ୍କୁ ବ୍ୟତିବ୍ୟସ୍ତ କରୁଥିଲା । ସେ ନିଜେ ସମାଜ-ସେବୀ ଅଥବା ନେତା ନ ଥିଲେ ହେଁ, ବରାବର ସେହି ମୌଳିକ ସମସ୍ୟା ପ୍ରତି ସଜାଗ ପୂର୍ବକ ତାହାର ଏକ ସମୁଚିତ ତଥା ମାନବୋଚିତ ସମାଧାନ ପ୍ରତି ତାଙ୍କର ଧ୍ୟାନ ଥିଲା । ତେଣୁ ନିଜର ପେସାଦାର-ବୃତ୍ତି ସହ, ସେ ସଂକ୍ରାନ୍ତରେ ବିବିଧ ଆଲୋଚନା ତଥା ପର୍ଯ୍ୟାଲୋଚନା ପ୍ରତି ସେ ଦୃଷ୍ଟି ଦେଉଥିଲେ । ଏବଂ ସମୟ ତଥା ସୁବିଧାକ୍ରମେ ସେ ସେଥିରେ ଅଂଶଗ୍ରହଣ କରୁଥିଲେ ମଧ୍ୟ ।

ଏହି ପ୍ରସଙ୍ଗରେ, ଭାଷାରେ ବ୍ୟବହୃତ ଦୁଇଟି ଶବ୍ଦ 'ବିଶ୍ୱାସ' ଓ 'ଅନ୍ଧବିଶ୍ୱାସ' ତାଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ଦୁଇଟି ଯାକ ଅଭିବ୍ୟକ୍ତିର ଅର୍ଥ ଓ ବ୍ୟବହାର ସ୍ଥଳ ବିଶେଷରେ ନିର୍ଦ୍ଦିଷ୍ଟ ଭାବେ ପୃଥକ୍ । ଅଧୁନା ସେ ଦୁଇଟିର ବ୍ୟବହାରରେ ସାଧାରଣତଃ ତାରତମ୍ୟ ହେଲା ଯେ 'ବିଶ୍ୱାସ' କହିଲେ ତାହା ଅହେତୁକ ନୁହେଁ । ଯେ କେହି କୌଣସି ସାଧାରଣ ବିଷୟ ତଥା ଘଟଣା ପ୍ରତି କିଛି ବିଶ୍ୱାସ ମୂଳକ ବିଚାର / ମନ୍ତବ୍ୟ କଲେ, ସେଥିରେ ଯେ କିଛି କାରଣ/ହେତୁ ମାନିନେଇ ହୁଏ, ତାହା ଅବଶ୍ୟ ଅନସ୍ୱୀକାର୍ଯ୍ୟ, ତେଣୁ ସାଧାରଣ ସ୍ତରରେ କୌଣସି ବିଶ୍ୱାସ ପ୍ରଥମରୁ ଅମୂଳକ ବା ଭିତ୍ତିହୀନ ବୋଲି ଧରାଯାଏ ନାହିଁ । ସେ ବିଶ୍ୱାସ ଜନିତ ମନ୍ତବ୍ୟକୁ କିଛି ପରୀକ୍ଷଣ ଏବଂ ବିଶ୍ଳେଷଣ କଲେ, ଯଦି ତାହା ଅସତ୍ୟ ବୋଲି ସ୍ଥିରୀକୃତ ହୁଏ, ତେବେ ସେ ବିଶ୍ୱାସ ପରିହାର ହୁଏ । ଅତଏବ ସାଧାରଣ ଭାବରେ ବିଶ୍ୱାସ ମୌଳିକତଃ ସତ୍ୟ ବା ମିଥ୍ୟା ପଦବାଚ୍ୟ ହୁଏ ନାହିଁ । ପରବର୍ତ୍ତୀ ପରୀକ୍ଷା / ନିର୍ଦ୍ଧାରଣ ଦ୍ୱାରା, ତାହାର ସତ୍ୟାସତ୍ୟ ନିର୍ଦ୍ଧାରିତ ହୁଏ । ଯଦିଓ, ବିଶ୍ୱାସ-ଜନିତ କଥନ କପୋଳକଳ୍ପିତ ନ ହୋଇ କିଛି କାରଣ ବା ହେତୁ ଉପରେ ବ୍ୟବସ୍ଥିତ ବୋଲି ପ୍ରଚ୍ଛନ ଦାବି ରହିଥାଏ, ଯାହା ପରେ ଅବଶ୍ୟ ପରୀକ୍ଷଣ ହେବାର ରାସ୍ତାକୁ ଉନ୍ମୁକ୍ତ କରିଥାଏ ।

ଅନନ୍ତର 'ଅନ୍ଧବିଶ୍ୱାସ' ଅଭିବ୍ୟକ୍ତିର ଚର୍ଚ୍ଚା କରାଯାଇପାରେ । ଯଦିଓ ସଂସ୍କୃତ ଭାଷାର 'ଅନ୍ଧ' ଶବ୍ଦର ଏକାର୍ଥ ପଦ ଭାବେ ଇଂରାଜୀ ଶବ୍ଦ 'blind' ସ୍ୱୀକୃତ ହୋଇଛି, ତଥାପି ଏହା ଅବଶ୍ୟ ଉଲ୍ଲେଖନୀୟ ଯେ ସଂସ୍କୃତ ଭାଷାରେ 'ଅନ୍ଧ' ଏବଂ 'ବିଶ୍ୱାସ' ର ଯୋଗ ବା ସଂଯୁକ୍ତ କରାଯାଇ ଏକ ଅଭିବ୍ୟକ୍ତି ପଦର ବ୍ୟବହାର ହୋଇନାହିଁ । ଆଧୁନିକ

ଯୁଗରେ ଭାରତରେ ପ୍ରଚଳିତ ବିଭିନ୍ନ ମୁଖ୍ୟ ପ୍ରାନ୍ତୀୟ ଭାଷାରେ 'ଅନ୍ଧବିଶ୍ୱାସ'ର ବ୍ୟାପକ ବ୍ୟବହାର ହୋଇଛି ଏବଂ ତାହା ପ୍ରାୟ ଇଂରାଜୀ ଅଭିବ୍ୟକ୍ତି 'blind belief' ର ଏକାର୍ଥ ଭାବେ ବ୍ୟବହୃତ କରାଯାଏ ।

ଏ' ଭଳି ଆଲୋଚନାରୁ, ଅଜୟ ତାଙ୍କ ଚିନ୍ତନରେ ଏକ ବିଚିତ୍ର ଭାବର ସୂଚନା ପାଇଲେ । ପ୍ରାୟ ଭାରତର ସବୁ ମୁଖ୍ୟ ଭାଷାର ବ୍ୟବହାର ମୌଳିକତଃ ଆଦି କାଳରୁ ପ୍ରଚଳିତ ସଂସ୍କୃତ ଭାଷାରୁ ଉଦ୍ଧୃତ ଏବଂ ବହୁଳାଂଶରେ ମୂଳ ସଂସ୍କୃତ ଭାଷାର ଆଭିମୁଖ୍ୟକୁ ତାହା ଆପଣେଇ ନେଇଛି । ଏବଂ, ଏଥିସହିତ, ଆନ୍ତର୍ଜାତୀୟ ସ୍ତରରେ ବିଶେଷ ପ୍ରସିଦ୍ଧିଲାଭ କରିଥିବା ଇଂରାଜୀ ଭାଷାର ସଂସ୍ପର୍ଶରେ ପ୍ରାୟ ଦୁଇ ଶତକ ଧରି ଆସିଥିବାରୁ, ସେଥିରୁ କେତେକ ଭାବଧାରାରୁ ଉତ୍ପନ୍ନ ଶବ୍ଦ ତଥା ସମାହାର ପଦକୁ ସ୍ୱକୀୟ ପ୍ରାନ୍ତୀୟ ଭାଷାରେ ତାହାରି ଅର୍ଥରେ ଅନୁବାଦ କରି ଏକ ଅଭିବ୍ୟକ୍ତିର ପ୍ରଚଳନ କରିଛି, ଯାହା ମୂଳ ସଂସ୍କୃତ ଭାଷାରେ ବିରଳ । ଅଜୟଙ୍କ ପାଇଁ ଏ'ପରି ବିଚିତ୍ରତାର ତାତ୍ପର୍ଯ୍ୟ କ'ଣ ହୋଇପାରେ ? ଏ ପ୍ରଶ୍ନଟି ତାଙ୍କୁ ଚିନ୍ତା ମଗ୍ନ କଲା । ସଂସ୍କୃତ ଭାଷାରେ 'ଅନ୍ଧବିଶ୍ୱାସ' ଅଭିବ୍ୟକ୍ତିର ପ୍ରୟୋଗ ହୋଇନାହିଁ, ଯଦିଓ ତାହାର ସାଂପ୍ରତିକ ଅନ୍ୟାନ୍ୟ ଭାଷାରେ ଯେ ପ୍ରଚଳନ କେବଳ ବିଦ୍ୟମାନ ତାହା ନୁହେଁ, ବରଂ ତାହା ଏକ ନର୍ଦ୍ଦିଷ୍ଟ ଭାବର ଦ୍ୟୋତକ ହୋଇପାରିଛି । ଅର୍ଥାତ୍ ସେଠାରେ ବିଶ୍ୱାସ ଯେତେବେଳେ ଅହେତୁକ ଓ ବିଚାରବିହୀନ ନିରାଧାର ଆସ୍ଥା ଉପରେ ନିର୍ଭରଶୀଳ ହୁଏ, ସେତେବେଳେ ତାହା ବିଶ୍ୱାସ ନହୋଇ ଅନ୍ଧ ଅଥବା ଅବୋଧତାର ଶିକାର ହୁଏ ।

ଅନ୍ୟ ଭାଷାରେ କହିଲେ, ଅନ୍ଧବିଶ୍ୱାସ ନୁହେଁ ବିଶ୍ୱାସ; ବରଂ ତାହାର ବ୍ୟଭିଚାର । କିନ୍ତୁ ମୂଳ ସଂସ୍କୃତ ଭାଷାରେ ଏ'ପରି ଦୁଇ ପଦର ସମାହାର ବିରଳ ଥିବାର କାରଣ କ'ଣ ହୋଇପାରେ ? ଅଜୟ ଏହାର ତାତ୍ପର୍ଯ୍ୟ ନିରୂପଣ କରିବା ପାଇଁ ଇଚ୍ଛୁକ ଥିଲେ । ତାଙ୍କର ହୃଦବୋଧ ହେଲା ଯେ ତତ୍କାଳୀନ ସଂସ୍କୃତ ଭାଷାରେ ପ୍ରଚଳିତ ଭାବ-ବିନିମୟ ପ୍ରସଂଗରେ 'ବିଶ୍ୱାସ' ଏକ ଅସାଧାରଣ ଅର୍ଥ ଦ୍ୱାରା ନିଷ୍ପନ୍ନ, ଯାହା ଏବର ସାଧାରଣ ପ୍ରଚଳିତ ଅର୍ଥଠାରୁ ଭିନ୍ନ । ସେଭଳି 'ବିଶ୍ୱାସ' ଶବ୍ଦର ଅର୍ଥ କଦାଚନ ଅସତ୍ୟ ବା ଭ୍ରମାତ୍ମକ ହୋଇ ନପାରେ ବୋଲି ଧାରଣା ପ୍ରାୟ ବଦ୍ଧମୂଳ ଥିଲା; ବୋଧହୁଏ ପାରମ୍ପରିକ ହିନ୍ଦୁ ଧର୍ମୀୟ ବ୍ୟବସ୍ଥା ଯୋଗୁ । ଫଳରେ 'ବିଶ୍ୱାସ' ଅନ୍ଧସୂଚକ ହେବାର ସମ୍ଭାବନାକୁ ଉପେକ୍ଷା କରି ଏହିଭଳି ପରମ୍ପରାର ଉଦ୍ରେକ ହେଲା ଏବଂ ତାହା ବହୁକାଳ ପର୍ଯ୍ୟନ୍ତ ସ୍ଥାପିତ ହୋଇ ରହିଲା ।

ଅଜୟଙ୍କ ଏ'ଭଳି ଅନୁଶୀଳନରୁ ତାଙ୍କର ଧାରଣା ଦୃଢ଼ୀଭୂତ ହେଲା ଯେ ଭାରତୀୟ ସାଂସ୍କୃତିକ ପରମ୍ପରାରେ ବହୁକାଳ ଧରି ବିଶ୍ୱାସ କେବେହେଲେ ଭ୍ରମାତ୍ମକ ହୋଇ ନପାରେ ବୋଲି ଧାରଣା ସୃଷ୍ଟ ହେଲା ଏବଂ ତାହାର ପରିଣାମରେ, ବିଶ୍ୱାସ ଏବଂ ଜ୍ଞାନ ମଧ୍ୟରେ ପାର୍ଥକ୍ୟକୁ ଅବଜ୍ଞା କରାଯିବାର ପ୍ରୟାସ ହେଲା । ଏବଂ ତାହାଯୋଗୁ ବିଶ୍ୱାସ, ଜ୍ଞାନ / ପ୍ରକୃତ

ଜ୍ଞାନ (ଦିବ୍ୟଜ୍ଞାନ) ଠାରୁ ଅଲଗା ନୁହେଁ ବୋଲି ପ୍ରଚାର ଧର୍ମୀୟ ତଥା ଆଧ୍ୟାତ୍ମିକ ସ୍ତରରେ ଜମାଟ ବାନ୍ଧିନେଲା । କିନ୍ତୁ ସେ'ଭଳି ପରମ୍ପରା ଭାରତୀୟ ଜନମାନସରେ ଯେତେ ଦୃଢ଼ୀଭୂତ ହେଲେହେଁ, ତାହା ନିରପେକ୍ଷ ବିଚାର-ବିମର୍ଶ ଦୃଷ୍ଟିରୁ ଆଦୌ ବୈଧ ନୁହେଁ ।

ବିଡମ୍ବନାର ବିଷୟ ଯେ ଭାରତରେ ବିଶେଷକରି ଓଡିଶାରେ ସାଧାରଣ ଲୋକଙ୍କ ମଧ୍ୟରୁ ଅନେକ ଧର୍ମୀୟ ବିଶ୍ୱାସକୁ ଶ୍ରଦ୍ଧା ଓ ଭକ୍ତି ଭାବରେ ଗ୍ରହଣ କରିଥାନ୍ତି ଏବଂ ତାହା ଅନ୍ଧବିଶ୍ୱାସ ହୋଇ ନପାରେ ବୋଲି ଦୃଢ଼ ମତବ୍ୟକ୍ତ କରନ୍ତି । ସେ' କ୍ଷେତ୍ରରେ କୌଣସି ଯୁକ୍ତି / ତର୍କ / ବିଚାର/ ଅନୁଶୀଳନ ପରିତ୍ୟଜ୍ୟ ବୋଲି ସେମାନେ ମାନି ନିଅନ୍ତି । ସେଭଳି ମତକୁ ପରମ୍ପରାଶ୍ରିତ ଧର୍ମାଚାର୍ଯ୍ୟମାନେ ପ୍ରୋତ୍ସାହନ ପୂର୍ବକ ପ୍ରଚାର କରିଥାନ୍ତି । ଏହି ସଂକ୍ରାନ୍ତରେ "ବିଶ୍ୱାସେ ମିଳଇ ହରି ତର୍କେ ବହୁଦୂର" ପରି ଅନେକ ଲୋକପ୍ରଚଳିତ 'ବୋଲି' ପରିଦୃଷ୍ଟ ହୁଏ ।

ଅଜୟଙ୍କ ଏଥିରୁ ଦୃଢ଼ ଧାରଣା ହେଲା ଯେ ସାଧାରଣ ଲୋକ କହିଲେ ପାଠୁଆ, ଚାକିରିଆ, ଡାକ୍ତର, ଇଞ୍ଜିନିୟର ଏବଂ ବ୍ୟବସାୟୀ ପ୍ରଭୃତିଙ୍କୁ ମଧ୍ୟ ସାମିଲ କରାଯାଏ, ସେମାନଙ୍କ ଭିତରୁ ଅନେକ ନିଜ ନିଜର ପେଶାଦାର କାର୍ଯ୍ୟନିର୍ବାହ କଲାବେଳେ ବିଚାର-ବିମର୍ଶର ପ୍ରୟୋଗ କରିଥିଲେ ମଧ୍ୟ ଅକ୍ସବହୁତେ ଧର୍ମୀୟ ବିଶ୍ୱାସ, ଅନ୍ଧ ବିଶ୍ୱାସ ଜନିତ ନୁହେଁ ବୋଲି ଧରି ନିଅନ୍ତି ଏବଂ ତଦନୁଯାୟୀ ନିଜର ଧାରଣାକୁ ଯେତେ ଅତର୍କୀୟ, ଅହେତୁକ ଓ ଅମାନବୀୟ ହେଲେହେଁ, ସେସବୁକୁ ନିଜ ନଜ ମନରେ ଜାବୋଡି ରଖନ୍ତି । ତାଙ୍କ ଦୃଷ୍ଟିରେ ଧର୍ମ-ବିଶ୍ୱାସକୁ ଯୁକ୍ତି ଦ୍ୱାରା ପ୍ରମାଣ-ସିଦ୍ଧ କରିନହେଲେ ହେଁ, ତାହା ଅବଶ୍ୟ ବିଶ୍ୱାସନୀୟ ଓ ଅପରିହାର୍ଯ୍ୟ ।

ଅବଶ୍ୟ ଅଜୟ ବୁଝିପାରିଲେ ଯେ ଲୋକମାନଙ୍କ ଏ'ଭଳି ଧାରଣା ନିଶ୍ଚିତଭାବେ ବିଡ଼ମ୍ବନା । କାରଣ, ହେତୁ ଅଥବା କାରଣ-ବିହୀନ ଅନ୍ଧବିଶ୍ୱାସକୁ ତଥାକଥିତ ଧର୍ମ-ବିଶ୍ୱାସର ମାନ୍ୟତା ଦିଆଯାଇ, ପୁଣି ତାହା ନୈତିକତା ଦୃଷ୍ଟିରୁ ମଧ୍ୟ ଅନୁସରଣୀୟ ବୋଲି ପ୍ରଚାର କରାଯାଇଛି । ଅଜୟ କିନ୍ତୁ ଏଥିରେ ଏକମତ ନ ହୋଇ ଧର୍ମୀୟ ଧାରଣା ଏବଂ ନୈତିକ ଅବବୋଧ ଏକାର୍ଥ-ବୋଧକ ନୁହେଁ ବୋଲି ଆଗରୁ ବିବେଚନା କରିଛନ୍ତି । ଜଣେ ଧର୍ମେତର-ନାସ୍ତିକ ଯେ ସାଧାରଣଭାବେ ପ୍ରଚଳିତ ନୀତିଗତ ଶୃଙ୍ଖଳା-ପୂର୍ବକ ଜୀବନ ପ୍ରଣାଳୀକୁ ଆବୋରିଥିବାର ବହୁ ଉଦାହରଣ ରହିଛି । ତେଣୁ ଧାର୍ମିକତା ଏବଂ ନୈତିକତାବୋଧ ଏକାର୍ଥକ ହୋଇ ନପାରନ୍ତି ।

କହିବା ବାହୁଲ୍ୟ ଯେ ଆଜିକାଲି ଯାହା ହେତୁଦ୍ୱାରା ବ୍ୟବସ୍ଥିତ ଯାହା ବିଜ୍ଞାନାନୁସରଣ ଦ୍ୱାରା ସମର୍ଥିତ, ତାହା ଦୈନନ୍ଦିନ ଜୀବନରେ ଆଚରିତ ଏବଂ ବ୍ୟବହୃତ । ତଥାପି ସମାଜରେ ଅନେକ ବ୍ୟକ୍ତି ଏବେବି ଅଛନ୍ତି, ଯେଉଁମାନେ ନିଜ ପୁଅ ଓ ଝିଅ ମଧ୍ୟରେ ପୁଅକୁ ବେଶୀ

ଆପଣେଇ ଥାଆନ୍ତି । ସେମାନଙ୍କ ଦୃଷ୍ଟିରେ ଝିଅ ବାହାହୋଇ ପରଘରକୁ ଯିବ, ପରଗୋତ୍ରୀ ହୋଇଯିବ । ଯାହାହେଲେ ବି ପୁଅ ଘରେ ରହିବ ଏବଂ ବାପ/ମାଙ୍କ ଦେହାନ୍ତେ ମୁହଁରେ ନିଆଁ ଦେବ । ସେଥିରେ ସେମାନଙ୍କର ପରକାଳରେ ମଙ୍ଗଳ ହେବ । ଏ'ପରି ଅନେକ ଅହେତୁକ, ଅବାସ୍ତବ ଧାରଣା ଲୋକଙ୍କ ଭିତରେ 'ବସା' ବାନ୍ଧିଛି । ଘରୁ ବାହାରିଲା ବେଳେ କେହି ଝାଡ଼ୁ କଲେ କିମ୍ବା ପଛରୁ ଡାକିଲେ ଅମଙ୍ଗଳ ହେବ ପରି କୁପ୍ରଥା, କୁସଂସ୍କାର ଅନେକଙ୍କ ମନରେ ଏବେ'ବି ଘନୀଭୂତ ହୋଇରହିଛି । ଅଜୟ ଏହିପ୍ରକାର ଅନ୍ଧବିଶ୍ୱାସରୁ ନିଜକୁ ଦୂରେଇ ରଖିଥିଲେ ଏବଂ ଏବେ ପରିଣତ ବୟସରେ ସେ ଅନ୍ୟମାନଙ୍କୁ ମଧ୍ୟ ଅହେତୁକତାରେ ସମର୍ଥନ ବା ନିର୍ଭର ନ କରିବା ପାଇଁ ପ୍ରୋତ୍ସାହନ ଦେଉଛନ୍ତି । ଜଙ୍ଗଲରୁ ପଛେ ଗଛ କଟାହୋଇ ଜଙ୍ଗଲ ମୂଳପୋଛ ହେଉ, ସେଥିଯୋଗୁ ପରିବେଶ ପଛେ ପ୍ରଦୂଷିତ ହେଉ, ଏବଂ ଜଳବାୟୁ ତଥା ସାଧାରଣ ବାତାବରଣ ଅସନ୍ତୁଳିତ ତଥା କଳୁଷିତ ହେଉ, ତଥାପି ଧର୍ମ ନାମରେ ଓଡିଶାରେ ଗଛ କାଟି ଠାକୁରଙ୍କ ପାଇଁ ରଥ ତିଆରି କରିବା ଜାରି ରହିଛି, ଖାଲି ପୁରୀରେ ନୁହେଁ, ଅନେକ ଗ୍ରାମ ତଥା ସହର ମାନଙ୍କରେ ଧର୍ମ ନାମରେ ଏ'ପରି ପରମ୍ପରାର ଦ୍ୱାହି ଦେବା ଅଯୌକ୍ତିକ ଓ ଅମାନବୀୟ । ଧର୍ମବିଶ୍ୱାସ ଏକ ବ୍ୟକ୍ତିର ବ୍ୟକ୍ତିଗତ ମତ ବା ଧାରଣା । ତାହା ଅନ୍ୟମାନଙ୍କ ଉପରେ ଲଦିଦେବା କିମ୍ବା ଅନ୍ୟମାନଙ୍କ ସ୍ୱକୀୟ ଭାବଗତ ରୁଚି ତଥା କର୍ତ୍ତବ୍ୟ ସମ୍ପାଦନରେ ବାଧା ଦେଇ ସର୍ବସାଧାରଣ ରାସ୍ତାରେ ବିରାଟ ସଂକୀର୍ତ୍ତନ, ମେଲୋଡି ପାଟିର ଆୟୋଜନ ସହିତ, ନାଚଗୀତ, ବାଣଫୁଟା ରୋଷଣୀ କରି ଅନ୍ୟମାନଙ୍କ ଶାନ୍ତି, ଶୃଙ୍ଖଳା ଭଙ୍ଗ କରିବା କ'ଣ ଅନ୍ଧ ପରମ୍ପରାର ପ୍ରକାଶକ ନୁହେଁ ? ଏ'ସବୁର ନିରାକରଣ ପାଇଁ ଜନ ସାଧାରଣଙ୍କ ମଧ୍ୟରେ ଜାଗତିକ ତଥା ଶୃଙ୍ଖଳାଗତ ସଚେତନତା ଆଣିବା ଅତ୍ୟନ୍ତ ଜରୁରୀ । ଅଜୟ ଏ'ସବୁର ପ୍ରତିବାଦ କରି ସାମାଜିକ ମୂଲ୍ୟବୋଧ ତଥା ଜନ ସଚେତନତା ଉପରେ ଗୁରୁତ୍ୱ ଆରୋପ କରିଚାଲିଛନ୍ତି ।

ଯେ ପର୍ଯ୍ୟନ୍ତ ଭାରତୀୟମାନେ, ବିଶେଷକରି ଓଡିଆମାନେ ଅନ୍ଧାନୁସରଣ ତ୍ୟାଗ କରିନାହାନ୍ତି, ସେପର୍ଯ୍ୟନ୍ତ ସେମାନେ କୌଣସି ବିଷୟ-ବ୍ୟବସ୍ଥାର ପରୀକ୍ଷା, ନିରୀକ୍ଷା କରିବାକୁ ଚେଷ୍ଟା କରୁନାହାନ୍ତି । ସେମାନଙ୍କର ଏତାଦୃଶ ଆଚରଣ ଯୋଗୁ ପରିବେଶ ପରିପନ୍ଥୀ ଓ ତଥାକଥିତ ଧର୍ମୀୟ କାର୍ଯ୍ୟକଳାପ ଚାଲୁ ରହିଥିବ,ଏବଂ ତାହାଦ୍ୱାରା ସାମାଜିକ ବିଶୃଙ୍ଖଳା, ଅଶାନ୍ତି, ନୀତିବିହୀନ ଶସ୍ତା ଅମୂଳକ ସାଲିସ୍ ଲାଗିରହିଥିବ । ଅଜୟଙ୍କର ପୂର୍ଣ୍ଣ ହୃଦ୍‌ବୋଧ ହୋଇଥିଲା ଯେ ଓଡିଶାର ବିପୁଳ ପ୍ରାକୃତିକ ଲୋକ-ହିତକର ସମ୍ପଦର ପ୍ରାଚୁର୍ଯ୍ୟ ଥିଲାବେଳେ, ଏଠାର ସାଧାରଣ ଲୋକ ନିଜର କର୍ମକୁଶଳତା ମାଧ୍ୟମରେ ତାହାର ସମୁଚିତ ବିନିଯୋଗ ନ କରିବା, ଜାଗତିକ ସ୍ତରରେ ମାନବ ତଥା ଅନ୍ୟ ପ୍ରାଣୀଙ୍କର ଯଥାଯୋଗ୍ୟ କୁଶଳତା ନିମନ୍ତେ ଧ୍ୟାନ ନ ଦେବା, ଏବଂ ସର୍ବୋପରି କଲ୍ୟାଣକର ଜନ ସଚେତନତା ଉପରେ ଜୋର ନ

ଦେବାରୁ ମୁଖ୍ୟତଃ ଏଠାରେ ସମୂହ ଅବନତି ତଥା ଲୋକଙ୍କର ଅବିଚାରିତ ଚିନ୍ତା ଏବଂ କାର୍ଯ୍ୟକଳାପ ବହୁଳାଂଶରେ ଏବେମଧ୍ୟ ଚାଲୁ ରହିଛି ।

ପ୍ରାୟ ପ୍ରମୁଖ ଧର୍ମୀୟ ପରମ୍ପରାରେ 'ସ୍ୱର୍ଗ-ନର୍କ' ବିଷୟ ନେଇ ସ୍ୱୀକୃତି ରହିଛି । ସେଗୁଡିକର ସାରାର୍ଥ ହେଲା : ଯଦି କେହି ବ୍ୟକ୍ତି ନିଜେ ଆଦରି ନେଇଥିବା ଧର୍ମୀୟ ବ୍ୟବସ୍ଥା ଏବଂ ତଦନୁଯାୟୀ ନିର୍ଦ୍ଦେଶିତ ନୀତି-ନିୟମ ତଥା ବିଧି-ବିଧାନ ସ୍ୱୀକାର ପୂର୍ବକ ନିଜର ଜୀବନ ଯାପନ କରିଛନ୍ତି ବୋଲି ଜଣାଯାଏ, ତେବେ ତାଙ୍କ ଦେହାନ୍ତେ ସେ ଇହଲୋକ ପରିତ୍ୟାଗ କରି ସ୍ୱର୍ଗ ଲୋକରେ ଯାଇ ରହିବେ ଓ ମୁକ୍ତିଲାଭ କରିବେ । ଅନ୍ୟ ପକ୍ଷରେ, ଯଦି କୌଣସି ବ୍ୟକ୍ତି ନିଜ ଆଚରଣ ଦ୍ୱାରା ଧର୍ମୀୟ ପରମ୍ପରାରୁ ବିଚ୍ୟୁତ ହୋଇ, ସେଥିରେ ନିର୍ଦ୍ଦେଶିତ ନୀତିନିୟମ ତଥା ବିଧି-ବିଧାନର ଉଲଂଘନ କରି ଧର୍ମୀୟ ବ୍ୟବସ୍ଥାର ବିରୋଧ ପୂର୍ବକ ଅଧାର୍ମିକ / ଧର୍ମାଧର୍ମରହିତ, ଅନୈତିକ, ଅସାମାଜିକ କର୍ମକାଣ୍ଡ ଶାରୀରିକ ତଥା ମାନସିକ ସ୍ତରରେ ପ୍ରକାଶ କରିଥାନ୍ତି, ତାଙ୍କୁ ସେହି ଧର୍ମୀୟ ବ୍ୟବସ୍ଥାରେ 'ପାପୀ' ବୋଲି ଅଭିହିତ କରାଯାଇଥାଏ ଏବଂ ଦେହାନ୍ତେ ସେ ବ୍ୟକ୍ତି ନର୍କ ଲୋକରେ ଚିରକାଳ ପାଇଁ ପତିତ ହୁଅନ୍ତି ବୋଲି ଧର୍ମଶାସ୍ତ୍ର ମାନଙ୍କରେ ବର୍ଣ୍ଣିତ ହୋଇଛି ।

ଯେଉଁ ବ୍ୟକ୍ତି ସ୍ୱର୍ଗଗାମୀ ହୁଅନ୍ତି, ସେ ଚିରମୁକ୍ତି ପାଆନ୍ତି ବୋଲି ପ୍ରବାଦ ଅଛି । ନର୍କଗାମୀ ବ୍ୟକ୍ତି ନର୍କରେ 'ଚିର ବନ୍ଦୀ' ହୋଇ ରୁହନ୍ତି । ଧର୍ମୀୟ ପରମ୍ପରା ଗୁଡିକରେ ଉପରୋକ୍ତ କଥାକୁ ବିଶ୍ୱାସ କରିନେବା ପାଇଁ ଅହରହ ଉଦ୍ୟମ ଜାରି ରହିଛି ଓ ଏଥିପାଇଁ ପ୍ରୋତ୍ସାହନ ଦିଆଯାଉଛି । 'ସ୍ୱର୍ଗ-ନର୍କ' ସଂପର୍କୀୟ ଏପରି ବିଶ୍ୱାସ ବା ଧାରଣାକୁ ତର୍କ ବା ଯୁକ୍ତିର ବୌଦ୍ଧିକ ଅନୁଶୀଳନ ମଧ୍ୟରେ ରଖି ହୁଏ ନାହିଁ । କେବଳ ପ୍ରଗାଢ଼ ନିରଙ୍କୁଶ ଆସ୍ଥା ସ୍ଥାପନ ଏବଂ ତଦନୁଯାୟୀ ଜୀବନ ନିର୍ବାହ ପାଇଁ ଶାସ୍ତ୍ରାଦିରେ ନିର୍ଦ୍ଦେଶ ଦିଆଯାଇଛି ।

ଏବେ ଦେଶରେ ତଥା ବିଦେଶରେ ବିଭିନ୍ନ ଧର୍ମ-ବ୍ୟବସ୍ଥାରେ ନିହିତ ନିର୍ଦ୍ଦେଶାତ୍ମକ ଧାରଣା ଗୁଡିକ (ପାପ, ପୁଣ୍ୟ ବା ସ୍ୱର୍ଗ-ନର୍କ) ସର୍ବ ସମ୍ମତ ହେବାଟା ବିବାଦଗ୍ରସ୍ତ ହୋଇପଡିଛି । କାରଣ ଅନେକ ଲୋକଙ୍କର ଇତି ମଧ୍ୟରେ ଆଖି ଫିଟି ଯାଇଛି । ସଂପ୍ରତି ଅନେକ ଦେଶବାସୀଙ୍କ ଠାରେ ପାରମ୍ପରିକ ଧର୍ମବ୍ୟବସ୍ଥା ପ୍ରତି ସମର୍ଥନ ପୂର୍ବାପେକ୍ଷା ଉଲ୍ଲେଖନୀୟ ଭାବେ ହ୍ରାସ ପାଇଛି । କେତେକ ଏହାକୁ ବୈଜ୍ଞାନିକ ମନୋଭାବ ବା ବିଜ୍ଞାନର ସଫଳ କାର୍ଯ୍ୟ-କାରିତା ହେତୁ ଘଟୁଛି ବୋଲି ମତ ପ୍ରକାଶ କରିଛନ୍ତି । ସାଧାରଣ ଜୀବନର ସୁଖ-ସ୍ୱାଚ୍ଛନ୍ଦ୍ୟ ଆଦି ବୈଜ୍ଞାନିକ ପ୍ରଗତି ତଥା ଉତ୍କର୍ଷ ଉପରେ ବହୁ ମାତ୍ରାରେ ନିର୍ଭରଶୀଳ । ଏହି ଅଭିନବ ପ୍ରକ୍ରିୟାଯୋଗୁ ବହୁ ଅନ୍ଧବିଶାସ, ତତ୍‌ଜନିତ ଧର୍ମାନ୍ଧତା ପୃଥିବୀର ବହୁ ଇଲାକାରୁ ଦୂରୀଭୂତ ହେଲାଣି ।

ପରିସଂଖ୍ୟାନରୁ ଜଣାଯାଇଛି ଯେ ଇଂଲଣ୍ଡରେ ବର୍ତ୍ତମାନ ଧର୍ମରେ ବିଶ୍ୱାସ କରୁନଥିବା ଲୋକଙ୍କ ସଂଖ୍ୟା ବଢ଼ି ବଢ଼ି ଚାଲିଛି । ଏହା ମଧ୍ୟ ଅନ୍ୟାନ୍ୟ ଇଉରୋପୀୟ ଦେଶରେ ଏବଂ ଯୁକ୍ତରାଷ୍ଟ୍ର ଆମେରିକାରେ ଘଟିଚାଲିଛି । ଉଲ୍ଲେଖନୀୟ କଥା ଏହି ଯେ, ହଲାଣ୍ଡ, ସ୍ୱିଜରଲାଣ୍ଡ ଆଦି ଦେଶରେ ଲୋକମାନେ ପ୍ରଚଳିତ ଧର୍ମପ୍ରତି ବହୁମାତ୍ରାରେ ବୀତସ୍ପୃହ ହୋଇଛନ୍ତି । ପ୍ରାର୍ଥନା କରିବା ପାଇଁ ସେମାନେ ଆଉ ଚର୍ଚ୍ଚ ଯାଉ ନାହାନ୍ତି ।

ପ୍ରଚଳିତ ସଂବିଧାନ ଅନୁଯାୟୀ ଭାରତକୁ ଏକ ଲୋକାଭିମୁଖୀ, ଧର୍ମ-ରହିତ ବା ଧର୍ମ-ନିରପେକ୍ଷ ରାଷ୍ଟ୍ରରୂପେ ଘୋଷଣା କରାଯାଇଛି । ମାନବୋଚିତ ଶାସନ-ବ୍ୟବସ୍ଥା ଉପରେ ଗୁରୁତ୍ୱ ଦିଆଯାଇଛି । ତଦନୁଯାୟୀ ବିରୋଧୀ ରାଜନୀତିକ ଦଳ କ୍ଷମତାସୀନ ଶାସକ ଦଳକୁ ସମାଲୋଚନା କରୁଛି ।

ଜ୍ଞାନ-ବିଜ୍ଞାନର ବିକାଶ ଯେଉଁ ଯେଉଁ ଦେଶ ମାନଙ୍କରେ ଅଧିକରୁ ଅଧିକ ଘଟୁଛି, ସେସବୁ ଦେଶରେ ସମତା, ସ୍ୱାଧୀନତା ଓ ବ୍ୟକ୍ତି-ମର୍ଯ୍ୟାଦା ପ୍ରତି ସମ୍ମାନବୋଧର ବ୍ୟାପକତା ଘଟିଛି । ଏହା ମନକୁ ମନ ବା ଆପେ ଆପେ ଘଟି ନାହିଁ । ବହୁ ଚିନ୍ତାନାୟକ, ବିଜ୍ଞ ଲେଖକମାନେ ଏପରି କାର୍ଯ୍ୟ କରିବାପାଇଁ ଆଗଇ ଆସିଛନ୍ତି । ସେମାନଙ୍କ ମଧ୍ୟରେ ମନୋବିଜ୍ଞାନୀ ଫ୍ରୟେଡ୍, ସାମାଜିକ ତୁଙ୍ଗ ଚିନ୍ତକ ଥମାସ୍ ହବସ୍, ଦାର୍ଶନିକ ବର୍ଟ୍ରାଣ୍ଡ ରସେଲ, ପ୍ରଖ୍ୟାତ ରାଜନୀତି ବିଜ୍ଞାନୀ କାର୍ଲ ମାକ୍ସ, ହେରାଲଡ୍ ଲାସ୍କି, ବିଶିଷ୍ଟ ସମାଜ ବିଜ୍ଞାନୀ ରବର୍ଟ ଗ୍ରୀନ୍ ଇଂଗରସଲ୍, ଭାରତର ସମାଜ ସଂସ୍କାରକ ରାମ ମୋହନ ରାୟ, ଏମ୍.ଏନ୍.ରାୟ ଓ ଜବାହାରଲାଲ୍ ନେହେରୁ ପ୍ରଭୃତିଙ୍କ ନାମ ଉଲ୍ଲେଖନୀୟ । ଏମାନଙ୍କ ବ୍ୟତୀତ ଆହୁରି ଅନେକ ଲେଖକ / ଲେଖିକା ବୈଜ୍ଞାନିକ ମନୋଭାବର ପୃଷ୍ଠପୋଷକତା କରିଛନ୍ତି ।

ଅନ୍ଧ ପରମ୍ପରା ସବୁ ଦେଶରୁ ହଟି ନାହିଁ । ପାକିସ୍ତାନ ଭଳି ଦେଶରେ ସ୍ତ୍ରୀ ଲୋକମାନେ ସ୍ୱାମୀ କଥା ନ ମାନିଲେ ସେମାନଙ୍କୁ ମୃଦୁ ପ୍ରହାର ଦଣ୍ଡ ଭୋଗିବାକୁ ପଡିବ ବୋଲି ସେଠାକାର ପ୍ରତିଷ୍ଠିତ ମୁସଲିମ୍ ସଂସ୍ଥାର ଧର୍ମୀୟ ପ୍ରବନ୍ଧକ ବୃନ୍ଦ ନିଷ୍ପତ୍ତି ନେଇଛନ୍ତି । ଏହା ନିକଟରେ ପ୍ରକାଶିତ ସଂବାଦ ପତ୍ରରେ ସ୍ଥାନ ପାଇଛି ।

ଆଫ୍ରିକୀୟ ଦେଶ, ନାଇଜିରିଆରେ 'ବୋକୋ ହାରାମ୍' ଆତଙ୍କବାଦୀ ଗୋଷ୍ଠୀ ତାହାର ନିର୍ମମ କାର୍ଯ୍ୟ କରିଚାଲିଛି । ସେଥିରେ ସୁନି ସଂପ୍ରଦାୟର ଲୋକେ ପ୍ରମୁଖ ଭୂମିକା ଗ୍ରହଣ କରିଛନ୍ତି । ସାଧାରଣ ଜନ ସାଧାରଣଙ୍କୁ ଅତିମାତ୍ରାରେ ଶାରୀରିକ ଓ ମାନସିକ ଯନ୍ତ୍ରଣା ଦିଆଯାଉଛି, ସେମାନଙ୍କୁ ଏକତ୍ର ହତ୍ୟା କରାଯିବାର ମର୍ମନ୍ତୁଦ ଦୁଃଖଦ ସମ୍ବାଦ ମିଳୁଛି ।

ଭାରତରେ ସବୁ ଯେ ଠିକ୍ ଚାଲିଛି, ତାହା କୁହାଯାଇ ନପାରେ । ଏଠାରେ ଶାସକ ଏବଂ ବିରୋଧୀ ରାଜନେତା ମାନଙ୍କ ମଧ୍ୟରେ ଅନେକ ବିବିଧ ଅନ୍ଧବିଶ୍ୱାସର ସମର୍ଥନ

କରୁଛନ୍ତି । କେବଳ ଅଧିକ ଭୋଟ ପାଇବା ଲକ୍ଷ୍ୟରେ ସେମାନେ ଅନୀତିକର, ଅମାନବୀୟ, ଅନ୍ଧବିଶ୍ୱାସ ଜନିତ ପରମ୍ପରାକୁ ମଧ୍ୟ ବିରୋଧ ନକରି ବରଂ ସମର୍ଥନ କରୁଛନ୍ତି । ଅଞ୍ଚଳ ବା ଦେଶର ସାମୂହିକ ଉନ୍ନତି ବା ପ୍ରଗତି ପଛେ ଦୂରକୁ ଯାଉ, ଯେନ ତେନ ପ୍ରକାରେ ସାଧାରଣ ଜନତାଠାରୁ ଅଧିକ ଭୋଟ ପାଇଲେ ସେମାନଙ୍କର ରାଜନୀତିକ ସିଦ୍ଧି ଲାଭ ହେଲା ବୋଲି ସେମାନେ ଆସ୍ଫାଳନ କରୁଛନ୍ତି ।

ନେତୃସ୍ଥାନୀୟ ମନ୍ତ୍ରୀ, ବିଧାୟକ ଆଦି ପ୍ରକାଶ୍ୟରେ ସରକାରୀ ଗାଡିରେ ଚଢ଼ି ଭିନ୍ନ ଭିନ୍ନ ଧର୍ମପୀଠ, ତଥାକଥିତ ପବିତ୍ର ନଦୀରେ ବୁଡ ପକାଇବା ଏବଂ ସରକାରୀ ପଇସାରେ ପୂଜା ଅର୍ଚ୍ଚନା କରିବାର ନଜିର ରହିଛି । ଅତ୍ୟଧିକ ଉଗ୍ର ରୂପ ନେଇ ଧର୍ମାନ୍ଧ ବ୍ୟକ୍ତି ଗଣ ହେତୁବାଦୀ ତଥା ଧର୍ମ-ନିରପେକ୍ଷ ଉଦାର ଚିନ୍ତକ ଗୋଷ୍ଠୀଙ୍କୁ ହତ୍ୟା ବା ନିର୍ମମ ଉତ୍ପୀଡନ କରୁଛନ୍ତି । ନିକଟ ଅତୀତରେ ପ୍ରଖ୍ୟାତ ବୁଦ୍ଧିଜୀବୀ ଓ ସମାଜ ସଂସ୍କାରକ ନରେନ୍ଦ୍ର ଦାଭୋଲକର, ବିଶିଷ୍ଟ ସାହିତ୍ୟିକ ଏମ୍.ଏମ୍. କାଲବର୍ଗୀ, ସଂସ୍କାରକ ପାନ୍‌ସାରେ, ନିରୀହ ଦାଦ୍ରି-ନିବାସୀ ମହମ୍ମଦ ଆଖ୍ଲାକ୍ ଆଦି ଅନେକ ଶାନ୍ତିକାମୀ ଉଦାରଚେତା ମାନବ-ବାଦୀଙ୍କୁ ଧର୍ମାନ୍ଧ ଗୋଷ୍ଠୀ ହତ୍ୟା କରିଥିବାର ଦୃଷ୍ଟାନ୍ତ ଭରି ରହିଛି । ଏ'ଭଳି ମାନବ-ବିରୋଧୀ ନୃଶଂସ କାର୍ଯ୍ୟାବଳୀ ଯେ କେବଳ ଅଧୁନା ଭାରତରେ ଦେଖାଦେଇଛି, ତାହା ନୁହେଁ, ମଧ୍ୟଯୁଗରେ ବିଭିନ୍ନ ଧର୍ମୀୟ ସଂପ୍ରଦାୟ ମଧ୍ୟରେ ବିରୋଧାଭାସ ତୀବ୍ରରୂପ ଧାରଣ କରି ଲୋକେ ଅମାନବୀୟ ଏବଂ ଅହେତୁକ କାର୍ଯ୍ୟରେ ଲିପ୍ତ ଥିବାର ଦୃଷ୍ଟାନ୍ତ ମଧ୍ୟ ମିଳୁଛି । ଅଦ୍ୱୈତବାଦୀମାନେ ରାମାନୁଜାଚାର୍ଯ୍ୟଙ୍କ ପରି ଭିନ୍ନ ମତାବଲମ୍ବୀ ମାନଙ୍କୁ ନାନାଦି ଯାତନା ଦେଉଥିଲେ, ଏପରିକି ରାମାନୁଜାଚାର୍ଯ୍ୟଙ୍କୁ ନଦୀମଧ୍ୟକୁ ଠେଲି ଦେଇ ମାରିଦେବାର ଚକ୍ରାନ୍ତ ସେମାନେ କରିଥିଲେ । ଏ ପ୍ରକାର ଷଡଯନ୍ତ୍ରର ପ୍ରାକ୍ ସୂଚନା ପାଇଥିବାରୁ ରାମାନୁଜ ସେଥିରୁ ରକ୍ଷା ପାଇଥିଲେ ।

ଧର୍ମ ବିଶ୍ୱାସ ପ୍ରଚ୍ଛନଭାବରେ ହେଉ ବା ପ୍ରକାଶ୍ୟ ଭାବରେ ହେଉ ନିଶ୍ଚିତ ଭାବେ ଅନ୍ଧବିଶ୍ୱାସରେ ଭରପୂର । ତାହା ବାସ୍ତବରେ କପୋଳ କଳ୍ପିତ । ଯାହା ପ୍ରମାଣବିହୀନ ତାହା କଦାପି ବିଶ୍ୱାସଯୋଗ୍ୟ ହୋଇ ନପାରେ । ଏହି ଦୃଷ୍ଟିରୁ ସାଂସ୍କୃତିକ ପରମ୍ପରାରେ ଦିବ୍ୟ ଆଧ୍ୟାତ୍ମିକ ଅନୁଭୂତିକୁ ଜ୍ଞାନ ପଦବାଚ୍ୟ କରି ତାହାକୁ ପ୍ରମାଣ ବିବର୍ଜିତ ବା ଅପ୍ରାମାଣିକ ଜ୍ଞାନ ବୋଲି ପ୍ରଚାର କରିବା ଏବଂ ଏକ ଯଥାର୍ଥ ସ୍ଥାନ ଆଧ୍ୟାତ୍ମ କ୍ଷେତ୍ରରେ ରହିଛି ବୋଲି ଡିଣ୍ଡିମ କରିବା ନିରପେକ୍ଷ ବିଚାର ଦିଗରୁ ହାସ୍ୟାସ୍ପଦ ନୁହେଁ କି ?

ଜ୍ଞାନ-ବିଜ୍ଞାନର ବିକାଶ ଫଳରେ ଲୋକେ ଆଉ ବୈକୁଣ୍ଠ, କିମ୍ବା ସ୍ୱର୍ଗ-ନର୍କରେ ଆସ୍ଥା ରଖିବାପାଇଁ ଆଦୌ ରାଜି ନୁହଁନ୍ତି । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଯେତେ ଶୀଘ୍ର ପ୍ରଚାର ପ୍ରସାର ଘଟିବ ସାମାଜିକ ଜୀବନ ପ୍ରବାହର ସ୍ତର ଉନ୍ନତ ହୋଇପାରିବ ।

ଅଜୟ ଏ'ସବୁ ବିଷୟଦ୍ୱାରା ଅନୁପ୍ରାଣିତ ହୋଇ ଏବେ ହେତୁପରକ ବୈଜ୍ଞାନିକ ମନୋଭାବକୁ ଆପଣେଇଛନ୍ତି । ତାଙ୍କର ବିଚାରରେ ସମସ୍ତ ପ୍ରକାର ଅନ୍ଧବିଶ୍ୱାସ ସାମାଜିକ ବିକାଶର ପରିପନ୍ଥୀ । ପରଂପରା ଓ ନୈତିକତାର ଦ୍ୱାହି ଦେଇ ଧର୍ମପ୍ରଚାର ଓ ପ୍ରସାରଣ ସଂପୂର୍ଣ୍ଣ ଅମୂଳକ ଓ ଭିତ୍ତିହୀନ । ନୈତିକତା, ମାନବିକତା ଓ ସମ୍ବେଦନଶୀଳତା ଗୁଣାତ୍ମକ ଜୀବନର ମାନଦଣ୍ଡ ଓ ଏସବୁ ଧର୍ମନିରପେକ୍ଷ ଓ ସାର୍ବଜୀନନ । ସେବା ଓ ପେଶାଗତ ନୈତିକତା ଅଜୟଙ୍କ ଜୀବନର ସବୁଠାରୁ ବଡ ଆଦର୍ଶ ।



# ଦେବଦାସୀରୁ ଦେହଜୀବୀ

*ଶ୍ରୀ ମଧୁସୂଦନ ଯାଦବ*

ଆମ୍ଭେମାନେ ଏକବିଂଶ ଶତାବ୍ଦୀର ମଣିଷ, ପୁଣି ଆମେ ଭାରତୀୟ ଏବଂ ଭାରତ ଆମର ମହାନ୍ ବୋଲି ଗର୍ବ କରିଥାଉ । ମାତ୍ର ଏଠି ଅନେକ ପୂତିଗନ୍ଧମୟ ଅମାନବୀୟ ଦୃଶ୍ୟାବଳୀ ଏବେ ବି ଉଜ୍ଜୀବିତ ହୋଇ ରହିଛି ଯେଉଁଥିରେ ମୁଣ୍ଡ ଲଜ୍ଜାରେ ନଇଁ ହୋଇଯାଏ । ଜଣେ ସଭ୍ୟ ଭାରତୀୟ ବୋଲି ଗର୍ବ କରି କହିବା ବାସ୍ତବିକ୍ କୁଣ୍ଠାବୋଧ ଲାଗେ । ମହିଳା ସଶକ୍ତିକରଣ ପାଇଁ ରାଜନେତା, ରାଜନୈତିକ ଦଳ, ବିଭିନ୍ନ ସଂଗଠନ ବୁଦ୍ଧିଜୀବୀ ସମେତ ରାଜ୍ୟ ଓ କେନ୍ଦ୍ର ସରକାର ତୁମ୍ବି ତୋଫାନ କରି ଚାଲିଛନ୍ତି । ନାରୀମାନେ ସମାଜର ଅର୍ଦ୍ଧେକ । ତେଣୁ ସେମାନଙ୍କ ପାଇଁ ରାଜନୀତିରେ କେହି ୩୩% ଆରକ୍ଷଣ ତ ଆଉ କେହି ୫୦% ଆରକ୍ଷଣ ରହୁବୋଲି ଦାବି କରି ଚାଲିଛନ୍ତି । ମୋଟାମୋଟି ଭାରତୀୟ ମହିଳାମାନଙ୍କୁ ଗୌରବାନ୍ୱିତ କରିବା ପାଇଁ ସମସ୍ତେ ଚେଷ୍ଟିତ ଥିବା ପ୍ରତୀୟମାନ ହୁଏ, ହେବା ଉଚିତ ମଧ୍ୟ । କାରଣ ହିନ୍ଦୁ ସାମାଜିକ ବ୍ୟବସ୍ଥା ମଧ୍ୟରେ ନାରୀମାନଙ୍କ ସାମାଜିକ ପତିଆରା ସଂପୂର୍ଣ୍ଣ ବିପନ୍ନ । ଶାଶୁ ଘରକୁ ଯିବା ପର୍ଯ୍ୟନ୍ତ ବାପା ମାଆଙ୍କ ଅଧୀନରେ, ବିବାହ ହେବା ପରେ ସ୍ୱାମୀର ଅଧୀନରେ ଏବଂ ବୃଦ୍ଧା ହୋଇଗଲେ ପୁଅ ବୋହୂଙ୍କ ଅଧୀନରେ ଜୀବନ ବିତାଇବାକୁ ବାଧ ବାଧକତା ଉପୁଜିଥାଏ । ମୋଟାମୋଟି ପିଲାଟି ଦିନରୁ ମୃତ୍ୟୁ ପର୍ଯ୍ୟନ୍ତ କାହାରି ନା କାହାରି ଅଧୀନରେ ଜଣେ ନାରୀକୁ ଜୀବନ ଅତିବାହିତ କରିବାକୁ ପଡିଥାଏ । ସ୍ୱାଧୀନତା ତା' ପାଇଁ ସ୍ୱପ୍ନ ହୋଇ ରହିଯାଇଥାଏ । ଜୀବନ ଭରି ତାକୁ ସ୍ୱାମୀର ବିନା ବେତନଭୋଗୀ ଦାସୀ ରୂପେ କାର୍ଯ୍ୟ କରିବାକୁ ପଡିଥାଏ । ଏବେ ବି ପଶ୍ଚିମ ଭାରତର କେତେକ ସ୍ଥାନରେ ଏକାଧିକ ଭାଇ ଏକ ପତ୍ନୀ ଆପଣାଇବାର ପ୍ରଥା ବଳବତ୍ତର ରହିଛି । ସମ୍ପତ୍ତିର ଭାଗବଣ୍ଟୁଆରା କରାଇ

ନଦେବା ଆଳରେ ଏପରି କୁତ୍ସିତ ପ୍ରଥାକୁ ଆପଣେଇଥାନ୍ତି । ଭାରତରେ ଇଂରେଜମାନେ ଆଇନ୍ ତିଆରି କରି କଠୋର ହସ୍ତରେ ଦମନ କରି ନଥିଲେ ବୋଧହୁଏ ଆଜି ପର୍ଯ୍ୟନ୍ତ ସତୀଦାହ ପ୍ରଥା ଅବାରିତ ଧାରାରେ ଚାଲୁ ରହିଥାନ୍ତା । ଭାରତୀୟ ସମାଜ ପାଇଁ ଏହା ଏକ ଦେହ ସୁହା ହୋଇଯାଇଥାନ୍ତା ଏବଂ ପୃଥିବୀ ତମାମ କଳଙ୍କର ବାର୍ତ୍ତା ବହନ କରୁଥାନ୍ତା । ସ୍ୱାମୀର ଜୁଇରେ ଜଣେ ଶାନ୍ତ ସରଳ ନିଷ୍ପାପ ମହିଳାଙ୍କୁ ଜୀବନ୍ତ ଭାବେ ଜ୍ୱଳନ୍ତ ନିଆଁରେ ପୋଡ଼ି ଆନନ୍ଦ ଉପଭୋଗ କରୁଥାନ୍ତେ । ଆଜି ବି କେତେକ କଠୋରପନ୍ଥୀ ବିକୃତ ମାନସିକତାର ବ୍ୟକ୍ତି ଚେଷ୍ଟିତ ଅଛନ୍ତି ଏପରି ଏକ ବିଲୁପ୍ତ କଳଙ୍କିତ ବ୍ୟବସ୍ଥାକୁ ଉଜ୍ଜୀବିତ କରି ରଖିବା ପାଇଁ । ବିଶେଷ କରି ରାଜସ୍ଥାନରେ ଏହାର ପ୍ରତିଫଳନ ଦେଖାଯାଇଥାଏ । ନିକଟ ଅତୀତରେ ରାଜସ୍ଥାନରେ ସତୀ ମନ୍ଦିରକୁ ପର୍ଯ୍ୟଟନ ମାନଚିତ୍ରରେ ଅନ୍ତର୍ଭୁକ୍ତ କରାଇ ପର୍ଯ୍ୟଟକମାନଙ୍କ ଆକର୍ଷଣର କେନ୍ଦ୍ରବିନ୍ଦୁ କରାଯାଇଛି । କେବଳ ରାଜସ୍ଥାନ ନୁହେଁ, ଭାରତର ବିଭିନ୍ନ ରାଜ୍ୟରେ ଏପରି ଲୋମଟାଙ୍କୁରା ମର୍ମାନ୍ତିକ ବ୍ୟବସ୍ଥା ପ୍ରଚଳିତ ଥିଲା । ବିଶେଷ କରି ଉତ୍ତରଭାରତ ରାଜ୍ୟ ଗୁଡ଼ିକରେ ଏପରି କଳଙ୍କିତ ଅପସଂସ୍କୃତି ବଳବତ୍ତର ଥିଲା । ସତୀଦାହ ପ୍ରଥା ଆପଣାଇବାରେ ବେଙ୍ଗଲ ସୁନାମ ଅର୍ଜନ କରିଥିଲା । ଓଡିଶା ମଧ୍ୟ ପଛରେ ପଡ଼ି ନଥିବା ଉପଲବ୍ଧ ହୁଏ । କଟକ ସତୀ ଚଉରା ଛକ ଏବେ ବି ମୂକସାକ୍ଷୀ ରୂପେ ବିଦ୍ୟମାନ । ତାମିଲନାଡୁରେ ଏପରି ଏକ ଅଞ୍ଚଳ ରହିଛି ଯେଉଁଠାରେ ମହିଳାମାନେ ଦେବୀଙ୍କ କୋପରୁ ବର୍ତ୍ତିବା ପାଇଁ ବ୍ଲାଉଜ ପିନ୍ଧିବାରୁ ବଞ୍ଚିତ ହୋଇରହିବା ସହିତ ବିଦ୍ୟାଳୟ ବାରଣ୍ଡା ମଧ୍ୟ ମାଡି ପାରୁନାହାନ୍ତି । ଏପରି ଅନେକ ବିଭତ୍ସ ଦୃଶ୍ୟାବଳୀ ଭାରତର କେତେକ ସ୍ଥାନରେ ପ୍ରତିଫଳିତ ହେବାର ନଜିର ରହିଛି । ଆମ ଦେଶ ସାମାଜିକ ପୂତିଗନ୍ଧମୟ ବ୍ୟବସ୍ଥାରେ ଅଦ୍ୟାପି ଆକ୍ରମିତ ହୋଇ ରହିଥିବା କାରଣରୁ ମଣିଷ ସମାଜ ସାମଗ୍ରିକ ବିକଶିତ ହେବା ପ୍ରକ୍ରିୟାରୁ ବଞ୍ଚିତ ହୋଇ ରହିଛି । ମାତ୍ର ଆଲୋଚ୍ୟ ବିଷୟଟି ସମ୍ପୂର୍ଣ୍ଣ ନିଆରା ଓ ଅତ୍ୟନ୍ତ ଅମାନବୀୟ ଯାହା ଏକ ସଭ୍ୟ ଜଗତକୁ ସ୍ୱଷ୍ଟ ଦିବାଲୋକରେ ପଦାଘାତ କରୁଛି । ଜଣେ କିଶୋରୀ କିପରି ଦେବଦାସୀରୁ ଦେହଜୀବୀ ପାଲଟି ନିଜ ଜୀବନକୁ ତିଳ ତିଳ କରି ପୁରୁଷ ସମାଜର ଉପଭୋଗ୍ୟର ସାମଗ୍ରୀ ଭାବେ ବ୍ୟବହୃତ ହେଉଛି ଏବଂ ସେଥିରୁ ଆଜୀବନ ମୁକୁଳିବାରେ କୌଣସି ପ୍ରକାର ବିକଳ୍ପ ରହୁନାହିଁ, ସେ ସଂପର୍କରେ କିଛି ତଥ୍ୟ ଉପସ୍ଥାପନ ପୂର୍ବକ ଆଲୋଚନା କରିବା ଏଠାରେ ଆମର ଲକ୍ଷ୍ୟ ।

ଆମ ଦେଶ ସ୍ୱାଧୀନତାର ବହୁ ବର୍ଷ ଅତିକ୍ରାନ୍ତ କରିଛି ଏବଂ ଏକ ବିକଶିତ ରାଷ୍ଟ୍ରରେ ପରିଣତ ହେବାପାଇଁ ପ୍ରତିଯୋଗିତାର ଆଗଧାଡ଼ିରେ ରହିଥିବା ବହୁଳ ପ୍ରଚାର ଚାଲିଛି । ଆନ୍ଧ୍ର ଓ କର୍ଣ୍ଣାଟକ ରାଜ୍ୟର କେତେକ ସ୍ଥାନରେ ନିରୀହା କିଶୋରୀମାନଙ୍କୁ ପୂଜକମାନେ ମନ୍ଦିର ପ୍ରାଙ୍ଗଣରେ ମଙ୍ଗଳସୂତ୍ର ପିନ୍ଧାଇ ଦେବଦାସୀ ଭାବେ ଅର୍ପଣ କରିସାରିଲା ପରେ ସେମାନଙ୍କୁ ଦଲାଲମାନଙ୍କୁ ବିକ୍ରି କରି ଦିଆଯାଇଥାଏ, ଯାହା ପରେ ସେମାନେ ପତିତା

(ବେଶ୍ୟା) ଜୀବନ ଯାପନ କରିବା ବ୍ୟତିରେକେ ଅନ୍ୟ କିଛି ବିକଳ୍ପ ରହି ନଥାଏ । ଭାଗ୍ୟ ଭଗବାନର ଅନ୍ଧବିଶ୍ୱାସ ଓ ଉତ୍କଟ ଦାରିଦ୍ର୍ୟ ତଥା ପରଂପରାର ତାଡନା ହିଁ ଏହି କିଶୋରୀମାନଙ୍କୁ ଏପରି ଏକ ଅଭାବନୀୟ କଳଙ୍କିତ ଜୀବନ ଅତିବାହିତ କରିବାକୁ ବାଧ୍ୟ କରିଥାଏ ।

କର୍ଣ୍ଣାଟକ ଓ ଆନ୍ଧ୍ର ପ୍ରଦେଶରେ ଏଇଭଳି କୁତ୍ସିତ ବ୍ୟବସ୍ଥା ରହିଥିଲେ ହେଁ ବିଶେଷକରି କର୍ଣ୍ଣାଟକର ରାୟଚୁର ଜିଲ୍ଲା ଏହାର ମୁଖ୍ୟ ରୂପେ ପରିଗଣିତ ହେଉଛି । କ୍ରିଷ୍ଣା ନଦୀ ଅବବାହିକାରେ ଅବସ୍ଥାପିତ ଥୋଣ୍ଡିହଲା ଗ୍ରାମର ଅଧିଷ୍ଠାତ୍ରୀ ଦେବୀ ୟେଲାମ୍ମାଙ୍କ ମନ୍ଦିରରେ ପ୍ରତିବର୍ଷ ଜାନୁଆରୀ ମାସରେ ଦେବୀଙ୍କ ରଥଯାତ୍ରା ଅନୁଷ୍ଠିତ ହୋଇଥାଏ । ନିକଟବର୍ତ୍ତୀ ଅଞ୍ଚଳର ଗ୍ରାମ ସମେତ କର୍ଣ୍ଣାଟକର ବିଭିନ୍ନ ଅଞ୍ଚଳ ଏବଂ ଆନ୍ଧ୍ର ପ୍ରଦେଶ ଓ ମହାରାଷ୍ଟ୍ରରୁ ହଜାର ହଜାର ଭକ୍ତ ଆସି ଏଠାରେ ଏକତ୍ରିତ ହୋଇଥାନ୍ତି । ସେଦିନ ସକାଳୁ ଆରମ୍ଭ ହୁଏ ଚାଉଳ କ୍ଷୀରି ଭୋଗର ପାର୍ବଣ । ଦିନବେଳା ଶତାଧିକ ମେଣ୍ଢା ବଳି ପଡନ୍ତି ଦେବୀଙ୍କ ସମ୍ମୁଖରେ । ସନ୍ଧ୍ୟା ସମୟରେ ଦେବଦାସୀ ହେବାଲାଗି ଆସିଥିବା ବାଳିକାମାନେ ପ୍ରଥମେ କ୍ରିଷ୍ଣା ନଦୀରେ ସ୍ନାନ କରନ୍ତି । ଅର୍ଦ୍ଧନଗ୍ନ ଶରୀରରେ ସେହିଠାରୁ ଚାଲି ଚାଲି ଦେବୀଙ୍କ ନିକଟକୁ ଆସନ୍ତି । ପୁନଶ୍ଚ କ୍ଷୀର ସ୍ନାନ ପରେ ଦେବୀଙ୍କ ପୂଜାପାଠ ହୁଏ । ପୂଜା ସ୍ଥାନରେ ମଙ୍ଗଳସୂତ୍ର ରଖାଯିବା ପରେ ଏହି ବାଳିକାମାନେ ଦେବୀଙ୍କୁ ପ୍ରଣାମ କରନ୍ତି । ପୂଜା ଶେଷରେ ଗଳାରେ ମଙ୍ଗଳସୂତ୍ର ବାନ୍ଧି ଏହି କିଶୋରୀମାନେ ହୋଇଯାଆନ୍ତି ଦେବଦାସୀ, ପରବର୍ତ୍ତୀ ଅବସ୍ଥାରେ ଦେବଦାସୀମାନେ ଆଉ ମନ୍ଦିରରେ ନରହି ସେମାନେ ଦେହ ଦାନ କରିବାକୁ ବାଧ୍ୟ ହୋଇଥାନ୍ତି । ତେବେ ମୁମ୍ବାଇର ବିଭିନ୍ନ ନାଲିବତୀ ଅଞ୍ଚଳମାନଙ୍କରେ ଏମାନଙ୍କ ସଂଖ୍ୟା ଅଧିକ । ପ୍ରତିବର୍ଷ ଏହି ପ୍ରକ୍ରିୟାରେ ଶହ ଶହ କିଶୋରୀମାନେ ଦେବଦାସୀରୁ ଦେହଜୀବୀରେ ପରିଣତ ହୋଇଥାନ୍ତି ।

କର୍ଣ୍ଣାଟକରେ ଏହି ଦେବଦାସୀ ପ୍ରଥା ଅଧିକ ପ୍ରଚଳିତ ଥିଲେ ମଧ୍ୟ ଆନ୍ଧ୍ର ପ୍ରଦେଶର ପୂର୍ବ ଓ ପଶ୍ଚିମ ଗୋଦାବରୀ ଓ କ୍ରିଷ୍ଣା ଜିଲ୍ଲାରେ ଏହି ପ୍ରଥା ଚାଲୁ ରହିଛି । ସେଠାକାର ଜମିଦାରମାନେ ଦେବଦାସୀଙ୍କୁ ମନୋରଞ୍ଜନ ସାମଗ୍ରୀ ଭାବରେ ଗ୍ରହଣ କରିଥାନ୍ତି । ୧୯୮୧ ମସିହାରେ କର୍ଣ୍ଣାଟକ ସରକାର ଦେବଦାସୀ ପ୍ରଥା ଉଚ୍ଛେଦ ପାଇଁ ଆଇନ୍ ଜାରି କରିଥିଲେ ମଧ୍ୟ ଆନ୍ତରିକତା ଓ ଦୃଢ଼ ମାନସିକତାର ଅଭାବରୁ ତାହା ଯଥାଯଥ ଭାବେ କାର୍ଯ୍ୟକାରୀ ହେଉ ନାହିଁ । ଏପରି କଦର୍ଯ୍ୟ ପରମ୍ପରା ଆଇନ ଉପରେ ସବାର ହୋଇ ସେ ସବୁକୁ ଅପାଂକ୍ତେୟ କରି ରଖିଛି । ପରିବାରର ଆର୍ଥିକ ଅନାଟନକୁ ଦୂର କରିବା ପାଇଁ କନ୍ୟାମାନଙ୍କୁ ଦେବଦାସୀ ରୂପେ ସଜାଇ କିଛି ଟଙ୍କା ବିନିମୟରେ ଦଲାଲମାନଙ୍କ ହାତରେ ଟେକି ଦିଆଯାଇଥାଏ । ସମାଜର କକ୍ଷଚ୍ୟୁତ ଏହି କିଶୋରୀଗଣ ଏପରି କୁତ୍ସିତ ଅମାନବୀୟ କାର୍ଯ୍ୟରେ ରୀତିମତ ସାମିଲ ହୋଇଯିବା ପରେ ମାତା ଓ ଆତ୍ମୀୟ ସ୍ୱଜନଙ୍କଠାରୁ ବିଚ୍ଛିନ୍ନ ହୋଇଯିବା ସ୍ୱାଭାବିକ । କାଳକ୍ରମେ ଘରକୁ ଫେରିବାର ରାସ୍ତା ସେମାନଙ୍କର ସବୁଦିନପାଇଁ ବନ୍ଦ ହୋଇଯାଇଥାଏ ।

ଯେଉଁ ସମାଜ ଝିଅଟିର ବିକଶିତ ସମୟରେ ସୁରକ୍ଷା ଦେବା ପରିବର୍ତ୍ତେ ପତିତା ହେବାକୁ ବାଧ୍ୟ କଲା ଘରକୁ କେତେବେଳେ ବି ଫେରିଲେ ସେହି ସମାଜ କ' ଣ ସେମାନଙ୍କ ପଛରେ ଛିଡା ହୋଇପାରିବ ? ପୁଣି କେଉଁ ସ୍ୱାଭିମାନ ଓ ଆତ୍ମମର୍ଯ୍ୟାଦା ନେଇ ଏକ ବିଭାଜିତ ସମାଜ କୋଳକୁ  ଫେରିଆସିବ ? କିଏ ସେମାନଙ୍କୁ ସୁରକ୍ଷା ଯୋଗାଇ ଦେବ ? ନା' ସରକାର ନା' ଆମ ସମାଜ ।

ହଁ, ଏହା ମଧ୍ୟ ସ୍ୱୀକାର୍ଯ୍ୟ, ଦାରିଦ୍ର୍ୟର ସୁଯୋଗ ନେଇ ସମାଜର ଦୁଷ୍ଟ ପ୍ରବଣର ଲୋକେ ଅନେକ ସମୟରେ କିଶୋରୀମାନଙ୍କୁ ପ୍ରଲୋଭିତ କରି ହେଉ କିମ୍ୱା ଭୟଭୀତ କରି ହେଉ, ବଳାତ୍କାର କରିବାର ଯଥେଷ୍ଟ ନଜିର ଅଛି । ମାତ୍ର ଦାରିଦ୍ର୍ୟ ତାଡ଼ନାରେ  ଶିକାର ହୋଇ ଦେବଦାସୀ ଜରିଆରେ ସ୍ୱଇଛାରେ ଏକ ପତିତା ଜୀବନକୁ ଆଦରି ନେବାକୁ କେବେ ବି ସେମାନେ ପସନ୍ଦ କରିବେ ନାହିଁ । କାରଣ ସେହି ସମୟ ହେଉଛି ସେମାନଙ୍କ ପାଇଁ ଅମୃତ ସମୟ । ସେମାନଙ୍କ ପାଇଁ ଖେଳ କୁଦର ସମୟ । ସାଥିଙ୍କ ମେଳରେ ଆନନ୍ଦ ଉଲ୍ଲାସରେ ପାଠ ପଢ଼ିବାର ସମୟ । ସମାଜର ଅନ୍ୟ ଝିଅଙ୍କ ପରି ଭବିଷ୍ୟତ  ଗଢ଼ିବାର ସମୟ । ମାତ୍ର ଜାତି  ପରିପୁଷ୍ଟପଙ୍କିଳ ସମାଜ ସେମାନଙ୍କ ସମସ୍ତ ରଂଗୀନ ସ୍ୱପ୍ନକୁ ଚୁରମାର କରି ଦେଉଛି । ଭାଗ୍ୟ-ଭଗବାନ ଦେବାଦେବୀର ଦ୍ୱାହି ଦେଇ ଏହି ଯୁବତୀ ଝିଅମାନଙ୍କୁ ମନ୍ଦିର ଓ ପୂଜକ ମାଧ୍ୟମରେ ପିତାମାତାଙ୍କ କୋଳରୁ ଛଡାଇ ନେଇଯିବାର ଏପରି ସୂକ୍ଷ୍ମ ଅଭିନବ ପ୍ରକ୍ରିୟା ବୋଧହୁଏ ପୃଥିବୀରେ ଅନ୍ୟ କୌଣସି ଦେଶରେ ଥିବାର ନଜିର ନାହିଁ । ଗୈରିକ ପତାକା ମଣ୍ଡିତ ମନ୍ଦିର ଓ ଘୃଣ୍ୟ ଜାତିବାଦ ଏପରି କୁତ୍ସିତ ପରମ୍ପରା ସୃଷ୍ଟିର ଜନକ । ଓଡିଶାରେ ଜଗନ୍ନାଥ ମନ୍ଦିରରେ ଏପରି ଦେବଦାସୀ ପ୍ରଥାର ବ୍ୟବସ୍ଥା ଅତୀତରେ ଥିବା ସର୍ବବିଦିତ । ମାତ୍ର ଏହି କିଶୋରୀମାନେ ମନ୍ଦିର ପ୍ରାଙ୍ଗଣ ମଧ୍ୟରେ ଆବଦ୍ଧ ହୋଇ ରହୁଥିଲେ । ଦଲାଲମାନଙ୍କ ଜରିଆରେ ବାହାରକୁ ପତିତା ହୋଇ ଯିବାର ନଜିର ନଥିଲା । ମନ୍ଦିରର ପୂଜକମାନଙ୍କ କବଜାରେ ଏମାନଙ୍କୁ କାଳାତିପାତ କରିବାକୁ  ପଡ଼ିବା ଛଡା ଅନ୍ୟ କିଛି ବିକଳ୍ପ ରହୁ ନଥିଲା ।

କେତେକ ମନ୍ଦିରରେ ଦେବଦାସୀ ରୂପେ ମଙ୍ଗଳସୂତ୍ର ପରିଧାନ କରିଥିବା କିଶୋରୀମାନଙ୍କ ପାଇଁ ସାମାନ୍ୟତମ କରୁଣା ପୂଜକର, ପିତାମାତାର, ଦେବଦେବୀଙ୍କର ବା ସମାଜର ରହୁନାହିଁ କାହିଁକି ? ମଣିଷ ସମାଜରେ ଜନ୍ମନେବା କ'ଣ  ଏମାନଙ୍କର ଭୁଲ ? ଆର୍ଥିକ ଅନାଟନରେ ଛନ୍ଦିହୋଇ ଅସହାୟ ଜୀବନଯାପନ କରୁଥିବା ନାଚାର ପିତାମାତାମାନେ ସେମାନଙ୍କ କିଶୋରୀ ଝିଅମାନଙ୍କ ପ୍ରତିବଦଳରେ କିଛି ଅର୍ଥ ପାଇଁ ହାତ ବଢ଼େଇ ଦେଉଥିବା ଦୁର୍ଭାଗ୍ୟଜନକ । ମାତ୍ର ଏହି ହାତ ବଢ଼େଇ ଦେବାର ପ୍ରଚ୍ଛଦପଟରେ ଯେ ଯୁଗ ଯୁଗ ଧରି ଅସ୍ଥିମଜାଗତ  ଭାଗ୍ୟ-ଭଗବାନ, ପାପ-ପୁଣ୍ୟ, ସ୍ୱର୍ଗ-ନର୍କର ଭୟ ଏବଂ ଦୁର୍ବଳ ମାନସିକତା, ଦେବା ଦେବୀ ତଥା ଜାତିବାଦର କୁତ୍ସିତ ଭୟାବହତା କାର୍ଯ୍ୟ କରୁଛି,  ଏପରି ସତ୍ୟତାକୁ ଗମ୍ଭୀରତାର ସହ ସ୍ୱୀକାର କରିବା ଛଡା ଅନ୍ୟ କିଛି  ବିକଳ୍ପ ନାହିଁ ।

ଏକ ଗଣତାନ୍ତ୍ରିକ ରାଷ୍ଟ୍ରରେ ସରକାର ହେଉଛନ୍ତି ସର୍ବଶକ୍ତିମାନ । ଦେବଦାସୀ ପ୍ରଥାର ବିଲୋପ ପାଇଁ ଆଇନ୍ ରହିଛି । ମାତ୍ର ଏଠି ଏହା ଅକାମୀ ହୋଇ ରହିବା ଚିନ୍ତାର ବିଷୟ । କାଠ ପଥର ନିର୍ମିତ ଦେବାଦେବୀ ଓ ସେଗୁଡ଼ିକୁ ପରିଚାଳିତ କରୁଥିବା ପୂଜକମାନେ ସରକାରଙ୍କ ଠାରୁ ଯେ ଶକ୍ତିଶାଳୀ, ତାହା କାର୍ଯ୍ୟକ୍ଷେତ୍ରରେ ପ୍ରମାଣିତ ହୋଇଯାଉଛି । ଏପରି କି ଅମାନବୀୟ ତଥା କୁତ୍ସିତ କାର୍ଯ୍ୟକୁ ସରକାର ପ୍ରତିହତ କରିବାରେ ଅସମର୍ଥ ଏବଂ ଆଇନର ଲମ୍ବାହାତ ରହିଛି ବୋଲି କୁହାଯାଉଥିଲେ ଏ କ୍ଷେତ୍ରରେ ହାତ ଲମ୍ବା ହେବା ପରିବର୍ତ୍ତେ ଆଇନର ଛୋଟ ହାତ ମଧ୍ୟ ଦୃଶ୍ୟମାନ ହେଉନାହିଁ । ଏପରି ଅସହାୟ ଅବସ୍ଥା ସଂପର୍କରେ ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି । ହଁ, ଏଥିରେ ବ୍ୟତିକ୍ରମ ଦେଖାଦେବା କିଛି ଅସ୍ୱାଭାବିକ ମଧ୍ୟ ନୁହେଁ । କାରଣ ଯେଉଁ ଦେଶରେ ପ୍ରତିଷ୍ଠିତ ବାବାମାନଙ୍କ କନ୍ୟାଶ୍ରମ ଯୌନ ନିର୍ଯ୍ୟାତନାରୁ ମୁକ୍ତି ହୋଇପାରୁନି, ବାବାମାନେ ଜେଲରେ ଆବଦ୍ଧ, ସେପରି କ୍ଷେତ୍ରରେ ଏପରି କୁତ୍ସିତ ଅମାନବୀୟ ଘଟଣାର ପରିସମାପ୍ତି ଘଟି ପାରିବାର ଆଶା କରିପାରିବା କି ? ଆଇନ୍‌ର ପ୍ରଣୟନକାରୀମାନେ ଯଦି ଆଇନ୍‌ର ଉଲଘଂନକାରୀ ସାଜନ୍ତି, ତେବେ କହିବା କାହାକୁ, ଶୁଣିବ କିଏ ? ଇଂରେଜ ଶାସନ କାଳରେ ସତୀଦାହ ପ୍ରଥା ଭଳି ଏକ କଠୋର କୁତ୍ସିତ ବ୍ୟବସ୍ଥାର ଅବସାନ ଘଟିପାରିଲା, ଅଥଚ ସ୍ୱଦେଶୀ ସରକାର ଅମଳରେ ଏପରି କୁତ୍ସିତ ପରମ୍ପରାର ଅନ୍ତ ହୋଇପାରୁ ନାହିଁ କାହିଁକି ? କେନ୍ଦ୍ର ସରକାରଙ୍କ ଅଧୀନରେ ଅବସ୍ଥିତ ସୋସିଆଲ୍ ଜଷ୍ଟିସ୍ ବିଭାଗଟିର ଏପରି ଅମାନବୀୟ ପରମ୍ପରାର ଅବସାନ ପାଇଁ ବଳିଷ୍ଠ ପଦକ୍ଷେପନେବା ପ୍ରାଥମିକ କାର୍ଯ୍ୟ ହେବା ଉଚିତ ନୁହେଁ କି ? ମହିଳା ସଶକ୍ତିକରଣ ପାଇଁ ଜୋରଦାର ପ୍ରଚେଷ୍ଟା କେନ୍ଦ୍ରଠାରୁ ରାଜ୍ୟ ପର୍ଯ୍ୟନ୍ତ ଚାଲୁରହିଛି । ଦେଶରେ ମାଳ ମାଳ ମହିଳା ସଂଗଠନ ଏ କ୍ଷେତ୍ରରେ ନୀରବ କାହିଁକି ? ତେବେ କେଉଁ ମହିଳାଙ୍କ ପାଇଁ ଏମାନେ ସଶକ୍ତିକରଣ ଚାହାନ୍ତି ? କେନ୍ଦ୍ର ସରକାର ହେଉ ଅଥବା ରାଜ୍ୟ ସରକାର ହେଉ, ଜାତିବାଦ ଓ ପରଂପରା ସାମ୍ନାରେ ଏମାନେ ଯେ ସଂପୂର୍ଣ୍ଣ ବେସାହାରା, ତାହା ସ୍ପଷ୍ଟ ପ୍ରତୀୟମାନ ହେଉଛି । ଶାସକ ଓ ପ୍ରଶାସକମାନେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରିବା ପରିବର୍ତ୍ତେ ଏ ଦିଗରେ ଏକ ଉଦାସୀନ ମନୋଭାବ ପୋଷଣକରି ପରମ୍ପରା ପ୍ରତି ଅନୁରକ୍ତି ପ୍ରଦର୍ଶନ କରୁଛନ୍ତି, ଯାହାଫଳରେ ପରିସ୍ଥିତିରେ ସାମାନ୍ୟ ସୁଧାର ଆସିପାରୁନି । ସେମାନେ ସମାଜ ବ୍ୟବସ୍ଥା ଓ ପରମ୍ପରାର ଦାସତ୍ୱ ସ୍ୱୀକାର ନକରି ବରଂ ଆଇନର ପୁରୋଧା ସାଜି ପାରିଲେ ନିଶ୍ଚିତଭାବେ ଏପରି କଳଙ୍କିତ ଅଧ୍ୟାୟ ଗୁଡ଼ିକର ଅଚିରେ ଅବସାନ ଘଟି ପାରନ୍ତା ।

ତେଣୁ ଡକ୍ଟର ଆମ୍ବେଦକର ଯଥାର୍ଥରେ କହିଛନ୍ତି, "ସାମାଜିକ କ୍ରାନ୍ତି ବିନା ରାଜନୈତିକ କ୍ରାନ୍ତି ଅର୍ଥହୀନ । ଅର୍ଥାତ ସାମାଜିକ ବ୍ୟାଧିର ଅବସାନରେ ହିଁ ରାଜନୀତିକ ସଂଘର୍ଷରେ ପରିପୂର୍ଣ୍ଣତା ଆସିବ । ଆଇନ ସାମାଜିକ ବ୍ୟାଧିର ମୂଳୋତ୍ପାଟନ ପାଇଁ ଅଭିପ୍ରେତ । ମାତ୍ର ଭାରତରେ ଆଇନ ଏ କ୍ଷେତ୍ରରେ ନୀରବ ଦ୍ରଷ୍ଟା । ତେଣୁ ସାମାଜିକ ବ୍ୟାଧି ଏଠି ଉତ୍କଟ

ଓ ଜୀବିତ । ଯେଉଁ ଆଇନ୍ ଏକଦା ନୀରବ ରହିଥିଲା, ସେହି ଆଇନ୍ ଆଜି ବଳିପ୍ରଥା ଉଚ୍ଛେଦ ପାଇଁ ଶତତ ଜାଗ୍ରତ । ଅନ୍ଧବିଶ୍ୱାସ ରହିତ ମାନବିକତା ହିଁ ଜାଗ୍ରତ ପ୍ରହରୀ ଭାବେ କାର୍ଯ୍ୟ କରି ପରମ୍ପରା ଉପରେ ସଶକ୍ତ ପ୍ରହାର ଦେବାରେ ସମର୍ଥ । ଧାର୍ମିକ ବିଶ୍ୱାସ ହିଁ ସାମାଜିକ ବ୍ୟାଧିର ମୂଳ କାରଣ । ଧାର୍ମିକ ବିଶ୍ୱାସ ସାମ୍ନାରେ ଆଇନ ଆଜି ବେସାହାରା । ରାଜନୈତିକ ନେତୃବୃନ୍ଦ କେବଳ କ୍ଷମତା ରାଜନୀତି ପ୍ରତି ଅଧିକ ଆଗ୍ରହୀ ରହୁଥିବା କାରଣରୁ ସାମାଜିକ ବ୍ୟାଧି ନିରାକରଣ ଆଇନ ସେମାନଙ୍କଠାରେ ଗୌଣ ହୋଇଯାଉଛି । ରାଜନୀତିକ ବ୍ୟକ୍ତିମାନେ ପରମ୍ପରା ପ୍ରତି ଆନୁଗତ୍ୟ ଦେଖାଉଥିବାରୁ ସମାଜରେ ଏପରି ବେହାଲ ଅବସ୍ଥା ସୃଷ୍ଟି ହେଇଛି ।

ଆମ ଦେଶ ପରି ଚୀନ ମଧ୍ୟ ଦିନେ ପରାଧୀନ ଥିଲା । ସେଠି ମଧ୍ୟ କୁସଂସ୍କାର ଓ ଅନ୍ଧବିଶ୍ୱାସ ଭରପୁର ହୋଇ ରହିଥିଲା । ମାତ୍ର ସେଠାରେ ଏକ ସାଂସ୍କୃତିକ ବିପ୍ଳବ ସେହି ସବୁ କଳଙ୍କିତ ପରମ୍ପରା ଓ ଅନ୍ଧବିଶ୍ୱାସର ଅବସାନ ଘଟାଇ ଚୀନକୁ ଶକ୍ତିଶାଳୀ ରାଷ୍ଟ୍ରରେ ପରିଣତ କରିଛି । ଚିନ ପରି ଭାରତରେ ଏକ ସାଂସ୍କୃତିକ ବିପ୍ଳବର ଜରୁରୀ ଆବଶ୍ୟକତା ରହିଛି । ସେଥିପାଇଁ ଏକ ବୈଚାରିକ ନେତୃତ୍ୱ ଅପରିହାର୍ଯ୍ୟ । ଏଥି ସହିତ ଏକ ସୁସ୍ଥ ଆଦର୍ଶ ସମାଜ ପ୍ରତିଷ୍ଠାର ଆବଶ୍ୟକତା ରହିଛି ଯେଉଁଥିରେ ବ୍ୟକ୍ତି ମର୍ଯ୍ୟାଦା ସୁରକ୍ଷିତ ହୋଇ ରହିବ । ପ୍ରତିଟି ସରକାରରେ ବିଜ୍ଞାନ ସମ୍ମତ ସାମାଜିକ ଦୃଷ୍ଟିଭଙ୍ଗୀ ପ୍ରତିଫଳିତ ହେବା ସହିତ ସାମାଜିକ-ଆର୍ଥିକ ଦୁର୍ଗତିରେ ସଢୁଥିବା ଏପରି ସମାଜରେ ବୈପ୍ଳବିକ ପରିବର୍ତ୍ତନ ଆଣିବାରେ ପ୍ରାଥମିକତା ଦିଆଯିବା ଉଚିତ । ପରମ୍ପରାର ଶାସନ ପରିବର୍ତ୍ତେ ଆଇନର ଶାସନ ପ୍ରବର୍ତ୍ତନରେ ଗୁରୁତ୍ୱ ଦିଆଯିବା ଦରକାର । ଏପରି ଅପସାଂସ୍କୃତିକ କାର୍ଯ୍ୟକୁ ଧର୍ତ୍ତବ୍ୟ ଅପରାଧ ରୂପେ ବିବେଚନା କରାଯାଇ ଏଥିରେ ସାମିଲ ପୂଜକ, ପିତା-ମାତା, ଦଲାଲମାନଙ୍କୁ ଗିରଫ କରାଯାଇପାରିଲେ ହିଁ ଦେବଦାସୀରୁ ଦେହଜୀବୀରେ ରୂପାନ୍ତରିତ କିଶୋରୀମାନଙ୍କୁ ସମ୍ଭାବ୍ୟ ପତିତା ଜୀବନରୁ ମୁକ୍ତି ଦିଆଯାଇ ପାରିବ । ଆଧ୍ୟାତ୍ମିକ କେନ୍ଦ୍ର ମନ୍ଦିର ପରିସରରେ ପ୍ରଚଳିତ ଏପରି କୁତ୍ସିତ ପରଂପରା ଉପରେ ପ୍ରତିବନ୍ଧକ ଲଗାଯିବା ସରକାରଙ୍କ ପ୍ରାଥମିକ କାର୍ଯ୍ୟ ହେବା ଦରକାର । ଯେଉଁ ଯେଉଁ ସମାଜର ଏହି କିଶୋରୀମାନେ ଦେବଦାସୀରୁ ଦେହଜୀବୀ ହେବାର ବାଧ୍ୟବାଧକତାକୁ ବିନା ପ୍ରତିବାଦରେ ଗ୍ରହଣ କରି ନେଉଛନ୍ତି, ସେମାନଙ୍କୁ ସୁରକ୍ଷା ଦେବାକୁ ଆଗେଇ ଆସି ସରକାର ଉପଯୁକ୍ତ ଶିକ୍ଷାର ବ୍ୟବସ୍ଥା ସହିତ ସେମାନଙ୍କ ଆନୁସଂଗିକ ସାମାଜିକ ବିକାଶ ପାଇଁ ତତ୍ପରତା ପ୍ରକାଶ କରି ଏହାର ସ୍ଥାୟୀ ସମାଧାନରେ ପ୍ରମୁଖ ଭୂମିକା ନେବା ଦରକାର ।



# ଓଡ଼ିଶାରେ ଜାତିବାଦ ଓ ଜାତିବିରୋଧୀ ଆନ୍ଦୋଳନ

*ଡକ୍ଟର ବସନ୍ତ କୁମାର ମଲ୍ଲିକ*

ଜାତିପ୍ରଥା ହିନ୍ଦୁଧର୍ମ ଓ ଭାରତୀୟ ସମାଜର ଏକ ଅବିଚ୍ଛେଦ୍ୟ ଅଙ୍ଗ । ଭାରତୀୟ ସମାଜ କେଉଁ ବିସ୍ମୃତ କାଳରୁ ଜାତି ଓ ଶ୍ରେଣୀକୁ ନେଇ ବିଭିନ୍ନ ବିଭାଗରେ ବିଭାଜିତ । ଜାତିପ୍ରଥାର ଉନ୍ମେଷ ଓ ଏହାର ତତ୍ତ୍ୱକୁ ଭଲ ରୂପେ ବୁଝିବାର ଆବଶ୍ୟକତା ରହିଛି । ମଣିଷର ଜନ୍ମକୁ ଭିତ୍ତିକରି ଆଜୀବନ ସମ୍ମାନନୀୟ ବା ଆଜୀବନ ଘୃଣ୍ୟ ସାମାଜିକ ସ୍ଥିତିକୁ ବହନ କରି ଯେଉଁ ସାମାଜିକ ପ୍ରଥା ଭାରତବର୍ଷରେ ପ୍ରଚଳିତ ହୋଇ ଆସିଛି, ତାହା ହିଁ ଜାତିପ୍ରଥା । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଇତ୍ୟାଦି ଚତୁଃବର୍ଣ୍ଣ ବ୍ୟବସ୍ଥା ଓ ଜାତିପ୍ରଥା ପରସ୍ପର ପରିପୂରକ ଏବଂ ଅବିଚ୍ଛେଦ୍ୟ । ଜାତିପ୍ରଥା ଦ୍ୱାରା ସାମାଜିକ ସ୍ତରଗୁଡିକ ଉଚ୍ଚ ନୀଚରେ ପରିଣତ ହୋଇ ଏକ ଶୋଷଣମୂଳକ ବ୍ୟବସ୍ଥାରେ ପରିଣତ ହେଲା । ଏହି ବ୍ୟବସ୍ଥା କ୍ରମଶଃ ଏତେ ବଳବତ୍ତର ହୋଇଗଲା ଯେ, ଏହି ସାମାଜିକ ବିଭାଜନ ଦେଶକୁ ଏକ ଦୁର୍ବଳ ରାଷ୍ଟ୍ରରେ ପରିଣତ କଲା । ଜାତିର ପ୍ରଭାବ କ୍ରମଶଃ ସମାଜର ବିଭିନ୍ନ ସ୍ତରରେ ଅନୁଭୂତ ହେଲା । ଏହା କେବଳ ଏକ ସାମାଜିକ ବ୍ୟବସ୍ଥା ହୋଇ ରହିଲା ନାହିଁ । ଜାତିପ୍ରଥା ଏକ ଅର୍ଥନୈତିକ, ଧର୍ମନୈତିକ ଓ ରାଜନୈତିକ ବ୍ୟବସ୍ଥାରେ ମଧ୍ୟ ପରିଣତ ହୋଇଗଲା । ଏହି ବ୍ୟବସ୍ଥା ଦ୍ୱାରା ଭାରତବର୍ଷରେ ସାର୍ବଜନୀନ ବିକାଶ ହେବା ପରିବର୍ତ୍ତେ ଅଳ୍ପ କେତେକ ମୁଷ୍ଟିମେୟ ଲୋକଙ୍କ ବିକାଶ ପାଇଁ ସହାୟକ ହୋଇ ସଂଖ୍ୟାଗରିଷ୍ଠ ଲୋକମାନଙ୍କ ଅବନତିର କାରଣ ହୋଇଅଛି ।

**ଜାତିବିରୋଧୀ ଆନ୍ଦୋଳନର ଧାରା:**

ଜାତିପ୍ରଥା କୌଣସି ସାମାଜିକ ବିରୋଧର ସାମ୍ନା କରିନାହିଁ ବୋଲି କହିବା ନିଶ୍ଚୟ ଅତ୍ୟୁକ୍ତି ହେବ । ସାମାଜିକ ପ୍ରଥା ବିରୋଧରେ ଆହ୍ୱାନ ଓ ପ୍ରତିବାଦ ସତ୍ତ୍ୱେ ଏହା ତିଷ୍ଠି

ରହିଛି । ଭାରତବର୍ଷରେ ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରୁ ଜାତିବିରୋଧୀ ଆନ୍ଦୋଳନ ଆରମ୍ଭ ହୋଇଛି । ବ୍ରାହ୍ମଣ୍ୟବାଦ ଓ ଜାତିପ୍ରଥା ବିରୁଦ୍ଧରେ ମହାନ୍ ସାମାଜିକ କ୍ରାନ୍ତିକାରୀ ଗୌତମ ବୁଦ୍ଧ ସର୍ବପ୍ରଥମେ ହିଁ ସ୍ୱର ଉତ୍ତୋଳନ କରିଥିଲେ । ତାଙ୍କର ପ୍ରଗତିବାଦୀ ଦର୍ଶନ ବ୍ରାହ୍ମଣ୍ୟବାଦକୁ ଭିତ୍ତିକରି ଗଢ଼ି ଉଠିଥିବା ଜାତିପ୍ରଥା, ଅସ୍ପୃଶ୍ୟତା, ପୁରୋହିତ ପ୍ରଥା, ପୂଜା ପଦ୍ଧତି, ଧାର୍ମିକ ଅନ୍ଧବିଶ୍ୱାସ, ପଶୁବଳି ପ୍ରଥା ଓ ନାରୀମାନଙ୍କର ସାମାଜିକ ଅବମୂଲ୍ୟାୟନ ବିରୋଧରେ ପର୍ଯ୍ୟବସିତ ହୋଇଥିବାରୁ ଏହା ଏକ ଗଣ ଆନ୍ଦୋଳନର ରୂପରେଖ ନେଇଥିଲା । ଏହା ଦ୍ୱାରା ସମାଜ ଓ ଧର୍ମୀୟ ବ୍ୟବସ୍ଥାରେ ପରିବର୍ତ୍ତନ ହେବା ସହିତ ଜନଗଣଙ୍କ ମଧ୍ୟରେ ଏକ ନବ ଚେତନା ଓ ନବଜାଗରଣ ସୃଷ୍ଟି ହୋଇଥିଲା । କାରଣ ଏହି ବୌଦ୍ଧିକ ନବଚେତନା ପରବର୍ତ୍ତୀ କାଳରେ ଭାରତୀୟ ସମାଜରେ ବିଭିନ୍ନ ସମୟରେ ଅନେକ ସାମାଜିକ ତଥା ଧର୍ମୀୟ ଆନ୍ଦୋଳନର ସୂତ୍ରପାତ କରିଥିଲା । ସଂସ୍କୃତ ଭାଷା ପରିବର୍ତ୍ତେ ବୁଦ୍ଧ ଗଣକଥିତ ଭାଷା ପାଲି ଭାଷାକୁ ବ୍ୟବହାର କରିଥିଲେ । ବୌଦ୍ଧ ଧର୍ମ ରାଜାନୁଗ୍ରହ ଲାଭ କରି ଭାରତରେ ଓ ଭାରତ ବାହାରେ ପ୍ରସିଦ୍ଧି ଲାଭ କରିଥିଲା । ଏହି ଧର୍ମ ସାମାଜିକ ପ୍ରତିବାଦକୁ ଆଧାର କରି ସବୁ ପ୍ରକାରର ବୈଷମ୍ୟ, ଶୋଷଣ ଓ ଦୁର୍ନୀତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ସହିତ ଶାନ୍ତି ପ୍ରତିଷ୍ଠା ନିମନ୍ତେ ଅହିଂସାର ମାର୍ଗକୁ ପ୍ରଚାର କରିଥିଲା । ଏଥିପାଇଁ ବୌଦ୍ଧ ଧର୍ମ ରାଜାଙ୍କଠାରୁ ପ୍ରଜାଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ନିକଟରେ ଆଦୃତି ଲାଭ କରିଥିଲା । ଏହା ବ୍ରାହ୍ମଣ୍ୟବାଦୀ ସାମାଜିକ ବୈଷମ୍ୟର ବିରୋଧୀ ଥିବାରୁ କ୍ରମଶଃ ଏହାର ପତନ ଘଟିଥିଲା । ଦୁଃଖର କଥା ଯେ, ବୌଦ୍ଧ ଧର୍ମ ଭାରତ ବାହାରେ ତିଷ୍ଠି ରହି ଆଦୃତି ଲାଭ କରିଥିବା ବେଳେ ଭାରତରେ ବିଲୁପ୍ତ ପ୍ରାୟ ଏକ ନଗଣ୍ୟ ଧର୍ମରେ ପରିଣତ ହୋଇଛି । ଓଡିଶାରେ ମଧ୍ୟ ବୌଦ୍ଧଧର୍ମ ଆଦୃତି ଲାଭ କରିଥିଲା । କାଳକ୍ରମେ ଭାରତରେ ଓ ଓଡିଶାରେ ମଧ୍ୟ ବ୍ରାହ୍ମଣ୍ୟ ଧର୍ମ ଓ ବୌଦ୍ଧ ଧର୍ମ ମଧ୍ୟରେ ଏକ ସଂଘର୍ଷ ଘଟି ବ୍ରାହ୍ମଣ୍ୟବାଦ ତିଷ୍ଠି ରହିଲା ଓ ବୌଦ୍ଧ ଧର୍ମର ପତନ ଘଟିଲା । ଓଡିଶା ଏକ ଆଦିବାସୀ ବହୁଳ ଅଞ୍ଚଳ ହୋଇଥିବାରୁ ଏବଂ ଆଦିବାସୀମାନେ ସମତାଭାବାପନ୍ନ ଦର୍ଶନରେ ବିଶ୍ୱାସ ରଖିଥିବାରୁ ବୌଦ୍ଧଧର୍ମ ଉଭୟ ଉପକୂଳ ଓ ପାର୍ବତ୍ୟାଞ୍ଚଳରେ ଆଦୃତି ଲାଭ କରିଥିଲା । ବୌଦ୍ଧ ଧର୍ମର ଉତ୍‌ଥାନ ଏକ ସାମାଜିକ ବିପ୍ଳବ ଥିଲା ଏବଂ ବିପ୍ଳବ ପରେ ପରେ ଯେଉଁ ସାମାଜିକ ପ୍ରତିବିପ୍ଳବ ହେଲା ସେଥିରେ ବ୍ରାହ୍ମଣ୍ୟବାଦର ବିଜୟ ହେବା ସହିତ ବୌଦ୍ଧ ଧର୍ମର ପତନ ଘଟିଥିଲା । ପ୍ରଥମତଃ, ସୈନ୍ଧବ-ଗାଙ୍ଗେୟ ମାଳଭୂମିରେ ବ୍ରାହ୍ମଣ୍ୟ ଧର୍ମ ବିକଶିତ ହେଲା ଏବଂ କ୍ରମଶଃ ଏହା ସାରା ଭାରତକୁ ବ୍ୟାପିଗଲା ଏହି ମାଳଭୂମିର ବାହାରେ ଥିବା ଆଦିବାସୀ ଓ ଦ୍ରାବିଡ଼ ବହୁଳ ଅଞ୍ଚଳରେ ଲୋକମାନେ ନିଜ ନିଜର ମୌଳିକ ସଂସ୍କୃତିକୁ ବଳି ଦେଇ ବ୍ରାହ୍ମଣ୍ୟ ଧର୍ମ ଓ ସଂସ୍କୃତିକୁ ଆଦରି ନେଲେ । ବ୍ରାହ୍ମଣ୍ୟ ଧର୍ମର କୌଶଳପୂର୍ଣ୍ଣ ପ୍ରଚାର, ପ୍ରସାର, ଜାତିପ୍ରଥା, ଅନ୍ଧବିଶ୍ୱାସ, ଉଚ୍ଚ ନୀଚ ମନୋଭାବ ତଥା ଅତି ସହଜରେ ଜନ୍ମଭିତ୍ତିକ

ସାମାଜିକ ପ୍ରତିଷ୍ଠା ହାସଲ କରିବା ଉଦ୍ଦେଶ୍ୟରେ ଏହାର ଲୋକପ୍ରିୟତା ବଢ଼ିଲା ଏବଂ ଏକ ପ୍ରଗତିଶୀଳ ଦର୍ଶନ ବୌଦ୍ଧ ଧର୍ମର ବିଲୟ ଘଟିଲା । ବୌଦ୍ଧ ଧର୍ମର ପତନ ଠାରୁ ଜାତି ବିରୋଧୀ ଆନ୍ଦୋଳନର ସ୍ୱର ସମୟ କ୍ରମେ କମିଛି ଓ ବଢ଼ିଛି ମଧ୍ୟ । ଗୌତମ ବୁଦ୍ଧଙ୍କ ଠାରୁ ଆରମ୍ଭ କରି ବାବା ସାହେବ ଆମ୍ବେଦକର ଓ ରାମ ମନୋହର ଲୋହିଆଙ୍କ ପର୍ଯ୍ୟନ୍ତ ଜାତି ବିରୋଧୀ ଆନ୍ଦୋଳନର ଏକ ଅବିଶ୍ରାମ ସ୍ରୋତ ପ୍ରବାହିତ ହୋଇଥିଲେ ସୁଦ୍ଧା ଜାତିର ପ୍ରାଧାନ୍ୟ ଓ ଆଧିପତ୍ୟ ଏ ପର୍ଯ୍ୟନ୍ତ କମିନାହିଁ ।

## ମଧ୍ୟଯୁଗୀୟ ଓଡିଶାରେ ଜାତିବିରୋଧୀ ସ୍ୱର:

ଓଡିଶା ପରିପ୍ରେକ୍ଷୀରେ ଜାତି ବିରୋଧୀ ଆନ୍ଦୋଳନକୁ ଦୃଷ୍ଟିପାତ କଲେ ଏଠାରେ ବିପ୍ଳବର ଧାରା ପ୍ରବାହିତ ହୋଇଛି । ମଧ୍ୟଯୁଗୀୟ ଓଡିଶାରେ ଏକ ଅଭୂତପୂର୍ବ ସାମାଜିକ ଆନ୍ଦୋଳନ ଘଟିଲା ଯାହାର ନାୟକମାନେ ଥିଲେ ଶୂଦ୍ର ମୁନିଗଣ । ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀ ଓଡିଶା ପାଇଁ ଏକ ନବ ଜାଗରଣର ଯୁଗ ଥିଲା । ଏହି ସମୟରେ ରାଜନୈତିକ ଓ ସାମାଜିକ କ୍ଷେତ୍ରରେ ଯେଉଁ ବୈପ୍ଳବିକ ପରିବର୍ତ୍ତନ ହୋଇଥିଲା, ତାହାର ଦୁଇ କର୍ଣ୍ଣଧାର ଥିଲେ ସମ୍ରାଟ କପିଳେନ୍ଦ୍ର ଦେବ ଓ ଶୂଦ୍ର ମୁନି ସାରଳା ଦାସ । ଓଡିଶାରେ ଗଙ୍ଗମାନଙ୍କର ତିନିଶହ ବର୍ଷ ଶାସନ ପରେ କପିଳେନ୍ଦ୍ର ଦେବ ପଞ୍ଚଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ପ୍ରଥମ ଓଡିଆ ଭାବେ ଓଡିଶାର ସିଂହାସନ ଆରୋହଣ କରିଥିଲେ ଏବଂ ଶୂଦ୍ରମୁନି ସାରଳା ଦାସ ଅଗ୍ରଣୀ କବି ଭାବେ ଓଡିଆ ଭାଷାରେ ପ୍ରଥମତଃ ସାହିତ୍ୟ ରଚନା କରିଥିଲେ । ସେ ଓଡିଆ ଭାଷାରେ ମହାଭାରତ, ବିଲଙ୍କା ରାମାୟଣ ଓ ଚଣ୍ଡୀପୁରାଣ ଇତ୍ୟାଦି ରଚନା କରି ଏକ ଜନ ଜାଗରଣ ଚେତନାକୁ ଉଦ୍‌ବୁଦ୍ଧ କରିଥିଲେ । ସାରଳା ଦାସଙ୍କ ପରେ ପରେ ଷୋଡ଼ଶ ଶତାବ୍ଦୀରେ ବଳରାମ ଦାସ, ଜଗନ୍ନାଥ ଦାସ, ଯଶୋବନ୍ତ ଦାସ, ଅଚ୍ୟୁତାନନ୍ଦ ଦାସ ଓ ଅନନ୍ତ ଦାସ ଇତ୍ୟାଦି ପଞ୍ଚସଖାଙ୍କର ଆବିର୍ଭାବ ହୋଇଥିଲା । ଏହି ପାଞ୍ଚଜଣ ସଖାଙ୍କ ମଧ୍ୟରୁ ଚାରିଜଣ ଶୂଦ୍ରମୁନି ଥିଲେ ଓ କେବଳ ଜଗନ୍ନାଥ ଦାସ ଜଣେ ଉଦାରଚେତା ବ୍ରାହ୍ମଣ ଥିଲେ । ସେମାନେ ଓଡିଆ ଭାଷାରେ ରାମାୟଣ, ଲକ୍ଷ୍ମୀପୁରାଣ, ଭାଗବତ, ଶୂନ୍ୟ ସଂହିତା, ହରିବଂଶ, ବିଭିନ୍ନ ମାଳିକା ଇତ୍ୟାଦି ରଚନା କରି ଧର୍ମକୁ ଉଚ୍ଚତମ ସୋପାନରୁ ଆଣି ଗ୍ରାମ୍ୟ ଗରିବ ଲୋକଙ୍କ କୁଡ଼ିଆ ଘର ନିକଟରେ ପହଞ୍ଚାଇ ଥିଲେ । ସଂସ୍କୃତ ଭାଷାକୁ ମାଧ୍ୟମ କରି ସାହିତ୍ୟ ବା ପୁରାଣାଦି ରଚନା କରିବାର ପ୍ରଥା ବିରୋଧରେ ପ୍ରଥମେ ସ୍ୱର ଉତ୍ତୋଳନ କରିଥିଲେ ଏହି ଶୂଦ୍ର ମୁନିଗଣ । ଲୋକଭାଷା ଓଡ଼ିଆ ଗ୍ରନ୍ଥମାନ ରଚନା କରି ସେମାନେ ଓଡ଼ିଆ ଭାଷା ଓ ସାହିତ୍ୟର ମୂଳଦୁଆ ସ୍ଥାପନ କରିବା ସହିତ ଓଡ଼ିଆ ଜାତିକୁ 'ପରିଚୟ' ଦେଲେ । ଓଡ଼ିଆ ଭାଷା ଏକ ଭାଷାର ପରିଚୟ ପାଇଲା ଏବଂ ଓଡିଶାର ଇତିହାସ ଓ ସଂସ୍କୃତି ସେମାନଙ୍କ ଲେଖନୀ ମୁନରେ ଲିପିବଦ୍ଧ ହୋଇପାରିଲା ।

## ପ୍ରଗତିଶୀଳ ବୈଷ୍ଣବ ଆନ୍ଦୋଳନ :

ଷୋଡ଼ଶ ଶତାବ୍ଦୀରେ ଓଡ଼ିଶାରେ ପ୍ରସାର ଲାଭ କରିଥିବା ବୈଷ୍ଣବ ଧର୍ମ ପ୍ରଗତିଶୀଳ ସାମାଜିକ ଆନ୍ଦୋଳନ ଥିଲା । ଏହାର ପ୍ରବର୍ତ୍ତକ ଓ ଅନୁସରଣକାରୀମାନଙ୍କ ଦ୍ୱାରା ଜାତି ବିରୋଧୀ ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ସେହି ସମୟରେ ବୈଷ୍ଣବମାନେ ନିଜ ନିଜ ଜାତିର କୌଳିକ ସାଙ୍ଗିଆକୁ ପରିତ୍ୟାଗ କରି 'ଦାସ' ସାଙ୍ଗିଆ ଗ୍ରହଣ କରିଥିଲେ । 'ଦାସ' ଅର୍ଥ ଭଗବାନ ବା କୌଣସି ଦେବାଦେବୀଙ୍କର ଭୃତ୍ୟ ବା ସେବକ ଭାବରେ ନିଜକୁ ପରିଚୟ ଦେବା । ମଧ୍ୟ ଯୁଗର ସାମାଜିକ ଆନ୍ଦୋଳନ ପ୍ରକୃତରେ ଦାସ ଭାବନାରେ ଉଦ୍ଭାସିତ ହୋଇ ଭକ୍ତି ଆନ୍ଦୋଳନକୁ ଋଦ୍ଧିମନ୍ତ କରିଥିଲା । ସେହି ସମୟରେ ଏକ ପ୍ରବାଦ 'ବାରଜାତି ତେର ଗୋଲା, ବୈଷ୍ଣବ ହେଲେ ସବୁ ଗଲା' ବହୁ ପରିମାଣରେ ପ୍ରସାରିତ ହୋଇ ଲୋକପ୍ରିୟତା ହାସଲ କରିଥିଲା । ଏହି ପ୍ରଗତିଶୀଳ ବୈଷ୍ଣବ ଆନ୍ଦୋଳନ ଫଳରେ ବ୍ରାହ୍ମଣ- ଅବ୍ରାହ୍ମଣ ବହୁ ଜାତିର ଲୋକମାନେ 'ଦାସ' ସାଙ୍ଗିଆ ଗ୍ରହଣ କରିଥିଲେ । ଏହି ଉଦାର ଚେତା ମନୋଭାବ ଦ୍ୱାରା ଜାତିପ୍ରଥାରେ ଶିଥିଳତା ଦେଖା ଦେଇଥିଲା । ଅବଶ୍ୟ 'ଦାସ ଯୁଗ'ର ଏହି ପ୍ରଗତିଶୀଳ ଧାରା ପରବର୍ତ୍ତୀ ସମୟରେ ବ୍ରାହ୍ମଣ୍ୟବାଦର କରାଳ ଗର୍ଭରେ ଲୁପ୍ତ ପ୍ରାୟ ହୋଇ ଅନ୍ୟରୂପ ଧାରଣା କଲା, ତାହା ଆମେ ପରେ ଆଲୋଚନା କରିବା ।

## ଜ୍ୟୋତିବା ଫୁଲେ ଓ ଭୀମଭୋଇ :

ଊନବିଂଶ ଶତାବ୍ଦୀରେ ଔପନିବେଶିକ ସଂସ୍କୃତି ସହିତ ଭାରତୀୟ ସମାଜର ସାଂସ୍କୃତିକ ବିନିମୟ ଫଳରେ ଭାରତରେ ଜାତିବିରୋଧୀ ଆନ୍ଦୋଳନ ଏକ ନୂଆ ମୋଡ଼ ନେଇଥିଲା । ଏହି ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ମହାରାଷ୍ଟ୍ରରେ ମହାତ୍ମା ଜ୍ୟୋତି ରାଓ ଫୁଲେ "ସତ୍ୟ ଶୋଧକ ସମାଜ" ଗଠନ କରି, 'ଗୋଲାମି ଗିରି' (୧୮୭୧) ନାମକ ପୁସ୍ତକ ରଚନା କରି ଏବଂ ପଛୁଆ ଓ ଅସ୍ପୃଶ୍ୟ ଶ୍ରେଣୀର ଶିକ୍ଷା ଦିଗରେ ବିଭିନ୍ନ କାର୍ଯ୍ୟ କରିବା ବେଳେ, ଓଡ଼ିଶାର ଅନାମଧେୟ ପାର୍ବତ୍ୟାଞ୍ଚଳରେ ଏହି ସମୟରେ ସନ୍ଥ ଭୀମ ଭୋଇ ଏକ ଜାତି ବିରୋଧୀ ଓ ବେଦ ବିରୋଧୀ ଆନ୍ଦୋଳନ କରି ଯେଉଁ ସାମାଜିକ ବିପ୍ଳବ ଆରମ୍ଭ କରିଥିଲେ ତାର ପଟାନ୍ତର ନାହିଁ । ଏକ ଜାତିହୀନ, ଶ୍ରେଣୀହୀନ ଓ ଶୋଷଣମୁକ୍ତ ସମାଜ ଗଠନ କରିବା ସହିତ ନିଜକୁ ନର୍କରେ ପକାଇ ଜଗତ ଉଦ୍ଧାରର ପରିକଳ୍ପନା କରିବା ଏକ ମହାନ୍ ମାନବବାଦର ପରିଚୟ ଦିଏ । ତାଙ୍କ ଦ୍ୱାରା ପ୍ରଚାରିତ 'ମହିମା ଧର୍ମ' ବିଶେଷତଃ ଆଦିବାସୀ ଓ ପଛୁଆ ଶ୍ରେଣୀମାନଙ୍କୁ ବିଶେଷ ଆକୃଷ୍ଟ କରିଥିଲା । ଜାତି, ଧର୍ମ,ବର୍ଣ୍ଣ ନିର୍ବିଶେଷରେ ପ୍ରତ୍ୟେକ ବ୍ୟକ୍ତି ଏହି ଧର୍ମରେ ଦୀକ୍ଷିତ ହୋଇପାରିଲେ । ରାଜତନ୍ତ୍ର, ବ୍ରାହ୍ମଣ୍ୟବାଦର ବିଭିନ୍ନ ବ୍ୟବସ୍ଥା ତଥା ମୂର୍ତ୍ତିପୂଜା ବିରୁଦ୍ଧରେ ସେ ସ୍ୱର ଉତ୍ତୋଳନ କରିଥିଲେ । ୧୮୮୧ ମସିହା

ମାର୍ଚ୍ଚ ୧ ତାରିଖ ଦିନ ପ୍ରାୟ ଚଉରାଳିଶ ଜଣ ମହିମା ଧର୍ମୀଙ୍କ ଦ୍ୱାରା ଜଗନ୍ନାଥ ମନ୍ଦିର ପ୍ରବେଶ ଉଦ୍ୟମ ସେମାନଙ୍କର ବୈପ୍ଳବିକ ଜାତି, ବେଦ ଓ ମୂର୍ତ୍ତି ପୂଜା ବିରୋଧୀ ଦର୍ଶନର ଯଥେଷ୍ଟ ପ୍ରମାଣ ଦିଏ । ଏ ଦିଗରେ ଅଧିକ ଗବେଷଣା ହୋଇପାରିଲେ ଔପନିବେଶିକ ଭାରତରେ ଓଡିଶାରୁ ପ୍ରକୃତରେ ଜାତି ବିରୋଧୀ ଆନ୍ଦୋଳନର ଆରମ୍ଭ ହୋଇଥିଲା ବୋଲି ପ୍ରମାଣିତ ହୋଇପାରିବ । ଭୀମଭୋଇଙ୍କ ଦ୍ୱାରା ରଚିତ 'ନିର୍ବେଦ ସାଧନା', 'ସ୍ତୁତି ଚିନ୍ତାମଣି', 'ସ୍ତୁତି ନିଷେଧ' ଓ 'ଅଧିକାନ୍ତ ଗୀତା' ଇତ୍ୟାଦି ତାଙ୍କର ବୈପ୍ଳବିକ ଦର୍ଶନର ପରିଚୟ ଦିଏ ।

ବ୍ରିଟିଶ ଶାସନ କାଳରେ ପାଶ୍ଚାତ୍ୟ ଶିକ୍ଷା, ଦର୍ଶନ ଓ ସଭ୍ୟତାର ପ୍ରଭାବରେ ଦଳିତ ଶ୍ରେଣୀ ମଧ୍ୟରେ ନୂଆ ଚେତନା ଦେଖାଦେଲା । ବାବା ସାହେବ ଆମ୍ବେଦକରଙ୍କର ଦୃଢ଼ ରାଜନୈତିକ କ୍ଷମତା ଦାବି ଫଳରେ ଗାନ୍ଧୀ ଓ କଂଗ୍ରେସ ଅସ୍ପୃଶ୍ୟତା ନିରୋଧ ଆନ୍ଦୋଳନ କଲେ । ଗାନ୍ଧୀଙ୍କ ନେତୃତ୍ୱରେ ଓଡ଼ିଶାରେ 'ହରିଜନ ଆନ୍ଦୋଳନ' ବ୍ୟାପକତା ଲାଭ କଲା ସତ, କିନ୍ତୁ ଦଳିତ ଶ୍ରେଣୀର ବିଶେଷ ଆଶାନୁରୂପକ ଉନ୍ନତି ହେଲା ନାହିଁ । କାରଣ ଦଳିତ ଶ୍ରେଣୀର ଉତ୍ଥାନ ପାଇଁ ଗାନ୍ଧୀଙ୍କ ଦ୍ୱାରା କୌଣସି ଅର୍ଥନୈତିକ ବା ରାଜନୈତିକ କାର୍ଯ୍ୟସୂଚୀ ଅନୁସୃତ ହୋଇ ନଥିଲା । ସେ କେବଳ ଧାର୍ମିକ ଓ ଆଧ୍ୟାତ୍ମିକ ଚେତନାକୁ ମାଧ୍ୟମ କରି ଉଚ୍ଚବର୍ଣ୍ଣ ହିନ୍ଦୁମାନଙ୍କର ଅନୁକମ୍ପା ଲାଭ କରି ଦଳିତ ମାନଙ୍କର ଉନ୍ନତି କରିବାକୁ ପ୍ରୟାସ କରିଥିଲେ । ଅସ୍ପୃଶ୍ୟତା ବିରୁଦ୍ଧରେ ସେ ସ୍ୱର ଉତ୍ତୋଳନ କରିଥିଲେ ହେଁ ଜାତିପ୍ରଥା ବିରୁଦ୍ଧରେ ପଦୁଟିଏ ହେଲେ କହି ନଥିଲେ ।

## ଓଡ଼ିଶାରେ ଜାତିବାଦ ଓ ହିନ୍ଦୁତ୍ୱକରଣ ଧାରା:

ଓଡ଼ିଶାରେ ଦଳିତ ଶ୍ରେଣୀର ଉନ୍ନତି ନିମନ୍ତେ ଯଦିଓ କେତେକାଂଶରେ ଅସ୍ପୃଶ୍ୟତା ନିବାରଣ ପାଇଁ କିଛି ଆନ୍ଦୋଳନ ହୋଇଥିଲା, ତାହା କଂଗ୍ରେସ ଦଳର ସହାୟତାରେ ଏବଂ ଉଚ୍ଚବର୍ଣ୍ଣ କଂଗ୍ରେସ ନେତାମାନଙ୍କ ନେତୃତ୍ୱରେ ହୋଇଥିଲା । କଟକର ବାଲୁଙ୍କେଶ୍ୱର ଆଚାର୍ଯ୍ୟ "ନିଖିଳ ଓଡ଼ିଶା ହରିଜନ ସେବକ ମହାସଂଘ" ର ସଭାପତି ରହିଥିବା ବେଳେ ଗୋପବନ୍ଧୁ ଚୌଧୁରୀ, ରମାଦେବୀ, ମୁକୁନ୍ଦ ପ୍ରସାଦ ଦାସ (ବାଲେଶ୍ୱର) ଭାଗବତ ମହାପାତ୍ର (ଭଦ୍ରକ), ପଣ୍ଡିତ ନୀଳକଣ୍ଠ ଦାସ ଓ ଲୋକନାଥ ମିଶ୍ର (ପୁରୀ) ନୃସିଂହ ଗୁରୁ (ସମ୍ବଲପୁର), ଜଗନ୍ନାଥ ଦାସ, ଫନୀନ୍ଦ୍ର ନାଥ ସାମଲ ଓ ନାରାୟଣ ଚନ୍ଦ୍ର ଘୋଷ (ଯାଜପୁର) ଇତ୍ୟାଦି ଅଞ୍ଚଳରେ ଅସ୍ପୃଶ୍ୟତା ନିବାରଣ ଓ ଦଳିତ ଉନ୍ନତି ଦାୟିତ୍ୱରେ ରହିଥିଲେ । ତତ୍କାଳୀନ ପତ୍ରିକା 'ଉତ୍କଳ ଦୀପିକା' ରେ ଏହି 'ହରିଜନ ଆନ୍ଦୋଳନ' ର ବିଶେଷ ସଫଳତା ପ୍ରକାଶ ପାଇଥିଲେ ମଧ୍ୟ ଅନ୍ୟ ଏକ ନିର୍ଭିକ ପତ୍ରିକା 'ଦେଶକଥା' ରୁ ଜଣାପଡ଼େ ଯେ ହରିଜନ ଆନ୍ଦୋଳନ ଏକ ଆଖିଦୃଶିଆ ଆନ୍ଦୋଳନ ହିଁ ଥିଲା । 'ହରିଜନ ସେବକ ସଂଘ' ଦ୍ୱାରା ପ୍ରତିଷ୍ଠିତ ସ୍ୱତନ୍ତ୍ର ବିଦ୍ୟାଳୟମାନଙ୍କର ଶିକ୍ଷକମାନଙ୍କୁ ଦରମା ଦେବା ପାଇଁ ଅର୍ଥ ନିଅଣ୍ଟ ହେଉଥିଲା ବେଳେ,

ଏହି ଅର୍ଥରେ ଅସ୍ପୃଶ୍ୟତା ନିବାରଣ ପ୍ରଚାର ନିମନ୍ତେ ନିଯୁକ୍ତ ଉଚ୍ଚଜାତିର କଂଗ୍ରେସ କର୍ମୀମାନଙ୍କୁ ଯଥେଷ୍ଟ ଦରମା, ଭତ୍ତା ଓ ଗସ୍ତ ଖର୍ଚ୍ଚ ଇତ୍ୟାଦି ଦିଆଯାଉଥିଲା । ଗାନ୍ଧୀଙ୍କର ବଳିଷ୍ଠ ପ୍ରଭାବରେ କଂଗ୍ରେସର କର୍ମୀମାନେ କେବଳ ହରିଜନ ବସ୍ତିମାନଙ୍କରେ ପ୍ରଚାର କରୁଥିଲେ । ଏହା ଦ୍ୱାରା ଦଳିତ ଶ୍ରେଣୀର ଯେତିକି ଉନ୍ନତି ହେଲା ତାଠାରୁ ଅଧିକ ଲାଭ ହେଲା ହିନ୍ଦୁ ସମାଜର । ଏହି ଆନ୍ଦୋଳନ ପ୍ରଭାବରେ ଅସ୍ପୃଶ୍ୟ ଶ୍ରେଣୀ 'ହିନ୍ଦୁତ୍ୱକରଣ' ର ଧାରାରେ ସାମିଲ ହୋଇ ନିଜକୁ ହିନ୍ଦୁ ଭାବରେ ପରିଚୟ ଦେଲେ । ଏହା ଫଳରେ ଦଳିତ ଅସ୍ପୃଶ୍ୟମାନେ ହରିଜନ (ଭଗବାନଙ୍କର ସନ୍ତାନ) ନାମରେ ନାମିତ ହେଲେ, ଉଚ୍ଚବର୍ଣ୍ଣ ନେତାମାନଙ୍କ ପ୍ରଭାବରେ ସେମାନେ ନିଜ  ନିଜ ଜାତି ସଭାରେ 'ଭାଗବତ' ଆବୃତ୍ତି, ଅଗଣାରେ ଚଉଁରା ପ୍ରତିଷ୍ଠା କରି ତୁଳସୀ ଗୁଳ୍ମ ରୋପଣ', ମଦ୍ୟପାନ ପରିହାର ଓ ନିଷିଦ୍ଧ ମାଂସ ପରିହାର ଦ୍ୱାରା ସେମାନଙ୍କର ହିନ୍ଦୁତ୍ୱକରଣର ପ୍ରକ୍ରିୟା ଦ୍ରୁତ ଗତିରେ ଅଗ୍ରସର ହେଲା । ଏହା ଜାତି ବିରୋଧୀ ନୁହେଁ ବରଂ ଜାତିବାଦ ଆନ୍ଦୋଳନକୁ ସୁହାଇଲା ।

କଂଗ୍ରେସ ନେତୃତ୍ୱରେ ଯେଉଁ ପରିମାଣରେ ଯାହା ବି ହେଉ ହରିଜନ ଆନ୍ଦୋଳନ ଚାଲୁ ରହିଥିବା ସମୟରେ ସମାଜରେ ଏକ ରକ୍ଷଣଶୀଳ ଗୋଷ୍ଠୀ ଏହି ଆନ୍ଦୋଳନକୁ ସର୍ବଦା ବିରୋଧ କରୁଥିଲେ । କଟକରେ ଥିବା ସବୁ ମନ୍ଦିରଗୁଡ଼ିକ ହରିଜନମାନଙ୍କ ପାଇଁ ଉନ୍ମୁକ୍ତ କରିବାକୁ ଗୋପବନ୍ଧୁ ଚୌଧୁରୀ, ସତ୍ୟନାରାୟଣ ସେନଗୁପ୍ତା, ରାଧାନାଥ ରଥ, ରାଜକୃଷ୍ଣ ବୋଷ, ଅଟଳ ବିହାରୀ ଆଚାର୍ଯ୍ୟ ଚାହୁଁଥିବା ବେଳେ, 'ଉତ୍କଳ ସନାତନ ଧର୍ମ ରକ୍ଷିଣୀ ସଭା' ର ସଂପାଦକ ପରିକ୍ଷିତ ଦାଶ ଶର୍ମା ଏହାକୁ ତୀବ୍ର ବିରୋଧ କରିଥିଲେ । ତାଙ୍କ ମତରେ ଅସ୍ପୃଶ୍ୟତା ନିବାରଣ ହେଲେ  ସନାତନ ଧର୍ମ ଧ୍ୱଂସ ହୋଇଯିବ । ବାସ୍ତବିକ ଦାସ ଶର୍ମାଙ୍କ ଯୁକ୍ତିରେ ସତ୍ୟର ଗଭୀରତା ଯଥେଷ୍ଟ ରହିଛି କାରଣ ଅସ୍ପୃଶ୍ୟତା ହିନ୍ଦୁମାନଙ୍କ ପାଇଁ ଏକ ସୁନା ଖଣି । ଅସ୍ପୃଶ୍ୟତା ରହିଥିବା ଯୋଗୁଁ ସମାଜର ବହୁ ଅଳିଆ ଆବର୍ଜନା କେତେ ଶସ୍ତାରେ ବା ମାଗଣାରେ କରାଯାଇ ପାରୁଛି ତାର କଳନା ନାହିଁ । ଅସ୍ପୃଶ୍ୟତା ରହିଥିବା ଯୋଗୁଁ ଭାରତୀୟ ଶ୍ରମ କେତେ ଶସ୍ତା ତାହା ଅଧିକ ଗବେଷଣା କଲେ ଜଣା ପଡ଼ିବ ।

### ଓଡିଶାରେ ଦଳିତ ଚେତନା :

୧୯୩୩ ମସିହାରେ ପୁରୀ ଶ୍ରୀ ମନ୍ଦିରରେ ଅସ୍ପୃଶ୍ୟ ମାନଙ୍କର ପ୍ରବେଶ କରାଇବାକୁ ପଣ୍ଡିତ ନୀଳକଣ୍ଠ ଦାସ ଓ ଲୋକନାଥ ମିଶ୍ର, ବିଦେଶରୁ ଶିକ୍ଷାଲାଭ କରିଥିବା ରାଜା ରାମଚନ୍ଦ୍ର ଦେବ, ପୁରୀ ମନ୍ଦିରର ତତ୍ତ୍ୱାବଧାରକ ଓ ଏହାର ମଠର ମହନ୍ତଙ୍କୁ ଯେତେ ପ୍ରବର୍ତ୍ତାଇଥିଲେ ମଧ୍ୟ ତାହା ସଫଳ ହୋଇପାରି ନଥିଲା । ଗୋଟିଏ ଦିଗରେ ସମାଜରେ ରକ୍ଷଣଶୀଳତା ବୃଦ୍ଧି ପାଇଥିଲେ ମଧ୍ୟ ଏହି ସମୟରେ (୧୯୩୩ ମସିହାରେ) ଦଳିତ ଶ୍ରେଣୀ ମଧ୍ୟରେ ରାଜନୈତିକ

ଚେତନା ବୃଦ୍ଧି ପାଇଥିବା ଏକ ଉଲ୍ଲେଖନୀୟ ଘଟଣା । ୧୯୩୩ରେ ଇନ୍ଦୁପୁର (କେନ୍ଦ୍ରାପଡା) ଅଞ୍ଚଳର ବୀର କିଶୋର ବେହେରାଙ୍କ ନେତୃତ୍ୱରେ ଗଠିତ ହୋଇଥିବା "ନିଖିଳ ଓଡ଼ିଶା ଦଳିତ ଶ୍ରେଣୀ ସଂଘ" ଙ୍କ ଦ୍ୱାରା କଟକ ଜିଲ୍ଲା ବୋର୍ଡକୁ ଜଣେ ଦଳିତ ପ୍ରତିନିଧିଙ୍କୁ ମନୋନୀତ କରିବା ପାଇଁ କମିଶନରଙ୍କ ନିକଟରେ ଦାବି କରାଯିବା ନିଶ୍ଚିତ ଭାବେ ଏକ ଉଲ୍ଲେଖଯୋଗ୍ୟ ପଦକ୍ଷେପ । ପରବର୍ତ୍ତୀ କାଳରେ ବୀରକିଶୋର ବେହେରା ନିଜର ସ୍ପଷ୍ଟବାଦୀତା ଓ ହରିଜନ ଆନ୍ଦୋଳନ ପ୍ରସଙ୍ଗରେ କଂଗ୍ରେସ ନେତାମାନଙ୍କୁ ସମାଲୋଚନା କରିବା ଫଳରେ ସେ ୧୯୩୭ ନିର୍ବାଚନରେ କଂଗ୍ରେସରୁ ଟିକେଟ ପାଇନଥିଲେ, ତଥାପି ସେ ସ୍ୱାଧୀନ ଭାବେ ଯାଜପୁର (ସଂରକ୍ଷିତ) ଆସନରୁ ନିର୍ବାଚିତ ହୋଇଥିଲେ । ହରିଜନ ଆନ୍ଦୋଳନ ଓ ଉଚ୍ଚବର୍ଣ୍ଣର କଂଗ୍ରେସୀ ନେତାଙ୍କ ମନୋଭାବ ଏହି ଉଦାହରଣରୁ କ'ଣ ଥିଲା ତାହା ସ୍ପଷ୍ଟ ଜଣାପଡ଼େ ।

## ସତ୍ୟବାଦୀ ଯୁଗପରେ ଜାତିବାଦର ଧାରା:

ଓଡ଼ିଶା ଇତିହାସରେ ସତ୍ୟବାଦୀ ଯୁଗପରେ ସାମାଜିକ ଆନ୍ଦୋଳନରେ ଏକ ପ୍ରତିବିପ୍ଳବ ହୋଇଥିବା ପରି ମନେହୁଏ । ପୂର୍ବରୁ ଆଲୋଚିତ ମହାନ୍ ଦାସ ଯୁଗର ପ୍ରଗତିଶୀଳ ଧାରା ଯାହାକି ବୈଷ୍ଣବ ଆନ୍ଦୋଳନରେ ପ୍ରବାହିତ ହୋଇଥିଲା, ତାହା କ୍ରମଶଃ ଶୁଷ୍କ ହୋଇଆସିଲା । ମଧ୍ୟଯୁଗରେ ଆରମ୍ଭ ହୋଇଥିବା ଏହି ସମତା ଧର୍ମୀ ଜାତି ବିରୋଧୀ ଆନ୍ଦୋଳନ ଧୀରେ ଧୀରେ ରକ୍ଷଣଶୀଳ ହୋଇ ଜାତିବାଦ ଆନ୍ଦୋଳନରେ ପରିଣତ ହେଲା । ଜାତି ଜାତି ମଧ୍ୟରେ ବିଭେଦ ବଢ଼ିଲା ଓ ବ୍ରାହ୍ମଣ-ଅବ୍ରାହ୍ମଣ, ଶୂଦ୍ର-ଦଳିତ ଇତ୍ୟାଦି ମନୋଭାବ ପ୍ରକାଶ ପାଇଲା । 'ଦାସ' ସାଙ୍ଗିଆ ଧାରଣ ବ୍ରାହ୍ମଣମାନେ ନିଜକୁ ଅନ୍ୟ ଅବ୍ରାହ୍ମଣମାନଙ୍କ ଠାରୁ ଅଲଗା ଦେଖାଇବା ପାଇଁ ନିଜ ନାମରେ 'ଦାଶ' ସାଙ୍ଗିଆ ଯୋଡ଼ିଲେ । ଅବ୍ରାହ୍ମଣ ଜାତିର ଲୋକମାନଙ୍କ ମଧ୍ୟରେ ସମାନ ସାଙ୍ଗିଆ ରହିଥିଲେ ମଧ୍ୟ ବନାନରେ ତାହାକୁ ଅଲଗା ଅଲଗା କରି ଲେଖାଗଲା । ଯଥା ଖଣ୍ଡାୟତ ଶ୍ରେଣୀର ଲୋକମାନେ ନିଜର ସାଙ୍ଗିଆ ମଲ୍ଲିକ, ଜେନା, ସାମଲ, ନାୟକ ଇତ୍ୟାଦି ଲେଖିବାକୁ ପସନ୍ଦ କରି ଏହି ସାଙ୍ଗିଆର ଅନୁରୂପ ସାଙ୍ଗିଆ ଯଥା ମଳିକ, ଯେନା, ଶାମଲ, ନାଏକ ଇତ୍ୟାଦି ଦଳିତ ଅସ୍ପୃଶ୍ୟ ଶ୍ରେଣୀ ଲୋକମାନଙ୍କ ପାଇଁ ଲେଖାଇଲେ । ରାଜସ୍ୱ ରେକର୍ଡ ଖାତା, ଖତିୟାନ, କବଲା ଇତ୍ୟାଦି ସରକାରୀ ନଥିପତ୍ର ମୁଖ୍ୟତଃ, ବ୍ରାହ୍ମଣ, କରଣ କ୍ୱଚିତ୍ ଖଣ୍ଡାୟତ ଶ୍ରେଣୀର ଲୋକମାନେ ଲିପିବଦ୍ଧ କରୁଥିବା ସମୟରେ ସେମାନେ ନିଜ ନିଜର ସୁବିଧା ନେଇ ସାଙ୍ଗିଆ ଗୁଡ଼ିକରେ ପରିବର୍ତ୍ତନ କରିଲେ । ଏହା ଜାତି ଜାତି ମଧ୍ୟରେ ବିଭିନ୍ନତା ସୃଷ୍ଟି କରି ଦ୍ୱେଷ ବୃଦ୍ଧି କଲା । ଉତ୍କଳମଣି ଗୋପବନ୍ଧୁ ନାମ ପାଖରେ 'ଦାଶ' ଲେଖି ସାରିଲେଣି । ଏହା ଆଧୁନିକ ଯୁଗର ରକ୍ଷଣଶୀଳତାର ଏକ ଧାରା ।

ପ୍ରଗତିଶୀଳ ଜାତି ବିରୋଧୀ ଆନ୍ଦୋଳନ, ଦଳିତ, ଆଦିବାସୀ ଓ ପଛୁଆ ନିଷ୍ପେଷିତ ଶ୍ରେଣୀ ଶିକ୍ଷା, ସରକାରୀ ଚାକିରି ଓ ରାଜନୀତିରେ ସଂଖ୍ୟାନୁପାତିକ ଦଳିତ କରଣ ପ୍ରକ୍ରିୟା ଯୋଗୁଁ ଏ ଭାରତରେ ତଥା ଓଡିଶାରେ ଜାତିବାଦ ଆନ୍ଦୋଳନ ଉଗ୍ର ରୂପ ଧାରଣ କରିଛି ଯାହା ସମାଜ ଓ ରାଷ୍ଟ୍ରପ୍ରତି ବିପଜ୍ଜନକ । ଇତି ମଧ୍ୟରେ ବିଭିନ୍ନ ଜାତିସଂଘ ବା ଜାତି ମହାସଭା ଇତ୍ୟାଦି ଗଢ଼ି ଉଠୁଥିବାରୁ ଜାତିପ୍ରଥା ମଜଭୂତ ହେଉଛି । ଜାତିପ୍ରଥାକୁ ସମର୍ଥନ କରି ଯଥାକ୍ରମେ ଗଢ଼ିଉଠିଛି- (୧) ବୈଦିକ ମହାସଂଘ (୨) ମରାଠା ମହାସଂଘ (୩) ଉତ୍କଳ ବ୍ରାହ୍ମଣ ସମିତି, ପୁରୀ (୪) ଅଖିଳ ଓଡ଼ିଶା ବ୍ରାହ୍ମଣ ମହାସଭା (୫) କ୍ଷତ୍ରିୟ ଖଣ୍ଡାୟତ ମହାସଭା (୬) ଉତ୍କଳ ସାମନ୍ତ ପରିଷଦ (୭) ଉତ୍କଳ ଯାଦବ ମହାସଭା (୮) ନିଖିଳ ଉତ୍କଳ ବୈଶ୍ୟ ସମାଜ (୯) ତୈଳିକ ବୈଶ୍ୟ ସ ମାଜ (୧୦) ରଜକ ମହାସଭା (୧୧) କୈବର୍ତ୍ତ ମହାସଂଘ (୧୨) ନିଖିଳ ଓଡିଶା କଣ୍ଡରା-ଧୀବର ମହାସଂଘ ଇତ୍ୟାଦି.. ଇତ୍ୟାଦି । ଏହି ସଂଗଠନଗୁଡିକୁ ସାଂସ୍କୃତିକ ସଂଗଠନ କୁହାଯାଉଥିଲେ ମଧ୍ୟ ସାମାଜିକ ଦୃଷ୍ଟିକୋଣରୁ ଏହା ଜାତି ଜାତି ମଧ୍ୟରେ ଅଭେଦ୍ୟ ପ୍ରାଚୀର ସୃଷ୍ଟି କରୁଛି ଏହା ନିଶ୍ଚିତ ସତ୍ୟ କଥା । ଏହି ସଂଗଠନ ଗୁଡିକର କାର୍ଯ୍ୟକ୍ରମ ଦୈନିକ ସମ୍ବାଦ ପତ୍ରମାନଙ୍କରେ ପ୍ରାୟ ପ୍ରକାଶିତ ହେଉଛି ।

ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଲା ଯେ 'ଅଖିଳ ଓଡ଼ିଶା ବ୍ରାହ୍ମଣ ମହାସଭା' ଓ ରାଜସ୍ଥାନର ଅନ୍ୟ ଏକ 'ବ୍ରାହ୍ମଣ ମହାସଭା' ଦ୍ୱାରା ଗରିବ ବ୍ରାହ୍ମଣମାନଙ୍କ ପାଇଁ ସରକାରୀ ଚାକିରିରେ ଶତକଡା ୧୦ ଭାଗ ସ୍ଥାନ ସଂରକ୍ଷଣ ପାଇଁ ଦାବି ହେଉଛି । ଏହାକୁ ଗତ ବିଜେପି ନେତୃତ୍ୱାଧୀନ ଏନ୍.ଡି.ଏ ସରକାର ଗୁରୁତର ସହିତ ବିଚାର କରୁଥିଲେ ବୋଲି ଜଣାପଡ଼େ । ସବୁ ଶ୍ରେଣୀ ସ୍ଥାନ ସଂରକ୍ଷଣ ପାଇବା ପରେ କେବଳ ବ୍ରାହ୍ମଣ / କରଣମାନେ ଏଥିରୁ ବଂଚିତ ଥିଲେ । ଏହା କାର୍ଯ୍ୟକାରୀ ହୋଇଥିଲେ ସାମାଜିକ ପୃଷ୍ଠଭୂମିରୁ ସ୍ଥାନ ସଂରକ୍ଷଣ ପୂର୍ଣ୍ଣତାପ୍ରାପ୍ତି ହୋଇଥାଆନ୍ତା । ଓଡିଶା ସଚିବାଳୟର କର୍ମଚାରୀମାନଙ୍କ ମଧ୍ୟରୁ କିଛି ତଥାକଥିତ ଉଚ୍ଚ ବର୍ଣ୍ଣର କର୍ମଚାରୀମାନେ ନିଜକୁ 'ବଂଚିତ ଶ୍ରେଣୀ ସମାଜ' ବୋଲି ସଂଗଠିତ କରି ସ୍ଥାନ ସଂରକ୍ଷଣ ବିରୁଦ୍ଧରେ ଆନ୍ଦୋଳନ କରିଥିଲେ । ଏହା ଜାତିବାଦ ଆନ୍ଦୋଳନର ପରିପୂରକ ଓ ଦଳିତ ଆଦିବାସୀ ସ୍ୱାର୍ଥ ବିରୋଧୀ ଅଟେ ।

**ଆର୍ଥିକ ବୈଷମ୍ୟ ଦୂରୀକରଣ ହିଁ ସମାଧାନ:**

ଆର୍ଥିକ ବୈଷମ୍ୟ ଦୂର ନ ହେବା ଯାଏ ଜାତିପ୍ରଥାର ହୀନ ଦୌରାତ୍ମ୍ୟ କମିବ ନାହିଁ । ସାଧାରଣତଃ ଦଳିତ-ଆଦିବାସୀ ଶ୍ରେଣୀର ଲୋକ ନିରକ୍ଷର-ଅଶିକ୍ଷିତ ହେବା ସହିତ ଭୂମିହୀନ । ଚାଷୀ ନ ହୋଇପାରି ମୂଲିଆ, ବ୍ୟବସାୟ ବାଣିଜ୍ୟରେ ମଧ୍ୟ କିଛି ଭାଗୀଦାର ନୁହଁନ୍ତି । ଏହି ଦଳିତ ଆଦିବାସୀମାନେ ଭୂମିହୀନ ହେଲେ କିପରି ? ବହୁ ପୁରୁଣା ବୁଢ଼ା ବୁଢ଼ୀ ଲୋକଙ୍କ ଠାରୁ ଶୁଣାଯାଏଁ ଯେ ବହୁ ଦଳିତ ଶ୍ରେଣୀର ଲୋକ ସରକାରୀ କଳର ସମସ୍ୟା

ମଧ୍ୟରେ ପଶିବାକୁ ନ ଚାହିଁ, ଖଜଣା ଟିକସ ଦେବାର ସମସ୍ୟା ଭାବି ବିଞ୍ଚ ଉଚ୍ଚବର୍ଣ୍ଣର ଲୋକମାନଙ୍କୁ ଅତି ଶସ୍ତାରେ (ମାଗଣାରେ କହିଲେ ଚଳେ) ଜମି ଦେଇ ଦେଇଥିଲେ । ସରକାରୀ କର୍ମଚାରୀମାନଙ୍କ ଦ୍ୱାରା ଯେତେବେଳେ ଜମିବାଡ଼ି ରେକର୍ଡଭୁକ୍ତ ହେଉଥିଲା, ତାହା ସାଧାରଣତଃ ଗାଆଁର ଉଚ୍ଚବର୍ଣ୍ଣ ତଥା ଧନୀ ଶ୍ରେଣୀୟ ଲୋକଙ୍କ ଉଚ୍ଚ ପିଣ୍ଡାରେ ବା ଠାକୁର ମେଲାଘରେ ହେଉଥିଲା । ସେଠାକୁ ଦଳିତ ଶ୍ରେଣୀ ଯିବା ପାଇଁ ନିଷେଧ ଥିଲା । ଯାହା ସେଠାରେ ହେଉଥିଲା ଦଳିତମାନେ ତାହା ମାନି ନେବାକୁ ବାଧ୍ୟ ହେଉଥିଲେ । କାଳକ୍ରମେ ଦଳିତ ଶ୍ରେଣୀ ମଧ୍ୟରେ ଏକ ମାନସିକତା ସୃଷ୍ଟି ହୋଇଥିଲା, 'ଆମେ ଖଟିଲେ ଖାଇବା' ଜମି ଆମର କଣ ହେବ ଜମି ରହିବା ମହାଜଙ୍ଗାଳ" ।

ଓଡ଼ିଶାରେ ଜନସଂଖ୍ୟାର ଏକ ପରିସଂଖ୍ୟାନ ବିଶ୍ଳେଷଣ କଲେ ଜଣାଯାଏ ବ୍ରାହ୍ମଣ / କରଣ ମାନଙ୍କ ଜନସଂଖ୍ୟା ଯଥାକ୍ରମେ ୫% ଓ ୨% ହୋଇଥିଲେ ମଧ୍ୟ ସରକାରୀ ଚାକିରୀରେ ସେମାନଙ୍କର ସ୍ଥାନ ୮୫% । ନିମ୍ନରେ ଜନସଂଖ୍ୟାର ଏକ ଶତାଂଶ ନମୁନା ଦିଆଗଲା ।

ଓଡିଶାର ଜନସଂଖ୍ୟା ଶତାଂଶ

| | | | |
|---|---|---|---|
| ବ୍ରାହ୍ମଣ | ୦୫% | ଦଳିତ ଶ୍ରେଣୀ | ୧୭% |
| କରଣ | ୦୨% | ଆଦିବାସୀ | ୨୩% |
| ଖଣ୍ଡାୟତ : | ୧୫% | ସଂଖ୍ୟାଲଘୁ | ୦୨% |
| ଅନ୍ୟ ପଛୁଆ ଶ୍ରେଣୀ : ୩୬% | | | |
| | ସମୁଦାୟ | ୧୦୦% | |

ଜାତିବାଦ ଆନ୍ଦୋଳନ ଓ ଜାତିବିରୋଧୀ ଆନ୍ଦୋଳନ ଦୁଇଟି ସମାନ୍ତରାଳ ଧାରା ଭାରତରେ ତଥା ଓଡ଼ିଶାରେ ଅନବରତ ପ୍ରବାହିତ ହେଉଛି । ଏହାର ଚାରିତ୍ରିକ ସଂଜ୍ଞା ଯଥାକ୍ରମେ 'କ' ସ୍ତମ୍ଭ ଓ 'ଖ' ସ୍ତମ୍ଭ ଭାବେ ନିମ୍ନରେ ପ୍ରଦତ୍ତ ହେଲା ।

| 'କ ସ୍ତମ୍ଭ | 'ଖ' ସ୍ତମ୍ଭ |
|---|---|
| ଜାତିବାଦ ଆନ୍ଦୋଳନ | ଜାତିବିରୋଧୀ ଆନ୍ଦୋଳନ |
| ବ୍ରାହ୍ମଣ୍ୟବାଦ | ଶୂଦ୍ର ସଂସ୍କୃତି |
| ସାମନ୍ତବାଦ | ସାମନ୍ତବାଦ ବିରୋଧୀ |
| ଜାତି ସଂଗଠନ | ଜାତି, ଜାତକ, ଯୌତୁକ ବିରୋଧୀ |
| ଉଚ୍ଚ ନୀଚ ଭାବନା | ସମତା ଦର୍ଶନ |
| ମାନସିକ ଶ୍ରମର ମୂଲ୍ୟ | ଶାରୀରିକ ଶ୍ରମର ମୂଲ୍ୟ |
| ପୁରୁଷ ତାନ୍ତ୍ରିକ ସମାଜ | ନାରୀମୁକ୍ତି ଆନ୍ଦୋଳନ |

| | |
|---|---|
| ଜମିଦାରୀ ବ୍ୟବସ୍ଥା | ଜମିଦାରୀ ଉଚ୍ଛେଦ ଓ ଭୂସଂସ୍କାର ଆନ୍ଦୋଳନ |
| ଅସ୍ପୃଶ୍ୟତା କାର୍ଯ୍ୟକାରିତା | ଅସ୍ପୃଶ୍ୟତା ନିବାରଣ |
| ଜାତି ବିବାହ | ଅଜାତି ବିବାହ |
| ରକ୍ଷଣଶୀଳ ମନୋବୃତ୍ତି | ଉଦାର, ପ୍ରଗତିଶୀଳ ଭାବନା |
| ମୂର୍ତ୍ତିପୂଜା | ଶୂନ୍ୟ ପୂଜା |
| ଶୂଦ୍ରମାନଙ୍କ ବ୍ରାହ୍ମଣ୍ୟବାଦୀଜୀବନଧାରା | ଉନ୍ନତ ବିଜ୍ଞାନ ସମ୍ମତ ଜୀବନ ଶୈଳୀ |
| ପୁଞ୍ଜିବାଦ | ସମାଜବାଦ |

**ଉପସଂହାର:**

ସମଗ୍ର ଭାରତ ବର୍ଷରେ ବହୁଳ ପ୍ରସାରିତ 'ହିନ୍ଦୁତ୍ୱ' ବ୍ରାହ୍ମଣ୍ୟବାଦର ନୂଆ ନାମ ଏବଂ ଏହା ଜାତିବାଦ ଆନ୍ଦୋଳନର ପୃଷ୍ଠପୋଷକ । ଏହା କେବଳ ବ୍ରାହ୍ମଣମାନଙ୍କ ମଧ୍ୟରେ ପରିବ୍ୟାପ୍ତ । ଶୂଦ୍ର ଶକ୍ତି ଓ ଶୂଦ୍ର ସଂସ୍କୃତି ହିଁ ଏହାର ପ୍ରତିରୋଧ କରି ପାରିବ । ଏହା ଠିକ୍ ଭାବରେ ପ୍ରକଟିତ ହୋଇ ପାରୁନାହିଁ । ବ୍ରାହ୍ମଣ୍ୟବାଦ ଉଦାତ୍ତ ଶୂଦ୍ର ସଂସ୍କୃତିକୁ ଗ୍ରାସକରି ସାରିଛି । ସେଥିରୁ ମୁକ୍ତି ଲାଭ ପାଇଁ ସାମାଜିକ ଆନ୍ଦୋଳନର ଆବଶ୍ୟକତା ରହିଛି । ଜଗତିକରଣ ହେଉଛି ବ୍ରାହ୍ମଣ୍ୟବାଦ ଓ ପୁଞ୍ଜିବାଦର ବିଶ୍ୱବ୍ୟାପୀ ରୂପରେଖ । ବ୍ରାହ୍ମଣ୍ୟବାଦ ଓ ପୁଞ୍ଜିବାଦର ଦର୍ଶନ ପରି ଏହାର ଦର୍ଶନ ମଧ୍ୟ ଅଳ୍ପ କିଛି ଲୋକଙ୍କୁ ଧନୀ, ମାନୀ ଓ ଜ୍ଞାନୀ କରାଇବା । କେବଳ ରାଜନୀତି ଦ୍ୱାରା ଏହାର ବିଶେଷ କିଛି ପ୍ରତିକାର ହୋଇପାରିବ ନାହିଁ । କାରଣ ବିଗତ ଦଶନ୍ଧି ରାଜନୀତିରେ ଭାରତରେ କେବଳ 'ହିନ୍ଦୁତ୍ୱବାଦ' ହିଁ ବଢ଼ିଛି । ଜାତି, ହିଂସା,ଦ୍ୱେଷ ଓ ଜାତି ନିର୍ଯ୍ୟାତନା ହିଁ ବଢ଼ିଛି । ବୌଦ୍ଧିକ କାର୍ଯ୍ୟକଳାପ ମାଧ୍ୟମରେ ସଂରଚନା ହେବା ଆବଶ୍ୟକ । ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତି ଅନ୍ୟ ଜାତିରେ ବିବାହ କଲେ ଜାତିର ପ୍ରଭାବ ନିଶ୍ଚିତ କମିବ । ଜାତିପ୍ରଥା ଯେ ଏକ କଳଙ୍କିତ ବ୍ୟବସ୍ଥା, ଏଥିରେ ସନ୍ଦେହ ନାହିଁ । ଓଡିଶାରେ ନିକଟ ଅତୀତରେ ଜାତିହିଂସା ଓ ଦଳିତ ଆଦିବାସୀ ମାନଙ୍କ ଉପରେ ଅତ୍ୟାଚାର ବହୁତ ପରିମାଣରେ ବୃଦ୍ଧି ପାଇଛି । ଗତ ତା ୩୧.୧୨.୨୦୦୩ ସୁଦ୍ଧା 'ସ୍ୱତନ୍ତ୍ର ଅଦାଲତ' ରେ ଦଳିତମାନଙ୍କ ଉପରେ ହୋଇଥିବା ୪୯୮୨ ଟି ନିର୍ଯ୍ୟାତନା ମୋକଦ୍ଦମା ଓ ଆଦିବାସୀମାନଙ୍କ ଉପରେ ହୋଇଥିବା ୧୪୮୦ଟି ନିର୍ଯ୍ୟାତନା ମୋକଦ୍ଦମା ବିଚାରଧୀନ ହୋଇ ପଡି ରହିଥିଲା । ବିଳମ୍ବରେ ନ୍ୟାୟ ପାଇବା ନ୍ୟାୟ ନ ପାଇବା ସହିତ ସମାନର ଯେଉଁ ଧାରଣା ରହିଛି ତାହା ସତ୍ୟ । ଜାତିର ପ୍ରଭାବ ଭାରତ ବର୍ଷରେ ବହୁ ଗଭୀର ଓ ସୁଦୂରପ୍ରସାରୀ । ଜାତିପ୍ରଥା ଏତେ ବିପଦ ସଙ୍କୁଳ ଯେ, ଯଦି ଜାତି ରହେ ଭାରତ ଗୋଟିଏ ସମାଜ ହୋଇପାରିବ ନାହିଁ । ଭାରତବର୍ଷ ଏକ ରାଷ୍ଟ୍ର ହୋଇପାରିବ ନାହିଁ । ଭାରତରେ ଯେଉଁ ରାଷ୍ଟ୍ରୀୟ ଦୁର୍ବଳତା ଓ

ନୈତିକ ଦୁର୍ବଳତା ରହିଛି ତାର ମୂଳ କାରଣ ହେଲା ଜାତିପ୍ରଥା । ଜାତିପ୍ରଥା ନଥାଇ ସାମାଜିକ ବ୍ୟବସ୍ଥାର କୌଣସି ଇତିହାସ ନାହିଁ । ବିଦେଶୀ ଆକ୍ରମଣ ଯୋଗୁଁ ଭାରତ ଦୁର୍ବଳ ହୋଇନାହିଁ । ଜାତିପ୍ରଥା ଯୋଗୁଁ ଭାରତକୁ ଦୁର୍ବଳ ବିଦେଶୀମାନେ ଆକ୍ରମଣ କଲେ । ଭାରତରେ ବିଦେଶୀମାନଙ୍କର ଶାସନକୁ ପ୍ରସାରି କରିବାରେ ଉଚ୍ଚବର୍ଣ୍ଣର ଲୋକମାନେ ହିଁ ବିଶେଷ ସହାୟକ ହୋଇଥିଲେ । ଜାତିପ୍ରଥା ଭାରତର ଅବନ୍ନତିର କାରଣ ଏହା ଇତିହାସରେ ଅଧ୍ୟୟନ ଗବେଷଣା ହେବା ଆବଶ୍ୟକ ।

(୧୯୮୯ ମସିହାରେ ଭାରତ ସରକାରଙ୍କ ଦ୍ୱାରା ସଂଗୃହୀତ ତାଲିକା ଅନୁସାରେ ବିଭିନ୍ନ ଜାତି, ଗୋଷ୍ଠୀଙ୍କ ସାମାଜିକ ଓ ଅର୍ଥନୈତିକ ସ୍ଥିତିର ଏକ ପ୍ରାମାଣିକ ତଥ୍ୟ) (ଶତକଡ଼ା ହସିାବରେ)

୧୫% ଉଚ୍ଚ ଜାତିଙ୍କର ସାମାଜିକ ଓ ଅର୍ଥନୈତିକ ସ୍ଥିତି

| ଜାତି | ଜନସଂଖ୍ୟା | ରାଜନୀତି | ଶିକ୍ଷା | ଚାକିରି | ବ୍ୟବସାୟ | ଜମି | ପୂଜାପାଠ | ସଂରକ୍ଷଣ |
|---|---|---|---|---|---|---|---|---|
| ବ୍ରାହ୍ମଣ | ୩.୫ | ୪୧ | ୫୦ | ୬୨ | ୧୦ | ୫ | ୧୦୦ | ନାହିଁ |
| କ୍ଷତ୍ରିୟ | ୫.୫ | ୧୫ | ୧୬ | ୧୨ | ୨୭ | ୮୦ | ୦ | ନାହିଁ |
| ବୈଶ୍ୟ | ୬ | ୧୦.୫ | ୧୨ | ୧୩ | ୬୦ | ୯ | ୦ | ନାହିଁ |
| ମୋଟ | ୧୫ | ୬୬.୫ | ୭୮ | ୮୭ | ୯୭ | ୯୪ | ୧୦୦ | - |

୮୫% ଅନଗ୍ରସର ଜାତିମାନଙ୍କ ସାମାଜିକ ଓ ଅର୍ଥନୈତିକ ସ୍ଥିତି

| ଜାତି | ଜନସଂଖ୍ୟା | ରାଜନୀତି | ଶିକ୍ଷା | ଚାକିରି | ବ୍ୟବସାୟ | ଜମି | ପୂଜାପାଠ | ସଂରକ୍ଷଣ |
|---|---|---|---|---|---|---|---|---|
| ପଛୁଆବର୍ଗ | ୫୨ | ୮ | ୧୨ | ୭ | ୦.୮ | ୪ | ୦ | ୨୭ |
| ସଂଖ୍ୟାଲଘୁ | ୧୦.୫ | ୩ | ୨ | ୧ | ୨ | ୧ | ୦ | ନାହିଁ |
| ଅନୁସୂଚୀତଜାତି | ୭.୫ | ୭.୫ | ୨ | ୧ | ୦.୧ | ୦.୫ | ୦ | ୭.୫ |
| ଅନୁସୂଚୀତ ଜନଜାତି | ୭.୫ | ୭.୫ | ୨ | ୧ | ୦.୧ | ୦.୫ | ୦ | ୭.୫ |
| ମୋଟ୍ | ୮୫ | ୩୩.୫ | ୨୨ | ୧୩ | ୩ | ୬ | ୦ | ୪୯.୫ |



# ମାୟା ଓ ବାସ୍ତବତା : ଏକ ଆକଳନ

*ଶ୍ରୀ ଅଶ୍ୱିନୀ କୁମାର ମିଶ୍ର*

ଆମେ ଯେଉଁ ଜ୍ୟୋତିଷ-ଶାସ୍ତ୍ର କଥା ଆଲୋଚନା କରୁ, ତା'ରି ସତ୍ୟାସତ୍ୟ ନିରୂପଣ ଦିଗରେ ବିଧିବଦ୍ଧ ପ୍ରୟାସ ଏ ଯାବତ୍ କୌଣସି ବିଶ୍ୱବିଦ୍ୟାଳୟ, ଗବେଷଣାତ୍ମକ ଅନୁଷ୍ଠାନ ସ୍ତରରେ ଆରମ୍ଭ ହୋଇନାହିଁ । ତାରି କାରଣ ବହୁବିଧ । ପୃଥିବୀର କୌଣସି ବିକାଶଶୀଳ ଦେଶ ତଥା ତା'ର ବିଦ୍ୟାନୁରାଗୀ ମାନେ ଏହା ଉପରେ ନିଜର ଆଗ୍ରହ ଆପାତତଃ ପ୍ରକାଶ କରି ନାହାନ୍ତି । ବିଭିନ୍ନ ଧର୍ମର ପରିସରରେ ଏହାରି ଆକଳନରେ ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ଚିନ୍ତନ ପ୍ରକ୍ରିୟା ମୁଣ୍ଡ ଟେକିଛି । ଇତିହାସରୁ ବୁଝାପଡେ, ଅନେକ ନରପତି ରାଜ୍ୟଶାସନ ସହିତ ଜ୍ୟୋତିଷ ଶାସ୍ତ୍ରରେ ମଧ ନିଜର ପାରଂଗମତା ଦେଖାଇଥିଲେ । ତେବେ ଜଣେ ଜ୍ୟୋତିଷର ଭବିଷ୍ୟଗଣନା ଅନୁଯାୟୀ ସିଏ ରାଜ୍ୟ ଜୟ, ପୁତ୍ରଲାଭ, ଧନ ଲାଭ କରିପାରିଥିଲେ ନା ନାହିଁ, ତା'ରି ସବିଶେଷ ଗବେଷଣା ଏବେବି ଆରମ୍ଭ ହୋଇନାହିଁ । ଏହାକୁ ଅନ୍ୟ ବାଗରେ କହିଲେ ଜଣେ ଯୁଦ୍ଧଯାତ୍ରୀ ସୈନିକର ଆୟୁଷରେଖା, ଜଣେ ନିର୍ଦ୍ଧନ ବ୍ୟକ୍ତିର ପାପୁଲିରେ ଧନରେଖା, ଜଣେ ଦିବ୍ୟାଂଗ ବ୍ୟକ୍ତିର ଭ୍ରମଣଯୋଗ ଭଳି ବିରୁଦ୍ଧାତ୍ମକ ଭବିଷ୍ୟବାଣୀ ଶୁଣିଲେ ଜଣେ ଏହି ବିଦ୍ୟା ପ୍ରତି ନିଜର ଆସ୍ଥା ପ୍ରକଟ କରିବ ତ ? ଏଠାରେ ସ୍ୱର୍ଗତ ଦେବରାଜ ପାଠୀଙ୍କର ପୁସ୍ତକ "ଜନ୍ମ-କୁଣ୍ଡଳୀ"ରୁ କେଇ ଧାଡି ଉଦ୍ଧାର କରୁଛି । "ବୃଷ କିମ୍ବା କୁମ୍ଭ ଲଗ୍ନର ଜାତକରେ ପଞ୍ଚମାଧିପତି ବୁଧ ସେହି ସେହି ପଞ୍ଚମ ଭାବରେ ଅର୍ଥାତ୍ କନ୍ୟା ଏବଂ ମିଥୁନ ରାଶିରେ ସ୍ୱଗୃହୀ ହୋଇ ଅବସ୍ଥାନ କରିବା ସହିତ ଲଗ୍ନର ଏକାଦଶ ଭାବ ଅର୍ଥାତ୍ ମୀନ କିମ୍ବା ଧନୁରାଶିରେ ବୃହସ୍ପତି, ଚନ୍ଦ୍ର ଏବଂ ମଙ୍ଗଳ ଏକତ୍ର ଅବସ୍ଥାନ କରି ପାରିଥିଲେ ମନୁଷ୍ୟ ମହାନ୍ ଧନାଢ୍ୟ ବ୍ୟକ୍ତି ହୋଇଥାଏ" । ମୋ ମତରେ

ସମାଜର ଧନାଢ୍ୟ ବ୍ୟକ୍ତିଙ୍କର କୋଷ୍ଠୀ-ନକ୍ଷତ୍ର ତର୍ଜମା କରି ଏହାରି ଫଳାଫଳ ନିର୍ଣ୍ଣୟ କଲେ ହୁଏତ ଏଭଳି ବକ୍ତବ୍ୟର କିଛି ସତ୍ୟତା ଅଛି ବା ନାହିଁ ହୁଏତ ଜାଣି ହୁଅନ୍ତା । ଏହି ପୁସ୍ତକରେ ବୃହସ୍ପତି ଏବଂ ଶୁକ୍ର ଉତ୍ତମ ନୈସର୍ଗିକ ବା ସ୍ୱାଭାବିକ ଶୁଭଗ୍ରହ ଭାବରେ, ଚନ୍ଦ୍ର ମଧ୍ୟମ, ବୁଧଙ୍କୁ ଉଦାସୀନ ଶୁଭ ଗ୍ରହ କହିଲା ବେଳକୁ ରବି, ଶନି ଏବଂ ମଙ୍ଗଳଙ୍କୁ ସ୍ୱାଭାବିକ କ୍ରୁର ଅର୍ଥାତ୍ ଅଶୁଭ ଗ୍ରହଭାବରେ ଚିତ୍ରଣ କରାଯାଇଛି । ଏହା ମୋ ମତରେ ବିବଦମାନ, କାରଣ ମଣିଷର ଜନ୍ମ ସମୟକୁ ସଠିକ୍ ଅର୍ଥାତ୍ ଘଂଟା, କଂଟା, ସେକେଣ୍ଡ୍ ହିସାବରେ ଜାଣି ହୁଏକି ? ଯଦି ଏହା ବୈଜ୍ଞାନିକ ଯୁକ୍ତିଭିତ୍ତିକ ହୋଇଥାନ୍ତା, ତେବେ ପ୍ରସବ ସମୟକୁ ଡାକ୍ତରଙ୍କ ପରାମର୍ଶ ଅନୁଯାୟୀ ସଅଳ କିମ୍ବା ବିଳମ୍ବ କରିବାରେ ଅସୁବିଧା କେଉଁଠି ? ପୁନଶ୍ଚ ପ୍ରତ୍ୟେକ ରିଷ୍ଟ, ଅନିଷ୍ଟ ଖଣ୍ଡନ ପାଇଁ ଜ୍ୟୋତିଷଙ୍କ ନିଜସ୍ୱ ପଦ୍ଧତି ରହିଛି, ଯାହା ଭାରତ ବର୍ଷର ବହୁ ବ୍ୟକ୍ତିଙ୍କୁ ଜଣା । ଏନ୍.ବି.ଟି. ଦ୍ୱାରା ପ୍ରକାଶିତ ପୁସ୍ତକ 'ମନ୍ତ୍ର, ଯାଦୁ ଏବଂ ଅଲୌକିକ ଘଟଣା' ପୁସ୍ତକର ଉପକ୍ରମଣିକାରେ ବିଶିଷ୍ଟ ବୈଜ୍ଞାନିକ ଏମ.ଜି.କେ୍. ମେନନ୍ ଲେଖିଛନ୍ତି: "ଆଜି ମଧ୍ୟ ମଣିଷ ମାନେ ବହୁତ ଦୁଃଖ, କଷ୍ଟ, ରୋଗ ଓ ଯନ୍ତ୍ରଣାର ସାମ୍ନା କରୁଛନ୍ତି ଯେଉଁ ଗୁଡ଼ିକର ପ୍ରତିକାର ନାହିଁ । ଏହିଭଳି ପରିସ୍ଥିତିରେ ଯେତେବେଳେ ସେମାନେ କୌଣସି ଅବଲମ୍ବନ ପାଉନାହାନ୍ତି, ସେତେବେଳେ ନିଜ ଅବସ୍ଥାକୁ ସୁଧାରିବା ପାଇଁ ଅଯୌକ୍ତିକ ଅଲୌକିକତା ଆଡ଼କୁ ଆକର୍ଷିତ ହେଉଛନ୍ତି । ଏଭଳି ଆକର୍ଷିତ ହେବା ମାନବୀୟ ମନସ୍ତତ୍ତ୍ୱର ଏକ ଅଂଶ ବୋଲି ସ୍ୱୀକାର କରାଯାଇପାରେ" । ମଧ୍ୟଯୁଗୀୟ ରସାୟନ ଶାସ୍ତ୍ରରେ ଏକ ନିକୃଷ୍ଟ ଧାତୁକୁ ସୁନାରେ ପରିଣତ କରିବା ଭଳି ନକଲି ବିଜ୍ଞାନ ଥିଲା ଯାହାର ସଠିକ୍ ଅବତାରଣା ନକରିପାରି ଅନେକ ସାହିତ୍ୟିକ ତାକୁ ସାହିତ୍ୟର କଂଚାମାଲ୍ ଭାବେ ପାଠକୀୟ ପ୍ରୀତିଭାଜନ ସକାଶେ ଉଠେଇ ଆଣିଛନ୍ତି । ଏହା 'ଆଲ୍‌କମି' ନାମରେ ଖ୍ୟାତ । କାଳକ୍ରମେ ତା'ରି ପର୍ଯ୍ୟବେକ୍ଷଣ ତଥା ପରୀକ୍ଷା ଦାବି କଲାରୁ ଏଭଳି ନକଲି ବିଜ୍ଞାନ ପରିବର୍ତ୍ତେ ଅର୍ଥପୂର୍ଣ୍ଣ ବିଜ୍ଞାନର ସୃଷ୍ଟିଆଡ଼କୁ ଗବେଷକ ତଥା ବିଜ୍ଞ ବ୍ୟକ୍ତି ମନ ବଳାଇଲେ । ଓଡ଼ିଶାରେ ଏବେ ମଧ୍ୟ ସମୃଦ୍ଧିର ଚାବିକାଠି ଭାବେ କେହି କେହି ହନୁମାନ ମୁଦ୍ରା ଖୋଜିବାରେ ବହୁତ ଶ୍ରମ ଓ ଧନ ଅପବ୍ୟୟ କରନ୍ତି । ମୋର ଜଣେ ବନ୍ଧୁ ଏଭଳି ମାରାତ୍ମକ ଆକର୍ଷଣର ଶିକାର ହୋଇ ବର୍ଷାରାତିରେ ନିଜେ ଗାଡ଼ି ଚଳେଇ ଯାଉଥିବା ବେଳେ ଦୁର୍ଘଟଣାର ସମ୍ମୁଖୀନ ହୋଇ ଇହଲୀଳା ସମ୍ବରଣ କରିଛନ୍ତି । ତାଙ୍କ ପରିବାର କଥା ଭାବିଲେ ଏଭଳି ପଦକ୍ଷେପ କିଭଳି ଅବାଞ୍ଛନୀୟ, ତାହା ଯେ କେହି ବୁଝିପାରୁଥିବେ । ବିଭିନ୍ନ ସମୟରେ ଭଣ୍ଡବାବାମାନେ ବିଭିନ୍ନ ଜାଗାରେ ରକ୍ଷାକବଚରୁ ବିଭୂତି ବାହାର କରିବା ଠାରୁ ଶୂନ୍ୟରୁ ବିଭୂତି ସାଉଁଟିବା ଭଳି କାରୁକାର୍ଯ୍ୟ ଦେଖାଇବାରେ ସକ୍ଷମ ହୁଅନ୍ତି । ତେବେ ବିଜ୍ଞାନ ସଂବଂଧିତ ଅବବୋଧ

ଥିବା ଜଣେ ଜାଣିପାରେ ଫିଟିକିରି ସହିତ ମର୍କୁରିକ୍ କ୍ଲୋରାଇଡ୍‌ର ପ୍ରତିକ୍ରିୟା ଆଲୁମିନିୟମ୍ ତାବିଜ୍‌ରେ କେଉଁଭଳି ପ୍ରତିକ୍ରିୟା ସ୍ୱରୂପ ବିଭୂତି ସୃଷ୍ଟି କରିପାରେ । ଶୂନ୍ୟରୁ ବିଭୂତି ସୃଷ୍ଟି ସେଇ ରକମର । ଚାଉଳ ମଣ୍ଡକୁ ଗୋବର ପାଉଁଶରେ ମିଶେଇ ତହିଁରେ କିଛି ବାସ୍ନା ଉଦ୍ରେକକାରୀ ଅତର ମିଶେଇ ଗୁଳା ତିଆରି କରି ତାକୁ ବିଶିଆଙ୍ଗୁଠି, ବୁଢ଼ା ଆଙ୍ଗୁଠି ସନ୍ଧିରେ ଲୁଚେଇ ଲୋକ ଦେଖାଣିଆ ହାତକୁ ଶୂନ୍ୟରେ ହଲେଇ ତଥା ୟାୁତୁ ସ୍ୟାତୁ ମନ୍ତ୍ର ଉଚ୍ଚାରଣ କରି  ବିଭୂତି ବାହାର କରାଯାଇପାରେ ।

୨୧-ସେପ୍ଟେମ୍ବର-୨୦୧୬ ଦିନ ଦୈନିକ ସମ୍ବାଦରେ ପ୍ରକାଶିତ ଏକ ସମ୍ବାଦ ପ୍ରତି ଦୃଷ୍ଟି ଆକର୍ଷଣ କରୁଛି । "ଗୁଣି ଗାରେଡି ସଂଦେହରେ ଲୋକେ କିଭଳି ବିଭତ୍ସ କାଣ୍ଡ ଘଟାନ୍ତି ତାହାର ସଦ୍ୟ ଉଦାହରଣ ହେଉଛି ଗଜପତି ଜିଲ୍ଲାର ମୋହନା ଥାନା ଅନ୍ତର୍ଗତ ଚୁଡଙ୍ଗପୁର ଗ୍ରାମରେ । ଗ୍ରାମର ଦୁଇ ଜଣ ଗଙ୍ଗାଗମାଙ୍ଗ ଓ ବିରଞ୍ଚି ସୁନ୍ଦରରାୟଙ୍କୁ ଗୁଣି ସନ୍ଦେହରେ ସେଇ ଗ୍ରାମର ଲୋକେ ହତ୍ୟା ପରେ ଜଙ୍ଗଲରେ ପୋଡି ଦେଇଛନ୍ତି । ଖାଲି ସେତିକି ନୁହେଁ, ଛୋଟ ଛୋଟ ଶିଶୁଙ୍କୁ  ନିଆଁ ଚେଂକ ଦେଇ ମୁମୂର୍ଷୁ ଏପରିକି ମୃତ୍ୟୁବରଣ କରିବା ଯାକେ କଥାଯାଉଛି ଯାହା ମଧ୍ୟଯୁଗୀୟ ଗୁଣିଆ ଓ ପୂଜକ ବ୍ୟବସ୍ଥାର ଏକ ଅବକ୍ଷୟୀ ଧାରା ଏ ଯାବତ୍ ସମାଜକୁ କବଳିତ କରିରଖିଛି । ଯେତେ ଆଇନ୍ ଅଦାଲତ ପୋଲିସ୍ ପ୍ରଶାସନ ସୃଷ୍ଟି ହେଲେବି ଏଭଳି ଘଟଣାର ସମୂଳୋତ୍ପାଟନ ହୋଇ ପାରିନାହିଁ, ଯାହା ଏକ ପ୍ରଗତିଶୀଳ ସମାଜ ସକାଶେ ବିଡମ୍ବନାର ବିଷୟ । ଏହି ପ୍ରସଂଗରେ 'ମନ୍ତ୍ର, ଯାଦୁ ଏବଂ ଅଲୌକିକ ଘଟଣା' ପୁସ୍ତକରେ ଲିପିବଦ୍ଧ ଅଛି- "ଘଟଣାବଳୀ ଓ ଦୃଶ୍ୟାବଳୀର କ୍ରମ ବର୍ଦ୍ଧମାନ ଜଟିଳତା ଏବଂ ବହୁଳତା ଯୋଗୁ ମଣିଷ ସାଧାରଣ ବ୍ୟାଖ୍ୟାଗୁଡିକୁ ଉପେକ୍ଷା କରିବା ପାଇଁ ଇଚ୍ଛୁକ ହୋଇଥାଏ । ବାବା ଓ ଯାଦୁକର ମାନେ ମଣିଷର ଉପଲବ୍ଧିକୁ ବିକୃତ କରିବା ପାଇଁ ଅତି ସହଜ କଥାକୁ ମଧ୍ୟ ଜାଣିବାକୁ ଦିଅନ୍ତି  ନାହିଁ ।

ଅନ୍ୟ ଏକ ବିଷୟବସ୍ତୁ ଆଡକୁ ଦୃଷ୍ଟି ଆକର୍ଷଣ କରୁଛି । କବି ଅଭିମନ୍ୟୁ ସାମନ୍ତସିଂହାରଙ୍କ ପିତା "ଇନ୍ଦ୍ରଜିତ୍" ଆଠଟି ସ୍ତ୍ରୀ ପରିଗ୍ରହ କରିଥିଲେ । ତାହା ସତ୍ତ୍ୱେ ସେ ପୁତ୍ର ମୁଖ ଦର୍ଶନର ସୌଭାଗ୍ୟରୁ ବଞ୍ଚିତ ଥିଲେ । ଅନୁମିତ ହୁଏ, ଅପୁତ୍ରିକ ଥିବାରୁ ସେ ନରକଗାମୀ ହେବେ, ଏହି ଆଶଂକା ତାଙ୍କର ଅନ୍ତରକୁ ପ୍ରବଳ ଭାବରେ ଆଲୋଡିତ କରୁଥିଲା । ଶେଷରେ ଜଣେ ସୁପଣ୍ଡିତ ସାଧୁ ପୁରୁଷଙ୍କ ପରାମର୍ଶରେ ସେ "ପୁତ୍ରେଷ୍ଟି" ଯଜ୍ଞ ଅନୁଷ୍ଠାନ କଲେ । ଯେଉଁଦିନ ଯଜ୍ଞର ପୂର୍ଣ୍ଣାହୁତି ହେଲା, ସେଦିନ ତାଙ୍କର କନିଷ୍ଠା ପତ୍ନୀ ଏକ ବିଚିତ୍ର ସ୍ୱପ୍ନ ଦେଖିଲେ । ସ୍ୱପ୍ନଟି ହେଉଛି ଜଣେ ବୈଷ୍ଣବ ସାଧୁ ତାଙ୍କ ହାତରେ ତୁଳସୀମାଳା ଓ ଚନ୍ଦନକାଠ ଦେଇ ହଠାତ୍ ଅନ୍ତର୍ହିତ ହୋଇଗଲେ । ସେହି 'ତୁଳସୀ ଦେବୀ'ଙ୍କ ଗର୍ଭରୁ ଯେଉଁ ସନ୍ତାନ ଜନ୍ମ ହେଲେ, ସେ ହେଉଛନ୍ତି ପରବର୍ତ୍ତୀ

କାଳର ପଣ୍ଡିତ-ଭକ୍ତ-କବି 'ଅଭିମନ୍ୟୁ ସାମନ୍ତସିଂହାର ୧ । ଏବେ ସୁଧୀ ପାଠକ ବୃନ୍ଦ ଅନୁମାନ କରି କୁହନ୍ତୁ ଏହା ସତ ନା ମିଛ ? ମୋ ମତରେ ପ୍ରତ୍ୟେକ ଜନ୍ମ ସଂବର୍ଦ୍ଧିତ ଆବେଗକୁ ଏଭଳି ଶବ୍ଦାୟିତ ଉପାଖ୍ୟାନ ଦିଆଯାଇ ପାରିବ ।

୨୯-ଅଗଷ୍ଟ-୧୬ ଦୈନିକ ସମାଜରେ ଡା. ନିତ୍ୟାନନ୍ଦ ସ୍ୱାଇଁ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ 'ସର୍ପାଘାତ'ର ଆଲୋଚନା କରିଛନ୍ତି । ତାଙ୍କ କହିବାନୁଯାୟୀ "ସାପକାମୁଡା ରୋଗୀକୁ ଭଲ କରିଦେବା ନିମନ୍ତେ ଗାଁ ଠାକୁର କି ଠାକୁରାଣୀଙ୍କ ମନ୍ଦିରକୁ ନେଇ ମନ୍ଦିର ବେଢ଼ାରେ ଥିବା କୂଅ ପାଣିକୁ ତା' ଉପରେ ଢ଼ାଳି ଚାଲିବା, ରୋଗୀକୁ ଗଦ ଘୋରି କିମ୍ବା କାଚପାଣି ପିଆଇବା, ଗୁଣିଆକୁ ଖବର ଦେବା କି ଗୁଣିଆକୁ ଡାକିଆଣି ତା'ଦ୍ୱାରା ମନ୍ତ୍ର ପଢ଼େଇ ରୋଗୀକୁ ଝଡାଫୁଙ୍କା କରେଇବା, ସାପ ଚୋଟ ମାରିଥିବା ସ୍ଥାନରେ କାର ମହୁରା ଲଗେଇବା କି ସେଠାରେ ଚିଆଁକୁକୁଡାର ମଳଦ୍ୱାରକୁ ଛୁଆଁଇ ରଖିବା, ରୋଗୀର ନାଁ ଗାଁ ଲେଖି ଗୁଣିଆ ପାଖକୁ ପଠେଇବା, ଗୁଣିଆ ପାଖରୁ ଡେଉଁରିଆ ଆଣି ରୋଗୀଠାରେ ଡେଉଁରିଆକୁ ବାନ୍ଧିଦେବା ଏଭଳି ଅନ୍ଧବିଶ୍ୱାସ ପ୍ରତି ଆମର ଗଭୀର ବିଶ୍ୱାସ ଥିବାରୁ ଡାକ୍ତରୀ ଚିକିତ୍ସା ନ କରେଇ ଅନେକ ଏହି ସବୁ ଉପାୟ କରିଥାନ୍ତି । ଫଳରେ ଯେଉଁ ରୋଗୀ ବୈଜ୍ଞାନିକ ପଦ୍ଧତିରେ ଚିକିତ୍ସିତ ହୋଇ ନିଶ୍ଚିତ ବଞ୍ଚିଯାଇଥାନ୍ତା, ସେ ଅନ୍ଧବିଶ୍ୱାସୀ ଆତ୍ମୀୟଙ୍କ ଦ୍ୱାରା ଚିକିତ୍ସିତ ହୋଇ ଅକାଳ ମୃତ୍ୟୁର ଶିକାର ହୋଇଥାଆନ୍ତି । ଆମ୍ଭେ ସମସ୍ତେ ଜାଣି ରଖିବା ଦରକାରଯେ ସାପ ବିଷକୁ ଅକାମୀ କରି ଦେଉଥିବା ଇଂଜେକ୍ସନ୍ ବ୍ୟତୀତ ଅନ୍ୟ କୌଣସି ଉପଚାର ସାପ ବିଷକୁ ହରଣ କରିପାରେ ନାହିଁ ।

ଏବେ ଆସିବା ଈଶ୍ୱରଙ୍କ ସମ୍ପର୍କରେ କିଛିଟା ବିଶ୍ଳେଷଣ ପାଇଁ । ଏହି ବିଷୟର ବ୍ୟାପକତା ସୁଦୂରପ୍ରସାରୀ । ମର୍ତ୍ତ୍ୟ ବିନା ସ୍ୱର୍ଗର ଅସ୍ତିତ୍ୱ ନଥିଲା ଭଳି ମଣିଷଙ୍କ ବିନା ଈଶ୍ୱରଙ୍କ ଅସ୍ତିତ୍ୱ ସେଇ ରକମର । 'ଜଗତ ଦର୍ଶନରେ ଜଗନ୍ନାଥ' ପୁସ୍ତକରେ ବିଶିଷ୍ଟ ଚିନ୍ତାନାୟକ ଗୁରୁଚରଣ ପଟ୍ଟନାୟକ କହିଛନ୍ତି 'ମାନବ ବ୍ୟତିରେକେ ଜଗନ୍ନାଥଙ୍କ ଅସ୍ତିତ୍ୱ ନାହିଁ'[୨] । ପୁନଶ୍ଚ ସେଇ ପୁସ୍ତକରେ ଇତିହାସର ଆବଶ୍ୟକତା ଭିତରୁ ଜଗନ୍ନାଥଙ୍କର ଜନ୍ମ । ଜଗନ୍ନାଥ କୌଣସି ବ୍ୟକ୍ତିର ଅଲୌକିକ ଶକ୍ତି, କୌଣସି ମହାତ୍ମାଙ୍କ ଦିବ୍ୟଜ୍ଞାନ ଉପରେ ନିର୍ଭର କରନ୍ତି ନାହିଁ । ଜଗନ୍ନାଥଙ୍କ ଭଳି ଈଶ୍ୱର ମଧ୍ୟ ଏକ ଐତିହାସିକ ଆବଶ୍ୟକତା । ଯଦି ମଣିଷ ଯାହା ଚାହିଁଲେ ତାହା କରିପାରୁଥାନ୍ତା, ତା' ହେଲେ ସେ ଈଶ୍ୱରଙ୍କ ଆବଶ୍ୟକତା ଉପଲବ୍ଧି କରିପାରିଥାନ୍ତା କି ? ଲେଖକଙ୍କ ମତରେ "ନ୍ୟାୟ, ଯୁକ୍ତି ଓ ବିଜ୍ଞାନ ବଳରେ ଭଗବାନଙ୍କ ଧାରଣାକୁ ଯେତେ ଖଣ୍ଡନ କଲେବି ଭଗବାନ୍ ଓ ଧର୍ମକୁ ଜନ୍ମ ଦେଇଥିବା ବାସ୍ତବ ଅବସ୍ଥା ରହିଥିଲା ପର୍ଯ୍ୟନ୍ତ

ସେମାନେ ରହିଛନ୍ତି" । ନୈୟାୟିକଙ୍କ ମତରେ ବେଦର ରଚୟିତା ସର୍ବଜ୍ଞ ଭଗବାନ୍ । କାଳିଦାସ 'ଅଭିଜ୍ଞାନ ଶାକୁନ୍ତଳମ୍' ରଚନା କଲାପରି ଭଗବାନ୍ ରଚନା କରିଛନ୍ତି ବେଦ' । ବୟନ ଶିଳ୍ପୀ ସୂତ୍ରମାନଙ୍କୁ ସଜାଇ ବସ୍ତ୍ରବୟନ କଲାଭଳି, ଭଗବାନ୍ ଶବ୍ଦମାନଙ୍କୁ ଯୋଡି ବାକ୍ୟରଚନା କରନ୍ତି । (ନ୍ୟାୟମଂଜରୀ)[୩] । ଏହା ଯୁକ୍ତିଯୁକ୍ତ ନା ଆବେଗଧର୍ମିତା ?

ପ୍ରବନ୍ଧଟିର ଉପସଂହାରରେ ମୁଁ ବିଶିଷ୍ଟ ପ୍ରାବଂଧିକ ଶରତ୍ କୁମାର ମହାନ୍ତିଙ୍କର 'ଶେଷ ଦଶକର ରଚନା'ରୁ ଏକ ପରିଚ୍ଛେଦ ପାଠକ ପାଠିକାଙ୍କ ଗୋଚରାର୍ଥେ ଉଦ୍ଧାର କରୁଛି ।

"ଏବକାର ସହର ସବୁ ଜନାକୀର୍ଣ୍ଣ । ମଣିଷମାନେ ଏବେ ସହର ଭିତରେ ଯେପରି ଖୁନ୍ଦାଖୁନ୍ଦି ହୋଇ ରହିଲେଣି, ପୂର୍ବକାଳରେ ସେପରି ନଥିଲେ । ନିପଟ ମଫସଲରେ ବିଜୁଳୀବତୀ ଜଳିଲା । ଏଥିକୁ ଭୂତପ୍ରେତଙ୍କ ଉପାୟ କ'ଣ ? ପଚାଶ ବର୍ଷ ପୂର୍ବେ ଖୋଦ୍ କଟକ ସହରରେ ଲୋକେ ଭୂତ ଦେଖିଥିବାର ନଜିର ଅଛି । ଭୁବନେଶ୍ୱର କଥା କାହିଁକି ପଡିଛି । ଅର୍ଦ୍ଧଶତାବ୍ଦୀ ପୂର୍ବର ଭୁବନେଶ୍ୱର ଯଥାର୍ଥରେ ସ୍ୱୟଂ ଭୂତନାଥଙ୍କ ଲୀଳାଭୂମି ଥିଲା । କି ଯୁଗ ଆସିଲା ଯେ ଭୂତପ୍ରେତ ପଛଘୁଂଚା ଦେଇ ଦେଇ ଯାଇ ହିମାଳୟରେ ପହଞ୍ଚିଲେଣି । ବଣଜଙ୍ଗଲ ପଦା ହେଲେ, ଆମ୍ବ ତୋଟା ଲୋପ ପାଇଲା, ଆଉ ଭୂତ କ'ଣ ଲୁନା ଚଢ଼ି ଗାଁ ଦାଣ୍ଡରେ ବୁଲନ୍ତା" ?

ଯା'ହେଉ ଶିଶୁ ଓ କିଶୋର କିଶୋରୀ ଯେଉଁଭଳି ରୋମାଂଚଭରା କାହାଣୀ (ଯେଉଁଥିରେ ଭୂତ, ପେତିନୀ ନାୟକ, ନାୟିକା) ଶୁଣି ଶୁଣି ଆସିଛନ୍ତି, ସେକ୍ସପିଅରଙ୍କ 'ମ୍ୟାକ୍‌ବେଥ୍' ନାଟକଠୁ ଆଜିଯାକେ ଭୂତ ଡାଆଣୀଙ୍କୁ ନେଇ ପୃଥିବୀର ବିଭିନ୍ନ ଦେଶରେ ଯେଉଁ କାହାଣୀର ପସରା ଲମ୍ବିଛି ସେଇ ଖଚଡ଼ ଭୂତ ସହିତ ଛୁଆମାନେ ଭେଟ ନହେଇପାରିଲେ ଦୁଃଖ ନାହିଁ, କାରଣ ଜୀବନର କାହାଣୀ ଅସରନ୍ତି, ଆଉ ସେଇ ବାସ୍ତବ କାହାଣୀର ରୂପରେଖ ନିର୍ଣ୍ଣୟ କରିବାରେ ଆମ ସମାଜରେ କଥାକାରଙ୍କ ଅଭାବ କେବେବି ରହିନପାରେ ।


<u>ସହାୟକ ଗ୍ରନ୍ଥସୂଚୀ</u>

୧. ଅଭିମନ୍ୟୁ ଗ୍ରନ୍ଥାବଳୀ, ପ୍ରଥମ ଭାଗ
ସଂ.ଗୌରୀକୁମାର ବ୍ରହ୍ମା ।
ପ୍ରକାଶକ - ସଂସ୍କୃତି ନିର୍ଦ୍ଦେଶାଳୟ, ଭୁବନେଶ୍ୱର, ୧୯୭୭ ।

୨. ଜଗତ ଦର୍ଶନରେ ଜଗନ୍ନାଥ । ଲେ. ଗୁରୁଚରଣ ପଟ୍ଟନାୟକ ।
ପ୍ରକାଶକ-ପ୍ରିୟଦର୍ଶୀ, କଟକ-୧୨, ୧୯୯୭ ।

୩. ବେଦରୁ ଆଧୁନିକ; ଲେଖକ-ପ୍ର.ସର୍ବେଶ୍ୱର ଦାଶ,
ପ୍ର. ସାରସ୍ୱତ ସାହିତ୍ୟ ସାଂସ୍କୃତିକ ପରିଷଦ, ଯାଜପୁର, ୨୦୧୧ ।




# ଆମ ସମାଜରେ ହେତୁବାଦର ସ୍ଥିତି

*ଶ୍ରୀ ବିଜୟ ଉପାଧ୍ୟାୟ*

"ଆରେ, ପଣାପାଣି ଆଣ, ମନ୍ଦାର ଫୁଲ ମାଳ, ଝୁଣା ଧୂପ, ଭୋଗରାଗ ଆଣ । ଅନେଇଚ, କ'ଣ ? ବାଜା ବାଲା ଡାକ, କାଳେସୀ ଲାଗିଛି, ଘଣ୍ଟ ଆଣି ବଜାଅ" । ଗାଁର ଜଣେ ବୃଦ୍ଧ ଚିତ୍କାର କରି ଦେଲେ ନିର୍ଦ୍ଦେଶ ।

ମା'ଲୋ ମୋ ମୁଣ୍ଡିଆ ଖା' । ତୋ ମାନଥାନ୍ ବ୍ୟବସ୍ଥା କରୁଛି । ତୁ କାହିଁକି ଆସିଛୁ ? ଆରେ ଦାଦିବୁଢ଼ା ! କାଳେସୀ ଚିତ୍କାର କରି ଦାନ୍ତ କଡ଼ମଡ଼ କଲା । ମୁଁ ମଶାଣି ଚଣ୍ଡୀ । ଏଇ ଗାଁଟା ସାରା ସମସ୍ତଙ୍କୁ ଖାଇଦେବି । ମୁଣ୍ଡିଆ ନୁହଁ, ମୁଣ୍ଡ ଦେ. ଆବେ ମୋତେ ମୁଣ୍ଡ ଦେ' ।

କାହିଁକି ମା'ତୁ ଏତେ ରାଗୁଛୁ ? ତୋ ମାନଥାନ୍ କରାଯାଉଛି । ଗାଁ ଉପରେ ଟିକେ ଶୁଭଦୃଷ୍ଟି ପକା, ନେ ପଣା ନେ, କାକ୍‌ରା ଖା'" ।

୨୦୧୩ ପୂଜା ସଂଖ୍ୟା 'କଳିଙ୍ଗ ପ୍ରଭା'ରେ ପ୍ରକାଶିତ ନକୁଳ ଚନ୍ଦ୍ର ସାହୁଙ୍କ ଏକ ଉପନ୍ୟାସ 'ଚିରାଚିତ୍ର' ର ଆରମ୍ଭ ଭାଗର ଇଏ କିଛିଟା ଉଦ୍ଧୃତି । ଉପନ୍ୟାସ ସଂପର୍କରେ ଆରମ୍ଭରେ ହିଁ କୁହାଯାଇଛି । "ପୁରାତତ୍ତ୍ୱ ଓ ପାରଲୌକିକ ବାଦୀ ଅତ୍ୟାଧୁନିକ ଉପନ୍ୟାସ" । ଭୂଲୋକ, ତପଲୋକ, ଆତ୍ମା ପରମାତ୍ମା ଭାସମାନ ପଦ୍ମ ମହାପଦ୍ମ ଭିତରେ ସମଗ୍ର ବିଶ୍ୱକୁ ଏଥିରେ ବର୍ଣ୍ଣନା କରିବାର ଚେଷ୍ଟା କରାଯାଇଛି । ଫଳ ସ୍ୱରୂପ ମନୋଜ ଦାସଙ୍କ 'ତନ୍ଦ୍ରାଲୋକର ପ୍ରହରୀ' ଭଳି । ପ୍ରେତଲୋକର ବିଭିନ୍ନ ଛାୟା ସତ୍ତାମାନେ ଏଥିରେ ଚରିତ୍ରରୂପେ ଆତଯାତ

ହୋଇଛନ୍ତି । ଆଜିର ଦିନରେ ବି ଏଭଳି ଉପନ୍ୟାସ ଶ୍ରେଷ୍ଠ ଉପନ୍ୟାସ ଭାବେ ଗଣା ହେଉଛି । ଶାନ୍ତନୁ ଆଚାର୍ଯ୍ୟଙ୍କୁ ଏଦିଗରେ ଉଦ୍‌ଗାତା ରୂପେ ଗ୍ରହଣ କରାଯାଇପାରେ । ନର କିନ୍ନର, ଶକୁନ୍ତଳା ଓ ଦକ୍ଷିଣାବର୍ତ୍ତ- ଏଦିଗରେ ଗୋଟିଏ ଲେଖା ମାଇଲଖୁଣ୍ଟ ।

ମଣିଷର ଅବୈଜ୍ଞାନିକ ବିଶ୍ୱାସ ବା ଅନ୍ଧବିଶ୍ୱାସକୁ ନେଇ ଏଇ ଯେଉଁ ଚେତନାର ପ୍ରସାରଣ, ଏହାର ଭିତ୍ତିଭୂମି କେଉଁଠି ? ଖୋଜି ବସିଲେ ବଡ଼ ନିରାଶ ହେବାକୁ ପଡେ । ଦୀର୍ଘ ୨୦୦ ବର୍ଷର ବ୍ରିଟିଶ ଶାସନ କାଳରେ ଯେଉଁ ସବୁ ବିଦ୍‌ବତ୍ତା ମାନେ ସାମ୍ରାଜ୍ୟବାଦ ବିରୋଧୀ ଆନ୍ଦୋଳନକାରୀ ରୂପେ ସାମ୍ନାକୁ ଆସନ୍ତି, ତାଙ୍କ ଭିତରୁ କେତେ ଜଣ ଥିଲେ ବାସ୍ତବରେ ବସ୍ତୁବାଦୀ ବା ବୈଜ୍ଞାନିକ ଚିନ୍ତାଧାରାରେ ଦୀକ୍ଷିତ ? ସେମାନଙ୍କ ମଧ୍ୟରୁ ଅବଶ୍ୟ ବାରିହୋଇ ପଡନ୍ତି ଅଗ୍ନିଯୁଗର ବିପ୍ଳବୀମାନେ, ସେ ଡାକ୍ତର ସୂର୍ଯ୍ୟସେନ୍ ହୁଅନ୍ତୁ କି ଚାପେକାର ଭାଇମାନେ, ଭଗତ ସିଂ ହୁଅନ୍ତୁ କି ହୁଅନ୍ତୁ ରାଜଗୁରୁ ! ଆଦିବାସୀ ବିପ୍ଳବୀ ଯଥା: ବୀର୍‌ସାମୁଣ୍ଡା, ସିଦୁକାନ୍ତ ଆଲୁରି ସୀତାରାମାୟା ରାଜୁ ଓ ତାମାଦୋରା ମାନେ ହୀରା ଭଳି ଝଳି ଉଠନ୍ତି । କିନ୍ତୁ ଯେଉଁ ବିଦ୍ୱାନ୍‌ମାନେ ସ୍ୱାଧୀନତା ଆନ୍ଦୋଳନର ମୁଖ୍ୟଧାରା ରୂପେ ପରିଚିତ ହୁଅନ୍ତି, ସେମାନଙ୍କ ଭିତରେ ଥିଲା ଗୋଟଏ ଜଟିଳ ଅସମାହିତ ଦ୍ୱନ୍ଦ୍ୱ । ସମସ୍ତେ ଜାଣନ୍ତି ଯେ ହଜାର ହଜାର ବର୍ଷଧରି ସମସ୍ତ ପୂର୍ବତନ ବା ପ୍ରାଚୀନ ସଭ୍ୟତା ଯଥା ଭାରତ, ଚୀନ, ମେସୋପଟାମିଆଁ, ମିଶର, ଆରବ, ଗ୍ରୀସ୍ ଓ ରୋମ୍‌ର ସଭ୍ୟତା ମାନଙ୍କରେ ବିଜ୍ଞାନର ବିକାଶ ଯେଉଁ ହାରରେ ହୋଇଥିଲା, ତାହା ଷୋଡଶ-ସପ୍ତଦଶ ଶତାବ୍ଦୀରେ ଷ୍ଟିମ୍ ଓ ପରେପରେ ବିଦ୍ୟୁତ୍‌ର ଆବିଷ୍କାର ପରେ ପରେ ଦ୍ରୁତ ଗତିରେ ଅଗ୍ରସର ହେବାକୁ ଲାଗିଲା, ୟୁରୋପରେ ଏହିସବୁ ନୂଆ ଆବିଷ୍କାରକୁ ଭିତ୍ତିକରି ଶିଳ୍ପାୟନ ପର୍ବ ଆରମ୍ଭ ହୋଇଗଲା ଓ ଶିଳ୍ପସାମଗ୍ରୀର ବିକ୍ରୟ ପାଇଁ ୟୁରୋପୀୟମାନେ ଦେଶ ବିଦେଶକୁ ଯାତ୍ରା କରିବା ଆରମ୍ଭ କରିଦେଲେ । ସେଥିପାଇଁ ତିଆରି ହେଲା ବଡ଼ ବଡ଼ ଷ୍ଟିମର । ଆବିଷ୍କାର ହେଲା ଦେଶ ପରେ ଦେଶ-ଆମେରିକା, ଅଷ୍ଟ୍ରେଲିଆ, କାନାଡା ଇତ୍ୟାଦି । ପୁଣି ଖୋଲିଲା ନୂଆ ନୂଆ ଜଳପଥ । ତାହାହିଁ ଧୀରେ ଧୀରେ ଜନ୍ମ ଦେଲା ଉପନିବେଶବାଦକୁ ।

ତେଣୁ ସେଇ ଉପନିବେଶବାଦ ସହିତ ହିଁ ବ୍ୟାପି ଚାଲିଲା ଆଧୁନିକ ବୈଜ୍ଞାନିକ ବିଚାରଧାରା ସହିତ କେତେ ନା କେତେ ଜଘନ୍ୟ ନିର୍ଯ୍ୟାତନା ଓ ଗଣହତ୍ୟା । ଏହି ଉପନିବେଶବାଦର ସ୍ୱରୂପ ଯେ କେତେ ଭୟାନକ ତାହା ୧୭୫୭ ପଲାସୀ ଯୁଦ୍ଧଠାରୁ ୧୮୫୭ ର ପ୍ରଥମ ଭାରତୀୟ ସ୍ୱାଧୀନତା ସଂଗ୍ରାମ ସୁଦ୍ଧା ଭାରତବାସୀ ସ୍ପଷ୍ଟ ଭାବେ ଜାଣି ସାରିଥିଲେ । ବିଶେଷ କରି ୧୮୫୭ର ବିଦ୍ରୋହୀମାନଙ୍କୁ ଯେପରି ଢ଼ଙ୍ଗରେ ଗୁଳିକରି ଫାଶିରେ ଝୁଲାଇ ବା ଦ୍ୱୀପାନ୍ତରିତ କରି ଓ କଳାପାଣି ପଠାଇ ଦଣ୍ଡିତ କରାଗଲା, ଏପରିକି ସାଧାରଣ ନେତାଙ୍କୁ ଯେଭଳି ଭାବେ ହଜାର ହଜାର ସଂଖ୍ୟାରେ ପାଖରେ ଥିବା ଗଛମାନଙ୍କରେ ଫାଶି

ଦିଆଗଲା, ତାହା ଭାରତୀୟ ଚେତନାକୁ ପ୍ରଚଣ୍ଡ ଉଦ୍ଦୀପ୍ତ ଓ ଶାଣିତ କରିଥିଲା । ପରେ ପରେ ବ୍ରିଟିଶ ସରକାର ଇଷ୍ଟଇଣ୍ଡିଆ କମ୍ପାନୀ ହାତରୁ କ୍ଷମତା ନେଇଯିବାପରେ ଆରମ୍ଭ ହୋଇଗଲା ବ୍ରିଟିଶ୍ ଶାସନ । ଅଧିକରୁ ଅଧିକ ରେଭିନିଉ ଅସୁଲପାଇଁ ଜମିଦାରୀ ପ୍ରଥା ପ୍ରଚଳନ କରାଗଲା ଓ କୃଷକ ଉପରେ ଟିକସ ଆଦାୟ ସକାଶେ ଶୋଷଣ ଓ ଅତ୍ୟାଚାର ବଢ଼ିବାକୁ ଲାଗିଲା । ଏହା ବିରୋଧରେ ଛୋଟ ବଡ଼ ଶହ ଶହ କୃଷକ ବିଦ୍ରୋହ ଓ ଆଦିବାସୀ ବିଦ୍ରୋହ ଦେଖା ଦେଲା । ଗୋଟିଏ କଥାରେ ବୈଜ୍ଞାନିକ ଚିନ୍ତାଧାରା ସହିତ ଯେଉଁ ସବୁ ନିର୍ଯ୍ୟାତନାର ଆର୍ତ୍ତଚିତ୍କାର, ରକ୍ତ ଓ ମାଂସ ଭାସିଆସିଲା ସେଥି ସକାଶେ ଏହାକୁ ଗ୍ରହଣ କରିବାରେ ଦ୍ୱିଧା ଦେଖାଦେଲା ।

ଊନବିଂଶ ଶତାବ୍ଦୀର ଶେଷଭାଗ ଓ ବିଂଶ ଶତାବ୍ଦୀର ଆରମ୍ଭ ଭାଗରେ ଯେଉଁ ପାଶ୍ଚାତ୍ୟ ବିଦ୍ୟାରେ ଶିକ୍ଷିତ ବୁଦ୍ଧିଜୀବୀମାନେ ଭାରତର ସ୍ୱାଧୀନତା ଆନ୍ଦୋଳନର ବିଭିନ୍ନ କାର୍ଯ୍ୟକାରୀ ଦିଗ ଓ କୌଶଳଗତ ଲାଇନ୍ ଉପରେ ବିଚାର ବିମର୍ଶ କରିବାକୁ ଲାଗିଲେ, ସେମାନେ ପାଶ୍ଚାତ୍ୟ ବିଦ୍ୟା, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ହେତୁବାଦୀ ଚିନ୍ତାଧାରାକୁ ଅସ୍ୱୀକାର ତ କରିପାରିଲେନି; ହେଲେ ଭାରତୀୟ ସଭ୍ୟତାର ଜ୍ଞାନ ବିଜ୍ଞାନ ଓ ଦାର୍ଶନିକ ଧାରା ସହ ତାହାକୁ ସମନ୍ୱିତ କରିବାରେ ବେଶ୍ ଜଟିଳ ସମସ୍ୟାସବୁର ସମ୍ମୁଖୀନ ହେବାକୁ ଲାଗିଲେ । ତେଣୁ ଭାରତୀୟ ପୁନରୁଦ୍ରେକ ଯୁଗର ଅନେକ ମନୀଷୀ ପାଶ୍ଚାତ୍ୟ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ସହ ଉପନିବେଶବାଦର ଅତ୍ୟାଚାରୀ ରୂପକୁ ଏକ କରିଦେଇ ଭାରତୀୟ ସଂସ୍କୃତି ଓ ଦର୍ଶନର ପୁନଃନିର୍ମାଣ କରିବାପାଇଁ ଉଦ୍ୟମ କଲେ । ଫଳରେ ଧର୍ମ ଓ ଦର୍ଶନର ବହୁ ଅବୈଜ୍ଞାନିକ ପ୍ରତିପାଦ୍ୟ ସହ ସେମାନେ ସନ୍ଧି କରିନେଲେ । ଉପନିବେଶବାଦକୁ ବିରୋଧ କରିବା ପାଇଁ କେଉଁଠି ଦୁର୍ଗାପୂଜା ଓ କାଳୀପୂଜାର ପ୍ରବର୍ତ୍ତନ କରାଗଲା ତ ଆଉ କେଉଁଠି ଅଲୌକିକ ଶକ୍ତିବଳରେ ଲାଠିମାନେ ବନ୍ଧୁକରେ ପରିଣତ ହୋଇଯିବେ ବୋଲି ଆନ୍ଦୋଳନକାରୀମାନଙ୍କ ଭିତରେ ପ୍ରଚାର କରାଗଲା । ବିପ୍ଳବୀ ନେତାମାନଙ୍କୁ ଅଲୌକିକ ଶକ୍ତିଧର ରୂପେ ପ୍ରଚାର ମଧ୍ୟ କରାଗଲା । କିନ୍ତୁ ବନ୍ଧୁକ ଆଗରେ ଲାଠି ଓ ତୀରଧନୁ ଟିକି ପାରିଲା ନାହିଁ ଓ ସବୁ ବିଦ୍ରୋହ ଅବଦମିତ ହେବାକୁ ଲାଗିଲା । ଏହି ସନ୍ଧିକ୍ଷଣରେ ଗାନ୍ଧୀଙ୍କର ଅହିଂସା ଓ ସତ୍ୟାଗ୍ରହ ଓ ହୃଦୟପରିବର୍ତ୍ତନ ତତ୍ତ୍ୱ କେନ୍ଦ୍ରୀୟ ସ୍ଥାନ ଦଖଲ କରିବାକୁ ଲାଗିଲା । ଏହି ଗାନ୍ଧୀବାଦୀମାନେ ସଶସ୍ତ୍ର ସଂଗ୍ରାମର ପ୍ରବକ୍ତାମାନଙ୍କୁ ବ୍ରିଟିଶ ଶାସକମାନଙ୍କ ସହ ସ୍ୱର ମିଳାଇ ଆତଙ୍କବାଦୀରୂପେ ଚିତ୍ରଣ କରିବାକୁ ଲାଗିଲେ ।

ଏହିସବୁ ମନୀଷୀମାନଙ୍କ ଭିତରେ ଥିଲେ ଦୟାନନ୍ଦ ସରସ୍ୱତୀ, ବିବେକାନନ୍ଦ, ବଙ୍କିମ୍‌ଚନ୍ଦ୍ର, ଆନିବେଶାନ୍ତ ଓ ଏପରିକି ସର୍ବପଲ୍ଲୀ ରାଧାକ୍ରିଷ୍ଣନ । ଏମାନେ ସମସ୍ତେ ପୁରୁଣା ଧର୍ମଧାରାରେ କିଛିଟା ସଂସ୍କାର ଆଣି ତାହାର ଦର୍ଶନ ତତ୍ତ୍ୱକୁ ଆଧୁନିକ ବିଜ୍ଞାନ ସହ ମିଳାଇବାର

ଚେଷ୍ଟା କଲେ । କିନ୍ତୁ ଏ ସମସ୍ତେ ବସ୍ତୁବାଦୀ ଦର୍ଶନର ଥିଲେ ଘୋର ବିରୋଧୀ । ବିଶ୍ୱସୃଷ୍ଟି ସଂକ୍ରାନ୍ତରେ ଏ ସମସ୍ତଙ୍କ ଭିତରେ ଯେଉଁ ଆଧ୍ୟାତ୍ମିକବାଦୀ ଦୃଷ୍ଟିକୋଣ ଥିଲା, ତାହାରି ବିଶ୍ଳେଷଣ ଉପରେ ହିଁ ସେମାନେ ଏକ ଉପନିବେଶ ବିରୋଧୀ ତତ୍ତ୍ୱ ନିର୍ମାଣ କରିବାପାଇଁ ଚେଷ୍ଟା କଲେ । ଫଳରେ ବହୁକ୍ଷେତ୍ରରେ ସେମାନେ ହେତୁବାଦଠାରୁ ଦୂରେଇଗଲେ ଏବଂ ଐତିହାସିକ ଭାବେ ଏକ ହେତୁବାଦ-ବିରୋଧୀ ଅବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ମୂଳଦୁଆକୁ ଦୃଢ଼ୀଭୂତ କଲେ । ତାହା ସର୍ପିଳ ଗତିରେ ଅଗ୍ରଗତି କରି ଆଜିର ପରିସ୍ଥିତିରେ ପହଞ୍ଚିଛି ଯେଉଁଠି ଆମେ ଗୋଟିଏ ପକ୍ଷେ ଆମେରିକା ଓ ୟୁରୋପୀୟ ଦେଶମାନଙ୍କର ଗୋଡ଼ାଣିଆ ପାଲଟିଛୁ, ଏବଂ ଅନ୍ୟ ପକ୍ଷରେ ସବୁ ବୈଜ୍ଞାନିକ ଆବିଷ୍କାରର ମୂଳମନ୍ତ୍ର ଭାରତୀୟ ଦର୍ଶନ ଶାସ୍ତ୍ର ଥିଲାବୋଲି ପ୍ରୌଢ଼ି କରିବାରେ ଲାଗିଛୁ । ସେଥିପାଇଁ ଆଶ୍ରୟ ନେଉଁଛୁ ବିଭିନ୍ନ ଅର୍ଦ୍ଧସତ୍ୟର ଏବଂ ପୌରାଣିକ କଥା ଉପକଥାର । ଏସବୁ ଗଳ୍ପକୁ ଆମେ ବାସ୍ତବ ବୋଲି ଘୋଷଣା କରିବାରେ କିଛି ହେଲେ ଦ୍ୱିଧା-ଅନୁଭବ କରୁନାହୁଁ । ଏପରିକି ଶାସନ କଳ ଏ ଦିଗରେ ସବୁ ଶକ୍ତି ଖଟାଇ ବିଜ୍ଞାନ ଓ ବୈଜ୍ଞାନିକ ଚିନ୍ତାଧାରାର ଇତିହାସ ରଚନାର ଏକ ନୂଆ ପଦ୍ଧତି ଆବିଷ୍କାର କରି ସାରିଲାଣି । ତେଣୁ ସ୍ୱାଭାବିକ ଭାବେ ବସ୍ତୁବାଦ ଓ ହେତୁବାଦ ଶାସକ ଶ୍ରେଣୀର ଚକ୍ଷୁଶୂଳ ହୋଇଛି । ଶୂଦ୍ର, ଦଳିତ, ଆଦିବାସୀ ଓ ସଂଖ୍ୟାଲଘୁ ସମ୍ପ୍ରଦାୟ ଉପରେ ଏବଂ ବିଶେଷ କରି ନାରୀମାନଙ୍କ ଉପରେ ଆକ୍ରମଣର ମାତ୍ରା ତୀବ୍ରରୁ ତୀବ୍ରତର ହେବାରେ ଲାଗିଛି । ହେତୁବାଦୀ ଓ ସାମ୍ୟବାଦୀମାନଙ୍କ ଦିଗରେ ମଧ୍ୟ ଏ ଆକ୍ରମଣ ପ୍ରସାରିତ ହେବାରେ ଲାଗିଛି । କାରଣ ଯୁକ୍ତିବାଦର ଯେଉଁ ସୌଧ ଏଥିପାଇଁ ନିର୍ମାଣ କରାଯାଉଛି ତାହାର ଭିତ୍ତି ମୁଖ୍ୟତଃ ଆବେଗିକ । ମିଥ୍ୟା ଦେଶାତ୍ମବୋଧକ ବା ଦେଶପ୍ରେମର ଆଶ୍ରୟ ନେଇ ବ୍ୟାପକ ଧର୍ମବିଶ୍ୱାସୀ ଶ୍ରମଜୀବୀ ଦରିଦ୍ର ଜନଗଣଙ୍କ ପିଠିଉପରେ ହିଁ ଏ ସୌଧର ନିର୍ମାଣ ଚାଲିଛି । ସୁତରାଂ ଧାର୍ମିକ ମୌଳବାଦକୁ ଆହୁରି ପରିପୁଷ୍ଟ କରିବା ପାଇଁ ଛଦ୍ମ ବୈଜ୍ଞାନିକ ତତ୍ତ୍ୱର ବ୍ୟାଖ୍ୟାନ କରାଯାଉଛି । ଆକ୍ରମଣମୁଖୀ ସିଂହବାହିନୀ ଭାରତ ମାତାର ପରିକଳ୍ପନା କରି 'ନ୍ୟାୟିକ ହିଂସା'ର ଆବଶ୍ୟକତା କଥା ପ୍ରଚାର କରାଯାଉଛି । ପୁଣି ସେଥିପାଇଁ ଆଧୁନିକ ବିଜ୍ଞାନର ସମସ୍ତ ଉଦ୍ଭାବନର କୌଶଳପୂର୍ଣ୍ଣ ବ୍ୟବହାର କରାଯାଉଛି । ଟି.ଭି. ସିରିଏଲ୍, ଫିଲମ୍, ଡକ୍ୟୁମେଣ୍ଟାରି, ସାହିତ୍ୟ, ଚିତ୍ରକଳା, ବେତାର; ଇଣ୍ଟରନେଟ୍- ଏ ସମସ୍ତ କ୍ଷେତ୍ରକୁ ମୌଳବାଦୀ ଚିନ୍ତାଧାରା ପ୍ରଚାରର ପରୀକ୍ଷାଗାରରେ ପରିଣତ କରାଗଲାଣି ।

ଏବେ ଆସିବା ଆମ ଓଡ଼ିଶା ରାଜ୍ୟକୁ । ଓଡିଶାର ଯେକୌଣସି ଦିନର ଖବର କାଗଜକୁ ଓଲଟାଇଲେ ନିଶ୍ଚିତ ଭାବେ କେଉଁଠି ନା କେଉଁଠି କିଛି ଅଲୌକିକ କାଣ୍ଡକାର୍ଖାନାର ସମ୍ବାଦ ଦେଖିବାକୁ ମିଳିବ । ଗୁଣି ଗାରେଡି ବିଦ୍ୟା ପ୍ରତି କେବଳ ଅଶିକ୍ଷିତ ନୁହେଁ, ତଥାକଥିତ ଶିକ୍ଷିତମାନଙ୍କ ବିଶ୍ୱାସ ମଧ୍ୟ ଏତେ ଗଭୀର ଯେ, ୩୦ଟି ଜିଲ୍ଲା ମଧ୍ୟରୁ ପ୍ରାୟ ପ୍ରତିଟି ଜିଲ୍ଲାରେ

ଗୁଣି ଗାରେଡି ସନ୍ଦେହରେ ବହୁ ବ୍ୟକ୍ତିଙ୍କୁ ହତ୍ୟା କରାଯାଉଛି କିମ୍ବା ଅମାନୁଷିକ ଶାରୀରିକ ଯନ୍ତ୍ରଣା ଦିଆଯାଉଛି । ସ୍ତ୍ରୀମାନଙ୍କୁ ଡାହାଣୀ ଅଭିଯୋଗରେ ଉଲଗ୍ନ କରି ଗାଁ ରାସ୍ତାରେ ଚଲାଯାଉଛି ବା ଜୀଅନ୍ତା ପୋତି ଦିଆଯାଉଛି । ଏହାର ସଦ୍ୟତମ ଉଦାହରଣ ହେଉଛି ନୟାଗଡ଼ ଜିଲ୍ଲାର ଧୋବାସାହିରେ ବିନୋଦିନୀ ସେଠୀ ଓ ତା'ର ସ୍ୱାମୀଙ୍କ ପ୍ରତି ହୋଇଥିବା ନିର୍ଯ୍ୟାତନା, (ତା ୧୪.୦୯.୨୦୧୬, ଓଡିଶା ପୋଷ୍ଟ) । ଦକ୍ଷିଣ ଓଡିଶାରେ ଏହାର ସଂଖ୍ୟା ଅଧିକ । ଏଠାରେ ଶିକ୍ଷାର ପ୍ରସାର ଘଟିଛି ସତ୍ୟ କିନ୍ତୁ ବୈଜ୍ଞାନିକ ଚିନ୍ତାଧାରାର ଅନୁରୂପ ପ୍ରସାର ଅତ୍ୟନ୍ତ ସାମାନ୍ୟ- କୁହାଯାଇପାରେ ସମୁଦ୍ରକୁ ଶଙ୍ଖେ ଭଳି । ସୁତରାଂ ବେଧଡକ ଚାଲିଛି ଅନ୍ଧବିଶ୍ୱାସର ପ୍ରଚାର ଓ ପ୍ରସାର । କୁଆ ଉଡ଼ିଗଲେ ତାଳ ପଡ଼ିଯିବା ନ୍ୟାୟରେ ଏବେବି କାହାରି ପିଲା ମରିଗଲେ, ଗାଈ ମଇଁଷି ମଡ଼କ ପଡିଲେ ବା କିଛି ମୂଲ୍ୟବାନ୍ ବସ୍ତୁ ହଜିଗଲେ କିମ୍ବା କିଛି ସଂକ୍ରାମକ ରୋଗ ବ୍ୟାପିଲେ ଲୋକେ 'ଦିଶାରି' ବା 'ଓ୍ୱାଡେ' ପାଖକୁ ନିଶାପ ଆଣିବାପାଇଁ ଧାଆନ୍ତି । ବଡ଼ ବଡ଼ ଗୁଣିଆ ଖୋଜନ୍ତି ।

ଦକ୍ଷିଣ ଓଡିଶାରେ ବିଶେଷ କରି ଅବିଭକ୍ତ କୋରାପୁଟ ଜିଲ୍ଲାର ଦିଶାରି-ପୂଜାରି-ଗୁରୁମାଈ-ଓ୍ୱାଡେ, ଆଦିଙ୍କ ପରମ୍ପରା ଖୁବ୍ ପ୍ରଚଳିତ ଗୁଣୀ ବିଦ୍ୟାକୁ ଏହି ଅଞ୍ଚଳରେ କୁହାଯାଏ, ପାଙ୍ଗନ୍ ବିଦ୍ୟା । ଏ ବିଦ୍ୟାରେ ଧୁରନ୍ଧର ବ୍ୟକ୍ତିକୁ କୁହାଯାଏ ପାଙ୍ଗ୍‌ନିଆ । ସମତଳ ଅଞ୍ଚଳର କାଳେସୀ ପରମ୍ପରା ଭଳି ଏ ଅଞ୍ଚଳରେ ରହିଛି ଗୁରୁମାୟୀ ପରମ୍ପରା । ଢେମ୍‌ସା ବା ଦେବବାଦ୍ୟ ବାଜିଲେ ଏଭଳି ଗୁରୁମାୟୀମାନଙ୍କୁ ଦେଓ ବା ଦେବତା ଧରନ୍ତି ବୋଲି ଲୋକ ବିଶ୍ୱାସ । ସେହି ସମୟରେ ତାଙ୍କର ପ୍ରତି ଉଚ୍ଚାରଣକୁ ଦେବବାକ୍ୟ ବୋଲି ଜ୍ଞାନ କରାଯାଏ । ସେତେବେଳେ ସେ କଣ୍ଟା ଦୋଳିରେ ବସି ପାଙ୍ଗ୍‌ନିଆ ସନ୍ଧାନ ଦିଅନ୍ତି । ଗାଈ ମଇଁଷି ବା ମୂଲ୍ୟବାନ୍ ପଦାର୍ଥ ହଜିଗଲେ ତା'ର ସନ୍ଧାନ ମଧ୍ୟ ଦେଇଥାନ୍ତି । ଯଦି ମଡ଼କ ବା ସଂକ୍ରାମକ ରୋଗର ଘଟଣା ଘଟିଥାଏ ତେବେ ଅନାଚାର କରିଥିବା ବ୍ୟକ୍ତିଙ୍କର ସନ୍ଧାନ ଦିଅନ୍ତି । ଯେଉଁ କଣ୍ଟା ଦୋଳି କଥା କୁହାଯାଉଛି, ସେଥିରେ ବଡ଼ ବଡ଼ ଲୁହା କଣ୍ଟାର ବ୍ୟବହାର ଆଜିକାଲି ହେଉଥିଲେ ବି ପାରମ୍ପରିକ କଣ୍ଟା ଦୋଳିରେ କେବଳ "ପିଲା ହାର୍‌ନି" ନାମକ ଉଦ୍ଭିଦ ଜାତ ତୀକ୍ଷ୍ଣ କଣ୍ଟା ବ୍ୟବହାର କରାଯାଉଥିଲା ।

ଏଠାକାର ଆଦିବାସୀ ଅଣ ଆଦିବାସୀ ତଥା ଦଳିତ- ପ୍ରାୟ ଶତକଡ଼ା ୯୫ ଭାଗ ଲୋକ ବିଶ୍ୱାସ କରନ୍ତି ଯେ ପାଙ୍ଗନ୍ ବିଦ୍ୟାଦ୍ୱାରା ଏକ ଅଶୁଭ ଶକ୍ତିକୁ ଆବାହନ କରି ଅଭିପ୍ରେତ ମଣିଷକୁ ମାରି ଦିଆଯାଇପାରେ, ରୋଗ ବା କାଇଲାରେ ପକାଇ ଦିଆଯାଇପାରେ, ତାର ଗୋମେଷାଦି ପଶୁଙ୍କ ମଡ଼କ ପକାଯାଇପାରେ କିମ୍ବା ଜମିରେ ମରୁଡ଼ି ପକାଇ ଦିଆଯାଇପାରେ । ତେବେ ଅନ୍ୟ ପକ୍ଷରେ ପାଙ୍ଗ୍‌ନିଆ ପ୍ରତି ଲୋକଙ୍କ ଭୟ ଓ ଘୃଣା କିଛି କମ୍ ନଥାଏ । ଏପରିକି

ମନେକର ଜଣେ ରୋଗଗ୍ରସ୍ତ ବ୍ୟକ୍ତିଙ୍କୁ ଏଭଳି ଏକ ପାଙ୍ଗ୍‌ନିଆ ଭଲ କରିଦେଲେ । ସେତେବେଳେ ଏ କଥା ମଧ ବିଶ୍ୱାସ କରାଯାଏ ଯେ, ସେ ହିଁ ରୋଗ କରାଇଥିଲେ ଓ ସେହିଁ ଭଲ କରିଦେଲେ । ଫଳରେ ଚେରମୂଳି ଔଷଧକୁ ନେଇ ଯେଉଁ ପାରମ୍ପରିକ ଚିକିତ୍ସକ ବା ଦିଶାରି ମାନେ କିଛି କିଛି ରୋଗ ଭଲ କରିଦିଅନ୍ତି, ସେମାନେ ମଧ ସମୟ ସମୟରେ ପାଙ୍ଗ୍‌ନିଆ ଅଭିଯୋଗରେ ଗାଁଲୋକଙ୍କ ଆକ୍ରମଣର ଶିକାର ହୁଅନ୍ତି ।

ଯେହେତୁ ଲୋକେ ବିଶ୍ୱାସ କରନ୍ତି ଯେ ପାଙ୍ଗନ୍ ବିଦ୍ୟା ସମ୍ପୂର୍ଣ୍ଣ ଗୋପନ ବିଦ୍ୟା, ତେଣୁ କେବେ ହେଲେ ବା କେଉଁଠି ହେଲେ ତା'ର କିଛି ଲିଖିତ ପ୍ରମାଣ ଶାସ୍ତ୍ର ମିଳେ ନାହିଁ । ଲୋକମୁଖରେ କେବଳ ତାହା ପ୍ରଚାର ହୁଏ । ଯେ କୌଣସି ରୋଗ ହେଲେ, ଡାକ୍ତରଙ୍କ ପାଖକୁ ନଯାଇ ଲୋକେ ଦିଶାରି ବା ପାଙ୍ଗ୍‌ନିଆ ପାଖକୁ ଯାଆନ୍ତି । ଏହିଭଳି ଡାକ୍ତରଖାନା ଗଲାବେଳକୁ ଯଥେଷ୍ଟ ବିଳମ୍ବ ହୋଇଯାଏ । ଅନେକ କ୍ଷେତ୍ରରେ ରୋଗୀର ମୃତ୍ୟୁହୁଏ । ପାରମ୍ପରିକ ଚିକିତ୍ସା ବିଦ୍ୟାକୁ ମଧ ଗୋଟିଏ ପ୍ରକାର ପାଙ୍ଗନ୍‌ବୋଲି ବିଶ୍ୱାସ କରାଯାଏ ।

ଏହାକୁ ଛାଡି ରହିଛି ବିଭିନ୍ନ ପ୍ରକାରର ମନ୍ତ୍ର ପାଙ୍ଗନ୍ । ସେସବୁ ହେଉଚି କୁଦାଲ୍, ସଂଗାନି, ଅକିଲାଗାନି, ଡାଇନି ଓ ଉପାୟୀ ।

ହୃଦରୋଗ ବା ବ୍ରେନ୍ ମେଲେରିଆ ଆଦି ରୋଗରେ କୌଣସି ବ୍ୟକ୍ତିର ହଠାତ୍ ମୃତ୍ୟୁ ହେଲେ ତାକୁ କୁହାଯାଏ କୁଦାଲ୍ ପାଙ୍ଗନ୍ । ସଂଗାନି ପାଙ୍ଗନ୍‌ରେ କୌଣସି ବସ୍ତୁ ସଂସ୍ପର୍ଶରେ ଆସି ଜଣେ ରୋଗାକ୍ରାନ୍ତ ହୁଏ ବୋଲି କୁହାଯାଏ ଏବଂ ସେ ବସ୍ତୁକୁ କାଢ଼ିନେଲେ ସେ ପୂରା ଭଲ ହୋଇଯାଏ ବୋଲି ବିଶ୍ୱାସ କରାଯାଏ । ଅକିଲାଗାନି ପାଙ୍ଗନ୍ ପେଟ ରୋଗୀମାନଙ୍କ ପ୍ରତି ପ୍ରଯୁଜ୍ୟ ବୋଲି କୁହାଯାଇପାରେ । କାରଣ ଏହି ମନ୍ଦ ପ୍ରୟୋଗପରେ ସେ ଲୋକର ଭୀଷଣ ପେଟ ପୀଡ଼ା ହୋଇଥାଏ । ଉପାୟୀ ପାଙ୍ଗନ୍-ହେଉଚି ଧୀରେ ମରାଇବା ପାଙ୍ଗନ୍ । ହୁଏତ କୌଣସି ଧୀର ବିଷ ପ୍ରୟୋଗ ଦ୍ୱାରା ଏହି ତଥା କଥିତ ଅଲୌକିକ କାର୍ଯ୍ୟ କରାଯାଇଥାଏ । ଶେଷ ପାଙ୍ଗନ୍‌ଟି ଡାଇନି ପାଙ୍ଗନ୍ । ଶିଶୁମାନଙ୍କର ଅକାଳ ମୃତ୍ୟୁ ଉପରେ ଏହା ପର୍ଯ୍ୟବସିତ ।

କିନ୍ତୁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଉଚି ସମଗ୍ର ଦକ୍ଷିଣ ଓଡିଶାରେ ପାଙ୍ଗନ୍ ବିଦ୍ୟାପ୍ରତି ଆଦିବାସୀମାନଙ୍କ ଭିତରେ ଥିବା ଘୃଣା । ଏହା ପ୍ରତିପାଦିତ ହୁଏ ଝିଅବିଭାଘର ସମୟରେ, ଯେତେବେଳେ ଝିଅର ବାପ କହେ,

"ମନ୍ ନ ପୁରିଲେ ଦାରୀ ହେଇସି
ପେଟ୍ ନ ପୁରିଲେ ଚୋରୀ ହେଇସି
ପାଙ୍ଗନ୍ କଥା ମାତର୍ ଆମର ଲଗେ ନାଇଁ ।

ଅର୍ଥାତ୍ ମୋ ଝିଅ ଯଦି ଦୈହିକ ସୁଖ ନପାଏ ତେବେ ଅନ୍ୟ ପୁରୁଷ ପାଖକୁ ଯାଇପାରେ, ପେଟ ନ ପୁରିଲେ ଚୋରି କରିପାରେ, କିନ୍ତୁ ସେ ପାଙ୍ଗନ୍ କଲା ବୋଲି କେବେ ବି କହିବ ନାହିଁ । କାରଣ ଆମ ବଂଶ ପରମ୍ପରାରେ ଏହା ନଥିଲା କି ନାହିଁ ।

ପାଙ୍ଗନ୍ ବିରୋଧରେ ଏଇ ସକାରାତ୍ମକ କଥାକୁ ନେଇ ଅନ୍ଧବିଶ୍ୱାସ ଉନ୍ମୂଳନ ଆନ୍ଦୋଳନ କରାଯାଇପାରନ୍ତା । କିନ୍ତୁ ସାରା ଭାରତବର୍ଷରେ ଚାଲିଥିବା ଅବୈଜ୍ଞାନିକ ପୁନରୁଦ୍ରେକ ବାଦୀ ହିଂସ୍ର ଧର୍ମାନ୍ଧ ପରିବେଷ୍ଟନୀହିଁ ଏଭଳି ଆନ୍ଦୋଳନ ଆରମ୍ଭ ହେଉଁ ହେଉଁ ତାକୁ ନଷ୍ଟ କରି ଦେଉଛି । ତଥାପି କିଛି ହେତୁବାଦୀ ଆନ୍ଦୋଳନ ସ୍ଥାନୀୟ ସ୍ତରରେ ଲୋକେ ଜାରିରଖିଛନ୍ତି । ଏ ନେଇ ମୋ ଅଭିଜ୍ଞତାରୁ ଗୋଟିଏ ଛୋଟ ଉଦାହରଣ ଦେବି ।

୧୯୮୯ ମସିହାରେ ମାଲ୍‌କାନ୍‌ଗିରି ଜିଲ୍ଲାର ବୀରଲକ୍ଷ୍ମଣପୁର ପଞ୍ଚାୟତରେ ମୁଁ କେତେକ ଡାକ୍ତର ବନ୍ଧୁଙ୍କୁ ଡକାଇ ଗୋଟିଏ ସାତ ଦିନିଆ ସ୍ୱାସ୍ଥ୍ୟ ଶିବିର କରାଇଥିଲି । ଏଥିରେ ବହୁତ ରୋଗୀ ଦୂର ଦୂରାନ୍ତରରୁ ଆସି ଚିକିତ୍ସା ହେବା ସଙ୍ଗେ ସଙ୍ଗେ କିଛି କର୍ମୀ ପ୍ରାଥମିକ ଚିକିତ୍ସାର ପ୍ରଶିକ୍ଷଣ ମଧ୍ୟ ନେଉଥିଲେ । ଏତିକି ବେଳେ ପୋଡି ହୋଇଥିବା ଗୋଟିଏ ୧୨/୧୩ ବର୍ଷର ଆଦିବାସୀ ପିଲା ଚିକିତ୍ସା ପାଇଁ ଖଟିଆରେ ବୁହାହୋଇ ଆସିଲା । ତା'ର ବାପା କହିଲା, ଏଇ ବାଟେ ଆମେ ଦିଶାରି ପାଖକୁ ନେଇଯାଉଥିଲୁ । କେମ୍ପ୍ ହେଉଚି ଶୁଣି ଏଠିକୁ ଘେନି ଆସଲୁ । ଡାକ୍ତର କିଛି ନକହି ପରୀକ୍ଷା କରି ଦେଖିଲେ, ୩୦ ରୁ ୩୫ ଭାଗ ଚର୍ମପୋଡି ଯାଇଛି । ସେ କହିଲେ କେମ୍ପ ଶେଷଯାଏ ରୋଗୀ ଏଇଠି ରହିଲେ, ନିଶ୍ଚେ ଭଲ ହୋଇଯିବ । ପାଙ୍ଗନିଆ ପାଖକୁ ନେଲେ ସେ କ'ଣ କରିବ ? ସେଇଠୁ ପ୍ରବଳ ଯୁକ୍ତିତର୍କ ଆରମ୍ଭ ହୋଇଗଲା । ତମେ ସିନା ଦୁଇ ଦିନପାଇଁ ଆସିଛ । ଦିଶାରି ଓ ପାଙ୍ଗନିଆମାନେ ତ ସବୁଦିନିଆ । ତା'ପରେ ଏ ପୋଡି ହେବାଟା ପାଙ୍ଗନିଆ ଦ୍ୱାରା ହୋଇନି ବୋଲି କେମିତି କହିହେବ ? ଏତେ ଲୋକ 'ଜଇ' (ନିଆଁ) ଚାରିପଟେ ଶୋଇଥିଲେ । ଜଣେ କାହିଁକି ପୋଡିହେଲା ? ତେଣୁ ପାଙ୍ଗନ୍ ବିଦ୍ୟା ନିଶ୍ଚେ ଅଛି । ସେମାନଙ୍କୁ ବୁଝାଇବା କଷ୍ଟ ହେବ ଦେଖି ଆମେ ସେ ବିଷୟ ଛାଡି ଅନ୍ୟ ବିଷୟକୁ ଗଲୁ । କିନ୍ତୁ ଶିବିର ଶେଷଦିନ, ଯେତେବେଳେ ସେ ରୋଗୀ ୯୦ ଭାଗ ଭଲ ହୋଇ ଘରକୁ ଫେରିବାକୁ ପ୍ରସ୍ତୁତ ହେଲା, ବିଦାୟୀ ସଭାରେ ଆମେ ପୁଣି ସେ କଥା ଉଠାଇଲୁ । ୨/୩ ଜଣଙ୍କୁ ଛାଡି ବାକୀ ସମସ୍ତେ ଚିକିତ୍ସା ବିଜ୍ଞାନର ଉତ୍କର୍ଷ ଓ ଉପଯୋଗିତା ସଂପର୍କରେ ଉପଲବ୍ଧି କରି ସାରିଥିଲେ । କଥା ଏତେ ଦୂର ପର୍ଯ୍ୟନ୍ତ ଗଲା ଯେ ଗୋଟିଏ ଗାଁର ସାହୁକାରମାନେ ସ୍ଥାପନ କରିଥିବା ଗୋଟିଏ ଦେବସ୍ଥଳୀ ଏବଂ ସେଠାରେ ଦିଆଯାଉଥିବା ତ୍ରୈବାର୍ଷିକ ମଇଁଷିବଳି ସଂପର୍କରେ ବର୍ଣ୍ଣନା କରି ଜଣେ ଯୁବକର୍ମୀ କହିଲାଯେ, ସେମାନେ ହୁନାନ୍ କୃଷକ ଆନ୍ଦୋଳନ ସମ୍ପର୍କରେ ଗୋଟିଏ ବହି ପଢ଼ିଥିଲେ । ଜଣେ କମ୍ୟୁନିଷ୍ଟ କର୍ମୀ ସେମାନଙ୍କୁ ସେ ବହିଟି ପଢ଼ି ବୁଝାଇ ଦେଇଥିଲେ । ସେଥିରେ

ଆନ୍ଦୋଳନକାରୀ କୃଷକମାନେ ରୋଷେଇପାଇଁ କାଠର ଅଭାବ ପଡିବାରୁ ଏକ ମନ୍ଦିରରେ ଥିବା ବିରାଟକାୟ କାଠମୂର୍ତ୍ତିକୁ କୁରାଢ଼ୀରେ ଚିରି ଜାଳେଣି ତିଆରି କରିଥିଲେ । ସେମାନଙ୍କର ଯୁବ ସାଥୀମାନେ ଆଲୋଚନା କଲେ ଯେ ଏଇ ନୂଆ ଦେବତାଙ୍କୁ ମଧ୍ୟ କ୍ଷମତାହୀନ ପ୍ରତିପାଦିତ କରିବାକୁ ପଡିବ, କାରଣ ପ୍ରତି ୩ ବର୍ଷକୁ ଥରେ ଘର ପିଛା ୧୦୦ ଟଙ୍କା କରି ଚାନ୍ଦା ଦେଇ ମଇଁଷି କିଣିବାକୁ ପଡୁଚି । ସେଥିପାଇଁ ଦୁଇଜଣ ପାହାନ୍ତା ପହରେ ଯାଇ ସେଠାରେ ଝାଡା ଫେରି ଦେଲେ, ଫଳରେ ସେ ଆସ୍ଥାନ ଅପବିତ୍ର ହୋଇଗଲା ଓ ସେ ବର୍ଷ ପୂଜା ବଳି ବନ୍ଦ ରହିଲା । ଏସବୁ ଆଲୋଚନା ଏତେ ପ୍ରଭାବ ପକାଇଲା ଯେ, ଏଇ ସବୁ ପାରଲୌକିକ ସତ୍ତା ବିଷୟରେ ଅର୍ଥାତ୍ ସତରେ ଡୁମା ଅଛି କି ନାଇଁ, ପାଙ୍ଗନିଆମାନେ କିଛି ଏଭଳି ଶକ୍ତିକୁ ବ୍ୟବହାର କରୁଛନ୍ତି ନା ଡାକ୍ତରମାନେ କହିଲା ଭଳି ବିଷାକ୍ତ ଚେରମୂଳି ପ୍ରୟୋଗ କରି ଶତ୍ରୁକୁ ମରାଉଛନ୍ତି ଏବଂ ଲୋକଙ୍କ ଅନ୍ଧବିଶ୍ୱାସର ଫାଇଦା ଉଠାଉଛନ୍ତି- ସେ ନେଇ ବେଶ୍ କିଛି ଦିନ ଧରି ଯୁକ୍ତି ତର୍କ ଚାଲିଲା । ଏହାକୁ ହିଁ ଭିତ୍ତି କରି ସାରା ମାଲକାନ୍‌ଗିରି ଜିଲ୍ଲାରେ ୧୯୯୦ ବେଳକୁ ଆରମ୍ଭ ହୋଇଗଲା ପାଣି ଆନ୍ଦୋଳନ । କାରଣ ଆମେ ବାରମ୍ବାର ସ୍ୱାସ୍ଥ୍ୟ ଶିବିର କରି ବୁଝାଉଥିଲୁ ଯେ ଦୂଷିତ ପାଣି ହେଉଚି ମୁଖ୍ୟ ଭାଗ ରୋଗ ଓ ରୋଗ ସଂକ୍ରମଣର କାରଣ । ଫଳରେ ୧୯୯୫ ସୁଦ୍ଧା ଆଭ୍ୟନ୍ତରୀଣ ଗାଁ ଗଣ୍ଡାରେ କି ହଜାର ହଜାର ନଳକୂପ ସ୍ଥାପନ କରାଗଲା ପୁଣି ଆମେ ଚଲୁଥିବା ଜମିର ମାଲିକତ୍ୱ ବା ସତ୍ତ୍ୱ ଆମକୁ ଦିଆଯାଉ ବୋଲି ଆଉ ଏକ ଆନ୍ଦାଳନ ଆରମ୍ଭ ହୋଇଗଲା । କାରଣ ଆମେ ଭାବୁଥିଲୁ ଯେ ଏହି ଅଞ୍ଚଳରେ ଦାରିଦ୍ର୍ୟ ହେଉଛି ଅନ୍ଧବିଶ୍ୱାସର ମୁଖ୍ୟ କାରଣ । ଆଦିବାସୀ ପାଖେ ଯଦି ଡାକ୍ତର ଖାନା ଯିବାକୁ ସମ୍ବଳ ଥାଆନ୍ତା, ତେବେ କ'ଣ ସେମାନେ ଦିଶାରି ଖୋଜନ୍ତେ ? ଏହି ବିମର୍ଶରୁହିଁ ପ୍ରତି ପଂଚାୟତରେ ଡାକ୍ତରଖାନାପାଇଁ ଲଢ଼େଇ ଆରମ୍ଭ ହୋଇଗଲା ।

ତେବେ ଏସବୁ ଆନ୍ଦୋଳନ ଅବିଭକ୍ତ କୋରାପୁଟ ଜିଲ୍ଲାର କେତେ ଭାଗ ଲୋକଙ୍କ ଚେତନାକୁ ଓଲଟପାଟଲ କରିପାରିଲା ? ଗତ ୫ ବର୍ଷ ତଳେ ହଳଦୀକୁଣ୍ଡ ଗାଁରେ ଏମିତି ଏକ ନକାରାତ୍ମକ ଘଟଣା ଘଟିଲା, ଯାହା ଆମ ସମସ୍ତଙ୍କ ଅନ୍ତରାତ୍ମାକୁ ଦୋହଲାଇଦେଲା । ଏଇ ହଳଦୀକୁଣ୍ଡ ଥିଲା କୋୟାମାନଙ୍କର ଏକ ସଚେତନ ଗାଁ । ଏଇଠି ହିଁ ଥିଲା ଏକ ଏନ୍.ଜି.ଓ., ଯାହାର ନାମ ଥିଲା "କୋୟା" । ସ୍ୱାସ୍ଥ୍ୟ, ଶିକ୍ଷା, ବନ୍ଧୁଆ ଶ୍ରମିକ ବା ଗୋତି ମୁକ୍ତି ଏବଂ ଜୈବିକ ପାରମ୍ପରିକ ମିଶ୍ରିତ କୃଷିକୁ ନେଇ ବହୁ ସଫଳ ଯୋଜନା ଏହା ତରଫରୁ ଗାଁ ଅଞ୍ଚଳର ଯୁବକ ଯୁବତୀମାନଙ୍କୁ ନେଇ ଅନୁଷ୍ଠିତ କରାଯାଇଥିଲା । ଆଦିବାସୀ ସଂଘ ତରଫରୁ ମଧ୍ୟ ଏଠାରେ ଜଙ୍ଗଲ ଜମି ଆନ୍ଦୋଳନ କରି ଜଙ୍ଗଲ ଅଧିକାର ହାସଲ କରାଯାଇଥିଲା । ବହୁ ସଚେତନତା କ୍ଲାସ କରା ହୋଇଥିଲା । ଅଥଚ ଏଇ ଗାଁରେ ଜଣେ ନେତୃସ୍ଥାନୀୟ ବୁଢ଼ାଙ୍କ ମୃତ୍ୟୁପରେ, ନିଜକୁ ପାଙ୍ଗିନିଆ ବୋଲି ଦାବ କରୁଥିବା ବୁଲା ମାଡକାମୀ ଓ ତାର ପୁଅ ବୁଦ୍ରା

ମାଡ଼କାମିକୁ ଗାଁଲୋକେ ଦଳବଦ୍ଧ ଆକ୍ରମଣ କରି ବିଭିନ୍ନ ପ୍ରକାର ଅତ୍ୟାଚାର କରି (ଦାନ୍ତଭାଙ୍ଗି, ବିଷ୍ଠା ଖୁଆଇ) ହତ୍ୟା କଲେ ଓ ସେଇ ମୃତ ବ୍ୟକ୍ତିଙ୍କ ଚିତା ସହିତ ସେ ଦୁଇ ମୃତ ଦେହକୁ ଜଳାଇ ଦେଲେ । ମାଲ୍‌କାନ୍‌ଗିରି ଜିଲ୍ଲାରେ ଚାଲୁଥିବା କ୍ଷୀଣସ୍ରୋତ ହେତୁବାଦୀ ଆନ୍ଦୋଳନର ଏହା ଥିଲା ଏକ ଆଖି ଦୃଶିଆ ପରାଜୟ । ଆମେ ସମସ୍ତେ ନିଜକୁ ପ୍ରଶ୍ନ କଲୁ, ଏହା କେମିତି ଘଟିଲା ? କେମିତି ଘଟି ପାରିଲା ? କେତେ ଗଭୀରରେ ରହିଛି ଅନ୍ଧବିଶ୍ୱାସର ଚେର ? ଏହାକୁ କ'ଣ ସତରେ ଆମେ କିମ୍ବା ଓଡିଶାର ହେତୁବାଦୀ ଆନ୍ଦୋଳନ ଉନ୍ମୂଳନ କରିପାରିବ ?

ଏବେ ମାଲକାନ୍‌ଗିରି, କୋରାପୁଟ, ନବରଙ୍ଗପୁର ଓ ରାୟଗଡା ଓ କେ.ବି.କେ ର ସବୁ ଜିଲ୍ଲାରେ ସତେ ଯେପରି ସଭ୍ୟତା ପଛକୁ ଫେରୁଚି । ସେ କାଶୀପୁର ହେଉ କି ନନ୍ଦା ହାଣ୍ଡି, ଅପପୁଷ୍ଟି ଜନିତ ଶିଶୁ ମୃତ୍ୟୁ ଯେପରି ବଢ଼ି ବଢ଼ି ଚାଲିଛି, ସେହିଭଳି ବଢୁଛି ଝାଡାବାନ୍ତି ଜନିତ ମୃତ୍ୟୁ । ଟ୍ୟୁବ୍‌ୱେଲ୍ ଅଛି, ହେଲେ ପାଣି ନାହିଁ । ପ୍ରତିପଞ୍ଚାୟତରେ ଡାକ୍ତରଖାନା ଅଛି, ହେଲେ ଡାକ୍ତର ନାହାନ୍ତି । ପାରମ୍ପରିକ କୃଷି ବିଦାୟ ନେଉଛି । ଆସିଯାଇଛି କର୍ପୋରେଟ୍ - ବିହନ । ପ୍ରଚୁର ଖର୍ଚ୍ଚକରି ଚାଷୀ ଯେଉଁ ଫସଲ ଉପୁଜାଉଛି, ତା'ର ଅଧାମୂଲ୍ୟ ମଧ୍ୟ ସେ ପାଉନାହିଁ । ସମତଳ ଅଞ୍ଚଳଭଳି ଏଠାରେ ଅବଶ୍ୟ ଆତ୍ମହତ୍ୟାର ହାର କମ୍ । କାରଣ ସେ ଚାଷବାସ ଛାଡିଦେଇ ଦାଦନ ଯିବାକୁ ଅଧିକ ଲାଭଦାୟକ ମଣୁଛି । ଯଦିଓ ସେ ଭଲଭାବେ ଜାଣିଛି ଯେ ପ୍ରବାସରେ ତାକୁ ଅପେକ୍ଷା କରିଛି ପ୍ରତାରଣା, କଠୋର ପରିଶ୍ରମ, ନିର୍ଯାତନା ଓ ହୁଏତ ମୃତ୍ୟୁ । ଏଣେ ବୋଝ ଉପରେ ନଳିତା ବିଡା ଭଳି ଗାଁ ଗାଁରେ ଉତ୍ତର ପୂର୍ବ ଭାରତଭଳି ପୁନରାବୃତ୍ତି ହେଉଚି ସବୁଜ ଶିକାର ବାହିନୀର ନିଷ୍ଠୁର କାର୍‌ନାମା-ମିଥ୍ୟା ଏନ୍‌କାଉଣ୍ଟର, ଧର୍ଷଣ ଓ ଗଣହତ୍ୟା ବା ଗଣ ନିର୍ଯାତନା ।

ତେଣୁ ହେତୁବାଦୀ ଚେତନାର ପ୍ରସାରଣ ପାଇଁ ସ୍ପେସ୍ ଅର୍ଥାତ୍ ସ୍ଥାନ ବା ସୁଯୋଗ କାହିଁ ? ଯେଉଁମାନେ ସେ ଚେତନାର ପ୍ରସାରଣ କରିଥାନ୍ତେ, ସେମାନେ ସରକାରୀ କର୍ମଚାରୀ ହୋଇଥିଲେ ସେମାନଙ୍କ ପ୍ରତି ଲୋକଙ୍କ ବିଶ୍ୱାସ ଆସିବା କାଠିକର ପାଠ । ଆଉ ଏନ୍.ଜି.ଓ. ହୋଇଥିଲେ, ସେମାନଙ୍କ ପ୍ରତି ସରକାରଙ୍କ ଆଭିମୁଖ୍ୟ ନକାରାତ୍ମକ ହେବାର ଆଶଙ୍କା ପ୍ରଚଣ୍ଡ । ଆଉ ସାହିତ୍ୟିକମାନଙ୍କ ଭୂମିକା ଏତେ ପରୋକ୍ଷ ଯେ, ଯଦି ବି କେହି ସାହିତ୍ୟିକ କିଛି ଭଲ ଲେଖା ଲେଖିଥିବେ, ତାକୁ ଏଇ ସବୁ ଅଭାବୀ କ୍ଷୁଧାପୀଡିତ ଲୋକଙ୍କ ପାଖରେ ପହଞ୍ଚାଇବାପାଇଁ ଆଉ ଜଣେ ହେତୁବାଦୀ ସଂଗଠକଙ୍କୁ ସେସବୁକୁ ଆତ୍ମସ୍ଥ ଓ ପୁନର୍କଥନ କରି ଲୋକଙ୍କ ପାଖରେ ପହଞ୍ଚାଇବାକୁ ପଡିବ । ଏଥିପାଇଁ ବିପୁଳ ଆୟୋଜନର ଆବଶ୍ୟକତା ରହିଛି ।

ଦକ୍ଷିଣ ଓ ପଶ୍ଚିମାଂଚଳର ଆଦିବାସୀ ବହୁଳ ଅଞ୍ଚଳକୁ ଛାଡି ଓଡିଶାର ବାକୀ ଯେଉଁ ସମତଳ ଅଞ୍ଚଳ ରହି ଯାଉଛି, ସେଠାରେ ହେତୁବାଦର ସ୍ଥିତି ବିଷୟ ନକହିବା ଭଲ । ଚାଷୀ

ଆତ୍ମହତ୍ୟା ଓ ଦଳିତ ନିର୍ଯ୍ୟାତନାର ହାର ସେସବୁ ଅଞ୍ଚଳରେ ତୁଳନାତ୍ମକ ଭାବେ ଯେଭଳି ଅଧିକ, ଠିକ୍ ସେହିଭଳି ସୁରବାବା, ସାରଥୀବାବାମାନଙ୍କ ପ୍ରତି ଅନ୍ଧ ଶ୍ରଦ୍ଧା ଓ ଆଗ୍ରହର ହାର ମଧ୍ୟ ଅଧିକ । ଗାଁ ଗାଁରେ ମନ୍ଦିର, ଶିକ୍ଷା ବେପାରର ଆଡ୍‌ଡାସ୍ଥଳୀ ଗଢ଼ି ଉଠିବା ସଙ୍ଗେ ସଙ୍ଗେ ଦାଦନ ଦଲାଲ, ଚିଟ୍‌ଫଣ୍ଡ୍ ଓ ରାଜନୈତିକ ଠିକାଦାରମାନଙ୍କ ଆଡ୍‌ଡା ଗଢ଼ି ଉଠିବାରେ ଲାଗିଛି । ଅର୍ଥାତ୍ ହେତୁବାଦର ପ୍ରସାର ପାଇଁ ଏସବୁ ସ୍ଥାନରେ ମଧ୍ୟ ଆବଶ୍ୟକୀୟ ପରିବେଷ୍ଟନୀ ନାହିଁ, ଶିକ୍ଷା ଅଛି, କିନ୍ତୁ ବୈଜ୍ଞାନିକ ଶିକ୍ଷା ନାହିଁ । ବିଜ୍ଞାନର ଶିକ୍ଷକମାନଙ୍କ ବେକରେ ଓ ହାତରେ ଡେଉଁରିଆ କିମ୍ବା ତୁଳସୀମାଳୀ । କ୍ଲାସ୍ ରୁମ୍‌ରେ ଯାହା, କ୍ଲାସ୍ ବାହାରେ ବ୍ୟକ୍ତିଗତ ଓ ସାମାଜିକ ଜୀବନରେ ତା'ର ସମ୍ପୂର୍ଣ୍ଣ ବିପରୀତ । ଆଗରୁ ଗାଁ ଗାଁରେ ଯେଉଁ କାଳେସୀ ସଂସ୍କୃତି ଥିଲା ତାହା ହ୍ରାସ ପାଇଛି ସତ କିନ୍ତୁ ସୁନ୍ଦରଗଡ଼ ଓ ମୟୁରଭଞ୍ଜରେ ଡାହାଣୀ ଅଭିଯୋଗରେ ହତ୍ୟା ନିର୍ଯାତନା କିଛି ହେଲେ କମିବାର ନାମ ନେଉନାହିଁ । 'ନଗଡ଼ା' ମାନଙ୍କ ସଂଖ୍ୟା ବଢ଼ିଛି । ଧର୍ମକୁ କେନ୍ଦ୍ର କରି ଉତ୍ସବ ଓ କର୍ମକାଣ୍ଡ ବଢ଼ିଛି, ଜାକ ଜମକ ବଢ଼ିଛି । କାଉଡିଆ ସଂସ୍କୃତି ବଢ଼ିଛି । ବାବା ମାତାର ସଂସ୍କୃତି ମଧ୍ୟ ବଢ଼ିଛି । ସାରା ଭାରତରେ ବୈଜ୍ଞାନିକ ଚିନ୍ତାଜଗତ୍‌ରେ ଘଟୁଥିବା ଯେଉଁ ସବୁ ପରିବର୍ତ୍ତନ କଥା ପ୍ରଥମରୁ ଉଲ୍ଲେଖ କରିଥିଲି ସେହି ପରିବେଷ୍ଟନୀ ସହ ଉପଯୁକ୍ତ ଯୋଗସୂତ୍ର ରକ୍ଷା କରି ବିଭିନ୍ନ ଅନୁଷ୍ଠାନ ଗଢ଼ି ଉଠୁଛି । ଏ ସମସ୍ତେ ମଣିଷର ସରଳ ଧର୍ମବିଶ୍ୱାସକୁ ଏକ ଦ୍ରବ୍ୟରେ ପରିଣତ କରି ବଜାରରେ କ୍ରୟ ବିକ୍ରୟ କରିବା ଆରମ୍ଭ କରିଛନ୍ତି । ନବମ ଦଶକରେ ଯେପରି ଅଯୋଧ୍ୟାର ମନ୍ଦିର ନିର୍ମାଣ ପାଇଁ ପ୍ରତି ଘରୁ ଗୋଟିଏ ଇଟା ବଦଳରେ ୧୦ ଟଙ୍କା କରି ସଂଗ୍ରହ କରାଯାଉଥିଲା, ବର୍ତ୍ତମାନ ମଧ୍ୟ ସେଭଳି ବହୁ କେନ୍ଦ୍ରୀୟ ବା ଆଞ୍ଚଳିକ ଧର୍ମ ଭିତ୍ତିକ ପ୍ରକଳ୍ପ କରାଯାଇ ପ୍ରତିଘରୁ ଅର୍ଥ ସଂଗ୍ରହ କରାଯାଉଛି, କେଉଁଠି ତାର ନାମ ଦକ୍ଷିଣା ତ କେଉଁଠି ବ୍ରତ ବା ପାରାୟଣ ବା ଚାନ୍ଦା । ସମାଜରେ ସଂଘର୍ଷ ବଢ଼ିଛି । ବ୍ରାହ୍ମଣବାଦର ପ୍ରାଦୁର୍ଭାବ ମଧ୍ୟ ବଢ଼ିଛି । ଏହିସବୁ ସଂଘର୍ଷ କେଉଁଠି ବିସ୍ଥାପିତମାନଙ୍କ ସହିତ ତ କେଉଁଠି ଆଦିବାସୀ ବା ଦଳିତ ବା ନାରୀମାନଙ୍କ ସହିତ । କାରଣ ନାରୀମାନଙ୍କ ପ୍ରତି ଦ୍ରବ୍ୟବାଦୀ ଦୃଷ୍ଟିକୋଣ ବଢ଼ି ବଢ଼ି ଚାଲିଛି । ଅନ୍ୟପକ୍ଷରେ ଏହିସବୁ ସଂଘର୍ଷ ସୂଚାଇ ଦେଉଛି ଯେ ନୀରବରେ ନିର୍ବିବାଦରେ ହେତୁବାଦୀ ଆନ୍ଦୋଳନ ଚଳାଇବା ପ୍ରାୟତଃ ଅସମ୍ଭବ । ହେତୁବାଦୀଙ୍କର ହତ୍ୟାର ଦୃଷ୍ଟାନ୍ତ ତ ରହିଛି । ଏବେ ଏବେ ଛତିଶଗଡ଼ରେ ସେ ହତ୍ୟାର ସିଲ୍‌ସିଲା ସାମ୍ବାଦିକ ଓ ଶିକ୍ଷକମାନଙ୍କ ପ୍ରତି ମଧ୍ୟ ପ୍ରସାରିତ ହୋଇ ଆସିଲାଣି । ଆମେ ବର୍ତ୍ତମାନ ଆପଣଙ୍କୁ ପ୍ରଶ୍ନ କରିବାର ସମୟ ଆସିଛି, ଏଭଳି ସଂଘର୍ଷମୟ ପରିସ୍ଥିତିରେ ଆମେ ହେତୁବାଦୀ ଆନ୍ଦୋଳନ ଚଳାଇବା ଲାଗି ବ୍ୟକ୍ତିଗତ, ମନୋଗତ ବା ସାଂଗଠନିକ ଭାବେ କେତେଦୂର ପ୍ରସ୍ତୁତ ?



# ଏକବିଂଶ ଶତାବ୍ଦୀର ମୁକ୍ତିଚେତନା

*ଡକ୍ଟର ମନୋରଂଜନ ମହାନ୍ତି*

'ଇନ୍‌କିଲାବ ଜିନ୍ଦାବାଦ' ଧ୍ୱନିର ପ୍ରଣେତା ଶହୀଦ ଭଗତ ସିଂହଙ୍କ ଜନ୍ମଶତାବ୍ଦୀ ଅବସରରେ ଆମେ ଆଗାମୀ ଯୁଗର ଆହ୍ୱାନର ମୁକାବିଲା କରିବାପାଇଁ କେତେଦୂର ପ୍ରସ୍ତୁତ ସେଇ ବିଷୟ ଆଲୋଚନା କରିବା । ବିପ୍ଳବୀ ଭଗତ ସିଂହଙ୍କ ସଂକ୍ଷିପ୍ତ ଜୀବନ କାଳରେ ତାଙ୍କର ମୁକ୍ତି ଚେତନା ଭାରତର ସମଗ୍ର ମୁକ୍ତିକାମୀ ଜନତାର ଚେତନାକୁ ଆଗେଇ ନେଇଥିଲା । ଭାରତର ଜନତା ତାଙ୍କ ଅବଦାନର ମହତ୍ତ୍ୱ ଗଲା ଦୁଇ ଦଶକରେ ଅଧିକରୁ ଅଧିକତର ବୁଝୁଛି । ଶତାବ୍ଦୀ ଅବସରରେ ଯେଉଁ ଚର୍ଚ୍ଚା ବିସ୍ତୃତ ଭାବେ ହୋଇଛି ଅନେକ ତାକୁ ଭାବଗତ ଭାବେ ବୀରତ୍ୱ ଓ ତ୍ୟାଗର ମହାନତାର ଆଖ୍ୟାଦେଇ ତାଙ୍କ ସ୍ମୃତି ଚାରଣ କରିଛନ୍ତି ଓ ଭଗତ ସିଂହଙ୍କ ଆଦର୍ଶ ଓ ଚିନ୍ତାଧାରାର ବୈଶିଷ୍ଟ୍ୟ ଉପରେ ଖୁବ୍ କମ୍ ଗୁରୁତ୍ୱ ଦେଇଛନ୍ତି । ଅପରପକ୍ଷରେ ସୌଭାଗ୍ୟର କଥା ଏ ଅବସରରେ ପ୍ରଥମଥର ପାଇଁ କେତେକ ଜନବାଦୀ ଲେଖକ ଓ ସଂଗଠନ ଭଗତ ସିଂହଙ୍କ ଚିନ୍ତାଧାରା ତଥା ତାଙ୍କର ଭୂମିକାର ପ୍ରାଞ୍ଜଳ ଚର୍ଚ୍ଚା କରିଛନ୍ତି । ସେଇ ଚର୍ଚ୍ଚାକୁ ଆମେ ମୁକ୍ତି ଚେତନାର ଚର୍ଚ୍ଚା କହି ପାରିବା ଓ ଏକବିଂଶ ଶତାବ୍ଦୀ ପରିପ୍ରେକ୍ଷୀରେ ତାର ଅର୍ଥ କ'ଣ ତାହା ବିଚାର କରିବା ।

## ମୁକ୍ତିଚେତନା କ'ଣ ?

ଉପନିବେଶବାଦ ଓ ସାମ୍ରାଜ୍ୟବାଦ ବିରୋଧରେ ଲଢ଼େଇର ଜଣେ ପୁରୋଧା ଥିଲେ ଭଗତ ସିଂହ । ଉପନିବେଶବାଦରୁ ମୁକ୍ତି ପାଇଁ ସେ ହିନ୍ଦୁସ୍ଥାନ ରିପବ୍ଲିକାନ ଆସୋସିଏସନ ୧୯୨୪ରେ ଗଠନ କରିଥିଲେ । ତା ସଙ୍ଗେ ସଙ୍ଗେ ଉପନିବେଶବାଦରୁ ସ୍ୱାଧୀନତା ହାସଲ

କରି କୋଉ ପ୍ରକାର ସମାଜ ଗଢ଼ିବା ସେ ବିଷୟରେ ଚିନ୍ତା କରିବା ଓ ବିକଳ୍ପ ସମାଜର ରୂପରେଖ ଦେବା ପାଇଁ ଉଦ୍ୟମ କରିବା ପାଇଁ ନୂତନ ଚେତନା ସୃଷ୍ଟି କରିବା ଉପରେ ଭଗତ ସିଂହ ଗୁରୁତ୍ୱ ଦେଇଥିଲେ । ୧୯୨୮ରେ ଯେତେବେଳେ ସେ ହିନ୍ଦୁସ୍ଥାନ ସୋସାଲିଷ୍ଟ ରିପବ୍ଲିକାନ ଆସୋସିଏସନ ଗଢ଼ିଲେ ଏହା ସ୍ପଷ୍ଟ ହୋଇଥିଲା । ସାମ୍ରାଜ୍ୟବାଦରୁ ମୁକ୍ତି ସଙ୍ଗେ ସଙ୍ଗେ ବିଦେଶୀ ଏବଂ ଦେଶୀ ପୁଞ୍ଜିବାଦୀଙ୍କ କବଳରୁ ଶ୍ରମିକ ଓ କୃଷକଙ୍କୁ ମୁକ୍ତ କରିବା ଏକାନ୍ତ ଆବଶ୍ୟକ ବୋଲି ତାଙ୍କର ଆହ୍ୱାନ ଥିଲା ।

ମହାତ୍ମା ଗାନ୍ଧୀ ମଧ୍ୟ ଠିକ୍ ସେହିପରି କହିଥିଲେ ଯେ ହିନ୍ଦ୍ ସ୍ୱରାଜ ଅର୍ଥ ନୁହେଁ ଗୋରା ସାହେବଙ୍କୁ ଗାଦିରୁ ହଟାଇ ଶ୍ୟାମଳ ବାବୁ ମାନଙ୍କୁ କ୍ଷମତା ସମର୍ପିବା । ସବୁ କ୍ଷେତ୍ରରେ ସବୁ ଗୋଷ୍ଠୀ ପାଇଁ ସ୍ୱରାଜ ପ୍ରତିଷ୍ଠା କରିବା ଗ୍ରାମ ସ୍ୱରାଜଠାରୁ ନେଇ ନିଷ୍ପେସିତ ଗୋଷ୍ଠୀ ମାନଙ୍କ ପାଇଁ ସ୍ୱରାଜ ହାସଲ କରିବା ଉପନିବେଶ ବିରୋଧୀ ଆନ୍ଦୋଳନର ଲକ୍ଷ୍ୟ ।

ଠିକ୍ ସେମିତି ବାବା ସାହେବ ଆମ୍ବେଦକର ଦଳିତମାନଙ୍କ ମୁକ୍ତି ଉପରେ ଗୁରୁତ୍ୱ ଦେଇ କହିଥିଲେ ଯେ ରାଜନୈତିକ ସ୍ୱାଧୀନତା ସଂପୂର୍ଣ୍ଣ ସ୍ୱାଧୀନତା ନୁହେଁ । ରାଜନୈତିକ ସମତା ବା ପ୍ରତ୍ୟେକ ନାଗରିକର ଭୋଟଦେବା ଅଧିକାରର ମୂଲ୍ୟ ନାହିଁ, ଯେ ପର୍ଯ୍ୟନ୍ତ ସାମାଜିକ ସମତା ଜାତି ବର୍ଣ୍ଣ ନିର୍ବିଶେଷରେ ସବୁ ନାଗରିକର ସାମାଜିକ ସମ୍ମାନ ସମତାପନ୍ନ ହୋଇନାହିଁ ।

ଭଗତ ସିଂହ, ଗାନ୍ଧୀ, ଆମ୍ବେଦକର ସମସ୍ତେ ମୁକ୍ତିର ଏକ ବ୍ୟାପକ ପରିଭାଷା ଦେଇଥିଲେ । ଉପନିବେଶବାଦୀ ଶାସନର ପତନ ହୋଇଥିଲେ ବି ଉପନିବେଶବାଦର ଗଭୀର ପ୍ରଭାବ ରହିଛି । ସେ ସଂଗ୍ରାମୀକୁ ଶ୍ରେଣୀ, ବର୍ଣ୍ଣ ଓ ଲିଙ୍ଗଗତ ଆଧିପତ୍ୟ ବୈଷମ୍ୟ ବିରୁଦ୍ଧରେ ଚାଲିଥିବା ସଂଗ୍ରାମ ସହିତ ମିଶାଇବାକୁ ହେବ । ଅର୍ଥାତ୍, ମୁକ୍ତି ସଂଘର୍ଷର ପରିସର ମଣିଷର ଚେତନା ଉପରେ ନିର୍ଭର କରେ । ଯେଉଁ କ୍ଷେତ୍ରରେ ସେ ନିଜକୁ ଅତ୍ୟାଚାରିତ ବୋଲି ଅନୁଭବ କରେ ସେ ଆଧିପତ୍ୟରୁ ମୁକ୍ତି ପାଇବା ପାଇଁ ସେ ଅଭିଯାନ ଆରମ୍ଭ କରେ । ସେଥିପାଇଁ ଏକବିଂଶ ଶତାବ୍ଦୀର ମୁକ୍ତି ଚେତନା ବିଂଶ ଶତାବ୍ଦୀ ଅପେକ୍ଷା ଆହୁରି ବିସ୍ତୃତ ଯଦିଓ ଉପନିବେଶ ଶାସନ ଓ ସାମନ୍ତବାଦର ଅନେକମାତ୍ରାରେ ବିଲୟ ଘଟିଛି ।

## ଏକବିଂଶ ଶତାବ୍ଦୀର ବୈଶିଷ୍ଟ୍ୟ : ଜନଗଣଙ୍କ ଆତ୍ମନିର୍ଣ୍ଣୟ

ଏକବିଂଶ ଶତାବ୍ଦୀର ବୈଶିଷ୍ଟ୍ୟ ହେଲା ବିଶ୍ୱବ୍ୟାପୀ ବଢ଼ିଚାଲିଥିବା ଗଣତାନ୍ତ୍ରିକ ଜନ ଚେତନା । ପ୍ରତ୍ୟେକ ବ୍ୟକ୍ତି କିପରି ତାର ପ୍ରତିଭାକୁ ଚାରିତାର୍ଥ କରିପାରିବ । ସେଥିପାଇଁ ଯେତେ ପ୍ରକାର ବାଧାବିଘ୍ନ ସମାଜରେ ରହିଛି, ସେସବୁକୁ ହଟେଇବା ପାଇଁ ପ୍ରଚେଷ୍ଟା କରି ଯେଉଁ ବ୍ୟବସ୍ଥା ଫଳରେ ପ୍ରତ୍ୟେକ ଅଞ୍ଚଳରେ ପ୍ରତ୍ୟେକ ଗୋଷ୍ଠୀ ଓ ବିଶେଷକରି ଦରିଦ୍ର ଓ

ପଛୁଆ ଗୋଷ୍ଠୀର ବିକାଶ ପାଇଁ ଅନୁକୂଳ ପରିସ୍ଥିତି ସୃଷ୍ଟି ହେବ ସେଥିପାଇଁ ଯେଉଁ ପ୍ରକ୍ରିୟା ଚାଲିଛି ତାହାହିଁ ଏ ଯୁଗର ବୈଶିଷ୍ଟ୍ୟ ।

ବିଗତ ବିଂଶଶତାବ୍ଦୀ ଥିଲା ରାଷ୍ଟ୍ରକୁ ସ୍ୱାଧୀନ କରିବାର, ରାଷ୍ଟ୍ରୀୟ ଆତ୍ମନିର୍ଣ୍ଣୟର ଶତାବ୍ଦୀ । ସେ ପକ୍ରିୟାକୁ ରୂପ ଦେଇଥିଲା ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମ ଯାହାର ସାରଥୀମାନେ ଥିଲେ ଭଗତସିଂହ, ମହାତ୍ମାଗାନ୍ଧି, ଆମ୍ବେଦକର । ସେ ପ୍ରକ୍ରିୟାକୁ ଗଭୀରତା ଦେଇଥିଲା ରୁଷ ବିପ୍ଳବ ଓ ଚୀନ ବିପ୍ଳବ ଯାହା ଶ୍ରେଣୀଗତ ଶୋଷଣ ବିରୁଦ୍ଧରେ ଜନ ଆନ୍ଦୋଳନ କରିଥିଲା ଓ ଖଟିଖିଆ ଶ୍ରମିକ ଓ କୃଷକ ଅଧିକାର ଉପରେ ଗୁରୁତ୍ୱ ଦେଇଥିଲା । ଯେ ଶ୍ରମ ଦେଇ ଉତ୍ପାଦନ କରେ ସମାଜ ଗଠନରେ ତାର କ୍ଷମତା ସବୁଠୁ ଉଚ୍ଚରେ ରହିବା ଉଚିତ୍ । ସେ ଚିନ୍ତାଧାରା ଆମ ଆଗରେ ରଖିଥିଲା ଉପନିବେଶବାଦରୁ ଓ ଶ୍ରେଣୀଗତ ଶୋଷଣର ମୁକ୍ତି ପ୍ରକ୍ରିୟାକୁ  ଆହୁରି ଗଭୀରତର କରିଥିଲା ବିଂଶ ଶତାବ୍ଦୀର ଶେଷ ତିନି ଦଶକର ଜନ ଆନ୍ଦୋଳନ ବିଶେଷକରି ନାରୀ ମୁକ୍ତି ଆନ୍ଦୋଳନ, ଦଳିତ ଓ ଆଦିବାସୀଙ୍କ ସ୍ୱାଧିକାର ଆନ୍ଦୋଳନ ଏବଂ ପରିବେଶ ଆନ୍ଦୋଳନ ।

ମାନବର ସ୍ୱାଧୀନତା ଏବଂ ମୁକ୍ତିର ପରିବର୍ଦ୍ଧିତ ସଂଜ୍ଞା ଏଇସବୁ ଜନ ଆନ୍ଦୋଳନ ଦର୍ଶାଇଛନ୍ତି । ଉପନିବେଶବାଦର ପୂର୍ଣ୍ଣ ଉଚ୍ଛେଦ ଖାଲି ବିଦେଶୀରାଜକୁ ତଡିଦେଲେ ହେବନାହିଁ, ଗଣତନ୍ତ୍ର ଖାଲି ଖୋଲା ନିର୍ବାଚନ ନୁହେଁ, ଏସବୁ ସାଙ୍ଗେ ସାଙ୍ଗେ ଏକ ବହୁବିଧ ମୁକ୍ତି ପ୍ରକ୍ରିୟା ଯାହା ଫଳରେ ବ୍ୟକ୍ତି ଓ ଗୋଷ୍ଠୀ ନିଜର ଜୀବନ ଉପରେ ନିଜର କର୍ତ୍ତୃତ୍ୱ ରଖିପାରିବ ଏବଂ ସାମୂହିକ ମଙ୍ଗଳ ସମ୍ଭବ ହେବ ତାହା ହେଲା ବିଂଶ ଶତାବ୍ଦୀର ଐତିହ୍ୟ ।

ସେଇ ଐତିହ୍ୟକୁ ଆହୁରି ସ୍ୱଚ୍ଛ କରି ଆଗେଇ ନେଇଛି ଏକବିଂଶ ଶତାବ୍ଦୀର ମୁକ୍ତି ଚେତନା । ରାଷ୍ଟ୍ରୀୟ ଆତ୍ମନିର୍ଣ୍ଣୟକୁ ବିସ୍ତାର କରି ଜନଗଣଙ୍କ ଆତ୍ମନିର୍ଣ୍ଣୟର ନୂଆ ଇସ୍ତାହାରର ଇଙ୍ଗିତ ଦେଇଛି ବର୍ତ୍ତମାନର ଏକବିଂଶ ଶତାବ୍ଦୀ । ଦେଶ ସ୍ୱାଧୀନ ହେବା ସାଙ୍ଗେ ସାଙ୍ଗେ ଦେଶ ଭିତରେ ଥିବା ସବୁ ଜାତୀୟ ସମୂହ ବା Nationalist  ମଧ୍ୟ ଆତ୍ମନିର୍ଣ୍ଣୟର ସୁଯୋଗ ପାଆନ୍ତୁ । ଭାରତର ସ୍ୱାଧୀନତା ବଜାୟ ରହୁ ତା ସହିତ ଓଡିଆ, ତାମିଲ, ଅସାମିୟା ଇତ୍ୟାଦିଙ୍କ ସଂସ୍କୃତି, ଅର୍ଥନୀତି ଓ ରାଜନୀତିକ ଆତ୍ମ ପରିଚୟର ଉନ୍ନତି ହେଲା ତାଙ୍କ ଭିତରେ ଆହୁରି ଛୋଟ ଛୋଟ ଜାତୀୟ ଗୋଷ୍ଠୀ ଯଥା – ସାନ୍ତାଳ ବା କାର୍ବିଙ୍କୁ ସେଇ ପ୍ରକାର ଅଧିକାର ମିଳୁ । ଭଗତ ସିଂହଙ୍କ ହିନ୍ଦୁସ୍ଥାନ ରିପବ୍ଲିକ ସେଇ ସଂଘୀୟ ବ୍ୟବସ୍ଥା ଓ ବିକେନ୍ଦ୍ରିତ କ୍ଷମତା ଉପରେ ଜୋର ଦେଇଥିଲା । ଗାନ୍ଧୀଙ୍କ ଗ୍ରାମ ସ୍ୱରାଜ ପଛରେ ମଧ୍ୟ ସେହି ଧାରଣା ଥିଲା । କିନ୍ତୁ ଆଜି ଆମେ ସେମାନଙ୍କ ଧାରଣାର ଖିଅକୁ ଆହୁରି ଆଗେଇ ନେବାକୁ ବାଧ କାରଣ ପ୍ରତ୍ୟେକ ଗୋଷ୍ଠୀ ଆଜ ସଚେତ ନିଜର ଅଧିକାର ପାଇଁ ଏବଂ କ୍ଷମତା ବଣ୍ଟନର ଏକ ନୂଆ ବାସ୍ତବରୂପ ଆଡ଼କୁ ପ୍ରତ୍ୟେକ ଦେଶ ଚାଲିଛନ୍ତି । ଯେଉଁ ଦେଶର ନେତା ଏହାକୁ ଗ୍ରହଣ କରୁନାହାନ୍ତି ସେଠି ସଂଘର୍ଷ ଘନୀଭୂତ ହେଉଛି ।

ଜନଗଣଙ୍କ ଆତ୍ମନିର୍ଣ୍ଣୟ ସବୁ କ୍ଷେତ୍ରରେ ପ୍ରକାଶ ପାଉଛି । ନାରୀ ମୁକ୍ତି ଆନ୍ଦୋଳନ ଦର୍ଶାଇଛି ଯେ ମୁକ୍ତି ପ୍ରକ୍ରିୟାର ବହୁଦିଗ ଅଛି । ବ୍ୟବସ୍ଥା ପରିବର୍ତ୍ତନ ଆର୍ଥିକ, ସାଂସ୍କୃତିକ ଓ ରାଜନୈତିକ ସବୁ କ୍ଷେତ୍ରରେ ନହେଲେ ନାରୀ ସ୍ୱାଧୀନତା ଓ ନାରୀ ପୁରୁଷଙ୍କ ସମତା ହାସଲ କରିହେବ ନାହିଁ । ପଞ୍ଚାୟତ ଓ ନଗର ସଂସ୍ଥାରେ ଏକ ତୃତୀୟାଂଶ ସ୍ଥାନ ନାରୀଙ୍କ ପାଇଁ ସଂରକ୍ଷଣ ଯେତେ ସ୍ୱାଗତଯୋଗ୍ୟ ହେଲେ ବି ଯେ ପର୍ଯ୍ୟନ୍ତ ନାରୀମାନଙ୍କ ସଂପତ୍ତି ଅଧିକାର, କାମର ସୁଯୋଗ, ଶିକ୍ଷା ଓ ସ୍ୱାସ୍ଥ୍ୟ ବ୍ୟବସ୍ଥା ଅଧିକ ଦିଆଯାଇନି ଏବଂ ପୁରୁଷ ପ୍ରଧାନ ସଂସ୍କୃତିରେ ପରିବର୍ତ୍ତନ ଆସିନାହିଁ ସେ ପର୍ଯ୍ୟନ୍ତ ତାଙ୍କର 'ସଶକ୍ତିକରଣ' ହୋଇପାରେନା ।

ଜାତିପ୍ରଥାରୁ ଯେତେ ପ୍ରକାର ଶୋଷଣ ବାହାରିଛି ତା ବିରୁଦ୍ଧରେ ଆଜି ବହୁତ ସ୍ୱର ଉତ୍ତୋଳନ ହେଉଛି । ଦଳିତ ମୁକ୍ତି ଖାଲି ସ୍ଥାନ ସଂରକ୍ଷଣ ଦ୍ୱାରା ସମ୍ଭବ ନୁହେଁ ଯଦିଓ ତାହା ନିଶ୍ଚୟ ଆବଶ୍ୟକ । ଯେ ପର୍ଯ୍ୟନ୍ତ ବହୁମୁଖୀ ମୁକ୍ତି ପ୍ରକ୍ରିୟାର ବ୍ୟବସ୍ଥା ନହୋଇଛି ଭୂମିହୀନଙ୍କୁ ଜମି ଯୋଗାଇବା ଓ ଗରିବଙ୍କୁ ଉତ୍ପାଦନକ୍ଷମ ସଂପତ୍ତି ଯୋଗାଇବାଠାରୁ ଆରମ୍ଭ କରି ଶିକ୍ଷା ଓ ସ୍ୱାସ୍ଥ୍ୟ ଦ୍ୱାରା ସମାଜରେ ସକ୍ଷମ କରିବା ସାଙ୍ଗେ ସାଙ୍ଗେ ଏକ ନୂଆ ସମତାପନ୍ନ ସଂସ୍କୃତିର କାର୍ଯ୍ୟକ୍ରମକୁ ନିତିଦିନିଆ ଜୀବନରେ ପାଳନ କରାନଯାଇଛି ସେ ପର୍ଯ୍ୟନ୍ତ ଦଳିତ ମୁକ୍ତି ସମ୍ଭବ ନୁହେଁ ।

## ଗଣମୁକ୍ତି ବନାମ ଜଗତୀକରଣ :

ବର୍ତ୍ତମାନର ଯୁଗକୁ ଅନେକ ଜଗତୀକରଣ ଯୁଗ ବୋଲି ଆଖ୍ୟା ଦିଅନ୍ତି । ପ୍ରଚାର ମାଧ୍ୟମର କବଳରେ ଆମେ ଏମିତି ପଡିଯାଇଛେ ଏବଂ ନୂଆ ଅର୍ଥନୀତିର ଚାକଚକ୍ୟ, ଟି.ଭି, ଇଣ୍ଟରନେଟ୍, ବଡ଼ବଜାର ଛାପ ଆମ ମନକୁ ବିଶେଷକରି ସହରବାସୀ ଓ ପଇସାବାଲା ଗୋଷ୍ଠୀଙ୍କୁ ଏମିତି ଘାରିଛି ଆମକୁ ଆଉ କିଛି ଦିଶୁନାହିଁ ।

ଏଇଟା ଜଗତୀକରଣ ଯୁଗ ନାଁ ନୂଆ ଜନଚେତନାର ଯୁଗ ? ଆସନ୍ତୁ ଆମେ ନିଜକୁ ପଚାରିବା । ଝରକା ସେପଟେ କ'ଣ ହେଉଛି ଦେଖିବା । ପୃଥିବୀର ବିଭିନ୍ନ ଅଞ୍ଚଳରେ ଏଇ ନୂଆ ଚେତନା କି ପ୍ରକାର ରୂପ ନେଇଛି ତା'ର ଅନୁଧ୍ୟାନ କରିବା ।

ଜଗତୀକରଣର ଯୋଉ ଅର୍ଥଟା ସାଧାରଣ ମାନସରେ ବ୍ୟାପୁଛି ତାହା ଜଗତୀକରଣର ଅସଲ ରୂପଟାକୁ ଘୋଡାଇ ଦେଇଛି । ଆମକୁ କୁହାଯାଉଛି ଜଗତୀକରଣ ଅର୍ଥ ପୃଥିବୀକୁ ସିଧାସଳଖ ଯୋଡ଼ିବା, ଗଣମାଧ୍ୟମ ଓ ଯାତାୟତରେ ଯେଉଁ ଅଭୂତପୂର୍ବ ଉନ୍ନତି ଘଟିଛି ବିଶେଷକରି ଗଲା ଦୁଇ ଦଶକରେ ଉପଗ୍ରହ ଦ୍ୱାରା ଶୂନ୍ୟ ଆକାଶ ଦେଇ ଯୋଉ ଯୋଗାଯୋଗ ପ୍ରତିଷ୍ଠା ହୋଇଛି ଯାହା ଫଳରେ ଇଣ୍ଟରନେଟ୍ ଜରିଆରେ ପୃଥିବୀର ଯେକୌଣସି ଜାଗା ସହିତ ଆମେ ତତ୍‌କ୍ଷଣାତ ସଂପର୍କ କରିପାରିବା ସେଇଟା ହେଲା ଜଗତୀକରଣ ।

ଏ ପ୍ରକ୍ରିୟା ଯେ ଘଟିଛି ତାହା ସତ୍ୟ । କିନ୍ତୁ ଏଭଳି ପ୍ରକ୍ରିୟା ବିଶ୍ୱ ଇତିହାସରେ ଆଗରୁ ବି ଘଟିଛି । ଯାହା ଫଳରେ ଗୋଟିଏ ଦେଶରୁ ଆଉ ଗୋଟିଏ ଦେଶକୁ ସଂସ୍କୃତି, ବିଜ୍ଞାନ ପ୍ରସାରିତ ହୋଇଛି ଏବଂ ସାମ୍ରାଜ୍ୟବାଦ ମଧ୍ୟ ଅଙ୍କୁଶ ବିସ୍ତାର କରିଛି । ତେଣୁ ପଚାରିବା କଥା ବର୍ତ୍ତମାନ ଏ ବୈଜ୍ଞାନିକ ସରବରାହ ପଦ୍ଧତି ଦ୍ୱାରା କି ପ୍ରକାର ଅର୍ଥନୈତିକ, ରାଜନୈତିକ ଓ ସାଂସ୍କୃତିକ ଧାରା ନୂଆ ରୂପନେଇଛି ।

ଜଗତୀକରଣର ରାଜନୈତିକ ଅର୍ଥନୈତିକ ସଂଜ୍ଞା ପ୍ରତି ଧ୍ୟାନ ଦେବାକୁ ପଡିବ, ଖାଲି ନୂଆ ପ୍ରକ୍ରିୟାଟାକୁ ବର୍ଣ୍ଣନା କରିଦେଲେ ଆମେ ତାର ଅସଲ ଅର୍ଥ, ମୂଳ ରୂପ ଦେଖିପାରିବା ନାହିଁ ।

ଜଗତୀକରଣ ହେଲା ବିଶ୍ୱ ସ୍ତରରେ ପୁଞ୍ଜିବାଦର ଏକ ନୂତନ ଅଧ୍ୟାୟ । ଏକଥା ଖାଲି ମାର୍କ୍ସବାଦୀମାନେ କହୁନାହାନ୍ତି, ଉଦାରବାଦୀ ଓ ପୁଞ୍ଜିବାଦୀମାନେ ମଧ୍ୟ ସ୍ପଷ୍ଟ ଭାବେ କହୁଛନ୍ତି । ସୋଭିଏତ ସଂଘର ବିଲୟପରେ ଏବଂ ତୃତୀୟ ବିଶ୍ୱରେ ଭାରତ ଭଳି ଦେଶର ଆର୍ଥିକ ସଂକଟ ପରେ ପଶ୍ଚିମ ଦେଶମାନେ ବିଶେଷ କରି ମାର୍ଗାରେଟ ଥାଚରଙ୍କ ନେତୃତ୍ୱରେ ବ୍ରିଟେନ ଓ ରେଗାନଙ୍କ ନେତୃତ୍ୱରେ ଯୁକ୍ତରାଷ୍ଟ୍ର ଆମେରିକା ପୁଞ୍ଜିବାଦକୁ ସିଧା ସଳଖ ରାଷ୍ଟ୍ରୀୟ ସତ୍ତା ଦ୍ୱାରା ସମସ୍ତ ପ୍ରକାର ସ୍ୱାଧୀନତା ଦେଉଥିଲେ । ଯାହାଫଳରେ ଉଦ୍ୟୋଗପତି ଓ ବ୍ୟବସାୟୀମାନେ ଅବାଧଭାବେ ନିଜର ପୁଞ୍ଜି ବିନିଯୋଗ କରି ଯେଉଁଥିରୁ ଅଧିକ ଲାଭ ପାଇବେ ସେଇ ଉତ୍ପାଦନ ଓ ବ୍ୟବସାୟ କରିଚାଲିଲେ । ସେଇଆକୁ ପୃଥିବୀ ସାରା ବଢ଼େଇବା ହେଲା ଜଗତୀକରଣ । ରାଷ୍ଟ୍ର ବା ଦେଶର ସରକାରଙ୍କ କଟକଣା ଉଠାଇଦେଇ ବାହାରର ପୁଞ୍ଜିପତି ନିଜ ଉତ୍ପାଦିତ ଦ୍ରବ୍ୟ ଅନ୍ୟଦେଶରେ ବିକ୍ରୟ କରିପାରିବେ । ଯୋଉଠି କଞ୍ଚାମାଲ ଅଛି ସେଠି ବିଦେଶୀ ପୁଞ୍ଜି ପହଞ୍ଚିପାରିବ । ଦେଶ ଭିତରେ ପୁଞ୍ଜିପତି ମଧ୍ୟ ସେଇକଥା ନିଜ ଆର୍ଥିକ ଲାଭକୁ ଦେଖି କରିପାରିବେ । ଜଗତୀକରଣ ହେଲା ଜଗତବ୍ୟାପୀ ନିଶ୍ଚିତ ଅର୍ଥାତ୍ ସରକାର ପୁଞ୍ଜି ଉପରେ କଟକଣା ଉଠାଇଦେଲେ ହିଁ ଏହା ସମ୍ଭବ । ଏହା ଘରୋଇକରଣ ମଧ୍ୟ ଅର୍ଥାତ୍ ସରକାର ନିଜେ ଯୋଉ ଶିଳ୍ପ ବା ବ୍ୟବସାୟ କରୁଥିଲେ ତାକୁ ବେସରକାରୀ ସଂସ୍ଥା ବା ଉଦ୍ୟୋଗପତିଙ୍କୁ ଦେବେ । ତେଣୁ ଜଗତୀକରଣ, ଉଦାରୀକରଣ ଓ ଘରୋଇକରଣ ଏକାଠି ଚାଲିଥାଏ ।

ଜଗତୀକରଣ ଖାଲି ଏକ ଅର୍ଥନୈତିକ ପ୍ରକ୍ରିୟା ନୁହେଁ ଏହା ଏକ ରାଜନୈତିକ, ସାମରିକ ଓ ସାଂସ୍କୃତିକ ପ୍ରକ୍ରିୟା ମଧ୍ୟ । ଶୀତଳ ଯୁଦ୍ଧ ପରେ ଯୁକ୍ତରାଷ୍ଟ୍ର ଆମେରିକା ଏକମାତ୍ର ମହାଶକ୍ତି ଭାବେ ଦୁନିଆ ସାରା ନିଜର ବଳ ଓ ପ୍ରଭାବ ବିସ୍ତାର କରିଛି ଏବଂ ନୀତିଗତ ଭାବେ ନିଷ୍ପତ୍ତି ନେଇଛି ଯେ ଆଗାମୀ ଇତିହାସରେ ଆଉ ଯେମିତି ଯୁକ୍ତରାଷ୍ଟ୍ରକୁ କେହି ମୁକାବିଲା କରିବାର ଶକ୍ତି ନ ପାଆନ୍ତି । ଇରାକ ଉପରେ ଆକ୍ରମଣ, ଆଫଗାନିସ୍ଥାନ ଉପରେ

ଆକ୍ରମଣ ସେଇ ନୀତିର ଏକ ଅଂଶ । ତୈଳ ଓ ଅନ୍ୟାନ୍ୟ ପ୍ରାକୃତିକ ସଂପଦ ଉପରେ ପୃଥିବୀର ସବୁ ଜାଗାରେ ଯୁକ୍ତରାଷ୍ଟ୍ରର ଯେମିତି କର୍ତ୍ତୃତ୍ୱ ରହେ ସେଇଥିପାଇଁ ଆମେରିକାର ସାମରିକ ଶକ୍ତି ପଶ୍ଚିମ ଏସିଆ ଠାରୁ ନେଇ ଆଫ୍ରିକା ଓ ଦକ୍ଷିଣ ଆମେରିକା ଯାଏ ବ୍ୟାପିଛି ।

ସଂସ୍କୃତି କ୍ଷେତ୍ରରେ ମଧ୍ୟ ଆଧିପତ୍ୟ ବିସ୍ତାର କରିବା ଜଗତୀକରଣର ଏକ ପ୍ରଧାନ କାର୍ଯ୍ୟକ୍ରମ । ଟି.ଭି. ଓ ଇଣ୍ଟରନେଟ ମାଧ୍ୟମରେ ପାଶ୍ଚାତ୍ୟ ପୁଞ୍ଜିବାଦୀ ମୂଲ୍ୟବୋଧର ପ୍ରସାର ଚାଲିଛି । ପୁଣିଥରେ ପାଶ୍ଚାତ୍ୟ ସଂସ୍କୃତିକୁ ପୃଥିବୀର ଉନ୍ନତତମ ସଂସ୍କୃତି ଆଖ୍ୟା ଦିଆଯାଉଛି । ଶିକ୍ଷା କ୍ଷେତ୍ରରେ ପୁଣି ପାଶ୍ଚାତ୍ୟ ବିଶ୍ୱବିଦ୍ୟାଳୟ ଓ ଗବେଷଣା କେନ୍ଦ୍ରର ପ୍ରାଧାନ୍ୟ ପ୍ରତିଷ୍ଠା କରାଯାଉଛି । ଶହେବର୍ଷର ଉପନିବେଶ ବିରୋଧୀ ଆନ୍ଦୋଳନର ମୌଳିକ ଚିନ୍ତାଧାରା ଯାହା ପାଶ୍ଚାତ୍ୟ ସଭ୍ୟତାର ଏକ ଆତ୍ମବଡିମାକୁ ପ୍ରତ୍ୟାଖ୍ୟାନ କରିଥିଲା ତାହା ପଛକୁ ପଡିଯାଇଛି ।

ଏଇ ପୁଞ୍ଜିବାଦୀ ଜଗତୀକରଣ ବିରୁଦ୍ଧରେ ବିଶ୍ୱସାରା ଗଣମୁକ୍ତିର ନୂଆ ଚେତନା ସ୍ୱର ଉତ୍ତୋଳନ କରିଛି । ଇରାକର ଜନତା, ଆଫଗାନୀସ୍ଥାନର ଜନତା ଉପନିବେଶବାଦୀ ଆକ୍ରମଣର ମୁକାବିଲା ପାଇଁ ଲଢ଼େଇକରି ଚାଲିଛନ୍ତି ଏବଂ ଏଥିରେ ଆକ୍ରମଣକାରୀଙ୍କ ପରାଜୟ ନିଶ୍ଚିତ । ପୁଞ୍ଜିବାଦୀ ଜଗତୀକରଣ ଦ୍ୱାରା ଦାରିଦ୍ର୍ୟ, ବେକାରୀ, ଅସମତା ବଢ଼ିବା ସଙ୍ଗେ ସଙ୍ଗେ ଆଞ୍ଚଳିକ ବୈଷମ୍ୟ ସଂକଟଜନକ ଭାବେ ବୃଦ୍ଧି ପାଉଛି । ପରିବେଶ ନଷ୍ଟ ହେଉଛି, ଜଙ୍ଗଲ ଅବକ୍ଷୟ ଓ ଜଳପ୍ରବାହ କମିବା ତଥା ବାୟୁମଣ୍ଡଳ ଓ ଜଳଯୋଗାଣ ଦୂଷିତ ହେବାର ଏତେ ଯେ ତଥ୍ୟ ପ୍ରମାଣ ଅଛି ଅକ୍ଳେଶରେ ଆମେ ପାଇ ପାରିବା ।

ଜଗତୀକରଣ ପ୍ରତିଦେଶରେ ସମାଜକୁ ଦ୍ୱିଖଣ୍ଡିତ କରିଛି- ସଂଖ୍ୟାଲଘୁ ଗୋଷ୍ଠୀ ଏଥିରୁ ଲାଭ ପାଉଛନ୍ତି ଏବଂ ସଂଖ୍ୟାଗରିଷ୍ଠ ଜନତା ଏହାର ଶିକାର ହେଉଛନ୍ତି । ଭାରତବର୍ଷରେ ପ୍ରାୟ ୨୦ କୋଟି ଲୋକ ମଧ୍ୟବିତ୍ତ ଶ୍ରେଣୀ ଏବଂ ଉଦ୍ୟୋଗପତି ଏ ଅର୍ଥନୀତିର ସ୍ତାବକ ଓ ଲାଭବାନ । ଆଉ ଅଶୀକୋଟି ଅଧିକ ସମସ୍ୟାର ସମ୍ମୁଖୀନ ହେଉଛନ୍ତି । ଓଡ଼ିଶାରେ ଶତକଡ଼ା ଦଶଭାଗ ପ୍ରାୟ ଏ ପ୍ରକ୍ରିୟାରୁ ଲାଭ ପାଆନ୍ତି । ଆଦିବାସୀ (୨୪%), ଦଳିତ (୧୬%), ପଛୁଆ ବର୍ଗ (ଅନ୍ୟୂନ ୪୦%)ଙ୍କ ଭିତରୁ ପ୍ରାୟ ୨% ଏବଂ ଅନ୍ୟ ମାନଙ୍କ ଭିତରୁ ୮% ପ୍ରାୟ ମୋଟାମୋଟି ନୂଆ ଅର୍ଥନୀତିରୁ ଲାଭ ପାଆନ୍ତି । ଯେହେତୁ ରାଷ୍ଟ୍ରସତ୍ତା ସିଧାସଳଖ ଏଇ ପୁଞ୍ଜିବାଦୀ ପ୍ରକ୍ରିୟା ପଛରେ ପୂରା ସମର୍ଥନ ଦେଇ ରାଷ୍ଟ୍ରର ପୁଲିସ୍, ସୈନ୍ୟବଳ, ଅମଲାତନ୍ତ୍ର ଓ ରାଜନୈତିକ ନେତା ସମସ୍ତଙ୍କୁ ସେଇ ଅର୍ଥନୀତିକୁ ଲାଗୁ କରିବାରେ ଲଗାଇଛି । ବିଗତ କାଳର ଉପନିବେଶବାଦ ଆଉ ବର୍ତ୍ତମାନର ଜଗତୀକରଣ ଭିତରେ ଗୋଟିଏ ପ୍ରଭେଦ ହେଲା ଯେ ଏ ପୁଞ୍ଜିବାଦର ସାମାଜିକ ଭିତ୍ତି ସବୁଦେଶର ଉଦ୍ୟୋଗପତି ଓ ମଧ୍ୟବିତ୍ତ ଶ୍ରେଣୀ । ସେଥିପାଇଁ ସ୍ଥାନୀୟ ରାଷ୍ଟ୍ରର ସରକାର ଏ ପ୍ରକ୍ରିୟାର ଅସ୍ତ୍ର । ସ୍ଥାନୀୟ ଖବରକାଗଜ, ଗବେଷଣା ସଂସ୍ଥା, ଏପରିକି ଅଧିକାଂଶ ବେସରକାରୀ ସଂସ୍ଥା ଏ ଜଗତୀକରଣର ଆୟୁଧ । ତା ବିରୁଦ୍ଧରେ

ସଂଘର୍ଷ କରୁଛନ୍ତି ଜନ ଆନ୍ଦୋଳନମାନେ । ପୁଞ୍ଜିର ନୂଆ ରୂପ ହେଲା ଶେଆର ମାର୍କେଟ ଓ ଜ୍ଞାନକୁ ପୁଞ୍ଜିକରି ବ୍ୟବସାୟ କରିବା ତାହାକୁ ଭିତ୍ତିକରି ପୁଞ୍ଜିବାଦ ବଢ଼ିବାରେ ଲାଗିଛି ।

## ମୁକ୍ତି ଚେତନାର ନୂତନ ଭାଷା: ସ୍ୱରାଜ, ଉବୁନ୍ତୁ

କ୍ରାନ୍ତିର ସଂଜ୍ଞା ଦେଇ ଭଗତ ସିଂହ କହିଥିଲେ: 'ଅନ୍ୟାୟ ଉପରେ ଆଧାରିତ ବର୍ତ୍ତମାନର ସମାଜ ବ୍ୟବସ୍ଥାରେ ଆମୂଳଚୂଳ ପରିବର୍ତ୍ତନ କରିବା ହେଲା କ୍ରାନ୍ତି' । ଏହି ଭାବନା ଆଜି ମଧ୍ୟ ମୁକ୍ତିଚେତନାର ମୌଳିକ ପରିଭାଷା । ଏ ଅନ୍ୟାୟର ବିଭିନ୍ନ ଦିଗ ଗତ ଶତାବ୍ଦୀର ଆନ୍ଦୋଳନମାନେ ସ୍ପଷ୍ଟ କରିଦେଇଥିଲେ । ବର୍ତ୍ତମାନର ଜଗତୀକରଣ ଏବଂ ବିଭିନ୍ନ ପ୍ରକାର ଶୋଷଣ ବିରୋଧରେ ଚାଲିଥିବା ଲଢ଼େଇମାନ ଏହାକୁ ଆହୁରି ସ୍ପଷ୍ଟ କରି ଦେଇଛନ୍ତି । ନାରୀମୁକ୍ତି ଓ ଦଳିତମୁକ୍ତି ତଥା ରାଷ୍ଟ୍ରୀୟ ଆନ୍ଦୋଳନ ସାଙ୍ଗେ ସାଙ୍ଗେ ପରିବେଶ ଆନ୍ଦୋଳନ ତଥା ଭିଟାମାଟିର ଅଧିକାର ପାଇଁ ଆନ୍ଦୋଳନ ଗୁଡିକ ଅନେକ ନୂଆ ପ୍ରଶ୍ନ ଆମ ଆଗରେ ରଖିଛନ୍ତି । ମନୁଷ୍ୟ ଓ ପ୍ରକୃତି ଭିତରେ ଏକ ସମନ୍ୱୟର ସଂପର୍କ ଆଜି ଆମେ ଗ୍ରହଣ କରିବାକୁ ଆରମ୍ଭ କଲେଣି । ୨୦୦ ବର୍ଷ ଧରି ପାଶ୍ଚାତ୍ୟ ପୁଞ୍ଜିବାଦୀ ଶିଳ୍ପ ବିପ୍ଳବ ପ୍ରକୃତିକୁ ଅକ୍ତିଆର କରି ତା ଉପରେ ବିଜୟ ହାସଲ କରିବାରେ ମଣିଷକୁ ଲଗେଇଥିଲା । ଆଜି ଆମେ ଚାହୁଁ ପ୍ରକୃତିର ନିୟମ ଆବିଷ୍କାର କରି ତାହାର ଏପରି ସଦ୍‌ବ୍ୟବହାର କରିବା ଯାହାଫଳରେ ସମାଜରେ ଅନ୍ୟାୟ କମିବ । ମଣିଷ, ପଶୁପକ୍ଷୀ ଓ ଜଳ ଜଙ୍ଗଲ ମାଟିର ପରିବେଶ ସବୁ ଭିତରେ ସଙ୍ଗତି ରକ୍ଷା କରି ସମାଜର ପରିବର୍ତ୍ତନ ହେବା ଆବଶ୍ୟକ ।

ମଝିରେ କେତେ ଦଶକ ଶ୍ରେଣୀସଂଘର୍ଷକୁ ପଛକୁ ପକାଇ ସାମାଜିକ ଆନ୍ଦୋଳନମାନେ ଆଗେଇ ଯାଇଥିଲେ । ବର୍ତ୍ତମାନ ପୁଞ୍ଜିବାଦୀ ଆକ୍ରମଣର ଶିକାର ହୋଇ ଆମେ ହୃଦୟଙ୍ଗମ କରୁଛେ ଶ୍ରେଣୀସଂଘର୍ଷ ଆଭିମୁଖ୍ୟର ଗୁରୁତ୍ୱ । କିନ୍ତୁ ଶ୍ରେଣୀସଂଘର୍ଷ ସହିତ ବର୍ଣ୍ଣ, ଲିଙ୍ଗ, ସାଂସ୍କୃତିକ ଏକତା ପରିବେଶ ଆଭିମୁଖ୍ୟ ସବୁକୁ ମିଶାଇ ସାମଗ୍ରିକ ଭାବେ ପରିସ୍ଥିତିକୁ ବିଶ୍ଳେଷଣ କରିବାକୁ ହେବ ଏବଂ ପରିବର୍ତ୍ତନର ରଣନୀତି ନିର୍ଦ୍ଧାରଣ କରିବାକୁ ହେବ । ଆଗ ଗୋଟିଏ କରିବା ତାପରେ ଅନ୍ୟ କଥା ଦେଖିବା ଏ ଭାବନା ଭୁଲ ।

ସେଇଥିପାଇଁ ଦକ୍ଷିଣ ଆଫ୍ରିକାର ଭବିଷ୍ୟତ ବିକାଶ ଯୋଜନାର ଲକ୍ଷ୍ୟ ନେଲସନ୍ ମାଣ୍ଡେଲା 'ଉବୁନ୍ତୁ' ବୋଲି କହିଛନ୍ତି । ଜୁଲୁ ଭାଷାରେ ଉବୁନ୍ତୁ ଶବ୍ଦର ଅର୍ଥ ହେଲା "ମୁଁ ଅଛି କାରଣ ତୁମେ ଅଛ" । "ତୁମର ଉନ୍ନତି ବିନା ମୋର ଉନ୍ନତି ଅସମ୍ଭବ" । ମାଣ୍ଡେଲା ସୁନ୍ଦର ଭାବରେ ଏହା ବୁଝାଇ କହିଛନ୍ତି, "କୋଉ ଗାଁରେ ଜଣେ ଚାଲି ଚାଲି ପହଞ୍ଚିଲେ ଲୋକେ ଆଗେ ତାକୁ ପାଣି ପିଇବାକୁ ଦେବେ, ଜଳଖିଆ ଦେବେ । ତାପରେ ଅନ୍ୟ କଥା" । ଦେଶମଣ୍ଡ ଟୁଟୁ କହିଛନ୍ତି ଉବୁନ୍ତୁବାନ ମଣିଷ ସବୁବେଳେ ଅନ୍ୟର ମଙ୍ଗଳ କଥା ଭାବି ଚଳେ, ସବୁବେଳେ ତାର ମନରେ ଥାଏ ଯେ ସେ ଏକ ବିରାଟ ସମୁଦାୟର ଅଂଶ ।

ପୁଞ୍ଜିବାଦ ମଣିଷକୁ ଅନ୍ୟଠାରୁ ଅଲଗା କରି ଅନ୍ୟଠୁ ନେଇ ନିଜେ ବଢ଼ିବାକୁ ସବୁବେଳେ ମତାଏ । ତାକୁ ବ୍ୟକ୍ତି ସ୍ୱାଧୀନତା ନାଁରେ ବ୍ୟକ୍ତିକେନ୍ଦ୍ରିତ କରି ଦେଇଥାଏ । ଉବୁନ୍ତୁଭାବନା ବ୍ୟକ୍ତି ବ୍ୟକ୍ତି ଭିତରେ ଥିବା ଅସାମ୍ୟ ବା ଅନ୍ୟାୟଗତ ସଂପର୍କକୁ ବଦଳାଇ ଉଭୟ  ଉଭୟଙ୍କର ମଙ୍ଗଳପାଇଁ କାମ କରିବାକୁ ପ୍ରେରଣା ଦେଇଥାଏ ।

ଠିକ୍ ସେମିତି  ଗାନ୍ଧୀଜୀଙ୍କ ବ୍ୟାଖ୍ୟାରେ ସ୍ୱରାଜ । ହିନ୍ଦ୍ ସ୍ୱରାଜ ଶତବାର୍ଷିକୀ ୨୦୦୯ରେ ଆମେ ପାଳନ କଲେ । ସମାଜର ସମସ୍ତେ 'ସ୍ୱ', କେହି ପର ନୁହନ୍ତି । ଜଣକର ସ୍ୱରାଜ ଅନ୍ୟ ଜଣଙ୍କର ସ୍ୱରାଜ ବିନା ଅସମ୍ଭବ । ଗୋଟିଏ ଗୋଷ୍ଠୀର ସ୍ୱରାଜ ଅନ୍ୟ ଗୋଷ୍ଠୀର ସ୍ୱରାଜ ବିନା ଚରିତାର୍ଥ ହୋଇପାରେନା । ତେଣୁ ଏହା ବ୍ୟକ୍ତି ବା ଗୋଟିଏ ଗୋଷ୍ଠୀ ଉପରେ କେନ୍ଦ୍ରୀଭୂତ ହୋଇପାରେନା । ଉବୁନ୍ତୁ  ଭଳି ସ୍ୱରାଜ ମଧ୍ୟ ବ୍ୟକ୍ତି, ଗୋଷ୍ଠୀ, ଅଞ୍ଚଳ, ଦେଶ ଓ ମାନବ ଜାତିର ସମସ୍ତଙ୍କ ମୁକ୍ତି ଉପରେ ନିହିତ ।

ଏ ଯୁଗର ମୁକ୍ତି ଚେତନାରୁ ସଂସ୍କୃତି କ୍ଷେତ୍ରରେ ଏକ ନୂଆ କାର୍ଯ୍ୟକ୍ରମ ଉତ୍ପନ୍ନ ହୋଇଛି । ତାହାକୁ ଦୃଷ୍ଟି ନଦେଲେ ପୃଥିବୀ ସାରା ହିଂସ୍ରକ ମୁକାବିଲା ଆହୁରି ବଢ଼ିବ । ପଶ୍ଚିମ ରାଷ୍ଟ୍ରମାନେ ଉପନିବେଶ କାଳରେ ଭାବୁଥିଲେ ତାଙ୍କ ସଭ୍ୟତା ପୃଥିବୀର ଅନ୍ୟ ସବୁ ସଭ୍ୟତାଠାରୁ ଉଚ୍ଚରେ ସେଥିପାଇଁ ଅସ୍ତ୍ରଶସ୍ତ୍ର ଓ ପୁଞ୍ଜିଧରି ସେମାନେ ବାହାରି ପଡିଥିଲେ ଏସିଆ, ଆଫ୍ରିକା ଓ ଦକ୍ଷିଣ ଆମେରିକାରେ ତାଙ୍କ ସଭ୍ୟତା ବିସ୍ତାର କରିବାପାଇଁ । ଏବେ ପୁଣି ଗଣତାନ୍ତ୍ରିକ ମୂଲ୍ୟବୋଧ ବିସ୍ତାର କରିବା ନାଁରେ ପଶ୍ଚିମ ଶକ୍ତିମାନେ ବାହାରି ପଡିଛନ୍ତି । ତାର ତୀବ୍ର ପ୍ରତିରୋଧ ହେଉଛି ପୃଥିବୀ ସାରା । ୨୦୦୧ରେ ସେପ୍ଟେମ୍ବର ୯ ର ଘଟଣା ତାରି ପ୍ରତିଫଳନ । ସଭ୍ୟତା ଯୁଦ୍ଧ'ର ଦୁନ୍ଦୁଭି ଯୁକ୍ତରାଷ୍ଟ୍ରରୁ ବାଜି ପଶ୍ଚିମ ଏସିଆ ଯାଏ ଶୁଭୁଛି । ଏ ସ୍ଥିତିରେ ତିନୋଟି ମୌଳିକ କଥା ଆଜି ମୁକ୍ତିକାମୀମାନେ ଗ୍ରହଣ କରିବା ଆବଶ୍ୟକ ।

୧. ସବୁ ଲୋକଙ୍କର ସଂସ୍କୃତି, ଭାଷା, ଧର୍ମ ଓ ସଭ୍ୟତା ସମାନଭାବେ ସମ୍ମାନ ପାଇବାର ଅଧିକାରୀ ।

୨. ସବୁ ଦେଶର ସଂସ୍କୃତିରେ ବିଭିନ୍ନ ଧାରା ଓ ବିଭିନ୍ନ ମୂଲ୍ୟବୋଧ ରହିଛି, ସେଥିରେ କେତେକ ଗଣତାନ୍ତ୍ରିକ ଓ କେତେକ ଅଗଣତାନ୍ତ୍ରିକ ଆଚରଣ ରହିଛି  ।

୩. ସବୁ ସଂସ୍କୃତି ଇତିହାସର ପ୍ରକ୍ରିୟାରେ ଚଳମାନ ତେଣୁ ବଦଳି ଚାଲିଥାଆନ୍ତି ।

ଅନେକ କିନ୍ତୁ ଉପନିବେଶ କାଳର ରୀତିରେ ନିଜକୁ ସଭ୍ୟ ଓ ଉନ୍ନତ ଭାବି ଆଦିବାସୀଙ୍କୁ, ଆଫ୍ରିକାର ଅଧିବାସୀଙ୍କୁ ବା ତଥାକଥିତ ଜନଜାତିଙ୍କୁ ସଭ୍ୟ କରିବା ପାଇଁ କାର୍ଯ୍ୟ କରୁଛନ୍ତି; ସେ ବେଳ ବଦଳିଗଲାଣି । ଏକବିଂଶ ଶତାବ୍ଦୀରେ ସମସ୍ତେ ମୁକ୍ତିକାମୀ । ପ୍ରତ୍ୟେକ ସମ୍ମାନ ଦାବି କରନ୍ତି ।

ଆର୍ଥିକ ଉନ୍ନତି, ଶତକଡ଼ା ୯ ବା ୧୦ ଭାଗ ଅଭିବୃଦ୍ଧି ହାରର ଉଚ୍ଚ ସ୍ୱରରେ ଚର୍ଚ୍ଚା ବେଳେ ମୁକ୍ତି ଚେତନା କଥା ଉଠାଇବା ଅପ୍ରାସଙ୍ଗିକକି ? ଖାଲି ଭଗତ ସିଂହ, ଗାନ୍ଧୀ, ଆମ୍ବେଦକର, ଗୋପବନ୍ଧୁ, ଭଗବତୀ ପାଣିଗ୍ରାହୀଙ୍କ ଦାୟାଦ ନୁହେଁ କାଶୀପୁର, କଳିଙ୍ଗନଗର, ଏରସମାର ଚାଷୀ, ଆଦିବାସୀ, ଦଳିତ ମଧ୍ୟ ଏହି ମୁକ୍ତି ଚେତନାର ସ୍ୱର ଉଠାଇଛନ୍ତି । ମାନବ ଅଧିକାର ଆନ୍ଦୋଳନ ମୁକ୍ତି-ଚେତନାର ଏକ ପ୍ରତ୍ୟକ୍ଷ ନିଦର୍ଶନ । ମାନବ ଅଧିକାରର ସଂଜ୍ଞା ଜନ ଆନ୍ଦୋଳନରୁ ବାହାରିଛି । ବହୁ ବର୍ଷ ଧରି ନାଗରିକ ଅଧିକାର ଯଥା ମୁକ୍ତ ବକ୍ତବ୍ୟର ସ୍ୱାଧୀନତା ଓ ଭୋଟ ଅଧିକାର, ନ୍ୟାୟାଳୟରେ ନ୍ୟାୟ ପାଇବାର ହକ ଉପରେ ମାନବ ଅଧିକାର ଲଢ଼େଇ ଜୋର ଦେଇଥିଲା । ତାପରେ ଶ୍ରମିକ ଅଧିକାର, ଜୀବିକା ଅଧିକାର, ଭୂମି ଉପରେ ଚାଷୀର ଅଧିକାର, କାମ ପାଇବାର ଅଧିକାର ପାଇଁ ଲଢେଇ ଚାଲିଲା । ତାପରେ ସାମାଜିକ ସମତା ଓ ନ୍ୟାୟ ପାଇଁ ନାରୀ ମାନଙ୍କର ଅଧିକାର, ଦଳିତ ମାନଙ୍କ ଅଧିକାର, ଜଙ୍ଗଲ ଉପରେ ଆଦିବାସୀ ଓ ଜଙ୍ଗଲବାସୀଙ୍କ ଅଧିକାର ପାଇଁ ଆନ୍ଦୋଳନ ଚାଲିଲା । ପରିବେଶ ସଂକ୍ରାନ୍ତୀୟ ଅଧିକାର, ନିର୍ମଳ ଜଳ, ନିର୍ମଳ ବାୟୁ ପାଇଁ ମଣିଷର ଅଧିକାର ଉପରେ ଧ୍ୟାନ ଦିଆଗଲା । ଶାରୀରିକ କ୍ଷମତା ଜନିତ, ଯାହାକୁ ବିକଳାଙ୍ଗ କୁହାଯାଉଥିଲା, ଲୋକଙ୍କର ଅଧିକାର, ଶିଶୁ ମାନଙ୍କ ଅଧିକାର ଉପରେ ଆଜି ଆମର ଦୃଷ୍ଟି ପଡିଛି । ଅଧିକାର ଚର୍ଚ୍ଚା ବଢ଼ିବା ମୁକ୍ତ ଚେତନାର ପରିଚାୟକ ।

ଅଧିକାର ସରକାର ଦତ୍ତ ନୁହେଁ । ଏହା ସାମାଜିକ ଆନ୍ଦୋଳନ ଜରିଆରେ ମାନବ ସଭ୍ୟତାର ନୂତନ ମୂଲ୍ୟବୋଧରୁ ବାହାରେ । କୌଣସି ସାମାଜିକ ପ୍ରଥା ବା ସ୍ଥିତିକୁ ସଚେତନ ମାନବ ସମାଜ ଯେତେବେଳେ ଅଗ୍ରାହ୍ୟ କରେ ସେତେବେଳେ ଏକ ନୂଆ ପ୍ରଥା ବା ନିୟମକୁ ରାଜନୈତିକ ଶକ୍ତିଦ୍ୱାରା ଏକ ନୂଆ ଅଧିକାର ବୋଲି ଘୋଷଣା କରେ ।

ବହୁବର୍ଷ ଧରି ଅଧିକାରକୁ ଶାସକ ଶ୍ରେଣୀ କର୍ତ୍ତବ୍ୟ ସହିତ ଯୋଡ଼ି ରଖିଥିଲେ । ଜନତାର ଗୋଟିଏ ଅଧିକାରକୁ ମାନିନେଇ କନସେସନ୍ ଦେଇ, ତାଙ୍କଠୁ କର୍ତ୍ତବ୍ୟ ବା ଡିଉଟି ନାଁରେ କିଛି ନିୟନ୍ତ୍ରଣ ମୂଲ୍ୟ ଆଦାୟ କରୁଥିଲେ । ଅଧିକାର ନିଅ, ଅମୁକ କର୍ତ୍ତବ୍ୟ ପାଳନ କର ।

ମୁକ୍ତିଚେତନାର ପ୍ରବାହ ଅଧିକାର ଚର୍ଚ୍ଚାକୁ ନୂଆମୋଡ଼ ଦେଇଛି । ୧୮୯୦. ଦଶକରେ ତିଲକ କହିଲେ ସ୍ୱରାଜ ମୋର ଜନ୍ମଗତ ଅଧିକାର, ମୁଁ ତା ହାସଲ କରି ରହିବି । ଭଗତ ସିଂହ ଇନକିଲାବ ଜିନ୍ଦାବାଦ ଓ ଜୟହିନ୍ଦର ଧ୍ୱନି ଦେଇ ଜନତା ଆଗରେ ଏକ ମୁକ୍ତ ସମାଜବାଦୀ ହିନ୍ଦୁସ୍ଥାନ ଗଠନ କରିବାର ସ୍ୱପ୍ନ ଦେଇଥିଲେ । ସମ୍ବିଧାନ ବା ଆଇନ ଗଠନର ବହୁପୂର୍ବରୁ ଆମ୍ବେଦକର ସାମାଜିକ ସମତାକୁ ମାନବିକ ଅଧିକାର ରୂପେ ଦାବି କରିଥିଲେ । ବହୁମୁଖୀ ସ୍ୱରାଜର ଲକ୍ଷ୍ୟ ଗାନ୍ଧିଜୀ ଶହେ ବର୍ଷ ତଳେ ମାନବ ସଭ୍ୟତା ଆଗରେ ରଖିଥିଲେ ।

ଏକବିଂଶ ଶତାବ୍ଦୀର ମୁକ୍ତି ଚେତନା ଆମକୁ ଇତିହାସ ଭିତ୍ତିରେ କାମ କରିବା ପାଇଁ ପ୍ରେରଣା ଦେଉଛି । ଜଗତୀକରଣ ପ୍ରକ୍ରିୟା ବର୍ତ୍ତମାନର ମଣିଷକୁ ଇତିହାସ ବିଶେଷକରି ଉପନିବେଶ ବିରୋଧ ଆନ୍ଦୋଳନ ଅନୁଭୂତିରୁ ବିଚ୍ଛିନ୍ନ କରି ଚାଲିଥିଲାବେଳେ ଜନ ଆନ୍ଦୋଳନମାନେ ଆମକୁ ସେକାଳର ତ୍ୟାଗ ଓ ଆଦର୍ଶକଥା ମନେ ପକାଉଛନ୍ତି । ଭଗତ ସିଂହ, ରାଜଗୁରୁ, ଚନ୍ଦ୍ରଶେଖର ଆଜାଦ, ଲକ୍ଷ୍ମଣ ନାୟକ, ରଘୁ ଓ ଦିବାକର ଯେଉଁଥିପାଇଁ ଶହୀଦ ହୋଇଥିଲେ ସେକଥା ମନେପକାଇ ଦେଉଛନ୍ତି ।

ଏକବିଂଶ ଶତାବ୍ଦୀର ମୁକ୍ତି ଚେତନା ପ୍ରତ୍ୟେକ ବ୍ୟକ୍ତି, ପ୍ରତ୍ୟେକ ଗାଁ ଓ ସହର, ପ୍ରତ୍ୟେକ ଗୋଷ୍ଠୀକୁ ସାହସ ଓ ଆଭିମୁଖ୍ୟ ଯୋଗାଇଛି ନିଜ ଆଖିରେ ଦେଶ ଓ ଦୁନିଆକୁ ଦେଖିବା ପାଇଁ । ନିଜ ଆୟୁଧ ଦ୍ୱାରା ରାଷ୍ଟ୍ର ଓ ଜଗତର ବିଭିନ୍ନ ପ୍ରକ୍ରିୟାକୁ ମୁକାବିଲା କରିବା ପାଇଁ । କିଏ କୋଉ ଆୟୁଧ ବ୍ୟବହାର କରିବ ତାହା ତାର ସାମର୍ଥ୍ୟ ଓ ପରିସ୍ଥିତି ଉପରେ ନିର୍ଭର କରେ । ଭଗତ ସିଂହ କହିଥିଲେ "କ୍ରାନ୍ତି ପାଇଁ ରକ୍ତାକ୍ତ ଲଢ଼େଇ ଅନିବାର୍ଯ୍ୟ ନୁହେଁ । ସେ ଲଢ଼େଇରେ ବ୍ୟକ୍ତିଗତ ପ୍ରତିହିଂସାର କୌଣସି ସ୍ଥାନ ନାହିଁ । ତାହା ବମ୍ ଓ ପିସ୍ତଲର ସଂପ୍ରଦାୟ ନୁହେଁ । ତେଣୁ ଭଗତ ସିଂହ ବନାମ ଗାନ୍ଧୀ ଚର୍ଚ୍ଚା କରିବା ଦ୍ୱାରା ଆମେ ଇତିହାସ, ଦର୍ଶନ ଓ ରାଜନୀତିର ଅନେକ ମହତ୍ତ୍ୱପୂର୍ଣ୍ଣ ପ୍ରଶ୍ନ ଭୁଲି ଯାଉଛୁ । ମୁକ୍ତି ଚର୍ଚ୍ଚାକୁ ହିଂସା-ଅହିଂସା ବିବାଦରେ ପରିଣତ କରିବା ଆଯୌକ୍ତିକ । ଶାସକ  ଗୋଷ୍ଠୀ ତାହାହିଁ କରିଛନ୍ତି । ସାମ୍ରାଜ୍ୟବାଦୀଙ୍କ ଠାରୁ ରାଷ୍ଟ୍ରର ସରକାର ଯାଏ ଜନଆନ୍ଦୋଳନକୁ ହିଂସ୍ରକ ବୋଲି କହି ଅପରିଣାମ ଶସ୍ତ୍ରଦ୍ୱାରା ହିଂସାର ପରିସ୍ଥିତିକୁ ବଢ଼େଇ ଚାଲିଛନ୍ତି । ଫଳରେ ଶାନ୍ତିପୂର୍ଣ୍ଣ ଆନ୍ଦୋଳନର ଲକ୍ଷ୍ୟରୁ ଏହା ବେଳେବେଳେ ହିଂସାତ୍ମକ ରୂପ ନିଏ । କିନ୍ତୁ ହିଂସା ମାନବିକ ମୂଲ୍ୟବୋଧର ବିରୋଧୀ । ବ୍ୟବସ୍ଥାରେ ଶ୍ରେଣୀର, ଉଚ୍ଚଜାତିର, ଶୋଷକର ଯେଉଁ ହିଂସା ପ୍ରତିଦିନ ରହିଛି ତାହାକୁ ପରିବର୍ତ୍ତନ କରି ଏକ ହିଂସାବିହୀନ ନ୍ୟାୟବନ୍ତ ସମାଜ ଗଢ଼ିବା ସବୁ ମୁକ୍ତିକାମୀଙ୍କ ନୀତି । ସେହି ନୂତନ ସମାଜ ଉବୁନ୍ତୁ ସମାଜ, ସ୍ୱରାଜବନ୍ତ ସମାଜ । ମୁକ୍ତିଚେତନା ଭରା ଜଗତ ସୃଷ୍ଟି କରିବା ପାଇଁ  ଇତିହାସରେ ବହୁ ମଣିଷ ଶହୀଦ ହୋଇଛନ୍ତି । ସେହିମାନଙ୍କର ସଂଗ୍ରାମ, ତ୍ୟାଗ ଓ ସ୍ୱପ୍ନ ମଧ୍ୟ ଦେଇ ଏକ ଯୁଗର ମୁକ୍ତିଚେତନା ରୂପାୟିତ ହୋଇଛି ।



# ମୋ ମୃତ୍ୟୁ ଅଧିକାର

*ଶ୍ରୀ ଗଙ୍ଗାଧର ସାହୁ*

ମୁଁ ଯେଉଁ ବିଷୟ ଉପରେ ଆପଣମାନଙ୍କୁ ମୋର ମତ ଦେବାକୁ ଯାଉଛି ସେତେବେଳକୁ ଦେଶରେ ଗଣତନ୍ତ୍ର ଚାଲିଛି । ମୋ ବାପା ମୋ ବୟସରେ ଥିବା ସମୟରେ ଭାରତ ସଦ୍ୟ ଇଂରେଜ ସରକାର ହାତରୁ ମୁକ୍ତି ଲାଭ କରିଥାଏ ଓ ବାପା ସ୍ୱାଧୀନତା ସ୍ୱାଦ ଚାଖିବା ଆରମ୍ଭ କରିଥିଲେ । ମୋ ବାପାଙ୍କ ବାପାଙ୍କ ବାପା ଏହି ବୟସରେ ତାଙ୍କ ସମୟରେ ରାଜତନ୍ତ୍ରରେ ଜଣେ ପ୍ରଜା ଥିଲେ ଓ ନିଜର ଅଧିକାର କଥା ଚିନ୍ତା କରିବା ତାଙ୍କ ପକ୍ଷରେ ଏକ ସ୍ୱପ୍ନ ଥିଲା । ଏସବୁ ମୁଁ କାହିଁକି କହୁଛି ? କହୁଛି ଏଇଥିପାଇଁ ଯେ ଆପଣ ଏକରୁ ଦୁଇ ମିନିଟ୍ ଆଖି ବନ୍ଦ କରି ମନୁଷ୍ୟ ସଭ୍ୟତାର ଇତିହାସକୁ ରୋମନ୍ଥନ କରିବେ ଏବଂ ଅଧିକାର ଓ ଉନ୍ନତ ଜୀବନର ପରିଭାଷା କ'ଣ ଆଲୋଚନା କରିବେ ।

ସଭ୍ୟତାର ତାଳେ ତାଳେ ମନୁଷ୍ୟ ନିଜର ଅଧିକାର ଗୁଡିକୁ ଚିହ୍ନିପାରିଛି । ସେଗୁଡିକର ସୁରକ୍ଷା ପାଇଁ ସଂଗ୍ରାମ କରିଛି, ସଂଗଠନ କରିଛି ଓ ଆଇନ ତିଆରି କରିଛି । ନିଜର ସ୍ୱାସ୍ଥ୍ୟ, ଧର୍ମ, ସ୍ୱାଧୀନତା ଓ ସର୍ବୋପରି ନିଜର ଜୀବନ ଅଧିକାର ପାଇଁ ଅନେକ ଜୀବନକୁ ଉତ୍ସର୍ଗ କରିବାକୁ ପଡିଛି । ବିଂଶ ଶତାବ୍ଦୀର ମନୁଷ୍ୟ ସମାଜ ଜୀବନଗତ ଅଧିକାର (Right to life) ଦାବି କରୁଥିବା ବେଳେ ଏକବିଂଶ ଶତାବ୍ଦୀର ମନୁଷ୍ୟ ସମାଜ ମହତ୍ତ୍ୱପୂର୍ଣ୍ଣ ଜୀବନ (Right to dignified life) ଦାବି କରୁଛି । ଭାରତୀୟ ସଂବିଧାନ ଧାରା ୨୧ରେ ଲେଖାଅଛି ଯେ କୌଣସି ବ୍ୟକ୍ତି ବେଆଇନ୍ ଭାବେ ନିଜ ଜୀବନ ବା ବ୍ୟକ୍ତିଗତ ସ୍ୱାଧୀନତାରୁ ବଞ୍ଚିତ ହେବେ ନାହିଁ । ଭାରତୀୟ ସମ୍ବିଧାନର ଧାରା ୨୧ରେ କୁହାଯାଇଛି : ଆଇନ ଦ୍ୱାରା ବାରଣ ହୋଇ ନଥିଲେ କୌଣସି ବ୍ୟକ୍ତି ବ୍ୟକ୍ତିଗତ ସ୍ୱାଧୀନତାରୁ ବା ଜୀବନ

ନିର୍ବାହରୁ ବଂଚିତ ହେବେ ନାହିଁ । ଭାରତୀୟ ସୁପ୍ରିମ କୋର୍ଟ ଏହି ଧାରାକୁ ବାଖ୍ୟା କରିବାକୁ ଯାଇ ମତ ପ୍ରଦାନ କଲେ ଯେ "ସମ୍ବିଧାନର ଧାରା ୨୧ ଅନୁଯାୟୀ ଜୀବନ ବଞ୍ଚିବାର ଅଧିକାରର ତାତ୍ପର୍ଯ୍ୟ ହେଉଛି ଏକ ଅର୍ଥପୂର୍ଣ୍ଣ, ପରିପୂର୍ଣ୍ଣ ଓ ମର୍ଯ୍ୟାଦାପୂର୍ଣ୍ଣ ଜୀବନ ନିର୍ବାହ କରିବା । ଅର୍ଥାତ୍ ଅଧିକାରର ବିବର୍ତ୍ତନ ଏହିପରି ଭାବରେ ରୂପ ନେଇଛି : ବିନା ଅଧିକାର - ସାମାନ୍ୟ ଅଧିକାର - ବଞ୍ଚିବାର ଓ ବ୍ୟକ୍ତିଗତ ସ୍ୱାଧୀନତାର ଅଧିକାର- ମର୍ଯ୍ୟାଦାପୂର୍ଣ୍ଣ ଜୀବନର ଅଧିକାର । ତାପରେ କ'ଣ ? ସମ୍ମାନ ଜନକ ମୃତ୍ୟୁ ଅଧିକାର ।

ଜଣେ ହୁଏତ ପଚାରିବ ମୃତ୍ୟୁ ପାଇଁ ଅଧିକାର କ'ଣ ଦରକାର ? ଯେତେବେଳେ ଯିଏ ଚାହିଁବ ମରିବ କିଏ ଦେଖୁଛି, କିଏ ପଚାରୁଛି ? ନା ! ଅସମ୍ଭବ, ଆଇନ୍ ସେ ସ୍ୱାଧୀନତା ଦେଇନାହିଁ । ଆପଣ କାହାକୁ ମାରିଲେ ବା ନିଜକୁ ମାରିଲେ ବା ମାରିବାକୁ ଚେଷ୍ଟା କଲେ ଆଇନ୍ ଆଖିରେ ଅପରାଧୀ ଓ ଦଣ୍ଡ ପାଇବାକୁ ବାଧ । ଭାରତୀୟ ଦଣ୍ଡବିଧି ଆଇନର ୩୦୯ ସେକସନ୍‌ରେ କୁହାଯାଇଛି : ଯଦି କୌଣସି ବ୍ୟକ୍ତି ଆତ୍ମହତ୍ୟା କରିବାକୁ ଉଦ୍ୟମ କରନ୍ତି ବା ଏହି ପ୍ରକାର କାର୍ଯ୍ୟରେ ସଂପୃକ୍ତ ହୁଅନ୍ତି ତେବେ ତାଙ୍କୁ ଅନ୍ତତଃ ଏକ ବର୍ଷ ଶ୍ରମବିହୀନ କାରାଦଣ୍ଡ, ଜୋରିମନା ବା ଉଭୟ ଦଣ୍ଡ ଦିଆଯିବ । ଏହାର ଅର୍ଥ ଜୀବନ ଆପଣଙ୍କର । ବଞ୍ଚିବା ଅଧିକାର ଆପଣଙ୍କର । ଜୀବନର ସୁରକ୍ଷା ଦାୟତ୍ୱ ଦେଶର ବା ରାଜ୍ୟର ।

ଏହିଠାରେ ଟିକିଏ ଚିନ୍ତା କରନ୍ତୁ । ଭାରତୀୟ ସଂବିଧାନର ଧାରା ୨୧ କହିଲା ରାଜ୍ୟ ବା ଦେଶ ଆପଣଙ୍କୁ ମହତ୍ତ୍ୱପୂର୍ଣ୍ଣ ଜୀବନ-ଅଧିକାର ଦେବ । ଅନ୍ୟପକ୍ଷରେ ଭାରତୀୟ ପିଙ୍ଗଳ କୋର୍ଡ଼ର ସେକସନ ୩୦୯ କହୁଛି, "କୌଣସି ପରିସ୍ଥିତିରେ ଆପଣ ଆପଣଙ୍କ ଜୀବନ ହାରି ପାରିବେ ନାହିଁ, ତା ପାଇଁ କ'ଣ କରାଯିବ ? ଧରନ୍ତୁ ଆପଣଙ୍କ ପରିବାରର ଜଣେ ଲୋକର ବୟସ ୮୫ ବର୍ଷ, ଆଖିକୁ ଦେଖାଯାଉନାହିଁ, ପକ୍ଷାଘାତରେ ପୀଡିତ, ଶଯ୍ୟାଶାୟୀ ହୋଇ ଶଯ୍ୟା-ଘା ହୋଇଗଲାଣି । ଡାକ୍ତର ଓ ନର୍ସ ଖାଦ୍ୟ ନଳୀରେ ଖାଦ୍ୟ ଓ ଅମ୍ଳଜାନ ସିଲିଣ୍ଡରରେ (ଭେଣ୍ଟିଲେଟର) ଅମ୍ଳଜାନ ଦେଇ ବଞ୍ଚାଇଛନ୍ତି । ବର୍ଷେ ଗଲା, ଦୁଇ ବର୍ଷ ଗଲା, ପାଞ୍ଚବର୍ଷ ଗଲା । ଡାକ୍ତର କହୁଛନ୍ତି ସମସ୍ତ ଡାକ୍ତରୀ ଜ୍ଞାନର ପ୍ରୟୋଗ କରାଯାଉଛି । କିନ୍ତୁ ସୁସ୍ଥ ହେବା ଆଶା ବହୁ କ୍ଷୀଣ । ଲୋକଟି କାକୁତି ମିନତି ହୋଇ କହୁଛି, ବହୁତ କଷ୍ଟ ହେଲାଣି ମୋତେ ମରିବାକୁ ଦିଅ, "ମୋର ମୃତ୍ୟୁ ଦରକାର, ମୋର ମୃତ୍ୟୁ ଦରକାର" ଏଠାରେ କେଉଁ ଆଇନ୍ କାର୍ଯ୍ୟକରିବ ? ଭାରତୀୟ ଦଣ୍ଡବିଧି ଆଇନର ସେକସନ ୩୦୯ ନା ଭାରତୀୟ ସମ୍ବିଧାନର ଧାରା ୨୧ ?

ଆସନ୍ତୁ ଏକ ସତ ଘଟଣାର ଅବତାରଣା କରି ମୃତ୍ୟୁ ଅଧିକାର ବାବଦରେ ଜାଣିବା । ଘଟଣାଟି ଥିଲା ବମ୍ବେ ସହରରେ ଅରୁଣା ବୋଲି ଜଣେ ୨୩ ବର୍ଷର ନର୍ସ । କିମ୍ ଏଡୱାର୍ଡ଼ ମେମୋରିଆଲ ହସ୍‌ପିଟାଲର ଝାଡୁଦାର ଶୋହନଲାଲ ୧୯୭୩ ମସିହା ନଭେମ୍ବର ମାସ

୨୭ ତାରିଖରେ ସେହ ହସ୍ପିଟାଲର ସେବିକା ବା ନର୍ସ ଅରୁଣାଙ୍କୁ ଧର୍ଷଣ କରି ତଣ୍ଟିଚିପି ମାରିଦେବାକୁ ଚେଷ୍ଟା କଲେ । କିନ୍ତୁ ଅରୁଣାଙ୍କର ଜୀବନ ଗଲାନାହିଁ । ଅରୁଣାଙ୍କର କେତେକ ସହକର୍ମୀ ଅରୁଣାଙ୍କୁ ଉଦ୍ଧାର କରି କିମ୍ ହସ୍ପିଟାଲ୍‌ରେ ଭର୍ତ୍ତି କଲେ ଓ ଚିକିତ୍ସା ଜାରି ରହିଲା । ଅରୁଣା ଧର୍ଷଣ ଓ ତଣ୍ଟିଚିପା ଯୋଗୁଁ ନିଶ୍ଚଳ ତଥା ସଂଜ୍ଞାହୀନ, ସମ୍ବେଦନରହିତ ମୃତବତ୍ ଶରୀରଟିଏ ହୋଇ ପଡ଼ିରହିଲେ ।

ଏହାକୁ ମୃତବତ୍ ଜିଅନ୍ତା ଶବ ବା ଇଂରାଜୀରେ ପରମାନେଣ୍ଟ ଭେଜିଟେଟିଭ ଷ୍ଟେଟ କୁହାଯାଏ । ଖାଦ୍ୟ ନଳୀରେ ଖାଦ୍ୟ ଓ ଅମ୍ଳଜାନ ସିଲିଣ୍ଡର ନଳୀରେ ଅମ୍ଳଜାନ ଦେଇ ବଞ୍ଚାଇ ରଖାଗଲା । ଦିନେ ଦୁଇଦିନ ନୁହେଁ । ବର୍ଷେ ଦୁଇ ବର୍ଷ ନୁହେଁ । ୪୧ ବର୍ଷ । ବାପା ମା ନଥିବାରୁ ସମ୍ପର୍କୀୟମାନେ ନ ପଚାରିବାରୁ, ଅରୁଣାଙ୍କୁ ତାଙ୍କର ସହଯୋଗୀମାନେ ଓ କିମ୍ ହସ୍ପିଟାଲର କର୍ତ୍ତୃପକ୍ଷ ଭଲ ପାଉଥିବାରୁ ୪୧ ବର୍ଷ ବଞ୍ଚାଇ ରଖାଗଲା । ଏ ଥିଲା ଚିକିତ୍ସା ବିଜ୍ଞାନର ଚମତ୍କାରିତା । କିନ୍ତୁ ଏହା କଣ ଅରୁଣାଙ୍କର ମହତ୍ୱପୂର୍ଣ୍ଣ ଜୀବନ ଥିଲା ? ଅରୁଣା କିମ୍ବା କେହି ବଂଶଧର ଏହା କ'ଣ ଚାହୁଁଥିଲେ ? ୩୭ ବର୍ଷ ପରେ ଜଣେ ପତ୍ରକାର ପିଙ୍କି ବିରାନି ସୁପ୍ରିମକୋର୍ଟର ଦ୍ୱାରସ୍ଥ ହୋଇ ଅରୁଣାଙ୍କର ମୃତ୍ୟୁ ଭିକ୍ଷା କଲେ । ସେ ଥିଲେ ଅରୁଣାଙ୍କର ଜଣେ ସାଙ୍ଗ ଓ ଭିକ୍ଷା ଥିଲା ଉତ୍ତମ ମରଣ ଭିକ୍ଷା । ଯାହାକୁ ଇଂରାଜୀରେ କୁହାଯାଏ ୟୁଥାନେସିଆ । ମାନ୍ୟବର ସୁପ୍ରିମକୋର୍ଟ ଭାରତୀୟ ପିଙ୍ଗଳ କୋର୍ଡ ଧାରା ୩୦୯ ଅନୁଯାୟୀ ପତ୍ରକାର ପିଙ୍କିଙ୍କ ପ୍ରାର୍ଥନାକୁ ଅଗ୍ରାହ୍ୟ କରିଦେଲେ ।

ଏହି ସମୟରେ ସୁପ୍ରିମ୍‌କୋର୍ଟର ଦୁଇ ବିଚାରପତି ଜଷ୍ଟିସ୍ ମାର୍କଣ୍ଡେୟ କାଟଜୁ ଓ ଜଷ୍ଟିସ୍ ଜ୍ଞାନସୁଧା ମିଶ୍ର ପିଙ୍କି ବିରାନିଙ୍କ ଆବେଦନକୁ ଅଗ୍ରାହ୍ୟ କରି ରାୟ ଦେଲେ ଯେ ଜଣେ ଚେତାଶୂନ୍ୟ ରୋଗୀର ଲାଇଫ ସପୋର୍ଟ ବ୍ୟବସ୍ଥାକୁ ବାହାର କରିବା ନିଷ୍ପତ୍ତି ସେ ନିଜେ, ତାଙ୍କ ସ୍ୱାମୀ ବା ନିକଟ ଜ୍ଞାତିକୁଟୁମ୍ବ ବା ତାଙ୍କର ଅତି ନିକଟତର ବନ୍ଧୁ ନେଇପାରିବେ । ଆଉ ମଧ୍ୟ ସେ ଉଲ୍ଲେଖ କଲେ ଯେ ଚିକିତ୍ସା କରୁଥିବା ଡାକ୍ତର ମଧ୍ୟ ରୋଗୀର ହିତକୁ ଆଖିରେ ରଖି ନିଷ୍ପତ୍ତି ନେଇପାରିବେ । କିନ୍ତୁ କେସ୍‌ରେ ପିଙ୍କି ବିରାନିଙ୍କ ସ୍ଥାନରେ ହସ୍ପିଟାଲ୍ ଷ୍ଟାଫଙ୍କୁ ରୋଗୀର ନିକଟତର ବନ୍ଧୁ ବିଚାର କରି ସେମାନଙ୍କୁ ନିଷ୍ପତ୍ତି ନେବାର କ୍ଷମତା ଦେଲେ । ଡାକ୍ତରଖାନାର ଷ୍ଟାଫ ଉତ୍ସାହିତ ଓ ଉଲ୍ଲସିତ ହୋଇ ଏହି ବିଚାରକୁ ସ୍ୱାଗତ କଲେ ଓ ଅରୁଣାଙ୍କୁ ସେବା ଯୋଗାଇ ବଞ୍ଚାଇ ରଖିବାକୁ ପ୍ରତିବଦ୍ଧତା ପ୍ରକାଶ କଲେ, ଯାହା ସେମାନେ ଦଶନ୍ଧି, ଦଶନ୍ଧି ଧରି କରି ଆସିଛନ୍ତି ।

ଗତ ୧୮.୦୫.୨୦୧୫ ତାରିଖରେ ଅରୁଣା ଶେଷ ନିଶ୍ୱାସ ତ୍ୟାଗ କଲେ । କିନ୍ତୁ ତା ପୂର୍ବରୁ ରାଜ୍ୟମାନଙ୍କଠାରୁ ୟୁଥାନେସିଆ ଉପରେ ମତାମତ ଲୋଡ଼ି ମାନ୍ୟବର ସୁପ୍ରିମକୋର୍ଟ ସାରା ଦେଶରେ ଏକ ବିତର୍କର ବାତାବରଣ ତିଆରି କରିଛନ୍ତି । ୨୦୦୮

ମସିହାରେ ଉତ୍ତର ପ୍ରଦେଶ ରାଜ୍ୟର ମିରିଜାପୁରବାସୀ ଜିତ୍ ନାରାୟଣ ତାଙ୍କର ଚାରିପୁଅଙ୍କ ଉତ୍ତମ ମରଣ ପାଇଁ ରାଷ୍ଟ୍ରପତିଙ୍କୁ ପ୍ରାର୍ଥନା କଲେ । ପ୍ରଥମ ପୁତ୍ର ଦୁର୍ଗେଶ ୨୨ ବର୍ଷର, ଦ୍ୱିତୀୟ ପୁତ୍ର ସର୍ବେଶ ୧୮ ବର୍ଷର, ତୃତୀୟ ପୁତ୍ର ବ୍ରଜେଶ ୧୩ ବର୍ଷର ଓ ଚତୁର୍ଥ ପୁତ୍ର ସୁଶିଳ ୧୦ ବର୍ଷର । ସମସ୍ତେ ଅଥର୍ବ, ପଙ୍ଗୁ, ପକ୍ଷାଘାତ ରୋଗଗ୍ରସ୍ତ, ନିଶ୍ଚଳ ଓ ଅକର୍ମଣ୍ୟ ଥିଲେ । ଜଣେ ଗରିବ ପିତା ପାଇଁ ଏମାନଙ୍କୁ ବଞ୍ଚାଇ ରଖିବା କଷ୍ଟକର ବ୍ୟାପାର ଥିଲା । ଅତି ଭାରାକ୍ରାନ୍ତ, ନିରୁପାୟ, ନିରାଶ୍ରୟ, ନିସହାୟ, ହୋଇ ପୁତ୍ରମାନଙ୍କ ମୃତ୍ୟୁଭିକ୍ଷା କଲେ ପିତା, କିନ୍ତୁ ମାନ୍ୟବର ରାଷ୍ଟ୍ରପତି ଅଗ୍ରାହ୍ୟ କଲେ । କାରଣ ଶାରୀରିକ ଅକ୍ଷମତା ଜୀବନ ନିର୍ବାହ ପାଇଁ କୌଣସି ପ୍ରତିବନ୍ଧକ ନୁହେଁ ।

ଏହି ମର୍ମରେ ମହାତ୍ମା ଗାନ୍ଧିଙ୍କ ମତକୁ ଅଣଦେଖା କରାଯାଇପାରିବ ନାହିଁ । ମହାତ୍ମାଗାନ୍ଧି ଯିଏ ଅହିଂସାର ପୂଜାରୀ ଓ ବିଶ୍ୱକୁ ଅହିଂସାର ମନ୍ତ୍ର ଦେଇଥିଲେ ତାଙ୍କ ଜୀବନରେ ଗୋଟିଏ ପରୀକ୍ଷା ଆସିଲା । ଏହା ଥିଲା ଏହିପରି । ସେ ରହୁଥିବା ଆଶ୍ରମରେ ଗୋଟିଏ ବଡ ବାଛୁରୀ ଥିଲା । ବଡ଼ ରୋଗଗ୍ରସ୍ତ, ପଙ୍ଗୁ, ନିଶ୍ଚଳ, କଷ୍ଟ ବିଦାରକ ପରିସ୍ଥିତିରେ ପଡିରହିଥାଏ । ଜଣେ ପଶୁ ଡାକ୍ତର ଏହାର ଚିକିତ୍ସା କରୁଥିଲେ । ଗାନ୍ଧି ବାଛୁରୀଟିର ଦୁଃଖ ଦେଖି ତାଙ୍କ ଧୈର୍ଯ୍ୟ, କରୁଣା ଓ ମାନବିକତାର ସୀମା ସରିଗଲା । ଶେଷରେ ସେ ପଶୁଡାକ୍ତରଙ୍କୁ ଡାକି ବାଛୁରିକୁ ନିଷ୍ପେତକ ଦେଇ ମାରିଦେବାକୁ ସମ୍ମତି ପ୍ରଦାନ କଲେ ଓ ମୁକ୍ତ କଣ୍ଠରେ ସ୍ୱୀକାର କଲେ ଯେ ମୁଁ ବାଛୁରୀ କ୍ଷେତ୍ରରେ ଯାହା ନିଷ୍ପତ୍ତି ନେଲି, କୌଣସି ମନୁଷ୍ୟ କ୍ଷେତ୍ରରେ ସେହି ନିଷ୍ପତ୍ତି ନେବାପାଇଁ ପଛାଇବି ନାହିଁ ।

ଏବେ ଆସନ୍ତୁ ଜାଣିବା ମୃତ୍ୟୁ କଣ ଓ ଉତ୍ତମ ମୃତ୍ୟୁ ବା ୟୁଥାନେସିଆ ଏହାଠାରୁ କିପରି ଭିନ୍ନ ।

ମୃତ୍ୟୁ କ'ଣ ?

❖ ଯଦି ଆମେ ଜଣେ ସାଧାରଣ ଗାଉଁଲି ଲୋକକୁ ମୃତ୍ୟୁ କଣ ବୋଲି ପଚାରିବା ସେ କହିବ ଆରେ, ସେ ଅମଙ୍ଗଳିଆ କଥାଟାକୁ କାହିଁକି ଧରୁଛୁ ?

❖ ଜଣେ ଭାବୁକ କହିବ ମୃତ୍ୟୁ ଏକ ସ୍ୱପ୍ନରହିତ ଚିରନିଦ୍ରା ।

❖ ଜଣେ ଲେଖକ କହିବ ମୃତ୍ୟୁ ଜୀବନ ରୂପକ କାହାଣୀର ପୂର୍ଣ୍ଣଛେଦ ।

ହିନ୍ଦୁଧର୍ମ ଶାସ୍ତ୍ର ଗୀତା କହିବ ମୃତ୍ୟୁ ମୋକ୍ଷର ମାର୍ଗ ଯାହା ପରେ ଆତ୍ମା ପରମାତ୍ମାରେ ଲୀନ ହୋଇଯାଏ ଓ ପାର୍ଥିବ ଶରୀର ପଡିରହେ । କିନ୍ତୁ ଏସବୁ କ'ଣ ପ୍ରକୃତରେ ମୃତ୍ୟୁର ବୈଜ୍ଞାନିକ ସଂଜ୍ଞା ? ନା । ମୃତ୍ୟୁ ଏକ ଘଟଣା ନୁହେଁ, ଏକ ପ୍ରକ୍ରିୟା । ଅର୍ଥାତ୍ ମଣିଷ ଶରୀରର ପ୍ରତ୍ୟେକ ମୁହୂର୍ତ୍ତରେ ଅନେକ ଜୀବକୋଷ ବା ସେଲ୍ ମରୁଛନ୍ତି ଓ ନୂଆ ସେଲ୍

ତିଆରି ହେଉଛନ୍ତି । ଶରୀରର କେତୋଟି ଅଙ୍ଗ ଶରୀରଠାରୁ ଅଲଗା ହୋଇମଧ୍ୟ କିଛି ଘଣ୍ଟା ପାଇଁ ଜୀବିତ ଥାନ୍ତି ଓ ପ୍ରତ୍ୟାରୋପଣ କଲେ ପୁଣି ଜୀବନ ତମାମ କାମରେ ଲାଗନ୍ତି । ତାହେଲେ କେତେବେଳେ ଜଣେ ଲୋକର ମୃତ୍ୟୁ ହେଲା ବୋଲି ଜାଣିବା ? ବିଜ୍ଞାନ ପାଇଁ, ଡାକ୍ତର ପାଇଁ ଏବଂ ଆଇନ୍ ଆଖିରେ ଶରୀରମୃତ୍ୟୁ ମୃତ୍ୟୁ ନୁହେଁ । ଏହାର ଅର୍ଥ ହେଲା ଜଣେ ବ୍ୟକ୍ତିର ଫୁସ୍‌ଫୁସ୍, ଯକୃତ, ଚକ୍ଷୁ କାମ କରୁଥିଲେ ବି ଯଦି ତାର ମସ୍ତିଷ୍କ ବା ବ୍ରେନ୍ କାମ କରିବା ବନ୍ଦ ହୁଏ, ତାକୁ ମସ୍ତିସ୍କ ମୃତ୍ୟୁ ବା ବ୍ରେନ୍ ଡେଡ୍ କୁହାଯାଏ । କିନ୍ତୁ ଯଦି ଉପରୋକ୍ତ ଶାରୀରିକ ଅଙ୍ଗ ବା ଯନ୍ତ୍ର ଗୁଡିକ କାମ କରୁନାହାନ୍ତି କିନ୍ତୁ ମସ୍ତିସ୍କ କାମ କରୁଛି ଓ ପ୍ରତିକ୍ରିୟା ଜଣାଉଛି ତେବେ ତାକୁ ମୃତ ବୋଲି କୁହାଯିବ ନାହିଁ । ଡାକ୍ତର ପାଇଁ ମସ୍ତିଷ୍କ ମୃତ୍ୟୁ ହିଁ ମୃତ୍ୟୁ, କାରଣ ମସ୍ତିଷ୍କ ମୃତ ହେଲେ ଜୀବର ଚେତା ଫେରିପାରିବ ନାହିଁ । ଏହି ପରିପ୍ରେକ୍ଷୀରେ ମୃତ୍ୟୁର କାରଣ ଓ ପ୍ରକାରଭେଦ ସଂପର୍କରେ ଚିକିତ୍ସାବିଜ୍ଞାନର ମତ ପ୍ରଣିଧାନଯୋଗ୍ୟ ।

## ମୃତ୍ୟୁର କାରଣ ଓ ପ୍ରକାର ଭେଦ




ଚିକିତ୍ସାବିଜ୍ଞାନ ମୃତ୍ୟୁର ବୈଜ୍ଞାନିକ ବ୍ୟାଖ୍ୟା ଦେଇଥାଏ । ମୃତ୍ୟୁ ସଂପର୍କରେ ସାଧାରଣ ଲୋକଙ୍କ ପାଖରେ ସାଧାରଣ ଜ୍ଞାନ ଥାଏ । ସେମାନେ ବ୍ୟକ୍ତିର ନାଡୀ ଚଳନ, ହୃତସ୍ପନ୍ଦନ,

ଶରୀରର ନୀଳ ରଙ୍ଗ ଧାରଣ, ତଳି ପେଟରେ ରକ୍ତ ଜମାଟ, ଶରୀରର ତାପମାତ୍ରା ହ୍ରାସ ଓ ହାତଗୋଡ ଶକ୍ତ ହୋଇଯିବା ଦେଖି ବ୍ୟକ୍ତିଟିର ମୃତ୍ୟୁ ବାବଦରେ ଧାରଣା କରିଥାନ୍ତି ।

ଉପରେ ବର୍ଣ୍ଣିତ ମୃତ୍ୟୁର ପ୍ରକାରଭେଦରୁ ଉତ୍ତମ ମରଣ ଏବଂ ଇଚ୍ଛାମରଣ ବାବଦରେ ସମ୍ୟକ ବ୍ୟାଖ୍ୟା ଦରକାର । ୟୁଥାନେସିଆ ବା ଉତ୍ତମ ମରଣ ପାଶ୍ଚାତ୍ୟ ସମାଜରେ ପ୍ରଚଳିତ ଥିବା ସମୟରେ ଇଚ୍ଛା ମରଣ ଭାରତୀୟ ସମାଜରେ ପ୍ରଚଳିତ । ଭାରତୀୟ ସମାଜରେ ଇତିହାସ, ରାମାୟଣ, ମହାଭାରତ ଓ ପୁରାଣ ଆଦି ଅନୁଶୀଳନ କଲେ ଜଣାଯାଏ ଯେ ଅଗ୍ନି ପ୍ରବେଶ (ସତୀପ୍ରଥା, ମା' ସୀତାଙ୍କ ଅଗ୍ନି ପରୀକ୍ଷା), ଜଳପ୍ରବେଶ ମରଣ (ରାମଚନ୍ଦ୍ରଙ୍କ ସରଜୁ ନଦୀରେ ଦେହତ୍ୟାଗ), ଅନଶନ ମରଣ (ବିନୋବା ଭାବେଙ୍କ ଖାଦ୍ୟପେୟ ବର୍ଜନ ଓ ମୃତ୍ୟୁ ଆମନ୍ତ୍ରଣ), ସମାଧି ମରଣ (ସ୍ୱାମୀ, ଯୋଗୀ, ଋଷି ଓ ତପସ୍ୱୀ ମାନଙ୍କର ଯୋଗ ଓ ଧ୍ୟାନରେ ଥାଇ ମୃତ୍ୟୁ ଆଲିଙ୍ଗନ) ଇଚ୍ଛା ମରଣ ଥିଲେ ବି ଉତ୍ତମ ମରଣ ବୋଲି କୁହାଯାଇ ପାରିବ ନାହିଁ ।

ଉତ୍ତମ ମରଣ ବୈଜ୍ଞାନିକ ପଦ୍ଧତିରେ ମୃତ୍ୟୁ ପ୍ରଦାନର ଏକ ବିଶିଷ୍ଟ ଉପାୟ । ଯେତେବେଳେ କୌଣସି ବ୍ୟକ୍ତିର ଜୀବନ ଅସହ୍ୟ, ଦୁର୍ବିସହ, ନିଶ୍ଚଳ, ଅକର୍ମଣ୍ୟ, ଆଶାହୀନ ଏବଂ ମୃତ୍ୟୁ ଜୀବନଠାରୁ ଶ୍ରେୟସ୍କର ମନେହୁଏ ସେତେବେଳେ ବ୍ୟକ୍ତି ବା ତା ପରିବାର ସଦସ୍ୟମାନେ ପୀଡିତ ବ୍ୟକ୍ତି ପାଇଁ ଉତ୍ତମ ମରଣ ପ୍ରାର୍ଥନା କରନ୍ତି । ଏହା ଚାରି ପ୍ରକାରର ।

୧. ଇଚ୍ଛାକୃତ ଉତ୍ତମ ମରଣ (Voluntary Euthanasia)- ଏହି ମରଣ ପାଇଁ ରୋଗୀର ଇଚ୍ଛାକୁ ସମ୍ମାନ ଜଣାଇ ମୃତ୍ୟୁ ବ୍ୟବସ୍ଥା କରାଯାଏ ।

୨. ଇଚ୍ଛାରହିତ ଉତ୍ତମ ମରଣ (Involuntary Euthanasia) - ଏହି ମରଣ ପାଇଁ ରୋଗୀର ଜ୍ଞାନ ବାହାରେ ପରିସ୍ଥିତି ଅନୁଯାୟୀ ବ୍ୟକ୍ତିର ସମ୍ପର୍କୀୟମାନଙ୍କ ନିବେଦନ କିମ୍ବା ଅଦାଲତର ଆଦେଶ ଅନୁଯାୟୀ ଉତ୍ତମ ମରଣ ବ୍ୟବସ୍ଥା କରାଯାଏ ।

୩. ସକ୍ରିୟ ଉତ୍ତମ ମରଣ (Active Euthanasia) - ଏହି ମରଣ ପାଇଁ ମୃତ୍ୟୁଔଷଧ ଖାଦ୍ୟ ବା ଇଞ୍ଜେକସନ୍ ମାଧ୍ୟମରେ ଦିଆଯାଇ ମୃତ୍ୟୁର ବେଗ ବଢାଇ ଦିଆଯାଏ ।

୪. ନିଷ୍କ୍ରିୟ ଉତ୍ତମ ମରଣ (Passive Euthanasia)-ଏହି ମରଣ ପାଇଁ ଜୀବନ ଧାରଣ ନିମନ୍ତେ ଯେଉଁ ଖାଦ୍ୟନଳୀ, ଅମ୍ଳଜାନ ଆଦିର ବ୍ୟବସ୍ଥା କରାଯାଇଥାଏ ସେଗୁଡ଼ିକୁ ହଟାଇ ଦିଆଯାଏ ଓ ମୃତ୍ୟୁକୁ ଆମନ୍ତ୍ରଣ କରାଯାଏ । ବମ୍ବେର କିମ୍ ହସ୍ପିଟାଲରେ ନର୍ସ ଅରୁଣାଙ୍କ କ୍ଷେତ୍ରରେ ନିଷ୍କ୍ରିୟ ଉତ୍ତମ ମରଣ ପାଇଁ ମାନ୍ୟବର ସୁପ୍ରିମ୍ କୋର୍ଟ ରାଜି ହୋଇଥିଲେ କିନ୍ତୁ ଏ ନିଷ୍ପତ୍ତି ଡାକ୍ତରଖାନାର କର୍ମଚାରୀଙ୍କ

ଉପରେ ନ୍ୟସ୍ତ ଥିଲା । ଭାରତବର୍ଷରେ ଉତ୍ତମ ମରଣ ପାଇଁ କୌଣସି ଆଇନ୍ ନଥିବା ସମୟରେ ହଲାଣ୍ଡରେ ୨୦୦୧ ମସିହାରେ ଏହାକୁ ଆଇନଗତ କରାଯାଇଛି ।

ଆତ୍ମହତ୍ୟା ପର୍ଯ୍ୟଟନ – ସୁଇଜରଲାଣ୍ଡକୁ ପୃଥିବୀର ଭୂସ୍ୱର୍ଗ କୁହାଯାଏ ତାହା ଆମେ ସମସ୍ତେ ଜାଣିଛେ । କିନ୍ତୁ ସୁଇଜରଲାଣ୍ଡରେ ଆତ୍ମହତ୍ୟା ପର୍ଯ୍ୟଟନ ଅଛି ! ଆତ୍ମହତ୍ୟା ପର୍ଯ୍ୟଟନ ମାନେ ସେଠାକୁ ମୃତ୍ୟୁବରଣ କରିବା ପାଇଁ ଲୋକମାନେ ଅନ୍ୟ ସ୍ଥାନରୁ ଆସନ୍ତି । ସେଠାରେ ଇଚ୍ଛାମୃତ୍ୟୁକୁ ଆଇନଗତ ସ୍ୱୀକୃତି ଦିଆଯାଇଛି ।

୧୯୯୮ ରେ ଲଡଓ୍ୱିଗ୍ ଏ ମିନେଲ, ଜଣେ ପ୍ରତିଷ୍ଠିତ ଓକିଲ, ଡିଗ୍ନିଟାସ (Dignitas) ନାମରେ ଏକ ସଂଗଠନ ପ୍ରତିଷ୍ଠା କଲେ । ଏସଂସ୍ଥାର କାମ ହେଲା ଦୂରାରୋଗରେ ପୀଡିତ, ଜୀବନ ଆଶା କ୍ଷୀଣ ବହୁ କଷ୍ଟରେ ଘାଣ୍ଟି ହେଉଥିବା ରୋଗୀକୁ ଯନ୍ତ୍ରଣାବିହୀନ ଉତ୍ତମ ମରଣ ଯୋଗାଇଦେବା । ନିଜେ ରୋଗୀ ବା ରୋଗୀର ଦୁଇ ଜଣ ସମ୍ପର୍କୀୟ, ଦୁଇଜଣ ସାକ୍ଷୀ ରୋଗର ସମସ୍ତ କାଗଜପତ୍ର ଓ ଡାକ୍ତରଙ୍କ ମତାମତକୁ ନେଇ ସକ୍ରିୟ ବା ନିଷ୍କ୍ରିୟ ଉତ୍ତମ ମରଣ ପାଇଁ ଆଫିଡେଭିଟ କରି ଆବେଦନ କରିବେ । ବାକି ସବୁ କାମ ଡିଗ୍ନିଟାସ ସଂଗଠନର କର୍ମକର୍ତ୍ତାମାନେ ସମାଜସେବା ଭଳି ନିର୍ବାହ କରନ୍ତି ଓ ରୋଗୀକୁ ଉତ୍ତମ ମରଣ ପ୍ରଦାନ କରାଇ ରୋଗୀ ଓ ରୋଗୀର ପରିବାର ସଦସ୍ୟଙ୍କୁ ଅସହ୍ୟ ଯନ୍ତ୍ରଣାରୁ ମୁକ୍ତି ଦିଅନ୍ତି । ଏହି ସଂଗଠନ ଡିଗ୍ନିଟାସ ୟୁରୋପୀୟ ଦେଶମାନଙ୍କରୁ ଆସୁଥିବା ହଜାର ହଜାର ରୋଗୀଙ୍କୁ ଉତ୍ତମ ମରଣ ଯୋଗାଇବାରେ ସାହାଯ୍ୟ କରେ । କିନ୍ତୁ ଅନ୍ୟ ଏକ ସଂସ୍ଥା ଏକଜିଟ କେବଳ ସୁଇଜରଲାଣ୍ଡ ଅଧିବାସୀଙ୍କ ପାଇଁ ଏହି ସେବା ଯୋଗାଇ ଦେଇଥାଏ । ୟୁଥାନେସିଆ ବା ଉତ୍ତମ ମରଣ ଯେଉଁ ଆଦର୍ଶ ଉପରେ ଆଧାରିତ ତାହା ହେଲା ଯନ୍ତ୍ରଣାର ପରିସମାପ୍ତି, ଜୀବନର ମହତ୍ତ୍ୱ ମାନବିକତାବାଦ; ସମ୍ମାନର ସହ ମୃତ୍ୟୁ ଇତ୍ୟାଦି ଇତ୍ୟାଦି । ତାକୁ ନେଇ “ମରିବାର ଅଧିକାର” ନାମରେ ଏକ ଫିଲ୍ମ ନିର୍ମାଣ କରାଯାଇଛି ।

ସତ କହିବାକୁ ଗଲେ ସୁଇଜରଲାଣ୍ଡ ହେଉଛି ଭୂପୃଷ୍ଠରେ ସ୍ୱର୍ଗ । ତେଣୁ ରୋଗ, ଯନ୍ତ୍ରଣା ବା ମର୍ତ୍ତ୍ୟ ଏଠି ରହିବ କିପରି ! ତେଣୁ ବିଜ୍ଞାନ ତଥା ଚିକିତ୍ସା ବିଜ୍ଞାନର ଉପଯୋଗ କରି ସୁଇସ୍‌ବାସୀ ଜୀବନକୁ ଉପଯୁକ୍ତ ଭାବରେ ବଞ୍ଚାଇ ପାରିଛନ୍ତି । କିନ୍ତୁ ଉତ୍ତମ ମରଣ କେତେଦୂର ଉତ୍ତମ ତାହା ମଧ୍ୟ ଚର୍ଚ୍ଚାର ବିଷୟ । ଉତ୍ତମ ମରଣକୁ ବିରୋଧ କରୁଥିବା ଲୋକଙ୍କର ଯୁକ୍ତି ହେଲା:

୧. ମନୁଷ୍ୟ ଭଗବାନଙ୍କ ସୃଷ୍ଟି । ଜୀବନ ଯିଏ ଦେଇଛନ୍ତି ସିଏ ହିଁ ନେବେ । ଡାକ୍ତର କିଏ ? ଡାକ୍ତରଙ୍କ କାମ ଚିକିତ୍ସା । ପ୍ରାକୃତିକ ମୃତ୍ୟୁ ପୂର୍ବରୁ କୌଣସି ଲୋକଙ୍କୁ ମାରିବା

ହତ୍ୟା କରିବା ସହିତ ତୁଳନୀୟ । ଏହା ଏକ ପ୍ରକାର ହିଂସା ଏବଂ ପରମାତ୍ମାଙ୍କ ନୀତି ବିରୁଦ୍ଧ । ଅସମୟରେ ଆତ୍ମାକୁ ଶରୀରଠାରୁ ପୃଥକ୍ କଲେ ଆତ୍ମାର ମୋକ୍ଷ ନାହିଁ, ଜୀବନ ଚକ୍ର (Life cycle) କୁ ଏହା ପ୍ରଭାବିତ କରିବ । ପାପ ପୁଣ୍ୟ ହିସାବରେ ତ୍ରୁଟି ରହିବ । କର୍ମର ପ୍ରାୟଶ୍ଚିତରେ ବ୍ୟାଘାତ ଘଟିବ ଏବଂ ତାର ପରଜନ୍ମ ନିରୁପଣ କରିବାରେ ସମସ୍ୟା ସୃଷ୍ଟି ହେବ ।

୨. ଦ୍ୱିତୀୟ ଯୁକ୍ତି ହେଲା ଡାକ୍ତରଙ୍କ ଜ୍ଞାନ ସୀମିତ । ଚିକିତ୍ସା ଶାସ୍ତ୍ରରେ ରୋଗର କାରଣ ଓ ରୋଗର ନିରାକରଣ ଜ୍ଞାନ ଭୁଲ ହୋଇପାରେ । ଅନେକ ଚମତ୍କାର ଘଟଣା ମଧ୍ୟ ଘଟିଛି । ଡାକ୍ତର ରୋଗୀକୁ ମୃତ ଘୋଷଣା କଲା ପରେ ରୋଗୀ କୋକେଇରୁ ଉଠିଛି ଓ ସୁସ୍ଥ ଜୀବନ ନିର୍ବାହ କରିଛି ।

୩. ତୃତୀୟ ଯୁକ୍ତି ହେଲା ଉତ୍ତମ ମରଣ ଡାକ୍ତର ବୃତ୍ତିର ପରିପନ୍ଥୀ । ଏହା ହିପୋକ୍ରେଟସଙ୍କ ଶପଥକୁ ଉଲଂଘନ କରୁଛି । ଏପଟେ ଡାକ୍ତର ଶପଥ ନେଲେ Rx ଲେଖି କହନ୍ତି ଯେ ସେ ଜ୍ଞାନମତେ ଔଷଧ ଲେଖୁଛନ୍ତି ଯାହା ରୋଗୀପାଇଁ ହିତକାରକ ଏବଂ ରୋଗୀର ବିପଦ ବା ମୃତ୍ୟୁର କାରଣ ହେବ ନାହିଁ । ତେଣୁ ଡାକ୍ତର ଇଚ୍ଛା ମୃତ୍ୟୁ ବା ଉତ୍ତମ ମୃତ୍ୟୁ ପାଇଁ କିପରି ସୁପାରିଶ କରିବେ ?

୪. ଚତୁର୍ଥ ଯୁକ୍ତି ହେଲା ଚିକିତ୍ସା ବିଜ୍ଞାନର ପ୍ରତି ମୁହୂର୍ତ୍ତରେ ଉନ୍ନତି ଘଟି ଚାଲିଛି । କାଲି ଯାହା ଅସମ୍ଭବ ଥିଲା ଆଜି ସମ୍ଭବ ହୋଇଛି । ଆଜି ଯାହା ଅସମ୍ଭବ ଲାଗୁଛି କାଲି ସମ୍ଭବ ହୋଇପାରେ । ଡାକ୍ତରଙ୍କର କାମ ମୃତ୍ୟୁକୁ ଶତ୍ରୁ ଭାବି ସଂଗ୍ରାମ କରିବା, ମିତ୍ର ଭାବି ଆଲିଙ୍ଗନ କରିବା ନୁହଁ ।

୫. ପଞ୍ଚମ ଯୁକ୍ତି ହେଲା ରୋଗୀର ସମ୍ପର୍କୀୟମାନେ ରୋଗୀର ସମ୍ପତ୍ତି ଉପରେ ଦୃଷ୍ଟି ରଖି ଚକ୍ରାନ୍ତ କରି ଉତ୍ତମ ମରଣ ପାଇଁ ନିବେଦନ କରିପାରନ୍ତି । ଚିକିତ୍ସା ବିଜ୍ଞାନରେ ଇଚ୍ଛା ମୃତ୍ୟୁ ନାମରେ ମନୁଷ୍ୟର କ୍ଷୁଦ୍ର ସ୍ୱାର୍ଥ ଘୃଣ୍ୟ ଚକ୍ରାନ୍ତର ଶିକାର ହୋଇ ଅପବ୍ୟବହାର ହୋଇପାରେ ।

ଅପର ପକ୍ଷରେ ଉତ୍ତମ ମରଣର ସପକ୍ଷବାଦୀମାନେ ଯୁକ୍ତି ବାଢ଼ନ୍ତି ଯେ

୧. ଜୀବନ ରୋଗୀର ନିଜସ୍ୱ ଓ ମରଣ ତାର ନିଜସ୍ୱ । ଯନ୍ତ୍ରଣା ତାର ଓ ମୁକ୍ତି କାମନା ତାର । ଯଦି ଜୀବନ ଦୁର୍ବିସହ ହୋଇପଡେ ମୃତ୍ୟୁ ଜୀବନଠାରୁ ଅଧିକ ଶ୍ରେୟସ୍କର ମନେହୁଏ ତେବେ ସେହି ସମୟରେ ପୋକମାଛି ପରି ପଡି ସଢ଼ି ବଞ୍ଚିବାର ମାନେ କ'ଣ ? ଜୀବନରେ ସ୍ୱାଧୀନତା ଓ ଉନ୍ନତ ଜୀବନ ଧାରଣ ବ୍ୟକ୍ତିର ଅଧିକାର । ତେଣୁ ଉତ୍ତମ ମରଣ ବା ଉତ୍ତମ ଜୀବନଧାରଣ ପାଇଁ ବ୍ୟକ୍ତି ନିର୍ଣ୍ଣୟ କରିବ ।

୨. ରୋଗୀର କଷ୍ଟ ପରିବାରର କଷ୍ଟ ଯାହା ଅନେକ ଶାରୀରିକ, ମାନସିକ, ସାମାଜିକ ଓ ଆର୍ଥିକ ସମସ୍ୟା ସୃଷ୍ଟି କରେ । ଚିନ୍ତା କରନ୍ତୁ ଅରୁଣା ୪୧ ବର୍ଷ ମୃତବତ୍ ଡାକ୍ତରଖାନାରେ ପଡି ନିଜର ପରିବାର, ସମ୍ପର୍କୀୟ ଓ ସହଯୋଗୀମାନଙ୍କ ପାଇଁ କି ପ୍ରକାର ସମସ୍ୟା ସୃଷ୍ଟି କରିଥିବ । ଅରୁଣା ୪୧ ବର୍ଷ ଧରି ତଥାକଥିତ ନର୍କରେ ସଢୁଥିଲା ନା ପରମାତ୍ମାରେ ମିଶିବା ପାଇଁ ଅପେକ୍ଷା କରିଥିଲା ? ତା ଜୀବନର ଅବଧି ଡାକ୍ତରମାନେ ଭେଣ୍ଟିଲେଟର ଓ ଖାଦ୍ୟ ନଳୀରେ ବାନ୍ଧି ରଖିଥିଲେ । ଏଥିରେ ଜୀବନଚକ୍ର, ଆତ୍ମା, ପରମାତ୍ମା, ପାପ ପୁଣ୍ୟ ଓ ପ୍ରାୟଶ୍ଚିତର କଥା ଉଠୁଛି କାହିଁକି ? ଚିକିତ୍ସା ବିଜ୍ଞାନର ସାହାଯ୍ୟ ନ ନେଇଥିଲେ ୪୧ ବର୍ଷ ପୂର୍ବରୁ ଅରୁଣା ଦେହ ତ୍ୟାଗ କରିସାରି ଥାଆନ୍ତା । ତେଣୁ ବିଜ୍ଞାନ ମନୁଷ୍ୟର ଚିକିତ୍ସା, ସୁଖଶାନ୍ତି ଦେଖିବା ସହିତ ଉତ୍ତମ ମୃତ୍ୟୁର କଳ୍ପନା ମଧ୍ୟ କରିଛି ।

୩. ଯେଉଁ ବ୍ୟକ୍ତିର ବଞ୍ଚିବାର ଆଶା ଅତିମାତ୍ରାରେ କ୍ଷୀଣ ଏବଂ ଉପଲବ୍ଧ ଚିକିତ୍ସା ବିଜ୍ଞାନ ଅସହାୟ ସେଠାରେ ଗୋଟିଏ ଜୀବନକୁ ବସ୍ତୁଭଳି ପକାଇ ରଖି ଅଜସ୍ର ଅର୍ଥ ବ୍ୟୟ କରିବା ଏବଂ ଗୋଟିଏ ପରିବାରକୁ ଦାଣ୍ଡର ଭିକାରି କରିବା ବିଜ୍ଞତାର ପରିଚାୟକ ନୁହେଁ । ଗୋଟିଏ ଆଶାହୀନ ବ୍ୟକ୍ତିପାଇଁ ପାଞ୍ଚପ୍ରାଣୀର ଭବିଷ୍ୟତ ବା ଆଶାକୁ ନିରାଶାରେ ପରିଣତ କରିବା ଯୁକ୍ତିଯୁକ୍ତ ନୁହଁ । ଜଣେ ମୃତବତ୍ ବ୍ୟକ୍ତିପାଇଁ ପାଞ୍ଚଜଣ ଜୀବିତ ବ୍ୟକ୍ତିଙ୍କର ଉତ୍ତମ ଜୀବନଧାରଣକୁ ଜଳାଞ୍ଜଳି ଦେବା ଉଚିତ୍ କି ?

୪. ଗୋଟିଏ ଦୁରାରୋଗ୍ୟ ରୋଗରେ ପୀଡିତ ବ୍ୟକ୍ତିକୁ ବୈଜ୍ଞାନିକ ପଦ୍ଧତିରେ କଷ୍ଟରୁ ମୁକ୍ତି ଦେବା ପାଇଁ ଉତ୍ତମ ମରଣ ପ୍ରଦାନ କରିବା ହିଂସା ନା ଅହିଂସା, ପାପ ନା ପୁଣ୍ୟ ?

୫. ଉତ୍ତମ ମରଣ ବିପକ୍ଷବାଦୀମାନେ ଯେଉଁ ଯୁକ୍ତି କରନ୍ତି ଯେ ଉତ୍ତମ ମରଣ ଏକ ପଦ୍ଧତି ଯାହାଦ୍ୱାରା ଅନେକ ମହାନ୍ ବ୍ୟକ୍ତି ମୃତ୍ୟୁର ଶିକାର ହେବେ ଓ ସମାଜର ଅଶେଷ କ୍ଷତି ହେବ, ତାର ପ୍ରତ୍ୟୁତ୍ତରରେ ସପକ୍ଷବାଦୀମାନେ କହନ୍ତି ଉତ୍ତମ ମରଣ ଅକ୍ଷମ ବ୍ୟକ୍ତିପାଇଁ ନୁହଁ, ଆସନ୍ନ ମୃତ୍ୟୁ କବଳିତ ବ୍ୟକ୍ତିପାଇଁ ଉଦ୍ଦିଷ୍ଟ । ତେଣୁ ଷ୍ଟିଫେନ ହକିଙ୍ଗ, ହେଲେନ୍ କେଲର, ଭୀମଭୋଇଙ୍କ ପରି ମହାନ୍ ବ୍ୟକ୍ତିମାନେ ଶାରୀରିକ ଅକ୍ଷମ ହେଲେ ବି ଜୀବନର ଅନେକ କ୍ଷେତ୍ରରେ ସକ୍ଷମ ଥିଲେ । ତେଣୁ ସେଭଳି ବ୍ୟକ୍ତିପାଇଁ ଉତ୍ତମ ମରଣ ଚିନ୍ତା କାରାଯାଇ ନପାରେ ।

୬. ଗର୍ଭପାତ ଯଦି ଆଇନ୍ ଅନୁମୋଦିତ, ଉତ୍ତମ ମରଣ ବେଆଇନ୍ ହେବ କାହିଁକି ? ଗର୍ଭରେ ଗୋଟିଏ ଜୀବନ୍ତ ଶିଶୁ ଅଛି । ତଫାତ୍ ଏତିକି ଜଣେ ଭିତରେ ଆଉ ଜଣେ ବାହାରେ । କିନ୍ତୁ ଉଭୟ ଜୀବନ ପାଇଁ ଭାରତୀୟ ସଂବିଧାନ ଲାଗୁ ହେବ । ଭାରତୀୟ ଆଇନ୍ ଅନୁଯାୟୀ

ନିମ୍ନଲିଖିତ ପରିସ୍ଥିତିରେ ଗର୍ଭପାତ ହୋଇପାରିବ ।

(କ) ଯେଉଁଠି ଗର୍ଭଧାରଣ ୧୨ ସପ୍ତାହରୁ କମ୍ (ଜଣେ ଡାକ୍ତରଙ୍କ ଦ୍ୱାରା) ।

(ଖ) ଯେଉଁଠି ଗର୍ଭଧାରଣ ୧୨-୨୦ ସପ୍ତାହ ଭିତରେ (୨ ଜଣ ଡାକ୍ତରଙ୍କ ଦ୍ୱାରା) ।

(ଗ) ଯେଉଁଠି ଗର୍ଭ ମା'ର ଜୀବନ ପ୍ରତି ବିପଦ ସୃଷ୍ଟି କରୁଛି ।

(ଘ) ଯେଉଁଠି ଗର୍ଭ ଧର୍ଷଣ ଯୋଗୁଁ ଘଟିଛି ।

(ଙ) ଯେଉଁଠି ଗର୍ଭଧାରଣ ପରେ ଗର୍ଭସ୍ଥ ଶିଶୁ ଅକର୍ମଣ୍ୟ, ପଙ୍ଗୁ, ଅପରିପକ୍ୱ, ଅକ୍ଷମ ହୋଇ ଜନ୍ମ ହେବାର ତଥ୍ୟ ହସ୍ତଗତ ହୋଇଛି ।

(ଚ) ଯେଉଁଠି ଦମ୍ପତିଙ୍କ ଇଚ୍ଛା ବିରୁଦ୍ଧରେ ଗର୍ଭନିରୋଧକ ପଦ୍ଧତିର ଅସଫଳତା ପାଇଁ ଗର୍ଭ ସଂଚାର ହେଲା । ଉପର ସୂଚିତ କେତେକ ପରିସ୍ଥିତିରେ ଗର୍ଭସ୍ଥ ଭ୍ରୂଣକୁ ନଷ୍ଟ କରିବା ଆଇନ ସମ୍ମତ । ତେବେ ମୃତବତ ଥିବା ବା ଯନ୍ତ୍ରଣାରେ ଜର୍ଜରିତ ହେଉଥିବା ବ୍ୟକ୍ତି ଯାହାର ଉପସମ ନାହିଁ ସେ କାହିଁକି ଇଚ୍ଛାମୃତ୍ୟୁ ନେବେ ନାହିଁ !

୭. ଉତ୍ତମ ମରଣ ସୁଯୋଗର ଅପବ୍ୟବହାର ରୋକିବା ପାଇଁ ଏଭଳି ନିୟମ ପ୍ରଣୟନ ହେବା ଦରକାର ଯଦ୍ୱାରା ଦରଖାସ୍ତକାରୀ ବା ତାର ପରିବାର ସଦସ୍ୟ ଆଫିଡେଭିଟ୍ ମାଧ୍ୟମରେ ଦରଖାସ୍ତକରିବେ ଏବଂ ଅନ୍ୟୂନ ୩ ଜଣ ପରିବାର ସଦସ୍ୟଙ୍କର ସମ୍ମତି ଥିବ । ୩ ଜଣ ଡାକ୍ତର ବିଚାର ବିମର୍ଶ ଓ ପରିସ୍ଥିତିର ଅନୁଧ୍ୟାନ କରି ଜଣଙ୍କର ଇଚ୍ଛାମୃତ୍ୟୁ ବିଷୟରେ ନିଷ୍ପତ୍ତି ନେବେ । ଜିଲ୍ଲା ମାଜିଷ୍ଟ୍ରେଟଙ୍କ ରିପୋର୍ଟକୁ ଆଧାର କରି ମୁଖ୍ୟ ଜିଲ୍ଲା ଜଜ୍‌ଙ୍କ ଅନୁମତିରେ ଇଚ୍ଛାମୃତ୍ୟୁକୁ କାର୍ଯ୍ୟକାରୀ କରାଯିବ ।

ମୃତ୍ୟୁ ଯୋଜନା (Death Plan)- ପ୍ରମାଣ ନଥାଇ ଅନେକ ଯୁକ୍ତି କରନ୍ତି ଯେ ତ୍ରେତୟା ଯୁଗର ଲୋକମାନେ ୩୦୦ ବର୍ଷ ବଞ୍ଚୁଥିଲେ । ଦ୍ୱାପର ଯୁଗରେ ଲୋକମାନେ ୨୦୦ ବର୍ଷ ବଞ୍ଚୁଥିଲେ ଓ କଳିଯୁଗରେ ୧୦୦ ବର୍ଷ ବଞ୍ଚିବେ । ତେବେ କଳିଯୁଗ କେବେଠାରୁ ଆରମ୍ଭ ହୋଇ କେଉଁ ପର୍ଯ୍ୟନ୍ତ ଚାଲିବ ତାହା ବୈଜ୍ଞାନିକ ବା ଐତିହାସିକ ମାନଙ୍କୁ ଜଣା ନାହିଁ । ଅଥଚ ବିଜ୍ଞାନ ଓ ଚିକିତ୍ସା ବିଜ୍ଞାନ ମନୁଷ୍ୟର ଜୀବନକାଳ ବା ଆୟୁକୁ ବଢ଼ାଇ ଚାଲିଛି । ଭାରତ ସ୍ୱାଧୀନ ହେଲାବେଳକୁ ଭାରତୀୟମାନଙ୍କ ହାରାହାରି ଜୀବନକାଳ ୪୫-୫୦ ବର୍ଷ ଥିଲା । ଏବେ ତାହା ୬୦-୭୦ ବର୍ଷକୁ ବଢ଼ିଗଲାଣି । ଆମେରିକା, ସୁଇଜରଲାଣ୍ଡ, ନରୱେ, ଫ୍ରାନସ୍, ଜାପାନ ପ୍ରଭୃତି ରାଷ୍ଟ୍ରରେ ହାରାହାରି ଆୟୁ ୮୦-୯୦ ବର୍ଷ ଯାହା ଆଗାମୀ ୨୦ ବର୍ଷରେ ୧୦୦ ବର୍ଷକୁ ଛୁଇଁବ । ଏହି ପରିପ୍ରେକ୍ଷୀରେ ବରିଷ୍ଠବ୍ୟକ୍ତି ମାନଙ୍କର ସଂଖ୍ୟା ବଢ଼ି ଚାଲିବ । ଏବଂ ୧୦୦ ବର୍ଷରେ କୌଣସି ବୃଦ୍ଧ ଅନେକ ରୋଗର ଗନ୍ତାଘର ହୋଇ କଷ୍ଟରେ ବଞ୍ଚିବାକୁ ଇଚ୍ଛା ନକରି ପାରନ୍ତି । ଦୁର୍ବିସହ କଷ୍ଟରୁ ମୁକ୍ତି ପାଇଁ ମୃତ୍ୟୁ ଯୋଜନା

ତିଆରି କରିବା ଶ୍ରେୟସ୍କର ହେବ । ସରକାରଙ୍କ ପଞ୍ଚବାର୍ଷିକ ଯୋଜନା ଭଳି ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତି ନିଜ ପରମାୟୁର ହିସାବ ଦେଖିବେ । ନିଜ ଶରୀରରେ ରୋଗର ଭୟାବହତା ଦେଖି, ମୃତ୍ୟୁର ଆସନ୍ନ ସମୟ ଦେଖି ଡାକ୍ତରଙ୍କ ମତାମତକୁ ନେଇ ମୃତ୍ୟୁ ଯୋଜନା ବା ଡେଥ ପ୍ଲାନ ତିଆରି କରିବେ । ଏଥିପାଇଁ ଉପଯୁକ୍ତ ସମୟରେ ମରିବାକୁ ଚାହାନ୍ତି, କେଉଁ ଡାକ୍ତରଖାନାରେ ମରିବାକୁ ଚାହାନ୍ତି, ସକ୍ରିୟ ବା ନିଷ୍କ୍ରିୟ ଉତ୍ତମ ମରଣ ଚାହାନ୍ତି, ସମ୍ପତ୍ତିବାଡି କାହାକୁ ଦାନ କରିବାକୁ ଚାହାନ୍ତି, ଆପଣାର ସମାଧି କେଉଁଠାରେ ଦେବାକୁ ଚାହାଁନ୍ତି, ମୃତ୍ୟୁ ସମୟରେ କେଉଁ ସାଙ୍ଗ, ବନ୍ଧୁ, ପରିଜନ, ଓକିଲ, ଡାକ୍ତରଙ୍କୁ ଆମନ୍ତ୍ରଣ କରାଯିବ, ମୃତ୍ୟୁର କ୍ରିୟାକର୍ମ ପାଇଁ କେତେ ଖର୍ଚ୍ଚ ହେବ, କେଉଁ ଅଙ୍ଗ ଦାନ କରାଯିବ ସେ ସବୁ ଇଚ୍ଛା ମୃତ୍ୟୁ ପତ୍ରରେ ସ୍ଥାନ ପାଇବ । ଅତଏବ ବର୍ତ୍ତମାନ ସମୟରେ ଚିକିତ୍ସା ବିଜ୍ଞାନ, ମୃତ୍ୟୁ ଯୋଜନା ଓ ଉତ୍ତମ ମରଣ ମନୁଷ୍ୟର ଉନ୍ନତି ଓ ମହତ୍ ଜୀବନଯାପନ ପାଇଁ ଆବଶ୍ୟକ କି  ଅନାବଶ୍ୟକ ଟିକିଏ ଚିନ୍ତା କରନ୍ତୁ ।



# ମାନବିକ ଅଧିକାର, ପ୍ରାକୃତିକତା  ଓ ଯୌନ ସମ୍ପର୍କ

*ଡକ୍ଟର ପ୍ରତାପ କୁମାର ରଥ*

ସମାଜ ସୃଷ୍ଟିର ଆରମ୍ଭରୁ ମଣିଷର ବ୍ୟକ୍ତିଗତ ଜୀବନର ସ୍ୱାଧୀନତା ଏବଂ ସମାଜରେ ରହି ପାରୁଥିବା ସୁରକ୍ଷା ପାଇଁ କିଛିଟା ପରାଧୀନତା, ଏହି ଦୁଇ ପରସ୍ପର ବିରୋଧୀ ଶକ୍ତି ଭିତରେ ଦ୍ୱନ୍ଦ୍ୱ ଲାଗି  ରହିଛି । ବିଜ୍ଞାନ ଏବଂ ମାନବିକ ଅଧିକାର ଚିନ୍ତାଧାରା ଦୁଇଟି ମଣିଷର ଅଗ୍ରଗତିର ଦୁଇଟି ଦିଗ । ଏକ ଅନ୍ୟର ପରିପୂରକ । ଏ ଦୁଇଟିର ଅବଦାନରେ ମଣିଷ ଧୀରେ ଧୀରେ ସମାଜକୈନ୍ଦ୍ରିକ ହୋଇଛି । ସମ୍ପୂର୍ଣ୍ଣ ରୂଢ଼ିବାଦୀ ଏବଂ ଅଳ୍ପ ଲୋକଙ୍କ ପାଖରେ ଶକ୍ତି ସାମର୍ଥ୍ୟର କେନ୍ଦ୍ରୀକରଣ ଅବସ୍ଥାରୁ ଆତ୍ମସମ୍ମାନ ସହିତ ବଞ୍ଚିବାର ଅଧିକାର ସାବ୍ୟସ୍ତ କରିପାରୁଥିବା ବ୍ୟକ୍ତିକୈନ୍ଦ୍ରିକ ସମାଜ ଆଡ଼କୁ ଅଗ୍ରସର ହେଉଛି । ମଣିଷ କୌଣସି କ୍ଷୁଦ୍ର ଗୋଷ୍ଠୀ ଦ୍ୱାରା ଶୃଙ୍ଖଳିତ ନ ହୋଇ ସମଗ୍ର ମାନବଜାତିର ଏକ  ଅଂଶ ବିଶେଷ ହୋଇପାରୁଛି । ହଜାର ହଜାର ବର୍ଷ ଧରି ଦଳିତ ହୋଇ ନିଷ୍କେସିତ ହୋଇଥିବା ମହିଳା, ଶିଶୁ, ବିଭିନ୍ନ ଜାତି, ଦେଶ, ପ୍ରଦେଶ, ସ୍ୱଳ୍ପ ଭାଷାଭାଷୀ ମଣିଷ ଆଜି ପ୍ରତିବାଦର ସ୍ୱର ଉତ୍ତୋଳନ କରୁଛି । ଆବଶ୍ୟକତାକୁ ଲଂଘି ନିଜର ଅଧିକାରକୁ ସାବ୍ୟସ୍ତ କରୁଛି । ସେତେବେଳେ କିଛିଟା ରୂଢ଼ିବାଦୀ ସାମନ୍ତବାଦୀ ନେତା ବଡ଼ ବ୍ୟସ୍ତ ବିବ୍ରତ ହୋଇ ସ୍ୱାଧୀନ ଚିନ୍ତାଧାରାକୁ "ପ୍ରାକୃତିକତା"ର ଗଣ୍ଡି ଭିତରେ ଧରି ରଖି ତାଙ୍କର ହୀନମନ୍ୟତା ଏବଂ ମାନବିକ ଅଧିକାର ବିରୋଧୀ ଚିନ୍ତାଧାରାକୁ ସମାଜର ସ୍ୱୀକୃତି ପାଇଁ ବ୍ୟବହାର କରୁଛନ୍ତି । ସେ ଚିନ୍ତାଧାରାର ସୀମିତତାକୁ ବ୍ୟାଖ୍ୟା କରି ହେତୁବାଦୀମାନଙ୍କ ସମ୍ମୁଖରେ ପ୍ରତିପାଦନ କରିବା ଏ ଲେଖାର ମୂଳ ଲକ୍ଷ୍ୟ ।

ପ୍ରଥମେ ଏହି କଥା ମନେ ରଖିବାକୁ ହେବ ଯେ ପ୍ରତ୍ୟେକ ମାନବବାଦୀ, ହେତୁବାଦୀ, ନାସ୍ତିକ ମାନବିକ ଅଧିକାରରେ ବିଶ୍ୱାସ ରଖନ୍ତି । ତାଙ୍କର ଚିନ୍ତାଧାରା ସମାଜରେ ପ୍ରଚଳିତ ଭୟଭିତ୍ତିକ ଧର୍ମବିଶ୍ୱାସ ବା ବଦ୍ଧମୂଳ ଧାରଣାର ବିରୋଧ କରେ । ସେମାନେ

ସ୍ୱାଧୀନ ଭାବରେ ଚିନ୍ତାବ୍ୟକ୍ତ କରିବା, ପ୍ରଶ୍ନର ସମ୍ମୁଖୀନ ହେବା ଏବଂ ସ୍ଥଳବିଶେଷରେ ପ୍ରମାଣ ଉପଲବ୍ଧ ହେଲେ ମତର ପରିବର୍ତ୍ତନ କରିବା ସେମାନଙ୍କର ବୈଶିଷ୍ଟ୍ୟ । କୌଣସି ଲେଖାଦ୍ୱାରା ଶୁଦ୍ଧ ଭାବରେ ଚିନ୍ତାଧାରା ଦ୍ୱାରା ବାନ୍ଧି ହୋଇ ରହିଥିବା ଲୋକଠାରୁ ସ୍ୱତନ୍ତ୍ର ବୋଲି ପ୍ରମାଣ ଦେଇ ସାରିଛନ୍ତି । ବିଜ୍ଞାନ, ବୈଜ୍ଞାନିକ ଚିନ୍ତାଧାରା ଏବଂ ମାନବିକ ଅଧିକାର ଏ ସବୁ ମଣିଷର ସ୍ୱାଧୀନ ଚିନ୍ତାଧାରା, ଅନୁସନ୍ଧିତ୍ସା ଏବଂ ଜାଣିବାର ଇଚ୍ଛା ଉପରେ ପର୍ଯ୍ୟବସିତ । ପ୍ରଥମେ ବୈଜ୍ଞାନିକ ଚିନ୍ତାଧାରା ଏବଂ ମାନବିକ ଅଧିକାର ସମ୍ପର୍କକୁ ବୁଝିବା ଆବଶ୍ୟକ । ସେଥି ସହିତ "ପ୍ରାକୃତିକତା" କୁ ମଧ୍ୟ ବୁଝିବା ଆବଶ୍ୟକ । ପ୍ରକୃତି କହିଲେ ଦୁଇଟି ଅର୍ଥ ବୁଝାଏ । ମଣିଷର ପ୍ରକୃତି ବା ଧର୍ମ (Characteristics) ହେଲା ପରିବର୍ତ୍ତନ ଖୋଜିବା । ଆମକୁ ଭଲଲାଗୁ ବା ନ ଲାଗୁ ସମାଜରେ ପରିବର୍ତ୍ତନ ହେଉଛି ଏବଂ ଏହା କିଛି ମଣିଷଙ୍କ ଦ୍ୱାରା ହିଁ ହେଉଛି । ଯେଉଁ ମଣିଷର ପ୍ରକୃତି ବା ବ୍ୟବହାର ଯାହା ତାହା ହିଁ ତାର ପ୍ରାକୃତିକତା । କାହାକୁ ଆମିଷ ଭଲ ଲାଗେ, କିଏ ବାମ ହାତରେ କାର୍ଯ୍ୟକରେ, କିଏ ଚୁପ୍ ରହେ, କିଏ ମନଇଚ୍ଛା ମତବ୍ୟକ୍ତ କରି ନିଜକୁ ହାସ୍ୟାସ୍ପଦ କରାଏ ଏସବୁ ତାଙ୍କର ପ୍ରକୃତିଗତ ତେଣୁ ପ୍ରାକୃତିକ । ଦ୍ୱିତୀୟ ପ୍ରକୃତିର ଅର୍ଥ ହେଲା ଯାହା ସଭ୍ୟତା ଏବଂ ବିଜ୍ଞାନର ଆଲୋକର ସ୍ପର୍ଶ ନ ପାଇ ସେଇ ହଜାର ହଜାର ବର୍ଷ ତଳର ଚିନ୍ତାଧାରା ବା ଅବସ୍ଥାରେ ଅଛି ତାହା ହିଁ ପ୍ରାକୃତିକ । ଯଥା : କୁକୁର, ବିରାଡି, ସାପ, ବେଙ୍ଗ, କୋଚିଆ ଇତ୍ୟାଦି ଯେଉଁ ଅବସ୍ଥାରେ ଅଛନ୍ତି ସେଥିରୁ ମଣିଷର "ପ୍ରାକୃତିକତା" କୁ ନିର୍ଣ୍ଣୟ କରିବା । ଗୋଟିଏ ଟି.ଭି. ରେକର୍ଡିଂ ଚାଲିଥିବା ସମୟରେ ଜନୈକ ମହିଳା ଲେଖିକା ଗୋଟିଏ ମତ ଦେଲେ ଯେ "ଜଣେ ପୁରୁଷ ଜଣେ ସ୍ତ୍ରୀ ଲୋକକୁ ଏକୁଟିଆ ପାଇଲେ ତାକୁ ରେପ୍ କରିବାକୁ ଚାହେଁ ।" ମୋ କାନମୁଣ୍ଡା ଗରମ ହୋଇଗଲା । ତୁରନ୍ତ ପାଟି କରି କହିଲି ଦୟାକରି ଏ ଭଳି ମନ୍ତବ୍ୟ ଦିଅନ୍ତୁ ନାହିଁ । ତେବେ ରେକର୍ଡିଂ ରେ ଉପସ୍ଥିତ ଥିବା ତଥାକଥିତ ଅଡିଆନ୍ସ ଭିତରେ ତାଙ୍କ ପ୍ରତି ବିପୁଳ ସମର୍ଥନ ଥିବା ଦେଖାଗଲା । ବୁଝି ପାରିଲିନି ଏ ବ୍ୟକ୍ତିମାନେ ନିଜକୁ "ସାମାଜିକ ପ୍ରାଣୀ" ବୋଲି ଏବଂ "ସମାଜକୁ ରକ୍ଷା କରିବାକୁ ଯାଇ" ଏଭଳି ମନ୍ତବ୍ୟ ଦେଉଛନ୍ତି କିପରି ? ଏମାନେ କ'ଣ କେବେ ନିଜ ମାଆ, ନିଜ ଭଉଣୀ ବା ନିଜ ଝିଅ ପାଖରେ ଏକୁଟିଆ ରହି ନାହାଁନ୍ତି ? ଏକୁଟିଆ ଜଣେ ସ୍ତ୍ରୀ ଲୋକର ଅସୁବିଧା କାଳେ ହେବ ବୋଲି ତା ଘର ପର୍ଯ୍ୟନ୍ତ ଛାଡି ଆସି ନାହାନ୍ତି ? "ସମାଜର ରକ୍ଷା ପାଇଁ" ଏ ଅତି ବିଚିତ୍ର ଚିନ୍ତାଧାରା । ନାଁ, ଚିନ୍ତାର ଅଭାବ ? ହଜାର ହଜାର ବର୍ଷ ଧରି ଚାଲି ଆସିଥିବା ପ୍ରାକୃତିକତା ମନୋନୟନ ମଣିଷର ଚିନ୍ତାଧାରା ଏବଂ ବିଜ୍ଞାନର ପ୍ରଭାବରେ ନୂଆ ରୂପ ନେଉଛି । ମଣିଷ ଆଉ ହଜାର ହଜାର ବର୍ଷ ପରିବର୍ତ୍ତନ ପାଇଁ ଅପେକ୍ଷା କରୁନାହିଁ । ପ୍ରଜନନ ବିଜ୍ଞାନ, ମନୋନୀତ ସନ୍ତାନଜନ୍ମ, କ୍ଲୋନିଂ (Genetics, Selective breeding, Cloning) କୁ ଅତିକ୍ରମ କରି

ମଣିଷ ବିଜ୍ଞାନାଗାରରେ ଜୀବନର ସୃଷ୍ଟି ପାଇଁ ଆଗେଇ ଚାଲିଛି । ସ୍ପେସ୍ ଏକ୍ସପ୍ଲୋରେସନ, ମହାସାଗରର ଅତଳ ଗର୍ଭରେ ଗବେଷଣା, ସବ୍ -ଅଟୋମିକ୍ ପାର୍ଟିକେଲର ଉପଯୋଗ, ଆହୁରି ଶକ୍ତିଶାଳୀ କମ୍ପୁଟର ଠାରୁ ଆରମ୍ଭ କରି ମଣିଷ ଜୀବନକୁ ଆହୁରି ସହଜ କରିବା ପାଇଁ ବିଜ୍ଞାନର ଅଗ୍ରଗତି । ଯେତେକ ବିଜ୍ଞାନ-ବିରୋଧୀ ବାବା, ମାତା ବିଜ୍ଞାନର ସୁଖ ଯଥା ବସ୍ତ୍ର ପରିଧାନ, ମୋବାଇଲ ଓ ଏ.ସି. କାର୍‌ର ବ୍ୟବହାର, ସୁଷମ ଖାଦ୍ୟ ଗ୍ରହଣ ବେଳେ "ପ୍ରାକୃତିକତା" କୁ ଦୃଷ୍ଟି ଦିଅନ୍ତି ନାହିଁ । କୌଣସିମତେ ଲୋକଙ୍କ ଭୟାଳୁ ମନୋଭାବର ସୁଯୋଗ ନେଇ ନିଜର ସୁଖଦ ଚଳଣିର ସହଜ ବ୍ୟବସ୍ଥା କରି ସାରିଲାପରେ ଏମାନେ ବିଜ୍ଞାନ ବିରୁଦ୍ଧରେ କହି ଚାଲନ୍ତି । ଗୋଟିଏ ଅର୍ଥରେ ଦେଖିଲେ ଏ ସମାଜରେ ଯାହା ଚାଲିଛି ସବୁ ଅପ୍ରାକୃତିକ । ପୋଷାକ ପିନ୍ଧିବା, ରନ୍ଧା ଖାଦ୍ୟ ଖାଇବା, ଘରେ ରହିବାଠାରୁ ଆରମ୍ଭ କରି ସମାଜର ବନ୍ଧନରେ ବଞ୍ଚିବା ସବୁ ଅପ୍ରାକୃତିକ କାହିଁକି ନା କୁକୁର ବିରାଡି ଏଗୁଡାକ କରନ୍ତି ନାହିଁ । ଆଉ କେତେକ ପ୍ରାକୃତିକତାକୁ ଦେଖେଇବାକୁ ଯାଇ ଖୋଜି ଖୋଜି ଉଦାହରଣ ଦିଅନ୍ତି ଯେ ତମେ ଯାହାକୁ ଅପ୍ରାକୃତିକ ଓ ଅସଂସ୍କୃତ କହୁଛ ସେ ସବୁ ପ୍ରାକୃତିକ କାହିଁକି ନା କୁକୁର, ବିରାଡି ନ କଲେ ଆଉ କେତେ ପ୍ରାଣୀ କରୁଛନ୍ତି ଆଉ ସେଗୁଡାକ ସବୁ ସଂସ୍କୃତି କାହିଁକି ନା ବିଭିନ୍ନ ପୁରୁଣା ଲେଖାରେ ତାର ଉଲ୍ଲେଖ ଅଛି । ଏତେ ଉଦ୍‌ଭ୍ରାନ୍ତ ଏ ଚିନ୍ତାଧାରା ଯେ ଯେଉଁମାନେ ଏହାଦ୍ୱାରା ପୀଡିତ ସେମାନେ ମଧ୍ୟ ଏହି ଚିନ୍ତାଧାରାର ଗଣ୍ଡି ଭିତରେ ନିଜର ମାନବିକ ଅଧିକାରକୁ "ସାବ୍ୟସ୍ତ" କରିବାକୁ ଚେଷ୍ଟା କରନ୍ତି । ଗୋଟିଏ ଉଦାହରଣ ନେବା, "ଦିଲ୍ଲୀ ହାଇକୋର୍ଟ" ସମଲିଙ୍ଗୀ ଯୌନ ସଂପର୍କ ଉପରେ ତର୍ଜମା କରି ମନ୍ତବ୍ୟ ଦେଲେ ଯେ ଏହାକୁ ଗୋଟିଏ ଅପରାଧ ବୋଲି ଧରା ହେବା ଦ୍ୱାରା ପୋଲିସ୍ ଆଇନ୍‌ମାନି ଚଳୁଥିବା ନାଗରିକମାନଙ୍କ ଉପରେ ଅତ୍ୟାଚାର କରିବାର ସୁଯୋଗ ପାଉଛି । ପୋଲିସ୍‌କୁ ଅଧିକାର ଦିଆଯାଇଛି ନାଗରିକଙ୍କ ଅଧିକାର ସୁରକ୍ଷା ପାଇଁ । ଅଧିକାରରୁ ଅଧିକ ମାନବବାଦୀ ଚିନ୍ତାଧାରା କୌଣସି ମଣିଷର ଯୌନ ଅଧିକାରଜନିତ ଭେଦଭାବ ବିରୁଦ୍ଧରେ ଆଗେଇ ଚାଲିଛି । ମହିଳାଙ୍କ ଅଧିକାର, ଶିଶୁଙ୍କ ଅଧିକାର, ଭିନ୍ନକ୍ଷମ, ଏବଂ ତଫସିଲ ଭୁକ୍ତ ଜାତି ଏବଂ ଉପଜାତିର ଅଧିକାର, ଦଳିତଙ୍କ ଅଧିକାର, ସଂଖ୍ୟାଲଘୁଙ୍କ ଅଧିକାର ଏବଂ ସାଧାରଣ ନାଗରିକଙ୍କର ଜାଣିବାର ଅଧିକାର ଆଦି ନାଗରିକଙ୍କୁ ସୁଯୋଗ ଭାରତରେ ମାନବିକ ଚିନ୍ତାଧାରାକୁ ଉଚ୍ଚସ୍ତରକୁ ନେଇଯାଇଛି । ଏ ସବୁ ଗୋଟିଏ ଦୃଷ୍ଟିରୁ ଅପ୍ରାକୃତିକ କିନ୍ତୁ ସଂପୂର୍ଣ୍ଣ ମାନବିକ । ଅନ୍ୟ ଦୃଷ୍ଟିରୁ ଦେଖିଲେ ସମ୍ପୂର୍ଣ୍ଣ 'ପ୍ରାକୃତିକ' କାହିଁକି ମଣିଷ ପ୍ରକୃତି ବିଭିନ୍ନତା ଖୋଜେ, ଚିନ୍ତାଧାରାର ସ୍ୱାଧୀନତା ଖୋଜେ ଏବଂ ଅପବ୍ୟବହାର ଓ ଶୋଷଣରହିତ ଗୋଟିଏ ମଣିଷ ପରି ମଣିଷ ଜୀବନ ଖୋଜେ । ଦିଲ୍ଲୀ ହାଇକୋର୍ଟର ଏହି ମତକୁ ସୁପ୍ରିମ କୋର୍ଟ ଅଟକାଇବାକୁ ମନା କରିଦେଲେ । ସରକାରଙ୍କର ତିନୋଟି ବିଭାଗ ରୂଢ଼ିବାଦୀ ଚିନ୍ତାଧାରା, ରାଜନୈତିକ ସୁବିଧାବାଦ

ଠାରୁ ଉର୍ଦ୍ଧ୍ୱରେ । ଏବେ ସେମାନେ ମତବ୍ୟକ୍ତ କରିଛନ୍ତି ଯେ ସେମାନେ ଏହାକୁ ବିରୋଧ କରିବେ ନାହିଁ ।  ବିରୋଧ କରୁଛନ୍ତି ଜଣେ ବାବା । ସେ ୪୨୦ ଧାରାରେ ଧରାହେବା କଥା । ଧର୍ମ ନାଁରେ ଲୋକେ ଏତେ ଭୟଭୀତ ଯେ ତାଙ୍କର ସବୁ ଗାଲୁକୁ ସହି ଯାଉଛନ୍ତି । ଏପରିକି 'ଯୋଗଦ୍ୱାରା ଏଡସ୍, କ୍ୟାନସର ଭଲହେବ କହୁଥିବା ଲୋକଙ୍କୁ ଜାଲିଆତିରେ କେହି ଧରୁନାହାନ୍ତି । ତେଣୁ ଆର ଗାଲୁଟି ହେଲା ସମଲିଙ୍ଗୀମାନଙ୍କୁ ଭଲ କରିବା । କୌଣସି ବାବାଙ୍କର ବିରୋଧ କାମ ଦେବନାହିଁ ବୋଲି ମୋର ଦୃଢ଼ ବିଶ୍ୱାସ । ମାନବିକତାର ଜୟ ହେବ । ମାନବିକ ଅଧିକାରର ଜୟ ହେବ । ନିଜର ଯୌନଶକ୍ତିକୁ ବାବା କେଉଁ "ପ୍ରାକୃତିକ" ଉପାୟରେ ପରିଚାଳନା କରୁଛନ୍ତି ଦୁନିଆଁକୁ ଜଣେଇଲେ ଲୋକେ ଆହୁରି ଉଦ୍‌ବୁଦ୍ଧ ହେବେ । ଆମେ କିନ୍ତୁ ଅପ୍ରାକୃତିକ (ବା ମାନବଦ୍ୱାରା ସୃଷ୍ଟ ଅତି ପ୍ରାକୃତିକ) କାର୍ଯ୍ୟକୁ ସ୍ୱୀକାର କରୁ ମାନବିକ ଅଧିକାର ଭାବେ । ଅଳ୍ପଦିନ ତଳେ ସେଇ ମାନବିକ ଅଧିକାର ଶକ୍ତି ନେଇ ଉଚ୍ଚ ନ୍ୟାୟାଳୟ ଜଣେ ମାନସିକଭାବେ ପୀଡ଼ିତ ସ୍ତ୍ରୀଲୋକଙ୍କର ଜନ୍ମଦେବାର ଅଧିକାରକୁ ସାବ୍ୟସ୍ତ କରିଛନ୍ତି । ଏଥିରେ ଶିଶୁ ଲାଳନପାଳନର ମୌଳିକ ଦାୟିତ୍ୱ ବାପା ମାଆଙ୍କ ଉପରେ ନଛାଡି ସମାଜର ପ୍ରାଥମିକ ଦାୟିତ୍ୱ ବୋଲି ସୂଚାଇଛନ୍ତି । ଏହା ନାବାଳକ ନ୍ୟାୟ ଆଇନର ପରିପ୍ରେକ୍ଷୀରେ ପ୍ରଦତ୍ତ । ଏଥିରେ ଜଣେ ସ୍ତ୍ରୀଲୋକର ଗର୍ଭଧାରଣ ଏବଂ ପ୍ରସବର ଅଧିକାରକୁ ଉଚ୍ଚସ୍ଥାନ ଦିଆଯାଇଛି । ଯଦି ଆଇନ୍ ସବୁଠି ପଶେ ତାହେଲେ ପ୍ରତ୍ୟେକ ମାଆ ଗର୍ଭଧାରଣ ପାଇଁ ଆଇନ୍‌ର ଦ୍ୱାରସ୍ଥ ହେବେ । ପ୍ରତ୍ୟେକ ମଣିଷ ନିଜର ସୁନାଗରିକତ୍ୱକୁ ସାବ୍ୟସ୍ତ କିରବା ପାଇଁ ସବୁଦିନ ସକାଳୁ ଥାନା ଆଗରେ ଠିଆ ହେବ ।

ମାନବିକ ଅଧିକାର ଆମକୁ ସେ ସୁରକ୍ଷା ଦେଇଛି । ଗଣତନ୍ତ୍ର ଆମକୁ ସେ ମୂଲ୍ୟବୋଧ ଦେଇଛି । ସାଧାରଣତଃ ଲୋକମାନେ ଭଲ । ସେଥିପାଇଁ ପ୍ରମାଣର ଆବଶ୍ୟକତା ନାହିଁ । ଅପବ୍ୟବହାର, ଶୋଷଣର ଅବକାଶ ବା ଅଭିଯୋଗ ନ ଆସିବା ପର୍ଯ୍ୟନ୍ତ ମୋର ଘର ଭିତର କାର୍ଯ୍ୟାବଳୀ ମୋର ମାନବିକ ଅଧିକାର ଭିତରେ ରହିଛି । ତାକୁ କେହି କ୍ୟାମେରା ଲଗେଇ "ପ୍ରାକୃତିକତା" ର ପ୍ରମାଣପତ୍ର ଦେଇପାରିବେ ନାହିଁ । ତାହା ଅଶ୍ଳୀଳତାର ଅଂଶ ବିଶେଷ ହୋଇଯିବ । ସେଇ ଟିଭି ସୋ ରେକଡିଂରେ ମହିଳା ଜଣକ ବାତ୍ସାୟନ ଲେଖାର ଅବତାରଣା କଲେ । ମୁଁ ବୁଝିପାରିଲି ନାହିଁ ସେ କୁଆଡେ ୬୪ ପ୍ରକାର ଭଙ୍ଗୀ କଥା କହିଛନ୍ତି । ସେ ସବୁତକ ପ୍ରାକୃତିକ (ଅତି ପ୍ରାକୃତିକ) କି ନାହିଁ ତାକୁ ଏ ପ୍ରକାର ବାବୁ ବା ମହିଳାମାନେ ସ୍ୱୀକୃତି ଦେବାର ନଜିର ନାହିଁ । ତେବେ ଆମ ମାନବିକ ଅଧିକାର ଭାଷାରେ ସବୁତକ ପ୍ରାକୃତିକ । ଯାହାର ପ୍ରକୃତି (ଦିଜଣଙ୍କର) ସିଆଡେ ଗଲା ସେ ସବୁ ପ୍ରାକୃତିକ । ଆମେ ତାଙ୍କ କାର୍ଯ୍ୟକଳାପକୁ ପ୍ରମାଣପତ୍ର ଦବାର କୌଣସି ଆବଶ୍ୟକତା ନାହିଁ । ଯେହେତୁ ଏ ବାବୁମାନେ ମଣିଷର ମଣିଷତାକୁ ତା ଶରୀରରେ ବନ୍ଦ କରି ରଖନ୍ତି ତେଣୁ ତାଙ୍କୁ ସବୁ ଭୟଭୀତ କରିଦିଏ ।

ମଣିଷର ଯୌନ ପ୍ରକ୍ରିୟା ଆରମ୍ଭ ହୁଏ ମୁଣ୍ଡରୁ । ମୁଣ୍ଡ ଠିକ୍ ନଥିଲେ, ଦୁଶ୍ଚିନ୍ତା ଥିଲେ କ୍ରିୟାପ୍ରକ୍ରିୟା କିଛି ହୁଏ ନାହିଁ । ଏ ଚିନ୍ତାଧାରା ମଣିଷର ନିଜସ୍ୱ । ଏଥିରେ ନିଜେ ନିଜ ସହିତ ଭଲ ପାଉଥିବା, ବିବାହ ସମ୍ପର୍କ ଥିବା ବା ବୁଝାମଣା ଥିବା (with consent) ଅନ୍ୟ ଜଣେ ସମଲିଙ୍ଗୀ ବା ବିରାମ ଲିଙ୍ଗୀ ବ୍ୟକ୍ତିକୁ ସୁଖ ଦେବା ଉଦ୍ଦେଶ୍ୟକୁ ନେଇ ପର୍ଯ୍ୟବସିତ । ଆଜିକାଲିର ଯୌନକୈନ୍ଦ୍ରିକ ଜୀବନରେ ଏଇଟା ହିଁ ପ୍ରାକୃତିକ । ଜଣେ ପୁରୁଷ ଆଉ ଜଣେ ପୁରୁଷକୁ ଭଲ ପାଇଲା ବା ଜଣେ ସ୍ତ୍ରୀଲୋକ ଆଉ ଜଣେ ସ୍ତ୍ରୀ ଲୋକକୁ ଭଲ ପାଇଲା ଏଥିରେ ଆମର ପୀଡ଼ିତ ହେବାର କାରଣ ନାହିଁ । ଘୃଣା କଲେ ବା ହିଂସା କଲେ ଆମର ବ୍ୟଥିତ ହେବାର କାରଣ ରହିପାରେ । ଭଲ ପାଇଲେ ଆଦୌ ନୁହେଁ । ଏହି ବ୍ୟକ୍ତିମାନେ ସମାଜର ଗତାନୁଗତିକ ଚିନ୍ତାଧାରାଠୁଁ ଦୂରେଇ ଯାଇ ନିଜର ସ୍ୱାତନ୍ତ୍ର୍ୟ ଦେଖେଇ ପାରିବାର ସାମର୍ଥ୍ୟ ଦେଖାଇଛନ୍ତି । ଅପବ୍ୟବହାର, ଶୋଷଣ ଓ ବୈଷମ୍ୟର ସାମନା କରିଛନ୍ତି । ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ଏମାନେ ପାଳିତ ଶିଶୁ ବା ଜନ୍ମିତ ଶିଶୁକୁ (ଉଭୟ ସ୍ତ୍ରୀ ଲୋକ ହୋଇଥିଲେ) ସ୍ନେହ ମମତା ଦେବା ସଙ୍ଗେ ସଙ୍ଗେ ତାର ଅଧିକାର ବିଷୟରେ ସଚେତନ କରାଇବା ବେଶୀ ସମ୍ଭବ । ଆଜିର ଭୟାଳୁ, ଚିନ୍ତାଧାରାରହିତ ବାପା, ମାଆମାନେ ଶିଶୁ ଯୌନ ନିର୍ଯ୍ୟାତନା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାର ସାହସ କରୁନାହାନ୍ତି । ତେଣୁ ସମଲିଙ୍ଗୀ ବିବାହ, ଶିଶୁର ଯତ୍ନ ଏବଂ ରକ୍ଷଣାବେକ୍ଷଣ, ଗୋଟିଏ ଘରେ ରହିପାରିବାର ଅଧିକାର ସବୁ ସମାଜର ଅବହେଳିତ ଶିଶୁମାନଙ୍କ ଦୃଷ୍ଟିରୁ ପୂରାପୂରି ସ୍ୱାଗତଯୋଗ୍ୟ । ଏହା ମୂଳ ମାନବିକ ଅଧିକାର କ୍ଷୁର୍ଣ୍ଣ କରେ ନାହିଁ ବରଂ ତାର ସାମାଜିକ ଅବଦାନର ଅବତାରଣା କରେ ।

ସେଇ ଟିଭି କାର୍ଯ୍ୟକ୍ରମରେ ପୁଣି ମହିଳା ଜଣକ କହିଲେ ଭଗବାନ ଗୋଟିଏ ପୁରୁଷ ପାଇଁ ଗୋଟିଏ ସ୍ତ୍ରୀ ତିଆରି କରିଛନ୍ତି । କଥାହେଲା ଭଗବାନଙ୍କ ଜିନ୍ କାରଖାନାରେ ନିୟମ ଆସୁଛି ୧୦୦୦ ପୁଅ ଜନ୍ମ ହେଲେ ପ୍ରାୟ ୧୦୧୨ ଝିଅ ଜନ୍ମ ହେବେ । ଆମେ ସବୁ ତାକୁ ୧୦୦୦ ପୁଅରେ ୬୦୦ ଝିଅ ଜନ୍ମ ଅବସ୍ଥାକୁ ନେଇ ଆସିଲୁଣି । ତା ବିରୁଦ୍ଧରେ କୌଣସି ଧର୍ମଗୁରୁ ଏହା ଈଶ୍ୱର ବା ଧର୍ମ ବିରୋଧୀ, ଏଇଟା କଲେ ନର୍କକୁ ଯିବ ବା ସମାଜରେ ବିଶୃଙ୍ଖଳା ଦେଖାଯିବ ବୋଲି ଜୋର୍‌ପାଟିରେ କହିବାର ଦେଖାଯାଉନାହିଁ । ସେମାନେ ଏଇ ସମଲିଙ୍ଗୀ ଯୌନକ୍ରିୟାର ଅପରାଧୀକରଣକୁ ବିରୋଧୀ ମତ ଦ୍ୱାରା ଯେତେ ପୀଡ଼ିତ, ବ୍ୟଥିତ ଏବଂ କ୍ଷୁବ୍ଧ ସମାଜରେ ପ୍ରକୃତ ଘୁଣ ଲାଗିଗଲା ପରି କାର୍ଯ୍ୟ ଯଥା ଝିଅ ଭ୍ରୂଣ/ ଶିଶୁହତ୍ୟା, ଯୌତୁକ ଲୋଭରେ ପୋଡ଼ି, ମହିଳାମାନଙ୍କ ଉପରେ ଏସିଡ୍ ମାଡ ଏବଂ ଶିଶୁ ନିର୍ଯ୍ୟାତନା ଇତ୍ୟାଦି ବିଷୟରେ ସ୍ୱର ଉଠାଉନାହାନ୍ତି । ବର୍ତ୍ତମାନର ଆବଶ୍ୟକତା ଏସବୁ ବିରୁଦ୍ଧରେ ସଂଗ୍ରାମ । ଯେଉଁ କଥାର ସମାଜର ସ୍ଥିତି ଉପରେ କୌଣସି ପ୍ରତିକୂଳ ପ୍ରଭାବ ନାହିଁ ତାକୁ ନେଇ ଅଯଥାରେ ଚିନ୍ତିତ ହେବାର କାରଣ ନାହିଁ ।

ସମଲିଙ୍ଗୀ ସମ୍ପର୍କକୁ ସ୍ୱୀକୃତି ଦେଇଛି ବା ସେ ବିଷୟରେ ଲେଖୁଛି ବୋଲି ମୋର ସମଲିଙ୍ଗୀ ହୋଇଯିବାର ସମ୍ଭାବନା ନାହିଁ । କାହାକୁ ଦେଖି ଦେଖି ପ୍ରେମ କରିହୁଏନି । ପ୍ରେମ ବା ଭଲ ପାଇବା ଅତ୍ୟନ୍ତ ବ୍ୟକ୍ତିଗତ । ସାମାଜିକ ସ୍ୱୀକୃତି ଅଲଗା କଥା । ସେମିତି ଦେଖିଲେ ଯେତେକ ଅମରପ୍ରେମ କାହାଣୀର କଥା ଆମେ ଜାଣିଛୁ ସବୁଠିଁ ସମାଜ ସେହି ସମ୍ପର୍କରେ ବାଧା ଦେବାଟା ହିଁ ଶୁଣିଛୁ । ଆଉ ସେଇ ପ୍ରେମ କାହାଣୀ ଆମେ ମନେ ରଖୁଛୁ, ସିନେମା ଦେଖୁଛୁ, ଗୀତ ବୋଲୁଛୁ ଯାହା ସମାଜର ସମସ୍ତ ପ୍ରତିରୋଧ (ବିସମଲିଙ୍ଗୀଙ୍କୁ ମଧ୍ୟ) ସତ୍ତ୍ୱେ ଭାଙ୍ଗି ନଥିଲା । ସମାଜର କାମ କଣ ଦୁଇଜଣ ପରସ୍ପରକୁ ଭଲ ପାଇଲେ, ତାକୁ ଭାଙ୍ଗିବା ? ସମାଜର ଗଠନମୂଳକ ନେତୃତ୍ୱ କାହିଁକି ସମ୍ଭବ ନୁହେଁ ? ସବୁ ବେଳେ ଏ ସମାଜର ଧ୍ୱଜାଧାରୀ ନେତାମାନେ ମାନବିକ ଅଧିକାର ବିରୋଧୀ କାହିଁକି ? ନିଜର କର୍ତ୍ତୃତ୍ୱ ଜାହିର କରିବାର ଶକ୍ତି କମିଯିବ ବୋଲି ? ଏମାନେ କ'ଣ ପ୍ରକୃତରେ ସମାଜରେ ମଣିଷର ଭଲ ଚାହାନ୍ତି ? ତାହେଲେ ଯୁକ୍ତିତର୍କକୁ ନ ଆସି ବିଶ୍ୱାସ ଏବଂ ପୁରାଣର ଦୋହି ଦେଇ ଖସିବାକୁ ଚେଷ୍ଟା କରନ୍ତି କାହିଁକି ?

ଏଠି ଆଉ ଗୋଟିଏ ପ୍ରସଙ୍ଗ ପ୍ରଣିଧାନ ଯୋଗ୍ୟ । ସେହି ଆଲୋଚନାରେ ଭାଗ ନେଇଥିବା ଜଣେ ଅଧ୍ୟାପକ ଏବଂ ଜଣେ ସମଲିଙ୍ଗୀ ଅଧିକାର ସମର୍ଥକ ନିଜର ଯୌନତା (sexual orientation) ପାଇଁ ବିଜ୍ଞାନର ସାହାଯ୍ୟ ଲୋଡିଥିଲେ । ଏଠି ତାର କୌଣସି ଆବଶ୍ୟକତା ନାହିଁ । ଏଇଟା ମାନବିକ ଅଧିକାର । ବିଜ୍ଞାନ ଗଣତନ୍ତ୍ରର ସତ୍ୟତା ବା ଉପାଦେୟତାକୁ ପ୍ରମାଣ କରିପାରିବ ନାହିଁ । ସବୁ ମଣିଷ ଏକ ବା ସେମାନଙ୍କର ଅଧିକାର ପ୍ରସଙ୍ଗ ବିଜ୍ଞାନ ପରୀକ୍ଷା ସିଦ୍ଧ ନୁହେଁ ଏହା ମଣିଷର ଉଚ୍ଚତମ ଚିନ୍ତାଧାରାରୁ ପ୍ରସ୍ତୁତ ସମାଜ ସମ୍ବନ୍ଧୀୟ ଏକ ଧ୍ରୁବକ । ରାଜତନ୍ତ୍ର, ସାମନ୍ତବାଦରୁ ଗଣତନ୍ତ୍ରର ପ୍ରଗତି ! ଏହା ବୈଜ୍ଞାନିକ ଚିନ୍ତାଧାରାରୁ ପ୍ରସ୍ତୁତ ସମାଜ ସମ୍ବନ୍ଧୀୟ ଏକ ଧ୍ରୁବକ । ରାଜତନ୍ତ୍ର, ସାମନ୍ତବାଦରୁ ଗଣତନ୍ତ୍ରର ପ୍ରଗତି । ଏହା ବୈଜ୍ଞାନିକ ଚିନ୍ତାଧାରାରୁ ପ୍ରସ୍ତୁତ । ମୋର ଅନ୍ୟ ଜଣେ ବ୍ୟକ୍ତିକୁ ଭଲପାଇବାର ଅଧିକାର ଅଛି ଏବଂ ତାଙ୍କର ସ୍ୱୀକୃତି ଥିଲେ ସମ୍ପର୍କ ରକ୍ଷା କରିବାର ଅଧିକାର ଅଛି । ୧୮ ବର୍ଷରୁ କମ୍ ହୋଇଥିଲେ ଶିଶୁମାନଙ୍କୁ ରକ୍ଷା ପ୍ରଦାନ କରିବାପାଇଁ ହୋଇଥିବା ଆଇନ୍ ଅନୁସାରେ ଏ ସମ୍ପର୍କ ଦଣ୍ଡନୀୟ । ମାତ୍ର ୧୮ ବର୍ଷରୁ ଉର୍ଦ୍ଧ୍ୱ ବ୍ୟକ୍ତି ସହିତ ସୁସ୍ଥମନରେ ନିଆଯାଇଥିବା ସମ୍ପର୍କ ପାଇଁ ସ୍ୱୀକୃତିକୁ ଆଇନ୍ ବର୍ତ୍ତମାନ ମାନି ନେଇଛି । ତା ବିରୋଧରେ ଦିଆଯାଇଥିବା କୌଣସି ମନ୍ତବ୍ୟର ଯଥାର୍ଥତା ନାହିଁ । ଅଧିକାର ପାଇଁ ଲଢୁଥିବା ବ୍ୟକ୍ତିମାନେ ମଧ୍ୟ ପରୀକ୍ଷାଗାରରେ ନିଜ ମାନବିକ ଅଧିକାର ଖୋଜନ୍ତୁ ନାହିଁ । ପୁରୁଷ ବା ସ୍ତ୍ରୀ ଶରୀର ଭିତରେ ଥାଇ ମଧ୍ୟ ମଣିଷର ମନ ସ୍ୱତନ୍ତ୍ର । ଯିଏ ଯେପରି ଅନୁଭବ କଲା ସେଇଟା ତାର ଅଧିକାର । ଦୁଇଟି ଭଲପାଉଥିବା ବ୍ୟକ୍ତିବିଶେଷଙ୍କୁ ଆମେ ଅପ୍ରାକୃତିକ କହିବା ଉଚିତ୍ ହେବନାହିଁ ଯେମିତିକି ବାବୁ ରାମଦେବ ବାହା ହୋଇନାହାନ୍ତି ବୋଲି ତାଙ୍କୁ "ଅପ୍ରାକୃତିକ" ବା "ଅସାମାଜିକ" ବା

"ଅସଂସ୍କୃତ" କହିବା ଠିକ୍ ହେବନାହିଁ । ତାଙ୍କର ଇଚ୍ଛା ହଉନାହିଁ ଠିକ୍ ଅଛି । ସେ ବି ପ୍ରାକୃତିକ । ଯାହାର ଇଚ୍ଛା ହେଉଛି ସେ ବି ପ୍ରାକୃତିକ । ଯାହାର ଅଲଗା ପ୍ରକାର ଇଚ୍ଛା ହେଉଛି (କାହା ମନ କିଏ ଦେଖୁଛି ?) ସେ ବି ପ୍ରାକୃତିକ । ଯେ ପର୍ଯ୍ୟନ୍ତ ଜଣେ ଜଣକୁ ଅତ୍ୟାଚାର କରୁନାହିଁ ସେପର୍ଯ୍ୟନ୍ତ ସବୁ ସମ୍ପର୍କ ପ୍ରାକୃତିକ ଏବଂ ମାନବିକ ଅଧିକାର ଦ୍ୱାରା ସ୍ୱୀକୃତ ବୋଲି ମାନି ନେବାକୁ ହେବ । ଧାରା ୩୭୭ ର ଆଉ ଗୋଟିଏ ବଡ଼ ଅପ୍ରାକୃତିକ (Impractical) ଦିଗ ଅଛି । ସେଇଟା ହେଲା କୌଣସି ପଶୁ ସହିତ ସମ୍ପର୍କ । ଯେହେତୁ ପଶୁମାନେ ଆସି ଅଭିଯୋଗ କରିପାରିବେ ନାହିଁ ତେଣୁ ସରକାରଙ୍କ ତରଫରୁ ଅପ୍ରାକୃତିକ ଯୌନ ସମ୍ପର୍କ ରୋକିବା ପାଇଁ ଯେତେକ ଗୃହପାଳିତ ପଶୁପକ୍ଷୀକୁ ପରୀକ୍ଷା କରାଯିବା ଉଚିତ୍ ସେମାନେ ଶୋଷିତ ହେଉଛନ୍ତି ନା ନାହିଁ । ବାବା, ମାତାଙ୍କ ସେବାପାଇଁ ରହିଥିବା ଗୋରୁଗାଈମାନେ ୩୭୭ ଧାରା ପରିସରଭୁକ୍ତ ହୋଇ ସେମାନେ ସୁରକ୍ଷିତ ରହିବା ଉଚିତ୍ । ଏହାଦ୍ୱାରା ପଶୁ ଅଧିକାର ମଧ୍ୟ ସାବ୍ୟସ୍ତ ହୋଇପାରିବ ।

ଲଢ଼ିବା ପାଇଁ ଆମ ଆଗରେ ବହୁତ କିଛି ଅଛି: ଦାରିଦ୍ର୍ୟ, ପ୍ରକୃତ ଶିକ୍ଷା, ସମ୍ପଦର ବଣ୍ଟନ, ସାମାଜିକ ବୈଷମ୍ୟ, ଅଜ୍ଞାନ, ରୋଗ, ଅତ୍ୟାଚାର, ପୀଡ଼ନ ଇତ୍ୟାଦି ଇତ୍ୟାଦି । କିଏ କବାଟ ପକେଇ କଣ ସୁଖ କଲେ ଆମର ଦୁଃଖ କରିବାର କିଛି ନାହିଁ । ଆମର ଦୁଃଖ ଏକବିଂଶ ଶତାବ୍ଦୀରେ ଭାରତରେ ଡାହାଣୀ ସନ୍ଦେହରେ ଅତ୍ୟାଚାର ଓ ହତ୍ୟା, ଆମର ଦୁଃଖ ଡାକ୍ତର ନାହାନ୍ତି ବୋଲି ଗୁଣୀ ଦ୍ୱାରା ଚିକିତ୍ସା, ଆମର ଦୁଃଖ ଯୌତୁକ ନାଆଁରେ ପ୍ରତିଦିନ ମହିଳାଙ୍କ ହତ୍ୟା, ଆମର ଦୁଃଖ ଏକ ମୁଖୀ ରୁଦ୍ରାକ୍ଷ ପିନ୍ଧି ସବୁ ଅସୁବିଧା ଦୂରୀକରଣର ସ୍ୱପ୍ନ, ଏମିତି ବହୁତ କିଛି । ଏକବିଂଶ ଶତାବ୍ଦୀରେ "ପ୍ରାକୃତିକତା" ର ମାପକାଠିରେ କୌଣସି ପ୍ରକ୍ରିୟାକୁ ତଉଲିବା ଏକ ବିଡ଼ମ୍ବନା । ଏକମାତ୍ର ମାପକାଠି ହେଲା ମାନବିକ ଅଧିକାର । କୌଣସି ନିୟମ ଦ୍ୱାରା ଯଦି ଗୋଟିଏ ଗୋଷ୍ଠୀ କାରଣ ନଥାଇ କ୍ଷତିଗ୍ରସ୍ତ ହୁଏ ତେବେ ସେଭଳି ଆଇନ୍ ସମ୍ବିଧାନ ଦୃଷ୍ଟିରୁ ଫିଙ୍ଗି ଦିଆଯିବା ଆବଶ୍ୟକ । ସମ୍ବିଧାନର ପ୍ରସ୍ତାବନାରେ ଯେଉଁ ବ୍ୟକ୍ତିମର୍ଯ୍ୟାଦାର ଅବତାରଣା କରାଯାଇଛି ତାହା ଏବେ (୬୦ବର୍ଷରୁ ଉର୍ଦ୍ଧ୍ୱ ହେଲା ପରେ) ହୃଦୟଙ୍ଗମ କରୁଛୁ । ରାଜତନ୍ତ୍ର ଓ ଅନ୍ଧତନ୍ତ୍ରର ଗଣ୍ଡିଭିତରୁ ଭାରତ ବାହାରି ଗଣତନ୍ତ୍ରକୁ ବେଶ୍ ଜୋର୍‌ରେ ମାଡ଼ି ଚାଲିଛି । ମାନବିକ ଅଧିକାର ଆମ ମାନବିକ ମୂଲ୍ୟବୋଧର ଅଂଶ ହେଲାଣି । ବୈଜ୍ଞାନିକ ଚିନ୍ତାଧାରାରୁ ପ୍ରସୂତ ଏହି ମାନବିକ ଅଧିକାର ଏକ ସୁସ୍ଥ ଓ ପରସ୍ପରକୁ ସମ୍ମାନ ଜଣାଉଥିବା ସମାଜ ପ୍ରତିଷ୍ଠାରେ ଯେ ସହାୟକ ହେବ ସେଥିରେ ସନ୍ଦେହ ନାହିଁ । ଯେଉଁମାନେ ଏହି ଅଧିକାର ପାଇଁ ଲଢୁ ଲଢୁ ଦ୍ୱନ୍ଦ୍ୱର ସମ୍ମୁଖୀନ ହେଉଛନ୍ତି ତାଙ୍କୁ ସାହାଯ୍ୟ କରିବା ଏ ଲେଖାର ଉଦ୍ଦେଶ୍ୟ । ଯେଉଁ ବିଜ୍ଞାନ ମଣିଷକୁ ସାହାଯ୍ୟ କରିବା ପାଇଁ ଉଦ୍ଦିଷ୍ଟ, ଆବଶ୍ୟକତା ନଥାଇ ତାର ପ୍ରୟୋଗ କେବଳ ପ୍ରତିକ୍ରିୟାଶୀଳ ବ୍ୟକ୍ତିଙ୍କୁ ଖୋରାକ ଯୋଗାଇବ ।

ଉଦାହରଣ ହେଲା କଂପୁଟର ଦ୍ୱାରା ଜ୍ୟୋତିଷ । ଆମକୁ ଏ ବିଷୟକୁ ଭଲଭାବେ ଧ୍ୟାନ ଦେବାକୁ ହେବ । ବୈଜ୍ଞାନିକ ଚିନ୍ତାଧାରା ହିଁ ସବୁଠାରୁ ଉପରେ । ଏହି ଚିନ୍ତାଧାରା ଯେତେବେଳେ ଭୌତିକ ପ୍ରକ୍ରିୟାକୁ ବୁଝାଇବାକୁ ଚେଷ୍ଟା କରେ ତାକୁ ବିଜ୍ଞାନ କୁହାଯାଏ, ବ୍ୟକ୍ତିଗତ କ୍ଷେତ୍ରରେ ତାକୁ ବ୍ୟାବହାରକ ବିଜ୍ଞାନ ଏବଂ ବ୍ୟକ୍ତି ଓ ସମାଜ ସମ୍ପର୍କ ସ୍ତରରେ ତାକୁ ମାନବିକ ଅଧିକାରର ଆଖ୍ୟା ଦିଆଯାଇଥାଏ । ଏ ପ୍ରତ୍ୟେକ ପରସ୍ପରର ପରିପୂରକ । କିନ୍ତୁ ସବୁରି ମୂଳରେ ସାଧାରଣ ମଣିଷଟିଏ । ତାର ମୂଳରେ ମଣିଷଟିଏ ମଣିଷ ପରି ଆତ୍ମସମ୍ମାନ ସହ ବଞ୍ଚିବାର ଅଧିକାର । ଏହାର ପ୍ରମାଣର କୌଣସି ଆବଶ୍ୟକତା ନାହିଁ ବା ବିଜ୍ଞାନକୁ ଆଣି ଏଥିରେ ପୁରେଇବାର ଯଥାର୍ଥତା ନାହିଁ ।

କେତେଜଣ ଅନ୍ୟର ସୁଖ ଦେଖିଲେ ଦୁଃଖ ପାଇଥାନ୍ତି କେବଳ ସେଇଭଳିଆ ଦୁଃଖକୁ ଛାଡ଼ି ଅନ୍ୟ କୌଣସି ପ୍ରକାର ଦୁଃଖ ଅନ୍ୟକୁ ନ ଦେଉଥିଲେ ମଣିଷଟିଏ ତା ଇଛା, ତା ପ୍ରକୃତି, ତା ମନକୁ ନେଇ ବଞ୍ଚିବାର ଅଧିକାରକୁ କେହି କ୍ଷୁର୍ଣ୍ଣ କରିପାରିବେ ନାହିଁ । ଇତିହାସର ପୃଷ୍ଠାରେ ସେଇ ବିରୋଧୀଶକ୍ତି ସବୁବେଳେ ବର୍ଜ୍ୟବୋଲି ଚିତ୍ରିତ ହୋଇଛନ୍ତି ଏବଂ ହେବେ ମଧ୍ୟ । ମଣିଷ ଭୌତିକ ସୀମାକୁ ଭାଙ୍ଗି ସାରିବା ପରେ ନିଜ ଚିନ୍ତାଧାରାର ସୀମାକୁ ଭାଙ୍ଗି ଚାଲିଛି ଏବଂ ଭାଙ୍ଗି ଚାଲିବ । ଲଢୁଆ ବ୍ୟକ୍ତିମାନେ ଏଥିରୁ ଉତ୍ସାହ ଓ ଉଦ୍ଦୀପନା ପାଇବେ ଏବଂ ଲଢ଼ି ଚାଲିବେ । ଏହାହିଁ ପ୍ରକୃତ ପ୍ରାକୃତିକ । ଏହାହିଁ ମଣିଷ ପ୍ରକୃତି ।



# ଆତ୍ମଜାଗରଣର ସୂତ୍ର

*ଶ୍ରୀ ସୁଧାଂଶୁ ଶେଖର ଧଡା*

ମାନବିକ ଅଧିକାରକୁ ନେଇ ସାମ୍ପ୍ରତିକ ସମାଜରେ ବଞ୍ଚିବାକୁ ହେଲେ ଗଣତାନ୍ତ୍ରିକ ବ୍ୟବସ୍ଥାର ଭିତ୍ତିଭୂମିକୁ ଜାଣିବା ଦରକାର । ପ୍ରାକ୍ ଇଂରେଜ ଶାସନ ଏବଂ ଇଂରେଜ ଶାସନ ସମୟରେ ଭାରତ ୫୦୦ରୁ ଅଧିକ ଛୋଟ ଛୋଟ ରାଜ୍ୟରେ ବିଭାଜିତ ଥିଲା । ଏହି ଭୂଖଣ୍ଡ ସ୍ୱାଧୀନତା ପ୍ରାପ୍ତି ପରେ ସାମ୍ବିଧାନିକ ବିଧିକୁ ନେଇ ଗୋଟିଏ ପତାକା ତଳେ ଗୋଟିଏ ଜାତୀୟତା ବଜାୟ ରଖିଲା । ଏହି ଏକତା ରକ୍ଷା ଦିଗରେ ଚାରୋଟି ଗୁରୁତ୍ୱପୂର୍ଣ୍ଣ ତଥ୍ୟ ରହିଛି । ସେଗୁଡିକ ହେଲା- ଜାଗ୍ରତ ହେବା, ଶିକ୍ଷିତ ହେବା, ସଂଗଠିତ ହେବା ଏବଂ ଲକ୍ଷ୍ୟ ହାସଲ ନିମିତ୍ତ ସଂଘର୍ଷ କରିବା । ଏହି ଚାରୋଟି ତଥ୍ୟର ସାର୍ବଜନୀନ ଏବଂ ସର୍ବକାଳୀନ ପ୍ରୟୋଗାତ୍ମକ ମୂଲ୍ୟ ରହିଛି । ପୃଥିବୀ ପୃଷ୍ଠରେ ଯେକୌଣସି ସ୍ଥାନରେ ଏବଂ ଯେକୌଣସି ବ୍ୟକ୍ତି କ୍ଷେତ୍ରରେ ଏହା ପ୍ରଯୁଜ୍ୟ ହୋଇପାରେ । ତେଣୁ ଏହି ଚାରିତଥ୍ୟର ବିଶ୍ଳେଷଣ ଆବଶ୍ୟକ ।

ବ୍ୟକ୍ତି ନିଜ ଭିତରେ ଜାଗରଣ ସୃଷ୍ଟି କରାଇବାକୁ ହେଲେ ନିଜର ଅତୀତ, ପରିବାରର ଅତୀତ ଓ ସାମାଜିକ ବ୍ୟବସ୍ଥାର ଅତୀତ ଆଦିକୁ ପ୍ରଥମେ ଜାଣିବା ଆବଶ୍ୟକ । ନିଜର ପୂର୍ବଜନମାନେ ଯେଉଁ ପ୍ରକାରର ସାମାଜିକ, ରାଜନୀତିକ, ଆର୍ଥନୀତିକ ପୃଷ୍ଠଭୂମିରେ ଜୀବନ ଅତିବାହିତ କରିଥିଲେ ସାମ୍ପ୍ରତିକ ବିଶ୍ୱରେ ସେହିସ୍ଥିତି ସଂପୂର୍ଣ୍ଣ ବଦଳି ଯାଇଛି । ତେଣୁ ପରମ୍ପରାର ଦ୍ୱାହି ଦେଇ କୌଣସି ଏକ ଭିତ୍ତିହୀନ ପ୍ରଥାର ଅନୁସରଣ ସଂପୂର୍ଣ୍ଣ ରୂପେ ଅପ୍ରାସଙ୍ଗିକ ଓ ସମ୍ପର୍କହୀନ ହୋଇପଡ଼େ । ଜାଗ୍ରତ ନାଗରିକ ସମାଜ ସତର୍କ ପ୍ରହରୀଭାବେ କାର୍ଯ୍ୟ କରିଥାଏ । ତେଣୁ ନିଜ ଭିତରେ ଜାଗରଣ ସୃଷ୍ଟିକୁ କେବେ ହେଲେ ଏକଦେଶଦର୍ଶୀ କିମ୍ବା ସ୍ୱାର୍ଥ ପ୍ରଣୋଦିତ କରାଯିବା ଉଚିତ୍ ନୁହେଁ । ଅତୀତ ସହିତ ବର୍ତ୍ତମାନର ତୁଳନା କରି ନିରପେକ୍ଷ ଭାବରେ ସବୁ ପ୍ରସଙ୍ଗକୁ ବିଚାରକୁ ନିଆଯିବା ଉଚିତ୍ । କିନ୍ତୁ କିଛି ନିର୍ଦ୍ଦିଷ୍ଟ ସ୍ୱାର୍ଥ

ହାସଲ ପାଇଁ କିମ୍ବା ଲକ୍ଷ୍ୟ ପୂରଣ ପାଇଁ ବ୍ୟକ୍ତି ଆତ୍ମଜାଗରଣ କ୍ଷେତ୍ରକୁ ବିଭ୍ରାନ୍ତିକର କରିବା କେବେ ହେଲେ ଉଚିତ୍ ନୁହେଁ । ପ୍ରାୟ ସାତ ହଜାରରୁ ଅଧିକ ଜାତିରେ ବିଭାଜିତ ଭାରତୀୟ ସାମାଜିକ ବ୍ୟବସ୍ଥାର ଇତିହାସ ତଥା ଅତୀତକୁ ବିଭ୍ରାନ୍ତିକର ଭାବରେ ଉପସ୍ଥାପନ କରାଯିବା ଦେଖିବାକୁ ମିଳେ । ଏଭଳି କ୍ଷେତ୍ରରେ ବ୍ୟକ୍ତି ତର୍କଶୀଳ ହୋଇ ନିଜ ଭିତରେ ଜାଗରଣ ସୃଷ୍ଟି କରିବା ଉଚିତ୍ । ତର୍କଶୀଳ, ଯୁକ୍ତିଶୀଳ ବା ବିଚାରଶୀଳ ହେବାର ନିର୍ଦ୍ଦିଷ୍ଟ ପଦ୍ଧତି ରହିଛି । ତାହା ହେଲା-ପ୍ରତ୍ୟେକ ଘଟଣା ବା ବିଷୟର ସାଧାରଣ ସିଦ୍ଧାନ୍ତର ବିଶ୍ୱ ବ୍ୟାପକତାକୁ ପରୀକ୍ଷା କରିନେବା ଆବଶ୍ୟକ । ବିନା ପରୀକ୍ଷଣରେ ବା ବସ୍ତୁନିଷ୍ଠ ଭିତ୍ତିଭୂମି ଅଭାବରେ ଏକ ସିଦ୍ଧାନ୍ତରେ ଉପନୀତ ହେବା ସଂପୂର୍ଣ୍ଣ ଅଯୌକ୍ତିକ । ଏକ ସିଦ୍ଧାନ୍ତ ଯଥାର୍ଥ କି ନୁହେଁ ତାହାକୁ ତର୍କ ପଦ୍ଧତିରେ ହିଁ ନିର୍ଣ୍ଣୟ କରାଯାଏ । ତର୍କର ଆରୋହ-ଅବରୋହ ପଦ୍ଧତି ମାଧ୍ୟମରେ ଏକ ସିଦ୍ଧାନ୍ତର ଗ୍ରହଣଯୋଗ୍ୟତା ସ୍ଥିର କରାଯାଏ ।

ବ୍ୟକ୍ତି ଜାଗ୍ରତ ହେଲେ ସେ ତାର ଚାରିପଟେ ଘଟୁଥିବା ସମସ୍ତ ଘଟଣାକୁ ସତର୍କତାର ସହ ଲକ୍ଷ୍ୟ କରେ । ଏ ପ୍ରକାରର ସତର୍କ ଲକ୍ଷ୍ୟ ପାଇଁ ଶିକ୍ଷାର ଆବଶ୍ୟକତା ରହିଛି । ଶିକ୍ଷା କେବଳ ଅକ୍ଷର ଚିହ୍ନିବା, ବହି ପଢ଼ିପାରିବା ବା ନାମ ଦସ୍ତଖତ କରିବାକୁ ବୁଝାଏ ନାହିଁ । ଶିକ୍ଷାର ପରିସର ଏଇ ସଙ୍କୁଚିତ ସଂଜ୍ଞାରେ ବିଭ୍ରାନ୍ତିକର ହୋଇପଡିଛି । ଶିକ୍ଷା ଚିନ୍ତାଶକ୍ତିକୁ ଶାଣିତ କରିପାରୁଥିବା ଆବଶ୍ୟକ । ଯେକୌଣସି ଏକ ଘଟଣାକୁ ପୂର୍ବାପର ଘଟଣା ସହ ସଂଯୋଗ କରିପାରିବାର କ୍ଷମତା ହାସଲ କରିପାରୁଥିବା ଆବଶ୍ୟକ । କେବଳ ରୋଜଗାର ଲକ୍ଷ୍ୟରେ ଶିକ୍ଷାଲାଭ ବ୍ୟକ୍ତିକୁ ସ୍ୱାର୍ଥପର କରିଦେଇଥାଏ । ରୋଜଗାରର ନିଶାରେ ଥରେ ମତୁଆଲା ହୋଇଗଲେ ବ୍ୟକ୍ତି ଯେକୌଣସି ଅନୀତି ତଥା ଗର୍ହିତ ଅପରାଧ କରିବାକୁ ପଛଘୁଞ୍ଚା ଦିଏ ନାହିଁ । ଶିକ୍ଷିତ ବ୍ୟକ୍ତିର ରୋଜଗାର ଉତ୍ସ ନିଶ୍ଚିତ ହୋଇଯିବାପରେ ସେ ସ୍ୱାର୍ଥ ପରିବେର୍ତ୍ତେ ସମାଜକୁ ଗୁରୁତ୍ୱ ଦେବା ଉଚିତ । କିନ୍ତୁ ଏହା ଏକ କଷ୍ଟକର ବ୍ୟାପାର । ଏହି କାରଣରୁ ସବୁ ରୋଜଗାରକ୍ଷମ ଶିକ୍ଷିତ ବ୍ୟକ୍ତି ଯଶର ଅଧିକାରୀ ହୋଇ ପାରନ୍ତି ନାହିଁ । ଶିକ୍ଷା କ୍ଷେତ୍ରକୁ ଧର୍ମ ମଧ୍ୟ କବଳିତ କରିନିଏ । ନିର୍ଦ୍ଦିଷ୍ଟ ଗୋଟାଏ ଧର୍ମର ଆଚରଣ ଭିତରେ ଶିକ୍ଷା ଏକଦେଶଦର୍ଶୀ ହୋଇଥାଏ । ଶୈଶବରୁ ଆରମ୍ଭ ହେଉଥିବା ଶିକ୍ଷା ଈଶ୍ୱର ବିଶ୍ୱାସ କୈନ୍ଦ୍ରିକ ହୋଇଗଲେ ବ୍ୟକ୍ତି ବିଭ୍ରାନ୍ତ ହୋଇ ମାନବବାଦକୁ ଭୁଲି ଧର୍ମସୈନିକରେ ପରିଣତ ହୁଏ । ନିଜ ଧର୍ମ ବ୍ୟତୀତ ଅନ୍ୟ ଧର୍ମ ସମ୍ପର୍କରେ ଜାଣିବାକୁ, ପଢ଼ିବାକୁ ଆଗ୍ରହ ପ୍ରକାଶ କରେନାହିଁ । ଅନ୍ୟ ଧର୍ମାବଲମ୍ବୀମାନଙ୍କୁ ଶତ୍ରୁ ଭାବରେ ଭାବିନିଏ । ଅନ୍ୟ ଧର୍ମର ଚଳଣିକୁ ନାପସନ୍ଦ କରିବା ସହ ସମାଲୋଚନା କରେ । ଧର୍ମରେ ଈଶ୍ୱରଙ୍କ ଗୁଣକୀର୍ତ୍ତନ ଏବଂ ଈଶ୍ୱରଙ୍କୁ ଦୟାମୟ ଓ କ୍ଷମତାଶୀଳ ଭାବରେ ବର୍ଣ୍ଣନା କରାଯାଇଥାଏ । ଈଶ୍ୱର ନିକଟରେ ଦୋଷ ସ୍ୱୀକାର କରି କ୍ଷମା ପ୍ରାର୍ଥନା କରିଲେ ସେ କ୍ଷମା ଦିଅନ୍ତି ବୋଲି ସବୁ ଧର୍ମରେ କୁହାଯାଏ । ଏହାଫଳରେ ବ୍ୟକ୍ତି

ପାପ କରିବାକୁ ମଧ୍ୟ କୁଣ୍ଠାବୋଧ କରେନାହିଁ । ନିଜ କଥା ଏବଂ ନିଜ ଧର୍ମାବଲଂବୀମାନଙ୍କୁ ଗୁରୁତ୍ୱ ଦେଉଥିବାରୁ ରାଷ୍ଟ୍ର ପ୍ରତି ଅବିଚାର କରିବାକୁ କୁଣ୍ଠା ପ୍ରକାଶ କରେନାହିଁ । ଧର୍ମ ନାମରେ ପରିବେଶକୁ ଧ୍ୱଂସ କରି ନିଜର ମୃତ୍ୟୁକୁ ପରୋକ୍ଷ ଭାବରେ ଡାକି ଆଣୁଥିବା କାର୍ଯ୍ୟ ଗୁଡ଼ିକ ପ୍ରତି ସଚେତନ ହୋଇପାରେ ନାହିଁ । ଈଶ୍ୱର ଆରାଧନା କରିବାକୁ ପୁଣ୍ୟ ଅର୍ଜନ ଭାବେ ଗ୍ରହଣ କରୁଥିବା ସ୍ଥଳେ ରାସ୍ତାରେ ପଡ଼ିଥିବା କାଚଖଣ୍ଡକୁ ଉଠାଇ ଦେବା, ସୃଷ୍ଟି ହୋଇଥିବା ଖାଲରେ ମାଟି ଝୁଡ଼ିଏ ପକାଇବା କିମ୍ବା ଅପରିଷ୍କାର ରାସ୍ତାକୁ ପରିଷ୍କାର କରିବା କଥା କେବେ ବି ଚିନ୍ତା କରେନାହିଁ । ମରଂ ଧର୍ମୀୟ ଅଧିକାର ହାସଲ ପାଇଁ ରାସ୍ତାକୁ ଜବର ଦଖଲ କରିବା, ରାସ୍ତାରେ ଟାୟାର ଜାଳି ରାସ୍ତା ଓ ପରିବେଶକୁ ନଷ୍ଟ କରିବା ଭଳି କାର୍ଯ୍ୟକରେ । ଏସବୁ ହେଉଛି ଏକ ଦେଶଦର୍ଶୀ ଶିକ୍ଷା ଏବଂ ଧର୍ମ କବଳିତ ଶିକ୍ଷା ବ୍ୟବସ୍ଥାର ପରିଣତି । ନିର୍ଦ୍ଦିଷ୍ଟ ଗୋଟାଏ ଧର୍ମର ପ୍ରାଧାନ୍ୟ ଭିତରେ ଶିକ୍ଷାଦାନ ବ୍ୟବସ୍ଥା ନକରି ବିବିଧ ଧର୍ମର ଜ୍ଞାନ ରହିବା ଉଚିତ୍ । ଧର୍ମୀୟ ବିଚାର, ଛାତ୍ର ସମାଜ ଉପରେ ନଲଦି ଛାତ୍ର ସମାଜକୁ ତୁଳନାତ୍ମକ ଅଧ୍ୟୟନର ସ୍ୱାଧୀନତା ଦିଆଯିବା ଉଚିତ୍ । ଶିକ୍ଷା ମାନବବାଦ କୈନ୍ଦ୍ରିକ ହେବା ଉଚିତ୍ । ଶିକ୍ଷିତ ବ୍ୟକ୍ତି ନିଜର ବିଚାରକୁ ତର୍କସିଦ୍ଧ କରିବା ଦରକାର ।

ସଙ୍ଗଠିତ ମାନବସମ୍ବଳ ହିଁ ମାନବ ସମାଜର ତଥା ଦେଶର ପ୍ରଗତିରେ ସହାୟକ ହୋଇଥାଏ । ବ୍ୟକ୍ତିଗତ ଭାବରେ ଛୋଟ ସଂକଳ୍ପଟିଏ ପୂରଣ କରାଯାଇପାରେ । କିନ୍ତୁ ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ କୌଣସି ଗୋଟାଏ କାମ କରିବାକୁ ହେଲେ ସଙ୍ଗଠନଟିଏ ଆବଶ୍ୟକ ପଡ଼େ । ସେଥିପାଇଁ ଦାୟିତ୍ୱବୋଧକୁ ବାଣ୍ଟିବା ତଥା ବହୁ ଲୋକଙ୍କ ଦାୟିତ୍ୱରେ ଅଂଶୀଦାର କରାଇବା ଆବଶ୍ୟକ । ତେଣୁ ବୃହତ୍ତର ଲକ୍ଷ୍ୟ ହାସଲ ନିମିତ୍ତ ସଂଗଠନର ଆବଶ୍ୟକତା ରହିଛି । ସଂଗଠନର ଶତ୍ରୁ ହେଉଛି ଗୋଷ୍ଠୀବାଦ ବା ସଂକୀର୍ଣ୍ଣ ଦୃଷ୍ଟିଭଙ୍ଗୀର ବିଭାଜନ । ବିଭାଜନ ସଚରାଚର ଲକ୍ଷ୍ୟ କରାଯାଏ । ଏହି ଗୋଷ୍ଠୀ ବିଭେଦ ସଂଗଠନର ବୃହତ୍ତର ସାମାଜିକ ପ୍ରଗତି କ୍ଷେତ୍ରରେ ପ୍ରତିବନ୍ଧକ ସୃଷ୍ଟି କରିଥାଏ । ଆମ ଦେଶରେ ପ୍ରାଚୀନ କାଳରୁ ଜାତିଭେଦ ରହିଆସିଛି ଏବଂ ଏହି ଜାତିଭେଦ ହିଁ ବୃହତ୍ତର ସାମାଜିକ ପ୍ରଗତି କ୍ଷେତ୍ରରେ ପ୍ରତିବନ୍ଧକ ସୃଷ୍ଟି କରିଥାଏ । ବୈଦେଶିକ ଆକ୍ରମଣଠାରୁ ଆରମ୍ଭ କରି ରାଜନୀତିକ ଲକ୍ଷ୍ୟ ହାସଲର ପ୍ରତ୍ୟେକ କ୍ଷେତ୍ରରେ ପରାଜୟ ପାଇଁ ଜାତିଭେଦ ହିଁ ସବୁଠାରୁ ବଡ଼ କାରଣ ବୋଲି ଐତିହାସିକ ପ୍ରମାଣ ମିଳେ । ଏ ଦେଶର ଜନଗଣ ପ୍ରାୟ ୭୦୦୦ରୁ ଊର୍ଦ୍ଧ୍ୱ ଜାତିରେ ବିଭାଜିତ ହୋଇରହିଛନ୍ତି । ଜାତି ଜାତି ମଧ୍ୟରେ ଦୁର୍ଭେଦ୍ୟ ପାଚେରୀ ଠିଆ କରାଇ ଦିଆଯାଇଛି । ଶ୍ରମ ବିଭାଜନ ସାମାଜିକ ପ୍ରଗତିକୁ ସୁନିୟନ୍ତ୍ରିତ କରେ ବୋଲି ଯୁକ୍ତି କରାଯାଇ ଜାତିପ୍ରଥାକୁ ସମର୍ଥନ କରାଯାଏ । କିନ୍ତୁ ଜାତିପ୍ରଥା ଓ ଦେଶର ସାମାଜିକ ପ୍ରଗତରେ ଉତ୍ପାଦନ ଅପେକ୍ଷା ଛୁଆଁ ଅଛୁଆଁ ଭେଦଭାବ ଓ ଉପଜାତି ପ୍ରଥାକୁ ସୃଷ୍ଟି କରିଛି । ଏଠାରେ ଉତ୍ପାଦନ ମୁଖ୍ୟ ନହୋଇ ଉପଜାତି ମୁଖ୍ୟ

ହୋଇପଡ଼ିଛି । ପ୍ରତ୍ୟେକ ଜାତର ଗୋଟିଏ ଗୋଟିଏ ଜାତି ସଭା କିମ୍ବା ମହାସଭା ରହିଛି । ଏହି ଜାତି ସଭା ବା ମହାସଭା ଗୁଡିକ ସକାରାତ୍ମକ ଚିନ୍ତା ନକରି ସର୍ବଦା ନକାରାତ୍ମକ ଚିନ୍ତାଧାରାରେ ବୁଡି ରହିବା ଦେଖାଯାଏ । ଜାତି ବାହାରକୁ କିଏ ଚାଲିଗଲା, ଅନ୍ୟ ଜାତିର ଝିଅଟିଏ କିଏ ବାହା ହେଲା, ଆଦି ଘଟଣାଗୁଡିକରେ ଏହି ଜାତି ମହାସଭା ଗୁଡିକ ସବୁଠାରୁ ଅଧିକ ସମୟ ବ୍ୟୟ କରନ୍ତି । କାଳ୍ପନିକ ବିଭାଜନ ଓ ବିଭେଦକୁ ନେଇ ଜୋରିମନା କରିବା, ପଂକ୍ତି ଭୋଜନ ଦାବି କରିବା, ଜାତି ସଭାରେ ଲାଞ୍ଛନା ଦେବା, ସମାଜରୁ ବାସନ୍ଦ କରିବା, ଘରେ ନିଆଁ ଲଗାଇ ଦେବା, ଗ୍ରାମରୁ ବା ବସତିରୁ ତଡିଦେବା ଆଦି ଏଇ ଜାତିସଭା ବା ମହାସଭା ଗୁଡ଼ିକର ମୁଖ୍ୟ କାମ । ସମାଜର ଯେତେ ତଳସ୍ତରରେ ଥିଲେ ବି ନିଜକୁ ଅନ୍ୟଠାରୁ ଉଚ୍ଚ ଭାବରେ ଦେଖାଇ ହେବା ଏଗୁଡିକର ମନୋବୃତ୍ତି । ସମାଜରେ ବିଭେଦ ବା ପାଚେରୀ ଠିଆ କରାଇଲେ ପ୍ରଗତି କ୍ଷେତ୍ରରେ ତାହା ପ୍ରତିବନ୍ଧକ ହୋଇଥାଏ । ଗୋଟାଏ ବଡ଼ କିଆରିରେ ଯେଉଳି ଭଲ ଫସଲ ହୁଏ, ସେହି ବଡ କିଆରୀକୁ ଛୋଟ ଛୋଟ ବହୁ ଭାଗରେ ବିଭକ୍ତ କରିଲେ ସେଭଳି ଫସଲ ଅମଳ ହୁଏ ନାହିଁ । ଆଜି ଆମ ଦେଶର ସାମାଜିକ ଅବସ୍ଥା ଚିନ୍ତାଜନକ ଅବସ୍ଥାରେ ଆସି ପହଞ୍ଚିଛି । ବିଜ୍ଞାନ, ବୈଷୟିକ ତଥା ଆଣବିକ ଶକ୍ତି ଆଦି କ୍ଷେତ୍ରରେ ବିଶ୍ୱର ବିକାଶଶୀଳ ଦେଶ ସହ ଭାରତ ପ୍ରତିଯୋଗିତା କରି ସଫଳତା ହାସଲ କରିପାରୁଥିବା ସ୍ଥଳେ ଖାପ୍ ପଞ୍ଚାୟତ ଜାତି ବାହାରର ବିବାହ ପାଇଁ ଯୁବ ସମ୍ପ୍ରଦାୟକୁ ହତ୍ୟା କରିବା ପାଇଁ ଆଦେଶ ଦେଉଛି । ଧର୍ମଗ୍ରନ୍ଥର ଅନେକ ଚରିତ୍ରକୁ ବିଶ୍ଳେଷଣ କରିଲେ ଦେଖାଯାଏ ଯେ, ଜାତି ଏବଂ ଗୋଷ୍ଠୀ ବାହାରର ବିବାହ ମଧ୍ୟ ଏଦେଶରେ ସ୍ୱୀକୃତି ଲାଭ କରିଛି । କେବଳ ସେତିକି ନୁହେଁ, ଏହି ଦମ୍ପତ୍ତି ଏବଂ ସେମାନଙ୍କ ସନ୍ତାନମାନେ ଦେବତ୍ୱ ସମ୍ମାନ ମଧ୍ୟ ସମାଜରୁ ପାଇଛନ୍ତି । ବର୍ତ୍ତମାନ ସମୟରେ ଜାତି ବ୍ୟବସ୍ଥାକୁ ଭାଙ୍ଗି ଆନ୍ତର୍ଜାତି ବିବାହ ଦ୍ୱାରା ହିଁ ଏକ ସୁସ୍ଥ ଏବଂ ଗତିସମ୍ପନ୍ନ ସମାଜ ଗଠନ କରାଯାଇପାରିବ । ଏଭଳି ପରିସ୍ଥିତି ଧୀରେ ଧୀରେ ନଗର ଓ ସହରାଞ୍ଚଳରେ ହୋଇଗଲାଣି । ସମଗ୍ର ସମାଜକୁ ସୁସଂଗଠିତ କରିବା ପାଇଁ ଆନ୍ତର୍ଜାତି ବିବାହ ଏକ ଉତ୍କୃଷ୍ଟ ପନ୍ଥା ।

ସଂଗଠନ ବିନା ସଂଘର୍ଷରେ ସଫଳ ହେବା ସମ୍ଭବ ନୁହେଁ । ଗୋଟାଏ ଗଣତାନ୍ତ୍ରିକ ରାଷ୍ଟ୍ରର ପ୍ରଗତି ପାଇଁ ଶୃଙ୍ଖଳିତ ସଂଗଠନର ଆବଶ୍ୟକତା ରହିଛି । ଶୃଙ୍ଖଳିତ ସଂଗଠନ କହିବାର ଉଦ୍ଦେଶ୍ୟ ହେଉଛି ସଂଗଠନ ମଧ୍ୟରେ ଗୋଷ୍ଠୀବାଦ, ଅସୂୟା କିମ୍ବା ବିଭାଜନର ସ୍ୱର ନଥିବ । ଏ କ୍ଷେତ୍ରରେ ସଂଘର୍ଷ କୌଣସି ରକ୍ତାକ୍ତ କିମ୍ବା ବଳ ପ୍ରୟୋଗ ଜନିତ ଦ୍ୱନ୍ଦ୍ୱର ପ୍ରତିନିଧିତ୍ୱ କରେ ନାହିଁ କିମ୍ବା ଶାରୀରିକ ଯୁଦ୍ଧର ପ୍ରତୀକ ସାଜେନାହିଁ । ପ୍ରାଚୀନକାଳରୁ ସମାଜରେ ରହିଆସିଥିବା ଅନ୍ଧବିଶ୍ୱାସ, କୁସଂସ୍କାର, କୁ-ପ୍ରଥା ଆଦି ବିରୁଦ୍ଧରେ ଲଢ଼େଇ ହିଁ ଏହି ସଂଘର୍ଷ । ଏ ସଂଘର୍ଷ ଅସଲ ସଂଘର୍ଷ ନୁହେଁ । ଏହା ଚିନ୍ତାଧାରାର ସଂଘର୍ଷ । ସାମ୍ପ୍ରତିକ

ସମାଜକୁ ଯୁଗୋପଯୋଗୀ କରିବା ନିମିତ୍ତ ସଂଘର୍ଷ, ସମଗ୍ର ମାନବ ସମାଜର କଲ୍ୟାଣ ନିମିତ୍ତ ସଂଘର୍ଷ । ଏକବିଂଶ ଶତାବ୍ଦୀରେ ସଭ୍ୟ ଓ ଶିକ୍ଷିତ ମନୁଷ୍ୟ ସମାଜ ପ୍ରତି ବହୁ ଯୁଗରୁ ପ୍ରଚଳିତ ଥିବା ଅନ୍ଧବିଶ୍ୱାସ ଓ କୁସଂସ୍କାର ଉପହାସ ସଦୃଶ । ଜଣେ ଉଚ୍ଚଶିକ୍ଷିତ ବ୍ୟକ୍ତି ଏକ ପ୍ରତିଷ୍ଠାନରେ ବିଭିନ୍ନ ପ୍ରକାରର ବୈଜ୍ଞାନିକ ଉପକରଣକୁ ନେଇ ଚାକିରି କ୍ଷେତ୍ରର ସମସ୍ତ ଦାୟିତ୍ୱ ନିର୍ବାହ କରନ୍ତି । ନିଜ ଗାଁ ଠାକୁରାଣୀଙ୍କ ପର୍ବ ସମୟରେ ବର୍ଷରେ ଥରେ ଦୁଇଥର ଛୁଟି ନେଇ ଆସନ୍ତି । ଗାଁରେ ଉତ୍ସବର ବାତାବରଣ ସୃଷ୍ଟି ହୁଏ । ଠାକୁରାଣୀ କାଳିସୀ ମାଧ୍ୟମରେ ଆସନ୍ତି । ବିଭିନ୍ନ ଲୋକଙ୍କ ରୋଗ ଓ ମନସ୍କାମନା ପୂର୍ଣ୍ଣ ପାଇଁ ହୁକୁମ ଦିଅନ୍ତି । ନିଆଁରେ ଚାଲନ୍ତି, ଦେହ ହାତରେ ନିଆଁ ଘଷନ୍ତି । ପାଟିରେ ନିଆଁହୁଳା ପୁରାଇ ଦିଅନ୍ତି । ଜିଭରେ ଜଳନ୍ତା କର୍ପୂର ରଖନ୍ତି । ପାଟିରେ ଗାଲରେ କଣ୍ଟା ଫୁଟାଇ ଦିଅନ୍ତି । ଜିଅନ୍ତା କୁକୁଡ଼ାର ମୁଣ୍ଡକୁ ଦାନ୍ତରେ ଛିଣ୍ଡାଇ ରକ୍ତ ପିଅନ୍ତି, କଣ୍ଟା ପିଢ଼ାରେ ବସି ବଳି ଦିଆଯାଇଥିବା ବୋଦା ରକ୍ତ ପିଅନ୍ତି । କାଳିସୀଙ୍କ ଏ ସମସ୍ତ ଘଟଣାକୁ ସେହି ବ୍ୟକ୍ତି ଅଲୌକିକ ବୋଲି ବିଶ୍ୱାସ କରି କାଳିସୀ ପକ୍ଷ ନେଇ ତର୍କ କରନ୍ତି । ଜଣେ ଉଚ୍ଚ ଶିକ୍ଷିତ ବ୍ୟକ୍ତିର ବିଶ୍ୱାସ ଓ ମତକୁ ତାଙ୍କ ଚାରିପଟେ ଥିବା ସମାଜ ସମ୍ମାନ ଦିଏ ଓ ଗ୍ରହଣ କରେ । ଏହା ଫଳରେ ସେହି ସମାଜର ରୋଗୀ ଡାକ୍ତରଙ୍କ ପାଖକୁ ନ ଯାଇ ଏହି କାଳିସୀ ପାଖକୁ ଆସନ୍ତି । ଏ ଚିତ୍ର ଏକ ସାର୍ବଜନୀନ ଚିତ୍ର ହୋଇନପାରେ, କିନ୍ତୁ ଏହିଭଳି ଘଟଣାସବୁକୁ ଆଲୌକିକ ଘଟଣା ଭାବରେ ସ୍ଥଳ ବିଶେଷରେ କିଛି ଉଚ୍ଚ ଶିକ୍ଷିତ ବ୍ୟକ୍ତି ଗ୍ରହଣ କରନ୍ତି । ସେମାନେ ନିର୍ଦ୍ଦିଷ୍ଟ କେତୋଟି ବିଷୟରେ ଅଗାଧ ଜ୍ଞାନ ଲାଭ କରିଥିଲେ ମଧ୍ୟ ଅଲୌକିକତା ସମ୍ପର୍କିତ ବିଷୟରେ ସଂପୂର୍ଣ୍ଣ ଅଜ୍ଞ । ଏହି ଅଜ୍ଞତା ଯୋଗୁ ଉଚ୍ଚ ନ୍ୟାୟାଳୟମାନଙ୍କ ଆଦେଶକୁ ଅବଜ୍ଞା କରି ବଳିପ୍ରଥା ଏପର୍ଯ୍ୟନ୍ତ ପ୍ରଚଳିତ ରହିଛି । ପଶୁବଳିକୁ ସମର୍ଥନ କରୁଥିବା ବ୍ୟକ୍ତି ନରବଳିକୁ ବିରୋଧ କରିବାର ନୈତିକତା ଯୁଟାଇ ପାରିବନାହିଁ । କାଳିସୀ, ହୁକୁମ, ଗୁଣିଗାରେଡ଼ି, ବଳି, ତନ୍ତ୍ର-ମନ୍ତ୍ର ଆଦିକୁ ନେଇ ଓଡିଶାରେ ପ୍ରତିବର୍ଷ ୫୦/୬୦ରୁ ଊର୍ଦ୍ଧ୍ୱ ବ୍ୟକ୍ତି ହତ୍ୟାକାଣ୍ଡର ଶିକାର ହେଉଛନ୍ତି । ପ୍ରତ୍ୟେକ ଘଟଣା ପଛରେ ଅଲୌକିକତାକୁ ବିଶ୍ୱାସ କରୁଥିବା ମାନସିକତା ରହିଛି । ଅଲୌକିକତାକୁ ବିଶ୍ୱାସ କରୁଥିବାଯାଏ ଏକ ସୁସ୍ଥ ସମାଜ ଗଠନ ଅସମ୍ଭବ । ଅଲୌକିକତାର ଆଶ୍ରୟ ନେଇ ଲକ୍ଷ୍ୟ ପୂରଣ କରାଯାଇ ପାରୁଥିଲେ ଅଧ୍ୟୟନ, ଅଧ୍ୟବସାୟ, ପରିଶ୍ରମ, ଉଦ୍ୟମ ଆଦିର କୌଣସି ମୂଲ୍ୟନାହିଁ ବୋଲି ସ୍ୱୀକାର କରିବାକୁ ପଡିବ । କିନ୍ତୁ ଏହା କେବେ ବି ହୋଇନାହିଁ କିମ୍ବା ହେବା ସମ୍ଭବ ନୁହେଁ । ଏହା କେବଳ ଅନ୍ଧବିଶ୍ୱାସ । କିନ୍ତୁ ଉଚ୍ଚଶିକ୍ଷା, ପଦପଦବୀ, ସାମାଜିକ ପ୍ରତିଷ୍ଠା ଓ ଧନ ଗର୍ବରେ ଉନ୍ମତ୍ତ ବ୍ୟକ୍ତି ଏସବୁ ସମ୍ପର୍କରେ ଅଜ୍ଞ ଥିବା ଯୋଗୁଁ ଅଲୌକିକତାକୁ ଆହ୍ୱାନ ଦେଇପାରେ ନାହିଁ । ପ୍ଲାସେବୋ ପ୍ରଭାବ, ୟୁଫୋରିଆ ପ୍ରଭାବ, ସାଇକୋସୋମାଟିକ୍ ପ୍ରଭାବ ଏବଂ କ୍ରିପଟେଇସ୍ଥେଇସିଆ ପ୍ରଭାବ ସମ୍ପର୍କରେ ଅଜ୍ଞତା ଥିବା ପର୍ଯ୍ୟନ୍ତ ବ୍ୟକ୍ତି ଅଲୌକିକତାକୁ ସ୍ୱୀକାର

କରିବ । ଅଲୌକିକତା ଏବଂ ଯାଦୁବିଦ୍ୟା ଗୋଟାଏ ଉତ୍ସରୁ ହିଁ ସୃଷ୍ଟି ହୋଇଛି । ଅଲୌକିକତା କେବଳ ଶୋଷଣ ଉଦ୍ଦେଶ୍ୟରେ ବ୍ୟବହୃତ ହେଉଥିବା ସ୍ଥଳେ ଯାଦୁବିଦ୍ୟା ମନୋରଞ୍ଜନ ଉଦ୍ଦେଶ୍ୟରେ ବ୍ୟବହୃତ ହୋଇଆସିଛି । ଆଜିର ସଂଘର୍ଷ ଏହି ଅଲୌକିକତା ବିରୋଧରେ ସଂଗ୍ରାମ ଓ ସଂଘର୍ଷ । ଅଲୌକିକତା ରହସ୍ୟକୁ ଉନ୍ମୋଚନ କରି ସାର୍ବଜନୀନ ନକରିବା ଯାଏ ଏକ ସୁସ୍ଥ ସମାଜଗଠନ ଅସମ୍ଭବ । ଶିକ୍ଷା, ସ୍ୱାସ୍ଥ୍ୟ, ଆଦି କ୍ଷେତ୍ରରେ ପ୍ରଗତି ହାସଲ ପାଇଁ ସଂଘର୍ଷର ଆବଶ୍ୟକତା ନାହିଁ, କିମ୍ବା ରକ୍ତପାତର ଆବଶ୍ୟକତା ନାହିଁ । ଏହା ବ୍ୟକ୍ତିଗତ ଓ ସାମାଜିକ ଭାବେ ଚିନ୍ତାଧାରାକୁ ବଦଳାଇବା ନିମିତ୍ତ ସଂଘର୍ଷ । ସମାଜ ଭିତରେ ଭିନ୍ନକ୍ଷମଙ୍କ ଅଧିକାର, ଶିଶୁ ଅଧିକାର ଭଳି ଅନେକ ପ୍ରସଙ୍ଗ ସାମାଜିକ ନ୍ୟାୟ କ୍ଷେତ୍ରରେ ଆଜି ବି ସମସ୍ୟା ହୋଇ ରହିଛି । ସାମାଜିକ ନ୍ୟାୟ ପ୍ରଦାନ କ୍ଷେତ୍ରରେ ପ୍ରତିବନ୍ଧକ ସୃଷ୍ଟି କରୁଥିବା ଅନେକ ଶକ୍ତି, ଗୋଷ୍ଠୀ ଓ ବ୍ୟକ୍ତିଙ୍କ ବିରୋଧରେ ବୌଦ୍ଧିକ ସଂଘର୍ଷର ଆବଶ୍ୟକତା ରହିଛି । ଏହିଭଳି ସଂଘର୍ଷ ରକ୍ତପାତ ବା ବାହୁବଳରେ କିମ୍ବା ଅସ୍ତ୍ର ଶସ୍ତ୍ରରେ ହୋଇପାରିବ ନାହିଁ । ଏହି ବୌଦ୍ଧିକ ସଂଘର୍ଷ ନିମିତ୍ତ ବ୍ୟକ୍ତି ଜାଗରଣ, ଆତ୍ମଜାଗରଣ ଚିନ୍ତାଶକ୍ତି ଉଦ୍ରେକ କରୁଥିବା ଶିକ୍ଷା, ମାନବବାଦ ସମର୍ଥିତ ସଂଗଠନର ଆବଶ୍ୟକତା ରହିଛି । ସମାଜର ପ୍ରତ୍ୟେକ ବ୍ୟକ୍ତି ଏହାକୁ ହୃଦୟଙ୍ଗମ କରିବା ଉଚିତ୍ ।



## ଲେଖକ ପରିଚୟ

### ଅଶ୍ୱିନୀ କୁମାର ମିଶ୍ର

ଶ୍ରୀ ଅଶ୍ୱିନୀ କୁମାର ମିଶ୍ରଙ୍କର ଜନ୍ମ ୨ ଏପ୍ରିଲ ୧୯୫୩ ମସିହାରେ ସମ୍ବଲପୁରରେ । ଇଂରାଜୀ ସାହିତ୍ୟରେ ଏମ୍.ଏ. ପାସ୍ କରି ସେ ୧୯୭୯ ରୁ ଓଡିଶା ପ୍ରଶାସନିକ ସେବାରେ ତାଙ୍କର କର୍ମମୟ ଜୀବନ ଆରମ୍ଭ କରି ୨୦୧୧ ରେ ସରକାରୀ ଚାକିରିରୁ ଅବସର ନେଇଛନ୍ତି । ସଂପ୍ରତି ସେ ଓଡିଶା ସାହିତ୍ୟ ଏକାଡେମୀରେ ସଚିବ ରହିଛନ୍ତି । କବିତା, ଗଳ୍ପ, ସମାଲୋଚନା ଲେଖନ୍ତି । ଦଶଟି କବିତା ସଂକଳନ, ଗୋଟିଏ ଗଳ୍ପ ସଂକଳନ, ଦୁଇଟି ସମାଲୋଚନାମୂଳକ ପୁସ୍ତକ ଅଦ୍ୟାବଧି ପ୍ରକାଶ ପାଇଛି । ଅନ୍ୟ ଭାଷାର କେତେକ ବିଶିଷ୍ଟ କବିଙ୍କର କବିତାବହିକୁ ଓଡିଆରେ ଅନୁବାଦ କରିଛନ୍ତି ।

### କିଶନ ପଟ୍ଟନାୟକ

ଶ୍ରୀ କିଶନ ପଟ୍ଟନାୟକଙ୍କର ଜନ୍ମ ୧୯୨୯ ମସିହାରେ କଳାହାଣ୍ଡି ଜିଲ୍ଲାର ଭବାନୀପାଟଣାଠାରେ ଓ ଦେହାନ୍ତ ୨୦୦୪ରେ । ଜଣେ ସମାଜବାଦୀ ନେତା, ମୌଳିକ ଚିନ୍ତକ, ସୁବକ୍ତା ଭାବେ ସାରା ଦେଶରେ ଜଣାଶୁଣା ଥିଲେ । ୧୯୬୨ରୁ ୧୯୬୭ ପାଞ୍ଚବର୍ଷ ଲୋକସଭାକୁ ନିର୍ବାଚିତ ହୋଇଥିଲେ । ଲୋହିଆ ବିଚାର ମଞ୍ଚ, ସମତା ସଂଗଠନ ଓ ସମାଜବାଦୀ ଜନ ପରିଷଦ ସଂଗଠନମାନ କରି ଏକ ଆଦର୍ଶବାଦୀ, ବୈକଳ୍ପିକ ରାଜନୈତିକ ବ୍ୟବସ୍ଥା ଛିଡା କରାଇବାକୁ ପ୍ରୟାସ କରିଥିଲେ । ଇଂରାଜୀରେ 'ମ୍ୟାନକାଇଣ୍ଡ', ହିନ୍ଦୀରେ 'ସାମୟିକ ବାର୍ତ୍ତା' ଓ ଓଡିଆରେ 'ବିକଳ୍ପ ବିଚାର' ତିନୋଟି ପତ୍ରିକା ବହୁଦିନ ଧରି ସଂପାଦନା କରୁଥିଲେ । ଭାରତୀୟ ବୁଦ୍ଧିଜୀବୀର ସଂକଟ ଓ ଅନ୍ୟାନ୍ୟ ପ୍ରବନ୍ଧ, ବିଚାରର ଟିପାଖାତା, ଭାରତ ଶୂଦ୍ରଙ୍କର ହେବ ଓଡିଆରେ ତାଙ୍କର ତିନୋଟି ପ୍ରକାଶିତ ପୁସ୍ତକ ରହିଛି ।

### କୀର୍ତ୍ତନ ପରିଡା

ଶ୍ରୀ କୀର୍ତ୍ତନ ପରିଡାଙ୍କର ଜନ୍ମ ୬ ନଭେମ୍ବର ୧୯୫୧ ମସିହାରେ ଯାଜପୁର ଜିଲ୍ଲାର କହ୍ନା ଗ୍ରାମରେ ଓ ଦେହାନ୍ତ ହୁଏ ୨୩ ଜୁନ୍ ୨୦୧୧ରେ । ଇଂରାଜୀ ସାହିତ୍ୟରେ ଏମ୍.ଏ. କଲାପରେ ସେ ଷ୍ଟେଟ ବ୍ୟାଙ୍କ ଅଫ୍ ଇଣ୍ଡିଆରେ କର୍ମମୟ ଜୀବନ ଆରମ୍ଭ କରିଥିଲେ ଓ ଚାକିରିରୁ ଅବସରନେବା ପୂର୍ବରୁ ଚାଲି ଯାଇଥିଲେ । ଗଳ୍ପ, ନାଟକ ଓ ପ୍ରବନ୍ଧମାନ ଲେଖୁଥିଲେ । ଛିନ୍ନ ବୀଣାର ତନ୍ତ୍ରୀ ତାଙ୍କର ଏକ ଗଳ୍ପ ସଂକଳନ । ମୁନାମାଷ୍ଟର, ରକ୍ତସ୍ୱାକ୍ଷର, ଅଗ୍ନିଶିଶୁ ଖୁଦୀରାମ ତାଙ୍କର କେତେକ ନାଟକ । କେତେକ

ପତ୍ର ପତ୍ରିକାରେ ଗବେଷଣା ଧର୍ମୀ ପ୍ରବନ୍ଧମାନ ଲେଖୁଥିଲେ । ମନୁସ୍ମୃତି: ଏକ ତାତ୍ତ୍ୱିକ ଅନୁଶୀଳନ; ଈଶରଙ୍କ ଅସ୍ତିତ୍ୱ ସଂପର୍କରେ ତାଙ୍କର ଦୁଇଟି ପ୍ରବନ୍ଧ ପୁସ୍ତକ ରହିଛି ।

## କୈଳାସ ଚନ୍ଦ୍ର ଦାଶ

ଡକ୍ଟର କୈଳାସ ଚନ୍ଦ୍ର ଦାଶଙ୍କର ଜନ୍ମ ୨୨ ମେ ୧୯୬୦ ମସିହାରେ ନୟାଗଡ ଜିଲ୍ଲାର ଗୋବିନ୍ଦପୁର ଗ୍ରାମରେ । ଦର୍ଶନଶାସ୍ତ୍ରରେ ଏମ୍.ଏ., ପି.ଏଚ୍.ଡି. କରି ଦର୍ଶନ ଅଧ୍ୟାପକ ଭାବେ କର୍ମମୟ ଜୀବନ ଆରମ୍ଭ କରି ସଂପ୍ରତି ଦେବଗଡ଼ ସରକାରୀ ମଡେଲ କଲେଜରେ ଅଧ୍ୟକ୍ଷ ଭାବେ କାର୍ଯ୍ୟ କରୁଛନ୍ତି । 'ଧର୍ମ ଓ ଆଧ୍ୟାତ୍ମିକତା' ତାଙ୍କର ଏକ ପ୍ରବନ୍ଧ ସଂକଳନ ରହିଛି ଓ ଏହା ସହିତ ଇଂରାଜୀରେ ଦୁଇଟି ବହି ସଂକଳନ କରିଛନ୍ତି । ଓଡିଆ ଓ ଇଂରାଜୀରେ ପ୍ରବନ୍ଧ ରଚନା କରନ୍ତି ।

## ଗଗନ ବିହାରୀ ଧଳ

ଶ୍ରୀ ଗଗନ ବିହାରୀ ଧଳଙ୍କର ଜନ୍ମ ୨ ଏପ୍ରିଲ ୧୯୪୪ ମସିହାରେ ଯାଜପୁର ଜିଲ୍ଲାର ଅରେଇ ଗ୍ରାମରେ । ଆଇନରେ ଡିଗ୍ରୀ କଲା ପରେ ଷ୍ଟିଲ ଅଥରଟି ଅଫ୍ ଇଣ୍ଡିଆରେ କର୍ମମୟ ଜୀବନ ଆରମ୍ଭ କରି ୨୦୦୪ରେ ଅବସର ନେଇ ରାଉରକେଲାଠାରେ ଅବସ୍ଥାନ କରୁଛନ୍ତି । ଧର୍ମ, ଈଶ୍ୱର ଓ ବିଜ୍ଞାନ ଏବଂ ସତ୍ୟାନୁସନ୍ଧାନ : ସୀମା ଓ ସୀମାନ୍ତ ତାଙ୍କର ଦୁଇଟି ପ୍ରବନ୍ଧ ସଙ୍କଳନ ପ୍ରକାଶିତ । ଚିନ୍ତାମୂଳକ ପ୍ରବନ୍ଧ ଲେଖନ୍ତି ।

## ଗଙ୍ଗାଧର ସାହୁ

ଶ୍ରୀ ଗଙ୍ଗାଧର ସାହୁଙ୍କର ଜନ୍ମ ୨ ସେପ୍ଟେମ୍ବର ୧୯୬୩ ମସିହାରେ ଢେଙ୍କାନାଳ ଜିଲ୍ଲାର ଆଦିପୁରା ଗ୍ରାମରେ । ୧୯୮୬ ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ରାଜନୀତି ବିଜ୍ଞାନରେ ଏମ୍.ଏ. କଲାପରେ ୧୯୮୭ ରେ ଓଡିଶା ପ୍ରଶାସନିକ ସେବା ବା ଓ.ଏ.ଏସ.ରେ ଯୋଗଦାନ । ସଂପ୍ରତି ସେ ଗଣଶିକ୍ଷା ବିଭାଗରେ ଜଏଣ୍ଟ ସେକ୍ରେଟେରି ଭାବେ କାର୍ଯ୍ୟ କରୁଛନ୍ତି । ବୃତ୍ତିଗତ ଜୀବିକା ବାହାରେ ଜଣେ ହେତୁବାଦୀ ବୁଦ୍ଧିଜୀବୀ ଭାବେ ସେ ଓଡିଶାରେ ପରିଚିତ । ପତ୍ର ପତ୍ରିକାରେ ବିଚାରଧର୍ମୀ ପ୍ରବନ୍ଧମାନ ଲେଖନ୍ତି ଓ ଟିଭି ଚାନେଲ ମାନଙ୍କର ଆଲୋଚନା ମାନଙ୍କରେ ଅଂଶଗ୍ରହଣ କରନ୍ତି ।

## ଗୌରାଙ୍ଗ ଚରଣ ଦାଶ

ଶ୍ରୀ ଗୌରାଙ୍ଗ ଚରଣ ଦାଶଙ୍କର ଜନ୍ମ ୨୬ ମାର୍ଚ୍ଚ ୧୯୪୧ ମସିହାରେ ବାଲେଶ୍ୱର ଜିଲ୍ଲାର ଧାତ୍ରିଗଡିଆ ଗ୍ରାମରେ । ସିଭିଲ ଇଂଜିନିୟରିଙ୍ଗରେ ବୁର୍ଲାରୁ

ଇଂଜିନିୟରିଂ ଡିଗ୍ରୀ କରି ୧୯୬୫ ରୁ ସରକାରି ଚାକିରୀରେ ଯୋଗଦାନ ଓ ୧୯୯୯ ରେ ଏସ୍.ଇ. ପଦବୀରୁ ଅବସର ଗ୍ରହଣ । 'ଧର୍ମ ଚେତନାର ଭିନ୍ନ ସ୍ୱର' ତାଙ୍କର ଏକ ସୁଖପାଠ୍ୟ ପ୍ରବନ୍ଧ ସଂକଳନ ।

### ଗୋକୁଳାନନ୍ଦ ମହାପାତ୍ର

ଡକ୍ଟର ଗୋକୁଳାନନ୍ଦ ମହାପାତ୍ରଙ୍କର ଜନ୍ମ ୨୪ ମେ ୧୯୨୨ ମସିହାରେ ଭଦ୍ରକ ଜିଲ୍ଲାର କୁଆଁସ ଗ୍ରାମରେ ଓ ଦେହାନ୍ତ ୧୦ ଜୁଲାଇ ୨୦୧୩ ରେ । କଲିକତା ପ୍ରେସିଡେନ୍ସି କଲେଜରୁ ଏମ୍.ଏସସି ଓ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଡିଗ୍ରୀ ଲାଭ କରିଥିଲେ । ରସାୟନ ବିଜ୍ଞାନର ଅଧ୍ୟାପକ ଭାବେ କାର୍ଯ୍ୟକରି ୧୯୮୧ ରେ ରେଭେନ୍ସା କଲେଜରୁ ପ୍ରଫେସର ଭାବେ ଅବସର ନେଇଥିଲେ । ୨୦ ରୁ ଅଧିକ ଟେକ୍ସଟ ବୁକ୍, ୧୪ଟି ବୈଜ୍ଞାନିକ ଉପନ୍ୟାସ, ୧୨ଟି ଶିଶୁ ପୁସ୍ତକ ଓ ଏକାଧିକ ଭ୍ରମଣ କାହାଣୀ ଲେଖିଛନ୍ତି । ଓଡିଶାରେ ବିଜ୍ଞାନ ଲେଖକ ଭାବେ ଜଣେ ଅଗ୍ରଣୀ ବ୍ୟକ୍ତିତ୍ୱ । ବିଜ୍ଞାନ ବିସ୍ମୟ, ପୃଥିବୀ ବାହାରେ ମଣିଷ, ଚନ୍ଦ୍ରର ମୃତ୍ୟୁ, ମଧ୍ୟାହ୍ନର ଅନ୍ଧକାର ଇତ୍ୟାଦି ବହିଗୁଡିକ ଓଡିଶାରେ ଅତ୍ୟନ୍ତ ଜନପ୍ରିୟ ।

### ଡମ୍ବରୁଧର ବେହେରା

ଶ୍ରୀ ଡମ୍ବରୁଧର ବେହେରାଙ୍କର ଜନ୍ମ ୧୬ ଏପ୍ରିଲ ୧୯୪୯ ମସିହାରେ ଢେଙ୍କାନାଳ ଜିଲ୍ଲାର ଭୁବନ ଗ୍ରାମରେ । ଇଂରାଜୀରେ ଏମ୍.ଏ. ପାସ କରି ୧୯୭୪ ରେ ଅଧ୍ୟାପନା ବୃତ୍ତିରେ ଯୋଗଦାନ । ବିଭିନ୍ନ କଲେଜରେ କାର୍ଯ୍ୟକରି ମହିମା ମହାବିଦ୍ୟାଳୟର ଅଧ୍ୟକ୍ଷ ପଦରୁ ୨୦୦୯ରେ ଅବସର ଗ୍ରହଣ । କବିତା ଓ ପ୍ରବନ୍ଧ ଲେଖନ୍ତି । 'ସନେଟ ଶତକ' କବିତା ସଂକଳନ ତାଙ୍କର ଏକ ପ୍ରକାଶିତ ପୁସ୍ତକ ।

### ଦେବକାନ୍ତ ମିଶ୍ର

ଡକ୍ଟର ଦେବକାନ୍ତ ମିଶ୍ରଙ୍କର ଜନ୍ମ ୫ ମାର୍ଚ୍ଚ ୧୯୩୯ ମସିହାରେ ପୁରୀ ଜିଲ୍ଲାର ଶ୍ରୀରାମଚନ୍ଦ୍ରପୁର ଗ୍ରାମରେ । ପଦାର୍ଥ ବିଜ୍ଞାନରେ ଏମ୍.ଏସସି. ଓ ଡି.ଲିଟ୍ ଡିଗ୍ରୀ ଲାଭ କରିଛନ୍ତି । ପଦାର୍ଥ ବିଜ୍ଞାନର ଅଧ୍ୟାପକ ଭାବେ କର୍ମମୟ ଜୀବନ ଆରମ୍ଭ କରି ବିଭିନ୍ନ ପଦପଦବୀରେ କାର୍ଯ୍ୟକରି ୧୯୯୭ ରେ ଅବସର ନେଇଛନ୍ତି । ବୈଜ୍ଞାନିକଙ୍କ ଜୀବନୀଠାରୁ ଆରମ୍ଭ କରି ବିଜ୍ଞାନର ବିଭିନ୍ନ ବିଭାଗ ଉପରେ ପୁସ୍ତକମାନ ଲେଖିଛନ୍ତି । ମାନବ ଜ୍ଞାନର ବିଭିନ୍ନ କ୍ଷେତ୍ରଉପରେ ଲେଖା ଯାଇଥିବା ମୌଳିକ ପୁସ୍ତକମାନଙ୍କୁ ଅଧ୍ୟୟନ କରି ସେସବୁକୁ ଓଡିଆ ପାଠକମାନଙ୍କ ପାଖରେ ସାବଲୀଳ

ଭାବରେ ବ୍ୟକ୍ତ କରିବାକୁ ପ୍ରୟାସ କରିଛନ୍ତି । ତାଙ୍କର ପ୍ରାୟ ଶହେରୁ ଅଧିକ ପୁସ୍ତକ ରହିଛି ।

### ଦେବେନ୍ଦ୍ର ସୁତାର

ଶ୍ରୀ ଦେବେନ୍ଦ୍ର ସୁତାରଙ୍କର ଜନ୍ମ ୧୮ ଅକ୍ଟୋବର ୧୯୬୮ ମସିହାରେ କେନ୍ଦ୍ରାପଡା ଜିଲ୍ଲା ସିଦ୍ଧିବାଲି ଗ୍ରାମରେ । ଇତିହାସରେ ଏମ୍.ଏ. କଲାପରେ ଜଣେ ସମାଜକର୍ମୀ ଭାବେ ସଂସ୍କାରମୂଳକ କାର୍ଯ୍ୟମାନ କରି ଆସୁଛନ୍ତି । ଗଳ୍ପ ଓ ଫିଚରମାନ ଲେଖନ୍ତି ଓ ବିଭିନ୍ନ ଟିଭି ଚାନେଲମାନଙ୍କର ଆଲୋଚନାରେ ଅଂଶଗ୍ରହଣ କରନ୍ତି । କେତେ ରଙ୍ଗ କେତେ ରୂପ ତାଙ୍କର ଏକ ଗଳ୍ପ ସଂକଳନ ଓ ସର୍ପ ସମାଚାର ତାଙ୍କର ଏକ ପ୍ରକାଶିତ ପୁସ୍ତକ ରହିଛି ।

### ଧନେଶ୍ୱର ମହାପାତ୍ର

ଡକ୍ଟର ଧନେଶ୍ୱର ମହାପାତ୍ରଙ୍କର ଜନ୍ମ ୫ ଅଗଷ୍ଟ ୧୯୩୨ ମସିହା କେନ୍ଦ୍ରାପଡା ଜିଲ୍ଲାର ରାଜକନିକା ଆୟତନ ଗ୍ରାମରେ । ସଂସ୍କୃତ ଓ ଓଡିଆ ସାହିତ୍ୟରେ ଏମ୍.ଏ. ଓ ପିଏଚ.ଡି. ଡିଗ୍ରୀ ଲାଭ । ଅଧ୍ୟାପକ ଭାବେ କର୍ମମୟ ଜୀବନ ଆରମ୍ଭ କରି ରେଭେନ୍ସା କଲେଜରୁ ଅବସର ଗ୍ରହଣ । ଜଣେ ଭାଷାତତ୍ତ୍ୱବିତ୍, ଅନୁବାଦକ, ସ୍ତମ୍ଭକାର ଓ ପ୍ରାବନ୍ଧିକ ଭାବେ ସୁପରିଚିତ । କାଳିଦାସ ଓ ଅଶ୍ୱଘୋଷଙ୍କ ସମଗ୍ର କୃତିକୁ ଓ ଲିଓ ଟଲଷ୍ଟୟଙ୍କ Ressurrection କୁ ଓଡିଆରେ ଅନୁବାଦ କରିଛନ୍ତି । ସାରଳା ମହାଭାରତର ଭାଷାତାତ୍ତ୍ୱିକ ଅନୁଶୀଳନ, ଓଡିଆ ଧ୍ୱନିତତ୍ତ୍ୱ ଓ ଶବ୍ଦସମ୍ଭାର, ଆଧୁନିକ ଓଡିଆ ବ୍ୟାକରଣ ପରି ବହୁ ଗବେଷଣାମୂଳକ ପୁସ୍ତକ ରଚନା କରିଛନ୍ତି । 'ଏକ ବୁଦ୍‌ବୁଦର କାହାଣୀ' ତାଙ୍କର ସୁଖପାଠ୍ୟ ଆତ୍ମଜୀବନୀ ।

### ଧନେଶ୍ୱର ସାହୁ

ଶ୍ରୀ ଧନେଶ୍ୱର ସାହୁଙ୍କର ଜନ୍ମ ୩୦ ସେପ୍ଟେମ୍ବର ୧୯୪୯ ମସିହାରେ ଢେଙ୍କାନାଳ ଜିଲ୍ଲା ଭୁବନ ଗ୍ରାମରେ । ଉତ୍କଳ ବିଶ୍ୱବିଦ୍ୟାଳୟରୁ ଦର୍ଶନଶାସ୍ତ୍ରରେ ଏମ୍.ଏ. କଲାପରେ ୧୯୭୪ରେ ଅଧ୍ୟାପନା ବୃତ୍ତିରେ ଯୋଗଦାନ ଓ ୨୦୦୭ରେ ବିଜେବି କଲେଜରୁ ଅବସର ଗ୍ରହଣ । ଜଣେ ପ୍ରାବନ୍ଧିକ, ଅନୁବାଦକ, ସ୍ତମ୍ଭକାର ଓ ହେତୁବାଦୀ ଚିନ୍ତକ ଭାବେ ଜଣାଶୁଣା । ଇଂରାଜୀ ଓ ଓଡିଆରେ ଚିନ୍ତାମୂଳକ ପ୍ରବନ୍ଧ ଲେଖନ୍ତି । ପେରିୟାର, ଗୋରା ଓ ଆମ୍ବେଦକରଙ୍କ କିଛି ଲେଖାକୁ ଓଡିଆରେ ଅନୁବାଦ କରିଛନ୍ତି । ସଂସ୍କୃତି ଓ ସର୍ବୋଦୟ, ଆବ୍ରାହମ କୋଭୁର, ବିନୋଦ କାନୁନଗୋ, ଜୀବନ ଜିଜ୍ଞାସା,

ଜୀବନ ଅନ୍ୱେଷା, ହେତୁବାଦୀ ଜୀବନବୋଧ ଇତ୍ୟାଦି ବହି ଗୁଡିକ ତାଙ୍କର ସୃଜନ ସୃଷ୍ଟି ।

## ନିହାର ରଞ୍ଜନ ମହାପାତ୍ର

ଡାକ୍ତର ନିହାର ରଞ୍ଜନ ମହାପାତ୍ରଙ୍କର ଜନ୍ମ ୫ ମାର୍ଚ୍ଚ ୧୯୬୨ ମସିହାରେ କଟକ ଜିଲ୍ଲା ନରସିଂହପୁର ଗ୍ରାମରେ । ୧୯୮୬ରେ ବ୍ରହ୍ମପୁରସ୍ଥିତ ମେଡିକାଲ କଲେଜରୁ ଏମବିବିଏସ ପାସ୍ କଲାପରେ କିଛି ଦିନ ସରକାରୀ ଚାକିରୀ କରି ସେଥିରୁ ଇସ୍ତଫା ଦେଇ ବଡମ୍ବା ପାଖର ଗୋପପୁରଠାରେ ନିଜସ୍ୱ ଏକ କ୍ଲିନିକ କରି ରୋଗୀ ସେବା କରୁଛନ୍ତି । ସଂସ୍କାରମୂଳକ ପ୍ରବନ୍ଧ ଲେଖନ୍ତି । ଜନ୍ମ ଓ ମୃତ୍ୟୁ, ବିବେକର ସ୍ୱର, ପ୍ରତିବାଦର ସ୍ୱର ତାଙ୍କର ତିନୋଟି ପ୍ରବନ୍ଧ ସଙ୍କଳନ ରହିଛି ।

## ନୀଳମଣି ସାହୁ

ଶ୍ରୀ ନୀଳମଣି ସାହୁଙ୍କର ଜନ୍ମ ୧୫ ଜୁନ ୧୯୩୯ ମସିହାରେ ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁର ସହରରେ । ଦର୍ଶନରେ ଏମ୍.ଏ. ପାସ୍ କରି ୧୯୭୦ ରୁ ଦର୍ଶନ ଅଧ୍ୟାପକ ଭାବେ କାର୍ଯ୍ୟକରି ୧୯୯୯ରେ ଚାକିରିରୁ ଅବସର ଗ୍ରହଣ । ଭଗତ ସିଂହଙ୍କର ଲେଖାମାନଙ୍କୁ ଓଡିଆରେ ଅନୁବାଦ କରିଛନ୍ତି । ପରଲୋକ ବନାମ ଇହଲୋକ, କାହାର ଏହି ଧରା, ଜୀବନ୍ତ ସଂସ୍କୃତି ପଥେ, ଭାବି ଦେଖନ୍ତୁତ ତାଙ୍କର ସୃଜନ-ସୃଷ୍ଟି । ବିଚାରଧର୍ମୀ ପ୍ରବନ୍ଧମାନ ଲେଖନ୍ତି ।

## ପ୍ରତାପ କୁମାର ରଥ

ଡକ୍ଟର ପ୍ରତାପ କୁମାର ରଥଙ୍କର ଜନ୍ମ ୫ ଜୁନ ୧୯୫୬ରେ ସମ୍ବଲପୁରଠାରେ । ଉତ୍କଳ ବିଶ୍ୱବିଦ୍ୟାଳୟରୁ ମନୋବିଜ୍ଞାନରେ ଏମ୍.ଏ. ଓ ଇଂଲଣ୍ଡରୁ ପିଏଚ.ଡି. ଡିଗ୍ରୀ ଲାଭ । କିଛି ଦିନ ସରକାରୀ କଲେଜରେ କାର୍ଯ୍ୟ କରି ଉତ୍କଳ ବିଶ୍ୱବିଦ୍ୟାଳୟ ମନୋବିଜ୍ଞାନ ବିଭାଗରେ ୧୯୮୨ରେ ଯୋଗଦାନ କରି ଜୁନ ୨୦୧୬ରେ ପ୍ରଫେସର ଭାବେ ଅବସର ନେଇଛନ୍ତି । ଜଣେ ହେତୁବାଦୀ ବକ୍ତା ଓ ଆଲୋଚକ ଭାବେ ଜଣାଶୁଣା । ବିଭିନ୍ନ ଟିଭି ଚାନେଲମାନଙ୍କର ଆଲୋଚନା-ବିତର୍କରେ ଅଂଶଗ୍ରହଣ କରନ୍ତି ।

## ପ୍ରସନ୍ନ କୁମାର କରବର

ଶ୍ରୀ ପ୍ରସନ୍ନ କୁମାର କରବରଙ୍କର ଜନ୍ମ ୭, ଫେବୃୟାରୀ ୧୯୪୦ ମସିହାରେ ନୟାଗଡ ଜିଲ୍ଲାର କରବର ଗ୍ରାମରେ । ତାଙ୍କର ନିଜସ୍ୱ ନାମ ପ୍ରସନ୍ନ କୁମାର ସାହୁ ।

ପ୍ରସନ୍ନ କୁମାର କରବର ତାଙ୍କର ଏକ ଛଦ୍ମନାମ । ଇଂରାଜୀ ସାହିତ୍ୟରେ ଏମ୍.ଏ. କଲାପରେ ୧୯୬୭ରୁ ଅଧ୍ୟାପନା ବୃତ୍ତିରେ ଯୋଗଦାନ । ବିଭିନ୍ନ କଲେଜରେ କାର୍ଯ୍ୟ କରି ୧୯୯୮ ରେ ଅବସର ଗ୍ରହଣ । ଗାଳ୍ପିକ, ପ୍ରାବନ୍ଧିକ, ଅନୁବାଦକ ଭାବେ ଜଣାଶୁଣା । ଏକମାତ୍ର ଓଡିଆ ତାଙ୍କର ଏକ ଗଳ୍ପ ସଂକଳନ । ଟଲଷ୍ଟୟ ଓ ଚେକୋଭୋଙ୍କର କେତେକ ଗଳ୍ପକୁ ଅନୁବାଦ କରି ପୁସ୍ତକ ପ୍ରକାଶ କରିଛନ୍ତି ।

## ଫକୀର ମୋହନ ସାହୁ

ଡକ୍ଟର ଫକୀର ମୋହନ ସାହୁଙ୍କର ଜନ୍ମ ୩'ମେ ୧୯୪୮ ମସିହାରେ କଟକଠାରେ । ଉତ୍କଳ ବିଶ୍ୱବିଦ୍ୟାଳୟରୁ ମନୋବିଜ୍ଞାନରେ ଏମ୍.ଏ. ଓ କାନଡାର ଏକ ବିଶ୍ୱବିଦ୍ୟାଳୟରୁ ପିଏଚ.ଡି. । ୧୯୭୩ ରେ ରେଭେନ୍ସା କଲେଜର ଅଧ୍ୟାପକ ଭାବେ କାର୍ଯ୍ୟକରି ୧୯୭୫ରେ ଉତ୍କଳ ବିଶ୍ୱବିଦ୍ୟାଳୟର ମନୋବିଜ୍ଞାନ ବିଭାଗରେ ଯୋଗଦାନ ଓ ୨୦୦୮ ରେ ପ୍ରଫେସର ଭାବେ ଅବସର ଗ୍ରହଣ । ମନୋବିଜ୍ଞାନ ଉପରେ ଇଂରାଜୀରେ କୋଡିଏ ଖଣ୍ଡ ପୁସ୍ତକ ଲେଖିଛନ୍ତି । ତଲ୍ଲୀନତା, ସବଳ ମନ ସଫଳ ଜୀବନ, ଶିଶୁ ମନର ବିଜ୍ଞାନ, ମାନସିକ ବିକୃତି, ମନସ୍ତାତ୍ତ୍ୱିକ ବିକାଶର ଶୈଶବ ପର୍ବ, ବାଲ୍ୟପର୍ବ, କିଶୋର ପର୍ବ, ଯୌବନପର୍ବ, ଗୋଧୂଳିପର୍ବ (ପାଞ୍ଚଖଣ୍ଡ) ଇତ୍ୟାଦି ପୁସ୍ତକମାନ ଓଡିଆରେ ରଚନା କରିଛନ୍ତି । ମନୋବୈଜ୍ଞାନିକ ପ୍ରବନ୍ଧ ରଚନା କ୍ଷେତ୍ରରେ ଓଡିଶାରେ ବେଶ୍ ଜଣାଶୁଣା ।

## ବସନ୍ତ କୁମାର ମଲ୍ଲିକ

ଡକ୍ଟର ବସନ୍ତ କୁମାର ମଲ୍ଲିକଙ୍କର ଜନ୍ମ ୧୮ ଫେବୃୟାରୀ ୧୯୬୨ ମସିହାରେ କେନ୍ଦ୍ରାପଡା ଜିଲ୍ଲାରେ । ଜେଏନୟୁ, ନୂଆଦିଲ୍ଲୀରୁ ଇତିହାସରେ ଏମ୍.ଏ. ଓ ପିଏଚ.ଡି. ଡିଗ୍ରୀ ଲାଭ । ଇତିହାସ ବିଭାଗର ଅଧ୍ୟାପକ ଭାବେ ସରକାରୀ କଲେଜରେ କାର୍ଯ୍ୟକରି ୧୯୯୬ ରୁ ଉତ୍କଳ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରୁଛନ୍ତି ଓ ସଂପ୍ରତି ସେଠାରେ ପ୍ରଫେସର ରହିଛନ୍ତି । ଇଂରାଜୀରେ କେତେକ ଗବେଷଣାମୂଳକ ପୁସ୍ତକ ଲେଖିବା ସହ ଓଡିଆରେ "ଭୀମରାଓ" ଶିରୋନାମାରେ ଖଣ୍ଡିଏ ବହି ସଂକଳନ କରିଛନ୍ତି ।

## ବାଲ୍ମୀକି ନାୟକ

ଶ୍ରୀ ବାଲ୍ମୀକି ନାୟକଙ୍କର ଜନ୍ମ ୨୯ ମେ ୧୯୫୧ ମସିହାରେ ଗଞ୍ଜାମ ଜିଲ୍ଲାର ପାତ୍ରାପଲ୍ଲୀ ଗ୍ରାମରେ । ପ୍ରତିରକ୍ଷା ବିଭାଗରେ କର୍ମମୟ ଜୀବନ ୧୯୭୨ରୁ

ଆରମ୍ଭ କରି ୧୯୮୮ ରେ ସ୍ୱେଚ୍ଛାକୃତ ଅବସର ନେଇଛନ୍ତି । ହେତୁବାଦ ଆଧାରିତ ପ୍ରବନ୍ଧ ରଚନା କରନ୍ତି । ମୁକ୍ତ ମନର ବିଚାର, ଚମତ୍କାରର ରହସ୍ୟ, ତର୍କର ଊର୍ଦ୍ଧ୍ୱରେ କିଏ ଓ ହେତୁବାଦର ଆବଶ୍ୟକତା ତାଙ୍କର ସୃଜନ ସୃଷ୍ଟି ।

## ବିଜୟ ଉପାଧ୍ୟାୟ

ଶ୍ରୀ ବିଜୟ ଉପାଧ୍ୟାୟଙ୍କର ଜନ୍ମ ୩୧ ମାର୍ଚ୍ଚ ୧୯୫୦ ମସିହାରେ ବାଲେଶ୍ୱର ଜିଲ୍ଲାର ବେଣାପୁର ଗ୍ରାମରେ । ଦର୍ଶନଶାସ୍ତ୍ରରେ ଏମ୍.ଏ କଲାପରେ ସେ ସାମାଜିକ କର୍ମୀ ଭାବେ ସମାଜସେବାରେ ବ୍ରତୀ ହୋଇଛନ୍ତି । କବିତା, ପ୍ରବନ୍ଧ ଲେଖନ୍ତି । ବସୁନ୍ଧରା ମାଟି, ଭଲପାଇବାର ପଦାବଳୀ ତାଙ୍କର ଦୁଇଟି କବିତା ସଂକଳନ ଓ ଅନ୍ଧାରି ମୂଳକ ଓ ଜୀବନ୍ତ ସଭ୍ୟତା ତାଙ୍କର ଦୁଇଟି ପ୍ରବନ୍ଧ ସଂକଳନ ରହିଛି । ଆଦିବାସୀଙ୍କ ଭାଷା ସଂସ୍କୃତି ଉପରେ ପୁସ୍ତକ ପ୍ରକାଶ କରିବା ସହ ଓଡିଶାରେ ଗଣତାନ୍ତ୍ରିକ ଆନ୍ଦୋଳନ, ଓଡିଶାରେ ଜନଆନ୍ଦୋଳନ, ଓଡିଶାରେ ପ୍ରଗତିଶୀଳ ସାହିତ୍ୟ ଆନ୍ଦୋଳନ, ଓ ଜୀବନ ସଂଗ୍ରାମ ପ୍ରବନ୍ଧ ସଂକଳନ ମାନ ତାଙ୍କ ସଂପାଦନାରେ ପ୍ରକାଶ ପାଇଛି ।

## ବିଜୟାନନ୍ଦ କର

ଡକ୍ଟର ବିଜୟାନନ୍ଦ କରଙ୍କର ଜନ୍ମ ୧ ଅକ୍ଟୋବର ୧୯୪୦ ମସିହାରେ କଟକ ଜିଲ୍ଲାର ସୁନାଖଣ୍ଡି ଗ୍ରାମରେ । ଉତ୍କଳ ବିଶ୍ୱବିଦ୍ୟାଳୟରୁ ଦର୍ଶନ ଶାସ୍ତ୍ରରେ ଏମ୍.ଏ. ପିଏଚ.ଡି । ୧୯୬୧ ରେ ଉତ୍କଳ ବିଶ୍ୱବିଦ୍ୟାଳୟର ଦର୍ଶନ ବିଭାଗରେ ଅଧ୍ୟାପକ ଭାବେ ଯୋଗଦେଇ ୨୦୦୦ ମସିହାରେ ପ୍ରଫେସର ଭାବେ ଅବସର ଗ୍ରହଣ । ଇଂରାଜୀରେ କୋଡିଏରୁ ଅଧିକ ଦର୍ଶନ ସମ୍ବନ୍ଧୀୟ ପୁସ୍ତକ ଲେଖିଛନ୍ତି । ଓଡିଆରେ ଧର୍ମ, ଦର୍ଶନ ଓ ମାନବବାଦ; ସାଂଖ୍ୟଦର୍ଶନ; ବୌଦ୍ଧିକ ସଂକଟ; ଦାର୍ଶନିକ ନୀଳକଣ୍ଠ ପୁସ୍ତକମାନ ରଚନା କରିଛନ୍ତି । ଜଣେ ବିଶିଷ୍ଟ ଦର୍ଶନ-ଗବେଷକ ଭାବେ ଜାତୀୟ ସ୍ତରରେ ପରିଚିତ ।

## ବିନୋଦ

ଶ୍ରୀ ବିନୋଦଙ୍କର ଜନ୍ମ ୮ ସେପ୍ଟେମ୍ବର ୧୯୬୯ ମସିହା ଗଞ୍ଜାମ ଜିଲ୍ଲାର ଦ୍ୱାରଶୁଣି ଗ୍ରାମରେ । ପ୍ରାଣୀବିଜ୍ଞାନରେ ଏମ୍.ଏସସି. ଓ ଆଇନରେ ଏଲ୍ଏଲ୍. ବି. ଡିଗ୍ରି ଲାଭ କରିଛନ୍ତି । କବିତା ଓ ବୈଜ୍ଞାନିକ ପ୍ରବନ୍ଧ ଲେଖନ୍ତି । ଅପରାଜୟୀ ଓ ଲୋହିତ ପ୍ରତିଧ୍ୱନୀ ତାଙ୍କର ଦୁଇଟି କବିତା ପୁସ୍ତକ ରହିଛି ।

## ବି. ରାମଚନ୍ଦ୍ର

ଶ୍ରୀ ବିଶ୍ୱନାଥ ରାମଚନ୍ଦ୍ରଙ୍କର ଜନ୍ମ ୧୭ ମାର୍ଚ୍ଚ ୧୯୪୫ ମସିହାରେ କଟକ ଜିଲ୍ଲା ଏରଞ୍ଚ ଗ୍ରାମରେ । ଉତ୍କଳ ବିଶ୍ୱବିଦ୍ୟାଳୟରୁ ରାଜନୀତି ବିଜ୍ଞାନରେ ଏମ୍.ଏ.

ପାସ୍ କଲାପରେ ୧୯୬୯ ରୁ ଅଧ୍ୟାପନା ଜୀବନ ଆରମ୍ଭ କରି ବିଜେବି କଲେଜରୁ ୨୦୦୩ରେ ଅବସର ନେଇଛନ୍ତି । ଆମୋଫୋଇ ନାମରେ ଏକ ସଂଗଠନ କରି ସମାଜ ସଂସ୍କାର ଦିଗରେ ଜାତିବିହୀନ ବିବାହ କରି ଆସୁଛନ୍ତି । ମାନବିକ ଅଧିକାର, ସମାଜ ସଂସ୍କାର ଇତ୍ୟାଦି ସଂପର୍କରେ ୨୦ ଖଣ୍ଡରୁ ଅଧିକ ବହି ସଂକଳନ କରି ପ୍ରକାଶ କରିଛନ୍ତି । ଓଡିଶାରେ ବ୍ୟକ୍ତି ମର୍ଯ୍ୟାଦାର ସ୍ଥାନ ନାମରେ ତାଙ୍କର ଖଣ୍ଡିଏ ପୁସ୍ତକ ରହିଛି ।

## ଭୁପେନ ମହାପାତ୍ର

ଶ୍ରୀ ଭୂପେନ ମହାପାତ୍ରଙ୍କର ଜନ୍ମ ୩ ଅଗଷ୍ଟ ୧୯୩୫ ମସିହାରେ ବାଲେଶ୍ୱର ଜିଲ୍ଲାର କୋଟସାହି ଗ୍ରାମରେ । କେନ୍ଦ୍ରୀୟ ଉଦ୍ୟୋଗିକ ସୁରକ୍ଷା ବିଭାଗରେ କାର୍ଯ୍ୟକରି ଅବସର ଗ୍ରହଣ । ଗାଳ୍ପିକ, ପ୍ରାବନ୍ଧିକ ଓ ରମ୍ୟରଚନା ଲେଖକ ଭାବେ ଓଡିଶାରେ ପରିଚିତ । ପୃଥିବୀ ଓ ପୃଥିବୀ, ଗୋଟିଏ ମେଣ୍ଢାପଲ, ପ୍ରମିଳା ତାଙ୍କର କେତୋଟି ଗଳ୍ପ ସଂକଳନ । ଭାରତୀୟ ଭାବଧାରା ଓ ଅନ୍ୟାନ୍ୟ ପ୍ରବନ୍ଧ ତାଙ୍କର ଏକ ପ୍ରବନ୍ଧ ସଂକଳନ, ପ୍ରଥମ ପୃଥିବୀ ତାଙ୍କର ଏକ ସୁଖପାଠ୍ୟ ଉପନ୍ୟାସ ଓ ଉପତ୍ୟକାର ଉପକଥା ତଥା ଅପୂର୍ବ ପୂର୍ବ ତାଙ୍କର ଦୁଇଟି ଭ୍ରମଣ କାହାଣୀ । ରାଉରକେଲାରେ ଅବସ୍ଥାନ କରୁଛନ୍ତି ଓ 'ନାଗରା' ନାମରେ ଏକ ଦ୍ୱିମାସିକ ଓଡିଆ ପତ୍ରିକା ତାଙ୍କ ସଂପାଦନାରେ ପ୍ରକାଶ ପାଉଛି ।

## ମନୋରଞ୍ଜନ ମହାନ୍ତି

ଡକ୍ଟର ମନୋରଂଜନ ମହାନ୍ତିଙ୍କର ଜନ୍ମ ୨୩ ଜୁନ ୧୯୪୨ ମସିହା ଜଗତସିଂହପୁର ଜିଲ୍ଲାର କଣିଆଁ ଗ୍ରାମରେ । ରାଜନୀତି ବିଜ୍ଞାନରେ ଦିଲ୍ଲୀ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ଓ ଆମେରିକାର ଏକ ବିଶ୍ୱବିଦ୍ୟାଳୟରୁ ପିଏଚ.ଡି. ଡିଗ୍ରୀ ଲାଭ । ଦିଲ୍ଲୀର ଏକ କଲେଜ ଓ ପରେ ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କାର୍ଯ୍ୟକରି ୨୦୦୪ରେ ଦିଲ୍ଲୀ ବିଶ୍ୱବିଦ୍ୟାଳୟରୁ ପ୍ରଫେସର ପଦବୀରୁ ଅବସର ନେଇଛନ୍ତି । ୨୦ରୁ ଅଧିକ ଗବେଷଣାମୂଳକ ପୁସ୍ତକ ଇଂରାଜୀରେ ଲେଖିଛନ୍ତି । ଓଡିଆରେ ଓଡିଶା ଦରିଦ୍ର କାହିଁକି ଓ ଉଦ୍ଦୀପ୍ତ ଓଡିଶା ଏବେ ବି ଦରିଦ୍ର କାହିଁକି ତାଙ୍କର ଦୁଇଟି ବହୁ ଚର୍ଚ୍ଚିତ ପୁସ୍ତକ ।

## ମଧୁସୁଦନ ଯାଦବ

ଶ୍ରୀ ମଧୁସୁଦନ ଯାଦବଙ୍କର ଜନ୍ମ ୬ ଫେବୃୟାରୀ ୧୯୪୯ ମସିହାରେ ବାଲେଶ୍ୱର ଜିଲ୍ଲାର ବଡପାଳ ଗ୍ରାମରେ । ବି.ଏ. ପାସ୍ କଲାପରେ ଓଡିଶା ସଚିବାଳୟ

ଚାକିରିରେ ଯୋଗଦାନ ଓ ସେକସନ ଅଫିସର ଭାବେ ୨୦୦୭ ରେ ଅବସର ଗ୍ରହଣ । ପତ୍ର ପତ୍ରିକାରେ ପ୍ରବନ୍ଧମାନ ଲେଖନ୍ତି । ଅବସର ପରେ ସମାଜରୁ ବିଭିନ୍ନ କୁସଂସ୍କାର ଦୂର କରିବା ପାଇଁ କାର୍ଯ୍ୟ କରୁଛନ୍ତି ।

## ରାଧାନାଥ ରଥ

ଡକ୍ଟର ରାଧାନାଥ ରଥଙ୍କର ଜନ୍ମ ୧୯୧୭ ମସିହାରେ ଗଞ୍ଜାମ ଜିଲ୍ଲାର ତଳରାମ ପଲ୍ଲୀ ଗ୍ରାମରେ ଓ ତାଙ୍କର ଦେହାନ୍ତ ୨୯ ସେପ୍ଟେମ୍ବର ୨୦୧୪ ଦିନ । ସେ ୧୯୪୪ ମସିହାରେ ଦର୍ଶନ ଅଧ୍ୟାପକ ଭାବେ ତାଙ୍କର କର୍ମମୟ ଜୀବନ ଆରମ୍ଭ କରିଥିଲେ ଓ ପରେ ଲଣ୍ଡନରୁ ମନୋବିଜ୍ଞାନରେ ପିଏଚ.ଡି. କରି ମନୋବିଜ୍ଞାନର ଅଧ୍ୟାପକ ହେଲେ । ଉତ୍କଳ ବିଶ୍ୱବିଦ୍ୟାଳୟରେ ମନୋବିଜ୍ଞାନର ପ୍ରଫେସର ଭାବେ କାର୍ଯ୍ୟକରି ୧୯୮୧ରେ ଅବସର ନେଇଥିଲେ । ଉପନ୍ୟାସ, ମନୋବୈଜ୍ଞାନିକ ପ୍ରବନ୍ଧ, ଭ୍ରମଣକାହାଣୀ ଉପରେ ତାଙ୍କର ବିଭିନ୍ନ ପୁସ୍ତକ ରହିଛି । ୨୮ ଟି ଉପନ୍ୟାସ, ଦଶଟି ପ୍ରବନ୍ଧ ସଂକଳନ, ଚାରୋଟି ଭ୍ରମଣ କାହାଣୀ ଲେଖିଛନ୍ତି । ମନୋବୈଜ୍ଞାନିକ ପ୍ରବନ୍ଧ ରଚନା କ୍ଷେତ୍ରରେ ସେ ଓଡିଶାରେ ଏକ ପରିଚିତ ବ୍ୟକ୍ତିତ୍ୱ । ତାଙ୍କର ଆତ୍ମଜୀବନୀ "ମୋ ସ୍ୱପ୍ନ ମୋ ଜୀବନ" ଏକ ଅନବଦ୍ୟ କୃତି । ଜଣେ ଶିକ୍ଷାବିତ୍, ହେତୁବାଦୀ, ସଂସ୍କାରକ, ସମାଜସେବୀ ଭାବେ ସେ ପରିଚିତ ଥିଲେ ।

## ଶଶିକାନ୍ତ ଆଚାର୍ଯ୍ୟ

ଡକ୍ଟର ଶଶୀକାନ୍ତ ଆଚାର୍ଯ୍ୟଙ୍କର ଜନ୍ମ ୨୮ ଜୁନ ୧୯୪୦ ମସିହାରେ ଜଗତସିଂହପୁର ଜିଲ୍ଲାର ସରିଆବଳ ଗ୍ରାମରେ । ମେକାନିକାଲ ଇଂଜିନିୟରିଂରେ ଏମ୍.ଟେକ୍ ଓ ବର୍ଲିନ ବିଶ୍ୱବିଦ୍ୟାଳୟରୁ ପିଏଚ. ଡି । ୧୯୬୨ ରୁ ଅଧ୍ୟାପନା କାର୍ଯ୍ୟ କରି ୧୯୯୦ରେ ରାଉରକେଲା ନିଟରୁ ପ୍ରଫେସର ପଦବୀରୁ ସ୍ୱେଚ୍ଛାକୃତ ଅବସରଗ୍ରହଣ । ବିଜ୍ଞାନ, ଅନ୍ଧବିଶ୍ୱାସ ଓ ଅଲୌକିକତା; ବିଜ୍ଞାନ ବନାମ ଧର୍ମବିଶ୍ୱାସ; ନିଶା କବଳରେ ମଣିଷ; ମାର୍ଗଦର୍ଶକ ପ୍ରବନ୍ଧ ସଂକଳନ ମାନ ତାଙ୍କର ସୃଜନ ସୃଷ୍ଟି । "ବୈଜ୍ଞାନିକ ମନୋଭାବ" ନାମରେ ଏକ ପତ୍ରିକା ସଂପାଦନା କରୁଛନ୍ତି ।

## ଶିବ ପ୍ରସାଦ ଅଧିକାରୀ

ଡକ୍ଟର ଶିବପ୍ରସାଦ ଅଧିକାରୀଙ୍କର ଜନ୍ମ ୨ ଏପ୍ରିଲ ୧୯୫୪ ମସିହାରେ ଗଞ୍ଜାମ ଜିଲ୍ଲାର ମାଣିଆକାଟି ଗ୍ରାମରେ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ଉଦ୍ଭିଦ ବିଜ୍ଞାନରେ

ଏମ୍.ଏସସି., ପିଏଚ.ଡି. ଓ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡି.ଏସସି. ଡିଗ୍ରୀ ଲାଭ । ଜଣେ ବୈଜ୍ଞାନିକ ଓ ଗବେଷକ ଭାବେ ଜଣାଶୁଣା । ସଂପ୍ରତି ଫକୀର ମୋହନ ବିଶ୍ୱବିଦ୍ୟାଳୟର କୁଳପତି ଭାବେ କାର୍ଯ୍ୟକରୁଛନ୍ତି ଓ ତାହା ପୂର୍ବରୁ ବିଶ୍ୱଭାରତୀ, ଶାନ୍ତିନିକେତନ ଓ ଉତ୍କଳ ବିଶ୍ୱବିଦ୍ୟାଳୟରେ ବି ପ୍ରଫେସର ଭାବେ କାର୍ଯ୍ୟ କରିଛନ୍ତି । ଇଂରାଜୀ ଭାଷାରେ ୫ଟି ଗବେଷଣାମୂଳକ ପୁସ୍ତକ ରହିଛି ଓ ଓଡ଼ିଆରେ ଲୋକପ୍ରିୟ ବୈଜ୍ଞାନିକ ପ୍ରବନ୍ଧମାନ ଲେଖୁଛନ୍ତି ।

**ସଂଗୀତା ରଥ**

ଡକ୍ଟର ସଂଗୀତା ରଥଙ୍କର ଜନ୍ମ ୧ ସେପ୍ଟେମ୍ବର ୧୯୬୦ ମସିହାରେ କଟକଠାରେ । ଉତ୍କଳ ବିଶ୍ୱବିଦ୍ୟାଳୟରୁ ମନୋବିଜ୍ଞାନରେ ଏମ୍.ଏ. , ଏମ୍.ଫିଲ. ଓ ପିଏଚ.ଡି. ଡିଗ୍ରୀ ପ୍ରାପ୍ତ । ୧୯୯୦ ରୁ ଅଧ୍ୟାପିକା ଭାବେ କାର୍ଯ୍ୟ କରି ସଂପ୍ରତି ରେଭେନ୍ସା ବିଶ୍ୱବିଦ୍ୟାଳୟରେ ମନୋବିଜ୍ଞାନର ପ୍ରଫେସର ଭାବେ କାର୍ଯ୍ୟନିର୍ବାହ କରୁଛନ୍ତି । ମନୋବିଜ୍ଞାନ ସଂପର୍କରେ ତାଙ୍କର ପାଞ୍ଚଟି ଗବେଷଣାଧର୍ମୀ ପୁସ୍ତକ ଇଂରାଜୀରେ ପ୍ରକାଶିତ ହୋଇଛି । ଓଡ଼ିଆରେ ଗଳ୍ପ ଓ ମନୋବୈଜ୍ଞାନିକ ସମସ୍ୟା ଉପରେ ପ୍ରବନ୍ଧ ଲେଖନ୍ତି । 'ଆମେ ଓ ଆମର ସମାଜ' ତାଙ୍କର ଏକ ବିଶ୍ଳେଷଣାତ୍ମକ ପ୍ରବନ୍ଧ ସଙ୍କଳନ ରହିଛି ।

**ସୁଧାଂଶୁ ଶେଖର ଧଡା**

ଶ୍ରୀ ସୁଧାଂଶୁ ଶେଖର ଧଡାଙ୍କର ଜନ୍ମ ୨୬ ଜୁନ ୧୯୫୯ ମସିହାରେ କେନ୍ଦୁଝର ଜିଲ୍ଲାରେ । ଉତ୍କଳ ବିଶ୍ୱବିଦ୍ୟାଳୟରୁ ଓଡ଼ିଆରେ ଏମ୍.ଏ. ପାସ କରି ଭାରତ ସରକାରଙ୍କ ସୂଚନା ଓ ପ୍ରସାରଣ ବିଭଗରେ କର୍ମମୟ ଜୀବନ ଆରମ୍ଭ କରି ସଂପ୍ରତି ଓଡ଼ିଆ ଦୂରଦର୍ଶନରେ କାର୍ଯ୍ୟରତ । ତୃତୀୟ ନୟନ ତାଙ୍କର ଏକ ଚର୍ଚ୍ଚିତ ପ୍ରବନ୍ଧ ସଂକଳନ ରହିଛି । ସମ୍ବାଦପତ୍ର ମାନଙ୍କରେ ସ୍ତମ୍ଭ ଲେଖିଥାନ୍ତି । ବିଭିନ୍ନ ଚମତ୍କାରୀତା ଦେଖାଇ ତାହା ପଛାତରେ ଥିବା ବୈଜ୍ଞାନିକ କୌଶଳ ବିଷୟରେ ଲୋକମାନଙ୍କୁ ସଚେତନ କରାଇବାରେ ଓଡ଼ିଶାରେ ଜଣାଶୁଣା ।

